# ସମୟ ନାହିଁ

କିଶୋରୀ ଚରଣ ଦାସ

ସଂକଳନ ଓ ସଂପାଦନା
ଡକ୍ଟର ବିଜୟାନନ୍ଦ ସିଂହ



ଓଡ଼ିଶା ବୁକ୍ ଷ୍ଟୋର

# ସମୟ ନାହିଁ

କିଶୋରୀ ଚରଣ ଦାସ

ସଂକଳନ ଓ ସଂପାଦନା
**ଡକ୍ଟର ବିଜୟାନନ୍ଦ ସିଂହ**





ପ୍ରକାଶକ
**ଶ୍ରୀ ବିଜୟ ଶଙ୍କର ପାତ୍ର**
**ଓଡ଼ିଶା ବୁକ୍ ଷ୍ଟୋର୍**
ବିନୋଦ ବିହାରୀ, କଟକ-୭୫୩ ୦୦୨

ଛାପା ସଂଖ୍ୟା - ୫୦୦

ପ୍ରଥମ ପ୍ରକାଶ : ୨୦୦୪

ପ୍ରଚ୍ଛଦ : ଶଶୀକାନ୍ତ ରାଉତ

ଅକ୍ଷର ସଜ୍ଜା : ସୁରେଖା ପ୍ରିଣ୍ଟର୍ସ

ମୁଦ୍ରଣ
**ଗୁରୁପ୍ରସନ୍ନ ପ୍ରେସ୍**
ଝୋଲାସାହି, କଟକ-୭୫୩ ୦୦୧


**SAMAYA NAHIN**

**Kishori Charan Das**

Compiled & Edited by
**Dr. Bijayananda Singh**


Published by
**Sri Bijoy Shankar Patra**
**ORISSA BOOK STORE**
Binod Behari, Cuttack-753 002

First Edition - **2004**

**Price : Rs. 300/–**
ISBN-81-7400-448-3

# ପ୍ରଥମ ଅଙ୍କ ଶେଷ ଦୃଶ୍ୟ...

ଏହା ପୁଣି ଲେଖିବାକୁ ପଡ଼ିବ – ମୁଁ କଳ୍ପନା କରିନଥିଲି । ସତରେ ସମୟ ଆମକୁ ସହଯୋଗ କଲାନାହିଁ । ଆମ ସାହିତ୍ୟର ପ୍ରଖ୍ୟାତ ସାହିତ୍ୟସାଧକ କିଶୋରୀ ଚରଣ ଦାସଙ୍କ ସେଦିନର ମାର୍ମିକ ଉକ୍ତି 'ସମୟ ନାହିଁ' ଏ କ୍ଷେତ୍ରରେ ସତ୍ୟ ବୋଲି ପ୍ରମାଣିତ ହୋଇଛି । ଶେଷକଥା, ପ୍ରଥମରେ କହିବାକୁ ପଡୁଛି । 'ସମୟ ନାହିଁ' ଗ୍ରନ୍ଥର ସବୁକାର୍ଯ୍ୟ ସମାପ୍ତ ହୋଇ 'ଓଡ଼ିଶା ବୁକ୍ ଷ୍ଟୋର'ରୁ ୧୬ ଅଗଷ୍ଟ ୨୦୦୪ ସନ୍ଧ୍ୟାରେ ଚୂଡ଼ାନ୍ତ ଟ୍ରେସିଂ ଗୁରୁପ୍ରସନ୍ନ ପ୍ରେସକୁ ମୁଦ୍ରଣ ପାଇଁ ପ୍ରେରିତ ହେଲା ।

କିନ୍ତୁ କ'ଣ ହୋଇଗଲା ! ସବୁ ପ୍ରକାର ଚେଷ୍ଟା, ଉଦ୍ୟମ ପରିଶେଷରେ ବ୍ୟର୍ଥ ହୋଇଗଲା । ୧୭ ଅଗଷ୍ଟ ୨୦୦୪ ସକାଳେ ସ୍ୱପ୍ନବିଳାସୀ କିଶୋରୀ ଚରଣ ସବୁଦିନ ପାଇଁ ଏ ସୁନ୍ଦର ପୃଥିବୀକୁ ଛାଡ଼ି ଚାଲିଗଲେ । କିଶୋରୀ ଚରଣଙ୍କ ଜୀବନକାଳ ମଧ୍ୟରେ ତାଙ୍କର ବହୁ ଆକାଂକ୍ଷିତ ପୁସ୍ତକ 'ସମୟ ନାହିଁ' ପ୍ରକାଶିତ ହୋଇପାରିଲା ନାହିଁ । ତେଣୁ ବାଧହୋଇ ଏଇଠି ଆରମ୍ଭରେ ଲେଖୁଛି ଶେଷକଥା । 'ସମୟ ନାହିଁ' ଗ୍ରନ୍ଥର ଏହା ହେଉଛି ଆରମ୍ଭ; କିନ୍ତୁ କିଶୋରୀ ଚରଣଙ୍କ ଜୀବନର ଶେଷ ଫର୍ଦ୍ଦ – ''ପ୍ରଥମ ଅଙ୍କ ଶେଷ ଦୃଶ୍ୟ ।''

୧୯୮୫ ମସିହା ଠାରୁ କିଶୋରୀ ଚରଣ କଟକର ଖଟବିନ୍ ସାହିରେ ସ୍ଥାୟୀ ଭାବରେ ରହିଲା ପରେ ତାଙ୍କ ସହ ମୋର ସମ୍ପର୍କ । କେତୋଟି ଦିନ ପରେ, କାହିଁକି ଓ କିପରି ମୋ'ଭଳି ଜଣେ ତରୁଣ ସହ ତାଙ୍କ ପରି ଜଣେ ଖ୍ୟାତନାମା ସାହିତ୍ୟସ୍ରଷ୍ଟାଙ୍କ ସଂପର୍କ ନିବିଡ଼ ହୋଇଗଲା, ତାହା ମୁଁ ଜାଣେନାହିଁ । ମୋତେ ପୁଣି ଅଭିଭୂତ କରିଥିଲା ମାନନୀୟା ଶ୍ରୀମତୀ କୁମାରୀ ଦେବୀଙ୍କ ଅକପଟ ସ୍ନେହ ଓ ଶ୍ରଦ୍ଧା । ସେମାନଙ୍କ ପାରିବାରିକ ଜୀବନ ସହିତ ମୋର ସଂପର୍କ ଘନିଷ୍ଠ ହୋଇଗଲା । ଲେଖିଲି କିଶୋରୀଚରଣଙ୍କ ଜୀବନୀ, ସାକ୍ଷାତକାର ଓ ଆଲୋଚନା ପ୍ରଭୃତି । ସେଥିରେ ଆତ୍ମସନ୍ତୋଷ ବି ସେ ପ୍ରକାଶ କଲେ । ମୁଁ କିନ୍ତୁ ବହୁବାର ଅନୁରୋଧ କରିଥିଲି 'ଆତ୍ମ ଜୀବନୀ'ଟି ଲେଖିବା ପାଇଁ । ଏହା କେବଳ ମୋର ଅନୁରୋଧ ନୁହେଁ, ଅନେକ କିଶୋରୀ ଚରଣ-ସାହିତ୍ୟପ୍ରେମୀଙ୍କର ପ୍ରସ୍ତାବ । ସୁଲେଖକ କମଳାକାନ୍ତ ମହାପାତ୍ର ସୁଦୂର ଚେନ୍ନାଇରୁ ମୋତେ ବାରମ୍ବାର ସଚେତନ କରାଉଥିଲେ, କିଶୋରୀ ଚରଣଙ୍କ ଆତ୍ମଜୀବନୀ ରଚନା ସଂପର୍କରେ । କାରଣ ଆମମାନଙ୍କର ମତ ଥିଲା, ଜୀବନ ଓ ଜଗତକୁ ଭିନ୍ନ ଦୃଷ୍ଟିରେ ଦେଖିଥିବା କିଶୋରୀ ଚରଣଙ୍କ ଜୀବନ-କାହାଣୀ ଭିନ୍ନ ଧରଣର ହେବ– ହେବ ପୁଣି ବୈଚିତ୍ର୍ୟମୟ ।

ଆମମାନଙ୍କର ଅନୁରୋଧ ରକ୍ଷାକରି ଦୁଇ ହଜାର ମସିହା ଶେଷ ବେଳକୁ କିଶୋରୀ ଚରଣ ଲେଖି ବସିଲେ ଆତ୍ମଚରିତ ଗ୍ରନ୍ଥ । କଥାପ୍ରସଙ୍ଗରେ ସାହିତ୍ୟିକ ସେକ୍ ମତଲୁବ୍ ଅଲ୍ଲିଙ୍କୁ

କିଶୋରୀ ଚରଣଙ୍କ ଆତ୍ମଜୀବନୀ ରଚନା ସଂପର୍କରେ କହିବା ମାତ୍ରେ ସେ ଆଗ୍ରହ ପ୍ରକାଶ କଲେ— 'ଆଗାମୀ ଶତାବ୍ଦୀ'ର ପ୍ରତିଟି ସଂଖ୍ୟାରେ ଧାରାବାହିକ ଭାବେ ଏହା ପ୍ରକାଶ କରିବାକୁ । କିଶୋରୀ ଚରଣ ମଧ ସମ୍ମତି ପ୍ରକାଶ କଲେ । ଆତ୍ମଜୀବନୀ ସଂପୂର୍ଣ୍ଣ ହୋଇନଥାଏ କିମ୍ବା ଶୀର୍ଷକ ସ୍ଥିର ହୋଇ ନ ଥାଏ । କିନ୍ତୁ 'ଆଗାମୀ ଶତାବ୍ଦୀ'ର ଜୁନ୍-ଜୁଲାଇ ୨୦୦୧ ସଂଖ୍ୟାରେ ଆତ୍ମଜୀବନୀର ପ୍ରଥମ ପରିଚ୍ଛେଦ ''ସ୍ମୃତିଶୂନ୍ୟ ସକାଳ'' ଶିରୋନାମାରେ ପ୍ରକାଶ ପାଇଲା । ବହୁ ପ୍ରତୀକ୍ଷାପରେ ଗ୍ରନ୍ଥର ନାମ ସ୍ଥିର ହେଲା— ''ସମୟ ନାହିଁ'' । ସେ ନିଜେ ଏହି ଗ୍ରନ୍ଥର ଉପକ୍ରମଣିକାରେ ସ୍ୱୀକାରୋକ୍ତି ଦେଇଛନ୍ତି । ''ସମୟ ନାହିଁ''ର ରଚନା ସମାପ୍ତ ହେଲା ୬ ଫେବୃୟାରୀ ୨୦୦୨ ମସିହାରେ ।

କିଶୋରୀ ଚରଣଙ୍କୁ ମୁଁ ପ୍ରସ୍ତାବ ଦେଇଥିଲି, ତାଙ୍କ ସାମଗ୍ରିକ ସାହିତ୍ୟର ଏକ ଗ୍ରନ୍ଥସୂଚୀ ପ୍ରକାଶ କରିବାପାଇଁ । ସେ ଏଥିରେ ଆନନ୍ଦିତ ହେବା ସହିତ ମୋତେ ଏ କାର୍ଯ୍ୟଟି କରିବା ପାଇଁ କହି ସବୁପ୍ରକାର ଶୁଭେଚ୍ଛା ଓ ସହଯୋଗ ପ୍ରଦାନ କଲେ । ପ୍ରସ୍ତୁତ ହେଲା କିଶୋରୀ ଚରଣଙ୍କ ସାହିତ୍ୟର ସୂଚନା, ସଂଳାପ ଓ ସମୀକ୍ଷା । ଏହା ପୁଣି ଆତ୍ମଜୀବନୀ ସହିତ ସଂଯୋଜିତ ହେବ । ଓଡ଼ିଶା ବୁକ୍ ଷ୍ଟୋରର ପ୍ରତିଷ୍ଠାତା ପ୍ରକାଶକ ଶ୍ରୀ ଗୋବିନ୍ଦ ଚରଣ ପାତ୍ର ଏହି ଗ୍ରନ୍ଥଟିକୁ ପ୍ରକାଶ କରିବେ ବୋଲି ଦାୟିତ୍ୱ ଗ୍ରହଣ କରି ଆମ କାର୍ଯ୍ୟକୁ କଲେ ତ୍ୱରାନ୍ୱିତ । ୨୦୦୨ ଅକ୍ଟୋବରରେ ଏହି ପ୍ରକାଶନ କାର୍ଯ୍ୟର ଶୁଭାରମ୍ଭ ହେଲା । ପରିକଳ୍ପନା ଥିଲା— କିଶୋରୀ ଚରଣଙ୍କ ୮୦ ବର୍ଷ ପୂର୍ତ୍ତି ଉପଲକ୍ଷେ ଅର୍ଥାତ୍ ୧ ମାର୍ଚ୍ଚ ୨୦୦୪ରେ ଏକ ସାରସ୍ୱତ ସମାରୋହ ଅନୁଷ୍ଠିତ ହୋଇ ଏହି ଗ୍ରନ୍ଥଟିକୁ ଉନ୍ମୋଚନ କରାଯିବ । କିଶୋରୀ ଚରଣ ମଧ ଏହା ଶୁଣି ଉତ୍‌ଫୁଲ୍ଲିତ ହୋଇଥିଲେ । କିନ୍ତୁ ନୂଆଦିଲ୍ଲୀରୁ ୧୨ ଡିସେମ୍ବର ୨୦୦୩ରେ କିଶୋରୀ ଚରଣ ମୋତେ ଲେଖିଥିବା ଚିଠିଟି ଏ ଯୋଜନାକୁ ଏପଟ ସେପଟ କରିଦେଲା । ଚିଠିରେ ସେ ଲେଖିଥିଲେ— ''ଯାହା ତୁମକୁ ପୂର୍ବରୁ କହୁଥିଲି, ପିଲାମାନେ କହୁଛନ୍ତି ମାର୍ଚ୍ଚ ପହିଲା ପର୍ଯ୍ୟନ୍ତ ଏଠି ରହିଯିବା ପାଇଁ; ଯେମିତିକି ସେମାନେ ମୋର ୮୦ ବର୍ଷର ଜନ୍ମଦିନ ମନାଇବେ । ମୁଁ ସେମାନଙ୍କୁ ପୂରାପୂରି 'ହଉ' ବୋଲି କହିନାହିଁ, କାରଣ ଜାନୁୟାରୀ ଦ୍ୱିତୀୟ ତୃତୀୟ ସପ୍ତାହ ବେଳକୁ କଟକ ଯିବାକୁ ଚାହେଁ; କେତେକ ବୈଷୟିକ କାମ ନେଇ; କିନ୍ତୁ ସେ ବିଷୟରେ ଲେଖାଲେଖି କରୁଛି; ଏବଂ ହୁଏତ ମୋତେ ଯିବାକୁ ପଡ଼ି ନପାରେ । ତା'ଯଦି ହୁଏ, ତା'ହେଲେ ମୁଁ ମାର୍ଚ୍ଚ ପ୍ରଥମ ସପ୍ତାହ ଯାଏ ଏଠି ରହିଯାଇପାରେ । ତା'ହେଲେ 'ସମୟ ନାହିଁ'ର ଉନ୍ମୋଚନ ସେହି ମାସରେ, କିନ୍ତୁ କିଛି ଦିନ ପରେ, କରାଯାଇ ପାରିବ । କିଛି ଆପତ୍ତି ଅଛି ? କିଂତୁ ତା'ହେଲେ ବହିର Final Proof ଏଠିକି ଉପରୋକ୍ତ ଠିକଣାରେ ପଠାଇବାକୁ ଅନୁରୋଧ । ମୁଁ ତା'କୁ ତୁରନ୍ତ ଫେରାଇ ଦେବି, ତୁମ ପାଖକୁ ମୋର ସଂଶୋଧନ ସହ । କିନ୍ତୁ ଛପାକାମ କେତେଦୂର ଗଲାଣି ଇତି ମଧରେ ? ପ୍ରଥମ ପ୍ରୁଫ୍‌ରେ ତ ଅନେକ ଭୁଲ୍ ଥିଲା । ତେଣୁ ବିଜୟ କୁମାର ଶତପଥୀ, ନଟବର ଶତପଥୀ, ବୈଷ୍ଣବ ଚରଣ

ସାମଲ, ସତ୍ୟାନନ୍ଦ ସ୍ୱାଇଁ ଏବଂ ତୁମେ ତୁମମାନଙ୍କ ଲେଖାଗୁଡ଼ିକୁ ଛପା ଅକ୍ଷରରେ ନିର୍ଭୁଲ୍ ବୋଲି ଆଶ୍ୱସ୍ତ ହେବାର ବିଶେଷ ଆବଶ୍ୟକତା ରହିଛି । ଯାହାହେଉ 'ସମୟ ନାହିଁ' କେତେଦୂର ଆଗେଇଯାଇ ପାରିଛି ସେ ବିଷୟରେ ଦୟାକରି ଲେଖିବ ।''

ସେ ଦିଲ୍ଲୀରୁ କଟକ ଆସିଲା ପରେ 'ସମୟ ନାହିଁ'ର ମୁଦ୍ରଣ କାର୍ଯ୍ୟ ଅଗ୍ରଗତି ଦେଖି ଚୂଡ଼ାନ୍ତ ପ୍ରୁଫ୍ ଦେଖିବା ପାଇଁ ଇଚ୍ଛା ପ୍ରକାଶ କଲେ । ମାର୍ଚ୍ଚ ମାସରେ ଆଉ ଉତ୍ସବ କରି ହେଲା ନାହିଁ । ପରବର୍ତ୍ତୀ ତାରିଖ ସ୍ଥିର କରିବା ପାଇଁ ଚିନ୍ତାକଲି । କିଶୋରୀ ଚରଣଙ୍କ ଜୀବନର ତିନୋଟି ତାରିଖ ତାଙ୍କ ପାଇଁ ବେଶ୍ ଆକର୍ଷଣୀୟ ଥିଲା– ତାଙ୍କ ଜନ୍ମତିଥି ୧ ମାର୍ଚ୍ଚ, ଶ୍ରୀମତୀ ଦାସଙ୍କ ଜନ୍ମତିଥି କୁମାରପୂର୍ଣ୍ଣିମା ଓ ସେମାନଙ୍କ ବିବାହ ତାରିଖ ମଇ ୬ ତାରିଖ । ମୁଁ ତାଙ୍କୁ ୨୦୦୪ କୁମାର ପୂର୍ଣ୍ଣିମାକୁ ଗ୍ରନ୍ଥ ଉନ୍ମୋଚନ ଓ ସାରସ୍ୱତ ସମାରୋହର ତିଥି ବୋଲି କହିଥିଲି । ସେ ସେଦିନ ଖୁବ୍ ଜୋର୍‌ରେ ହସିଉଠି କହିଥିଲେ– ''ହଉ ଦେଖିବା ।''

୨୦୦୪ ଜୁଲାଇ ୮ ତାରିଖ ଦିନ କିଶୋରୀ ବାବୁ ମୋତେ ''ବିପ୍ରଚରଣ ଭବନ''କୁ ଡାକି କହିଲେ– ''ମୋ ଦେହ ଭଲ ନାହିଁ । ମୁଁ କାଲି ଦିଲ୍ଲୀ ଯାଉଛି । ଆତ୍ମଜୀବନୀ ଓ ଅନ୍ୟାନ୍ୟ ଅପ୍ରକାଶିତ ପାଣ୍ଡୁଲିପିର ଦାୟିତ୍ୱ ତୁମ ଉପରେ ରହିଲା ।'' ତା'ପରେ ତାଙ୍କର ପ୍ରସ୍ତୁତ ପାଣ୍ଡୁଲିପି '୩୦ ବର୍ଷର ଗଳ୍ପ ଓ ଆଳାପ'' (ପଞ୍ଚମ ଭାଗ) ମୋ' ହାତକୁ ବଢ଼େଇ ଦେଲେ ।

କିଶୋରୀ ଚରଣ ଦିଲ୍ଲୀରେ ପହଞ୍ଚି ଅଖିଳ ଭାରତୀୟ ଆୟୁର୍ବିଜ୍ଞାନ ସଂସ୍ଥାନ (ଏ.ଆଇ.ଆଇ.ଏମ୍.ଏସ୍)ରେ ଭର୍ତ୍ତି ହେଲେ । ଆଶା ଥିଲା ସେ ଖୁବ୍ ଶୀଘ୍ର ଫେରି ଆସିବେ, ପ୍ରୁଫ୍ ଦେଖିବେ, ବହିଟି ପ୍ରକାଶିତ ହେବ । ଏ.ଆଇ.ଆଇ.ଏମ୍.ଏସ୍. ରୁ ସେ ମୋତେ ଲେଖିଥିବା ତା ୨୫ । ୭ । ୦୪ ଚିଠିଟିକୁ ଉଲ୍ଲେଖ କରାଯାଇପାରେ ।

''ମୁଁ ହସ୍‌ପିଟାଲ ବେଡ୍‌ରୁ ଲେଖୁଛି । ଇତିମଧ୍ୟରେ ତୁମର ଚିଠି ଖଣ୍ଡେ ପାଇବି ବୋଲି ଆଶା କରିଥିଲି । ଚିକିତ୍ସା ଚାଲିଛି । କେବେ ସରିବ ଆଉ କେବେ ମୁଁ କଟକ ଫେରିଯିବି, ଜାଣେ ନାହିଁ । 'ସମୟ ନାହିଁ'ର ଫାଇନାଲ୍ ପ୍ରୁଫ୍ ଆସିଗଲାଣି କି ? ଆସିଲେ ତୁମେ ନିଜେ ତା'କୁ ଭଲ ଭାବରେ ଦେଖିବ, ଓ ତା'ଉତ୍ତାରୁ ଏଠିକି ପଠାଇବ ମୁଁ ତୁମକୁ ଦେଇ ଆସିଥିବା ଠିକଣାରେ ।''

ଯେତେବେଳେ ଜାଣିଲି, ସେ ଆଉ ପ୍ରୁଫ୍ ସଂଶୋଧନ କରିବା ଅବସ୍ଥାରେ ନାହାନ୍ତି, ସେତେବେଳେ ମୁଁ ବ୍ୟତିବ୍ୟସ୍ତ ହୋଇପଡ଼ିଲି । କେମିତି ଏ ଗ୍ରନ୍ଥ କିଶୋରୀ ଚରଣଙ୍କ ବିନା

ସହଯୋଗରେ ପ୍ରକାଶ ପାଇବ ? କିଏ ଦେଖିବ ଏହାର ଫାଇନାଲ୍ ପ୍ରୁଫ୍ ? ଦିଲ୍ଲୀରୁ ତାଙ୍କ ବଡ଼ ଝିଅ ଶ୍ରୀମତୀ ହୀନୁ ପଟ୍ଟନାୟକ ମୋତେ ବାରମ୍ବାର ଫୋନ୍‌କରି କହିଛନ୍ତି, ''ଆଉ ପ୍ରକୃତରେ ସମୟ ନାହିଁ । ବାପା ବାରମ୍ବାର 'ସମୟ ନାହିଁ' କଥା ଓ ଆପଣଙ୍କ କଥା ପଚାରୁଛନ୍ତି ।''

'ସମୟ ନାହିଁ' ପ୍ରକାଶ ପାଇଁ ସବୁ ପ୍ରକାର ଉଦ୍ୟମ କରାଗଲା । ସହଯୋଗ କଲେ ପ୍ରକାଶକ ବନ୍ଧୁ ବିଜୟଶଙ୍କର ପାତ୍ର, ପ୍ରଚ୍ଛଦପଟ ଶିଳ୍ପୀ ଶଶୀକାନ୍ତ ରାଉତ, ଗୁରୁପ୍ରସନ୍ନ ପ୍ରେସ୍‌ର ସ୍ୱତ୍ୱାଧିକାରୀ ବିଶିଷ୍ଟ ଔପନ୍ୟାସିକ ପ୍ରସନ୍ନ କୁମାର ମହାପାତ୍ର ।

ମାତ୍ର ଆମେ ବିଫଳ ହେଲୁ । କିଶୋରୀ ଚରଣ ଆରପାରିକୁ ଚାଲିଗଲେ । ପ୍ରକାଶିତ ଗ୍ରନ୍ଥରୂପ ସେ ଦେଖିପାରିଲେ ନାହିଁ ।

'ସମୟ ନାହିଁ'ର ପାଣ୍ଡୁଲିପି ପ୍ରସ୍ତୁତି କାଳରେ ଏହାର ସଂକଳକ ଓ ସଂପାଦକ ବିଜୟାନନ୍ଦ ସିଂହ ବୋଲି ସେ ଲେଖିଥିଲେ । ମୁଁ କିନ୍ତୁ ଏଥିରେ ଅରାଜି ହୋଇଥିଲି । ତେବେ, ନିୟତିର ଇଚ୍ଛା ଅନ୍ୟ ପ୍ରକାର । କିଶୋରୀ ଚରଣଙ୍କ କଥା ରହିଲା । ତାଙ୍କ ସ୍ଥୂଳ ଅବର୍ତ୍ତମାନରେ ଏ ଗ୍ରନ୍ଥ ଆତ୍ମପ୍ରକାଶ କରୁଛି । ତାଙ୍କ ଜୀବନର ଶେଷ ପ୍ରକାଶିତ ଉପନ୍ୟାସ– ''ଶେଷ ଅଙ୍କ ପ୍ରଥମ ଦୃଶ୍ୟ''କୁ ସ୍ନେହ ଶ୍ରଦ୍ଧାର ସହିତ ମୋତେ ଉତ୍ସର୍ଗ କରି ସାରା ଜୀବନ ପାଇଁ ମୋତେ ଋଣୀ କରି ଯାଇଛନ୍ତି । କିନ୍ତୁ ମୁଁ ତାଙ୍କର ଶେଷ ଇଚ୍ଛା ପୂରଣ କରିପାରିଲି ନାହିଁ । ଏହା ମୋ' ପାଇଁ ସବୁଠାରୁ ବଡ଼ ଦୁଃଖ ଓ ଅବସୋସ । ଖାଲି ଖାଲି ଲାଗୁଛି ମୋତେ ।

ହେ ମହାନ୍ ସ୍ରଷ୍ଟା ! ଲୁହ ଓ କୋହ ଭିତରେ ଆପଣଙ୍କୁ ଆପଣଙ୍କ ବହି ଅର୍ପଣ କରୁଛି । ଆପଣ ଯେଉଁଠି ଥାଆନ୍ତୁ ନା କାହିଁକି, ସେହି ପୂର୍ବ ସ୍ନେହ ଶ୍ରଦ୍ଧା ସହକାରେ ଏହାକୁ ଗ୍ରହଣ କରିବେ ବୋଲି ବିଶ୍ୱାସ ରଖୁଅଛି ।

୨୪ ଅଗଷ୍ଟ ୨୦୦୪ — **ବିଜୟାନନ୍ଦ ସିଂହ**
ମାନସିଂହ ପାଟଣା, କଟକ



# ମୁଖଶାଳା

କିଶୋରୀ ଚରଣ ଦାସ ଅନନ୍ୟ, ଅସାଧାରଣ ସାରସ୍ୱତ ସ୍ରଷ୍ଟା । ତାଙ୍କ ଅନବଦ୍ୟ ଅବଦାନରେ କେବଳ ଓଡ଼ିଆ ସାହିତ୍ୟ କାହିଁକି ଭାରତୀୟ ସାହିତ୍ୟ ତଥା ବିଶ୍ୱସାହିତ୍ୟ ସମୃଦ୍ଧ । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟରେ କିଶୋରୀ ଚରଣ ଏକ ନୂତନ ମାର୍ଗର ଉନ୍ମୋଚକ । ବାସ୍ତବରେ ସେ ଯୁଗରୁଚିର ସାର୍ଥକ ପ୍ରତିନିଧି । ବାଲ୍ୟକାଳରୁ ତାଙ୍କର ସାହିତ୍ୟ ପ୍ରତି ଥିବା ଅପୂର୍ବ ମୋହ ପରବର୍ତ୍ତୀ କାଳରେ ତାଙ୍କୁ ଜଣେ ସଫଳ ସାହିତ୍ୟ ସ୍ରଷ୍ଟାରେ ପରିଣତ କରିଛି । କିଶୋରୀ ଚରଣଙ୍କ ସାରସ୍ୱତ ଜଗତ ଏକ ଭିନ୍ନ ପୃଥିବୀର ସନ୍ଧାନ ଦିଏ । ଆମ ମାଟି, ପାଣି, ପବନର କଥା ସେ କହିଛନ୍ତି କିନ୍ତୁ ଭିନ୍ନ ଭାବରେ । ତାହା ପାଠକକୁ କେମିତି ନୂଆ ନୂଆ ପରି ଜଣାପଡ଼େ । ଗଭୀର ଅନ୍ତର୍ଦୃଷ୍ଟି, ମନସ୍ତାତ୍ତ୍ୱିକ ବିଶ୍ଳେଷଣ, ଦାର୍ଶନିକ ଅନୁଚିନ୍ତା, ଭାବଗର୍ଭକ ଶବ୍ଦ ପ୍ରୟୋଗ, ମନୋରମ ଶୈଳୀ, ତିର୍ଯ୍ୟକ ଶାଣିତ ବ୍ୟଞ୍ଜନାରେ କିଶୋରୀ ଚରଣ ସୃଷ୍ଟିସମ୍ଭାର ନବ ରୂପ ଲାଭ କରିଛି । ମଣିଷର ସୂକ୍ଷ୍ମ ଚେତନାକୁ ସହଜ, ସରଳ, ସୁନ୍ଦର ଭାବରେ ଚିତ୍ରିତ କରିବାରେ ସେ ସିଦ୍ଧହସ୍ତ । ସବୁପ୍ରକାର ଛଳନା, ପ୍ରତାରଣା, ପ୍ରବଞ୍ଚନା, ଆଟୋପକୁ ପରିହାର କରି ପ୍ରକୃତ ମଣିଷ ଓ ସଠିକ୍ ସମାଜର ରୂପ ପ୍ରକାଶ କରିବାରେ ସାର୍ଥକତା ଲାଭ କରିଛନ୍ତି କିଶୋରୀ ଚରଣ । ତାଙ୍କ କଳା ଓ କୃତିତ୍ୱରେ ଅଛି ବୌଦ୍ଧିକ ଆନନ୍ଦର ଉପାଦାନ, ଜନଜୀବନର ବାସ୍ତବ ପ୍ରତିଲିପି ଓ ସାମାଜିକ ସଂସ୍କାରର ଦୃପ୍ତ ଆହ୍ୱାନ ।

ଓଡ଼ିଆ ସାହିତ୍ୟର ବିକାଶରେ ଏହି ପ୍ରତିଭାଧର ଲେଖକଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ସଂପ୍ରତି ତାଙ୍କର ଉଣେଇଶ ଖଣ୍ଡ ଗଳ୍ପ, ସାତଖଣ୍ଡ ଉପନ୍ୟାସ, ଦୁଇଖଣ୍ଡ କବିତା, ଛଅଖଣ୍ଡ ଆଲୋଚନା ପ୍ରବନ୍ଧ, ଦୁଇଖଣ୍ଡ ଅନୁବାଦ ଗ୍ରନ୍ଥ ଓ ସର୍ବୋପରି ସାମଗ୍ରିକ ରଚନା 'ତିରିଶ ବର୍ଷର ଗଳ୍ପ ଓ ଆଳାପ' ପ୍ରକାଶିତ ହୋଇ ଋଦ୍ଧିମନ୍ତ କରିଛି ଆମ ସାହିତ୍ୟକୁ । ସେଥିପାଇଁ Encyclopaedia of Indian Literature ରେ ତାଙ୍କ କୃତିତ୍ୱର ପ୍ରଶଂସା କରି କୁହାଯାଇଛି— "Kishori Charan Das is an outstanding representative of the generation of short story writers who came to dominate the oriya literary scene after the sixties. He has distinguished himself by concentrating on a particular area of experience, the middle and the upper middle classes are also by bringing an introspective reflective element into the oriya short story form." ତାଙ୍କ ସ୍ୱକୀୟ ପ୍ରତିଭାର ଆଉ ଏକ ବଳିଷ୍ଠ ସ୍ୱାକ୍ଷର— ସଂକଳନ ଓ ସଂପାଦନା କାର୍ଯ୍ୟ ।

ଓଡ଼ିଆ ଭାଷା ବ୍ୟତୀତ ସେ ଇଂରାଜୀ ଭାଷା ସାହିତ୍ୟର ଜଣେ ସୁଲେଖକ । ତାଙ୍କ ଇଂରାଜୀ ରଚନା ପରିମାଣ ଦୃଷ୍ଟିରୁ ଓଡ଼ିଆ ରଚନାର ସମକକ୍ଷ ନ ହେଲେ ବି ଏହି ରଚନାର ଗୁଣାତ୍ମକ ଦିଗ ତାଙ୍କୁ ଦ୍ୱିଭାଷୀ ଲେଖକ ଭାବେ ପ୍ରତିଷ୍ଠିତ କରିଛି । ତାଙ୍କର ବହୁ ଗଳ୍ପ, ଇଂରାଜୀ, ଫରାସୀ, ସ୍ପେନୀୟ, ଆରବୀ ଓ ପ୍ରାୟ ସମସ୍ତ ଭାରତୀୟ ଭାଷାରେ ଅନୂଦିତ ଏବଂ ବିଭିନ୍ନ ପତ୍ରପତ୍ରିକା, ସଂକଳନରେ ଏପରିକି ଗ୍ରନ୍ଥ ଭାବରେ ମଧ୍ୟ ପ୍ରକାଶିତ । ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ଆୟୋଜିତ ସଭାସମିତି, ଆଲୋଚନାଚକ୍ର, ସଂପାନରେ ପ୍ରବନ୍ଧ ପାଠ କରିବା ସହ ସର୍ବଭାରତୀୟ ସଂକଳନର ସଂପାଦନା ଓ ଅନୁବାଦ ଆଦି କାର୍ଯ୍ୟ କରି ସେ ହୋଇଛନ୍ତି ଯଶସ୍ୱୀ । ସେଥିପାଇଁ ବିଶିଷ୍ଟ ଲେଖକ, ଅନୁବାଦକ Phyllis Granoff ଲେଖିଛନ୍ତି– "Kishori Charan Das is deservedly one of the most celebrated writers in India today. He writes primarily in Oriya, the Language of his native state of Orissa." xxxx ସେ ମତ ଦେଇ ପୁଣି କହିଛନ୍ତି– "K.C. Das has written extensively about himself as an artist (The Journey, stories by K.C. Das, Phyllis Granoff) ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ଅଜସ୍ର ଶ୍ରଦ୍ଧା ସମ୍ମାନ ପାଇଥିଲେ ମଧ୍ୟ ସେ ଆତ୍ମଜୀବନୀ ଲେଖୁ ନ ଥିଲେ । ତାଙ୍କର ବହୁ ଶୁଭେଚ୍ଛୁ, ଅଗଣିତ ପ୍ରିୟ ପାଠକଙ୍କ ଅନୁରୋଧକୁ ଏଡ଼ାଇ ନ ପାରି ସେ ରଚନା କରିଛନ୍ତି ତାଙ୍କ ଘଟଣାବହୁଳ ଜୀବନର ଇତିବୃତ୍ତ । କିଶୋରୀ ଚରଣଙ୍କ ବୈଚିତ୍ର୍ୟପୂର୍ଣ୍ଣ ଅଥଚ ସୌନ୍ଦର୍ଯ୍ୟମୟ ଜୀବନର ଅନେକ ଅକୁହା କାହାଣୀ ଭିନ୍ନ ରୀତିରେ 'ସମୟ ନାହିଁ'ରେ ପଞ୍ଜୀକୃତ ।

ବିରଳ ସାରସ୍ୱତ ସୃଷ୍ଟି ପାଇଁ କିଶୋରୀ ଚରଣ ପାଇଛନ୍ତି ଜାତୀୟ, ଆନ୍ତର୍ଜାତୀୟ ସ୍ୱୀକୃତି । କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର, ଓଡ଼ିଆ ସାହିତ୍ୟ ଏକାଡେମୀ ପୁରସ୍କାର, ବିଷୁବ ପୁରସ୍କାର, ସାରଳା ପୁରସ୍କାର ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟର ସମ୍ମାନଜନକ ଡି.ଲିଟ୍ ଡିଗ୍ରୀ ସମେତ ବହୁ ପୁରସ୍କାର ଓ ସମ୍ମାନ ସେ ଗ୍ରହଣ କରିଛନ୍ତି ।

କିଶୋରୀ ଚରଣ ସର୍ବକାଳୀନ ସାହିତ୍ୟ-ଶିଳ୍ପୀ । ଏହିପରି ଜଣେ ସାହିତ୍ୟର କୃତବିଦ୍ୟ ଲେଖକଙ୍କ ଆତ୍ମଜୀବନୀ ପ୍ରକାଶ ପାଉଥିଲାବେଳେ ଆମେ ଚିନ୍ତା କଲୁ ଯେ କିଶୋରୀ ଚରଣଙ୍କ ସାମଗ୍ରିକ କଳାକୃତିର ଏକ ସଂକ୍ଷିପ୍ତ ରୂପକୁ ଏହା ସହିତ ସଂଯୋଜିତ କରିବା ପାଇଁ । ପୁଣି ସୃଷ୍ଟି ସଂପଦର ସମୀକ୍ଷା, ଆଲୋଚନା ଓ ସାକ୍ଷାତକାର ପ୍ରଭୃତିକୁ ଏହି ସଂକଳନରେ ସ୍ଥାନିତ କରିବା ପାଇଁ ସ୍ଥିର କଲୁ । ସବୁ ଦୃଷ୍ଟିକୋଣରୁ କିଶୋରୀ ଚରଣଙ୍କ ସାରସ୍ୱତ ସମ୍ଭାରର ଓ ଘଟଣାବହୁଳ ଜୀବନର ଏକ ପୂର୍ଣ୍ଣାଙ୍ଗ ରୂପକୁ ପ୍ରକଟ କରିବା ଏହି ସଂକଳନର ଉଦ୍ଦେଶ୍ୟ । ଏହି ସଂକଳନଟି ଦୁଇଟି ପର୍ଯ୍ୟାୟରେ ବିଭକ୍ତ ହୋଇଛି । ପ୍ରଥମ ଭାଗ – ଆତ୍ମଜୀବନୀ, 'ସମୟ ନାହିଁ', ଦ୍ୱିତୀୟ ଭାଗରେ କିଶୋରୀ ଚରଣ ସାହିତ୍ୟର ସୂଚନା, ସଂଳାପ ଓ ସମୀକ୍ଷା ଆଦି ସ୍ଥାନ ପାଇଛି । ଅନେକ ତଥ୍ୟ ଓ ତତ୍ତ୍ୱର ସମନ୍ୱୟ ଏହି ଗ୍ରନ୍ଥ । ଅର୍ଥାତ୍ ଏହି ଗ୍ରନ୍ଥ ହେବ କିଶୋରୀ ଚରଣ ଚିନ୍ତନ ପ୍ରକ୍ରିୟାର ଏକ ଅପୂର୍ବ ଆଲେଖ୍ୟ । ପ୍ରଖ୍ୟାତ ଲେଖକ କିଶୋରୀ ଚରଣଙ୍କୁ ଜାଣିବାକୁ ହେଲେ

'ସମୟ ନାହିଁ' ହେବ ପ୍ରଥମ ଭିତ୍ତିପୁସ୍ତକ । କିଶୋରୀ ଚରଣ ସାହିତ୍ୟପ୍ରେମୀ ପାଠକ, ଗବେଷକ, ଆଲୋଚକ, ସମୀକ୍ଷକମାନଙ୍କୁ ଏହି ଗ୍ରନ୍ଥ ଆନନ୍ଦ ପ୍ରଦାନ କରିବ— ସନ୍ଦେହ ନାହିଁ ।

ଏହି ଅଭିନବ ଗ୍ରନ୍ଥ ପ୍ରଣୟନ ଓ ସଂକଳନ ପାଇଁ ପ୍ରସ୍ତାବ ଦେବା ମାତ୍ରେ ବୟସର ଆଧିକ୍ୟକୁ ଆଦୌ ସ୍ୱୀକାର କରୁନଥିବା କିଶୋରୀ ଚରଣ ଆଗ୍ରହର ସହ ଏହି କାର୍ଯ୍ୟର ସଫଳତା କାମନା କରିଥିଲେ । ତାଙ୍କର ଆନ୍ତରିକ ଶୁଭେଚ୍ଛା ଏହି ଯୋଜନାକୁ ଫଳବତୀ କରାଇଛି ।

'ସାହିତ୍ୟ ପରିକ୍ରମା' ପ୍ରସଙ୍ଗରେ ଡକ୍ଟର ବୈଷ୍ଣବ ଚରଣ ସାମଲ, ଡକ୍ଟର ପ୍ରସନ୍ନ କୁମାର ମିଶ୍ର, ଡକ୍ଟର ନଟବର ଶତପଥୀ, ଡକ୍ଟର ବିଜୟ କୁମାର ଶତପଥୀ, ଡକ୍ଟର ସତ୍ୟାନନ୍ଦ ସ୍ୱାଇଁ ପ୍ରମୁଖ ବିଶିଷ୍ଟ ପ୍ରାବନ୍ଧିକ ଓ ସମାଲୋଚକ ବହୁ ଶ୍ରମ ସ୍ୱୀକାର କରି କିଶୋରୀ ଚରଣ ସାରସ୍ୱତ ସୃଷ୍ଟିର ସାମଗ୍ରିକ ମୂଲ୍ୟାୟନ କରିଛନ୍ତି । ସେହିପରି 'ସମୀକ୍ଷା ପର୍ବ'ରେ ଓଡ଼ିଆ ସାହିତ୍ୟର ବହୁ ଖ୍ୟାତନାମା ଆଲୋଚକ ଓ ସମୀକ୍ଷକମାନେ କିଶୋରୀ ଚରଣଙ୍କ ସାହିତ୍ୟ ସମୀକ୍ଷା କରିଛନ୍ତି । ଏହି ସମୀକ୍ଷାଗୁଡ଼ିକ ସଂପୃକ୍ତ ପୁସ୍ତକ ପ୍ରକାଶନ କାଳରେ ବିଭିନ୍ନ ପତ୍ରପତ୍ରିକାର ପୃଷ୍ଠା ମଣ୍ଡନ କରିଥିଲା । ସାକ୍ଷାତକାର ଉପସ୍ଥାପନାରେ ବହୁ ଯଶସ୍ୱୀ ସାରସ୍ୱତସ୍ରଷ୍ଟାମାନେ ଆମକୁ ସହଯୋଗ କରିଛନ୍ତି । ତାଙ୍କ ପ୍ରସ୍ତୁତ ଓ ପ୍ରକାଶିତ ସାକ୍ଷାତକାରଗୁଡ଼ିକୁ ସ୍ଥାନିତ କରିବା ପାଇଁ ସେମାନେ ଆମକୁ ସଦୟ ସ୍ୱୀକୃତି ଦେଇଛନ୍ତି ।

ମୋର ପତ୍ନୀ ଶ୍ରୀମତୀ ବିଦ୍ୟୁତ୍ ମଂଜରୀ ପ୍ରଧାନ ଓ ଶ୍ରଦ୍ଧେୟ ଛାତ୍ର ଶ୍ରୀ ବାସୁଦେବ ଦାସ ପ୍ରମୁଖଙ୍କ ସାହାଯ୍ୟ ଓ ସହଯୋଗରେ ଗ୍ରନ୍ଥଟି ସର୍ବାଙ୍ଗ ସୁନ୍ଦର ହୋଇପାରିଛି ।

ଓଡ଼ିଶା ବୁକ୍ ଷ୍ଟୋର୍‌ର ସ୍ୱତ୍ୱାଧିକାରୀ ଓଡ଼ିଶାର ବିଶିଷ୍ଟ ପ୍ରକାଶକ ଶ୍ରୀ ଗୋବିନ୍ଦ ଚରଣ ପାତ୍ର ଓ ତାଙ୍କର ସୁପୁତ୍ର ଉଦୀୟମାନ ପ୍ରକାଶକ ଶ୍ରୀ ବିଜୟ ଶଙ୍କର ପାତ୍ର ଆମର ଏହି ସ୍ୱପ୍ନକୁ ସାକାର କରିଛନ୍ତି ।

ଏହି ଅବସରରେ ସମସ୍ତଙ୍କୁ ଗଭୀର କୃତଜ୍ଞତା ସହ ଧନ୍ୟବାଦ ଜଣାଉଛି ।

ଗ୍ରନ୍ଥଟି ପାଠକୀୟ ଶ୍ରଦ୍ଧା ଓ ସ୍ୱୀକୃତି ଲାଭ କଲେ ଆମର ଶ୍ରମ ସାର୍ଥକ ହେବ ।

୧୫, ଅଗଷ୍ଟ ୨୦୦୪ **ବିଜୟାନନ୍ଦ ସିଂହ**



# ସୂଚୀ

## ପ୍ରଥମ ଭାଗ

## ଆତ୍ମଜୀବନୀ : ସମୟ ନାହିଁ





## ଦ୍ୱିତୀୟ ଭାଗ

## କିଶୋରୀ ଚରଣ ସାହିତ୍ୟକୃତି : ସୂଚନା, ସଂଳାପ ଓ ସମୀକ୍ଷା

# ସ୍ମରଣ କରୁଛି.......

*ମୋର ସ୍ୱର୍ଗୀୟ 'ବୁଢ଼ାବାପା' ବୋଲାଉଥିବା ଜେଜେବାପା ଭିକାରୀ ଚରଣ, ଯେ ମୋର ଶିଶୁଜୀବନକୁ ଆଙ୍କୁଡ଼ି ଧରିଥିଲେ, ସ୍ନେହସିକ୍ତ ସକରୁଣ ହାତଟିଏ ବଢ଼ାଇ ସଂତେ ସାଥୀଟିଏ ମିଳିଗଲା ପରି ତାଙ୍କ ନିଃସଂଗ ଓ ଦୁଃଖଦ ସଂଜବେଳକୁ, ମୁଁ ତାଙ୍କୁ ହିଁ ପ୍ରଥମେ ସ୍ମରଣ କରୁଛି, ଏବଂ କହୁଛି ଶୁଣନ୍ତୁ କଣ ହେଲା ତା'ପରେ, ମୁଁ ବଡ଼ ହେଲା ପରେ ଏବଂ ଲୋଡୁଛି ଆପଣଙ୍କର ଆଶୀର୍ବାଦ ଓ ସହାନୁଭୂତି ମୋର ଏଇ ସଂଜବେଳିଆ ଉଦ୍ୟମ ପାଇଁ —*

ସ୍ନେହାଧୀନ ନାତି
**କେଶବ**

# ଉପକ୍ରମଣିକା

କିଶୋରୀ ଚରଣ ନାମକ ଜଣେ ବ୍ୟକ୍ତିର ସାହିତ୍ୟରେ କିଛି ବୈଶିଷ୍ଟ୍ୟ ଥାଇପାରେ ହୁଏତ, କିନ୍ତୁ ତା ଜୀବନଚରିତରେ କ'ଣଟା ଅଛି ଯାହାକୁ ପ୍ରକାଶ କଲେ ଭଲ ହେବ ବୋଲି କହୁଛନ୍ତି ? ମଧ୍ୟ ସେହି ଜୀବନର ଯେଉଁ ସଂପର୍କ ଅଛି ତା ସାହିତ୍ୟ ସାଙ୍ଗରେ ତାହା ଏତେ କ୍ଷୀଣ ଏବଂ ଆନୁଷଂଗିକ ଯେ ଦୁଇଟିକୁ ଏକାଠି କରି ଦେଖିବା ବିଭ୍ରାନ୍ତିକର ହେବ ବୋଲି ଭାବୁନାହାନ୍ତି ? କିଶୋରୀଚରଣ ସାହିତ୍ୟକୃତି : ସୂଚନା, ସଂଳାପ ଓ ସମୀକ୍ଷା ନାମକ ଗୋଟିଏ ସଂକଳନ ପ୍ରକାଶ କରିବା ପରିପ୍ରେକ୍ଷୀରେ ମୁଁ ଏହିପ୍ରକାର ପ୍ରତିରୋଧ କରି ଚାଲିଥିଲି ଅନେକ ଦିନ ଯାଏଁ ଉଦ୍ୟୋକ୍ତାଙ୍କ ସନିର୍ବଂଧ ଅନୁରୋଧର । କିନ୍ତୁ ଶେଷକୁ ପାରିଲି ନାହିଁ । ତାଙ୍କ ଯୁକ୍ତି ହେଲା ଏଇ ଯେ, ଆଜ୍ଞା, ଯେକୌଣସି ସାହିତ୍ୟ ପଛରେ ତାକୁ ରଚନା କରିଥିବା ମଣିଷଟିର କିଛି ହେଲେ ମୂଲ୍ୟ ଅଛି ନା ନାହିଁ ? ତା'ର ଜୀବନ ଯେତେ ସର୍ବସାଧାରଣ ହେଉ ନା କାହିଁକି, ସେ କ'ଣ ସେଇ ସାହିତ୍ୟର ଜନକ ନୁହେଁ ? ସେହେତୁ ଆମର ସେତିକି ମଧ୍ୟ ଲୋଡ଼ା, ତାର ସାହିତ୍ୟକୃତିକୁ ଆହୁରି ଭଲ ଭାବରେ ଜାଣିବା ପାଇଁ । ଆମର ଏଇ ଚାହିଦା କ'ଣ ଏତେ ସାରଶୂନ୍ୟ ? ଇତ୍ୟାଦି । ଯାହାହେଉ ସେଇମାନେ ଜିତିଲେ; ଅପରାଜେୟ ତରୁଣବଂଧୁ ଡକ୍ଟର ବିଜୟାନନ୍ଦ ସିଂହ, ଯେ କି ଉପରୋକ୍ତ ଗ୍ରନ୍ଥର ସଂକଳକ ଓ ସଂପାଦକ ଏବଂ ତାଙ୍କୁ ସମର୍ଥନ କରୁଥିବା ଅନେକ ସାହିତ୍ୟପ୍ରେମୀ ଶୁଭେଚ୍ଛୁଗଣ । ତେଣୁ ମୁଁ ଲେଖି ବସୁଛି ଏଇ ସ୍ମୃତିଗତ କାହାଣୀ, ତାର ମୂଲ୍ୟ ଯାହା ହେଉ ପଛକେ ।

ତେବେ ମୋ ଜୀବନ ଓ ସାହିତ୍ୟ ଭିତରେ ସଂପର୍କ ବିଷୟରେ ମୋତେ ମୂଳରୁ କିଛି କହିବାକୁ ପଡ଼ିବ, ମୋ ନିଜର ଅବବୋଧକୁ ନେଇ । ମୁଁ ତାର କିଂଚିତ୍ ସୂଚନା ଦେଇଛି ମୋର 'ଅକୁହା କାହାଣୀ' ନାମକ ଲେଖାରେ ଯାହା ମୋର ପ୍ରବଂଧ ସଂକଳନ 'ଲେଖକର ଦୁଃଖ'ରେ ସ୍ଥାନିତ ହୋଇଛି । ଯେମିତିକି ସଂପର୍କର ଘେର, ଗହୀର ଓ ଜ୍ୟାମିତିରେ କିଛି ଭୁଲ ନ ହୁଏ ପାଠକପାଠିକାମାନଙ୍କ ମନରେ, କେଉଁ ଆବିଷ୍କାରର ଆନନ୍ଦ ପାଇବାକୁ ଯାଇ । ମୋର ନିବେଦନ ମାତ୍ର ଏତିକି :

— ମୋର ଅନୁଭୂତିଗୁଡ଼ିକ ଅବଶ୍ୟ ରଂଗାଇଥିବ ମୋର ସାହିତ୍ୟକୁ, କିନ୍ତୁ ତାହା ନିଃସନ୍ଦେହରେ ଆଂଶିକ । କେଉଁଠି ଊଣା ତ କେଉଁଠି ଅଧିକ, ସେକଥା ଭିନ୍ନ । ହେଲେ ଯେଉଁଠି ତାହା ନିଶ୍ଚିତରେ ଅଧିକ ବୋଲି ଦିଶି ଯାଉଛି ମୋତେ, ମୁଁ ତାର ସୂଚନା ନିଶ୍ଚୟ ଦେବାକୁ ଚେଷ୍ଟା କରିବି ମୋର ଏଇ ଉପାଖ୍ୟାନରେ । ଏବଂ ତାକୁ ନିଃସନ୍ଦେହରେ ମୋର ଗଳ୍ପର ମୂଳାଧାର ବୋଲି

କହିବାକୁ ହେବ । କିନ୍ତୁ ମୁଁ ଯାହା ଅନ୍ୟତ୍ର କହିଛି ମୋ ସୃଜନର ଅନ୍ୟ ଦୁଇଟି ଉତ୍ସ ହେଲା ନିରୀକ୍ଷଣ (Observation) ଏବଂ କଳ୍ପନା (Imagination) । ଏବଂ ଯେହେତୁ ମୋ ଜୀବନ ମଧ୍ୟବିତ୍ତ ଶ୍ରେଣୀର ଜଣେ ତଥାକଥିତ ଉଚ୍ଚବର୍ଗ ସରକାରୀ କର୍ମଚାରୀ ଜୀବନ, ମୋର ପ୍ରତ୍ୟକ୍ଷ ଅନୁଭୂତିର ପରିସର ସୀମିତ ବୋଲି କହିଲେ ଭୁଲ୍ ହେବ ନାହିଁ । ତେଣୁ ନିରୀକ୍ଷଣ ଓ କଳ୍ପନା ମୋତେ ବୋଧହୁଏ ଉଚିତରୁ ଅଧିକ ଖୋରାକ୍ ଯୋଗାଇଛି ମୋ କାହାଣୀକୁ ଗଢ଼ି ତୋଳିବା ଦିଗରେ । ଏମିତି ହେବା ସ୍ୱାଭାବିକ ଏବଂ ସେଥିରେ କିଛି ଯାଏ ଆସେ ନାହିଁ ବୋଲି ସୁପ୍ରସିଦ୍ଧ ଲେଖକ ଉଇଲିୟମ୍ ଫକ୍‌ନର୍ କହିଛନ୍ତି । ଧନ୍ୟବାଦ । ଯାହାହେଉ ଏହି କାରଣରୁ ମୁଁ ମୋର ଯେଉଁ ଅନୁଭୂତ ସତ୍ୟକୁ ରୂପାୟିତ କରିବାକୁ ଚାହିଁଛି ମୋର ସାହିତ୍ୟରେ, ବିଶେଷତଃ ମୋର ଗଳ୍ପ ଉପନ୍ୟାସରେ (ମୋର ଆବେଗଧର୍ମୀ କବିତା କତିପୟ ଭିନ୍ନ ଧାତୁରେ ଗଢ଼ା) ତାକୁ ମୋର ସଂଭାବିତ ଅନୁଭୂତିର ସତ୍ୟ ବୋଲି ମଣିବା ଉଚିତ । ତେଣୁ ଦୟାକରି ଅଂକ ମିଳେଇବାକୁ ଚେଷ୍ଟା କରନ୍ତୁ ନାହିଁ ମୋ ଜୀବନରେ ଘଟିଥିବା ଏହିଭଳି ଗୋଟିଏ ଘଟଣା ଅଥବା ଚରିତ୍ରକୁ, ମୋ ଜୀବନରେ ଆସିଥିବା ଏହିଭଳି ଗୋଟିଏ ମଣିଷ ସାଙ୍ଗରେ, ସେଥିରେ ବାସ୍ତବତାକୁ ସତେ ଚିହ୍ନି ନେଇ ପାରିଲା ପରି । ସେଭଳି 'ଇଉରେକା' ଉପଭୋଗ୍ୟ ହୋଇପାରେ କିନ୍ତୁ ଅଧିକାଂଶରେ ତାହା ତମକୁ ଭୁଲ୍ ବାଟରେ ନେଇଯିବା ବିଚିତ୍ର ନୁହେଁ । କାରଣ ଯଦିଓ ମୋ ସାହିତ୍ୟର ସଂପର୍କ ରହିଛି ମୋର ତତ୍‌କାଳୀନ ପରିବେଶ, ଆଖିଦେଖା ଅବା ଅନୁଭୂତ ଘଟଣା ଏବଂ କେଉଁ ଚିହ୍ନା ଲୋକ ସହିତ, ତାହା ଏକାଧିକ ଚେନାଏ ଚିରୁଡ଼ାଏ ଚରିତ୍ର ଯୁକ୍ତ ଘଟଣାର ସଂମିଶ୍ରଣ, ତଦୁପରି ବିସ୍ତୃତ କଳ୍ପନା ଓ ନିରୀକ୍ଷଣରୁ ଉଦ୍‌ଭୁତ ପାତନ । ଏବଂ ଶେଷକୁ ଏକ ଅପୂର୍ବ ଅନୁଭୂତ ସଂଭାବିତ ସତମିଛର ସଂଭାର, ଯାହା ମୁଁ ଥାଡ଼ିଦେଲି ମୋର ଆଶାୟୀ ପାଠକପାଠିକାମାନଙ୍କ ବୌଦ୍ଧିକ ଉପଭୋଗ ପାଇଁ । କିନ୍ତୁ କ୍ଷମା କରିବେ ମୁଁ ତାକୁ ଏମିତି କାଇଦାରେ ପ୍ରସ୍ତୁତ କରିଛି ଯେ ମୋର ବିଶ୍ୱାସ ସେମାନେ ତାକୁ ନିଛକ୍ ସତକଥା ବୋଲି ଭାବିବେ । ଆଜ୍ଞା, ଏଇ ତ ହେଉଛି ଲେଖକୀୟ ଶଠତା ଓ ବାହାଦୂରୀ ! ଅବଶ୍ୟ ମୁଁ ସେଦିଗରେ କେତେଦୂର ସଫଳ ହୋଇପାରିଛି ତାର ବିଚାର ଆପଣମାନଙ୍କ ଉପରେ ।

ଆଉ ଗୋଟିଏ ବିଚିତ୍ର କଥା । ମୋର ଏମିତି କେତେଗୁଡ଼ିଏ ଗପ ଅଛି ଯେଉଁଥିରେ ଥିବା ଚରିତ୍ର, ଘଟଣା ଅବା କଥାବସ୍ତୁର ଚେନାଏ ଚିରୁଡ଼ାଏ ବି ଦୃଶ୍ୟ ହୁଏ ନାହିଁ ମୋର ସ୍ମୃତି ପଟରେ । ତାର ଗୋଟିଏ ଉଦାହରଣ ଦେଇଥିଲି ମୋର 'ଅକୁହା କାହାଣୀ' ନାମକ ପ୍ରବଂଧରେ । ମୋର 'ବିଧର୍ମୀ' ନାମକ ଗପ, ଯାହା ଇଂରାଜୀ ତଥା ଅନେକ ଭାରତୀୟ ଭାଷାରେ ଅନୂଦିତ ହୋଇ ସର୍ବଭାରତୀୟ କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଛି । ସେଇ ଗପର ପୃଷ୍ଠଭୂମି କଲିକତା, ଟ୍ରାମ୍‌ଗାଡ଼ି, ଜଣ୍ଡେଇବାଲା, ଓଗେରଙ୍କୁ ବେଶ୍ ଚିହ୍ନି ହୁଏ ମୋର ଅନୁଭୂତି ଜରିଆରେ । କିନ୍ତୁ କଥାବସ୍ତୁର ନାୟକନାୟିକା ଏବଂ ତା'ର କ୍ରମକୁ ମୋତେ ଠଉରେଇ ହୁଏ ନାହିଁ । ଯଦିଓ ଲେଖକୀୟ ବକ୍ତବ୍ୟ ସୁସ୍ପଷ୍ଟ ଏବଂ ମୋରି ଭାବଭାବନାରୁ ଉଦ୍‌ଭୁତ । କେମିତି ଏମିତି ହେଲା ? କଳ୍ପନା କ'ଣ ଏତେ

ସ୍ୱୟଂଭୂ ଏବଂ କାର୍ଯ୍ୟକାରୀ ହୋଇପାରେ ? ମୁଁ ତା'ର ଉତ୍ତର ଦେଇ ପାରିବି ନାହିଁ । ତେବେ ଏଇଠି ମନେ ପଡ଼ିଯାଏ ଔପନ୍ୟାସିକ ଇ.ଏମ୍.ଫୋଷ୍ଟର୍‌ଙ୍କ ଗୋଟିଏ ମଂତବ୍ୟ । କହିଲେ ଯେ ବେଳେବେଳେ ପାତ୍ରଟିଏ ଲେଖକର ଅଚେତନକୁ, ମାନେ ତା ମନଗହନର କେଉଁ ଅତଳତଳକୁ ଚାଲିଯାଏ । ଠିକଣା ବସ୍ତୁଟିଏ ଆଣିଦେବ ବୋଲି ତାର ସୃଜନ ପାଇଁ । କିନ୍ତୁ ନିଜେ ଲେଖକ ତ ବେମାଲୁମ୍ ଥାଏ ସେ ବିଷୟରେ, କେଉଁ ସମୀକ୍ଷକ ତାର ସଂଧାନ ପାଇବ କେମିତି ? ଯଦି ତା' ସତ ହୋଇଥାଏ (ମନସ୍ତତ୍ତ୍ୱବିଦ୍‌ମାନେ କିଛି କହିପାରିବେ ହୁଏତ ଦୃଢ଼ତାର ସହ) ତାହେଲେ ମୋର 'ବିଧର୍ମୀ' ଏବଂ ଅନ୍ୟ କେତୋଟି ଗଳ୍ପରେ ସେମିତି କିଛି ଘଟି ନ ଥିବ ବୋଲି କିଏ କହିବ ?

ଶେଷକୁ ପଦୁଟିଏ କୁହେ ଏଇ 'ସମୟ ନାହିଁ' ଶିରୋନାମା ବିଷୟରେ । ଏଥିପାଇଁ ମଧ୍ୟ ବିଜୟାନନ୍ଦଙ୍କୁ ଦାୟୀ କରିବାକୁ ପଡ଼ିବ । କାରଣ ଯେତେବେଳେ ମୋର ମନକୁ ଆସିଲା ଯେ ଅବସର ଉତ୍ତାରୁ ମିଳିଥିବା ଜୀବନକୁ 'ସମୟ ନାହିଁ' ନାମକ ଅଧ୍ୟାୟରେ ଅଭିହିତ କଲେ ଭଲ ହେବ ପରା, ମୋର ସେତେବେଳର ଆହୁରି ଅଧିକ ଲେଖିବାର ଆତୁରତାକୁ ଦୃଷ୍ଟିରେ ରଖି, ଏବଂ ମୁଁ ସେ ବିଷୟରେ କିଛି କହିଲି ତାଙ୍କୁ, ସେ ହଠାତ୍ କହି ଉଠିଲେ ଗୋଟିଏ ଆଲୁଅ ଦିଶିଗଲା ପରି– ସାତ୍ ଖାଲି ସେଇ ଶେଷ ଅଧ୍ୟାୟଟିକୁ କାହିଁକି, ପୂରା ଆତ୍ମଜୀବନୀକୁ ସେଇ ଆଖ୍ୟା ଦେଲେ ଭଲ ହୁଅନ୍ତା ନାହିଁ ? ତାହାହିଁ ଆପଣଙ୍କର ଅନ୍ୟତମ 'ଅନୁଭୂତ ସତ୍ୟ' ନୁହେଁ କି ? କଥାଟା ଭୁଲ ନୁହେଁ ବୋଲି ମୁଁ ଭାବିଲି ଏବଂ ତାଙ୍କର ପରାମର୍ଶକୁ ମାନି ନେଲି ।

ଯାହାହେଉ ଏଣିକି ଶୁଣନ୍ତୁ ମୋର ଜୀବନ ଚରିତ । ସହଜେ ତାର ମୂଳାଧାର ହେଉଛି ମୋର ସ୍ମୃତି । ମଧ୍ୟ ତାର ସାଙ୍ଗକୁ କିଛି ନୋଟ୍‌ବୁକ୍ ଓ ଡାଏରୀ ।

ମହାବିଷୁବ ସଂକ୍ରାନ୍ତି
୨୦୦୪

**କିଶୋରୀ ଚରଣ ଦାସ**



# ସ୍ମୃତିଶୂନ୍ୟ ସକାଳ

ହେଲେ ମୂଳରୁ ଗୋଟିଏ ସ୍ମୃତିଶୂନ୍ୟ ସକାଳ । ଏବଂ ତାହା ଅନ୍ୟତମ ଅପରିହାର୍ଯ୍ୟ ମଣିଷଦଶା । କେଉଁ ମହାମାନବ ତାର ସ୍ମୃତିକୁ ଆହ୍ୱାନ କରି କହିପାରିବ ନାହିଁ ଯେ ତାର ଆଖିଦେଖା ସଂସାରଟା ଏମିତି ଦିଶୁଥିଲା ସେ ଜନ୍ମ ହେଲାବେଳେ । ଲୋକମାନେ ଏମିତି ଖୁସି ହେଉଥିଲେ ତାର ବକଟେନାକୁ ନାଲି ସରସର ଚେହେରାକୁ ଦେଖି, ଯେତେବେଳେ ସେ କୁଆଁ କୁଆଁ ହୋଇ ପୃଥିବୀ କଂପେଇ ଦେଲା । ''ଜନମିଲୁ ଯେବେ ଜନମନ ହରି, କାଂଦିଲୁ ତୁ ହସିଲା ଦୁନିଆଁ'', ନାମକ ଗୀତକୁ ରୂପାୟିତ କଲା ପରି । ହେଲେ ମୋର ଦୃଢ଼ ବିଶ୍ୱାସ ଯେ ମୁଁ ଜନମନକୁ, ମାନେ ଉପସ୍ଥିତ ଜ୍ଞାତିକୁଟୁମ୍ବଙ୍କ ମନକୁ କେତେଦୂର ହରଣ କରି ପାରିଥିଲି ଭଗବାନ୍ ଜାଣନ୍ତି, କିନ୍ତୁ ମୋ ବାପାବୋଉଙ୍କ ଆନନ୍ଦର ସୀମା ନ ଥିବ ମୁଁ ଜନ୍ମ ହେଲି ଯେତେବେଳେ । କାରଣ ମୁଁ ଥିଲି ତାଙ୍କର ପ୍ରଥମ ସନ୍ତାନ । ବାପା ଡେରିରେ ବାହା ହୋଇଥିଲେ - ସେ କାଳର ଦୃଷ୍ଟିଭଙ୍ଗୀ ଅନୁଯାୟୀ - ଯେତେବେଳେ ତାଙ୍କୁ ପ୍ରାୟ ତିରିଶ ବର୍ଷ । ଏବଂ ଶୁଣିବା କଥା ଯେ ଅନେକ ଦିନ ଯାଏଁ ନାହିଁ ନାହିଁ କଲା ପରେ ସେ ପାଖ ଗାଆଁ ଧର୍ମାଗଡପୁରର ଗୋଟିଏ ଅଠରବର୍ଷର ଝିଅକୁ ଦେଖି, ବିଚାରାଧୀନ ସେଇ ପ୍ରସ୍ତାବଟିକୁ ରାଜି ହୋଇଯାଇଥିଲେ । ଆଉ ମୁଁ ଥିଲି ତାଙ୍କ ଜୀବନର ପହିଲି ସୃଷ୍ଟି । ତେଣୁ ଦୁଃଖ ଯେ ମୁଁ ତାଙ୍କର ସେଇ ଯଥାର୍ଥ ଆନନ୍ଦର ରଂଗରୂପକୁ ଦେଖିଥିଲେ ମଧ ମନେ ରଖିପାରି ନାହିଁ । କିନ୍ତୁ ରୁହନ୍ତୁ, ଆହୁରି ଅଛି । ମୁଁ ବାପାବୋଉଙ୍କ ମନରେ ଯେଉଁ ଆଶଙ୍କା ଆଣି ଦେଇଥିଲି, ଯେଉଁଥିରେ ତାଙ୍କ ଉଲ୍ଲସିତ ହୃଦୟ ଦୁକୁଦୁକୁ ହେଉଥିବ, କବିଗୁରୁ ରବୀନ୍ଦ୍ରନାଥଙ୍କ 'ସ୍ୱର୍ଗ ହତେ ବିଦାୟ'ରେ ପୃଥିବୀକୁ ଫେରିଆସୁଥିବା ଶିଶୁ ପାଇଁ କେଉଁ ଜନନୀର ସଂଭାବିତ 'ପେୟେଛି ଯାହାରେ ତାକେ କଖନ ହାରାଇ'ର ଆଶଙ୍କାଠାରୁ ଅନେକ ଅଧିକ । ସେଇ ଆଶଂକାୟିତ ମହାନଂଦର ଛବି ତାଙ୍କ ମୁହଁରେ, ତାଙ୍କ ଚାହାଣୀରେ, ତାଙ୍କ ଅର୍ଦ୍ଧସ୍ଫୁଟ ତୁ' ତୁ' ଜାତୀୟ ସଂବୋଧନରେ, ମୋ ଦେହକୁ ଛୁଉଁ ନ ଛୁଉଁଣୁ ତାଙ୍କ ଦେହକୁ ଆସୁଥିବା ଶିହରଣରେ, ଆଃ ! ସେଇ ଦୃଶ୍ୟଟିକ ମନେ ଥିଲେ ମୋତେ ଆହୁରି କେତେ ସାର୍ଥକତା ମିଳି ନ ଥାଆନ୍ତା ମୋର ବଂଚି ରହିବାରେ ? ଯେ ମୁଁ ତାଙ୍କ ଆଶଙ୍କାକୁ ଅମୂଳକ ବୋଲି ପ୍ରମାଣିତ କରି ଦେଇପାରିଲି, ଏବଂ ସତସତିକା 'ବୁଢ଼ା'ଟିଏ ହେଲି ତାଙ୍କରି ଆଖି ଆଗରେ, ସେମାନେ ପୃଥିବୀରୁ ବିଦାୟ ନେଲା ପୂର୍ବରୁ ?

ସେଇ ଆଶଙ୍କାର କାରଣ ହେଉଛି ଏଇ ଯେ ମୁଁ ଥିଲି ଗୋଟିଏ 'ପ୍ରିମାଚ୍ୟୁଓର୍ ବେବି'। ଗର୍ଭରେ ସାତମାସ ରହୁ ନ ରହୁଣୁ ଜନ୍ମ ହୋଇ ପଡ଼ିଥିଲି। ତେଣୁ ନାଲି ସରସର ହେବା ଛଡ଼ା ମୁଁ ଏତେ ବକଟେନାକୁ ହୋଇଥିଲି, କୁଆଡ଼େ ବାପାଙ୍କ ହାତମାପରେ ଚାଖଣ୍ଡେ ମାତ୍ର, ଯେ ବାପାବୋଉଙ୍କ ଛଡ଼ା ଉପସ୍ଥିତ ସମସ୍ତ ଶୁଭାକାଙ୍କ୍ଷୀ ଜ୍ଞାତିକୁଟୁମ୍ବ କେତେ ଯେ ଚିନ୍ତିତ ହେଉଥିବେ ଶିଶୁଟିର ବଂଚି ରହିବା ପାଇଁ (ଦୀର୍ଘଜୀବନ ପର କଥା), ତା' ସହଜେ ଅନୁମେୟ।

ଆଉ ଗୋଟିଏ ଦୃଶ୍ୟ ରଚିତ ହୋଇଥିବ ମୋ ଜନ୍ମବେଳକୁ। ସେତିକି ଅନ୍ତତଃ ମୋ ସ୍ମୃତିର ସକାଳ ହୋଇଥାଆନ୍ତା କି ? ତାର କିଛି ବିଶେଷତ୍ୱ ନ ଥିଲା ସେତେବେଳେ ଦେଖଣାହାରୀଙ୍କ ପାଇଁ। ମୁଁ ମଧ୍ୟ ଏତେ ଆତୁର ହୋଇ ଲୋଡ଼ୁ ନ ଥାଆନ୍ତି ତାକୁ, ଯଦି ମୁଁ କାଳକ୍ରମେ କଲମ ଧରି ସାହିତ୍ୟ ଲେଖିବାର ଲୋଭ କରି ନ ଥାଆନ୍ତି।

ସଂଭାବିତ ଦୃଶ୍ୟଟି ହେଉଛି ଏଇ ଯେ ଉପରୋକ୍ତ ଦୟନୀୟ ଶିଶୁ ତାର ମିଂଜିମିଂଜି ଆଖିର ଚାହାଣୀରେ ଅନେଇଥିବ ତାକୁ ହାତରେ ତୋଳି ଧରିଥିବା ଜଣେ ତରୁଣୀ ଡାକ୍ତରାଣୀଙ୍କୁ ଏବଂ ସେ ଉଦ୍‌ବିଗ୍ନ ବାପାବୋଉଙ୍କୁ ହସହସ ହୋଇ କିଛି ଗୋଟିଏ ଅଭୟବାଣୀ ଶୁଣାଉଥିବେ, ଯାହା ଉପସ୍ଥିତ କ୍ଷେତ୍ରରେ ଆଶା କରାଯାଏ। ଯଥା - କିଛି ଚିନ୍ତା ନାହିଁ ବିପ୍ରବାବୁ ! ଇଏ ପୃଥିବୀର ପ୍ରଥମ ପ୍ରିମାଚିଓର ବେବି ନୁହେଁ। ମୂଷାଛୁଆ ପରି ଦିଶୁଛି ସିନା, କିନ୍ତୁ ପିଲାଟା ପୂରାପୂରି ନର୍ମାଲ୍। ମୁଁ ଯାହା ଦେଖି ସାରିଲିଣି ତାକୁ ପରୀକ୍ଷା କରି। ତେଣୁ ମୋର ପୂର୍ଣ୍ଣ ବିଶ୍ୱାସ ସେ ବଂଚି ରହିବ। ବଂଚି ରହିବ, ଆଉ ବଡ଼ ହେବ।

କିନ୍ତୁ ସେଇ ତରୁଣୀ ଜଣକ କେବଳ ଜଣେ ସଦ୍ୟ ଏଲ୍.ଏମ୍.ପି. ପାସ୍ କରି କଟକରେ ପ୍ରାକ୍ଟିସ୍ ଆରମ୍ଭ କରିଥିବା ଡାକ୍ତରାଣୀ ନ ଥିଲେ। ସେ ଥିଲେ ସ୍ୱନାମଧନ୍ୟା ଲେଖିକା ଡଃ କୁନ୍ତଳା କୁମାରୀ ସାବତ। ଏକ ଅଦ୍‌ଭୁତ ସ୍ୱାଧୀନଚେତା ଲେଖିକା, ଯେ ଓଡ଼ିଆ ସାହିତ୍ୟରେ ନାହିଁ-ନଥିବା ଚମକ ସୃଷ୍ଟି କରି ଦେଇ ଗଲେ। ମୁଁ ଯେବେ ଶୁଣିଲି ସେକଥା ବାପାବୋଉଙ୍କ ଠାରୁ, ସେତେବେଳକୁ ମୁଁ ଅଳ୍ପବହୁତ ଲେଖାଲେଖି ଆରମ୍ଭ କରି ସାରିଲିଣି। ଆଉ ଶୁଣିଲାକ୍ଷଣି ମୋ ଛାତିଟା କେମିତି କୁଣ୍ଢେ ମୋଟ ହୋଇ ଯାଇଥିବ, ତା'କଣ ମୋର ପ୍ରତ୍ୟେକ ଲେଖକ ଭାଇଭଉଣୀମାନେ ବୁଝିପାରୁ ନଥିବେ ? ସେଇଲାଗି ମୁଁ ଯେଉଁ ଦୃଶ୍ୟଟିକୁ କଳ୍ପନା କରି କହିଲି, ସେଥିରେ ମୋର ଯୋଡ଼ି ଦେବାକୁ ଇଚ୍ଛା ହୁଏ ଯେ ବାପାବୋଉଙ୍କୁ ଅଭୟବାଣୀ ଶୁଣାଇବା ଛଡ଼ା, ମୋତେ ବି ସେ କିଛି ଦେଇ ଯାଇଥିବେ, ହୁଏତ ତାଙ୍କ ଅଜାଣତରେ, ତାଙ୍କ ପ୍ରାଣଶକ୍ତିରୁ ଧାପେ, ଯେଉଁଥିପାଇଁ ମୋର ବି ଲେଖକୀୟ ଯନ୍ତ୍ରଣା ଭୋଗିବା ଛଡ଼ା ଅନ୍ୟ ଉପାୟ ନ ଥିଲା। ଏହି ମହୀୟସୀ ନାରୀଙ୍କ ସହିତ ମୋର ଆଉ ସାକ୍ଷାତ ହୋଇ ନାହିଁ। ହେଲେ ସେହି ବିସ୍ମୃତ ପହିଲି ସାକ୍ଷାତକୁ ମୁଁ ପରମ ଭକ୍ତି ଓ ଶ୍ରଦ୍ଧାର

ସହ ବଂଚେଇ ରଖିବାକୁ ଚାହିଁଛି, ଏବଂ ବିଳମ୍ବରେ ହେଉ ପଛେ ତାଙ୍କୁ ମନେ ପକେଇଛି ମୋର ପଂଚଦଶ ଗଳ୍ପସଂକଳନ ''ଅରୁଚିଏ''ର ଉତ୍ସର୍ଗ ପତ୍ରରେ ।

ଛାଡ଼ନ୍ତୁ, ମୋର ସ୍ମୃତିର କେଉଁ ସକାଳ ନାହିଁ । କୈଶୋରର ଯେଉଁସବୁ ଖାପ୍‌ଛଡ଼ା ଝାପ୍‌ସା ଦୃଶ୍ୟ ମନେ ରହିଛି, ଏବଂ ମୁଁ ତାକୁ ସଯତ୍ନରେ ସାଇତି ରଖିଛି, ମୁଁ କହିବି ସେକଥା ପରେ । ତେଣୁ ଏଇକ୍ଷଣି ପ୍ରଥମେ ବାଢ଼ି ଦେଉଛି କେତୋଟି ତଥ୍ୟ ମୋର ତଥାକଥିତ 'ଆବିର୍ଭାବ'କୁ ନେଇ । ତାପରେ କହିବି କେଇଟା ଶୁଣାକଥା, ଶିଶୁ କିଶୋରୀଚରଣ ବିଷୟରେ, ତାକୁ ଆପଣ ବିଶ୍ୱାସ କରନ୍ତୁ ବା ନ କରନ୍ତୁ ।

ମୁଁ ଭୂତପୂର୍ବ ଜିଲ୍ଲା ଜଜ୍ ସ୍ୱର୍ଗୀୟ ବିପ୍ରଚରଣ ଦାସ ଏବଂ ସ୍ୱର୍ଗୀୟା ସୀତାମଣି ଦେବୀଙ୍କ ପ୍ରଥମ ସନ୍ତାନ, ଏବଂ ପହିଲା ମାର୍ଚ୍ଚ ୧୯୨୪ର 'ପ୍ରାତଃକାଳରେ' ଜନ୍ମ ହୋଇଥିଲି, ମାତୃଗର୍ଭରେ ରହିବାର ସାତମାସ ପୂରା ନ ହେଉଣୁ । ଜନ୍ମସ୍ଥାନ-ଖଟବିନ୍ ସାହି, କଟକ । କିନ୍ତୁ ବର୍ତ୍ତମାନ ମୁଁ ଯେଉଁଠି ରହିଛି ମୋ ଶେଷ ଜୀବନରେ, ଖଟବିନ୍ ସାହିର ଗୋଟିଏ ଗଳିରେ ମୁଣ୍ଡ ଟେକିଥିବା ଦି'ମହଲା କୋଠା 'ବିପ୍ରଚରଣ ଭବନ', ସେଠି ନୁହେଁ । ମେନ୍ ଖଟବିନ୍ ସାହି ରାସ୍ତାରେ ଯେଉଁ ଛୋଟିଆ ନାଳି ଘରଟିଏ ଅଛି, ସୂତାହାଟ ଆଡ଼କୁ ଯିବା ରାସ୍ତାର ମୋଡ଼ରେ, ସେଇଠି । ବର୍ତ୍ତମାନ ସେଇ ଘରଟି ମୋର ସାନଭାଇ ପ୍ରଫେସର ରେବତୀଚରଣ ଦାସଙ୍କ ଭାଗରେ ପଡ଼ିଛି, ପୈତୃକ ସଂପତ୍ତିର ଭାଗବଣ୍ଟଆରା ସୂତ୍ରରେ । ଯାହା ବାପା କରିଯାଇଥିଲେ ତାଙ୍କ ବଂଚିଥିଲା ବେଳେ । ଘରଟି ଥିଲା ଗୋଟିଏ ବଡ଼ କୋଠାର ଅଂଶ, ବାପା ବଡ଼ବାପାମାନଙ୍କର ଯୌଥ ସଂପତ୍ତି । କିନ୍ତୁ ବର୍ତ୍ତମାନ ସେଇ ବଡ଼କୋଠାର ଅନ୍ୟ ସମସ୍ତ ଅଂଶ ବିକାଭଂଗା ହୋଇ ସର୍ବଶ୍ରୀ ତତ୍ତ୍ୱକଂଦର ମିଶ୍ର, ଖଣ୍ଡକ୍ଷୀରୋଦ ମିଶ୍ର ଓ ଦଣ୍ଡନିରୋଧ ମିଶ୍ରଙ୍କ ସଂପତ୍ତି ବୋଲି ମୋତେ ଜଣା ।

କିନ୍ତୁ ଆମ ଆଦିଭୂମି ହେଉଛି କଟକ ଜିଲ୍ଲା ମାହାଙ୍ଗା ବ୍ଲକ୍‌ରେ ଥିବା ଶୁକ୍ଳେଶ୍ୱର ଗାଆଁ । ବାପା ସେଇଠି ଜନ୍ମ ହୋଇଥିଲେ । ସେଇ ତଳପକ୍କା ଚାଳଘର ଖଣ୍ଡିକ ଗତ ପ୍ରଳୟଂକାରୀ ବାତ୍ୟାରେ ଭୁଷୁଡ଼ି ପଡ଼ିଛି, କିନ୍ତୁ ତା'ର ଉପଯୁକ୍ତ ପୁନର୍ନିର୍ମାଣ ଆମ ଭାଇମାନଙ୍କ ଯୋଜନାରେ ରହିଛି । ବାପାଙ୍କ ଉତ୍ତରାଧିକାରୀ ସୂତ୍ରରେ ଆମେ ଚାରିଭାଇ (ଜଣେ ଚାଲିଗଲାଣି ଇତି ମଧ୍ୟରେ) ମଧ୍ୟ ଶୁକ୍ଳେଶ୍ୱର ଏବଂ ଆଖପାଖରେ ଥିବା କିଛି ଚାଷଜମି ଓ ପଡ଼ିଆ ଜମି, ତଥା ମାମୁଁଘର ଗାଆଁ ଧର୍ମାଗତପୁରରେ ଥିବା ବଗିଚାଘର ଜାତୀୟ ଗୋଟିଏ ଛୋଟ ପକ୍କା ଘରର ଅଧିକାରୀ । ଏବଂ ଆମେ ଗାଆଁକୁ ଯାଉ ମଝିରେ ମଝିରେ, ସେସବୁଥିର ଯଥାବିଧି ଆମଦାନୀମୂଳକ ବ୍ୟବସ୍ଥା କରିବା ଲାଗି, ଯେତେଦୂର ସଂଭବ । ଆମର ଗୁମାସ୍ତାଟିଏ ସେଠି ଅଛି, ଆମର ପ୍ରତିନିଧି ହିସାବରେ ।

କେବଳ ବୈଷୟିକ ସ୍ୱାର୍ଥ ଦୃଷ୍ଟିରୁ ଯେ ଆମେ ଗାଆଁକୁ ପରିତ୍ୟାଗ କରିପାରି ନାହୁଁ, ତା ନୁହେଁ । ଅନ୍ତତଃ ମୋର ନିଶ୍ଚିତ ଅନୁଭବରେ ଅଛି ଯେ ସେଇ ମୋର ଆଦିଭୂମି,

ଯଦିଓ ମୁଁ ସେଠି ଜନ୍ମ ହୋଇନାହିଁ କି ମୋ ପିଲାଦିନ ସେଠି କଟି ନାହିଁ । ପିଲାଦିନର ସ୍ମୃତିରେ ଭରି ରହିଛି ଏଇ ଖଟବିନ୍ ସାହିର ଘରଖଣ୍ଡକ ଯାହାର ଭିତ୍ତିଭୂମି ମୋ ଜେଜେବାପାଙ୍କର କୃତି, ଏଇ ଗଳି ଏବଂ ଏଇ ହତଶ୍ରୀ, ହେଲେ ଐତିହାସିକ, 'କଟକ ସହର ଧବଳ ଟଗର' ଯାହାକୁ ମୋର ଏକାଧିକ ଗଳ୍ପ ବରଣ କରିଛି ତାର ପୃଷ୍ଠଭୂମି ହିସାବରେ । ତଥାପି ରହିଛି ଏକପ୍ରକାର ମୋହ, ମୋର ଆଦିଭୂମି ପ୍ରତି । ଏପରିକି ମୁଁ ସୁଯୋଗ ପାଇଲେ କହିବାକୁ ଭୁଲେ ନାହିଁ, ମୋର ବଂଧୁମାନଙ୍କୁ, ଯେ ଆମ ଗାଆଁରେ ଏହିସବୁ ମହିମାନ୍ୱିତ ବସ୍ତୁ ରହିଛି, ଯଥା - ଆମ ଭଗବତୀ ଠାକୁରାଣୀ, ଯେ ଏବେ ଦଶଭୁଜା ଦୁର୍ଗା ହୋଇଥିବେ ପରା ବୋଲି ମନେ ହେଉଛି, ଏବଂ ମାଣିକେଶ୍ୱର ମନ୍ଦିରର ଭଗ୍ନାବଶେଷ, ଯାହାର ପଥର ଖଣ୍ଡମାନଙ୍କରେ ଥିବା କାରୁକାର୍ଯ୍ୟ କୋଣାର୍କ ମନ୍ଦିରର ଭାସ୍କର୍ଯ୍ୟ ସହିତ ତୁଳନା କରାଯାଇପାରେ .... ଇତ୍ୟାଦି ।

ହଁ, ଏଇସବୁ ବସ୍ତୁ ରହିଛି ସେଠି, ଯାହା ଇତିହାସବିଦ୍ ଏବଂ ଗବେଷକମାନଙ୍କ ଦୃଷ୍ଟିକୁ ଆସିଛି । ମାଣିକେଶ୍ୱର ମନ୍ଦିରର ଭାସ୍କର୍ଯ୍ୟକୁ ନେଇ ବିଶେଷ ବିସ୍ମୟାନଂଦର ବିଷୟ ହେଉଛି ଏଇ - ପାଖ ମ୍ୟୁଜିୟମ୍‌ରେ ସଂରକ୍ଷିତ ମୂର୍ତ୍ତିମାନଙ୍କ ଉପରେ ଲେଖା ଯାଇଥିବା ଗବେଷଣାଗତ ଟୀପ୍‌ପଣୀରୁ ଯାହା ଦେଖିବାକୁ ମିଳେ - ଯେ ସେଗୁଡ଼ିକ କୋଣାର୍କ ମନ୍ଦିର ଗଢ଼ା ହୋଇଥିବା ସମୟର ନୁହେଁ, ତାର ପାଖାପାଖି ଶତାବ୍ଦୀର ମଧ ନୁହେଁ, ତାଠାରୁ ଅନେକ ଅଧିକ ପୁରୁଣା । ତେଣୁ ତାକୁ ନେଇ ଗର୍ବ କରିବା ଛଡ଼ା ଦୁଃଖ ମଧ୍ୟ ଆସେ ମନରେ ଯେ ଏଇ ତଥ୍ୟବିଶେଷର ଯଥେଷ୍ଟ ଗବେଷଣା ହୋଇନାହିଁ ବୋଧହୁଏ, ଯେଉଁଥିରୁ ଜଣାପଡ଼ିଥାଆନ୍ତା ଯେ ଆମ ଓଡ଼ିଶାର ମନ୍ଦିରଗତ ଭାସ୍କର୍ଯ୍ୟ ଆହୁରି ଅନେକ ପୁରାତନ, ତେଣୁ ଏହି ଅଂଚଳ ତତ୍‌କାଳୀନ କେଉଁ ବିଶିଷ୍ଟ ସଭ୍ୟତା- ସଂସ୍କୃତିର ପରିଚାୟକ । ସେଇଠୁଁ ମୋ ଛାତି ଯଥାର୍ଥରେ ଆହୁରି ଟିକିଏ ଫୁଲି ଉଠିଥାଆନ୍ତା, ମୋ ଆଦିଭୂମିକୁ ନେଇ !

ଏହା ମଧ୍ୟ ସତ ଯେ ଅନେକ ମହାନ୍ ବ୍ୟକ୍ତି ଜନ୍ମ ହୋଇଛନ୍ତି ଏହି ଅଂଚଳରେ । ଆଦି ନାଟ୍ୟକାର ଜଗମୋହନ ଲାଲା, ଗଣକବି ବୈଷ୍ଣବ ପାଣି, ସମାଜ ସଂସ୍କାରକ ପ୍ୟାରୀମୋହନ ଆଚାର୍ଯ୍ୟ, ପଲ୍ଲୀକବି ନନ୍ଦକିଶୋର, ଶିଳ୍ପୀ ବିଦ୍ୟାଧର ବର୍ମା, ବାଗ୍ମୀ ବିଶ୍ୱନାଥ କର ଓଗେର । ମଧ କୁହାଯାଏ - ଗବେଷଣାର ନିଷ୍କର୍ଷ ନ ହେଲେ ମଧ ଗ୍ରହଣଯୋଗ୍ୟ ସୂଚନା - ଯେ ଆମର କେତେକ ପିତୃପୁରୁଷ ଏଇ ଭୂଇଁରୁ ଯାଇଛନ୍ତି ଢେଙ୍କାନାଳର ରାଜବଂଶ ଏବଂ ଖୋର୍ଦ୍ଧାର ଭୋଇ ରାଜାଙ୍କ ଦେୱାନ୍ ପରିବାରରେ ସାମିଲ୍ ହେବା ପାଇଁ । ଏହି ସଂକ୍ରାନ୍ତରେ ଜଣେ ଗବେଷକଙ୍କ ଦ୍ୱାରା ଗୋଟିଏ ଦୀର୍ଘ ଆଲୋଚନାର ଫର୍ଦ ମଧ ରହିଛି ମୋ ପାଖରେ ।

କିନ୍ତୁ ମୋର ଆଦିଭୂମି ପ୍ରବଣତା ଏହିପ୍ରକାର ଗର୍ବ ଉପରେ ପ୍ରତିଷ୍ଠିତ ନୁହେଁ । ଅନ୍ୟତମ ସର୍ବସାଧାରଣ ଗାଆଁ ହୋଇଥିଲେ ମଧ ମୁଁ ତାକୁ ଆମ ଗାଆଁ ବୋଲି କହି ଖୁସି ହେଉଥାଆନ୍ତି ଏଥିରେ ସନ୍ଦେହ ନାହିଁ । ସତେକି ମୁଁ କହିବାକୁ ଚାହେଁ ଯେ ମୁଁ ଗୋଠଖଣ୍ଡିଆ

ନୁହେଁ, ମୋର ବି ଗୋଟିଏ ନିଜ ଗାଆଁ ଅଛି, ଏବଂ ମୋର ଗଭୀର ଆତ୍ମୀୟତା ଅଛି ତା' ସହିତ । ମୋ ବେଳର ତଥା ମୋ ପରବର୍ତ୍ତୀ ଯେତେକ ସୁବିଦିତ ଲେଖକଲେଖିକା, 'ପଲ୍ଲୀଶ୍ରୀ'ର ସଚି ରାଉତରାଏ, 'ମାଟିମଟାଳ'ର ଗୋପୀନାଥ ମହାନ୍ତି, 'ଅଭିଶପ୍ତ ଗଂଧର୍ବ'ର ମହାପାତ୍ର ନୀଳମଣି ସାହୁ, କବି ସୀତାକାନ୍ତ ମହାପାତ୍ର, କଥାକାର ମନୋଜ ଦାସ, ପ୍ରତିଭା ରାୟ ଓଗେର, ଯେଉଁମାନେ ତାଙ୍କ ବାଲ୍ୟକୈଶୋରର ପଲ୍ଲୀଗତ ପ୍ରାଣକୁ ସ୍ମରଣ କରନ୍ତି ଏବଂ କୁହନ୍ତି ଯେ ତାହାହିଁ ତାଙ୍କ ସାହିତ୍ୟର ମୂଳାଧାର, ସେମାନଙ୍କ ପ୍ରାଣ ଏତେ ଭିନ୍ନ ନୁହେଁ ମ ମୋଠୁଁ ? ହେଲା ଏବେ ମୁଁ ଗାଆଁରେ ଜନ୍ମ ହୋଇନାହିଁ କି ବଢ଼ି ନାହିଁ ... ।

ହଁ, ଏହିପ୍ରକାର ଭାବଟିଏ ହୁଏତ ଥିବ ମୋ ମନରେ, ମୋ ଲେଖକପଣିଆକୁ ନେଇ । କିନ୍ତୁ ମୋଟ ଉପରେ ତାହା ଏକ ରୋମାଣ୍ଟିକ୍ ଏବଂ ସ୍ୱପ୍ନିଳ ମନୋଭାବ, ଯାହାର କାରଣ ଭିନ୍ନ ଏବଂ ଯାହାର ସମ୍ପର୍କ ନାହିଁ ମୋ ଲେଖକପଣିଆ ସାଙ୍ଗରେ । ତାକୁ ବୋଧହୁଏ ବେଶି ଭଲ ଭାବରେ ବୁଝାଇ ପାରିବେ ମୋ 'ନିଜସଂଜ' ଗପର ନାୟକ ଗୋପାଳବାବୁ । ସେ ଯାଇଛନ୍ତି ତାଙ୍କ ଗାଆଁକୁ ଅନେକ ଦିନ ପରେ, ଯେଉଁଠି ସେ ଜନ୍ମ ହୋଇନଥିଲେ କି ବେଶୀ ଦିନ ରହି ନଥିଲେ କେବେହେଲେ । ଏବେ ଆସିଛନ୍ତି ଗୋଟିଏ ବୈଷୟିକ କାମର ଆବଶ୍ୟକତାକୁ ଏଡ଼ାଇ ଦେଇ ନ ପାରି । ହେଲେ ତାଙ୍କୁ ଭଲ ଲାଗୁଛି । ଏଇକ୍ଷଣି ସେ ବସି ରହିଛନ୍ତି ବିଲର ଗୋଟାଏ ହିଡ଼ ଉପରେ, ଏବଂ ତାଙ୍କ ଆଡ଼କୁ ଗୁରୁଣ୍ଡି ଗୁରୁଣ୍ଡି ଆସୁଥିବା ଗୋଟିଏ ଲଂଗଳା ପିଲାକୁ ଅନେଇଛନ୍ତି । ଏଣିକି ଶୁଣନ୍ତୁ ତାଙ୍କ ମନର କଥା -

" ... ମୁଁ ଯାହା ଆଡ଼କୁ ଅନେଇଛି ସେ ମୋ ପିଲା ନୁହେଁ । ମୋ ପିଲାର ପିଲା ନୁହେଁ, ମୋର କେହି ନୁହେଁ । ଏବଂ ତା' ହସରେ ହସ ମିଳାଇଲା ବେଳେ ମୋର ଯେଉଁ ଆନନ୍ଦ ଆସୁଛି, ସେଥିରେ ମମତ୍ୱର ଧାପେ ନାହିଁ - ମମତ୍ୱର ମମତା, ତହୁଁ ପୀଡ଼ା, ଉଦ୍‌ବେଗ, ସୁଖଦୁଃଖର ଗଣ୍ଡଗୋଳ । ପରୋକ୍ଷରେ ମଧ୍ୟ ନାହିଁ, କେଉଁ ସ୍ମୃତିର ଜରିଆରେ, ଯାହା ମୋ ମନକୁ ଚହଲେଇ ଦେବ, କି ମୁଁ ତାକୁ ଆଂକୁଡ଼ି ଧରିବି ।

ସ୍ମୃତି ନାହିଁ । ହଁ, ସେଇ ହେଉଛି ଅସଲ କଥା । ସେଇଲାଗି ଏଇ ଉନ୍ମୁକ୍ତ ଆନନ୍ଦ । ଏଠିକାର ଖୋଲା ପବନ ପରି, ଯେଉଁଥିରେ ଧୂଳି ନାହିଁ କି ଧୂଆଁ ନାହିଁ । ଧୂଆଁ ଥିଲେ ଥିବ ହୁଏତ, କିନ୍ତୁ ତାର ରଂଗ କି ଗଂଧ ପବନରେ ଲାଖି ଯାଉନାହିଁ । ଆପଣା ବିସ୍ମୃତିରେ ଭାସି ଭାସି ଯାଉଛି, ଏଇ ଆଗଚଲା ପାଜିର ହସ ପରି । ତେଣୁ ଅନୁଭବର ଦାଗଟିଏ ଛାଡ଼ିଯିବ ବୋଲି ଡରିବାର ନାହିଁ ... ।"

ମାନେ ଯେଉଁ ସାମାନ୍ୟ ସ୍ମୃତି ରହିଛି ତାଙ୍କର, ଏଇ ଗାଆଁକୁ ନେଇ, ଯେଉଁଠିକି ସେ ଆସିଥିଲେ ଥରେ ଅଧେ ତାଙ୍କ ପିଲାବେଳେ, ସେଇ ଅନୁଭବର ଆବେଶକୁ ବେଶ୍ ମିଶେଇ ଦେଇ ହେବ ଆଜିର ଆନନ୍ଦ ସାଙ୍ଗରେ । କାରଣ ସେଇ ଅନୁଭବରେ କଣ୍ଟାଥୁଣ୍ଟା

ନାହିଁ, ଯେଉଁଥିରେ ତାଙ୍କ ଚେତନା ଲାଖିଯିବ । ଏହି ଭାବରେ ଗୋପାଳବାବୁ ତାଙ୍କର 'ନିଜସଂଜ' ଏଇ ଗାଆଁରେ, ତାଙ୍କର ଏଇ 'ନିଜ' ଗାଆଁରେ ରଚିତ ହେଉ ବୋଲି କାମନା କରିଥିଲେ । ସେଇଠୁ କଣ ହେଲା ମୋ ଗପରୁ ଜାଣିବେ ।

ଆଉ କିଛି ପଚାରନ୍ତୁ ନାହିଁ । ମୁଁ ମୋଟେ ମାନିବାକୁ ରାଜି ନୁହେଁ ଯେ ମୁଁ ଗୋପାଳବାବୁଙ୍କୁ ମୋରି ଛାଂଚରେ ଗଢ଼ିଛି ଓ ତାଙ୍କୁ ଉସ୍‌କେଇଛି ମୋର ମନ କଥା କହିବା ଲାଗି । ତେବେ ମୋର ଆଦିଭୂମିପ୍ରବଣତା ପଛରେ ଏଭଳି ଏକ ଫ୍ୟାଣ୍ଟାସିର ଧାପେ ହେଲେ ନାହିଁ ବୋଲି କହି ହେବ ନାହିଁ ।

ଯାହାହେଉ ମୁଁ ଯେ ତଥାପି 'ମୋ ଗାଆଁ'ର ଅନୁଭବକୁ ମୁଠେଇ ଧରିଛି, ତାର ସମସ୍ତ ସଂଭାବିତ କାରଣ ବାଢ଼ିଦେଲି ଆପଣଙ୍କ ଆଗରେ । ମୋର ଆଉ କିଛି କହିବାର ନାହିଁ । ଖାଲି ଏତିକି ଯୋଡ଼ିଦେଲେ ହେବ ଆପଣଙ୍କର ଅବଗତି ପାଇଁ, ଯେ ମୁଁ ଏଇ ଦି'ପଦ ଲେଖିଛି ମୋର ଷଷ୍ଠ ଉପନ୍ୟାସ 'ତୁମ ଆମ ଶତାବ୍ଦୀ'ର ଉତ୍ସର୍ଗ ପତ୍ରରେ । ଲେଖିଛି -

''ଜୀବନର ସଂଧ୍ୟାରେ ମୋର ପୂଜ୍ୟ ପୂର୍ବପୁରୁଷମାନଙ୍କୁ ଏବଂ ଆଦିଭୂମି ଶୁକ୍ଳେଶ୍ୱର ଗାଆଁର ଐତିହ୍ୟକୁ ସ୍ମରଣ କରି, ଗ୍ରାମଦେବୀ ମାଆ ଭଗବତୀଙ୍କ ପାଦତଳେ ମୋର ଏଇ ଷଷ୍ଠ ଉପନ୍ୟାସଟିକୁ ଉତ୍ସର୍ଗ କଲି । ଏବଂ ତାଙ୍କର ଆଶୀର୍ବାଦ ଭିକ୍ଷା କରୁଛି ମୋର ଦାୟାଦମାନଙ୍କ ପାଇଁ ।''

ବର୍ତ୍ତମାନ ଚାଲନ୍ତୁ ଅଳ୍ପବହୁତ ଚିହ୍ନେଇ ଦେବି ମୋର ସ୍ମରଣରେ ଥିବା ନିକଟ ପୂର୍ବପୁରୁଷମାନଙ୍କୁ ଯେଉଁମାନଙ୍କ ପାଇଁ ଏଇ ଶୁକ୍ଳେଶ୍ୱର ଗାଆଁ ଅନେକ ଅଧିକ ଅନ୍ତରଂଗ ଥିଲା । ଯଦିଓ ସେମାନଙ୍କ ବଂଶଧରମାନେ ମଧ୍ୟ କାଳକ୍ରମେ ଦୂରେଇ ଯାଇଛନ୍ତି ତା'ଠୁଁ ।

ଶୁକ୍ଳେଶ୍ୱର ନିବାସୀ ଅନାମ ଦାସ ଥିଲେ ମୋ ଜେଜେବାପାଙ୍କ ବାପା । ତାଙ୍କ ବିଷୟରେ ବିଶେଷ କିଛି ଜଣାନାହିଁ ମୋତେ, ତେବେ ବଂଶବୃକ୍ଷର ବିବରଣୀ ସେଇଠୁଁ ଆରମ୍ଭ କଲେ ସୁବିଧା । ଏବଂ ତାହାହିଁ ଯଥେଷ୍ଟ ବୋଲି ମୋର ମନେ ହୁଏ ମୋର ବଂଶଗତ ଦୋଷଗୁଣର ଅନୁମାନ କରିବା ଲାଗି । ତାଙ୍କର ତିନିପୁଅ - ଦାମୋଦର, ଭିକାରୀଚରଣ ଏବଂ ରାଜକିଶୋର । ଯେଉଁମାନେ ପ୍ରଥମେ ସହରକୁ ଆସି ଉଚ୍ଚଶିକ୍ଷା ଲାଭ କଲେ ଏବଂ ସେବେକର ବିଭିନ୍ନ ସରକାରୀ ଚାକିରୀରେ ପଶିଯାଇପାରିଥିଲେ, ଏମାନେ ସେହି ଉଚ୍ଚାଭିଳାଷୀମାନଙ୍କ ମଧ୍ୟରେ ଅଗ୍ରଣୀ ଥିଲେ ବୋଲି କହିଲେ ଭୁଲ୍ ହେବ ନାହିଁ । ଅବସର ନେଲା ବେଳକୁ ଦାମୋଦର କଟକ ଜଜ୍‌କୋଟ୍‌ର ଜଣେ ବଡ଼ବାବୁ ହୋଇଥିଲେ, ଭିକାରୀଚରଣ ଥିଲେ ସବ୍‌ଡେ଼ପୁଟି କଲେକ୍ଟର ଏବଂ ରାଜକିଶୋର ଥିଲେ ସ୍କୁଲ ଇନ୍‌ସ୍‌ପେକ୍ଟର୍ । ଏବଂ ଏମାନଙ୍କ ପିଲାମାନେ ଆହୁରି ଉଚ୍ଚଶିକ୍ଷିତ ହୋଇ ଆହୁରି ବଡ଼ ହୋଇପାରିଲେ ସେଥିପାଇଁ ଏମାନଙ୍କୁ ମଧ୍ୟ ଧନ୍ୟବାଦ ଦେବା ଉଚିତ । ଦାମୋଦର ଦାସଙ୍କ ବଡ଼ପୁଅ ରାୟବାହାଦୂର

ରାଧାଚରଣ ଦାସ ଥିଲେ ଦ୍ୱିତୀୟ ଓଡ଼ିଆ ଜିଲ୍ଲା ମାଜିଷ୍ଟ୍ରେଟ୍ ଓ କଲେକ୍ଟର, ଦୟାନିଧି ଦାସଙ୍କ ପରେ । ମଧ୍ୟ ଅବସର ଉତ୍ତାରୁ ସେ ବିହାର, ଓଡ଼ିଶା ଏବଂ ସେଣ୍ଟ୍ରାଲ୍ ପ୍ରଭିନ୍ସ୍ ପାଇଁ ଗଠିତ ସଂଯୁକ୍ତ ଲୋକସେବା ଆୟୋଗ (Joint Public Service Commission)ର ସଦସ୍ୟ ଥିଲେ । ଦ୍ୱିତୀୟ ପୁଅ ହରେକୃଷ୍ଣ ଦାସ ରେଭେନ୍ସା କଲେଜର ଗଣିତ ଅଧ୍ୟାପକ ଥିଲେ । ତୃତୀୟ ପୁଅ ନିଶାମଣି ପିଉସାଙ୍କ ପୋଷ୍ୟପୁତ୍ର ହୋଇ ମୟୂରଭଂଜ ଚାଲିଗଲେ ଏବଂ ତହସିଲ୍‌ଦାର୍ ହେବା ଛଡ଼ା କରଂଜିଆ ଅଂଚଳର ଜଣେ ବିଶିଷ୍ଟ ଭୂମ୍ୟଧିକାରୀ ବୋଲାଇଲେ । ଚତୁର୍ଥ ଓ ସବାସାନ ପୁଅ ଥିଲେ ମୋର ବାପା ବିପ୍ରଚରଣ । ସେ କଲିକତାର ପ୍ରେସିଡ଼େନ୍ସି କଲେଜରୁ କୃତିତ୍ୱର ସହ ଏମ୍.ଏ. ଏବଂ ତାପରେ କଲିକତା ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ବି.ଏଲ୍. ପାସ୍ କରି ପ୍ରାୟ ବର୍ଷେ ଓକିଲାତି କଲା ପରେ ''ବିହାର ଏଣ୍ଡ ଓଡ଼ିଶା ଜୁଡ଼ିସିଆଲ୍ ସର୍ଭିସ୍''ରେ ଯୋଗ ଦେଇଥିଲେ । ତାଙ୍କ ପ୍ରଥମ ପୋଷ୍ଟିଂଗ୍ ହୋଇଥିଲା ଗୟାରେ, ମୁନ୍‌ସିଫ୍ ପଦବୀରେ । ଅବସର ନେଲାବେଳକୁ ସେ କଟକର ଜିଲ୍ଲା ଜଜ୍ ହୋଇ ସର୍ଭିସ୍‌ର ଉଚ୍ଚତମ ପାହ୍ୟା ସିଲେକ୍‌ସନ୍ ଗ୍ରେଡ୍‌ରେ ଥିଲେ । ଅବସର ପରେ ସେ "Arbitrator, Hirakud Dam Project, Land Acquisition" ଭାବରେ ନିଯୁକ୍ତ ହୋଇଥିଲେ, ଏବଂ ସରକାରୀ ବିଜ୍ଞପ୍ତି ଅନୁଯାୟୀ ସେଇ ପଦବୀ ହାଇକୋର୍ଟ ଜଜ୍‌ଙ୍କ ପାହ୍ୟା ସହିତ ସମାନ । ତାପରେ ସେ "Industrial Disputes Tribunal" ର ଅଧକ୍ଷ ହୋଇ ରହିଥିଲେ, ତାଙ୍କୁ ୮୨ ବର୍ଷ ହେବା ଯାଏଁ । ଏହି ଚାରିଭାଇରେ ଜଣେ ସବାସାନ ଭଉଣୀ ଥିଲେ । ତାଙ୍କ ନାଆଁ ଉର୍ମିଳା ଏବଂ ସେ ଜୟପୁର ଗାଆଁର କାର୍ତ୍ତିକଚନ୍ଦ୍ର ଦାସଂକୁ ବିବାହ କରିଥିଲେ । ଅନାମ ଦାସଙ୍କ ଦ୍ୱିତୀୟ ପୁଅ ଭିକାରୀଚରଣ ତାଙ୍କର ଏକମାତ୍ର ସନ୍ତାନକୁ ହରାଇଲା ପରେ ମୋ ବାପାଙ୍କୁ ପୋଷ୍ୟପୁତ୍ର କରି ନେଇଥିଲେ । ତୃତୀୟ ପୁଅ ରାଜକିଶୋରଙ୍କ ଦୁଇପୁଅ ଥିଲେ - ଶ୍ୟାମାଚରଣ ଓ ବାମାଚରଣ । ଶ୍ୟାମାଚରଣ ଜଣେ ଆଡ୍‌ଭୋକେଟ୍ ଥିଲେ । ଏବଂ ବାମାଚରଣ ଇଂଲାଣ୍ଡର୍ ଅକ୍‌ସ୍‌ଫୋଡ୍ ବିଦ୍ୟାଳୟରୁ ଗଣିତରେ ଏମ୍.ଏ. ପାସ୍ କରି ଯଥାକ୍ରମେ ରେଭେନ୍ସା କଲେଜର ଅଧ୍ୟାପକ, ଶିକ୍ଷା ବିଭାଗର ନିର୍ଦ୍ଦେଶକ (ଡି.ପି.ଆଇ), ଏବଂ ଅଳ୍ପ କିଛି ଦିନ ପାଇଁ ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ନିଯୁକ୍ତ ହୋଇଥିଲେ ।

ଅନାମ ଦାସଙ୍କ ଠାରୁ ଆରମ୍ଭ କରି ମୋର ବାପା ଦାଦା ବଡ଼ବାପାଙ୍କ ଯାଏଁ ଏଇ ହେଲା ମୋଟାମୋଟି ମୋ ନିକଟ ପୂର୍ବପୁରୁଷମାନଙ୍କ ବାୟୋଡ଼ାଟା । ତାଙ୍କ ଜୀବନ ଚରିତର ସୂଚନା ସେଥିର କିଛି ପ୍ରଭାବ ପଡ଼ିଛି କି ମୋ ଉପରେ ?

ପଡ଼ି ନଥିବ କେମିତି ? ଗାଆଁରୁ ଚାଲି ଆସି ଭଲ ପାଠ ପଢ଼ି ବୃହତ୍ତର କ୍ଷେତ୍ରରେ ସଫଳତାର ବାନା ଉଡ଼ାଇଥିବା ଜେଜେ ତିନିଭାଇ ଓ ତାପରେ ମୋ ବାପାଦାଦା ବଡ଼ବାପାମାନେ ପ୍ରାୟ ସମସ୍ତେ ଥିଲେ ସରକାରୀ ଚାକିରୀଆ । କିଏ କେତେ ଉପରକୁ ଯାଇପାରିଥିଲା ସେକଥା

ଭିନ୍ନ । ତେଣୁ ବଂଶର ପରଂପରାରେ ବାଣିଜ୍ୟବ୍ୟବସାୟର ନାଆଁଗଂଧ ନଥିଲା । ଓକିଲ ଶ୍ୟାମଦାଦାଙ୍କ ଛଡ଼ା କେହି ମଧ କୌଣସି ସ୍ୱାଧିନ ବୃତ୍ତିର ଆଗ୍ରହୀ ହୋଇ ନଥିଲେ । ଏବଂ ରାଜନୀତି, ବିଶେଷତଃ ସେବେଳର ଦୁର୍ବିନୀତ ସ୍ୱାଧିନତାକାମୀ ରାଜନୀତିର ପାଖ ମାଡ଼ି ନଥିଲେ ସେମାନେ । ବୋଧହୁଏ ଏଇ ଉଚ୍ଚପଦସ୍ଥ ସରକାରୀ ଚାକିରିଆଙ୍କ ବଂଶ ବିଶେଷ ସୁଦୃଶ୍ୟ ଥିଲା ସେତେବେଳର ମଧ୍ୟବିତ୍ତ ସମାଜରେ । ନହେଲେ 'ବଂଦୋବସ୍ତ ପାଲା' ନାମକ ଗୋଟିଏ ପୁସ୍ତିକାରେ କେଉଁ ବଡ଼ ରାଜସ୍ୱ ବଂଦୋବସ୍ତରେ କାମ କରିଥିବା ଲୋକଙ୍କ ବିଷୟରେ କିଛି କିଛି କହିବାକୁ ଯାଇ, ଗୀତିକାର ମୋ ବାପାଙ୍କ ବିଷୟରେ ଏଇ ଦି'ଧାଡ଼ି ଲେଖି ନ ଥାଆନ୍ତେ ପ୍ରଥମରୁ -

ହାକିମ ହୁକୁମା ଯହିଁଛନ୍ତି କେତେ ଜଣ
ସେହି ବଂଶୁ ଆସିଅଛ ହେ ବିପ୍ରଚରଣ ...

ଏହି ପରମ୍ପରା କଣ ମୋ ମୁଣ୍ଡରେ ବସା ବାନ୍ଧି ନ ଥିବ ଯେ ସ୍ୱଭାବତଃ ମୁଁ ଏଇ ସରକାରୀ ଚାକିରୀ ପାଇଁ ଯୋଗ୍ୟ ? ବେଶି ଭଲ ପାଠ ପଢ଼ିଲେ ହୁଏତ ବେଶି ଭଲ ଚାକିରୀ ମିଳିବ । ବାସ୍ ! କିନ୍ତୁ ସେଇ ସିଧା ଲାଇନ୍‌ରୁ ଓହରିଯିବା ଉଚିତ ହେବ ନାହିଁ । ହୁଏତ ଏଇ ପରଂପରାବୋଧ ଖାପ୍ ଖାଇଗଲା ମୋର ସୁସ୍ଥିବାଦୀ ମାନସିକତା ସାଙ୍ଗରେ, ସେକଥା ଭିନ୍ନ । ଯାହାହେଉ ମୁଁ କେବେହେଲେ କେଉଁ ବୃତ୍ତି ବ୍ୟବସାୟରେ ମନ ବଳେଇ ନଥିଲି, ଏବଂ ଫାଷ୍ଟକ୍ଲାସ୍‌ରେ ବି.ଏଲ୍. ପାସ କଲା ପରେ ମଧ, ମୁଁ ଓକିଲାତି କରିବାକୁ ଚାହିଁଲି ନାହିଁ ମୋଟେ, ତାର କାରଣ କଣ ବୁଝିପାରୁଥିବେ ।

ଆଜିର ବାତାବରଣରେ ଏଇ ଚାକିରିଆ ମନୋବୃତ୍ତି, ବିଶେଷତଃ ସୁବିଧାଜନକ ସରକାରୀ ଚାକିରୀରେ ଗଡ଼ି ଗଡ଼ି ଯିବାର ପ୍ରବଣତାକୁ ପ୍ରଶଂସାଜନକ ବୋଲି କୁହାଯିବ ନାହିଁ ନିଶ୍ଚୟ । କିନ୍ତୁ ମୋର ପରଂପରାବୋଧରେ ମଧ ଆଉ ଗୋଟିଏ ଗୁଣ ଥିଲା, ଏଇ ରାଜସେବାକୁ ନେଇ, ଯାହାକୁ ପ୍ରଶଂସା କରିବା କଥା । ତା ହେଉଛି ସଚ୍ଚୋଟପଣିଆ । ଯାହାକୁ ଦୁର୍ନୀତି ପ୍ରତି ଏକପ୍ରକାର ଭୟ ବୋଲି କୁହାଯାଇପାରେ । କେବଳ ମୁଁ ନୁହେଁ, ମୁଁ ଭାବେ ବଂଶର ଏଇ ପୀଢ଼ିରେ ଥିବା କେହି ହେଲେ ଏଇ ଭୟରୁ ମୁକ୍ତ ହୋଇ ପାରିନାହାନ୍ତି ।

ପ୍ରଥମେ ହେଲେ ମୋର ବଡ଼ବାପା ରାୟବାହାଦୂର ରାଧାଚରଣ ଦାସ । ଯେ ଏ ଦିଗରେ ଜଣେ ପ୍ରବାଦପୁରୁଷ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ବ୍ରିଟିଶ ରାଜାଙ୍କର ଏକାନ୍ତ ଅନୁଗତ ଥିଲେ । କୁଆଡ଼େ ସକାଳେ ଗାଧୋଇ ସାରିଲା ପରେ ସେ ଠାକୁରଙ୍କ ପରେ ସମ୍ରାଟ୍ ପଂଚମ ଜର୍ଜଙ୍କ ଫଟୋକୁ ମଧ ମୁଣ୍ଡିଆ ମାରୁଥିଲେ । ସେହେତୁ ଆମେ ତାଙ୍କୁ ଥଟ୍ଟା କରୁଥିଲୁ । କିନ୍ତୁ ତାଙ୍କୁ ଥଟ୍ଟା କରି ହୁଏ ନାହିଁ, ଯେତେବେଳେ କୁହାଯାଏ ଯେ ଥରେ ଟୁର୍‌ରେ କେଉଁ ଡାକବଂଗଳାରେ ରହିଥିବା ବେଳେ କେଇଟା କାଗଜିଲେମ୍ବୁ ଦରକାର ହେଲା ତାଙ୍କ

ଲେମ୍ବୁସରବତ୍ ପାଇଁ । ଏବଂ ହତାରେ ଥିବା ଲେମ୍ବୁଗଛରୁ ସେତିକ ତୋଳା ହୋଇଆସିଲା ତାଙ୍କ ପାଇଁ । କିନ୍ତୁ ସେକଥା ଜାଣିଲାରୁ ସେ ତୁରନ୍ତ ତାର ନ୍ୟାଯ୍ୟ ମୂଲ୍ୟ ପଇଠ କରିଦେଲେ ଚଉକିଦାର ପାଖରେ ଏବଂ ବଂଗଳାର ରେଜିଷ୍ଟର୍‌ରେ ମଧ ତାର ଉଲ୍ଲେଖ କରି ଆସିଲେ, ଯେପରିକି ସେଇ ଦି'ପଇସା ନିଶ୍ଚିତରେ ସରକାରୀ ତହବିଲ୍‌କୁ ଯାଏ । ମୋର ଆଉ ଜଣେ ବଡ଼ବାପା କୃପଣ ବୋଲାଉଥିଲେ । କିନ୍ତୁ କେଉଁ ଦୋକାନୀଠାରୁ ଭୁଲ୍‌ରେ ଦି'ପଇସା ବେଶି ନେଇ ଆସିଥିଲେ, ତତ୍‌କ୍ଷଣାତ୍ ଘରୁ ଫେରି ଯାଇ ତାକୁ ସେତିକି ଫେରାଇ ନ ଦେବା ଯାଏଁ ତାଙ୍କ ମନ ଶାନ୍ତ ହେଉ ନଥିଲା । ଏବଂ ମୋର ଜଜ୍ ବାପା କିଛି କମ୍ କଠୋର ନ ଥିଲେ ଏସବୁ ବିଷୟରେ । କହିବାକୁ ଗଲେ ପିଲାବେଳେ ଆମକୁ ଅଳ୍ପବହୁତ ଚିଡ଼ି ମାରୁଥିଲା ଯେତେବେଳେ ସେ କେଉଁ ଚିହ୍ନା ଗରିବ ବଂଧୁବାଂଧବଙ୍କ ପାଖରୁ ଆସିଥିବା ଭେଟିକୁ ଫେରାଇ ଦେଉଥିଲେ । କହୁଥିଲେ ଇଏ 'ଡାଲା' ହୋଇଥିବ ବୋଲି ତାଙ୍କର ମନେ ହେଉଛି । ଆମେ ବୁଝୁ ନ ଥିଲୁ ତାର ଅର୍ଥ କଅଣ ।

ଯାହାହେଉ ମୋର ଆଶା ଆଜିର ପାଠକପାଠିକାମାନେ ସହାନୁଭୂତି ଦେଖାଇବେ ମୋର ଅନେକ ଦିନ ତଳର ଗଳ୍ପ 'ଦଶହରା ଭେଟି'ର ନାୟକ ସେଇ ଟୋକା ହାକିମ ପ୍ରତି ଏବଂ କଥାଟାକୁ ଅଦ୍‌ଭୁତ ବୋଲି ଭାବିବେ ନାହିଁ ଯେତେବେଳେ ସେ ତା ପାଖରେ ପହଂଚିଥିବା କେଉଁ ଦଶରା ଭେଟିକୁ ସ୍ୱୀକାର କରି ନେଇଥିଲା ସ୍ତ୍ରୀପିଲାଙ୍କ କଥାରେ ପଡ଼ି, ହେଲେ ତାର ଦେହଟା ଥରି ଉଠିଥିଲା ସେଇ ମୂହୂର୍ତ୍ତରେ । କାହିଁକିନା ତାର ମନେ ହେଲା ଯେ ତା ବାପା ମରିଗଲେ ଏଇକ୍ଷଣି । ମାନେ ନୀତିବୋଧକୁ ନିୟନ୍ତ୍ରିତ କରୁଥିବା କେଉଁ ସୁପର୍ ଇଗୋ ବିଦାୟ ନେଲା ସବୁଦିନ ପାଇଁ ।

ତେବେ ଏଇ ବଂଶଦୋଷ ପାଇଁ ମୁଁ ମଧ ଗର୍ବିତ । ତଥାକଥିତ ବଡ଼ ହାକିମଟିଏ ହେଲା ପରେ ମୁଁ ଯେତେବେଳେ ଷ୍ଟାଫ୍‌କାରକୁ ଖୋଜେ ବାଟ ବୁଲେଇ ନିଏ, ପୋଷ୍ଟ ଅଫିସରେ ମୋର କେଉଁ ନିଜ କାମ ସାରି ଆସିବା ପାଇଁ, ସେତେବେଳେ ଯେଉଁ ଗ୍ଲାନିବୋଧ ଆସେ ମୋ ମନରେ ତାକୁ ବି ମୋ ବଡ଼େଇର ଭିନ୍ନରୂପ ବୋଲି କହିଲେ ଭୁଲ୍ ହେବ ନାହିଁ । ଯେ ଏଭଳି ଗୋଟାଏ ଭାବ ଆସୁଛି ମୋ ମନରେ, ଆଜିର ହାକିମ-ନେତା-ଭିଆଇପି ପ୍ରଧାନ ସମାଜରେ ଯେଉଁଠି ଷ୍ଟାଫ୍ କାର ବେଶି ଭାଗ ମେମ୍‌ସାହେବମାନଙ୍କର ଶପିଂଗ୍ ପାଇଁ ବ୍ୟବହୃତ ହୁଏ । ଏହି ପରିପ୍ରେକ୍ଷୀରେ ମୋତେ ବିଶେଷ ଖୁସି ଲାଗିଲା ଯେତେବେଳେ ମୋର ପିଉସୀ ପୁଅ ଭାଇ ଦିଲିଭାଇ ଓରଫ୍ ପ୍ରଦୀପ୍ତ କିଶୋର ଦାସଙ୍କ ବିଷୟରେ ଶୁଣିବାକୁ ପାଇଲି ଅନେକଙ୍କ ମୁହଁରୁ ଯେ ସେ ଗୋଟିଏ ବିଚିତ୍ର ରାଜନୈତିକ ଜୀବ, ମନ୍ତ୍ରୀଟିଏ ହେଲେ ମଧ ସେ କିଛି କରିପାରିଲେ ନାହିଁ ନିଜ ପାଇଁ । ତା ମାନେ ଭିନ୍ନ ଆବ୍‌ହାଓ୍ୱାରେ ବଢ଼ି, ରାଜନୀତିରେ ପଶି ପାରିଥିଲେ ମଧ, ସେ ବି ଏଇ ମାମୁଘରର ବଂଶଦୋଷରୁ ରକ୍ଷା ପାଇ ପାରିଲେ ନାହିଁ ।

ଖାଲି ଏତିକି ଦୁଃଖ ଜଣେ ଲେଖକ ହିସାବରେ ଯେ 'ଦଶହରା ଭେଟି' ପରି ଆଉ ଗୋଟିଏ ଗପ ଲେଖି ହେବ ନାହିଁ ଏଇକ୍ଷଣି । ସେଭଳି ପ୍ରତୀକଧର୍ମୀ ଶିହରଣର ଅବକାଶ ନାହିଁ ଆଉ, ଆଜିର ପ୍ରାକ୍ଟିକାଲ୍ ସମାଜରେ, ଯେଉଁଠି ଭୟ ଛାଡ଼ିଗଲାଣି କେଉଁ ପୁରୁଣାକାଳିଆ ଦୁର୍ନୀତି ଠାରୁ, ଯଦି ତାହା ନିଶ୍ଚିତ ଜଳଜଳ ହୋଇ ଦିଶୁ ନ ଥାଏ ।

ଯାହାହେଉ କେତୋଟି ପ୍ରାରମ୍ଭିକ ତଥ୍ୟମୂଳକ କଥା କହିବାର ଥିଲା ମୋର ସ୍ମୃତିଶୂନ୍ୟ ସକାଳକୁ ନେଇ, ଯାହା ମୋ ପରଜୀବନକୁ ପ୍ରଭାବିତ କରିଥାଇପାରେ । ମଧ୍ଯ ସେହେତୁ, ମୋର ସାହିତ୍ୟକୁ । ବର୍ତ୍ତମାନ କହିବାକୁ ପଡୁଛି କେଇଟା 'ଶୁଣାକଥା' ସ୍ମୃତିଶୂନ୍ୟତାର ବିକଳ୍ପ ହିସାବରେ । ଯେଉଁଥିରୁ ଅନୁମାନ କରିହେବ ମୋର ରୂପଗୁଣ କେମିତି ଥିଲା ସେତେବେଳେ । ଅଧିକାଂଶ କଥା ଶୁଣିଛି ବାପାବୋଉଙ୍କ ମୁହଁରୁ, ତେଣୁ ତାକୁ ବିଶ୍ୱାସ ନ କରିବାର ବାଟ ନାହିଁ ।

ମୋଟାମୋଟି ଯାହା ଶୁଣିଛି, ତା ଏହି ପ୍ରକାର -

ସାତମାସିଆ ଚାଖଣ୍ଡେ ହାତର ଶିଶୁ ତରତର ହୋଇ ବଢ଼ିବାକୁ ଲାଗିଲା । ଯଥାଶୀଘ୍ର ନର୍ମାଲ୍ ବୋଲାଇଲା । କିନ୍ତୁ, ହାୟ ! ସେତିକିରେ ରହିଗଲା ନାହିଁ । ଉଚିତରୁ ଅଧିକ ମୋଟେଇ ଗଲା, କେଉଁ ଚ୍ୟାଲେଂଜ୍‌ର ମୁକାବିଲା କରିବାକୁ ଯାଇ ସୀମା ଟପିଗଲା ପରି । ଫଳରେ ନିଜଲୋକମାନେ ତାକୁ ଆଉ ହୃଷ୍ଟପୁଷ୍ଟ ପିଲାଟିଏ ବୋଲି ପ୍ରଶଂସା ନ କରି ବେଶ୍ ଗେଧେକାଟିଏ ହୋଇଗଲାଣି ବୋଲି କହିଲେ ।

ଏବଂ ଏଇ ଗେଧେକାପଣ ଯୋଗୁଁ ଅବା ଅନ୍ୟ ଯେକୌଣସି କାରଣରୁ (ଡାକ୍ତରମାନେ ଅବଶ୍ୟ ସେମିତି କିଛି ଅବିଗୁଣ ପାଇଲେ ନାହିଁ ମୋର ମୌଳିକ ସ୍ୱାସ୍ଥ୍ୟରେ) ମୋର ପ୍ରଗତି ପଛେଇ ଗଲା । ପେଟେଇବା ଠାରୁ ଆରମ୍ଭ କରି ଚାଲିବା ଏବଂ କଥା କହିବା ଯାଏ ସବୁକିଛି ଡ଼େରି ହୋଇଗଲା । କୁଆଡ଼େ ଅଢ଼େଇ ବର୍ଷ ହେବା ଯାଏଁ ମୁଁ ଭଲ କରି ଚାଲି ପାରୁ ନ ଥିଲି । କଥାକୁହା ମଧ୍ୟ ତଦ୍ରୂପ ।

ଆଉ ମୋର ସ୍ୱଭାବ ଚରିତ୍ର ? ସେ ବିଷୟରେ ଟିକିଏ ଭାବିବାକୁ ପଡ଼େ । ବାପାବୋଉ କୁହନ୍ତି ଯେ ପିଲାଦିନେ ମୁଁ ସେମାନଙ୍କୁ ବିଶେଷ ହଇରାଣ କରି ନଥିଲି । କିନ୍ତୁ ମୋର ମନେ ହୁଏ ଯେ ଗେଧେକା ପିଲାଟାଏ ତ ସହଜେ ଚଂଚଳ ନୁହେଁ, ତେଣୁ ସେ ଚଗଲାମି କରିବ କେମିତି ? ଯାହାହେଉ ବେଶ୍ ବୁଝାପଡ଼େ ଯେ ମୁଁ ଆତ୍ମଭୋଳା ଶିଶୁଟିଏ ଥିଲି । କୁଆଡ଼େ କେଜାଣି କେତେ ସମୟ ଯାଏଁ ଖେଳୁଥାଏ ମନକୁ ମନ, କଣ୍ଢେଇଟିଏ ଧରି । ଏବଂ ଗୋଟିଏ 'କେଶବ କଣ୍ଢେଇ' ପ୍ରତି ମୋର ବିଶେଷ ଆସକ୍ତି ଦେଖି ମୋର ଜେଜେବାପା (ବାପାଙ୍କୁ ପୋଷ୍ୟପୁତ୍ର କରିଥିବା ଦାଦା ଭିକାରୀଚରଣ) ମୋ ନାଆଁ 'କେଶବ' ଦେଇଥିଲେ । ଏଇ ନାଆଁଟା କେମିତି ପରେ 'କିଶୋରୀ ଚରଣ' ହୋଇଗଲା, ତାକୁ ବୁଝିବା ଦୁଃସାଧ୍ୟ

ନୁହେଁ । 'ଚରଣ' ଶବ୍‌ଦଟିକୁ ବାପା ସଂପାଦି ରଖିବାକୁ ଚାହୁଁଥିଲେ ତାଙ୍କ ବଂଶଧରମାନଙ୍କ ପରିଚୟପତ୍ରରେ, ଯେମିତିକି ତାଙ୍କ ବଂଶର ବୈଶିଷ୍ଟ୍ୟ ବାରି ହୋଇଯିବ କାଳକାଳକୁ । ତାହା ଯେତେ ଅର୍ଥହୀନ ହେଉ ପଛେକେ, ନାଆଁର ପହିଲି ଶବ୍ଦକୁ ନେଇ । ଏଥିର ଅନେକ ଦୃଷ୍ଟାନ୍ତ ମିଳିଯାଇଛି ମୋତେ ତାଙ୍କ ନାତିମାନଙ୍କ ନାମକରଣ ପ୍ରସଂଗରେ । ସହଜେ ମୁଁ ତାଙ୍କୁ ମନେ ମନେ ଥଟ୍ଟା କରୁଥିଲି ଏବଂ ସେଇ ହାଲୁକା ବିଦ୍ରୂପ ପ୍ରତିଫଳିତ ହୋଇଛି ମୋର ପୁରୁଣା 'ପରିଚୟ' ନାମକ ଗଳ୍ପରେ, ଯେଉଁଠି ଗୃହକର୍ତ୍ତା ଅଡ଼ି ବସିଛନ୍ତି ଯେ ନାତିର ନାଆଁରେ 'ଶେଖର' ଶବ୍ଦଟି ରହିବ ହିଁ ରହିବ, ତମେ ତା ବାକୀତକ ନାଆଁ ଯାହା ଦିଅ ପଛକେ, ଏବଂ ତାଙ୍କ ସ୍ତ୍ରୀ ସ୍ୱଗତ ପ୍ରଶ୍ନ କରୁଛନ୍ତି - ବୁଢ଼ା ହେଲେ ମିଣିପେ ଏମିତି ଅବାଗିଆ ହୁଅନ୍ତି କାହିଁକି ?

ଯାହାହେଉ ଶିଶୁ କିଶୋରୀଚରଣ ଓରଫ କେଶ (ଡାକ ନାଆଁ) ବିଷୟରେ ନିର୍ଦ୍ୱଂଦରେ କୁହାଯାଇପାରେ, ବିଶ୍ୱସନୀୟ ଶୁଣାକଥା ଅନୁଯାୟୀ, ଯେ ସେ ଶାନ୍ତ ପ୍ରକୃତିର ପିଲାଟିଏ ଥିଲା । ଯେ ନିଜ ଭିତରେ ମଜ୍ଜି ଯାଇ ପାରେ ଘଣ୍ଟା ଘଣ୍ଟା ଧରି । ଏଇଥିରୁ କଣ ବୁଝିବା କଥା ଯେ ସେତିକିବେଳୁ ଜଣା ପଡୁଥିଲା ଯେ ମୁଁ ଗୋଟିଏ ଇଣ୍ଟ୍ରୋଭର୍ଟ ହେବାକୁ ଯାଉଛି, ଯେ ହୁଏତ ଗୋଟିଏ ଭୀରୁ ଲେଖକ ହୋଇପାରେ ଦିନେ, କିନ୍ତୁ ନେତା ନୈବ ଚ ନୈବ ଚ ? ହୋଇଥିବ ।

କିନ୍ତୁ ଭୁହନ୍ତୁ, ବାପାବୋଉ ମଧ୍ୟ କୁହନ୍ତି ଯେ ଏଇ ଶାନ୍ତଶିଷ୍ଟ ଶିଶୁ ବେଳେ ବେଳେ ଭୀଷଣ ଜିଦି କରୁଥିଲା, ଟିକିଏ ବଡ଼ ହେଲାରୁ । ମନା ମାନୁ ନଥିଲା ଏବଂ କହୁଥିଲା ମୋର ଏଇଟା ଦରକାର, ସେଇଟା ଦରକାର । ଏଇଟା ନିଶ୍ଚୟ କିଛି ଭଲ ଗୁଣ ନୁହେଁ । କିନ୍ତୁ ଏହି ସଂକ୍ରାନ୍ତରେ ସେ ଗୋଟିଏ ଘଟଣାର ଉଲ୍ଲେଖ କରନ୍ତି, ମୋ ଆଚରଣକୁ ଧନ୍ୟ ବୋଲି କହିଲା ପରି । କହିଲେ ଯେ ମୁଁ ଥରେ ଜିଦି କଲି, ଘରର ବାରିଆଡ଼କୁ ଯିବି ବୋଲି, ଯଦିଓ ସେତେବେଳକୁ ଅଂଧାର ହୋଇଗଲାଣି, ତେଣୁ ସେଠିକି ଯିବା ଉଚିତ ନୁହେଁ ପିଲାମାନଙ୍କର । କିନ୍ତୁ ମୁଁ ଚୁପ୍ ହେଲି ନାହିଁ । ଆହୁରି ଆହୁରି ଜୋର୍‌ରେ କାନ୍ଦିବାକୁ ଲାଗିଲି । ଶେଷକୁ ମୁଁ ଥକିଗଲି, କିନ୍ତୁ ହାର୍ ମାନିବାକୁ ଚାହିଁଲି ନାହିଁ । ଏବଂ ତାଙ୍କୁ କହିଲି କଣ ଜାଣନ୍ତି ? କହିଲି ମୋ କାଂଦଣାର ରୋଳ ଭିତରେ -

''ମୁଁ କହୁଛି ମୁଁ ବାରିକି ଯିବି, ତମେ କୁହ ବାରିରେ ବାଯା ଅଛି ...'' ଅର୍ଥାତ୍ ଏଇ ଉଚିତ କାରଣଟା ମୁଁ ବଢ଼େଇ ଦେଉଛି ତମ ଆଡ଼କୁ । ସେତିକ କହିଲେ ମୁଁ ଚୁପ୍ ହୋଇଯିବି । ତୁଛାଟାକୁ ମୁଁ ଚୁପ୍ ହୋଇ ପାରିବି ନାହିଁ, ତମେ କହୁଛ ବୋଲି ।

ଜିଦିଖୋରି ସାଂଗକୁ ନିର୍ଲଜ୍ଜ ତର୍କପ୍ରବଣତାର ନମୁନା ? ନା ସାଲିସ୍‌ବିହୀନ ବୁଦ୍ଧିବାଦୀ ପଣର ପୂର୍ବାଭାସ ଯେ ଉପଯୁକ୍ତ କାରଣ ନ ପାଇଲେ ମୁଁ କିଛି ହେଲେ ମାନିନେବାକୁ ପ୍ରସ୍ତୁତ ନୁହେଁ ? ନିଜକୁ ଇଣ୍ଟେଲେକ୍‌ଚୁଆଲ୍ ବୋଲି ମନେ କରୁଥିବା ଦୟନୀୟ ପ୍ରାଣୀର ସ୍ୱାଭିମାନ, ଯାହା ତାର ପିଲାଟି ଦିନୁ ଜଣା ପଡ଼ିଯାଉଥିଲା ? ବିଚାର ଆପଣମାନଙ୍କ ଉପରେ ।

ଯାହାହେଉ ବାପାବୋଉଙ୍କ କହିବା ଅନୁଯାୟୀ ମୋର ଜିଦିଖୋରି ଢ଼ଂଗ ଆଶ୍ଚର୍ଯ୍ୟ ଭାବରେ କମିଗଲା ମୋ ପାଠପଢ଼ା ଆରମ୍ଭ ହେଲା ବେଳକୁ । ମନେ ହେବ ଇଣ୍ଟ୍ରୋଭର୍ଟ୍ କେଶକୁ ଛପା ଅକ୍ଷରର ଅନେକ କିଛି ଉପାଦାନ ମିଳିଗଲା, ତା ପିଲାଦିନର କେଶବ କଣ୍ଢେଇ ବଦଳରେ, ଯେଉଁଥିରେ ସେ ଭୋଳ ହୋଇ ଯାଇ ପାରିଲା । ତେଣୁ ତାକୁ ଜିଦି କରିବାକୁ ପଡ଼ିଲା ନାହିଁ, ମୋତେ ଅମୁକ ସମୁକ ଆଣିଦିଅ ବୋଲି । ନା ପ୍ରକୃତରେ ମୋର ବୁଦ୍ଧି ହେଲା ଗୋଟିଏ ପାଠପଢୁଆ ବଡ଼ପିଲା ହିସାବରେ, ଆଉ ମୁଁ ବୁଝିଲି ଯେ ଜିଦି କରିବା ଗୋଟାଏ ଅସଭ୍ୟ ଅସୁଂଦର ପିଲାଳିଆ ଢ଼ଂଗ, ଯେଉଁଥିରେ କିଛି ଲାଭ ହୁଏ ନାହିଁ ?

ସ୍ମୃତିର ଯେଉଁ ପହିଲି ଦୃଶ୍ୟଗୁଡ଼ିକ ମୋ ମନକୁ ଆସେ ସେଗୁଡ଼ିକ ମୋ ପିଲାବେଳର ନିଶ୍ଚୟ, କିନ୍ତୁ ସେତେବେଳକୁ ମୁଁ ପାଠପଢ଼ା ଆରମ୍ଭ କରି ସାରିଲିଣି । ମୋର ବିଦ୍ୟାରମ୍ଭ ପର୍ବ ଅନୁଷ୍ଠିତ ହେଲା ଠିକ୍ ମୋତେ ଚାରିବର୍ଷ ଚାରିମାସ ଚାରିଦିନ ପୂରା ହେବା ଦିନ । ମୋ ହାତରେ ଖଡ଼ି ଧରେଇ 'ଅ' ଆ' ଲେଖିବାର ତଥା ବ୍ରହ୍ମା ବିଷ୍ଣୁ ମହେଶ୍ୱର ବୋଲାଉଥିବା ମୁଣ୍ଡୁଳି କାଟିବାର ଉପଚାର । ତେଣୁ ମୋର ସବୁ ଝାପ୍‌ସା, ହେଲେ ସାଇତି ରଖିଥିବା ଦୃଶ୍ୟଗୁଡ଼ିକୁ ମୋ 'ଛାତ୍ରଜୀବନ'ର ଅଧ୍ୟାୟକୁ ନେଇଗଲେ ଭଲ ହେବ ନାହିଁ କି ? ଆଉ ଛାତ୍ରଜୀବନ କଣ ଯଥାର୍ଥରେ ହାତରେ ଖଡ଼ି ଧରା ଠାରୁ ଆରମ୍ଭ ନୁହେଁ ?

ଯାହାହେଉ ପ୍ରଥମେ କହୁଛି ସେଇ କେତୋଟି ସ୍ମୃତିକଥାଗୁଡ଼ିକ, ମୋ ପାଠପଢ଼ା ଜୀବନର କାହାଣୀକୁ ଆରମ୍ଭ କଲା ପୂର୍ବରୁ । ଶୁଣନ୍ତୁ ।



# ଛାତ୍ର ଜୀବନ : ସାହିତ୍ୟର ଭୀରୁ ପଦକ୍ଷେପ
## (୧୯୨୯-୧୯୪୭)

ବାପା ବିହାର ଓ ଓଡ଼ିଶାର ଜୁଡ଼ିସିଆଲ୍ ସର୍ଭିସ୍‌ରେ ଚାକିରୀ କରିଥିବା ହେତୁ ତାଙ୍କୁ ଏଇ ସଂଯୁକ୍ତ ପ୍ରଦେଶର ବିଭିନ୍ନ ଜାଗାରେ ଘୁରିବୁଲିବାକୁ ପଡ଼ିବ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କିନ୍ତୁ ଭାଗ୍ୟ ଭଲ ଯେ ମୋର ହେତୁ ପାଇବା ଦିନୁ ସେ କେବଳ ଓଡ଼ିଶାର ବିଭିନ୍ନ ଜାଗାରେ ମୁନ୍‌ସିଫ୍, ତାପରେ ସବ୍‌ଜଜ୍ ଓ ତାପରେ ଜିଲ୍ଲାଜଜ୍ ହୋଇ ରିଟାୟାର୍ କଲେ । କଟକରେ ସେ ରହିପାରିଲେ ତାଙ୍କ ଚାକିରୀ ଜୀବନର ମାତ୍ର ଶେଷ କେତୋଟି ବର୍ଷ, ଜଣେ ବରିଷ୍ଠ ଜିଲ୍ଲା ଜଜ୍ ଭାବରେ । ତେଣୁ ଯେଉଁ କଟକ ସହରରେ ମୁଁ ଜନ୍ମ ହୋଇଥିଲି, ତାର ସ୍ମୃତି ମୋର ବାଲ୍ୟକାଳ ଓ କୈଶୋରକୁ ଅଧିକାର କରିପାରି ନାହିଁ । ତେବେ ବାପା ଛୁଟିରେ କଟକ ଆସୁଥିଲେ, ଅନ୍ତତଃ ବର୍ଷକୁ ଥରେ । ତାଙ୍କ ଦାଦା ତଥା ତାଙ୍କୁ ପୋଷ୍ୟପୁତ୍ର କରିଥିବା ବାପା ଭିକାରୀ ଚରଣଙ୍କ ଦ୍ୱାରା ତୋଳା ହୋଇଥିବା ଏଇ ଖଟବିନ୍ ସାହିର ଗଳିଘରେ କିଛି ଦିନ ବିତାଇବା ପାଇଁ । ସେହେତୁ କଟକ ଘରକୁ ନେଇ କେତୋଟି ଝାପ୍‌ସା ସ୍ମୃତି ମଧ ରହିଛି ମୋ ମନରେ । ଏବଂ ସେଥିରୁ କେତୋଟିକୁ ମୁଁ ସାଇତି ରଖିଛି । ତାର ମୁଖ୍ୟସ୍ୱର ହେଲା 'ବୁଢ଼ାବାପା'ଙ୍କର (ଜେଜେବାପାଙ୍କୁ କାହିଁକି ଆମ ଘରେ ବୁଢ଼ାବାପା ବୋଲି ଡକା ହେଉଥିଲା ମୁଁ ଜାଣେ ନାହିଁ) ସାନ୍ନିଧ୍ୟ । ସହଜେ କଟକକୁ ଆସିଲା ପରେ ବେଶି ସମୟ ତାଙ୍କରି ପାଖରେ କଟୁଥିଲା । ଏବଂ ବାପାବୋଉଙ୍କୁ ଫୁରୁସତ୍ ମିଳୁଥିଲା ଜ୍ଞାତିକୁଟୁମ୍ବଙ୍କ ସହିତ ଦେଖାସାକ୍ଷାତ, ତଥା ଛୁଟି ବିତେଇବାର ଫୂର୍ତ୍ତି କରିବା ପାଇଁ ।

କିନ୍ତୁ ହାୟ ! ମୁଁ ଓ ବୁଢ଼ାବାପା ଫୂର୍ତ୍ତି କରିବାର ଅବସ୍ଥାରେ ନ ଥିଲୁ । ମୁଁ ତ ସହଜେ 'ଶାନ୍ତଶିଷ୍ଟ' ପିଲାଟିଏ, ଯାହାର ଗେଧେକାପଣ କଟିଯାଇଥିଲା ସିନା, କିନ୍ତୁ ସେ ଖେଳକୁଦର ବିଶେଷ ଆଗ୍ରହୀ ବୋଲି ମନେ ହେଉ ନ ଥିଲା । ଏବଂ ଚାକିରିରୁ ଅବସର ନେଇ ସାରିଥିବା ବୁଢ଼ାବାପା ମଧ ପ୍ରାୟଶଃ ଆରାମ ଚଉକିରେ ପଡ଼ି ରହୁଥିଲେ, ତାଙ୍କର ଆଣ୍ଠୁଗଣ୍ଠି ବାତ ଯୋଗୁଁ । ତେଣୁ ଆମର ସାଂଗସୁଖକୁ ନିଷ୍କ୍ରିୟ ବୋଲି କୁହାଯିବ; କେବଳ ଏକାଠି ହେବା ହିଁ ଥିଲା ସେଥିର ସାର କଥା । ସକାଳେ ଯେଝା ଯେଝା ନିତ୍ୟକର୍ମ ସରିଲା ପରେ ସେ 'କେଶବ'କୁ ଡକେଇ ପଠାନ୍ତି । ଯଦିଓ ସେ ଆଉ ତାର 'କେଶବ କଣ୍ଢେଇ'କୁ ନେଇ ଖେଳୁନାହିଁ, ଏବଂ ତାର ନାଆଁ ହେଉଛି କିଶୋରୀ ଚରଣ, ଡାକନାଆଁ କେଶ । ଏବଂ ମୁଁ ଆଗ୍ରହର ସହିତ ଯାଏ ତାଙ୍କ ପାଖକୁ ।

ମୋର ମନେ ପଡ଼େ ସେଇ ଦୃଶ୍ୟ । ସେ ଦାଣ୍ଡଘରେ (ଏଇକ୍ଷଣି ସେଇଟା ବାଟଘର ହୋଇଛି) ପଡ଼ିଥିବା ଗୋଟାଏ ପୁରୁଣାକାଳିଆ ପ୍ରଶସ୍ତ ବେତ ଆରାମ ଚଉକିରେ ଲମ୍ବି ଯାଇଥାଆନ୍ତି । ଚଉକିର ଦି'ଟା ଲମ୍ବା ଲମ୍ବା ଚଳନ୍ତି ହାତ, ଯାହାକୁ ଇଚ୍ଛା ଅନୁଯାୟୀ ଘୁରେଇ ବ୍ୟବହାର କରି ହେବ । ତା ଉପରେ ଗୋଡ଼ ଲମ୍ବେଇ ଆରାମ କରିବା ପାଇଁ, ଅଥବା ବସିବା ଅବସ୍ଥାରେ ତା ଉପରେ କିଛି ଖାଇବା ଜିନିଷ ରଖି ତାକୁ ଧୀରେ ସୁସ୍ଥେ ଭୁଂଜିବା ପାଇଁ । ମୋତେ ଯେତେବେଳେ ଡକରା ପଡ଼େ, ସେତେବେଳକୁ ବୁଢ଼ାବାପା ସତେଜ ହୋଇ ବସିଥାଆନ୍ତି ତା ଉପରେ ଏବଂ ତାଙ୍କ ସକାଳଖିଆର ବସ୍ତୁବିଶେଷ ଥୁଆ ହୋଇଥାଏ ଗୋଟିଏ ହାତ ଉପରେ । ଅପେକ୍ଷା ନାତି କେଶବ ପାଇଁ । ଏବଂ ସେ ଆସିଲାକ୍ଷଣି ତା ପାଟିକୁ ସେଥିରୁ ଚାମୁଚେ ବଢ଼େଇ ଦିଆଯାଏ, କିଛି ବାକ୍ୟବ୍ୟୟ ନ କରି । ସେଇଠୁଁ ପ୍ରାତଃ ଭୋଜନର ଉପଚାର । ତାଙ୍କର ଚାମୁଚେକୁ ମୋର ଚାମୁଚେ, ଗୋଟିକ ପରେ ଗୋଟିଏ, ଅନନ୍ତକାଳ ଯାଏ । ଏବଂ ସେ ବସ୍ତୁଟି କଣ ଜାଣନ୍ତି ? ତୁଚ୍ଛା ଖଇ-ଦୁଧ ! ସେଥିରେ ଛେନା, କଦଳୀ ଆଦି ଆଉ କିଛି ମିଶା ହୋଇ ନଥାଏ । ବୁଢ଼ାବାପାଙ୍କ ପେଟରେ ଯିବ ନାହିଁ । ସାମାନ୍ୟ ଚିନି ଗୋଳା ହୋଇଥାଏ ଯାହା । କିନ୍ତୁ ମୋର ସ୍ମୃତି କହୁଛି ଯେ ମୁଁ ତା'କୁ ଉପଭୋଗ କରୁଥିଲି ସେତେବେଳେ । ଆମେ ଏଣୁତେଣୁ କିଛି ପ୍ରଶ୍ନ ପଚାରୁ ନଥିଲୁ ପରସ୍ପରକୁ । କୁହାଯାଇପାରେ ଯେ ଇଣ୍ଟ୍ରୋଭର୍ଟ କେଶ ସାଙ୍ଗକୁ ତାର ଚୁପ୍‌ଚାପିଆ ବୁଢ଼ାବାପା ବେଶ୍ ଖାପ୍ ଖାଇ ଯାଉଥାଆନ୍ତି । ମନେ ହେବ ଉଭୟଙ୍କର ମତ ଯେ ସମୟକୁ ଏମିତି ଅନୁଭବ ଏବଂ ଉପଭୋଗ କରିବା କଥା, ଗୋଟିଏ ମୂହୁର୍ତ୍ତରୁ ଆଉ ଗୋଟିଏ ମୂହୁର୍ତ୍ତ ଯାଏଁ । ନୀରବରେ । ଆଜି ହସ ଲାଗେ ସେଇ ଦୃଶ୍ୟକୁ ମନେ ପକାଇ । କିନ୍ତୁ କୁହନ୍ତୁ ଦେଖି, ଆଜିର କ୍ଲାନ୍ତଶ୍ରାନ୍ତ ଏବଂ ଅଶାନ୍ତ ଜନସମାଜ ପାଇଁ ଏହାହିଁ କଣ ଏକ ଉପଯୋଗୀ ଦାର୍ଶନିକ ତଥ୍ୟ ବୋଲି ଗୃହୀତ ହୋଇ ନାହିଁ ? ଏଇ ବୌଦ୍ଧ 'ଜେନ୍' ଧର୍ମର ତତ୍ତ୍ୱକଥା, ଯେ ସବୁଠାରୁ ଭଲ ହେଉଛି ଚୁପ୍ ହୋଇ ବସିରୁହ ଏବଂ ଚଳନ୍ତି ସଂସାର ସାଙ୍ଗରେ ମିଶେଇ ଦିଅ ନିଜକୁ ପୂରାପୂରି ନିଷ୍କ୍ରିୟ ହୋଇ ? ଏପରିକି ଦେଖୁଥାଅ ଘାସଟିଏ କେମିତି ବଢ଼ିବାରେ ଲାଗିଛି ? ଧନ୍ୟବାଦ ବୁଢ଼ାବାପା, ମୁଁ କଣ ମିଛୁଟାରେ ସାଇତି ରଖିଛି ମୋ ମନରେ, ତମ ସାଙ୍ଗରେ ଏଇ ଖଇ-ଦୁଧ ଖାଇବାର ସ୍ମୃତି ? ତା'ର କେତେ ମୂଲ୍ୟ ମୋ ପାଇଁ ମୋ ସଂଜବେଳେ, ତା'କଣ ବୁଝେଇବାକୁ ପଡ଼ିବ ?

ସେମିତି ମନେ ଅଛି ପାଗଯୋଗ ଅନୁକୂଳ ଥିଲେ ଆମେ କେମିତି ନଗର ଭ୍ରମଣରେ ବାହାରି ପଡୁ, ଗୋଟିଏ ହାତଟଣା ରିକ୍‌ସାରେ ବସି (ତାଙ୍କ ନିଜ ରିକ୍‌ସା ଏବଂ ଦରମାଖିଆ ଭୃତ୍ୟ ରିକ୍‌ସାବାଲା), ଏବଂ ଓହ୍ଲେଇ ଯାଉ କିଲାପଡ଼ିଆରେ । ସେଇଠି କୋଉଠି ବସିରହୁ, ତା'ର ଘାସ ଗାଲିଚା ଉପରେ । ପ୍ରକୃତିକୁ ଅନୁଭବ କରୁ । ମଧ୍ୟ ଉପଭୋଗ କରୁ ତା ସାଙ୍ଗକୁ, ତାଙ୍କ ହାତ ଡ଼ବାରୁ ଗୋଟିକ ପରେ ଗୋଟିଏ ବାହାରି ଆସୁଥିବା ସିଝା ଏବଂ

ଚୋପାଛଡ଼ା ବାଦାମ । ତାକୁ ଧୀରେ ସୁସ୍ଥେ ଚୋବେଇ କରି ଖାଉ ନୀରବରେ । ତାଙ୍କର ଗୋଟିଏକୁ ମୋର ଗୋଟିଏ । ସେଇ ପ୍ରଲମ୍ବିତ ଅନୁଭବ-ଉପଭୋଗର କ୍ରମ ମନେ ଅଛି ।

ମୋର ଦି'ଯୋଡ଼ା ଜେଜେବାପା ଜେଜେମା (ଜନ୍ମିତ ଓ ପାଳକ) ଏବଂ ଅଜା ଆଈଙ୍କ ଭିତରୁ କେବଳ ଆଉ ଜଣଙ୍କର ଚେହେରା ମନେ ଅଛି ମୋର । ମୋର ଜନ୍ମିତ ଜେଜେମା । ତେଣୁ ସେମାନଙ୍କ ପାଖରେ ବସି ନାତିସୁଖ ଲଭିବାର ଅବକାଶ ନ ଥିଲା, ବିଶେଷ କିଛି । ଅନ୍ୟମାନେ ମୋର ଜନ୍ମ ହେବା ପୂର୍ବରୁ କିମ୍ବା ମୋର ହେତୁ ହେଲା ବେଳକୁ ଚାଲି ଯାଇଛନ୍ତି । ସେହେତୁ ସେଇ ସ୍ତରର ସୁଖବୋଧ ପାଇଁ ମୁଁ ବଂଚେଇ ରଖିଛି କେବଳ ମୋର ଏଇ ବୁଢ଼ାବାପାଙ୍କୁ ନେଇ ରଚିତ ସାମାନ୍ୟ ସ୍ମୃତି କେତୋଟିକୁ । ସାଥୀତ୍ୱର ସେଇ ନିସ୍ତରଂଗ ଆନନ୍ଦ, ତାଙ୍କ ସଂଜ ଏବଂ ମୋର ଆରମ୍ଭ ହୋଇ ଆସୁଥିବା ସକାଳ ଭିତରେ ଗଢ଼ି ଉଠିଥିବା ଏକ ଅପୂର୍ବ ସଂପର୍କ । ଏକଦା ମହାପ୍ରତାପୀ ବୋଲାଉଥିବା, ପଗଡ଼ି ଓ ଗଳାବଂଦ କୋଟ ପିଂଧା ହାକିମବିଶେଷ ଓ ତାଙ୍କର ମଉନମୁହାଁ, ହେଲେ 'ମହାବୁଦ୍ଧିଆ' ନାତିଙ୍କ ଭିତରେ ଅନୁଷ୍ଠିତ ନୀରବ ଭାବନାବ ।

ଖଡ଼ିଧରା ଉତ୍ତାରୁ ଯେଉଁ ଛାତ୍ରଜୀବନ ଆସିଥିଲା ମୋ ପାଇଁ, ମୋର ପାଂଚଛଅ ବର୍ଷ ବୟସରେ, ଏବଂ ବାପାବୋଉଙ୍କ ସ୍କୁଲରେ, ତାର ଆଉ ଗୋଟିଏ ସଯତ୍ନରକ୍ଷିତ ସ୍ମୃତି ହେଉଛି ତାଙ୍କୁଇଁ ନେଇ । ବାପା ମଧ୍ୟବୟସ ଛୁଇଁ ନ ଥିଲେ ସେତେବେଳେ, ଏବଂ ବୋଉ ତଥାପି ତାରୁଣ୍ୟର ସୀମା ଭିତରେ ଥିଲା । ଆଉ ମୁଁ ଥିଲି ତାଙ୍କର ବଡ଼ପୁଅ ପରା ? ତେଣୁ ମୁଁ କେମିତି ଦେଖି ନ ଥାଆନ୍ତି ତାଙ୍କ ଭିତରେ ଯେଉଁ ଯୌବନସୁଲଭ ରୋମାନ୍ସ ରଚିତ ହେଉଥିଲା ବେଳେ ବେଳେ ? ମୁଁ ଦେଖିଛି ଏବଂ ମନେ ରଖିଛି । ସେଇଲାଗି ମୁଁ ଯେତେବେଳେ ଦେଖେ, ବଡ଼ ହେଲା ଉତ୍ତାରୁ, ଯେ ବାପାବୋଉ କଳି କରୁଛନ୍ତି, ମୋର ଇଚ୍ଛା ହୁଏ ତାଙ୍କ ମଝିରେ ଆସି ଠିଆ ହୋଇ ପଡ଼ିବି, ଆଉ କହିବି, ମିଛ ମିଛ ! ଇଏ ସତ ନୁହେଁ । ମୋର ମନେ ଅଛି ତମେ ଦି'ଜଣ କେମିତି ପ୍ରେମ ହେଉଥିଲ ସେଦିନ । ବାପା, ତମେ ପୁରୀରେ ଥିଲ ସେତେବେଳେ ମୁନ୍‌ସଫ୍ ହୋଇ, କଚିରିରୁ ଫେରିଥିଲ, ଆଉ ବୋଉ ତମ ପାଇଁ ପୁରି ଆଳୁଭଜା କରି ରଖିଥିଲା । କିନ୍ତୁ ପ୍ରଥମେ କଣ କଲ ନା ବୋଉକୁ ପୂରାପୂରି ଟୋଳି ଧରିଲ ତମ ଦି ହାତରେ ... ନା, ଆଉ କହିବି ନାହିଁ ସେଣିକି, ତମକୁ ଲାଜ ଲାଗିବ । ହଁ, ମୋର ମନେ ଅଛି । ଆଉ ସେଇ ଦୃଶ୍ୟର ସ୍ମୃତି ମୋତେ ବାରଂବାର ଚେତାଇ ଦେଇଛି, ଆଶାକରେ ମୋର ନିଜ ଭଲ ପାଇଁ, ଯେ ଦାଂପତ୍ୟ ଜୀବନ ପ୍ରଥମତଃ ଏକ ପ୍ରେମଜୀବନ । ଏବଂ ଯୌବନ । ଏବଂ ରୋମାନ୍ସ । ତେଣୁ ସେଇ ମୌଳିକ ବାସ୍ତବତାକୁ କଣ ମିଶେଇ ଦେଇ ହେବ ନାହିଁ ଆଜିର ରୁକ୍ଷ ଏବଂ ନୀରସ ବାସ୍ତବତା ସାଙ୍ଗରେ ? ହେବ । ଖାଲି ସେଥିରେ ଭାସି ନ ଗଲେ ହେଲା, ମୋ 'ବନମୟୂର' ଗପର ନାୟିକା ପରି । ବନମୟୂରୀର ନାଚ ଦେଖି ବିଚାରୀ ବହୁସନ୍ତାନବତୀ

ଭୁଲିଗଲା ଯାହା ଡାକ୍ତରାଣୀ ତାକୁ କରିବାକୁ କହିଥିଲେ, ପୁଣି ଗୋଟିଏ ସଂତାନର ମାଆ ନ ହେବା ଲାଗି । ଛାଡ଼ନ୍ତୁ ତା କଥା । ତଥାପି ରୋମାନ୍ସ 'ସତ' ଏବଂ ତାର ଉପଯୋଗିତା ଅଛି ବାସ୍ତବ ଜୀବନରେ । ଏଇ ତଥ୍ୟଟିକୁ ମୁଁ ଯେତେବେଳେ ଶୁଣେଇଛି ନିଜକୁ ଜୀବନର ବିଭିନ୍ନ ସମୟରେ, ମୁଁ ମଧ୍ୟ ଡାକି ଆଣେ, ବେଳେ ବେଳେ ମୋ ପିଲାଦିନର ସେଇ ଅଭୁଲା ସ୍ମୃତି କେତୋଟିକୁ । ଧନ୍ୟବାଦ, ବାପାବୋଉ ।

ମୋର ଦ୍ୱିତୀୟ ଭାଇ ଜାନକୀଚରଣ (ଜାନୀ) ମୋଠୁଁ ପ୍ରାୟ ପାଂଚବର୍ଷ ସାନ ଏବଂ ସେ ପୁରୀରେ ଜନ୍ମ ହୋଇଥିଲା । କିନ୍ତୁ ତା ପୂର୍ବରୁ ମୋର ଭାଇଟିଏ ଓ ଭଉଣୀଟିଏ ଜନ୍ମ ହେବାର ଅଳ୍ପ ଦିନ ଭିତରେ ନଷ୍ଟ ହୋଇ ଯାଇଥିଲେ । ସେହେତୁ ମୁଁ କେବଳ ତାଙ୍କର ବଡ଼ ପୁଅ ନଥିଲି, ବାପାବୋଉ ମୋତେ ସହଜେ ଆଂକୁଡ଼ି ଧରିବାକୁ ଚାହୁଁଥିଲେ । ଏବଂ ତାରି ଫାଇଦା ନେଇ 'ଇଣ୍ଟ୍ରୋଭର୍ଟ' କେଶ ମଧ୍ୟ ବେଶି ଆଙ୍କୁଡ଼ି ଧରିଥିଲା ବାପାବୋଉଙ୍କୁ, ଯାହା ମୋର ମନେ ହୁଏ, ଏବଂ କେଉଁ ସାଙ୍ଗସାଥୀଙ୍କ ଅଭାବ ବୋଧ କରୁ ନଥିଲା । ଆଜିର ବିଜ୍ଞାନସମ୍ମତ ଅଭିଧାନରେ ଏଭଳି ମନୋଭାବ ସ୍ୱାସ୍ଥ୍ୟକର ନୁହେଁ ବୋଲି କୁହାଯାଇପାରେ, ସଂତାନର ମାନସିକ ବିକାଶ ଦୃଷ୍ଟିରୁ । କିନ୍ତୁ ଏହାହିଁ ବାସ୍ତବ ସତକଥା ଥିଲା ମୋ ପାଇଁ । ମୋର ତୃତୀୟ ଭାଇ ପାର୍ବଣଚରଣ (ବୁଲୁ) ଜନ୍ମ ହେଲା ଚାରିବର୍ଷ ପରେ, ଭଦ୍ରକରେ । ସେତେବେଳକୁ ମୋତେ ନଅବର୍ଷ ଏବଂ ମୁଁ ଭଦ୍ରକ ହାଇସ୍କୁଲରେ ନାଆଁ ଲେଖେଇ ସାରିଲିଣି । କିନ୍ତୁ ମୋତେ ମାନିବାକୁ ପଡ଼ିବ ଯେ ସେତେଦିନ ଯାଏଁ ମଧ, ଆଗନ୍ତୁକ ସାନଭାଇମାନଙ୍କ ପ୍ରତି ସ୍ୱାଭାବିକ ମମତା ତଥା ଈର୍ଷାଭାବ ସତ୍ତ୍ୱେ ମୁଁ ବାପାବୋଉଙ୍କଠାରୁ ମୋଟେ ଦୂରେଇ ଯାଇ ନଥିଲି । ବାପାବୋଉ ହେବା ଛଡ଼ା ସେଇମାନେହିଁ ଥିଲେ ମୋର ଶିକ୍ଷାଗୁରୁ, ମୋର ସାଙ୍ଗ, ମୋ ଜୀବନର ସଂପୂର୍ଣ୍ଣ ଆଧାର । ଅନ୍ୟ ଦି'ଭାଇଙ୍କୁ ଟିକିଏ ଲାଇସେନ୍ସ ମିଳିଛି ଯାହା, ସେଥିରେ ଭାଗୀ ହେବା ପାଇଁ । ହେଲେ ସାମାନ୍ୟରେ, ଯାହା ମୋତେ ବୁଝିବାକୁ ଦିଆ ଯାଇଥିଲା ।

ତେବେ ବାପାବୋଉ ଉଭୟଙ୍କୁ ଜାବୁଡ଼ି ଧରିବା ଭିତରେ ଟିକିଏ ପ୍ରଭେଦ ଥିଲା, କାରଣ ମୁଁ ବାପାଙ୍କୁ ମଧ୍ୟ ଭୟ କରୁଥିଲି ଅଳ୍ପବହୁତ, କାଳେ ସେ ରାଗିଯିବେ ମୋ ଉପରେ କୋଉ କଥାରେ । କିନ୍ତୁ ବୋଉ ଥିଲା ଅତ୍ୟନ୍ତ ନାରୀଭାବାପନ୍ନା ଏବଂ କୋମଳମତି ଜନନୀଟିଏ । ତେଣୁ ତା'ପ୍ରତି ସେଭଳି କୌଣସି ଭାବ ଆସୁନଥିଲା । ଏବଂ ତାର କ୍ଷଣସ୍ଥାୟୀ ଏବଂ ହାସ୍ୟାସ୍ପଦ ରାଗ ପ୍ରତି ମୁଁ ତଥା ମୋର ଭାଇମାନେ ବିଶେଷ ସମ୍ମାନ ଦେଇ ପାରୁନଥିଲୁ ।

ବାପାବୋଉ ମୋର ଶିକ୍ଷାଗୁରୁ ବୋଲି କହିଲି ସିନା, କିନ୍ତୁ ପ୍ରକୃତପକ୍ଷେ ବାପାହିଁ ଥିଲେ ମୋର ଶିକ୍ଷକ । ଏବଂ ସେ ତାଙ୍କର ଏଇ ଆତ୍ମନିଯୁକ୍ତ କାମରେ ଆଦୌ ହେଳା କରିନାହାନ୍ତି । ମୋର ଧାରଣା ଯେ ଅନେକ ଦିନ ଯାଏଁ କୌଣସି ଚାଟଶାଳୀ ନର୍ସେରୀକୁ ନ

ଯାଇ, ଏପରିକି ମାଇନର୍ ସ୍କୁଲର ସର୍ବନିମ୍ନ ଚତୁର୍ଥ ଶ୍ରେଣୀରୁ ପଢ଼ା ଆରମ୍ଭ ନ କରିବାର ବ୍ୟବସ୍ଥା ପଛରେ କେବଳ ମୋର ଇଚ୍ଛା-ଅନିଚ୍ଛା ନ ଥିଲା । ବାପା ମଧ୍ୟ ଚାହୁଁଥିଲେ ପୁଅ ଘରେ ପଢ଼ିବ, ଯେତେଦିନ ଯାଏଁ ସଂଭବ ଏବଂ ତାଙ୍କରି ତତ୍ତ୍ୱାବଧାନରେ ।

ତାଙ୍କର ଏଇ ନିର୍ଣ୍ଣୟ ପଛରେ ବୋଧହୁଏ ଦୁଇଟି କାରଣ ଥିଲା । ଗୋଟିଏ ହେଉଛି ଆମ ଚାକିରୀଆ ବଂଶର ପରମ୍ପରା । ଯେ ଏଇ ବଂଶର ଲୋକେ ବଡ଼ବଡ଼ ସରକାରୀ ଚାକିରୀ ହାସଲ କରିପାରିଛନ୍ତି, କାରଣ ସେମାନେ ଅଧିକ ପାଠୁଆ । ସେହେତୁ ତାଙ୍କର ବିଶେଷ ଦାୟିତ୍ୱ ଅଛି ତାଙ୍କ ବଡ଼ପୁଅର ପାଠୁଆପଣକୁ ମୂଳରୁ ଦୋରସ୍ତ କରାଇବାରେ । ଦ୍ୱିତୀୟରେ ସେ ନିଜେ ଜଣେ କୃତୀ ଛାତ୍ର ଥିଲେ । ମାଟ୍ରିକ୍ ଫାଷ୍ଟ ଡିଭିଜନ୍ ଠାରୁ ଆରମ୍ଭ କରି ଆଇ.ଏ ଫାଷ୍ଟ ଡିଭିଜନ୍, ବି.ଏ ଇଂରେଜୀ ଅନର୍ସ, ଏମ୍.ଏ. ଉଚ୍ଚ ସେକେଣ୍ଡ କ୍ଲାସ୍ (ଅଳ୍ପକରେ ଫାଷ୍ଟକ୍ଲାସ୍ ମିଳିଲା ନାହିଁ) ଏବଂ ବି.ଏଲ୍‌ରେ ଫାଷ୍ଟକ୍ଲାସ୍ । ସେହେତୁ ସ୍ୱଭାବତଃ ତାଙ୍କ ମନରେ ଥିଲା ଯେ ତାଙ୍କଠାରୁ ଅଧିକ ଯୋଗ୍ୟ କେହି ନାହାଁନ୍ତି, ମୋତେ ଉପଯୁକ୍ତ ପହିଲି ପାଠ ପଢ଼େଇ 'ବାପ୍‌କା ବେଟା' ଭାବରେ ଗଢ଼ି ତୋଳିବାରେ । ହଁ, ପୁଅକୁ ଅବଶ୍ୟ ସ୍କୁଲ କଲେଜ୍‌ରେ ପଢ଼ିବାକୁ ପଡ଼ିବ । କିନ୍ତୁ ଏତେ ତରତର କାହିଁକି ?

କିନ୍ତୁ ଯଥାଶୀଘ୍ର ତାଙ୍କୁ ବୁଝିବାକୁ ହେଲା ଯେ ଘରେ ପଢ଼ିଲେ ମଧ୍ୟ ମୋର ତାଙ୍କ ଛଡ଼ା ଗୋଟିଏ ଟିଉସନ୍ ମାଷ୍ଟର ଦରକାର ଯେ ମୋତେ ଉପଯୁକ୍ତ ତାଲିମି ଦେଇପାରିବ ସ୍କୁଲପଢ଼ାର ବାଗ ଜାଣିବା ପାଇଁ, ଯେମିତିକି ବିଶେଷ ଅସୁବିଧା ନ ହୁଏ ସ୍କୁଲରେ ପାଠ ଆରମ୍ଭ କଲା ବେଳକୁ । ଏହି ଭାବରେ ବାପାଙ୍କ ପାଖରେ ବସି ବର୍ଣ୍ଣବୋଧ, ହସ୍ତାକ୍ଷର, ପଣିକିଆ, ଗପ ଶୁଣିବା, ଗପ ଶୁଣେଇବା, ଗୀତ ବୋଲିବା ଇତ୍ୟାଦି, ତଥା ହିତୋପଦେଶର ନୀତିଶିକ୍ଷା ସାଙ୍ଗକୁ ଜଣେ ଟିଉସନ୍ ମାଷ୍ଟର ଆସିଲେ ମୋତେ ପଢ଼େଇବାକୁ, ବାପା ଯେତେବେଳେ ଭଦ୍ରକକୁ ଆସିଲେଣି ବଦଳି ହୋଇ । ମୋତେ ସେତେବେଳେ ଆଠ ନଅ ବର୍ଷ ହୋଇଥିବ ବୋଲି ମୁଁ ଅନୁମାନ କରୁଛି । ସ୍କୁଲରେ ନାଆଁ ଲେଖାଇବାକୁ ଡେରି ନାହିଁ ଆଉ । ମାଷ୍ଟରଙ୍କୁ କୁହା ହୋଇଗଲା ଯେ ଯା'କୁ ଏଣିକି ସ୍କୁଲ ପାଠ ପାଇଁ ପ୍ରସ୍ତୁତ କରେଇ ଦିଅନ୍ତୁ । ସାହିତ୍ୟ ଇତିହାସ ଭୂଗୋଳ ଗଣିତ ଇତ୍ୟାଦିର ଅନୁଶାସନକୁ ଆଖିରେ ରଖି ।

ସେଇଠୁଁ ମୋ ଛାତ୍ରଜୀବନରେ ଘଟିଲା ଗୋଟିଏ ଘଟଣା ଯାହା ଭୁଲିବାର ନୁହେଁ ।

କଣ ହେଲା କି, ମାଷ୍ଟ୍ରେ ମୋତେ ଗୋଟିଏ ସହଜ ସର୍ବସାଧାରଣ ବିଷୟରେ ରଚନା ଲେଖିବାକୁ କହିଲେ । ଯାହା କେଉଁ ପାଠ୍ୟପୁସ୍ତକର ବିଷୟରୁ ଉଦ୍‌ଭୁତ ନୁହେଁ । କହିଲେ ଏମିତିକା ରଚନା ଦିଆଯିବ ତମକୁ ସ୍କୁଲରେ, ତମର ସାଧାରଣ ଜ୍ଞାନକୁ କଳିବା ପାଇଁ । ଠିକ୍ ଅଛି । ମୋର ସେଦିଗରେ ଆଶଂକା କରିବାର କୌଣସି କାରଣ ନଥିଲା । ମୁଁ ଗୋଟିଏ ବୁଦ୍ଧିଆ ପିଲା ବୋଲି ମୋତେ ଜଣା ଅଛି କେବେଠୁଁ, ବାପାବୋଉ ବୁଢ଼ାବାପାଙ୍କ ଛଡ଼ା ଏକାଧିକ ଜ୍ଞାତିକୁଟୁମ୍ବଙ୍କ ମୁହଁରୁ ଶୁଣିଥିବା କଥାରୁ ।

ରଚନାର ବିଷୟବସ୍ତୁ ଥିଲା 'ବର୍ଷା ଋତୁ' । ଏବଂ ମୁଁ ବୀରବିକ୍ରମରେ ଲେଖି ବସିଲି ଏଇ ଚମତ୍କାର ଋତୁର ସମସ୍ତ ରୂପଗୁଣ । ପ୍ରଥମେ କେମିତି ମେଘ ଘନେଇ ଆସେ ଆକାଶରେ । ଧଳା ଛେଦା ଛେଦା ମେଘ କଳାହାଣ୍ଡିଆ ଦେଖାଯାଏ । ସେଇଠୁଁ ବିଜୁଳି ଓ ଘଡ଼ଘଡ଼ି । ସେଥିରେ କିଭଳି ହୃତ୍‌କଂପ ହୁଏ, କିନ୍ତୁ ପରେ ଭଲ ଲାଗେ । ବଡ଼ପିଲାଟିଏ ହୋଇଥିଲେ ବି ମାଆ କୋଳରେ ଗୁଂଜି ହେବାକୁ ଇଚ୍ଛା ହୁଏ । ସେଇଠୁଁ ବର୍ଷା । ଛୋଟ ବୁଂଦା, ତାପରେ ବରକୋଳିଆ ବଡ଼ ବଡ଼ ବୁଂଦା (ବରକୋଳିଆ ଶବ୍ଦଟା ବୋଉର ମୁହଁରୁ ଶୁଣିଥିଲି) । ଏବଂ ଧୀରେ ଧୀରେ ଧାରା ଶ୍ରାବଣ । ଚାଲିଛି ତ ଚାଲିଛି, ଦିନ ପରେ ଦିନ । ଗଛ ପତର ସବୁ ଆହୁରି ଆହୁରି ଶାଗୁଆ ଦେଖାଯାଉଛି, ଘାସଗୁଡ଼ାକ ଚାହୁଁ ଚାହୁଁ ବଢ଼ି ଯାଉଛି, ଏବଂ ବେଂଗମାନେ ରଡ଼ି କରି ପୃଥିବୀ କଂପାଉଛନ୍ତି । କିନ୍ତୁ ଏଇ ସମୟରେ ରାସ୍ତା କାଦୁଅ ହୋଇଯାଏ । ପାଣିରେ ଚବରଚବର ହୋଇ ଚାଲିବାକୁ ଇଚ୍ଛା ହୁଏ, କିନ୍ତୁ ସେଥିରେ ଲୁଗାପଟା ଖରାପ ହୋଇଯାଏ । ଏଣେ ଧୁଆ ଲୁଗା ସହଜେ ଶୁଖେ ନାହିଁ । ସେଥିରେ ଯେତେକ ଅସୁବିଧା .... ଇତ୍ୟାଦି ଇତ୍ୟାଦି । ମୋ କଲମ ଅଟକି ଯିବାକୁ ନାରାଜ । ଇସ୍ ! କେତେ ଅଛି ଲେଖିବା ପାଇଁ । ମୋର ରଚନା ସରୁ ନ ଥାଏ ସହଜେ । କିନ୍ତୁ ମାଷ୍ଟ୍ରେ ତାକୁ ଛଡ଼େଇ ଆଣିଲେ ମୋ ହାତରୁ । କହିଲେ, ଏତେ ବେଶି ସମୟ ତମକୁ ଦିଆଯିବ ନାହିଁ ସ୍କୁଲରେ ।

କିନ୍ତୁ ଇଏ କଣ ହେଲା ? ମାଷ୍ଟ୍ରେ ତାକୁ ପଢ଼ିଲେ । ଏବଂ ପଢ଼ିସାରି ଗୋଟାଏ ମୋଟା ଛକି ପକେଇ ଦେଲେ ତା ଉପରେ । କହିଲେ - ମୂର୍ଖ ! କଣ ସବୁ ବାଜେ କଥା ଲେଖିଛୁ ? ବର୍ଷା କାହିଁକି ହୁଏ ତା ଜଣା ନାହିଁ ତୋତେ ? ଆଉ ବର୍ଷା ଯୋଗୁଁ କଣ ଲାଭ ହୁଏ ଆମର, କମ୍-ବେଶି ହେଲେ କଣ କ୍ଷତି ହୁଏ ସେସବୁ ବିଷୟରେ କିଛି ଲେଖିବାର ନ ଥିଲା ? ହୋପ୍‌ଲେସ୍ !

ମାଷ୍ଟ୍ରେ ସେତିକିରେ ରହିଗଲେ ନାହିଁ । ବାପାଙ୍କ ଆଗରେ ଫେରାଦ ହେଲେ ମୋ ବିଷୟରେ ଏବଂ ଗୋଟାଏ ମନ୍ତବ୍ୟ ମଧ୍ୟ ଝାଡ଼ିଦେଲେ ମୋ ଭବିଷ୍ୟତ ଉପରେ । କହିଲେ ମୁଁ ଯଦି ସ୍କୁଲରେ ଏମିତି ଲେଖେ, ମୋ ମନ ଇଚ୍ଛା, ତାହେଲେ ମୋର ଭବିଷ୍ୟତ ଅଂଧକାରମୟ ।

ଏଇଠି ମୁଁ ମୋର ବାପାଙ୍କ ପ୍ରତି ଗଭୀର କୃତଜ୍ଞତା ଜଣାଉଛି । ସେ ଯଦି ମାଷ୍ଟ୍ରଙ୍କୁ ସମର୍ଥନ ଜଣାଇ ରାଗିଥାଆନ୍ତେ ମୋ ଉପରେ, ତାହେଲେ ବୋଧହୁଏ ମୋର ଏମିତିକା କାବ୍ୟଧର୍ମୀ ରଚନା ଥପ୍‌କିନି ବଂନ୍ଦ ହୋଇଯାଇଥାଆନ୍ତା, ଏବଂ ମୋର ପିଲାଦିନିଆ ସାହିତ୍ୟକୁ ଯେଉଁ ବାଧା ହୋଇଥାଆନ୍ତା, ସେଥିରୁ ମୁଁ କେବେ ଓ କେମିତି ଉଧୁରି ଆସି ପାରିଥାଆନ୍ତି, କହି ହେଉ ନାଇଁ । କିନ୍ତୁ ସେ ରାଗିଲେ ନାହିଁ । ମାଷ୍ଟ୍ରଙ୍କୁ କହିଲେ ଯେ ମୁଁ ଯାହା ସବୁ ଲେଖିଛି ମଂଦ ନୁହେଁ, ହେଲେ ତା ସାଙ୍ଗକୁ କେଇଟା ଫ୍ୟାକ୍ଟସ୍ ଦେବା ଉଚିତ ଥିଲା । ସେଇଠୁଁ ମୋ

ଆଡ଼କୁ ଅନେଇ କହିଲେ, ଟିକିଏ ମୃଦୁହାସ ତାଙ୍କ ଓଠରେ - ''କଣ ବୁଝିଲୁ ମୁଁ ଯାହା କହୁଛି ? କବିତା ଲେଖୁଛୁ ଭଲ, କିନ୍ତୁ ତା ସାଙ୍ଗକୁ ବର୍ଷା ଜିନିଷଟାର କଣ ଓ କାହିଁକି ଇତ୍ୟାଦିକୁ ନେଇ କେଇଟା ରୋକ୍‌ଠୋକ୍ କଥା କହିଥିଲେ, ତୋ ଲେଖାଟା ପୂରିଲା ପରି ଲାଗିଥାଆନ୍ତା । ମୁଁ ଗୋଟାଏ ଭୂଗୋଳ ବହି ଆଣି ଦେବି ତୋ ପାଇଁ, ସେଇଥିରେ ଲେଖା ଅଛି ଏଇ ସବୁ ବିଷୟ ।''

ଏହି ଭାବରେ କଥାଟା ଛିଣ୍ଡିଗଲା । ମୁଁ ଖୁସି ହେଲି ଯେ ବାପା ରାଗିନାହାନ୍ତି । ଏବଂ ତାଙ୍କୁ ମୋର ବର୍ଷାରତୁ ନିହାତି ଖରାପ ଲାଗି ନାହିଁ । ଖରାପ ଲାଗିବ କଣ ମ, ସେ ଗୋଟାଏ ବିଚିତ୍ର କଥା କହିଲେ ନାହିଁ କି ? କହିଲେ, କବିତା ଲେଖୁଛୁ ଭଲ । କିନ୍ତୁ ବାପା, ମୁଁ କବିତା ଲେଖିଲି କୋଉଠୁ ? ଇଏ ପରା ରଚନା ? ଗଦ୍ୟ ?

ଅନେକ ଦିନ ପରେ ବୁଝିଲି ବାପା କାହିଁକି ଏମିତି କହିଲେ । ବୁଝିଲି କାବ୍ୟକବିତା ଜିନିଷଟା କଅଣ, ଯେଉଁଥିରେ କବିତାର ଯତିପାତ ନ ଥିଲେ ନାହିଁ, ଆଉସବୁ ଅଛି । ଅଛି ସଂଗୀତର ଛଂଦ, ଏବଂ ରୂପରଗଂଧର ମାଧୁରୀ । ଏବଂ ବୁଝିଲି ଯେ ମାଷ୍ଟ୍ରଙ୍କୁ ଓ ମୋତେ ଏମିତି କହିଦେଇ ଚାଲିଗଲା ପରେ ମଧ୍ୟ ସେ କାହିଁକି ହସୁଥିଲେ ମନକୁ ମନ । ଉତ୍ତରଳ ଆମୋଦ ଯେ ତାଙ୍କ ପୁଅ, ଯେତେହେଲେ ଇଂରେଜି ଅନର୍ସ୍ ବାପର ପୁଅ, ସେ ଲେଖିଛି ଏଇ କବିତା, କିନ୍ତୁ ବିଚରା ମାଷ୍ଟ୍ରେ ସେଥିରେ ବାଉଳା ହୋଇ ଯାଇଛନ୍ତି, କାରଣ ରସବୋଧ ଜିନିଷଟା ନାହିଁ ତାଙ୍କ ପାଖରେ ।

ପରେ ବୁଝିଲି ଏଇ ସବୁ କଥା । ମଧ ବିଶ୍ୱାସ କରିବାକୁ ଚାହିଁଲି, ମୁଁ ଗୋଟିଏ ଛୋଟ ମୋଟ ଲେଖକ ହିସାବରେ ଗଣା ହେଲା ବେଳକୁ, ଯେ ବାପାବୋଉ ଯଥାର୍ଥରେ କହୁଥିଲେ ମୋର ଗଜୁରି ଉଠୁଥିବା କବିତ୍ୱ ବିଷୟରେ । କୁଆଡ଼େ ମୋ ଉପମାଚାତୁରୀ ମୋ ପିଲାଦିନୁ ଦିଶି ଯାଉଥିଲା, ଜଳ ଜଳ ହୋଇ । ଯଥା - ଗୋଟାଏ ଚଉକିର ଗୋଡ଼ ଛୋଟ ଥିଲାରୁ ତଳେ ଲାଗୁ ନଥିଲା । ସେଇଠୁଁ ମୁଁ କହିଲି ବୋଉକୁ, ଜାଣିଛୁ କଣ ହୋଇଛି ? ତାକୁ ପିଂପୁଡ଼ି କାମୁଡୁଛି କି ନା, ସେଇଲାଗି ସେ ଗୋଡ଼ ଉପରକୁ ଟେକିଛି । ସେମିତି କୁଆଡ଼େ କହିଥିଲି ନାଲିମେଘବିଶିଷ୍ଟ ସୂର୍ଯ୍ୟାସ୍ତକୁ ଦେଖି, ଯେ କଡ଼େଇରେ ରଂଧା ହେଉଥିବା ଛେନାବଡ଼ା ନାଲି ପଡ଼ି ଆସୁଛି । ଇତ୍ୟାଦି ।

ମୋ ଲେଖକପଣିଆକୁ ନେଇ ଏହି ପ୍ରକାର ସିଂହାବଲୋକନର ସତ୍ୟାସତ୍ୟ ଓ ବିଶ୍ୱସନୀୟତା ପର କଥା । କିନ୍ତୁ ସେଦିନ ବାପା ମୋର ବର୍ଷାରତୁକୁ ଅଳ୍ପବହୁତ ଭଲ ପାଇଲେ, ମାଷ୍ଟ୍ରଙ୍କର ମୋଟା ଛକିକୁ ଅଗ୍ରାହ୍ୟ କରି, ସେଇ କଥାଟା ମୋତେ ଯେଉଁ ବଳ ଦେଲା ମୋର ମନଇଚ୍ଛା ଗପ, କବିତା ତଥା କାବ୍ୟିକ ଏଣୁତେଣୁ ଲେଖିବା ପାଇଁ, ତାର ମୂଲ୍ୟ ଅନସ୍ୱୀକାର୍ଯ୍ୟ । କେତେ ଲେଖିଛି ଓ ଛିଣ୍ଡେଇଛି ଏବଂ ହୁଏତ ଯୁଗେ ଲାଗି ଯାଇଛି ତାକୁ ପ୍ରକାଶ କରିବା ପାଇଁ । କିନ୍ତୁ ମୁଁ ଆଉ ପଛକୁ ଚାହିଁ ନାହିଁ ।

ମୋର ଯାହା ମନେ ପଡୁଛି ମୋର ପ୍ରଥମ କବିତା ଥିଲା 'ମେରୀରାଣୀଙ୍କ ହୃଦୟଧନ' ପଂଚମ ଜର୍ଜଙ୍କ ବିୟୋଗରେ ଶୋକ ମନେଇବାର ଉଦ୍ୟମ । ୧୯୩୬ । ମୋତେ ସେତେବେଳକୁ ବାର ପୂରି ତେର ଚାଲୁଛି, ଏବଂ ଆମେ ସେତେବେଳେ କେନ୍ଦ୍ରାପଡ଼ାରେ ।

ସେଦିନଠୁଁ ଆଜିକୁ ଅନେକ ଦୂର । କେବଳ ସମୟର ଦୂରତ୍ୱ ନୁହେଁ, ମଧ୍ୟ ଭାବଭାବନା, ଚିଂତାଚେତନା ଏବଂ ମୋର ଅନୁଭୂତ ସତ୍ୟର ଅଭିଜ୍ଞତା ଓ ସେଥିର ଆଲୋକଦର୍ଶନକୁ ନେଇ । କେତେଥର ଝୁଣ୍ଟିଛି, ମଧ ଅକ୍ଷମଣୀୟ ବିଳମ୍ବ ହୋଇଛି ନିଜକୁ ଉପସ୍ଥାପିତ କରିବାରେ । କିନ୍ତୁ ଗୋଟିଏ ପ୍ରଶ୍ନ ମୁଁ ନିଜକୁ ପଚାରିଛି, ଅନ୍ୟମାନଙ୍କ ପ୍ରଶ୍ନର ଉତ୍ତର ଦେଲା ପୂର୍ବରୁ, ଯେ ମୁଁ କାହିଁକି ଲେଖି ଚାଲିଲି । ବାରତେରବର୍ଷ ବୟସରେ ପିଲାଳିଆ କବିତାଟିଏ ଲେଖିବା କିଛି ବଡ଼ କଥା ନୁହେଁ । କିନ୍ତୁ ସେ ବୟସର ଶହଶହ 'କବି'ଙ୍କ ଭିତରୁ ମାତ୍ର ଅଳ୍ପ କେତେ ଜଣ ତାଙ୍କ ବଡ଼ଦିନକୁ ମଧ୍ୟ ଲେଖନ୍ତି, ତଥାପି ଲେଖୁଥାଆନ୍ତି ଜୀବନ ଯାତ୍ରାର ନାନା ସୁଖଦୁଃଖର ଫାଂକରେ, ଯଦି ତାହା ନିତାନ୍ତ ଦୁର୍ବିସହ ନ ହୋଇ ଉଠେ । ପ୍ରଶ୍ନ ଯେ ମୁଁ ମଧ କେମିତି ଓ କାହିଁକି ତାଙ୍କରି ଭିତରୁ ଜଣେ ହେବାକୁ ଚାହିଁଲି ? କେଉଁ ବିଶେଷ କାରଣ ମୋତେ ଅକ୍ଳାନ୍ତ ଅନବରତ ଲେଖାଲେଖି କରିବାକୁ କହିଲା, ଯାହାର ମୂଳକଥା ହେଲା ସୃଷ୍ଟି ? ଭାବୁଛି ଏଇଠି ସେ ବିଷୟରେ କିଛି କହିଲେ ଭଲ ହେବ, ଜୀବନ ଚରିତକୁ ଆଗେଇ ନେବା ପୂର୍ବରୁ । ମନୋବୈଜ୍ଞାନିକମାନଙ୍କର ବିଭିନ୍ନ ଥିଓରିକୁ ମନେ ପକାଇ ।

ମୁଁ ଯାହା ସ୍ୱୀକାର କରିଛି ଏଥି ପୂର୍ବରୁ, ମୁଁ ଥିଲି ଗୋଟିଏ ଆତ୍ମଭୋଳା ଶିଶୁ ଓ ବାଳକ, ତାର କାରଣ ଯାହା ହେଉ ପଛେ, ଯାହାଙ୍କୁ ମନସ୍ତତ୍ତ୍ୱବିଦ୍‌ମାନେ ଇଣ୍ଟ୍ରୋଭର୍ଟ ବୋଲି କୁହନ୍ତି । ଏବଂ ଯେହେତୁ ସେମାନଙ୍କର ସଂପର୍କ ସୀମିତ ବାହାର ଦୁନିଆଁ ସାଙ୍ଗରେ, ସେମାନେ ନିଜ ଦୁନିଆଁ ଗଢ଼ିବାରେ ମାତି ଯାଆନ୍ତି । ଅନ୍ୟ ଅର୍ଥରେ କେଶବ କଣ୍ଢେଇ ସାଙ୍ଗରେ ଘଣ୍ଟା ଘଣ୍ଟା ଧରି କଥାଭାଷା ହେଉଥିବା କେଶବ ସେହିପ୍ରକାର ସୁଖବୋଧର ଊର୍ଦ୍ଧ୍ୱକୁ ଯାଇ ପାରିଲା ନାହିଁ । ହୁଏତ ଯିବାକୁ ଚାହିଁଲା ନାହିଁ । ସତରେ କଣ ଏଇଆ ?

କିନ୍ତୁ ଆଠ ନଅ ବର୍ଷ ବେଳକୁ ମୁଁ ତ ସ୍କୁଲରେ ପଢ଼ିଲିଣି ? ଏବଂ ଏମିତି ହେଲା ଯେ ଚଉଦ ବର୍ଷ ବେଳକୁ ମୋତେ ବାପାବୋଉଙ୍କ ସାନ୍ନିଧ ଛାଡ଼ି ଆଉ ଗୋଟାଏ ସହର ଏବଂ ଭିନ୍ନ ପରିବେଶକୁ ଯିବାକୁ ପଡ଼ିଲା, କଲେଜପାଠ ପଢ଼ିବା ଲାଗି । ତେଣୁ ବାହାର ଏବଂ ଭିନ୍ନ ଦୁନିଆଁ ସାଙ୍ଗରେ ମୋର ସଂପର୍କ ଏବଂ ସେଥିରୁ ଉପୁଜିଥିବା ଘାତପ୍ରତିଘାତ ଊଣା ନ ଥିଲା, ତାର ଅନୁପ୍ରବେଶରେ ଯତ୍‌ସାମାନ୍ୟ ବିଳମ୍ବ ହୋଇଥିଲେ ମଧ । ତଥାପି, ମୁଁ ଏତେ ବେଶୀ ବ୍ୟାକୁଳ ହେଲି କାହିଁକି ନିଜ ସାଙ୍ଗରେ କଥାଭାଷା ହୋଇ ନିଜର କୋଉ ସଂସାର ଗଢ଼ି ତୋଳିବା ପାଇଁ ? ଡାଏରୀ, ଏବଂ ସେଇଠୁଁ ଗପ କବିତା, ସେସବୁ ଛପା ହେଉ ବା ନ ହେଉ ?

ବାପାଙ୍କୁ କି ମାଷ୍ଟରଙ୍କୁ ଖୁସି କରିବା ପାଇଁ ହୁଏତ ମୋର ସେଇ ପହିଲି କବିତା ଲେଖିଥିଲି । କିନ୍ତୁ ଅନେକ ଅନ୍ୟାନ୍ୟ ଲେଖା ମୁଁ ଲେଖିଛି ସେତେବେଳେ ଏବଂ ମୋର କୈଶୋର ଏବଂ ଆଦ୍ୟ ଯୌବନରେ, ଯାହାର ଉଦ୍ଦେଶ୍ୟ ଥିଲା କେବଳ ନିଜକୁ ସୁଖ ଦେବା । ମଧ୍ୟ ବାହାର ଦୁନିଆଁକୁ ନେଇ ମୋର ନାନା ଅଭିଯୋଗ (ସେଥିରେ ବାପାଙ୍କ ସମେତ ବିଭିନ୍ନ କର୍ତ୍ତୃପକ୍ଷ ଥାଇ ପାରନ୍ତି) ବ୍ୟକ୍ତ କରି ନିଜକୁ ଖଲାସ କରିବାର ସୁଖ ପାଇବା ପାଇଁ ।

ତା'ମାନେ ତୁ ଭୀରୁ ହୋଇ ରହିଗଲୁ ପରା ? ଏତିକି ବୁଝୁନୁ ? ସେମାନଙ୍କ ସାଙ୍ଗରେ ତର୍କ କରିବାର, ଲଢ଼େଇ କରିବାର ସାହସ କି ଶକ୍ତିର ଅଭାବ ହେତୁ ତୁ କାଗଜ କଲମରେ ଲଢ଼ିଲା ପରି ହେଲୁ ତାଙ୍କ ସାଙ୍ଗରେ । ତୋ ନିପାରିଲାପଣର ଅବବୋଧ ହିଁ ତୋତେ ଦେଖେଇଲା ଏଇ କ୍ଷତିପୂରଣର ବାଟ । ... ହଁ, ଇଏ ବି ଗୋଟାଏ ଥିଓରି, ଯାହାକୁ ମନସ୍ତତ୍ତ୍ୱବିଦ୍ ଆଡ୍‌ଲର ବାଢ଼ି ଦେଇଛନ୍ତି । ମୁଁ ଜାଣେ ସେକଥା । ଆଉ ଏଇ କ୍ଷତିପୂରଣକାରୀ ଶବ୍ଦସଂବଳିତ ଆତ୍ମକଥନ କଣ ବେଶି କାର୍ଯ୍ୟକାରୀ ହୁଏ ନାହିଁ (ହୁଏତ ତାର ସତମିଛପଣର ରହସ୍ୟ ଯୋଗୁଁ) ଯେତେବେଳେ ତମେ ତାକୁ ବ୍ୟକ୍ତ କର କଥା ଓ କବିତାରେ ? ଆଉ ଏଇଆଙ୍କୁ ତ ସୃଜନ କୁହନ୍ତି ?

କ୍ଷମା କରିବେ, ମୁଁ ନିଜକୁ ଭୀରୁ ବୋଲି ସ୍ୱୀକାର କରିବାକୁ ନାରାଜ । ମୋ ନିର୍ଭୀକତାର ଯଥେଷ୍ଟ ପ୍ରମାଣ ରହିଛି ମୋର କର୍ମଜୀବନରେ । ହଁ, କହିଲେ ଭୁଲ୍ ହେବ ନାହିଁ ଯେ ମୁଁ ମୋଟାମୋଟି ଶାନ୍ତିପ୍ରିୟ । ନିଷ୍ଫଳ କଂଦଳ, ଯୁକ୍ତିତର୍କର ବିମୁଖ । କଣ ହେଲା ସେଥିଁ ? ମୋ ସୃଜନାତ୍ମାର କଣ ସଂପର୍କ ଅଛି ତା ସାଙ୍ଗରେ ?

ସେଇଠୁଁ ଆସନ୍ତୁ ମନସ୍ତତ୍ତ୍ୱର ଆଦିଗୁରୁ ଫ୍ରଏଡ୍‌ଙ୍କୁ ପଚାରିବା । ସେ କୁହନ୍ତି କଣ ନା କଳାପ୍ରବଣତା ମୁଖ୍ୟତଃ ସଂସାରର ବାସ୍ତବତାଠାରୁ ପଳାୟନ ଛଡ଼ା ଆଉ କିଛି ନୁହେଁ । ଅର୍ଥାତ୍ ଇଣ୍ଟ୍ରୋଭର୍ଟ କେଶବ ସଂସାର ଭିତରେ ପଶିଲା ସତ, ସେଥିରେ ଯାବତୀୟ ଦାୟିତ୍ୱ ନିଭେଇଲା, ହଜାର ଲୋକଙ୍କ ସାଙ୍ଗରେ ସଂପର୍କ ବାନ୍ଧିଲା, କିନ୍ତୁ ସେ ସଂସାରକୁ ଗ୍ରହଣ କରି ନେଇ ପାରିଲା ନାହିଁ । ସେହେତୁ ଏଇ ପଳାୟନ । ଏବଂ ପଳେଇ ଯାଇ ନିଜ ସଂସାର ଗଢ଼ିବାର ପ୍ରବଣତା ।

ନା ! ଆମେ କଳାକାରମାନେ ମୋଟେ ଏଇ ଥିଓରିକୁ ମାନି ନେଇ ପାରିବୁ ନାହିଁ । ଆସନ୍ତୁ ମୁଁ ଗୋଟାଏ ତାତ୍ତ୍ୱିକ ମୁକାବିଲା କରିବାକୁ ପ୍ରସ୍ତୁତ ତା ସାଙ୍ଗରେ, ଜଣେ ଭାରତୀୟ ହିସାବରେ । କହିବି ଯେ ମୋ ଦେଶର ମନୀଷିମାନେ ଯେଉଁ 'ମୁମୁକ୍ଷା'ର ଅବତାରଣା କରିଛନ୍ତି, ନିଜର ଅହଂ (ତମ ଭାଷାରେ ଇଗୋ) ଠାରୁ ମୁକ୍ତି ପାଇ ଶାନ୍ତି ଲଭିବା ପାଇଁ, ମୋ ସାହିତ୍ୟରଚନା ତାର ଅନ୍ୟତମ ସାଧନ । ହୁଏତ ତଳ ପାହାଚ, ହେଲେ ସେଇ 'ନେତି ନେତି'ର ଉଚ୍ଚାରଣ । ତେଣୁ ତମେ ଯାହାକୁ ପଳାୟନବାଦ ବୋଲି କହୁଛ ମୋ ପାଇଁ ତା ନାଆଁ ମୁକ୍ତିବୋଧ । ତେଣୁ ସ୍ୱାଗତଯୋଗ୍ୟ । ହେଲା ?

ଛାଡ଼ନ୍ତୁ । ମୁଁ ହାରିବାକୁ ନାରାଜ, ବ୍ୟକ୍ତିବିଶେଷ କିମ୍ବା ଜଣେ କଳାକାର ହିସାବରେ । ଖାଲି ଏତିକି କହିବି ଯେ ସାହିତ୍ୟରଚନା ମୋ ପାଇଁ ଏକ ଅପରିହାର୍ଯ୍ୟ ତାଡ଼ନା ହୋଇ ରହିଗଲା । ଖାଇପିଇ ହସି କାନ୍ଦି, ପ୍ରେମଘୃଣା ଆଦି ଯାବତୀୟ ଅନୁଭବ ବାଟ ଦେଇ, ସେଇଠୁଁ ଠାକୁରଙ୍କ ପାଖରେ ମୁଣ୍ଡିଆଟାଏ ମାରି ମୁଁ ବଂଚି ରହିପାରିଲି ନାହିଁ । ବାରମ୍ବାର କହି ହେଲି ନିଜକୁ ଯେ ଏଇ ଯଥେଷ୍ଟ ନୁହେଁ । ସତେକି ମୁଁ ଗ୍ରୀକ୍ ଦାର୍ଶନିକ ଆରିଷ୍ଟୋଟ୍‌ଲଙ୍କ ପଟ୍ଟଶିଷ୍ୟ, ଯେ ବେଶ୍ ବୁଝିପାରୁଛି ତାର ଶିରାରେ ଶିରାରେ ଯେ "a life not examined is not worth living" । ବଂଚି ରହିବା ମୂଲ୍ୟହୀନ ଯଦି ତମେ ସେଇ ଜିନିଷଟାକୁ ପରୀକ୍ଷା ନ କର । ହେଲେ ମୁଁ କେଉଁ ଦାର୍ଶନିକ ନିଷ୍କର୍ଷ ବାଢ଼ି ଦେଇ ପାରିବି ନାହିଁ ମୋ ପାଠକପାଠିକାମାନଙ୍କ ପାଇଁ । କାହିଁକିନା ମୁଁ ତଥାପି ଗୋଟିଏ ସଂଧାନୀ ହୋଇ ରହିଗଲି । କିନ୍ତୁ ସେଇ ସଂଧାନର ବିଚିତ୍ରସୁନ୍ଦର ଆବିଷ୍କାର ଗୁଡ଼ିକ, ତାହାହିଁ ମୋତେ ଯଥାର୍ଥ ସୁଖ ଆଣିଦେଇଛି ବୋଲି ମୋର ମନେ ହୁଏ, ଏବଂ ତା ମୋ ପାଠକପାଠିକାମାନଙ୍କୁ ମଧ ଭଲ ଲାଗିବ ବୋଲି ମୋର ବିଶ୍ୱାସ ।

ପରିଶେଷରେ ମୁଁ ଏତିକି କହିବି ଯେ ମୁଁ କୃତଜ୍ଞ ମୋର ବାପାବୋଉଙ୍କ ପ୍ରତି, ବିଶେଷତଃ ବାପାଙ୍କ ପ୍ରତି, କହିବାକୁ ଗଲେ ମଧ୍ୟ ସେଇ ଟିଉସନ୍ ମାଷ୍ଟରଙ୍କ ପ୍ରତି, ଯେଉଁମାନଙ୍କ ଯୋଗୁଁ ମୁଁ ନିଶ୍ଚିତ ଭାବରେ ମୋର ଏଇ ନିଜପସନ୍ଦ ବାଟରେ ଗତି କରି ପାରିଲି, ତାକୁ କ୍ଷତିପୂରଣକାରୀ କୁହ ବା ଆଉ ଯାହା । ଯତିପାତଠାରୁ ଆରମ୍ଭ କରି ସାହିତ୍ୟ ଯାଏଁ । ଏବଂ ମୋର ଏଇ ମାନସିକତା ପଛରେ ଯଦି କେଉଁ ଜିନ୍‌ସ୍ (genes) ବୋଲାଉଥିବା ଜୈବୀ ମୂଳଧନ ଥାଏ, ତାହା ମଧ୍ୟ ମୋର ନମସ୍ୟ । କିନ୍ତୁ ସେଣିକି ମୁଁ ଯେଉଁ ଭାବରେ ଚାଲିଛି, ମୋର ସୃଜନ ପ୍ରବଣତାକୁ ମୁଠେଇ ଧରିଛି, ସତେକି ଇଏ ଗୋଟାଏ ଜୀବନ ମରଣର ପ୍ରଶ୍ନ, ସେଥିପାଇଁ କେବଳ ମୁଇଁ ଦାୟୀ । ଆଉ କେହି ନୁହେଁ । କେତେକ ଅନ୍ୟମାନେ ମୋତେ ପ୍ରୋତ୍‌ସାହିତ କରିଛନ୍ତି, ମଧ ପ୍ରଭାବିତ କରିଛନ୍ତି ବୋଲି କୁହାଯାଇପାରେ, କିନ୍ତୁ କାହାରି ପ୍ରେରଣା ମୋ ସାହିତ୍ୟ ରଚନାର ଗଂଗୋତ୍ରୀ ବୋଲି କହିବା ଭୁଲ ହେବ ।

ବର୍ତ୍ତମାନ ଠିକେ ଠିକେ କହୁଛି ଶୁଣନ୍ତୁ ମୋର ସ୍କୁଲଗତ ଛାତ୍ରଜୀବନର କାହାଣୀ । ଭଦ୍ରକ ହାଇସ୍କୁଲ୍‌ର ଷଷ୍ଠ ଶ୍ରେଣୀରୁ ଆରମ୍ଭ ।

ପ୍ରଥମେ ହେଲା ଘରର ଅନ୍ତରଂଗ ଓ ବିଶ୍ୱସ୍ତ ପରିବେଶରୁ ବାହାରି ଆସି କ୍ଲାସ୍‌ପିଲାଙ୍କ ସହିତ ହେଳମେଳ ହେବା । କହିବା ବାହୁଲ୍ୟ ଯେ ସେଇ କାମଟା ବିଶେଷ ସହଜ ନ ଥିଲା ମୋ ପାଇଁ । ମୋର ସ୍ୱଭାବଚରିତ୍ର ଛଡ଼ା ମୁଁ ଥିଲି ମୁନ୍‌ସଫ୍ ସାହେବଙ୍କ ପୁଅ, ଯାହାକୁ ଜଣେ ଚାକର ସ୍କୁଲ୍‌ରେ ଆଣି ଛାଡ଼ି ଦେଉଛି । ସେମାନେ କଣ ହସୁଛନ୍ତି ମୋ ପଛରେ ? ଫୁସ୍‌ଫୁସ୍ ହେଉଛନ୍ତି ? ସମୟ ଲାଗିଲା ସେମାନଙ୍କୁ ଜଣାଇବା ପାଇଁ ଯେ ମୁଁ କିଛି ଭିନ୍ନ ନୁହେଁ ସେମାନଙ୍କ ଠାରୁ, ମୋତେ ବିଶ୍ୱାସ କର ।

ଯାହାହେଉ ଯଥାଶୀଘ୍ର ବୁଝାପଡ଼ିଲା ଯେ ଏଇ ନୂଆ ପିଲାଟି ମଧ୍ୟ ଗୋଟିଏ ପାଠୁଆ ପିଲା । ପ୍ରଥମ ବାର୍ଷିକ ପରୀକ୍ଷାରେ ମୁଁ ଚତୁର୍ଥ ସ୍ଥାନ ଅଧିକାର କରିଥିଲି । ଏବଂ ପରେ ପରେ ତୃତୀୟକୁ ଉଠିଲି ଆଉ ଜଣକୁ ଠେଲି ଦେଇ । ସେଇଠୁଁ କେତେବେଳେ ମୁଁ ତ କେତେବେଳେ ସିଏ ଠେଲାପେଲା ହେଉଥିଲୁ ଏଇ ତୃତୀୟ ସ୍ଥାନ ପାଇଁ । ହେଲେ ଏଇ ପିଲାଦିନର ପ୍ରତିଦ୍ୱଂଦୀ ମଧ୍ୟ ମୋର ଜଣେ ଭଲ ସାଙ୍ଗ ହୋଇପାରିଥିଲା । ମୋର ସବୁଠୁଁ ପୁରୁଣା ସହପାଠୀ ବଂଧୁ । ଏବଂ ସେଦିନର ସ୍ମୃତିକୁ ନେଇ ଆମେ ପରସ୍ପର ପ୍ରତି 'ତୁ' ସଂବୋଧନ ନ କରି ରହିପାରୁ ନ ଥିଲୁ, ବଡ଼ ହୋଇ ବିଭିନ୍ନ କଲେଜରେ ଏକାଠି ପାଠ ପଢ଼ିବା ଯାଏଁ । ଯଦିଓ ବିଜ୍ଞାନର ଛାତ୍ର ହୋଇ ସେ କାଳକ୍ରମେ ମୋ ଠାରୁ ଦୂରେଇ ଯାଇଥିଲା । ଏଇ ପିଲାଟିର ନାଆଁ ହେଉଛି ମହେନ୍ଦ୍ର କୁମାର ରାଉତ । ଭବିଷ୍ୟତରେ ଜଣେ ବିଶିଷ୍ଟ ଅଧ୍ୟାପକ, ରେଭେନ୍ସା କଲେଜର ଅଧକ୍ଷ ଏବଂ ରାଜ୍ୟ ପ୍ରଦୂଷଣ କଣ୍ଟ୍ରୋଲ୍ ବୋର୍ଡ଼ର ପ୍ରଥମ ଅଧ୍ୟକ୍ଷ ହେବାକୁ ଥିବା ପିଲା, ଯାହାର ଡାକ ନାଆଁ ଥିଲା କୁନିଆଁ । ମନେ ପଡୁଛି, ଆମର ଅନ୍ତରଂଗ କଥାଭାଷା ଭିତରେ ଯେଉଁସବୁ ବିଷୟ ଥିଲା, ତା'ଭିତରେ ମଧ୍ୟ ଥିଲା ଗୋଟାଏ ତଥ୍ୟମୂଳକ ପ୍ରଶ୍ନ - ମାଆକ୍ଷୀର ଏତେ ମିଠା ହେଲା କେମିତି ? ସେଥିରେ ଚିନି ଆସିଲା କେଉଁଠୁ ? ଦିହେଁ ଏକମତ ହେଲୁ ଯେ ସିଏ ଗୋଟାଏ ଭିନ୍ନ କିସମର ମିଠା, ତାକୁ ସରବତ କି ରସଗୋଲାର ମିଠା ସାଙ୍ଗରେ ତୁଳନା କରି ହେବ ନାହିଁ । ସେଇଠୁଁ 'ତୁ ତାକୁ ଲାଷ୍ଟ କେବେ ଚାଖିଥିଲୁ ?' ବୋଲି ଗୋଟାଏ ପ୍ରଶ୍ନ ଉଠିଥିଲା, ଯାହାର ଉତ୍ତର ଦେଇ ହେଲା ନାହିଁ ଟିକିଏ ହସିଦେବା ଛଡ଼ା । ହେଲେ ଥରେ କୋଉ କଥାରେ ଗୋଟାଏ କଳି ଲାଗିଥିଲା ଆମ ଭିତରେ, ଏବଂ ସେ ଏଇ ପଦକ ଫିଙ୍ଗିଥିଲା ମୋ ଆଡ଼କୁ ତାର ଖନି ଖନି କଣ୍ଠରେ - ତୁ କଣ, ମୁନ୍‌ସଫ୍ ପୁଅ ବୋଲି ମୁଁ ତୋତେ ଡରିଛି ? ଏବଂ ମୁଁ ତାର ଉତ୍ତର ଦେଇଥିଲି - ତୁ କଣ ଓକିଲ ପୁଅ ବୋଲି ମୁଁ ତୋତେ ଡରିଛି ? ଓକିଲ-ମୁନ୍‌ସଫ୍‌ଙ୍କ ପାରସ୍ପରିକ ପାହ୍ୟା ବିଷୟରେ କଣ ବୁଝିଥିଲୁ ଆମେ ସେତେବେଳେ, ଭଗବାନ୍ ଜାଣନ୍ତି ।

ସେଇ ନିର୍ଦ୍ଦୋଷ, ନିର୍ବୋଧ, ପିଲାଦିନିଆ ସ୍ମୃତି କଅଣ ସହଜେ ଲିଭିଯାଇ ପାରିବ ମନରୁ, ତା'ର ମିଠାପଣରେ ଯେଉଁ ଧରଣର ଚିନି ଥାଉ ନା କାହିଁକି ? ଦୁର୍ଭାଗ୍ୟ, ଯେ ଏଇ ମୋର ସବୁଠାରୁ ପୁରୁଣା ପିଲାଦିନିଆ ସାଙ୍ଗଟା ଅକାଳରେ ଚାଲିଗଲା । ତାର ବିଦ୍ୟାବୁଦ୍ଧିକୁ ନେଇ ସେ ଆହୁରି ଅନେକ କିଛି କରିପାରିଥାଆନ୍ତା ।

ମୋଟାମୋଟି ଭଦ୍ରକରେ ମୁଁ ତଥାପି ପିଲା ଥିଲି । ହେଲେ ସେଇଠି ଘରୁ ପଦାକୁ ବାହାରିଲି, ସ୍କୁଲ ମୋତେ ଆରେଇଗଲା, ଫାଷ୍ଟସେକେଣ୍ଡ୍ ନ ହେଲେ ମଧ୍ୟ ପାଠୁଆ ପିଲାଟିଏ ବୋଲି ଗଣା ହେଲି, କୁନିଆଁ ଏବଂ ଆଉ କେତୋଟି ଭଲ ସାଙ୍ଗ ମୋତେ ମିଳିଗଲେ ଯଥାକ୍ରମେ, ସେତିକିରେ ଯେଉଁ ପ୍ରତିଶ୍ରୁତି ମିଳିଲା ମୋତେ ଓ ପରିବାରକୁ, ତାହାହିଁ ଖୁସିର କଥା । ଘରେ

ମଧ ମୁଁ ଆଉ ଏକୁଟିଆ ନ ଥିଲି । ମୋର ଦ୍ୱିତୀୟ ଭାଇ ଜାନୀ ମୋ ସାଙ୍ଗରେ ବାଟ ଚାଲିବାର ବୟସକୁ ଆସିଗଲାଣି ସେତେବେଳକୁ । ଏବଂ କେତେବେଳେ କେମିତି ଭ୍ରାତୃସୁଲଭ ଚିମୁଟାଚିମୁଟି ଓ ଧସ୍ତାଧସ୍ତି (ମାତ୍ର ଫଉଜଦାରି ନୁହେଁ) ସତ୍ତ୍ୱେ ଆମେ ଅଧିକାଂଶ ସମୟ ଏକାଠି ଖେଳୁଥିଲୁ, ବୁଲୁଥିଲୁ, ଆଉ ବୋଉକୁ ଛାଡ଼ି ଦେଇଥିଲୁ ତୃତୀୟ କୁନି ଭାଇ ବୁଲୁର ସେବା କରିବା ପାଇଁ । ଏହି ସଂକ୍ରାନ୍ତରେ ମନେ ଅଛି ଆମେ ହାତଧରାଧରି ହୋଇ ଯାଉଥିଲୁ ପାଖରେ ଥିବା ବାପାଙ୍କ କଚେରିକୁ । ବାପା ତାଙ୍କ ଖାସ୍‌କମରାରେ ଥିଲେ ସେଇଠି ତାଙ୍କ ସାଙ୍ଗରେ ଦେଖା କରୁଥିଲୁ । ମୁଡ୍‌ରେ ଥିଲେ ବାପା ସ୍ଲିପ୍‌ଟିଏ କୋଉଠୁ ଛିଣ୍ଡେଇ ଆଣି ସେଥିରେ 'Two pice' ବୋଲି ଲେଖି ଲମ୍ବା ଦସ୍ତଖତଟିଏ ମାରି ଦେଉଥିଲେ । ସେଇ ସ୍ଲିପ୍ ନାଜରବାବୁଙ୍କୁ ଦେଖେଇଲେ ସେ ଆମ ହାତରେ ଦି'ପଇସା ଧରେଇ ଦିଅନ୍ତି, ବାପାଙ୍କ ପର୍ସନାଲ ଏକାଉଣ୍ଟରୁ । ଏବଂ ସେଇଥିରେ ଦି'ଟା ବଡ଼ ବଡ଼ ସିଂଗଡ଼ା ମିଳିଯାଏ ଆମକୁ ପାଖ ଗୁଡ଼ିଆ ଦୋକାନରୁ । ଦି'ପଇସାର ଏତେ କରାମତି ଥାଇପାରେ ବୋଲି ସହଜେ ବିଶ୍ୱାସ କରିହେବ ଆଜି ?

କିନ୍ତୁ ଏମିତି ହାତ ଧରାଧରି ହୋଇ ବାହାରେ ବୁଲୁଥିବା ହେତୁ ଆମେ ଜୀବନର ଗୋଟାଏ ବିରାଟ ଅନୁଭବକୁ ହରାଇ ବସିଲୁ । ୧୯୩୩ରେ ଘଟିଥିବା ବିହାର ଭୂମିକଂପର ଯେଉଁ ଝଟ୍‌କା ଆସିଥିଲା ଓଡ଼ିଶାକୁ । ବୋଉ, ଆମ ଘରେ ରହି ପାଠ ପଢୁଥିବା ସାନମାମୁଁ, ଏବଂ ପାଖପଡ଼ିଶା କେତେ ଲୋକ କହିଲେ କେମିତି ଝରକାକବାଟ ବାଡ଼େଇ ହେଲା, ଖଟଟା ତାଙ୍କୁ ଉଠେଇଲା ପକେଇଲା ଇତ୍ୟାଦି । କିନ୍ତୁ ଆମ ଦି'ଜଣଙ୍କୁ କିଛି ହେଲେ କିଛି ଲାଗିଲା ନାହିଁ । ଥରେ କଳ୍ପନାର ବାହାଦୂରୀ ଦେଖାଇ କହିଲି, ଯେ ଆମ ଗୋଡ଼ ତଳେ ଗୋଟାଏ ସାପ ଚାଲିଗଲା ପରି ଲାଗିଲା । କିନ୍ତୁ କେହି ମୋ କଥା ବିଶ୍ୱାସ କଲେ ନାହିଁ ।

ଭଦ୍ରକ ଜୀବନର ସ୍ମୃତିକୁ ଆବାହନ କଲାବୁ ପରିବେଶର କେତୋଟି ମଧୁମୟ ଛବି ଦିଶିଯାଏ ବାପାବୋଉଙ୍କ ସାମାଜିକ ଜୀବନକୁ ନେଇ । ପୁରୀର ବାପାବୋଉ କେଉଁ ରୋମାଣ୍ଟିକ୍ ତରୁଣତରୁଣୀ ହୋଇ ନାହାନ୍ତି ଏଇକ୍ଷଣି । ଘରେ ତିନୋଟି ପୁଅ ଏବଂ ନାନା ଦାୟିତ୍ୱର ଘରକରଣା । କିନ୍ତୁ କାହିଁ ସେମାନେ କେବେହେଲେ କଳି କରିବାର ମନେ ପଡୁ ନାହିଁ ତ ? ନା ସୁଦୂର ଅତୀତର ସ୍ମୃତି ସୁନୀଳ ପର୍ବତ ପରି ଦିଶିଯାଉଛି ମୋତେ ? ଯାହାହେଉ ସେମାନଙ୍କ ହସଖୁସିଭରା ସାମାଜିକ ଜୀବନ ସ୍ମରଣଯୋଗ୍ୟ । ଛୋଟ ସହରର କେତୋଟି ହାକିମ ହୁକୁମା କେମିତି ରୀତିମତ ଏକାଠି ହେଉଥିଲେ ପରସ୍ପର ସହିତ ଖାଲି ଗପିବା ପାଇଁ ଏବଂ 'ହୋ' ହୋ' ହୋଇ ହସିବା ପାଇଁ । ହେଲେ ତାଙ୍କ ପତ୍ନୀମାନେ ତାଙ୍କ ସାଙ୍ଗରେ ବସି ହୋ' ହୋ' ହୁଅନ୍ତି ନାହିଁ । ସେମାନେ ଖିଲିଖିଲି ହୁଅନ୍ତି ତାଙ୍କର ଭିନ୍ନ ଏବଂ ସ୍ୱତଂତ୍ର ଆସରରେ । ପରସ୍ପର ସହିତ 'ଫୁଲ', 'ବାରୁଣୀ', 'ମକର' ଜାତୀୟ ସଂପର୍କ ଯୋଡ଼ିଥିବା ମାଆମାଉସୀମାନେ । ସେଇମାନଙ୍କ ହସଖୁସି ରଂଗରସ ମୋତେ ବେଶି ଭଲ ଲାଗୁଥିଲା,

ବାପାମଉସାମାନଙ୍କର ଯୁକ୍ତିତର୍କ ଭିତରେ ରହି ରହି ହସି ଉଠିବା ଠାରୁ । ହାକିମ ହୁକୁମା ମାନଙ୍କର ଏଇ ଘରୋଇ କ୍ଲବ୍‌ର ସଦସ୍ୟ ଥିଲେ, ମୋ ବାପାବୋଉଙ୍କ ଛଡ଼ା, ରାୟ ବାହାଦୁର ଦୁର୍ଗାଚରଣ ଦାସ, ଏସ୍.ଡ଼ି.ଓ., ଅନନ୍ତ ପ୍ରସାଦ ପଣ୍ଡା, ସେକେଣ୍ଡ ଅଫିସର୍, ସ୍ଥାନୀୟ ଆସିଷ୍ଟାଣ୍ଟ୍ ସର୍ଜନ୍, ସ୍ଥାନୀୟ ପି.ଡବ୍ଲ୍ୟୁ.ଡ଼ି, ଏସ୍.ଡ଼ି.ଓ. ଓ ସେମାନଙ୍କର ପତ୍ନୀଗଣ ।

ନାରୀବିଭାଗରେ ଥିବା ମାଉସୀମାନଙ୍କ ମଧ୍ୟରେ ସବୁଠାରୁ ଚପଳା ଏବଂ ହାସ୍ୟମୟୀ ବୋଲି କିଏ ମନେ ହେଉଥିଲେ କହିବି ? ସେ ହେଉଛନ୍ତି ଓଡ଼ିଆ କଥାସାହିତ୍ୟର ଅନ୍ୟତମ ସ୍ରଷ୍ଟା ଏବଂ ମୋର ନମସ୍ୟ ଅନନ୍ତ ପ୍ରସାଦ ପଣ୍ଡାଙ୍କ ସ୍ତ୍ରୀ । ପରେ ଆହୁରି କେତେ କଥା କହିବାର ଅଛି ସେମାନଙ୍କ ବିଷୟରେ ।

କିନ୍ତୁ ଭଦ୍ରକ ପରେ ବାଲେଶ୍ୱରରେ ଛଅ ମାସ ବିତେଇବାର ସ୍ମୃତି ଏତେ ପ୍ରୀତିକର ନୁହେଁ । ପ୍ରଥମ କଥା, ବାଲେଶ୍ୱର ଜିଲ୍ଲା ସ୍କୁଲ୍‌ଟା ନିହାତି ବଡ଼ ବୋଲି ମନେ ହେଉଥିଲା ମୋର । ତେଣୁ ମୋର ଆତ୍ମସତ୍ତା ହଜିଗଲା ପରି ମନେ ହେଉଥିଲା ସେଠି । ତା'ଛଡ଼ା ମୋତେ ଭଲ ଲାଗିଲା ନାହିଁ ଯେତେବେଳେ ଆମ ଡ୍ରଇଂ ମାଷ୍ଟର୍, ତଥା ପରେ ଜଣେ ଚିତ୍ରଶିଳ୍ପୀ ଭାବରେ ଖ୍ୟାତି ଅର୍ଜନ କରିଥିବା ଗୋପାଳ କାନୁନ୍‌ଗୋ ମୋତେ ଶହେରୁ ପାଂଚ ମାର୍କ ଦେଲେ ମୋ ଡ୍ରଇଂରେ । ଏବଂ କହିଲେ - ତୋତେ ତ ମୂଳରୁ ଗାର କାଟି ଆସେ ନାହିଁ, ତୁ ଡ୍ରଇଂଗ୍ କରିବୁ କଣ ?

ସେଇ ସମୟରେ ବାଗ୍‌ଦେବୀ କଣ ଚୁପିଚୁପି କହୁଥିଲେ ମୋ କାନରେ, ମୋତେ ସାନ୍ତ୍ୱନା ଦେଲା ପରି ଯେ, କିଛି ଚିନ୍ତା ନାହିଁ ପୁଅ, ଗାର କାଟି ନ ଆସିଲେ ନାହିଁ, ଶବ୍ଦ ଗଢ଼ିବାରେ ତୋତେ କେହି ବଳେଇଯିବେ ନାହିଁ ?

ସେଠୁଁ କେନ୍ଦ୍ରାପଡ଼ା । ସ୍କୁଲଗତ ଛାତ୍ରଜୀବନର ଶେଷ ଅଧ୍ୟାୟ । ଏବଂ ଜୀବନାନୁଭୂତିର ପ୍ରଥମ ଅଧ୍ୟାୟ ଯାହାକୁ ଗଣ୍ଡଗୋଳିଆ ବୋଲି କୁହାଯିବ । କାରଣ ଏଇ ତିନିଚାରି ବର୍ଷ ଭିତରେ ମୋତେ ବୁଝିବାକୁ ପଡ଼ିଲା ଯେ ଏଣିକି ମୁଁ ବଡ଼ ହେଲିଣି, ଯଦିଓ ବଡ଼ ମଣିଷଟିଏ ହେବାକୁ ଡେରି ଅଛି ଏଇକ୍ଷଣି । ସେହେତୁ ମୋତେ ନାନାଦି ଦ୍ୱନ୍ଦ ଏବଂ ସଂଘର୍ଷ (ହୁଏତ କେତେକାଂଶରେ କଳ୍ପିତ)ର ମୁକାବିଲା କରିବାକୁ ପଡ଼ିବ ।

ପ୍ରଥମେ ସ୍କୁଲର ପରିବେଶ । ଏଣିକି କୁନିଆଁ ସଦୃଶ ପିଲାଳିଆ ତଥା ପାଠୁଆ ଏବଂ ଭାବକାତର ସାଙ୍ଗପିଲା ମିଳିବାର ଅବକାଶ କମ୍ । ଦେଖିଲି ଯେ ପାଠୁଆ କିମ୍ବା କୋଉ ହାକିମର ପୁଅ ହିସାବରେ କେହି ମୋଠୁଁ ଦୂରେଇ ଯିବେ ନାହିଁ । ମୁଁ ମଧ୍ୟ ତାଙ୍କ ଠାରୁ ଦୂରେଇ ଯାଇ ପାରିବି ନାହିଁ । ମୋତେ ମିଶିବାକୁ ପଡ଼ିବ କ୍ଲାସ୍‌ର ଛାତ୍ରଜନତା ସାଙ୍ଗରେ । ଅନ୍ୟଥା ମୋର ନିସ୍ତାର ନାହିଁ । ବେଶ୍, ମୁଁ ସେଦିଗରେ ବିଶେଷ ଚେଷ୍ଟା କରିବି ବୋଲି ଭାବିଲି । କିନ୍ତ ପାରି ଉଠିଲି ନାହିଁ । କାରଣ ଏଇଠି ପ୍ରଥମେ ମୋର ସାନପଣ ମୋତେ

ଅସୁବିଧାରେ ପକେଇଲା । ମୁଁ ଥିଲି କ୍ଲାସ୍‌ର ସବୁଠାରୁ ସାନ ପିଲା । ଭଦ୍ରକ ସ୍କୁଲରେ ବି ମୁଁ ସବାସାନ ଥିଲି ଆମ କ୍ଲାସ୍‌ରେ, କିନ୍ତୁ ସେଠି ଆମେ ସମସ୍ତେ କୈଶୋରର ବଳୟ ଭିତରେ ଥିଲୁ । କିନ୍ତୁ ଏଠି ଥୋକେ ଯୌବନର ପାଖାପାଖି ହେଲେଣି ଏବଂ ଜଣେ ଅଧେ ଯୌବନର ଛଇ ଦେଖଉଥିଲେ, ତାଙ୍କ ବୟସ ଯାହା ହେଉ ପଛେ । ତେଣୁ ତାଙ୍କ ଥଟ୍ଟାନକଲ ଭିତରେ ବେଳେ ବେଳେ ଯୌନତାର ଭାବ ତଥା ଅଶ୍ଳୀଳ ଭାଷାର ବାହାଦୂରୀ ଥାଏ । ଯାହା ସାଙ୍ଗରେ ମୁଁ ନିଜକୁ ମିଶେଇ ପାରୁ ନଥାଏ । ଏକେ ମୋର ବୟସ ହୋଇ ନ ଥାଏ ଶୃଂଗାରରସକୁ ଯଥାର୍ଥରେ ଉପଭୋଗ କରିବା ପାଇଁ । ଦ୍ୱିତୀୟରେ ଅଶ୍ଳୀଳ ଭାଷା ବ୍ୟବହାର କରିବା ଗୋଟାଏ ଖରାପ କଥା, ପିଲାଦିନୁ ଗଢ଼ି ଉଠିଥିବା ଏଇ ନୀତିବୋଧକୁ ହସି ଉଡ଼େଇ ଦେଇ ହେଉ ନ ଥାଏ ।

ଏଇ ପରିସ୍ଥିତିରେ ମୁଁ କେତେଦୂର ସଫଳ ହୋଇପାରିଥାଆନ୍ତି ଛାତ୍ରଜନତା ସହିତ ମିଶିଯିବା ଲାଗି, ତା ମୁଁ ଜାଣେ ନାହିଁ । ତେବେ ମୁଁ 'ଖରାପ' ହୋଇଯିବା ବିପଦରୁ ରକ୍ଷା ପାଇଗଲି, କାରଣ କେମିତି କେଜାଣି ଦି'ଜଣ ଜୁଟିଗଲେ ମୋତେ, ଯେଉଁମାନେ ମୋର ବିଶେଷ ସାଙ୍ଗ ହେବାକୁ ଚାହିଁଲେ, ଏବଂ ସେମାନଙ୍କୁ ସେଇ ଜନତା-ଗୁଣ ଛୁଇଁ ନ ଥିଲା । ସେମାନେ ନିଜକୁ ବଂଚେଇ ରଖୁଥିଲେ 'ଯୁବ ଜନତାର' ମଉଜିଆ, ତହୁଁ ଅଶ୍ଳୀଳ କାରବାରରୁ । 'ଗୋଠଖଣ୍ଡିଆ', 'ମାଇଚିଆ' ଆଦି ବିଦ୍ରୂପୋକ୍ତିକୁ ଶୁଣି ନ ଶୁଣିଲା ପରି ହୋଇ ମୁଁ ତାଙ୍କ ଆହ୍ୱାନକୁ ସ୍ୱୀକାର କଲି । ଏବଂ ଅବିଳମ୍ବେ ଏଭଳି ଆତ୍ମୀୟତା ଗଢ଼ି ଉଠିଲା ଆମ ଭିତରେ ଯେ ଆମେ ନିଜକୁ ନିଜେ ତଥା ଅନ୍ୟମାନଙ୍କ ଆଖିରେ ଏକ ବିଚିତ୍ର ତ୍ରିଶକ୍ତି ବୋଲାଇଲୁ । ଯାହାର ନାଆଁ ଥିଲା 'ନବ-କିଶୋର-ଶକ୍ତି' । ନବ କିଶୋର ମହାନ୍ତି, କିଶୋରୀ ଚରଣ ଦାସ ଓ ଶକ୍ତିଶେଖର ଦାସ ନାମକ ତିନୋଟି ଭିନ୍ନମନ୍ୟ ପିଲାଙ୍କ ମେଣ୍ଟ ।

ଏଇ ମେଣ୍ଟ ଯୋଗୁଁ ମୁଁ ସେଇ ତଥାକଥିତ ବଡ଼ପିଲାମାନଙ୍କ ଦାଉରୁ ରକ୍ଷା ପାଇଗଲି, ଖାଲି ତା ନୁହେଁ । ଏକ ଅସାଧାରଣ ଭାବଭାବନାର ମଂଜି ପୋତି ହୋଇଗଲା ମୋ ଚେତନାରେ । ଅସାଧାରଣ ଏଇଥିପାଇଁ ଯେ ତାହା କ୍ୱଚିତ୍ ଏତେ ଆକୃଷ୍ଟ କରିପାରେ ତମକୁ, ଏତେ ଅଳ୍ପ ବୟସରେ । ତାର ଅନ୍ୟ ନାଆଁ ହେଉଛି ଆଦର୍ଶ । ଆଧ୍ୟାତ୍ମିକତାର ପାଖାପାଖି, ଏବଂ ତାର ମୂଳାଧାର ଥିଲା ଶକ୍ତି । ଯାହା ସେ ଆମ ପାଖରେ ପହଂଚେଇ ଦିଏ, ମହାତ୍ମାଗାନ୍ଧି, ରାମକୃଷ୍ଣ ପରମହଂସ, ବିବେକାନନ୍ଦ ଇତ୍ୟାଦି ମହାପୁରୁଷମାନଙ୍କର ମୁଖନିଃସୃତ ବାଣୀ ଶୁଣେଇ । ହେଲେ ଆମକୁ ପାଠ ପଢ଼େଇଲା ପରି ନୁହେଁ, ସେ ନିଜେ ସେଥିରେ ଭୋଳ ହୋଇ ଆମକୁ ସେଇ ଆନନ୍ଦର ସାଥି ହେବାକୁ କହିଲା ପରି । ଏକ ମହାନନ୍ଦର ଅନୁଭବ, ଯାହାକୁ ସେ ଧରି ରଖିପାରୁନାହିଁ । ଏପରିକି ମୁଁ ଦେଖେ ତାର ଦେହ ଥରିଉଠୁଛି କେମିତି, ସେଇସବୁ ମହତ୍ ବାଣୀ ଉଚ୍ଚାରଣ କଲା ବେଳେ । ସତେ ମୁଁ ଏତେ ମୁଗ୍ଧ ହୋଇଯାଉଥିଲି

ତା'କଥାରେ ଯେ ସେ ମୋର ଆଗ୍ରହ ଦେଖି ମୋତେ ଗୋଟିଏ ନୋଟ୍‌ବହି ଉପହାର ଦେଇଥିଲା, ଯେଉଁଥିରେ ସେ ନିଜ ହାତରେ କେତେ ଶ୍ଳୋକ, ସୂକ୍ତି ଏବଂ ସାରକଥା ଲେଖି ଦେଇଥିଲା ମୋ ପାଇଁ । ବହି ଖଣ୍ଡକ ଏବେ ମଧ୍ୟ ଅଛି ମୋ ପାଖରେ ।

ଶକ୍ତି । ଗୋରା, ହୃଷ୍ଟପୁଷ୍ଟ ଗେଧେକା ପିଲାଟିଏ । ପଢ଼ାପଢ଼ିରେ ମୋଠାରୁ ଉତ୍‌କୃଷ୍ଟ ନୁହେଁ । ଏବଂ ସେ ଏତେ ଓଜନିଆ କଥାର ଅବତାରଣା କରେ ସିନା, ତାର ଖୋଲା ହସ ପିଲାଙ୍କ ପରି । ଏବଂ ତା ଆୟତ ଆଖିର ଜ୍ୟୋତିରେ କେଉଁ କୃତ୍ରିମତା କି ବଡ଼େଇର ମଳିଧୂଳି ଥିଲା ପରି ମନେ ହୁଏ ନାହିଁ ।

ସେଇ ମୋ ମାନସିକତାରେ ଗୋଟାଏ ଭିନ୍ନଧରଣର ଦ୍ୱଂଦ୍ୱ ସୃଷ୍ଟି କରିଦେଇଗଲା । ଯେତେଟା ସେତେବେଳେ ନୁହେଁ, ମୋର ପରବର୍ତ୍ତୀ ଲେଖକୀୟ ଜୀବନରେ । ଏଭଳି ଏକ ଲେଖକ ଯେ ନିଜକୁ ଜଣେ ବାସ୍ତବବାଦୀ ଏବଂ ଚିନ୍ତାଶୀଳ ବ୍ୟକ୍ତି, ଅନ୍ୟ ଅର୍ଥରେ ଇଣ୍ଟେଲେକ୍‌ଚୁଆର୍ ବୋଲି ମନେ କରି ଆସିଛି । ଏବଂ କେଉଁ ଚିକିଚିକି ହୋଇ ଝଟକୁଥିବା ବସ୍ତୁକୁ ସହଜେ ସୁନା ବୋଲି ଗ୍ରହଣ କରି ନେଇ ପାରିନାହିଁ । ସେହେତୁ ଏଇ ଦ୍ୱଂଦ୍ୱାତ୍ମକ ପ୍ରଶ୍ନ- ଶକ୍ତି ତୁ କଣ ସତ ?

ସତ ନୁହେଁ ବୋଲି କହି ହେଉ ନାହିଁ । କାରଣ ଶକ୍ତିର ପରଜୀବନ ଯେଉଁ ଭାବରେ ଗତି କଲା, ସେଥିରେ ତାର ବୈଷୟିକ ସ୍ୱାର୍ଥ ନୁହେଁ, ତାର ଆଦର୍ଶବୋଧ ହିଁ ତାକୁ ବେଶି ପ୍ରଭାବିତ କରିଥିଲା ବୋଲି ମନେ ହୁଏ । ତାର କର୍ମଜୀବନ ମୁଖ୍ୟତଃ ରମାଦେବୀ ଓ ଗୋପବଂଧୁ ଚୌଧୁରୀଙ୍କର ବରୀରେ ଥିବା ଆଶ୍ରମରେ କଟିଛି, ବିଭିନ୍ନ ଗଠନମୂଳକ କାମରେ ନିଜକୁ ନିୟୋଜିତ କରି । ଜଣେ ସହକର୍ମୀଣୀଙ୍କୁ ବିଭା ହୋଇଛି । ଏବେ ଭୁବନେଶ୍ୱରରେ ଅଛି । ମୁଁ ଓଡ଼ିଶାକୁ ଫେରିଆସିଲା ପରେ ଆମେ ଖୋଜି ଲୋଡ଼ି ବାହାର କରିଛୁ ପରସ୍ପରକୁ । ଏବଂ ବର୍ଷକୁ ଖଣ୍ଡେଅଧେ ଚିଠିର ଦିଆନିଆ ହୁଏ ଆମ ଭିତରେ । ବିଶେଷତଃ ନବବର୍ଷର ଅଭିନନ୍ଦନ ଜଣାଇବା ପାଇଁ । ଦେଖାହେଲେ ବିଶେଷ କିଛି ଯୁକ୍ତିତର୍କ ହୁଏ ନାହିଁ ଆମ ଭିତରେ, କିନ୍ତୁ ଆଜିର ହିଂସାତ୍ମକ ତଥା ଦୁର୍ନୀତିଗ୍ରସ୍ତ ସଂସାରକୁ ନେଇ ତାର ବିଷାଦ ବେଶ୍ ପରିସ୍ଫୁଟ ହୋଇ ଉଠେ, ତାର ପଦେ ଦିପଦ କଥାରେ । ହେଲେ ତାର ସେଇ ଖୋଲା ହସ ଏବଂ ଅମଳିନ ଚାହାଣୀ ତଥାପି ମୋ ଆଖିରେ ପଡ଼େ । ଏବଂ ମୁଁ ପୁଣି ପଚାରି ବସେ ମନେ ମନେ - ଶକ୍ତି ତୁ କଣ ସତ ?

ସେଇ ପ୍ରଶ୍ନ ମଧ୍ୟ ପଚାରିଛି ମୋର ସପ୍ତମ ଗଳ୍ପ ସଂକଳନ 'ଗମନ'ରେ ଥିବା ଗଳ୍ପ 'ତୁ କଅଣ ରାମକୃଷ୍ଣ ?' ର ନାୟକ ଏବଂ ତାର ଜିଜ୍ଞାସା ତୁଟି ନାହିଁ ଆଜିଯାଏଁ । ବହିଟିକୁ ମୁଁ ଉତ୍ସର୍ଗ କରିଛି, ବାଲ୍ୟବଂଧୁ ଶକ୍ତିର ସ୍ମୃତିରେ । ସେତେବେଳକୁ ମୁଁ ଜାଣି ନ ଥିଲି ସେ କେଉଁଠି ଅଛି ଏଇକ୍ଷଣି, ଏବଂ ଆମ ପିଲାଦିନର ସଂପର୍କ ପୁଣି ଯୋଡ଼ି ହୋଇ ନ ଥାଏ ।

ସହପାଠୀ ଶକ୍ତି ଯେଉଁ ବୀଜ ବପନ କଲା ମୋର ମାନସିକତାରେ ତାର କୌଣସି ବିଶେଷ ପ୍ରଭାବ ପଡ଼ିଥିଲା କି ନାହିଁ ମୋର ସାହିତ୍ୟ ଉପରେ, ତାର ବିଚାର ପରେ କରିବି । କିନ୍ତୁ ଏଇକ୍ଷଣି, ଏଇ କେନ୍ଦ୍ରାପଡ଼ା ରହଣି ବିଷୟରେ କିଛି କହିଲା ବେଳେ ଆଉ ଜଣଙ୍କ କଥା କହିବାକୁ ପଡ଼ିବ, ଯାହାଙ୍କର ନିଶ୍ଚିତ ସଂପର୍କ ଥିଲା ମୋର ଲେଖା ଉପରେ । ଯେତେଟା ତାର ଦିଗ ଓ ବାଗ ଉପରେ ନୁହେଁ, ତାର ମର୍ଯ୍ୟାଦା ଉପରେ । ସେ ହେଉଛନ୍ତି ସେଇ ସଦା ହାସ୍ୟମୟୀ ମାଉସୀଙ୍କ ସ୍ୱାମୀ ଅନନ୍ତ ପ୍ରସାଦ ପଣ୍ଡା । ବାପା କେନ୍ଦ୍ରାପଡ଼ାକୁ ବଦଳି ହୋଇ ଆସିଲା ବେଳକୁ ସେ ବି ଆସିଯାଇଥିଲେ ସେଠିକି, ଏବଂ କ୍ରମଶଃ ଏକ ବିଶେଷ ଘନିଷ୍ଠତା ଗଢ଼ି ଉଠିଲା ଆମ ଦୁଇ ପରିବାରଙ୍କ ଭିତରେ । ବାପା ଯେତେବେଳେ ତାଙ୍କୁ କହିଲେ ଯେ ମୁଁ ବି ଲେଖାଲେଖି କରିବାକୁ ଭଲ ପାଏ, ସେ ମୋତେ ଡକେଇ ପଢେଇ ମୋର ଭୀରୁ ଲେଖାଗୁଡ଼ିକ ଦେଖି ଏଇଟି ଭଲ ହୋଇଛି, ଏଇ ଶବ୍ଦ କିମ୍ବା ବାକ୍ୟକୁ ଏହି ଭାବରେ ବଦଳେଇଥିଲେ ଭଲ ହୋଇଥାଆନ୍ତା, ଇତ୍ୟାଦି ନାନା ପରାମର୍ଶ ଦେଉଥିଲେ । ସେତିକି ଲୋଡ଼ା ଥିଲା ମୋର୍ । ଏବଂ ଜଣେ ହାକିମ ହେଲେ ମଧ ତାଙ୍କୁ ଅଧିକ ମର୍ଯ୍ୟାଦା ମିଳୁଥିଲା ଜଣେ ଲେଖକ ହିସାବରେ, ସାଙ୍ଗ ହାକିମମାନଙ୍କ ତୁଳନାରେ, ତାହା ଗୋଟିଏ ଚମତ୍କାର ଆବିଷ୍କାର ଥିଲା ମୋ ପାଇଁ । ହଁ, ଅନନ୍ତ ମଉସା ମୋର ଗଜୁରି ଉଠୁଥିବା ଲେଖକପଣିଆକୁ ଯଥେଷ୍ଟ ସାହାଯ୍ୟ କରିଛନ୍ତି । ଅନେକ ଧନ୍ୟବାଦ । ତାରି ଅଂଶୀକାର ସ୍ୱରୂପ ମୁଁ ମୋର ତ୍ରୟୋଦଶ ଗଳ୍ପ ସଂକଳନ 'ନିଜସଂଜ' କୁ ତାଙ୍କରି ସ୍ମୃତି ପ୍ରତି ଉତ୍ସର୍ଗ କରିଛି ।

କିନ୍ତୁ ଭଦ୍ରକରୁ କେନ୍ଦ୍ରାପଡ଼ା ହୋଇ ମାଟ୍ରିକୁଲେସନ୍ ପାସ୍ କରିବା ଯାଏ ମୋର ଜୀବନ ସରାଗକୁ ଯଦି କିଏ ସବୁଠାରୁ ବେଶି ଜୀବନ୍ତ କରିପାରିଥାଏ, ଗପ-କବିତା ଲେଖିବାରେ ଆଗ୍ରହ ସମେତ, ତା ହେଉଛି କେଉଁ ବ୍ୟକ୍ତିବିଶେଷରୁ ଉର୍ଦ୍ଧ୍ୱରେ ଥିବା ଏଇ ଦେଶର ଚଳନ୍ତି ରାଜନୈତିକ ଇତିହାସ । ଅର୍ଥାତ୍ ସ୍ୱାଧିନତା ସଂଗ୍ରାମ । ଯାହା ମୋ ପାଖ ଦେଇ ଚାଲିଥିଲା ଏବଂ ବେଳେ ବେଳେ ଏତେ ପାଖରେ, ଯେ ମୋତେ ଉଡ଼େଇ ବୁଡ଼େଇ ଦେବ ବୋଲି ମନେ ହେଉଥିଲା ।

ଭଦ୍ରକରେ ଯେଉଁ ସ୍ୱାଧିନତା ସଂଗ୍ରାମର ଛାଇ ମୋ ଉପରେ ପଡ଼ିଥିଲା, ମୋର ପାଠୁଆ ଚାକିରୀଆ ବଂଶର ପରଂପରାକୁ ଭେଦ କରି, ସେଥିରେ ସଂଗ୍ରାମର ଅନୁଭବ ଊଣା ଥିଲା, ଅନେକ ଅଧିକ ଥିଲା ଆମର ଏଇ ନୂଆ ଭାରତୀୟ ସନ୍ଥଙ୍କର ଆବିର୍ଭାବ, ଯାହାଙ୍କ ନାଆଁ ମହାତ୍ମାଗାନ୍ଧି । ସେଇ ସ୍ୱାଧିନତା ଆଣିଦେବେ ବୋଲି କହୁଛନ୍ତି ଏବଂ ଭୀଷଣ ହଇରାଣ କରି ଚାଲିଛନ୍ତି ଇଂରେଜ ସରକାରକୁ । କେତେବେଳେ ଆଇନ୍‌କାନୁନ୍ ନ ମାନି ଜେଲ୍ ଯାଉଛନ୍ତି, ପୁଣି କେତେବେଳେ ଆମରଣ ଅନଶନ କରି ବସୁଛନ୍ତି, ନିଜର କି ଆଉ କାହାର ଭୁଲ୍ ସୁଧାରିବା ପାଇଁ । ଅଦ୍‌ଭୁତ ମଣିଷଟିଏ । ମୋର ମନେ ଅଛି ବାପା କେମିତି ସ୍ୱସ୍ତିର ନିଃଶ୍ୱାସ

ମାରୁଥିଲେ ତାଙ୍କର ଓପାସ ଜିଦ୍‌ଦି ଭାଙ୍ଗି ଗଲାରୁ । କିନ୍ତୁ ମୋର ମଧ ମନେ ଅଛି ସେ କେମିତି ବ୍ୟସ୍ତ ହୋଇ ଉଠିଥିଲେ, ଯେତେବେଳେ ବୋଉ ତାଙ୍କୁ ମିଛୁଟାରେ କହିଲା, ମଜା ଦେଖିବା ପାଇଁ, ଯେ ଆମ ଘରେ ରହି ପାଠ ପଢୁଥିବା ସାନମାମୁ ମଧ ଗାନ୍ଧି ଓପାସ କରିଛନ୍ତି ତାଙ୍କ ସାଙ୍ଗମାନଙ୍କ କଥାରେ ପଡ଼ି । ବାପା ବ୍ୟସ୍ତ ହୋଇ ଉଠିଲେ, ହେଲେ ରାଗିଲେ ନାହିଁ । କାରଣ ମହା ରାଜଭକ୍ତ ରାୟବାହାଦୂର ରାଧାଚରଣ ଦାସଙ୍କ ସାନଭାଇ ହୋଇଥିଲେ ମଧ ସେ ଥିଲେ ନିଛକ୍ ଜାତୀୟତାବାଦୀ । ଯାହା ପରେ ସ୍ପଷ୍ଟ ହୋଇଉଠିଲା ମୋ ପାଇଁ, ଯେତେବେଳେ ସେ କଟକକୁ ଆସିଥିବା ପଣ୍ଡିତ ନେହେରୁଙ୍କ ଛକମୁଣ୍ଡ ବକ୍ତୃତା ଶୁଣିବାକୁ ଯାଇଥିଲେ । କିନ୍ତୁ ଗୋଟାଏ ପାଖ ଜୋତା ଦୋକାନରେ ବସି, ଅନ୍ୟତମ ଗରାଖ ହିସାବରେ । ଆଉ ମୋତେ ବି ନେଇ ଯାଇଥିଲେ ସାଙ୍ଗରେ, ନେହେରୁଙ୍କୁ ଦେଖିବି ବୋଲି । ଯାହାହେଉ ଏଇକ୍ଷଣି ନିଜ ଘରେ ଗାନ୍ଧି ଓପାସ କରା ହେଉଛି ଶୁଣି ସେ ବ୍ୟସ୍ତ ହୋଇ ଉଠିଥିଲେ ସତ, କିନ୍ତୁ ରାଗିଲେ ନାହିଁ । ଖାଲି ଏତିକି କହିଲେ ବୋଉକୁ, ଯେ ଝରିକୁ କହିବ କଥାଟା ଯେମିତି ପ୍ରଘଟ ନ ହୁଏ । ବୋଉ ସେଇଠୁଁ ଠୋ ଠୋ ହୋଇ ହସିଲା । ବିଚରା ବାପା !

କିନ୍ତୁ ପରିସ୍ଥିତି ବଦଳି ଗଲାଣି କେନ୍ଦ୍ରାପଡ଼ାରେ ରହିଲା ବେଳକୁ । ବିଲାତର ଗୋଟିଏ ଗୋଲ୍‌ଟେବୁଲ୍ ବୈଠକରେ ଯେଉଁସବୁ ନିଷ୍ପତ୍ତି ନିଆଗଲା ଦେଶର ଭବିଷ୍ୟତକୁ ନେଇ, ସେଥିରେ ଆମକୁ ଅଧା-ସ୍ୱାଧିନତା ମିଳିଯାଉଛି ବୋଲି ମନେ ହେଲା । ଅର୍ଥାତ୍ ନିଜ ନିଜ ପ୍ରଦେଶରେ ଆମେ ସଂପୂର୍ଣ୍ଣ ସ୍ୱାଧିନ ହେବୁ ବୋଲି କହିଲେ ଚଳେ । କିନ୍ତୁ ଦିଲ୍ଲୀରେ ଯେଉଁ ଶାସନ ଚାଲିବ ସେଥିରେ ଆମର କର୍ତ୍ତୃତ୍ୱରେ ବିଶେଷ କିଛି ପରିବର୍ତ୍ତନ ହେବ ନାହିଁ, ବର୍ତ୍ତମାନ ପାଇଁ । ହଉ ହେଲା, ଆମ ନିଜ ଘରେ ତ ଆମେ ରାଜା ହୋଇ ରହିବୁ । ସେଇ ପ୍ରତିଶ୍ରୁତି ଧ୍ୱନିତ ହେଲା ସେତେବେଳର ଗୋଟିଏ ଗ୍ରାମୋଫୋନ୍ ରେକର୍ଡ଼ର ଗୀତରେ । 'ଆଛା ଗୋଲ୍‌ଟେବୁଲ୍ ପାଲା ଲାଗିଲାରେ !' ହେଉଛି ସେଇ ଗୀତର ଆରମ୍ଭ । ଆଉ ତା ମଝିରେ ଦ୍ରୁତ ଲୟର ପଦେ, ନାଚି ଉଠି ତାଳି ମାରିଲା ପରି - 'ଆମେ ସବୁ ମଂତ୍ରୀ ହେବା, ଦେଶୀ ଲୋକ ଗୋଟାଗୋଟା ... ।' ଥାଇ ଥାଇ ସ୍କୁଲର ପିଲାମାନେ ତଥା ଘରେ ଭାଇମାନେ ନାଚୁଥିଲୁ ସେଇ ପଦକ ବୋଲି । ସତେକି ଆମେ ହିଁ କାଲି ସକାଳେ ମଂତ୍ରୀ ହେବାକୁ ଯାଉଛୁ ! ଏଇ ଉଲ୍ଲାସର ମଧ୍ୟ ଅନ୍ୟ ଏକ ବିଶେଷ କାରଣ ଥିଲା ଓଡ଼ିଶାବାସୀଙ୍କ ପାଇଁ । କାରଣ ସେଇ ଗୋଲ୍‌ଟେବୁଲ୍ ବୈଠକରେ ସ୍ଥିର ହୋଇଥିଲା ଯେ ଓଡ଼ିଶା ଏକ ସ୍ୱତଂତ୍ର ପ୍ରଦେଶ ହେବ । ତେଣୁ ଓଡ଼ିଶାର ରାଜାମାନେ ଅର୍ଥାତ୍ ମଂତ୍ରୀମାନେ ଆଉ କାହା ସାଙ୍ଗରେ ମିଳିମିଶି ରାଜତ୍ୱ କରିବେ ନାହିଁ ଏବଂ ସୁଦୂର ପାଟଣାରେ । ଏଇଠି ରାଜତ୍ୱ କରିବେ, ଆମରି ପାଇଁ ଏବଂ ଆମରି ଲୋକଙ୍କୁ ନେଇ । ହେଲେ ଆମେ ପିଲାଏ ବୁଝିପାରିଲୁ ନାହିଁ ଭର୍ଣ୍ଣାକୁଲାର୍ ମାଷ୍ଟରଙ୍କର ଆହ୍ଲାଦ ଓ ସେଥିର ଭାଷା, ଯେତେବେଳେ ସେ କହିଲେ - ''ବୁଝିଲ ପିଲାଏ, ଏଣିକି କାହାର ଜିଭରେ

ହାଡ଼ ଅଛି ଆମକୁ କହିବ ଯେ 'ଓଡ଼ିଆ ସ୍ୱତଂତ୍ର ଭାଷା ନୟ' ? ସତେ ? ତେଣୁ ଆମର ଏଇ ମାତୃଭାଷାକୁ ଭଲ କରି ପଢ଼, ବୁଝ, ଆଉ ଏଇ ଭାଷାରେ ଲେଖ ଯାହା କିଛି ଲେଖିବାକୁ ଚାହଁ ।'' କେମିତି ବୁଝିବୁ କିଭଳି ବିପତ୍ତି ଟଳିଯାଇଛି ଆମ ଭାଷାକୁ ନେଇ, ଫକୀରମୋହନ, ରାଧାନାଥ, ଗୌରୀଶଙ୍କର ଆଦିଙ୍କ ଉଦ୍ୟମ ହେତୁ, ଏବଂ ସେଇ ସଫଳତାକୁ ଆଜି ଏଇ ଅଂଗୀକାର ମିଳିଛି ଏକ ସ୍ୱତଂତ୍ର ପ୍ରଦେଶର ଭାଷା ହିସାବରେ ? ତଥାପି ଯଥେଷ୍ଟ କାରଣ ଥିଲା ଆମର ତାଳି ମାରିବା ପାଇଁ । କିନ୍ତୁ ଆମେ ନିରାଶ ହେଲୁ ମାଷ୍ଟ୍ରେ ଯେତେବେଳେ କହିଲେ ଯେ ଚୁପ୍ କର, ଇଏ କୋଉ ତାଳି ମାରିବା କଥା ନୁହେଁ ।

ଏବଂ ଦେଶରେ ଯେଉଁ ଭୋଟ ନିଆଗଲା ପ୍ରଥମ ଥର ପାଇଁ ୧୯୩୭ ମସିହାରେ, ଦେଶୀ ଲୋକମାନଙ୍କୁ ମଂତ୍ରୀ କରିବା ଲାଗି, ତାର ସ୍ମୃତି ଭୁଲିବାର ନୁହେଁ । ଓଡ଼ିଶା ବିଧାନ ସଭା ପାଇଁ କେନ୍ଦ୍ରାପଡ଼ାର କଂଗ୍ରେସ ପ୍ରାର୍ଥୀ ଥିଲେ ଯଦୁମଣି ମଂଗରାଜ ଏବଂ ତାଙ୍କ ବିରୁଦ୍ଧରେ ଠିଆ ହୋଇଥାଆନ୍ତି ରାୟବାହାଦୂର ଲକ୍ଷ୍ମୀଧର ମହାନ୍ତି । ମୁଁ ଏବଂ ମୋର ସାଙ୍ଗପିଲାମାନେ କ୍ୱଚିତ୍ କିଛି ଜାଣିଥିଲୁ ସେମାନଙ୍କ ବିଷୟରେ । ଖାଲି ଏତିକି ଯେ ଯଦୁମଣି ମଂଗରାଜଙ୍କ ପଛରେ ମହାତ୍ମା ଗାନ୍ଧିଙ୍କ ଆଶୀର୍ବାଦ ଅଛି ଏବଂ ଲକ୍ଷ୍ମୀଧର ମହାନ୍ତିଙ୍କ ପଛରେ ରହିଛି ଇଂରେଜ ସରକାର । ଏବଂ ବିଶ୍ୱାସ କଲୁ ଯେତେବେଳେ ଶୁଣିବାକୁ ମିଳିଲା ଯେ ଭୋଟରମାନଙ୍କୁ ଖିରୀପୁରିରେ ଭସେଇ ଦିଆଯାଇଛି ଲକ୍ଷ୍ମୀଧରବାବୁଙ୍କ ତରଫରୁ । କିନ୍ତୁ ଗରିବ ମଂଗରାଜଙ୍କର ବଳ ନାହିଁ ସେମିତି କିଛି କରିବା ଲାଗି । ତଥାପି ... ତଥାପି କିଏ ଜିତିଲା ? କିଏ ଜିତିଲା ଦେଖିଲ ତ ? ଆମେ ଆନନ୍ଦରେ ଆତ୍ମହରା ହୋଇଉଠିଲୁ । ଏବଂ ମନଇଚ୍ଛା ନାଚିଲୁ, ଗାଇଲୁ ଯେତେବେଳେ ମଂଗରାଜ ଜିତିଲେ ବିପୁଳ ଭୋଟ୍‌ର ବ୍ୟବଧାନରେ । ସତେକି ଆମେଇ ଜିତିଲୁ ଏବଂ ବର୍ତ୍ତମାନ ଆମର ମଂତ୍ରୀ ହେବାର ପାଳି ।

ଉଲ୍ଲେଖଯୋଗ୍ୟ ଯେ ଜଣେ ଘରଲୋକ ଗାନ୍ଧି ଓପାସ କରିଛି ବୋଲି ଜାଣିଲାରୁ ଯେଉଁ ବାପା ବ୍ୟତିବ୍ୟସ୍ତ ହୋଇ ଉଠିଥିଲେ, ସେ ଏଇକ୍ଷଣି ଆମ ବିଜୟୋଲ୍ଲାସକୁ ମନା କରୁ ନ ଥିଲେ । ହଉ ହେଲା, ସେତିକି ଥାଉ ବୋଲି ମଧ କହୁ ନଥିଲେ । ମନେ ହେବ ଯେ କେଉଁ ସରକାରୀ ଗୁପ୍ତଚର ଦୃଶ୍ୟଟାକୁ ଦେଖି ନେଇ ତାଙ୍କୁ ବିପଦରେ ପକେଇବ, ଏଭଳି ଆଶଙ୍କା ତିଳେ ହେଲେ ନ ଥିଲା ତାଙ୍କ ମନରେ । ଓଲଟି ସେ ବି ଆନଂଦର ହସ ହସୁଥିଲେ ଆମ ଆଡ଼କୁ ଚାହିଁ ।

ଏହି ଭାବରେ ଯେଉଁ ସୁନେଲି ସୂର୍ଯ୍ୟ ଚହଟି ଉଠିଥିଲା ସେତେବେଳେ ମୋ ଜୀବନରେ ଏବଂ ମୋର ବିଶ୍ୱାସ ସମବୟସ୍କ ସମସ୍ତ ପାଠପଢୁଆ ପିଲାଙ୍କ ଜୀବନରେ ଏବଂ ଆମକୁ ଉସ୍‌କେଉଥିଲା ଆମ ମନଲାଖି କାମକୁ ଆହୁରି ଉତ୍ସାହ ଏବଂ ଆନନ୍ଦର ସହ କରିବା ଲାଗି, ଯେହେତୁ ସ୍ୱାଧୀନତା ଆସୁଛି, ଏଇ ଆସିଲାଣି ଜାଣ, ସେଇ ଅନୁଭବକୁ କଣ ସହଜେ

କଳ୍ପନା କରିପାରିବେ ଆମର ପୁଅଝିଅ ନାତିନାତୁଣୀମାନେ ? ଶୁଣନ୍ତୁ, ତେର ଚଉଦ ବର୍ଷ ବେଳକୁ ମୁଁ କେତେ ସଚେତନ ହୋଇ ଉଠିଥିଲି ଦେଶ ବିଷୟରେ । ମୁଁ ଡାଏରୀ ଲେଖା ଆରମ୍ଭ କରି ସାରିଲିଣି ସେତେବେଳକୁ । ତାର ଯୋଡ଼ିଏ ବିଭାଗ ଥାଏ Domestic (ଘରୋଇ), ଏବଂ National (ଜାତୀୟ) ଏବଂ ତାହା ସପ୍ତାହକୁ ଥରେ ଲେଖା ହୁଏ, ଗୋଟିଏ ନିର୍ଦ୍ଦିଷ୍ଟ ଦିନରେ । ସେହେତୁ ଯେଉଁ ସପ୍ତାହରେ ଲେଖା ହୋଇଛି ଯେ ବାପା ଅମୁକ କଥାରେ ମୋ ଉପରେ ଚିଡ଼ିଲେ, ମୋ ପାଇଁ ଗୋଟାଏ ବଢ଼ିଆ ନୂଆ ଜାମା କିଣା ହେଲା, ଅବା ସାନଭାଇର ଗୋଡ଼ରେ ଗୋଟାଏ ବିରାଟ ବଥ ଉଠିଛି, ସେଇ ସପ୍ତାହରେ ହୁଏତ ଥିବ ହରିପୁରା କଂଗ୍ରେସ ଅଧିବେଶନ କଥା, ଏବଂ ନବନିର୍ବାଚିତ ପ୍ରେସିଡ଼େଣ୍ଟ ସୁଭାଷ ବୋଷ କିଭଳି ଉଦ୍‌ବୋଧନ ଦେଲେ ଦେଶବାସୀଙ୍କୁ । ମୋର ସେବେଳର ଫୁଲପତ୍ରପତାକାବିଶିଷ୍ଟ ଡାଏରୀରେ ଏହିଭଳି ସଂବାଦର ସହାବସ୍ଥାନ ହୁଏତ ଟିକିଏ ବିଚିତ୍ର ଲାଗୁଛି ବର୍ତ୍ତମାନ, କିନ୍ତୁ ସେତେବେଳେ ତାହା କେବଳ ସ୍ୱାଭାବିକ ନୁହେଁ, ମଧ୍ୟ ସମୀଚୀନ ଲାଗୁଥିଲା ।

କିନ୍ତୁ ଏଣେ ମାଟ୍ରିକୁଲେସନ୍ ପରୀକ୍ଷା ପାଖେଇ ଆସୁଛି । ପାଠପଢ଼ାରେ ଯେଉଁ ଦୁର୍ବଳତା ପରିଲକ୍ଷିତ ହୋଇଥିଲା ଭଦ୍ରକ ସ୍କୁଲ ବେଳେ, ଯେ ସାହିତ୍ୟ ଇତିହାସ ଇତ୍ୟାଦିରେ ଯେତେ ଭଲ କଲେ ବି ମୁଁ ଅଂକରେ ବିଶେଷ ଭଲ କରି ପାରୁନାହିଁ, ତା ଆଜିଯାଏଁ ଦୂରୀଭୂତ ହୋଇପାରି ନାହିଁ । ଗଣିତ ଜ୍ୟାମିତିରେ ମୁଁ ଫେଲ୍ ହେଉନାହିଁ ସିନା, କିନ୍ତୁ ବେଶି ଉର୍ଦ୍ଧ୍ୱକୁ ଯାଇପାରୁ ନାହିଁ । ସେହେତୁ ମାର୍କ୍ କମି ଯାଉଛି ଏଗ୍ରୀଗେଟ୍‌ରେ । ଏବଂ ବର୍ତ୍ତମାନ ଆଶଙ୍କା ହେଉଛି ଯେ ମୋତେ ଫାଷ୍ଟଡିଭିଜନ୍ ନ ମିଳିପାରେ ମାଟ୍ରିକୁଲେସନ୍‌ରେ । ଇସ୍ ! ତା'ମାନେ ମୋ ପାଠ ପଢ଼ା ପାଇଁ ବାପାଙ୍କର ଏତେ ଚେଷ୍ଟା ଚରିତ୍ର ସତ୍ତ୍ୱେ, ପିଲାଟି ଦିନୁଁ ଆଜିଯାଏଁ, ମୁଁ ତାଙ୍କୁ ନିରାଶ କରିବି ମୋ କେରିଅର୍‌ର ଏଇ ପ୍ରଥମ ବଡ଼ ପରୀକ୍ଷାରେ ? ବାପ୍‌କା ବେଟା ହୋଇ ପାରିବି ନାହିଁ ? ମୁଁ ଭଗବାନଙ୍କୁ ଡାକୁଥିଲି ଯେ ସେମିତି କିଛି ନ ହେଉ, ମୋତେ ବି ଫାଷ୍ଟ୍ ଡ଼ିଭିଜନ୍ ମିଳିଯାଉ ବାପାଙ୍କ ପରି ।

ଏବଂ ଠାକୁରେ ମୋ ଡାକ ଶୁଣିଲେ । ମୁଁ ମାଟ୍ରିକୁଲେସନ୍‌ରେ ଫାଷ୍ଟ ଡିଭିଜନ୍ ପାଇଲି । କିନ୍ତୁ ମୁଣ୍ଡାମୁଣ୍ଡି ଠିକ୍ ଶତକଡ଼ା ଷାଠିଏ ମାର୍କ ରଖି, ଏଗ୍ରିଗେଟ୍‌ରେ । ସତେକି ବାପାଙ୍କ ମାନ ବଂଚେଇବା ପାଇଁ ଯେତିକି ଦରକାର ଥିଲା, ସେତିକି କରାଗଲା । ଯଦିଓ ମୋର କୃତିତ୍ୱ ନଗଣ୍ୟ ନଥିଲା ବୋଲି କହିବାକୁ ହେବ, କାରଣ ପରେ ଜାଣିବାକୁ ମିଳିଲା ଯେ ସେବର୍ଷ ଓଡ଼ିଶାରୁ ଆମେ ମାତ୍ର ତେରଜଣ ଫାଷ୍ଟ୍ ଡିଭିଜନ୍ ପାଇଥିଲୁ ।

ମାଟ୍ରିକୁଲେସନ୍ ପାସ୍ କଲା ବେଳକୁ ମୋତେ ଚଉଦ ବର୍ଷ । ହେଲେ କଲେଜ୍ ପଢ଼ା ପାଇଁ ମୋତେ ଘର ଛାଡ଼ି ବାହାରକୁ ଯିବାକୁ ପଡ଼ିବ । ଅନ୍ୟ ଉପାୟ ନାହିଁ ଏବଂ ସହଜେ କଟକର ରେଭେନ୍‌ସା କଲେଜ୍ । ନିଜ ଘରେ ରହିହେବ ନାହିଁ, ବୁଢ଼ାବାପା ଆଉ

ନାହାନ୍ତି । ଥିଲେ ମଧ୍ୟ ସେ କଣ ସେ ବୟସରେ ଏବଂ ତାଙ୍କ ଅକର୍ତ୍ତବ୍ୟ ଅବସ୍ଥାରେ ମୋର ଗାର୍ଡ଼ିଏନ୍ ହୋଇ ପାରିଥାଆନ୍ତେ ? ତେଣୁ ସ୍ଥିର ହେଲା ଯେ ମୁଁ ରହିବି ମୋର ବଡ଼ବାପା ପ୍ରଫେସର୍ ହରେକୃଷ୍ଣ ଦାସଙ୍କ ଘରେ । ସେ ମଧ୍ୟ ସେଇ ରେଭେନ୍‌ସା କଲେଜର ଗଣିତ ଅଧ୍ୟାପକ । ଏହାଠାରୁ ଅଧିକ ସୁବିଧା ଆଉ କଣ ମିଳିଥାଆନ୍ତା ମୋତେ ?

କିନ୍ତୁ ଏଇ ଥିଲା ମୋର ପହିଲି ବିଚ୍ଛେଦ ବାପାବୋଉଙ୍କ ଠାରୁ । ବୋଉ କଥା ଛାଡ଼, ସେ ତ କାନ୍ଦିବ ବୋଲି ଆଶା କରିବା କଥା । କିନ୍ତୁ ମୁଁ ଆଶ୍ଚର୍ଯ୍ୟ ହେଲି ବାପାଙ୍କ ଆଖିରେ ଲୁହ ଆସିବାର ଦେଖି, ଠିକ୍ ଟ୍ରେନ୍ ଛାଡ଼ିଲା ବେଳକୁ । ମୁଁ ଏକୁଟିଆ ଯାଉ ନଥିଲି, ଯାଉଥିଲି ତାଙ୍କର ଜଣେ ବିଶ୍ୱସ୍ତ ବନ୍ଧୁଙ୍କ ସାଙ୍ଗରେ । ଏବଂ ଯାଉଥିଲି କେଉଁଠିକି ନା, ନିଜର ଜଣେ ବଡ଼ବାପାଙ୍କ ଘରକୁ । ତଥାପି, ମୋ ନିଜ ଆଖିର ଲୁହ ମଧ୍ୟ ପୋଛିବାକୁ ପଡ଼ିଥିଲା ମୋତେ, ଗାଡ଼ିରେ ବସିଲା ପରେ । ଛାଡ଼, ଗୋଟାଏ ଅଧ୍ୟାୟ ସରିଲା ମୋ ପାଇଁ । ପୂର୍ଣ୍ଣଛେଦ । ମୁଁ ଆକ୍ରମକ ଚାହାଣୀରେ ଅନେଇ ରହିଲି ବାହାରକୁ, ସେଥିର ଧାବମାନ ଦୃଶ୍ୟମାନଙ୍କୁ ।

ଇତିମଧ୍ୟରେ ବାପାବୋଉସଂବଳିତ ପାରିବାରିକ ଜୀବନରେ ଯେଉଁ ପରିବର୍ତ୍ତନ ହୋଇଛି, ତା' ହେଉଛି ଏଇ ଯେ ଘରକୁ ନୂଆ ଭାଇଟିଏ ଆସିଲାଣି, ଚତୁର୍ଥ ଏବଂ ସବାସାନ ଭାଇ । ତା' ନାଆଁ ରେବତୀ ଚରଣ (ବଦି), ସେ ବଳଦେବ ଜୀଉଙ୍କ ପୀଠ କେନ୍ଦ୍ରାପଡ଼ାରେ ଜନ୍ମ ହୋଇଛି ବୋଲି । ଏବଂ ବାପା ବାଲେଶ୍ୱରକୁ ଆସିଲେଣି, ସବ୍‌ଜଜ୍ ହୋଇ । ଯେଉଁଠୁ ସେ ମୋତେ ବିଦାୟ ଦେଇଥିଲେ, କଟକମୁଖୀ ଟ୍ରେନ୍‌ରେ ବସେଇ ।

ଜନ୍ମସ୍ଥାନ ହୋଇଥିଲେ ମଧ୍ୟ ନୂଆ ଏବଂ ବଡ଼ ସହର କଟକ, ବଡ଼ବାପାଙ୍କ ଘରର ଭିନ୍ନ ପରିବେଶ, ମଫସଲ ସ୍କୁଲରୁ ରେଭେନ୍‌ସା କଲେଜ୍ ପରି ଗୋଟିଏ ବିରାଟ କଲେଜ୍‌ରେ ପଢ଼ିବାକୁ ଆସିଥିବା ପିଲାର ନ୍ୟୂନତାବୋଧ, ଇତ୍ୟାଦିର ଅବାଂଛିତ ପ୍ରଭାବ ମୋ ଉପରେ ପଡ଼ି ନଥିଲା ନୁହେଁ । କିନ୍ତୁ ତାହା ମୋତେ ଦବେଇ ରଖି ପାରିଲା ନାହିଁ ବେଶି ଦିନ ଯାଏ । ଏକେ ବଂଧୁଲାଭର ସୌଭାଗ୍ୟ । ଏଠି ମଧ୍ୟ ମୋତେ ବେଶ୍ କେତେଜଣ ଭଲ ସାଙ୍ଗ ମିଳିଗଲେ, ଆଜୀବନ ସାଙ୍ଗ ହୋଇ ରହିବାର ପ୍ରତିଶ୍ରୁତି ନେଇ । ଦ୍ୱିତୀୟରେ ମୋର ଜ୍ଞାନ ପିପାସା, ଯାହା କେମିତି କେଜାଣି ହଠାତ୍ ବଢ଼ି ଉଠିଲା ଏଠି । ଏବଂ ମୋର ତର ସହିଲା ନାହିଁ ତାକୁ ମେଣ୍ଟାଇବା ପାଇଁ, ଯଦିଓ ତାହା ମେଣ୍ଟିବାକୁ ନ ଥାଏ । ଖାଲି ପାଠପଢ଼ା ବହି ଆଉ ପ୍ରଫେସରମାନଙ୍କ ବକ୍ତୃତା ଦ୍ୱାରା ନୁହେଁ, କନିକା ଲାଇବ୍ରେରୀରେ ମୋ ପାଇଁ ଅପେକ୍ଷା କରି ରହିଥିବା ଜ୍ଞାନଭଣ୍ଡାରକୁ ଲୁଟି ନେଲା ପରି ହୋଇ ।

ଆଇ.ଏ.ରେ ମୋର ସ୍ୱନିର୍ବାଚିତ ପାଠ ଥିଲା ଅର୍ଥନୀତି, ଇତିହାସ ଏବଂ ସଂସ୍କୃତ, ବାଧ୍ୟତାମୂଳକ ଇଂରାଜୀ ଏବଂ ଓଡ଼ିଆ ଛଡ଼ା । ଏବଂ ବି.ଏ.ରେ ଥିଲା ଇଂରାଜୀ ଓ ସଂସ୍କୃତରେ ପାସ୍ ପାଠ ସାଙ୍ଗକୁ, ଇତିହାସରେ ଅନର୍ସ୍ । ମୋ ମନକୁ ତା ନିଜ ଇଚ୍ଛାରେ ଛାଡ଼ି ଦେଇଥିଲେ

ମୁଁ ଇଂରାଜୀରେ ବି.ଏ. ଅନର୍ସ ଓ ଏମ୍.ଏ. କରିଥାଆନ୍ତି । କିନ୍ତୁ ମୋତେ ମାନିବାକୁ ପଡ଼ିଲା ବାପାଙ୍କ ସମେତ ଅନ୍ୟ ଶୁଭେଚ୍ଛୁମାନଙ୍କର ପ୍ରାକ୍ଟିକ୍ୟାଲ୍ ପରାମର୍ଶ, ଫାଷ୍ଟ କ୍ଲାସ୍ ପାଇବାର ଅଧିକ ସଂଭାବନା ଦୃଷ୍ଟିରୁ ।

ତେବେ ମୋର ସାହିତ୍ୟପ୍ରେମକୁ ଅଧିକରୁ ଅଧିକ ଖୋରାକ୍ ମିଳିଥିଲା ଏଇ ଚାରିବର୍ଷ ଭିତରେ, ଏଥିରେ ସନ୍ଦେହ ନାହିଁ । ଏବଂ ତାର ଯେଉଁ ପ୍ରଭାବ ପଡ଼ିଥିବ ମୋର ଲେଖକୀୟ ମାନସିକତା ଉପରେ ତାର ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ । ଇଂରେଜୀ ସାହିତ୍ୟ ମୋତେ ଚମତ୍କୃତ କଲା, ଏବଂ ମୁଁ ମୁଗ୍ଧ ହେଲି ସଂସ୍କୃତ ସାହିତ୍ୟରେ । ଇଂରେଜୀ ପାଠ୍ୟ ପୁସ୍ତକର ଥୋମାସ୍ ହାର୍ଡ଼ି, ଔପନ୍ୟାସିକ, ମୋତେ ଯାହା କହିଲେ ମଣିଷ ମନର ବୈଚିତ୍ର୍ୟକୁ ନେଇ, ସେଥିରେ ମୁଁ ପ୍ରଥମେ ବିସ୍ମିତ ହେଲେ ମଧ୍ୟ, ପଛକୁ ବାରମ୍ବାର ମୁଣ୍ଡ ଟୁଂଗାରିଲି । ଏବଂ ମୋତେ ନିଧି ପାରିଲା ପରି ଲାଗିଲା, ଜ୍ଞାନଭଣ୍ଡାରକୁ ଲୁଟି ନେବା କ୍ରମରେ । ସେଇଠୁ ଆସିଲେ ପାଠ୍ୟପୁସ୍ତକ ବର୍ହିଭୂତ ଔପନ୍ୟାସିକମାନେ, ବିଶେଷତଃ ରୁଷୀୟ ଟଲ୍‌ଷ୍ଟୟ ଏବଂ ଡସ୍ଟୋଭସ୍କି ଏବଂ ମୁଁ ସେହି ବୈଚିତ୍ର୍ୟକୁ ଅଧିକରୁ ଅଧିକ ଉପଭୋଗ କରିପାରିଲି । ଏଣେ ସଂସ୍କୃତ କାବ୍ୟରେ ଥିବା ଉପମାଚାତୁରୀରେ ମୁଁ ଅଭିଭୂତ ହେଲି । ଯଥା- ଲଙ୍କା ବିଜୟ ପରେ ସୀତାଦେବୀ ଫେରୁଛନ୍ତି ଭାରତକୁ, ସ୍ୱାମୀଙ୍କ ସହିତ ପୁଷ୍ପକ ବିମାନରେ ବସି । କବି କାଳିଦାସଙ୍କ ବେଳେ ଉଡ଼ାଜାହାଜର ସମ୍ଭାବନା ମଧ୍ୟ ଆସି ନଥିବ ମଣିଷ ମନକୁ । ତଥାପି ଦେଖ କବିଙ୍କ ଭାଷାରେ ରାମ କେମିତି ଦେଖାଉଛନ୍ତି ସୀତାଙ୍କୁ, ପାଖ ହୋଇ ଆସୁଥିବା ଭାରତ ଉପକୂଳର ଅଭିନବ ଦୃଶ୍ୟ । କହିଲେ, ଦେଖ ପ୍ରିୟେ ଏଇ ଶଗଡ଼ ଚକଟିକୁ, ଆଉ ତାକୁ ଘେରି କରି ରହିଥିବା ଏଇ କାଳିମାର ଶୋଭା (ଆଭାତି ବେଳା ଲବଣାମ୍ବୁରାଶେଃ, ଧାରା ନିବଦ୍ଧେବ କଳଙ୍କ ରେଖା) । କଣ ସେଇ କାଳିମା, ନା 'ତମାଳ ତାଳୀ ବନରାଜି ନୀଳା' । କବି କଳ୍ପନାର ଆଡ଼୍‌ଭେଂଚର୍ ଆଉ କେତେ ଦୂର ଯାଇପାରେ ? ଏବଂ ଓଡ଼ିଆ ସାହିତ୍ୟରେ ମୋର ଏହି ସମୟର ପ୍ରିୟପାତ୍ର ଥିଲେ କାହ୍ନୁଚରଣ ମହାନ୍ତି (ଅଦେଖା ହାତ), କାଳିନ୍ଦୀଚରଣ ପାଣିଗ୍ରାହୀ (ମାଟିର ମଣିଷ ଠାରୁ ବଳି ତାଙ୍କର 'ଅମରଚିତା' ଓ 'ମୁକ୍ତାଗଡ଼ର କ୍ଷୁଧା') ଏବଂ ସଚି ରାଉତରାଏ, ତାଙ୍କର ଚମକପ୍ରଦ ଏବଂ ଅଦ୍‌ଭୁତ ଉପମାଦିଶିଷ୍ଟ କବିତା ପାଇଁ । ମୁଁ ମଧ୍ୟ ବେଶି କବିତା ଲେଖୁଥିଲି ଏଇ ସମୟରେ ଏବଂ ମୋର ବସନ୍ତ କୁମାର ମିଶ୍ର ନାମକ ଜଣେ ସହପାଠୀ ସାଥି ଥିଲା, ଯାହା ସହିତ କବିତାର ଦିଆନିଆ ହେଉଥିଲା ।

ଏବଂ ମୁଁ ଯେଉଁ କେତେଜଣ ଭଲସାଙ୍ଗଙ୍କ କଥା କହୁଥିଲି, ସେମାନଙ୍କ ଅଗ୍ରଣୀ ଥିଲେ ଦୁଇଜଣ - ଶଶୀ ଏବଂ ସୁଧା । ଶଶୀଭୂଷଣ ମିଶ୍ର, ଆଡ଼୍‌ଭୋକେଟ୍ ଏବଂ ପ୍ରାକ୍ତନ ଓଡ଼ିଶାର ଚିଫ୍ ସେକ୍ରେଟେରୀ, ସୁଧାଂଶୁ ମୋହନ ପଟ୍ଟନାୟକ । ସେମାନେ ଆଜିଯାଏଁ ମୋର ବିଶିଷ୍ଟ ବନ୍ଧୁ ହୋଇ ରହିଛନ୍ତି । ବ୍ୟକ୍ତିଗତ ତଥା ପାରିବାରିକ ସ୍ତରରେ । ଆମେ ଷ୍ଟୁଡ଼ିଓରେ

ଗୋଟାଏ ଫଟୋ ଉଠେଇଥିଲୁ ସେତେବେଳେ ତା'ତଳେ ଇଂରେଜୀ କ୍ୟାପିଟାଲ୍ ଲେଟର୍‌ରେ ଲେଖା ହୋଇଥିଲା ଶଶୀ-ସୁଧା-କେଶ । ମୁଁ ସେଇ 'କାଳଜୟୀ' ତ୍ରିମୂର୍ତ୍ତିଙ୍କୁ ସ୍ମରଣ କରିଛି ମୋର ଚତୁର୍ଦ୍ଦଶ ଗଳ୍ପସଂକଳନ 'ଧବଳ ଆକାଶ'ର ଉତ୍ସର୍ଗ ପତ୍ରରେ ।

ଏମିତି କଟିଗଲା ମୋର ରେଭେନ୍‌ସା କଲେଜ ଏବଂ କଟକ ରହଣିର ଚାରିବର୍ଷ ୧୯୩୮ରୁ ୧୯୪୨ । ଆଇ.ଏ.ରେ ମୁଁ ଫାଷ୍ଟ ଡିଭିଜନ୍ ପାଇ ନଥିଲି କିନ୍ତୁ ମେୟୋ ସ୍କଲାର୍‌ଶିପ୍ ନାମକ ମାସକୁ ଦଶଟଙ୍କା ହିସାବରେ ଗୋଟିଏ ସ୍କଲାର୍‌ସିପ୍ ମିଳିଗଲା ମୋତେ । ଯେତେଦୂର ମନେ ପଡୁଛି, ଓଡ଼ିଶା ଅଞ୍ଚଳରୁ ଆଇ.ଏ. ପାସ କରିଥିବା ପିଲାଙ୍କ ଭିତରୁ ସବୁଠାରୁ ବେଶି ମାର୍କ ରଖିଥିବା ହେତୁ । କିନ୍ତୁ ବି.ଏ.ରେ ମୁଁ ଆଶାତୀତ ସଫଳତା ହାସଲ କରି ପାରିଥିଲି, ଯଦିଓ ସେଇବର୍ଷ ମୁଁ ବିଶେଷ ଅସୁସ୍ଥ ହୋଇ ପଡ଼ିଥିଲି, ଆମାଶୟ (amoebic dysentery) ରୋଗରେ ଏବଂ ଟେଷ୍ଟ ପରୀକ୍ଷା ମଧ୍ୟ ଦେଇ ପାରି ନଥିଲି । ଏଇ ସଫଳତାର ବିଭିନ୍ନ ବିଜ୍ଞାପିତ ଆଇଟେମ୍ ଏହି ପ୍ରକାର :-

- ପାଟଣା ବିଶ୍ୱ ବିଦ୍ୟାଳୟ ବି.ଏ. ଇତିହାସ (ଅନର୍ସ)ରେ ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ।
- ଉଭୟ ଇଂରାଜୀ ଏବଂ ସଂସ୍କୃତ, ପାସ୍ ସବ୍‌ଜେକ୍ଟରେ ଡିଷ୍ଟିଂକ୍‌ସନ୍ ।
- ପାଟଣା ବିଶ୍ୱବିଦ୍ୟାଳୟର ଉଭୟ ବି.ଏ. ଏବଂ ବି.ଏସ୍.ସି. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରଛାତ୍ରୀଙ୍କ ମଧ୍ୟରେ ଦ୍ୱିତୀୟ ସର୍ବୋଚ୍ଚ ସ୍ଥାନ
- ରେଭେନ୍‌ସା କଲେଜ୍ ୧୯୪୨ର ସର୍ବୋତ୍‌କୃଷ୍ଟ ଛାତ୍ର (Best student) ବୋଲି ଘୋଷିତ ।
- ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରଦତ୍ତ ପୋଷ୍ଟ୍ ଗ୍ରାଜୁଏଟ୍ ସ୍କଲାର୍‌ସିପ୍ । ମାସକୁ ତିରିଶ ଟଙ୍କା ହିସାବରେ ଦୁଇବର୍ଷ ।

ହଁ, ୧୯୪୨ ଗୋଟିଏ ସ୍ମରଣୀୟ ବର୍ଷ ମୋ ପାଇଁ । କେବଳ ମୋ ପାଠପଢ଼ା ଜୀବନରେ ଉପଲବ୍‌ଧ କୃତିତ୍ୱକୁ ନେଇ ନୁହେଁ । ମୋ ଜୀବନାନୁଭୂତିରେ ଆଉ ଦୁଇଟି ବିଶିଷ୍ଟ ଘଟଣା ଥିଲା । ଏକ - ସ୍ୱାଧୀନତା ସଂଗ୍ରାମର ଯେଉଁ ନୂଆ ହିଂସ୍ରଭାବ ଆସି ଯାଇଥିଲା, ତା ସହିତ ମୋର ପ୍ରତ୍ୟକ୍ଷ ପରିଚୟ । ଏବଂ ଦୁଇ - ମୋର ପ୍ରଥମ ପ୍ରକାଶିତ ଗଳ୍ପ ଯାହା ମୋ ସାହିତ୍ୟ ସୃଷ୍ଟିକୁ ଏକ ନୂଆ ଏବଂ ନିର୍ଦ୍ଦିଷ୍ଟ ଭାବରେ ଚିହ୍ନାଇ ଦେଉଥିଲା । ଯେଉଁ ଚିହ୍ନଟ ମୌଳିକ ଦୃଷ୍ଟିରେ ଅମଳିନ ରହିଛି ପ୍ରାୟ ଷାଠିଏ ବର୍ଷ ଉତ୍ତାରୁ, ବୋଲି ଜଣେ ସମୀକ୍ଷକ କହିଛନ୍ତି ଏବଂ ମୁଁ ତାଙ୍କ ସହିତ ଏକମତ ନ ହୋଇ ରହିପାରୁନାହିଁ ।

୧୯୩୮ରେ କଲେଜ୍‌ରେ ଯୋଗ ଦେଲା ବେଳକୁ ଯେଉଁ ଉଦ୍ଦୀପନା ଥିଲା ମୋ ମନରେ ତା' କଣ ଚାଲିଗଲାଣି ଯା ଭିତରେ ? ଦ୍ୱିତୀୟ ବିଶ୍ୱ ମହାଯୁଦ୍ଧ ଏବଂ ସେଥିଯୋଗୁଁ

ଯେଉଁ ସଂଘର୍ଷ ଉପୁଜିଥିଲା ସରକାର ଓ କଂଗ୍ରେସଙ୍କ ଭିତରେ, ସ୍ୱାଧିନତାର ପ୍ରତ୍ୟୟ ଏବଂ ପ୍ରତିଶ୍ରୁତିକୁ ନେଇ, ସେଇଥିରେ ବିରକ୍ତ ହୋଇ କିମ୍ବା ଧୈର୍ଯ୍ୟ ହରାଇ ? ନା । ଅପରଂତୁ ଏକ ପ୍ରକାର ଉତ୍ତେଜନା ମନରେ ଆସୁଥିଲା ବୋଲି କହିଲେ ଭୁଲ୍ ହେବ ନାହିଁ । ଜଣେ ନବଯୁବକ ଠାରୁ ଆଉ କଣ ଆଶା କରାଯାଏ ? ସତେକି ଇଏ ଗୋଟାଏ ମଜା । ସ୍ୱାଧିନତା ଆସିବ ହିଁ ଆସିବ, କିନ୍ତୁ ଯେତେବେଳେ 'ଶତ୍ରୁ' ଜାପାନ ମାଡ଼ି ଆସିଲା ଭାରତ ଆଡ଼କୁ ଏବଂ ଦିଟା ବୋମା ମଧ ଛାଡ଼ିଦେଲା ଆମ ଉପକୂଳରେ (ହୁଏତ୍ ଭୁଲ୍‌ରେ), ସେତେବେଳେ ଗୋଟାଏ ଲେଖକୀୟ ଭାବୁକତା ସୃଷ୍ଟି ହେଲା ସେଇ ନବଯୁବକର ମନରେ । ବୋମା ପଡ଼ିବ । ସେଇ ଅନୁଭବକୁ ସେ ପରେ ଶୁଣାଇବାକୁ ଚାହିଁଲା ତା 'ବୋମା ପଡ଼ିବ' ନାମକ ଗଳ୍ପର ନାୟକ ଗୋପାଳବାବୁଙ୍କ ଜରିଆରେ । ଗୋପାଳବାବୁ ବିକଳ ହେଲେ ବ୍ୟକ୍ତିଟିଏ ହୋଇ ମରିବାକୁ, ମୃତକମାନଙ୍କ ଭିତରୁ ଜଣେ ହୋଇ ନୁହେଁ ।

୧୯୪୨ର ଭାରତଛାଡ଼ ଆନ୍ଦୋଳନ । ମୁଁ ପାଟଣାକୁ ଗଲିଣି ସେତେବେଳକୁ ଏମ୍.ଏ. ପଢ଼ିବା ଲାଗି । ଏବଂ ସେଠି ପହଞ୍ଚୁ ନ ପହଞ୍ଚୁଣୁ ଯେଉଁ ପ୍ରତ୍ୟକ୍ଷ ଅନୁଭବର ଅଧିକାରୀ ହେବାକୁ ପଡ଼ିଥିଲା ମୋତେ, ତାକୁ ଭୁଲି ହେବ ନାହିଁ । ଅଗଷ୍ଟ ନଅ ତାରିଖର ପରଦିନ । ଗାନ୍ଧୀଜୀଙ୍କ ସମେତ ସମସ୍ତ ନେତାଙ୍କୁ ଜେଲ୍‌ରେ ପୂରାଇ ଦେବାର ଖବର ରାଷ୍ଟ୍ର ହୋଇ ଗଲାଣି ପାଟଣା ସହରରେ । ଏବଂ ରାତାରାତି ରାସ୍ତା ମଝିରେ ଇଟାପଥର ଗଦେଇ 'ରାସ୍ତା ରୋକୋ' ପ୍ରତିବାଦ ସୁରୁ ହୋଇଗଲାଣି । କିନ୍ତୁ ସକାଳୁ ସକାଳୁ ଗୋରା 'ଟମ୍‌ମି' (ଇଂରେଜ ସୈନିକମାନଙ୍କ ଚଳନ୍ତି ନାଆଁ) ମାନେ ତାକୁ ସଫା କରିବା ଅଭିଯାନରେ ବାହାରି ଆସିଲେଣି । ଭଲ କଥା । କିନ୍ତୁ ସେମାନେ ସେଇ କାମଟାକୁ କରାଉଛନ୍ତି ପାଖରେ ଥିବା ଲୋକମାନଙ୍କ ଦ୍ୱାରା । ଏବଂ ଦରକାର ହେଲେ ପିଠିରେ ଚାବୁକ୍ ଲଗେଇ । ଏହି ପରିପ୍ରେକ୍ଷୀରେ ଇଂଜିନିୟରିଂଗ୍ କଲେଜ୍ ହଷ୍ଟେଲ୍ ସାମ୍‌ନାରେ ଯେଉଁ ରୋଡ଼୍‌ବ୍ଲକ୍ ଥିଲା ତାକୁ ସେଇ ହଷ୍ଟେଲ୍‌ପିଲାଙ୍କ ହାତରେ ସଫା କରାହୋଇଥିଲା । ଏବଂ ଚାବୁକ୍‌ର ସଦ୍‌ବ୍ୟବହାର ମଧ୍ୟ କରାଯାଇଥିଲା । ତାର ପ୍ରତ୍ୟକ୍ଷ ପ୍ରମାଣ ମୋତେ ଦେଖାଇ ଦିଆହେଲା, ମୁଁ ଯେତେବେଳେ ସେଠି ପହଞ୍ଚିଥିଲି ତାର କିଛି ସମୟ ପରେ, କେତେକ ସାଙ୍ଗଙ୍କୁ ଭେଟିବା ଲାଗି । ମୋତେ କୁହାଗଲା ଯେ ତୋର ଭାଗ୍ୟ ଭଲ, ତୁ ଅଳ୍ପକରେ ବଂଚିଗଲୁ । ଏଣିକି ଆଉ ଉତ୍ତେଜନାରେ କେଉଁ ମଉଜର ଅବକାଶ ନାହିଁ, କେବଳ କ୍ରୋଧ । କିନ୍ତୁ ପାଠପଢୁଆ ଟୋକା କିଶୋରୀଚରଣ କଣ ଭଲା କରିପାରିବ ସେଇ କ୍ରୋଧକୁ ନେଇ ? ପାରିବ । ଅନ୍ତତଃ ଗୋଟାଏ କବିତା ଲେଖିଥିଲି । ହେଲେ ସେତେବେଳେ ତାକୁ ପ୍ରକାଶ କରି ପାରିବାର ପ୍ରଶ୍ନ ଉଠି ନଥିଲା ମୋ ମନରେ ।

ହେଲେ ଏଥିପୂର୍ବରୁ ମୋର ପ୍ରଥମ ଗଳ୍ପ ପ୍ରକାଶିତ ହୋଇ ସାରିଲାଣି, ବ୍ରହ୍ମପୁରରୁ ପ୍ରକାଶିତ ହେଉଥିବା ପତ୍ରିକା 'ନବୀନ'ରେ । ଗଳ୍ପର ନାଆଁ 'ପରଦାତଳେ' । ମୁଁ ସେତେବେଳେ ବ୍ରହ୍ମପୁରରେ ଥିଲି, ପାଟଣାକୁ ଯିବା ପୂର୍ବରୁ, କାରଣ ବାପା ସେଠିକି ବଦଳି ହୋଇ ଆସିଲେଣି ।

ଉଲ୍ଲେଖଯୋଗ୍ୟ ଯେ ଇତିମଧ୍ୟରେ ଆମ ଚାରିଭାଇରେ ଭଉଣୀଟିଏ ବି ଆସିଲାଣି ଘରକୁ । ତାର ଜନ୍ମ ହୋଇଥିଲା ୧୯୩୯ରେ, ବାପା ଯେତେବେଳେ ବାଲେଶ୍ୱରରେ ଥିଲେ । ଏବଂ ବାପାଙ୍କ ଦିଆ ନାଆଁ ଏବଂ ମୋ ଦ୍ୱାରା ଦିଆ ହୋଇଥିବା ନାଆଁର ସମାନ ସମ୍ମାନ ଆବଶ୍ୟକ ବୋଲି ମନେ ହେଲାରୁ ତାର ନାଆଁ ଦିଆଯାଇଥିଲା । 'ପ୍ରତିମା ସୁଂଦରୀ ମନୋରମା ଦେବୀ' । ବିଚାରୀକୁ ଅନେକ ଦିଏ ଯାଏଁ ଏଇ ନାଆଁର ବୋଝ ବୋହିବାକୁ ପଡ଼ିଥିଲା, ବୋଧହୁଏ ବାହା ହେବା ଯାଏଁ । ଯାହାହେଉ, ଏଇକ୍ଷଣି ତା ନାଆଁ ପ୍ରତିମା ପଟ୍ଟନାୟକ ।

ବର୍ତ୍ତମାନ କହିବାକୁ ପଡୁଚି କିଛି, ମୋର ଏଇ ପ୍ରଥମ ପ୍ରକାଶିତ ଗଳ୍ପ ବିଷୟରେ । ପ୍ରଥମ ଗଳ୍ପ ହିସାବରେ ତାହା ଅବଶ୍ୟ ସ୍ମରଣୀୟ । କିନ୍ତୁ ସେଥିପାଇଁ ନୁହେଁ । ମୋର ଗୋଟିଏ ନିର୍ଦ୍ଦିଷ୍ଟ ଲେଖକୀୟ ବ୍ୟକ୍ତିତ୍ୱର ସୂଚନା ମିଳୁଛି ଏଇ ଗପରୁ । ଯାହା ଅଧିକରୁ ଅଧିକ ଦୃଢ଼ୀଭୂତ ହୋଇଛି ବିଭିନ୍ନ ଭାବରେ ଏବଂ ବିଭିନ୍ନ ଦିଗରେ ମୋର ସୁଦୀର୍ଘ ଲେଖକୀୟ ଜୀବନରେ । ସେଇ ବ୍ୟକ୍ତିତ୍ୱର ପହିଲି କଥା ହେଲା, ଆମ ଜୀବନଚର୍ଯ୍ୟାକୁ ନେଇ ନାନା ବିଭେଦର ଅବବୋଧ । କେତେବେଳେ ଆମୋଦଜନକ ଓ କେତେବେଳେ ବିପଜ୍ଜନକ । କେତେବେଳେ ହାଲୁକା ଓ କେତେବେଳେ ଭାରୀ । ଏବଂ କାଳକ୍ରମେ ଅଧିକରୁ ଅଧିକ ଜଟିଳ । କିନ୍ତୁ ସେଇ ବିଭେଦ । କହିବା ଓ କରିବା ଭିତରେ, କହିବା ଓ ଭାବିବା ଭିତରେ, ସଚେତନ ଭାବନା ଏବଂ ଅଚେତନର ତାଡ଼ନା ଭିତରେ । ହେଲେ ଏଇ ବିଭେଦକୁ ଅଳ୍ପବହୁତ ଜାଣିବାକୁ ପାଇଲେ ମଧ୍ୟ ତମେ ତାକୁ ସ୍ୱୀକାର କରିବାକୁ ନାରାଜ, ଯେମିତିକି ତମର ଆତ୍ମସଂତୋଷକୁ ବାଧା ହେବ ନାହିଁ । ''ପରଦାତଳେ'' ଗଳ୍ପରେ ଏଇ ସାମାନ୍ୟ ସତକଥାଟି ରହିଛି, ଯେ ଦୁଃଖୀଦରିଦ୍ରଙ୍କ ପାଇଁ ତୁମ ସହାନୁଭୂତିର ପାତ୍ର ଉଛୁଳି ଉଠେ ହୁଏତ, ପରଦା ଉପରେ ତାଙ୍କ ଜୀବନର କଳାତ୍ମକ ରୂପାୟନ ଦେଖି, କିନ୍ତୁ ସିନେମା ହଲରୁ ବାହାରି ଆସିବା ପରେ କେଉଁ ନିକୁଛିଆ ଏବଂ କୁତ୍ସିତ ମାଗନ୍ତାକୁ ତୁମେ ଦେଖି ନ ଦେଖିଲା ପରି ହୁଅ । ସେମିତି ପରବର୍ତ୍ତୀ ''ପୂର୍ବାପର'' ନାମକ ଆଉ ଗୋଟିଏ ଗପରେ ଲେଖିଛି ଯେ ଆମେ ପ୍ରକୃତରେ (ଏଠି ପୁଅମାନଙ୍କ କଥା ଲେଖିଛି) ଜନନୀ-ନାରୀ ଠାରୁ ଦୂରେଇ ଯାଉ, ଯେତେବେଳେ ପ୍ରଣୟିନୀ ନାରୀଟିଏ ଆସି ପହଞ୍ଚିଯାଏ ଆମ ଜୀବନରେ, ଯଦିଓ ଆମେ ନିଜକୁ ଭୁଲାଇବାକୁ ଚେଷ୍ଟା କରୁ ଯେ ଆମେ ୟାକୁ ଏମିତି ଭାବରେ ଭଲ ପାଉ, ତାକୁ ସେମିତି ଭାବରେ ଭଲ ପାଉ ।

ମୁଁ କେଉଁ ଚମକପ୍ରଦ ସତ୍ୟର ଉପସ୍ଥାପନା କରି ନାହିଁ ମୋର ଏଇ କେତୋଟି ଗଳ୍ପରେ । କିନ୍ତୁ ପ୍ରଶ୍ନ ହେଉଛି, ଇଏ କେମିତି ହେଲା ? ଏଇ ପ୍ରାୟ ଛଅବର୍ଷ ତଳେ ମୁଁ ପଞ୍ଚମ ଜର୍ଜଙ୍କ ବିୟୋଗରେ କାନ୍ଦିଥିଲି ପରା ? କୈଶୋର ଏବଂ ଆଦ୍ୟଯୌବନର ମାନସିକତା ମଧ୍ୟରେ କଣ ଏତେ ପ୍ରଭେଦ ଆସିଯାଏ ? ନା ମୁଁ ଥିଲି ଗୋଟିଏ ବିଚିତ୍ର ପ୍ରାଣୀ ଯେ ତାର ବୟସସୁଲଭ ଭାବତରଳତା ଓ ରୋମାଣ୍ଟିକ୍ ଭାବଭାବନାରୁ ଖସି ପଳେଇବାକୁ ଚାହିଁଲା କେଉଁ ନିଷ୍ଫଳ ଭାବୁକତା ଆଡ଼କୁ ? ମୁଁ ଏଥିର ଉତ୍ତର ଦେବାକୁ ଅକ୍ଷମ । ବେଳେବେଳେ

ମନେ ହୁଏ ଯେ ପିଲାଦିନର ସାଙ୍ଗ ଶକ୍ତି ଏଥିପାଇଁ ଦାୟୀ । ମୁଁ ତା' ଭଲପଣିଆର ଚାପରୁ ମୁକ୍ତ ହେବାକୁ ଚାହିଁଲି, ତେଣୁ 'ତୁ ମିଛ ! ତୁ ମିଛ !' ବୋଲି କହି ଚାଲିଲି, ମୋ ସାହିତ୍ୟ ଭିତର ଦେଇ । ଏବଂ ବେଳେ ବେଳେ ମନେ ହୁଏ ଯେ ହାର୍ଡ଼ି, ଡଷ୍ଟୋଭସ୍କି, ଓଗେର, ମୋ ମୁଣ୍ଡକୁ ବିଗାଡ଼ି ଦେଇଛନ୍ତି । ହେଲେ ଶେଷକୁ ବୁଝେ ଯେ ଏଗୁଡ଼ାକ ମନଗଢ଼ା ଥିଓରି । ଭାବୁକତା କେଉଁ ରୋଗ ନୁହେଁ, ଯଦି ତାହା ଅନୁଭୂତ ସତ୍ୟ ଉପରେ ପ୍ରତିଷ୍ଠିତ ହୋଇଥାଏ । ହେଲା ଏବେ ମୋ ପାଇଁ ଟିକିଏ ଜଲ୍‌ଦି ଆସିଗଲା । ସତେକି କେଶବ କଣ୍ଢେଇକୁ ନେଇ ମଜ୍ଜି ଯାଇଥିବା କେଶର ମନ ଭିତରେ ସେଇ ପୋକଟା ତା କାମ କରି ଚାଲିଥିଲା, ମୋର ସମସ୍ତ କୈଶୋର ଓ ନବତରୁଣିମାର ଉତ୍‌ସାହ-ଉଦ୍ଦୀପନା-ଉତ୍ତେଜନା ଭିତର ଦେଇ । ତା ବୋଲି ମୁଁ କଣ ରୋମାଣ୍ଟିସିଜ୍‌ମ୍‌ର ସତ୍ୟକୁ ଚିହ୍ନେ ନାହିଁ, ନା ମୁଁ ଅନଭିଜ୍ଞ ସେଥିର ଉପଯୋଗିତା ବିଷୟରେ ? ନା ମୋତେ ଯଥାର୍ଥରେ ଗୋଟିଏ ଅଗଭଂଗା ନକରାତ୍ମକ ଲେଖକ ବୋଲି କୁହାଯିବ ? ଛାଡ଼ନ୍ତୁ, ସେଇ ସଫେଇକୁ ବଢ଼େଇ ଲାଭ ନାହିଁ ଏଠି । ଅବଶେଷରେ ମୋତେ ବୁଝିବେ ମୋର ପାଠକପାଠିକାମାନେ । ଆଜିର ଏବଂ ଆସନ୍ତା କାଲିର ।

ବର୍ତ୍ତମାନ ସଂକ୍ଷେପରେ କହୁଛି କିଛି ମୋ ପାଟଣାଜୀବନ ବିଷୟରେ । ୧୯୪୨ରୁ ୧୯୪୪ ।

ପ୍ରଥମେ କହିବା କଥା ଯେ ମୋର ସାହିତ୍ୟପ୍ରେମ ଆହୁରି ଉଜ୍ଜୀବିତ ହୋଇଉଠିଲା ଏଇ ଦି ବର୍ଷ ଭିତରେ । ସାଙ୍ଗପିଲାମାନେ ବେଶ୍ ଜାଣି ସାରିଲେଣି ଯେ ମୁଁ ଜଣେ ଉଦୀୟମାନ ଲେଖକ । ସେହେତୁ ପାଟଣାରେ ପଢୁଥିବା ଓଡ଼ିଆ ଛାତ୍ରଛାତ୍ରୀମାନଙ୍କ ତରଫରୁ ଯେଉଁ ହାତଲେଖା ପତ୍ରିକାଟି ପ୍ରକାଶ କଲୁ ଆମେ, ମୋତେ ହିଁ ବଛାଗଲା, ନିର୍ବିବାଦରେ, ତାର ସଂପାଦକ ହେବା ପାଇଁ । ପତ୍ରିକାଟିର ନାଆଁ ଥିଲା 'ଉତ୍‌କଳିକା' ଏବଂ ସେଥିରେ ମୋର 'ରାତିଫୁଲ' ନାମକ ଗଳ୍ପ ପ୍ରକାଶ ପାଇଥିଲା । ନିଛକ୍ କଳ୍ପନାଧର୍ମୀ ଗଳ୍ପଟିଏ, ଯାହାକୁ ପଢ଼ି ମୋର ଜଣେ ସାଙ୍ଗ କହିଲା ଯେ ମୁଁ ଗୋଟିଏ ଘୋର ତଂଦ୍ରାବାଦୀ ଲେଖକ ହେବାକୁ ଯାଉଛି । ମୁଁ ଟିକିଏ ହସି ଦେଇ ଚୁପ୍ ରହିଲି । ସେ କୋଉଠୁ ବୁଝିବ ଯେ ମୋର ଖୋଲାଆଖି ଲେଖା ମଧ ରହିଛି ? ନା ମୁଁ ନିଜେ ବୁଝିଥିଲି ମୋର ସାହିତ୍ୟ କେଉଁ ଆଡ଼କୁ ଗତି କରୁଛି ? ମଧ୍ୟ ପାଟଣାରେ ଥିଲାବେଳେ ମୋର ଇଂରାଜୀ ସାହିତ୍ୟ ସହିତ ଅଧିକ ପରିଚୟ ହେଲା ଏବଂ ତାକୁ ଆହୁରି ଅଧିକ ଭଲ ପାଇବସିଲି । ସେଥିରେ ପ୍ରଧାନ କାରଣ ହେଉଛି ଯେ ସେତେବେଳର ଅଧିକାଂଶ ସହପାଠୀ ଓଡ଼ିଆ ସାଙ୍ଗ ଇଂରାଜୀରେ ଏମ୍.ଏ. ପଢ଼ିବାକୁ ଆସିଥିଲେ ଏଠିକି ଏବଂ ସେମାନଙ୍କ ସହିତ ମୁଁ ବେଶି ହେଲମେଳ ହେଉଥିଲି । ରେଭେନ୍‌ସା କଲେଜ ବେଳର ସାଙ୍ଗ ଶଶୀ ପାଟଣାକୁ ମଧ ଆସିଥିଲା, ଏବଂ ଅନ୍ୟମାନେ ହେଲେ ବିଧୁଭୂଷଣ ଦାସ ଓ ପ୍ରଫୁଲ କୁମାର ପତି । ନାନାଦି କାରଣରୁ ଆମେ ବିଧୁକୁ ବଡ଼ଭାଇ ବୋଲି ମଣୁଥିଲୁ, କିନ୍ତୁ ଶଶୀ ଓ ପ୍ରଫୁଲ୍ଲ ମୋତେ ବେଶି ଆକ୍ରାନ୍ତ କରୁଥିଲେ, ଇଂରାଜୀ ସାହିତ୍ୟକୁ ନେଇ ତାଙ୍କର

ଅନବରତ ଚର୍ଚ୍ଚା ହେତୁ ଏବଂ ତାଙ୍କରି ଯୋଗୁଁ ମୁଁ ଇଂରାଜୀ ମେଟାଫିଜିକାଲ୍ (ଆଧ୍ୟାତ୍ମିକ) କବିମାନଙ୍କୁ ଚିହ୍ନିଲି । ମଧ୍ୟ ଆଧୁନିକ କବି ଟି.ଏସ୍. ଇଲିୟଟ୍‌ଙ୍କର ମହାଦୁଃଖର ସତମିଛକୁ, ଏବଂ ଆଶ୍ଚର୍ଯ୍ୟ ହେଲି ଦେଖି ଯେ ଏତେ ସାମଂଜସ୍ୟ ଥାଇପାରେ ତାଙ୍କର ଆଧ୍ୟାତ୍ମିକତା ଏବଂ ୟାଙ୍କର ବୌଦ୍ଧିକ ବିଷାଦ ମଧ୍ୟରେ ।

ହଁ, ମୋର ସହପାଠୀ ସାହିତ୍ୟବନ୍ଧୁଙ୍କ ଛଡ଼ା ଆଉ ଜଣେ ସମଲେଖକ ମଧ୍ୟ ମୋତେ ଜୁଟିଯାଇଥିଲେ ପାଟଣାରେ । ସହପାଠୀ ନ ହେଲେ ମଧ୍ୟ ସମବୟସ୍କ ଏବଂ ମୋଠୁଁ ବର୍ଷେ ଜୁନିଅର୍ । ଗୁରୁପ୍ରସାଦ ମହାନ୍ତି, ଡାକନାଆଁ ଗୁନା । ଆମେ ଦିହେଁ ଲେଖାଲେଖି ବେଶ୍ ଆରମ୍ଭ କରି ସାରିଲୁଣି ସେତେବେଳକୁ ଏବଂ ସେହି ଜରିଆରେ ଆମର ବନ୍ଧୁତା । ଗୁନା ମଧ୍ୟ ଗୋଟିଏ କବିତାର ଉପହାର ଦେଇଥିଲା ମୋତେ ମୋ ଜନ୍ମ ଦିନରେ । ତାର ଶେଷଧାଡ଼ି ଥିଲା ''ବନ୍ଧୁ ମୋର ଜଣେ ବଡ଼ କବି .... '' । କିନ୍ତୁ ଦେଖନ୍ତୁ, ଏମିତି ହେଲା ଯେ ସେହି ପ୍ରକୃତରେ ଜଣେ ବଡ଼ କବି ବୋଲାଇଲା, ଆଧୁନିକ ଓଡ଼ିଆ କବିତାର ଅନ୍ୟତମ ଦିଗ୍‌ଦର୍ଶକ ସ୍ରଷ୍ଟା, ଏବଂ ମୁଁ ଗୋଟିଏ ମାର୍କାମରା ଗାଳ୍ପିକ ହୋଇଗଲି । ଯାହାହେଉ ମୋର ପ୍ରଥମ କବିତା ସଂକଳନ ''ମିନି କାମନା'' ତାକୁ ହିଁ ଉତ୍ସର୍ଗ କରିଛି - ଆଉ କାହାକୁ ଭଲା କରିପାରିଥାଆନ୍ତି ?

ମୋତେ ପଚାରିବା ଉଚିତ ଯେ ଆପଣଙ୍କର ସାହିତ୍ୟପ୍ରେମ ଏତେ ବଳିଷ୍ଠ ସିନା, ଆପଣ ଯେଉଁ ବିଷୟରେ ବି.ଏ. ଅନର୍ସ କଲେ, ମଧ୍ୟ ଏମ୍.ଏ. ଏବଂ ଉଭୟରେ ପ୍ରଥମ ଶ୍ରେଣୀ ମିଳିଲା ଆପଣଙ୍କୁ, ଅର୍ଥାତ୍ ଇତିହାସ, ତା'ପ୍ରତି କଣ କିଛି ଭଲ ପାଇବା ଜାଗି ଉଠି ନ ଥିଲା ଆପଣଙ୍କର ? ଖାଲି ତାକୁ ପଢ଼ିଲେ, ପରୀକ୍ଷାରେ ପ୍ରଥମ ଶ୍ରେଣୀ ପାଇବାର ଉଦ୍ଦେଶ୍ୟ ନେଇ ? ନା, ଠିକ୍ ତା ନୁହେଁ । ମୁଁ ଇତିହାସକୁ ମଧ୍ୟ ଭଲ ପାଉଥିଲି । କିନ୍ତୁ ମୁଖ୍ୟତଃ ବିଭିନ୍ନ ଧରଣର ମଣିଷଜାତିଙ୍କ ସମାଜ, ସଭ୍ୟତା ଓ ସଂସ୍କୃତିକୁ ଚିହ୍ନାଉଥିବା ପ୍ରବାହଧର୍ମୀ ଇତିହାସ । ଟିକିନିଖି ତାରିଖପ୍ରଧାନ ରାଜନୈତିକ, କହିବାକୁ ଗଲେ ରାଜବଂଶମାନଙ୍କର ଉତ୍‌ଥାନପତନର ଇତିହାସ ନୁହେଁ । ସେହି ହିସାବରେ ମୁଁ ମୁଗ୍ଧ ହେଉଥିଲି ଡଃ ସୁବିମଳ ଚନ୍ଦ୍ର ସରକାରଙ୍କ ପ୍ରାଚୀନ ପୃଥିବୀ (Ancient world) ବିଷୟରେ ପ୍ରଦତ୍ତ ବକ୍ତୃତା ଗୁଡ଼ିକରେ । ସେ କେଉଁ ଟେକ୍‌ସଟ୍ ବହିର ସାହାଯ୍ୟ ନିଅନ୍ତି ନାହିଁ ବକ୍ତୃତା ଦେଲା ବେଳେ । ହେଲେ ଅସାମାନ୍ୟ ପ୍ରତିଭା ଥିଲା ତାଙ୍କର, ଏଇ ପ୍ରବାହର ଚମତ୍‌କାରକୁ ଚିହ୍ନାଇବା ଦିଗରେ । ଏପରିକି ସେ ଯେତେବେଳେ କହିଲେ ଯେ ଖ୍ରୀଷ୍ଟପୂର୍ବ ୪୦୦୦-୩୦୦୦ ବେଳକୁ ବେବିଲୋନ୍‌ରେ ଯେଉଁ ଧର୍ମଭିତ୍ତିକ ରାଜ୍ୟ (theocratic state) ପ୍ରତିଷ୍ଠିତ ହୋଇଥିଲା, ତାର ଅନ୍ୟତମ ସଂସ୍କାର ଥିଲା ତାଙ୍କ ଠାକୁରଙ୍କୁ ବର୍ଷକୁ ଥରେ ନଗର ବୁଲେଇ ଆଣିବା, ଏବଂ ଆଜିର ଜଗନ୍ନାଥ ମହାପ୍ରଭୁଙ୍କୁ ମଧ୍ୟ ଠିକ୍ ସେହି ଭାବରେ ସମ୍ମାନିତ କରାଯାଉଛି, ତାଙ୍କ ରାଜପଥକୁ ଆମର ବଡ଼ଦାଣ୍ଡ, ଏବଂ ଉଦ୍ଦେଶ୍ୟ ମୋଟାମୋଟି ସମାନ .... ତାକୁ ମୁଁ ଗୋଟାଏ କାଳ୍ପନିକ ତଥ୍ୟ

ବୋଲି ଭାବି ପାରୁନଥିଲି । ଭାବୁଥିଲି ନିଶ୍ଚୟ ହୋଇଥିବ ସେଇଆ, ଏଇଆକୁ କୁହନ୍ତି ମାନବ ସଭ୍ୟତାର ନିରବଚ୍ଛିନ୍ନ ଧାରା । ତେବେ ମୋତେ ମାନିବାକୁ ପଡ଼ିବ ଯେ ଇତିହାସ ଏମ.ଏ.ରେ ଫାଷ୍ଟକ୍ଲାସ୍ ହୁଏତ ମିଳିନଥାଆନ୍ତା ମୋତେ, ଯଦି ରାଜନୀତି ବିଜ୍ଞାନ (Political Science) ସେଇ ପରୀକ୍ଷାର ଅନ୍ୟତମ ପେପର୍ ହୋଇନଥାଆନ୍ତା । ବସ୍ତୁତଃ ସେଇ ପେପର୍ ଥିଲା ରାଜନୀତି ଦର୍ଶନର ଇତିହାସ, ପ୍ଲାଟୋଙ୍କ ଠାରୁ ମାର୍କସ୍‌ଙ୍କ ଯାଏ । ଏବଂ ସେଥିରେ ମୁଁ ଶତକଡ଼ା ଅଶୀ ମାର୍କ ରଖିଥିଲି । ଏବଂ ମୋର ଏଇ ଫାଷ୍ଟକ୍ଲାସ୍ ବାପାଙ୍କୁ ଯେ କେତେ ଆନନ୍ଦ ଆଣି ଦେଇଥିବ, ତା ସହଜେ ଅନୁମେୟ, କାରଣ ତାଙ୍କ ମନରେ ଗୋଟାଏ ବଡ଼ ଦୁଃଖ ରହିଯାଇଥିଲା ଯେ ମାତ୍ର ସାତ ମାର୍କର ବ୍ୟବଧାନରେ ତାଙ୍କୁ ଏମ୍.ଏ.ରେ ଫାଷ୍ଟକ୍ଲାସ୍ ମିଳିନଥିଲା । ପୁଣି ସେଇ ଇତିହାସରେ ।

ପାଟଣାରେ ଥିଲାବେଳେ ମୁଁ ଗୋଟିଏ ନୂଆ ଧାରଣର କୃତିତ୍ୱ ମଧ୍ୟ ହାସଲ କରି ପାରିଥିଲି । ଡିବେଟ୍‌ରେ ପାରଦର୍ଶିତା । ଏବଂ କେତୋଟି ପ୍ରାଇଜ୍ ମଧ୍ୟ ମିଳିଥିଲା ମୋତେ ଇଣ୍ଟର-କଲେଜ୍ ଏବଂ ଇଣ୍ଟର୍-ହଷ୍ଟେଲ୍ ଡିବେଟ୍ ପ୍ରତିଯୋଗିତାରେ । କିନ୍ତୁ ମୁଁ କେମିତି ଆଜିଯାଏଁ ମଂଚ ଉପରେ ଠିଆ ହୋଇ କିଛି କହିବାର ସାହସ କରିପାରି ନଥିଲି, ଅବା ସେଥିର ସମୁଚିତ ସୁଯୋଗ ମିଳି ନଥିଲା ମୋତେ, ମୁଁ ସେ ବିଷୟରେ କିଛି କହିପାରିବି ନାହିଁ ।

ଶେଷକୁ ଏଇ ଦୁଇବର୍ଷ ମଧ୍ୟରେ ଘଟିଥିବା ଗୋଟିଏ ସାମାନ୍ୟ ଅନୁଭୂତି କଥା କହୁଛି । ଯାହା ଏକାନ୍ତ ବ୍ୟକ୍ତିଗତ ଏବଂ ବୈକ୍ତିକ । ହେଲେ କହୁଛି ଏଇଥିପାଇଁ ଯେ ମୋର ଗୋଟିଏ ପ୍ରକାଶିତ ଗଳ୍ପ 'ଗୋଟିଏ ରାତିର କାହାଣୀ' (ଭଙ୍ଗା ଖେଳଣା' ସଂକଳନରେ ସଂଗୃହୀତ) ତାରି ଉପରେ ଆଧାରିତ । ପୂର୍ବରୁ କହିଛି ମୋ 'ବୋମା ପଡ଼ିବ ' ଗଳ୍ପର ନାୟକ କେମିତି ବ୍ୟାକୁଳ ହେଉଥିଲା ନିଜକୁ 'ବ୍ୟକ୍ତି' ବୋଲି ଚିହ୍ନାଇବା ପାଇଁ, ସଂଭାବିତ ଏବଂ ଆସନ୍ନ ବିନାଶର ପରିପ୍ରେକ୍ଷୀରେ । କିନ୍ତୁ ସେଇ ବ୍ୟକ୍ତିର ଭିନ୍ନ କାନ୍ଦଣା ଏଇ ଗଳ୍ପରେ । ଯେ ସେ ବନ୍ଦୀ ହୋଇ ପଡ଼ିଛି ତାର ଏଇ ବ୍ୟକ୍ତିମାନସ ଓରଫ୍ ଇଗୋକୁ ନେଇ ।

ଅନୁଭୂତିଟି ଏହି ପ୍ରକାର । ମୋର ସାଙ୍ଗ ଶଶୀ ତାର ହାର୍ଣ୍ଣିଆ ଅପରେସନ୍ ପରେ ପାଟଣା ହସପିଟାଲ୍‌ର ଗୋଟିଏ ୱାର୍ଡ଼ରେ ଥିଲା, ପୋଷ୍ଟ ଅପରେସନ୍ ଚିକିତ୍ସା ଏବଂ ପରୀକ୍ଷା ନିରୀକ୍ଷା ପାଇଁ । ଡାକ୍ତରଙ୍କ ପରାମର୍ଶ ଏବଂ ତାର ଇଚ୍ଛା ଅନୁଯାୟୀ ଆମେ କେତେଜଣ ସହପାଠୀ ବନ୍ଧୁ ପାଳି କରି ଜଗୁଥିଲୁ ତାକୁ ରାତିରେ, ଯେପରିକି ରୋଗୀର କୌଣସି ଅସୁବିଧା ନ ହୁଏ, ତାର ଯଥାର୍ଥ ଚାହିଦା ପୂରଣ କରିବା ଲାଗି । ମଧ ଯେକୌଣସି ଜରୁରୀ ପରିସ୍ଥିତିର ମୁକାବିଲା କରିବା ପାଇଁ । ଡିଉଟିରେ ଥିବା ନର୍ସ ସହିତ ସହଯୋଗ ପୂର୍ବକ । କିନ୍ତୁ ଏହି କ୍ରମରେ ମୋର ଜଣେ ଆଗଚଲା ସହପାଠୀ ଡିଉଟିରେ ଥିବା ନର୍ସ ସହିତ ସହଯୋଗ କରୁ କରୁ ତା'କୁ ପ୍ରେମ କରି ବସିଲା । ଏବଂ ସେମାନେ ସ୍ଥିର କଲେ ଯେ ଅମୁକ ଦିନ ରାତିରେ ସେମାନେ ମିଳିତ ହେବେ, ରୋଗୀ ପାଖରେ ଡିଉଟି ପକାଇ । କିନ୍ତୁ କଥାଟା ଅସୁନ୍ଦର ହେବ

ନାହିଁ କି, ଯଦି ରୋଗୀର ପ୍ରକୃତରେ କିଛି ବିଶେଷ ଦରକାର ପଡ଼େ ସେଇ ସମୟରେ ଏବଂ ତା ପାଖରେ କେହି ନ ଥାଆନ୍ତି ? ସେହେତୁ କଥା ହେଲା ଯେ ମୁଁ ଶଶୀ ପାଖରେ ବସି ରହିବି ସେତେବେଳେ, ସେଇ ସହପାଠୀ ବଦଳରେ ଏବଂ ମୋତେ ନିର୍ଦ୍ଦେଶ ଦିଆଗଲା ଯେ ମୋତେ ଏହିପ୍ରକାର କାମ କରିବାକୁ ହେବ ବିଭିନ୍ନ ସଂଭାବିତ ପରିସ୍ଥିତିରେ ।

ଯାହାହେଉ ପରିସ୍ଥିତି କିଛି ହଇରାଣ କରି ନଥିଲା କାହାରିକୁ । ଶଶୀ ଆରାମରେ ଶୋଇ ଯାଇଥିଲା । ମଧ୍ୟ ନିଦରେ ହସୁଥିଲା ମଝିରେ ମଝିରେ । ଉପରୋକ୍ତ ପ୍ରଣୟୀଯୁଗଳଙ୍କ ପାଇଁ ଜ୍ୟୋତ୍ସ୍ନା ଉଛୁଳି ଉଠିଛି ବୋଲି ମନେ ହେଉଥିଲା । କିନ୍ତୁ ମୁଇଁ ହତଭାଗା ଛଟପଟ ହେଉଥିଲି ସହ-ଅନୁଭୂତିର ପାଲରେ ପଡ଼ି । ଅନୁଭବ କରିବାକୁ ଚାହୁଁଥିଲି ସେମାନେ କିଭଳି ପ୍ରେମ କରୁଥିବେ ଓ ନୂଆ ବାହା ହୋଇଥିବା ଶଶୀ କଣ ସ୍ୱପ୍ନ ଦେଖୁଥିବ । ଏବଂ -ଏଇଠି ହେଲା ସବୁଠୁ ବଡ଼ ଅସୁବିଧା - ସେପାଖରେ ଶୋଇଥିବା ରୋଗୀ, ଏଇ ହାତ ପାହାନ୍ତାରେ, ତା'ର ଆସନ୍ନ ମରଣ । ସେ ତିଳ ତିଳ ହୋଇ ମରୁଛି, ମୋତେ ଯାହା ଆଉ ନର୍ସ୍ ଜଣକ କହୁଥିଲା । ତା'ମାନେ ଏଇ ତିନିଜଣଙ୍କ ସଂସାର ବସ୍ତୁତଃ ତିନିଟା ଭିନ୍ନ ଭିନ୍ନ ସଂସାର । ଆଉ ମୁଁ ଦର୍ଶକ ଶିରୋମଣି । ମୁଁ କଣ ସତେ କାହାରି ସଂସାରରେ ପହଞ୍ଚିପାରିବି ? ଅସମ୍ଭବ । ଆମେ ଯେତେକ ମଣିଷ ଅଛୁ ପୃଥିବୀରେ, ଆମେ ସମସ୍ତେ ବଂଦୀ ହୋଇ ରହିଛୁ ନିଜ ନିଜ ଭିତରେ । ମୁକ୍ତି ନାହିଁ । ମୁକ୍ତି ନାହିଁ । ମୁଁ ମୋର ଏଇ ବିକ୍ଷୁବ୍ଧ ମନଟାକୁ ରୂପାୟିତ କରିବାକୁ ଚାହିଁଛି ସେଇ ଗପରେ । ମଧ୍ୟ ସେଇ ଅନୁଭବକୁ ନେଇ 'ମୁଁ ଯେବେ ଜାଣିଲି ଯେ ମୁଁ ବଂଦୀ' ଶୀର୍ଷକ ଗୋଟିଏ ଆତ୍ମକଥାମୂଳକ ଲେଖା ଲେଖିଥିଲି, ଯାହା 'ନବଲିପି' ପତ୍ରିକାରେ ପ୍ରକାଶିତ ହୋଇଥିଲା । (ନଭେମ୍ବର ୧୯୮୬ ସଂଖ୍ୟା) ଏବଂ ମୁଁ ଆପ୍ୟାୟିତ ହେଲି ଦେଖି ଯେ ଜଣେ ପାଠକ ତାକୁ ପ୍ରଶଂସା କରି ଲେଖିଛନ୍ତି ପତ୍ରିକାର ପରବର୍ତ୍ତୀ ସଂଖ୍ୟାରେ ।

ଏହି ଭାବରେ ଦୁଇବର୍ଷ କଟିଗଲା ପାଟଣାରେ । ଅନୁଭୂତିବହୁଳ ତଥା ସମୁଜ୍ଜ୍ୱଳ ଦୁଇଟି ବର୍ଷ । କିନ୍ତୁ ତାପରେ ? ମୋର ସ୍ୱଭାବ ଚରିତ୍ର ଓ ତଥାକଥିତ ପାଠୁଆପଣକୁ ଦେଖି ମୋର ସାଙ୍ଗମାନେ ଧରି ନେଇଥିଲେ ଯେ ମୁଁ ଯଥାଶୀଘ୍ର କେଉଁ କଲେଜ୍‌ରେ ପାଠ ପଢ଼େଇବି । ପରିହାସରେ କହୁଥିଲେ ଯେ ମୁଁ ଆଉ କେଉଁଥିପାଇଁ ଯୋଗ୍ୟ ନୁହେଁ । ମୁଁ ମଧ୍ୟ ସେଇଆ ଚାହୁଁଥିଲି ମନେ ମନେ । ଏବଂ ଯେଉଁ ଭାବରେ ନୂଆ ନୂଆ କଲେଜ୍ ସବୁ ଗଢ଼ି ଉଠୁଥିଲା ନବଗଠିତ ଉତ୍କଳ ବିଶ୍ୱବିଦ୍ୟାଳୟର ଆନୁକୂଲ୍ୟରେ, ସେଥିର ଯଥେଷ୍ଟ ସଂଭାବନା ଥିଲା, ମୋ ପରି ଜଣେ କୃତୀ ଛାତ୍ର ପାଇଁ ।

ହେଲେ ଭାଗ୍ୟର ବିଡ଼ମ୍ବନା ଯେ ଯଦିଓ ପ୍ରାୟ ମୋର ସବୁ ପାଠୁଆ ସାଙ୍ଗ କୌଣସି ନା କୌଣସି କଲେଜ୍‌ର ଲେକ୍‌ଚରର୍ ହୋଇଗଲେ, ଓଡ଼ିଶାକୁ ଫେରି ଯାଉ ନ ଯାଉଣୁ, ମୋତେ ସେଇ ସୁଯୋଗ ମିଳିଲା ନାହିଁ ଅନେକଦିନ ଯାଏଁ, କାରଣ ଇତିହାସ ପାଇଁ ନୂଆ ନୂଆ ପୋଷ୍ଟର ଦରକାର ପଡ଼ିଲା ନାହିଁ ବିଶେଷ । ଏବଂ ଯେତେବେଳେ ସେଇ ସୁଯୋଗ

ମିଳିଲା ପ୍ରାୟ ବର୍ଷକ ପରେ, ମୁଁ କହିଲି, ଧନ୍ୟବାଦ । ମୁଁ ମୋ ସାଙ୍ଗମାନଙ୍କ ଜୁନିଅର୍ ହେବାକୁ ଚାହେଁ ନାହିଁ । ମୁଁ ମଧ ଇତିମଧ୍ୟରେ ଉତ୍କଳ ବିଶ୍ୱବିଦ୍ୟାଳୟର ବି.ଏଲ୍. କ୍ଲାସ୍‌ରେ ଯୋଗ ଦେଇ ସାରିଲିଣି ।

୧୯୪୪ ରୁ ୧୯୪୭ । ଏଇ ତିନିବର୍ଷ କଟକରେ । ବାପାଙ୍କର ପିଉସୀପୁଅ ଭାଇ (ପ୍ରକୃତପକ୍ଷେ ତାଙ୍କ ପିଉସାଙ୍କ ସାନଭାଇର ପୁଅ) ଏବଂ ରେଭେନ୍‌ସା କଲେଜ୍‌ର କେମିଷ୍ଟ୍ରୀ ଅଧ୍ୟାପକ ପ୍ରଫେସର୍ ଗୁରୁଚରଣ ମହାନ୍ତିଙ୍କ ଘରେ ମୁଁ ଅବସ୍ଥାପିତ ହୋଇଥିଲି ସେତେବେଳେ । ଗୁରୁଚରଣ ବଡ଼ବାପା ନାଆଁକୁ ବଡ଼ବାପା ଥିଲେ, ସେ ଥିଲେ ବାପାଙ୍କର ଅତି ଘନିଷ୍ଠ ସହପାଠୀ ବନ୍ଧୁ । ଏବଂ ସେମାନେ ପରସ୍ପରକୁ 'ତୁ' ସଂବୋଧନ କରୁଥିଲେ । ତେଣୁ କୌଣସି ସଂକୋଚ ନ ଥିଲା, ତାଙ୍କରି ଘରେ ରହି ଆଇନ୍ ପାଠ ପଢ଼ିବା ଛଡ଼ା ଯଥାସମ୍ଭବ ସ୍ୱାଧିନ ବିହାର କରିବା ପାଇଁ, କାରଣ ଆଇନ୍ ପଢ଼ା ପାଇଁ ସେମିତି କିଛି ଚପଟ ପଡୁ ନଥିଲା ମୋ ଉପରେ । ତାଙ୍କ ଘରେ ମଧ୍ୟ ଏକାଧିକ ଭାଇଭଉଣୀ ଥିଲେ (ଭାଉଜଟିଏ ମଧ ଆସିଗଲେ ସେତିକି ବେଳକୁ) ମୋର ସାଙ୍ଗ ହେବା ପାଇଁ । ଏଣେ ବାପା ଜିଲ୍ଲାଜଜ୍ ହୋଇ ଜୟପୁର (କୋରାପୁଟ)ରେ ଅଛନ୍ତି । ବାପାବୋଉ କଟକକୁ ଆସନ୍ତି ମଝିରେ ମଝିରେ । ଏବଂ ସେତିକିବେଳେ ଯାହା ଚର୍ଚ୍ଚା ହୁଏ ମୋ ବିଷୟରେ । ମୋ ଭବିଷ୍ୟତକୁ ନେଇ । ବୃତ୍ତି ଏବଂ ବିବାହ । ହେଲେ ତାକୁ ମୁଁ ସହଜେ ଟାଳି ଦେଇପାରେ, ଆଗେ ମୁଁ ଲ' ପାସ୍ କରି ସାରେ ବୋଲି କହି ।

୧୯୪୭ରେ ମୁଁ ବି.ଏଲ୍. ପାସ୍ କଲି, ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ । କିନ୍ତୁ ମୁଁ ଓକିଲାତି କରିବାକୁ ଚାହିଁଲି ନାହିଁ । ଏଣେ କୌଣସି ଛୋଟ ଚାକିରୀ ମଧ୍ୟ କରିବାକୁ ଚାହିଁଲି ନାହିଁ । ଏପରିକି ବାପାଙ୍କର ଅବାଧ୍ୟ ହୋଇ ସବ୍‌ଡେ଼ପୁଟି ଚାକିରୀ ପାଇଁ ଦରଖାସ୍ତ ଦେଲି ନାହିଁ । ଅପେକ୍ଷା କଲି ମୋର ମନମୁତାବକ ଚାକିରୀଟିଏ ପାଇବା ଲାଗି ।

ଏଣେ ଭାରତର ସ୍ୱାଧିନତା ପାଖ ହୋଇ ଆସିଲାଣି । ଅଗଷ୍ଟ ୧୫ ୧୯୪୭ । ମୋ ଭବିଷ୍ୟତ ସାଙ୍ଗରେ ତାଳ ଦେଇ ମଧ ମୋତେ ଚିଡ଼େଇଲା ପରି, ଯେ ମୁଁ ପଛରେ ପଡ଼ିଗଲିଣି । କିନ୍ତୁ ଏମିତି ହେଲା ଯେ ସେଇବର୍ଷ ଏବଂ ଭାରତ ସ୍ୱାଧିନ ହେଲା ପୂର୍ବରୁ ମୋତେ ବି' ମିଳିଗଲା ମୋର ସନ୍ତୋଷଜନକ ଭବିଷ୍ୟତ । ବୃତ୍ତି ତଥା ବିବାହ ।

ମୋର ସାଙ୍ଗମାନେ ମୋତେ ଥଟ୍ଟା କରି କୁହନ୍ତି ବେଳେ ବେଳେ ଯେ ଯାହାହେଉ ତୋତେ ତୋର ବାଂଛିତ ପରାଧିନତା ମିଳିଗଲା, ଭାରତର ସ୍ୱାଧିନତା ସାଙ୍ଗକୁ । କିଭଳି ସେ ପରାଧିନତାର ସୁଖ ଓ ସମ୍ମାନ, ଦାୟିତ୍ୱ ତଥା ଜଂଜାଳ ଏବଂ ତାହା କେଉଁ ଭାବରେ ଗତି କଲା ତାର ଉପାଖ୍ୟାନ ପର ଅଧ୍ୟାୟରେ ।



# କର୍ମଜୀବନ

## ଦାୟିତ୍ୱ (୧୯୪୭-୧୯୬୧)

ଅଗଷ୍ଟ ୧୫ ତାରିଖ ୧୯୪୭ । ସେଦିନ ଅଧରାତିରେ ପଣ୍ଡିତ ନେହେରୁ ଘୋଷଣା କଲେ ଯେ ଆମେ ନିଦରୁ ଉଠିଛୁ ଏତେଦିନ ପରେ, ଏବଂ ଆମେ ସ୍ୱାଧିନ ଆମ ନିଜ କଥା ବୁଝିବା ଲାଗି । ସେଇ ବର୍ଷ, ଏବଂ ତା'ପୂର୍ବରୁ ମୁଁ ମଧ ନିଜକୁ ଚେତାଇ ଦେଇ ସାରିଲିଣି ଯେ ନିଜକୁ ଯୋଗ୍ୟ କରିବାର ପାଲା ସରିଗଲାଣି । ଏଣିକି ଦାୟିତ୍ୱ । ବାହାସାହା ହୋଇ ସ୍ତ୍ରୀପିଲାଙ୍କୁ ସୁଖ ଦେବାର ଦାୟିତ୍ୱ, ତହୁଁ ପିଲାମାନଙ୍କୁ ମଣିଷ କରିବାର ଦାୟିତ୍ୱ । ଏବଂ ସର୍ବୋପରି ଠିକଣା କାମଧନ୍ଦା କରି ସଂସାର ଚଳେଇବାର ଦାୟିତ୍ୱ । ଏଇ ଦାୟିତ୍ୱସଂକୁଳ ପରାଧିନତା ହିଁ ନିଦରୁ ଉଠି ନିଜ କଥା ନିଜେ ବୁଝିବାର ସ୍ୱାଧିନତା ଏବଂ ବଡ଼ପଣ ନୁହେଁ କି ? ସାହିତ୍ୟସୁଖ ଆସିଲେ ଆସୁ କର୍ମଜୀବନର ଫାଙ୍କରେ, କିଏ ମନା କରୁଛି ? କିନ୍ତୁ ମନେ ରଖିବାକୁ ହେବ ଯେ ତାହା ଅଧିକବିଶେଷ । ଏହି ମର୍ମରେ ସେଇ ଏକା ବର୍ଷ ମୁଁ ଏବଂ ଭାରତବର୍ଷ ବଡ଼ ହୋଇ ଉଠିଲୁ । ମୁଁ ଆଗେ ଏବଂ ତାପରେ ମୋ ଦେଶ । ସତେ ଏମିତି ଭାବିବାକୁ ଭଲ ଲାଗେ ମୋତେ, ଏକ ବିଶିଷ୍ଟ ମର୍ଯ୍ୟାଦାର ଅଧିକାରୀ ହେଲାପରି । ନା, ଆମେ ସଲ୍‌ମାନ୍ ରଶଦିଙ୍କର ଅଧରାତିଆ ପିଲା (Midnight's Children) ନୋହୁଁ, ଯେଉଁମାନେ ଅସହାୟ ଶିଶୁ ହୋଇ ଜନ୍ମ ହୋଇଥିଲେ ଭାରତ ସ୍ୱାଧିନ ହେଲା ବେଳକୁ । ଆମେ ଥିଲୁ ଏକା ଭଳି ଦୃପ୍ତ ଓ ଦୀପ୍ତ, ମୁଁ ଏବଂ ମୋ ଦେଶ, ଆମ ନବତରୁଣିମାର କର୍ତ୍ତବ୍ୟକୁ ନେଇ । ଜୟହିନ୍ଦ୍ ।

ସମୟଭିତ୍ତିକ କ୍ରମ ଅନୁଯାୟୀ ପ୍ରଥମେ କହିବା ଉଚିତ ମୋର ଚାକିରୀ ବିଷୟରେ । ମୋତେ ଯେଉଁ ଚାକିରୀ ମିଳିଥିଲା, ତାକୁ ଉପଯୁକ୍ତ ବୋଲି କହିବାକୁ ହେବ । ଓଡ଼ିଶା ସରକାରଙ୍କ ଅଧିନରେ ଡେପୁଟି ମାଜିଷ୍ଟ୍ରେଟ୍ । ସବ୍‌ଡେପୁଟିରୁ ଡେପୁଟି ନୁହେଁ, ସିଧାସଳଖ ଡେପୁଟି ମାଜିଷ୍ଟ୍ରେଟ୍ । ଏଭଳି ବ୍ୟବସ୍ଥା ନଥିଲା ଆଗରୁ, ଏବେ କରା ହୋଇଛି । କିନ୍ତୁ ମୋ ପାଇଁ ତାର ଗୋଟିଏ ବିକଳ୍ପ ଥିଲା । ମୋତେ ଆଉ ଗୋଟିଏ ଚାକିରୀ ମଧ୍ୟ ଯଚା ହୋଇଥିଲା ଏଇ ସମୟରେ, ଶିକ୍ଷା ବିଭାଗ ତରଫରୁ । ଉଭୟ ବିଧିବଦ୍ଧ ବିଜ୍ଞାପନ ଆବେଦନ ପତ୍ର ଏବଂ ପବ୍‌ଲିକ୍ ସର୍ଭିସ୍ କମିଶନଙ୍କ ଦ୍ୱାରା ନିର୍ବାଚନ ଅନୁଯାୟୀ । କିନ୍ତୁ ଶିକ୍ଷା ବିଭାଗର ଏଇ ଚାକିରୀ ବର୍ତ୍ତମାନ ପାଇଁ ନୁହେଁ । ଏଇକ୍ଷଣି ସରକାର ତମକୁ ଯାତ୍ରା ଖର୍ଚ୍ଚ ଓ ସ୍କଲାର୍‌ସିପ୍ ଯୋଗାଇବେ ବିଦେଶର ବଛା ବଛା ୟୁନିଭର୍ସିଟୀରୁ ଏମ୍.ଏ. କିମ୍ୱା ଡକ୍ଟରେଟ୍ ପାସ୍ କରି ଆସିବା ଲାଗି, ତାପରେ ତମକୁ ଚାକିରୀ ଦିଆଯିବ । ମୋର ପ୍ରାୟ ସମସ୍ତ ଶୁଭାକାଙ୍କ୍ଷୀ ମୋତେ କହିଲେ ଯେ

ଏଥିରେ ଭାବିବାର କିଛି ନାହିଁ । ହାତରେ ମିଳୁଥିବା ଧନ କିଏ ଛାଡ଼ିଦିଏ, ଭବିଷ୍ୟତରେ କଣ ମିଳିବ ବୋଲି ? ମଧ୍ୟ କେତେଜଣ ପ୍ରକାରାନ୍ତରେ କହିଲେ ଯେ ମାଷ୍ଟରଟିଏ ହେବା ଠାରୁ ହାକିମ ହେବା ଶହେଗୁଣେ ଭଲ, ଇଏ ଗୋଟିଏ ସ୍ୱତଃସିଦ୍ଧ ତଥ୍ୟ । କିନ୍ତୁ ମୋର ମନ ମାନୁ ନଥାଏ । ଭିତିରି ମନ ଚାହୁଁଥାଏ, କଲେଜ୍‌ରେ ପାଠ ପଢ଼ିଲା ବେଳୁ ଚାହିଁଆସିଛି, ମାଷ୍ଟରଟିଏ ହେବା ଲାଗି । ତା'ଛଡ଼ା ବିଦେଶଭ୍ରମଣର ସୁଖ ଏବଂ ବିଦେଶର କେଉଁ ଭଲ ୟୁନିଭର୍ସିଟୀରୁ ଉଚ୍ଚ ଡିଗ୍ରୀ ହାସଲ କରିବାର କୃତିତ୍ୱକୁ ଊଣା କରିହେବ କେମିତି ? କିନ୍ତୁ ମୋର ସାହସ ନ ଥିଲା ଗୁରୁଜନମାନଙ୍କ ପ୍ରାକ୍ଟିକାଲ ପରାମର୍ଶକୁ ଅଗ୍ରାହ୍ୟ କରିବା ଲାଗି । ତେଣୁ ଅକ୍‌ସ୍‌ଫୋର୍ଡ଼, କେମ୍ବ୍ରିଜ୍, କି ହାର୍‌ଭାର୍ଡ଼ରୁ ଡକ୍ଟର ହୋଇ ଫେରି ଆସିବାର ସ୍ୱପ୍ନକୁ ଭୁଲି ଯାଇ, ତତ୍‌କ୍ଷଣାତ୍ ଗୋଟିଏ ହାକିମି ଚାକିରୀରେ ପଶି ଟଙ୍କା ରୋଜଗାର କରିବା ବୁଦ୍ଧିମାନ୍‌ର କାମ ବୋଲି ମାନି ନେଲି । ହେଲେ ମୋ ମନରେ ଗୋଟାଏ ଅପୂରଣର ଦୁଃଖ ରହିଗଲା । ଭାଗ୍ୟକୁ ପରେ ଏମିତି ଗୋଟିଏ ଚାକିରୀ ମିଳିଲା ମୋତେ ଯେଉଁଥିରେ ମୁଁ ଦେଶବିଦେଶ ବୁଲି ଆସିପାରିଲି, ସେକଥା ଭିନ୍ନ । ଏବଂ ମୋର ଗୋଟିଏ ଝିଅ ଏବଂ ଦୁଇଜଣ ନାତି କଣ କ୍ୟାନେଡ଼ା ଓ ଆମେରିକାର ସୁପ୍ରସିଦ୍ଧ ୟୁନିଭର୍ସିଟୀମାନଙ୍କରୁ ଏମ୍.ଏ. ଆଉ ଡକ୍ଟରେଟ୍ ଡିଗ୍ରୀମାନ ହାସଲ କରି ଆଣିନାହାନ୍ତି ମୋ ପାଇଁ ? ଏଭଳି କ୍ଷତିପୂରଣ କିଛି ନୂଆ କଥା ନୁହେଁ ବଂଶର ଇତିହାସରେ । ମୋ ବାପା କଣ ବିଶେଷ ଖୁସି ହୋଇ ନଥିଲେ, ମୁଁ ଏମ୍.ଏ.ରେ ଫାଷ୍ଟକ୍ଲାସ୍ ପାଇଲାରୁ ?

ଛାଡ଼ନ୍ତୁ । ବର୍ତ୍ତମାନ ପାଇଁ ମୁଁ ହେଲି ଅନ୍ୟତମ ପ୍ରୋବେସନାରୀ ଡେପୁଟି ମାଜିଷ୍ଟ୍ରେଟ୍ । ମୋର ଦ୍ୱିତୀୟ ସ୍ଥାନ ଥିଲା ନିର୍ବାଚିତ ଦଶଜଣଙ୍କ ମଧ୍ୟରେ । ହେଲେ ଆମ ସେତେବେଳର ପିଲାଳିଆପଣକୁ ଧନ୍ୟ କହିବ ଯେ ଆମ ଚାର୍ଜରେ ଥିବା ବଡ଼କର୍ତ୍ତା ନୀଳମଣି ସେନାପତି ଆଇ.ସି.ଏସ୍.ଙ୍କୁ ଆମେ ଅନୁରୋଧ କରୁ ଯେ ଆମକୁ ନିର୍ଦ୍ଧାରିତ ଦିନର ଗୋଟିଏ ଦିନ ପରେ ଜଏନ୍ କରିବାକୁ ଦିଆଯାଉ । କାରଣ ନିର୍ଦ୍ଧାରିତ ଦିନଟି ଥିଲା ଏପ୍ରିଲ୍ ପହିଲା । ତାହା ହୋଇପାରେ 'ଉତ୍କଳ ଦିବସ', କିନ୍ତୁ ତାହା ମଧ୍ୟ 'ଏପ୍ରିଲ୍ ଫୁଲ' ହେବାର ଦିନ । ତେଣୁ ଆମେ କେମିତି ଭଲା ଚାକିରୀରେ ଯୋଗ ଦେବୁ, ଏଭଳି ଗୋଟିଏ ଦିନରେ ? ତେଣୁ ଅଳ୍ପ କେତେକଙ୍କୁ ଛାଡ଼ି ଆମେ ସମସ୍ତେ ଡେପୁଟି ମାଜିଷ୍ଟ୍ରେଟ୍ ପଦବୀର ଦାୟିତ୍ୱ ଗ୍ରହଣ କଲୁ ଏପ୍ରିଲ୍ ୨ ତାରିଖ ୧୯୪୭ରେ । ଅନ୍ୟମାନେ ବ୍ୟକ୍ତିଗତ କାରଣରୁ ପରେ ଜଏନ୍ କଲେ ।

ଚାକିରୀରେ ଯୋଗ ଦେବା ମାତ୍ରେ ଆମକୁ କୁହାଗଲା ଯେ ଆମକୁ ଜମି ସର୍ଭେ କରିବାର ଟ୍ରେନିଂଗ୍ ନେବାକୁ ପଡ଼ିବ, ଏର୍‌ଡ଼ଂଗା ବୋଲି ଗୋଟିଏ ଜାଗାରେ । ଲମ୍ବା ହଲ୍ ଜାତୀୟ ଗୋଟିଏ ହଷ୍ଟେଲ୍ ଏବଂ କ୍ୟାଂପ୍‌ଖଟ ପ୍ରସ୍ତୁତ ହୋଇ ରହିଛି ଆମ ପାଇଁ । ଆମର ଟ୍ରେନିଂଗ୍ ମାଷ୍ଟର୍ ଭାବରେ ନିଯୁକ୍ତ ହୋଇଥିବା ବରିଷ୍ଠ ପ୍ରଶାସକ ଉମାଚରଣ ଦାସ ଆମକୁ ଗୋଟିଏ ମଧୁର ଚେତାବନୀ ଶୁଣାଇଲେ, ଖୁସି ହେଲା ପରି । କହିଲେ ''ୱେଲ୍, ୟଂଗ୍

ମେନ୍, ଜାଣିଛ ତମକୁ କଣ କରିବାକୁ ହେବ ? ହ୍ୟାଫ୍ ପ୍ୟାଣ୍ଟ୍ ପିନ୍ଧି ଜମି ଉପରେ ଚେନ୍ ଟାଣିବାକୁ ପଡ଼ିବ, ଆଉ କାହା ସାଙ୍ଗରେ ମିଶି, ସେଇଠୁ ଗୋଟାଏ ଯନ୍ତ୍ର ଭିତର ଦେଇ ଦେଖିବାକୁ ପଡ଼ିବ, ଲାଇନ୍ ସିଧା ଅଛି କି ନାହିଁ, ନ ଥିଲେ ତାକୁ ସଜାଡ଼ିବାକୁ ହେବ, ତା'ପରେ ତାର ମାପ ନୋଟ୍ କରିବାକୁ ହେବ, ପାଖରେ ଠିଆ କରି ରଖା ହୋଇଥିବା ଗୋଟାଏ ବୋର୍ଡ଼ ଉପରେ, ମାନେ ସେଥିରେ ଭିଡ଼ା ହୋଇଥିବା ନକ୍ସା ଉପରେ । କ୍ଲାସ୍‌ରୁମ୍‌ର ବ୍ଲାକ୍‌ବୋର୍ଡ଼ ପରି । କିନ୍ତୁ ମୁଣ୍ଡ ଉପରକୁ ଫ୍ୟାନ୍ ନାହିଁ, କେବଳ ସୂର୍ଯ୍ୟ ଦେବତା, (''ହୋ-ହୋ-ହୋ'') କିନ୍ତୁ ଭୟ ନାହିଁ, ମୁଁ ତମକୁ ଏମିତି ନିଦାପିଟା କରିଦେବି ଏଇ ଦି'ମାସ ଭିତରେ ଯେ ତମକୁ କେଉଁ ଅମିନ ଠକେଇ ପାରିବ ନାହିଁ ଭବିଷ୍ୟତରେ .... ।''

ହେଲେ ଆମେ ପ୍ରସ୍ତୁତ ଥିଲୁ ଏହି ପ୍ରକାର ନୂଆ ଅନୁଭୂତି ପାଇଁ । ମଧ୍ୟ ଆମକୁ ଆମେ ହଷ୍ଟେଲ୍ ଜୀବନର ଅନୁଭୂତି ଫେରି ପାଇଲା ପରି ଲାଗିଲା । ମୋର ବ୍ୟକ୍ତିଗତ ଦୁଃଖ କେବଳ ଏତିକି ଯେ ମୋତେ ଟ୍ରେନିଂଗ୍ କ୍ୟାଂପରୁ ମାତ୍ର ଦୁଇଦିନ ଛୁଟି ନେଇ ଆସିବାକୁ ପଡ଼ିଲା ଘରକୁ, ବାହା ହେବା ପାଇଁ । ସେହେତୁ ଏମିତି ହେଲା ଯେ ଚଉଠିର କ୍ରିୟାକର୍ମ ପାଇଁ ବେଦୀ ଉପରେ ଗୋଟାଏ ଶିଳପୁଆକୁ ପ୍ରତିଷ୍ଠିତ କରାଗଲା କନ୍ୟାର ବର ହିସାବରେ ।

ବିବାହ । ମେ ୬ ତାରିଖ ୧୯୪୭ । ତଦାନୀନ୍ତନ ତୁଂଗ କଂଗ୍ରେସ ନେତା ଓ ପାର୍ଲିଆମେଣ୍ଟର ବରିଷ୍ଠ ସଦସ୍ୟ ଭୁବନାନନ୍ଦ ଦାସଙ୍କର ଦ୍ୱିତୀୟ କନ୍ୟା କୁମାରୀ ସହିତ । ବାପମାଆଙ୍କ ଦ୍ୱାରା ଆୟୋଜିତ ବିବାହ, ପୁଅଝିଅଙ୍କ ସମ୍ମତି କ୍ରମେ । ବିବାହ ପୂର୍ବରୁ ଆମର ପରସ୍ପର ସହିତ ଦେଖାସାକ୍ଷାତ ହୋଇ ନଥିଲା, କଥାବାର୍ତ୍ତା ହେବା ଦୂରର କଥା । କିନ୍ତୁ ଗୋଟିଏ ଉଦୀୟମାନ ଲେଖକକୁ କଣ ଜଣା ନାହିଁ, ଭାବୀ ପତ୍ନୀ ସାଙ୍ଗରେ କଥାଭାଷା ହେବାର ଭିନ୍ନ କାଇଦା ? ଅବଶ୍ୟ ଏଦିଗରେ ପରିସ୍ଥିତି ମଧ୍ୟ ମୋର ସହାୟକ ହୋଇଥିଲା । କାରଣ ବାହାଘର ପ୍ରସ୍ତାବ ପଡ଼ିଥିଲା ବେଳେ ମୁଁ ଥିଲି କଟକରେ, ଗୁରୁଚରଣ ବଡ଼ବାପାଙ୍କ ଘରେ, ଯାହା ମୁଁ ଆଗରୁ କହିଛି । ଏବଂ ତାଙ୍କ ବଡ଼ପୁଅ ହେମ ଭାଇ (ହେମନ୍ତ କୁମାର ମହାନ୍ତି, ଇଂଜିନିୟର୍) ସଦ୍ୟ ବାହା ହୋଇଥାଆନ୍ତି ଭୁବନାନନ୍ଦ ଦାସଙ୍କ ବଡ଼ଝିଅ ଗୌରୀ ଓରଫ୍ କମଳାଙ୍କ ସହିତ । ସେଇ ସ୍ନେହୀ ଭାଉଜ ମୋତେ ସାହାଯ୍ୟ କରିଥିଲେ ମୋର ଭାବୀ ପତ୍ନୀ କୁମ ସହିତ ଆଳାପ କରିବା ଲାଗି । ଅର୍ଥାତ୍ ଲେଖକ ହିସାବରେ ମୁଁ ଗୋଟିଏ ଗଳ୍ପ ଲେଖି ପଠାଇଥିଲି ତା ପାଇଁ, ଭାଉଜଙ୍କ ହାତରେ । ସେଇ ଗପରେ ମୋ ଲେଖକପ୍ରାଣର ଯେଉଁ ସୂଚନା ରହିଥିଲା, ସେଥିପ୍ରତି କୁମ ଅବଶ୍ୟ ଆକୃଷ୍ଟ ହେବ, ଏଥିରେ ମୋର ସନ୍ଦେହ ନ ଥିଲା । ଏବଂ ତାହାହିଁ ହେଲା ବୋଲି ମୁଁ ଜାଣିବାକୁ ପାଇଲି ଭାଉଜଙ୍କ ଠାରୁ । ଆଜ୍ଞା, ଏହି କ୍ଷେତ୍ରରେ କିଏ ଭଲା ତା ନିଜର ବାହାଦୂରୀ ନ ଦେଖାଏ, ଧନୁର୍ଦ୍ଧାରୀ ରାମଚନ୍ଦ୍ରଙ୍କ ଠାରୁ ଆରମ୍ଭ କରି ପୁଚ୍ଛଧାରୀ ବନମୟୂର ଯାଏ ? ସେହେତୁ ମୁଁ ମୋର ଲେଖକପଣିଆ ଦ୍ୱାରା ତା

ମନକୁ ଛୁଇଁବାକୁ ଚାହିଁଲି, ଏଇ କଳାକୌଶଳକୁ ଶଠତା ବୋଲି କହିବା ଉଚିତ ହେବ କି ? ତା'ଛଡ଼ା ଆମର ଦେଖାସାକ୍ଷାତ ହୋଇ ନଥିଲା ସିନା, ଆମେ ପରସ୍ପରକୁ ଦେଖି ନଥିଲୁ ବୋଲି କିଏ କହିଲା ? ଗୌରୀ ଭାଉଜଙ୍କ ବାପଘର ହିସାବରେ ମୁଁ କଣ କେତେବେଳେ କେମିତି ଯାଉ ନଥିଲି ତାଙ୍କ ଘରକୁ ଭାଇଭାଉଜଙ୍କ ଗହଣରେ ? ନା ସେମାନେ ଆସୁ ନଥିଲେ ବଡ଼ବାପାଙ୍କ ଘରକୁ, ଯେଉଁଠି ମୁଁ ଥିଲି ? ନା ତା ବିଷୟରେ ଜାଣିବାକୁ ପାଉ ନଥିଲି, ଅଳ୍ପ ବହୁତ, ଶୁଭେଚ୍ଛୁ ଜ୍ଞାତିକୁଟୁମ୍ବଙ୍କ ମୁହଁରୁ ? ବୁଝିଲି ଯେ ସେ ହେଉଛି ଗୌରବର୍ଣ୍ଣା, ଚପଳା, ସ୍ପଷ୍ଟବାଦୀ ଝିଅଟିଏ, ଯାହାର ବିଶେଷ ଗୁଣ ହେଉଛି ଯେ ସେ ଅପର ଅନ୍ୟ ଲୋକମାନଙ୍କ ସାଙ୍ଗରେ ଅନାୟାସରେ ମିଶିଯାଇପାରେ । ଏପରିକି ସେଇ ଘରେ ରହୁଥିବା ଭୁବନାନନ୍ଦ ବାବୁଙ୍କ ଜାଆଁଳା ଭାଇ ଆଡ୍‌ଭୋକେଟ୍ ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ପାଖକୁ ଆସିଥିବା ମହକିଲମାନଙ୍କୁ ପଚାରି ବସେ- ତମ ଘର କେଉଁଠି ? ତମ ପିଲାପିଲି କେତୋଟି ? ତମେ ଆଜି କଣ ଖାଇଛ ? ଇତ୍ୟାଦି । ତା'ମାନେ ସେ ଦିବ୍ୟ ଏକ୍ସଟ୍ରୋଭର୍ଟ ଝିଅଟିଏ ବୋଲି ମନେ ହେଲା ମୋର । ମନ୍ଦ କଅଣ ? ଏଭଳି ଗୋଟିଏ ଜୀବନସାଥୀ କଣ ବରଣୀୟ ନୁହେଁ ମୋ ପରି ଜଣେ ମାର୍କାମରା ଇଣ୍ଟ୍ରୋଭର୍ଟ ପାଇଁ, ଯେପରିକି ଏକ ଆନର ପରିପୂରକ ହୋଇପାରିବ ? ଏହି ଭାବରେ ବାହାଘର ଠିକ୍ ହୋଇଗଲା । ଏବଂ ଯଥାବିଧି ସଂପନ୍ନ ହେଲା ନିର୍ଦ୍ଧାରିତ ଶୁଭଦିନରେ ।

ବାହାଘର ସରିଲା ରାତିଅଧକୁ । ଏହି ସଂକ୍ରାନ୍ତରେ ଗୋଟିଏ ସାନ ଘଟଣାର ଉଲ୍ଲେଖ କରିବାକୁ ଚାହୁଁଛି, ଆମ ସେବେଳର ପାରିବାରିକ ସାମାଜିକ ଗତିବିଧିର ନମୁନା ହିସାବରେ । ମୋର ଶ୍ୱଶୁର ଭୁବନାନନ୍ଦ ବାବୁ (ଲୋକ ମୁଖରେ ବି. ଦାସ) କୌଣସି ଅତିଶୟତାକୁ ସହ୍ୟ କରିପାରୁ ନଥିଲେ । ସେ ମଧ୍ୟ ଥିଲେ ରକ୍ତଚାପର ରୋଗୀ । ତେଣୁ ବାହାଘରର ପ୍ରଲମ୍ବିତ ଉପଚାର ତାଙ୍କୁ ଭଲ ଲାଗିଲା ନାହିଁ, ବିଶେଷତଃ ଓପାସିଆ ପିଲା ଦିଟାଙ୍କ ସ୍ୱାସ୍ଥ୍ୟ ଦୃଷ୍ଟିରୁ । ସେହେତୁ ସେ ଜିନିଷଟାକୁ ସଂକ୍ଷେପରେ ସାରିଦେବାର ନିର୍ଦ୍ଦେଶ ଦେଲେ ଏବଂ ତାହାହିଁ କରାହେଲା । କିନ୍ତୁ ସେ ଭୁଲି ଯାଇଥିଲେ ଯେ ନିମନ୍ତ୍ରିତ ଅତିଥିମାନଙ୍କ ମଧ୍ୟରେ ଜଣେ ଥିଲେ, ଯାହାଙ୍କର ଅଗାଧ ଆସ୍ଥା ଥିଲା ଶାସ୍ତ୍ରସମ୍ମତ ବିଧିବିଧାନ ପ୍ରତି । ତାଙ୍କୁ ବାଧିଲା ଏଇ ସଂକ୍ଷେପୀକରଣ ବୋଲାଉଥିବା ବ୍ୟତିକ୍ରମ । ଯାହା କ୍ଷତି କରିବ ସେଇ ପିଲା ଦିଟାଙ୍କର । ଏବଂ ସେ ନିଜକୁ ବ୍ୟକ୍ତ କଲେ ଦୃଢ଼ତାର ସହ । କାରଣ ସେ ଥିଲେ ବି. ଦାସଙ୍କ ପରମବନ୍ଧୁ କ୍ଷିତୀଶ ଚନ୍ଦ୍ର ନିୟୋଗୀ (ଯେ ପରେ କେନ୍ଦ୍ରମନ୍ତ୍ରୀ ଏବଂ ପ୍ଲାନିଂଗ୍ କମିଶନର ସଦସ୍ୟ ହୋଇଥିଲେ)ଙ୍କର ଧର୍ମପରାୟଣା ପତ୍ନୀ । ''ଦିଦି''ଙ୍କ ଦୁଃଖକୁ କେମିତି ଭଲା ଅଗ୍ରାହ୍ୟ କରିହେବ ? ସେହେତୁ ତାଙ୍କ ପରାମର୍ଶ ଅନୁଯାୟୀ ଆମକୁ ଗୋଟିଏ ଅଧିକା କାମ କରିବାକୁ ପଡ଼ିଲା । ହୋମ, ହାତଗଣ୍ଠି ଆଦି ସରିଯାଇଥିଲେ ମଧ୍ୟ ଆମ ଦି'ଜଣଙ୍କୁ ପାଖାପାଖି ଠିଆ

ହୋଇ ଅଗ୍ନିଦେବତାଙ୍କୁ କ୍ଷମା ମାଗିବାକୁ ପଡ଼ିଲା । ଯେ ଆପଣଙ୍କ ପାଇଁ ଉର୍ଦ୍ଦିଷ୍ଟ କ୍ରିୟାକର୍ମକୁ ଏମିତି କମେଇ ଦିଆଗଲା, ଏଇଟା ନିହାତି ଭୁଲ୍ ହୋଇଛି ଆମର । ଦୟାକରି ଆମକୁ କ୍ଷମା କରନ୍ତୁ । ଭାବି ଦେଖନ୍ତୁ - ଆଜି କେଉଁ ନିମନ୍ତ୍ରିତ ବନ୍ଧୁ କଣ ଏଭଳି ହସ୍ତକ୍ଷେପ କରିପାରିବ ବାହାଘର ପଦ୍ଧତି ଉପରେ ? ନା କର୍ତ୍ତାମାନେ ତଥା ବରକନ୍ୟା ଏମିତି ମାନି ନେଇଥାଆନ୍ତେ ତାଙ୍କ କଥା ? ମନେ ହୁଏ ଯେ ବନ୍ଧୁତା ହେଉ କି ମନ୍ତ୍ରପଢ଼ା, କୌଣସି ଜିନିଷକୁ ହାଲୁକାରେ ନେଇ ପାରୁନଥିଲେ ସେକାଳର ଲୋକେ ।

ବିଚିତ୍ର କଥା ଯେ ଆମର ଏଇ ବାହାଘର ଓଡ଼ିଆ ଖବରକାଗଜରେ ଗୋଟିଏ ସ୍ଥାନୀୟ ସଂବାଦ ଭାବରେ ପ୍ରକାଶିତ ହୋଇଥିଲା । ଦୁଇଟି ଉଚ୍ଚବର୍ଗୀୟ ପରିବାରଙ୍କ ମଧ୍ୟରେ ସ୍ଥାପିତ ସଂପର୍କ ହିସାବରେ । ଯଦିଓ ବାପା କିମ୍ୱା ବି. ଦାସ, କାହାରିକୁ ଧନୀ କିମ୍ୱା କ୍ଷମତାଶାଳୀ ବୋଲି କୁହାଯିବ ନାହିଁ । ବାପା ସେତେବେଳକୁ କଟକର ଜିଲ୍ଲାଜଜ୍ ହୋଇ ଆସିଲେଣି, ସେହେତୁ ତାଙ୍କୁ ଅନ୍ୟତମ ବଡ଼ ହାକିମଟିଏ ବୋଲି କୁହାଯାଇପାରେ ହୁଏତ, ସେତେବେଳର ଅଭିଧାନ ଅନୁଯାୟୀ, ତଥାପି ସେତିକି ଯଥେଷ୍ଟ ବୋଲି ମନେ ହେଉଛି କି ଏଭଳି ଏକ ସଂବାଦର ଖୋରାକ୍ ଯୋଗାଇବାରେ ? ଅପର ପକ୍ଷରେ ବି. ଦାସ ଜଣେ ଗାନ୍ଧୀବାଦୀ କଂଗ୍ରେସ ନେତା ପରା ? ହେଲେ ମୋତେ ମାନିବାକୁ ପଡ଼ିବ ଯେ ତାଙ୍କ ଇମେଜ୍‌ରେ ଗୋଟାଏ ଭିନ୍ନ ବଡ଼ପଣ ଥିଲା, ଯାହା ହାରାହାରି କଂଗ୍ରେସ ନେତାଙ୍କ ସହିତ ମିଶୁ ନଥିଲା । ନାନାଦି କାରଣରୁ - ପ୍ରଥମ ବିଲାତ ଫେରନ୍ତା ଓଡ଼ିଆ ଇଂଜିନିୟର୍, ତଥାକଥିତ ସାହେବି ଓ ସୌଖୀନ ଚାଲିଚଳଣ, ଓଡ଼ିଶାର ପ୍ରଥମ ଇଂଜିନିୟରିଂଗ୍ ସ୍କୁଲ ଓ ପୁରୀ ଇଲେକ୍‌ଟ୍ରିକ୍ ସପ୍ଲାଏ କଂପାନୀ ଆଦି ବିଭିନ୍ନ ଶିଳ୍ପ ଉଦ୍ୟୋଗର ପ୍ରତିଷ୍ଠାତା, କେବେହେଲେ ଜେଲ୍ ନ ଯାଇ ମଧ୍ୟ ପାର୍ଟିରେ ଏଭଳି ଏକ ଉଚ୍ଚ ଆସନ ଲାଭ କରି ପାରିବାର କୃତିତ୍ୱ, ଇତ୍ୟାଦି । ସେ କିଭଳି ମଧୁର ବ୍ୟଂଗବିଦ୍ରୂପର ଶରବ୍ୟ ହେଉଥିଲେ ତାଙ୍କର ଏଇ ଇମେଜ୍ ହେତୁ, ତାର ନମୁନା ମୋତେ ଦେଖିବାକୁ ମିଳିଛି, ''ନିଆଁଖୁଣ୍ଟା''ରେ ବାହାରିଥିବା ଗୋଟିଏ ଲେଖାରେ ଯେଉଁଥିରେ ତାଙ୍କୁ ଓଡ଼ିଶାର ଅନ୍ୟତମ 'ବଡ଼' ଜିନିଷଟିଏ ବୋଲି କୁହାଯାଇଥିଲା ।

ଯଦି ପ୍ରକୃତରେ କିଛି ବିଶେଷତ୍ୱ ଥାଏ ଏଇ ବାହାଘରରେ, ଗୋଟିଏ ସାମାଜିକ ଘଟଣା ହିସାବରେ, ତା କେବଳ ଗୋଟିଏ କାରଣରୁ ହୋଇଥିବ ବୋଲି ଭାବିବା ଉଚିତ୍ । ଯେ ଗୋଟିଏ ସୁବିଦିତ ସରକାରୀ ଚାକିରିଆ ବଂଶର ପୁଅ ବାହା ହେଉଛି ଗୋଟିଏ ସୁପ୍ରସିଦ୍ଧ କଂଗ୍ରେସ ଘରର ଝିଅକୁ । କିନ୍ତୁ ସେଭଳି କୌତୂହଳର ଧାପେ ମଧ୍ୟ ନ ଥିଲା ସେଇ ସଂବାଦରେ । ଏଇଥିରୁ ବୁଝିବା କଥା ଯେ ଯୁଗ କେତେ ବଦଳି ଗଲାଣି ସେତେବେଳକୁ, ଯଦିଓ ସ୍ୱାଧିନତା ଆସି ପହଞ୍ଚିବାର ତିନିମାସ ବାକୀ ଥିଲା ଆହୁରି ।

କିନ୍ତୁ ସାଂବାଦିକତାର ଉପାଦାନ ଯାହା ହେଉ ନା କାହିଁକି, ମାନସିକତାର ସ୍ତରରେ କଣ ଗୋଟାଏ ବୈଷମ୍ୟ ଥିବ ବୋଲି ଭାବିବା ସ୍ୱାଭାବିକ ନୁହେଁ କି ଦୁଇ ବଂଶର ପରମ୍ପରା

ଦୃଷ୍ଟିରୁ ? ଅନ୍ତତଃ ତଥାକଥିତ ଖାନ୍ଦାନି ରକ୍ଷଣଶୀଳତା ବନାମ ଗାନ୍ଧୀବାଦୀ ଆଧୁନିକତାର ପରିପ୍ରେକ୍ଷୀରେ ? ନା । ସଂକ୍ଷେପରେ କହିଦିଏ ଯେ ସେଭଳି କିଛି ହେଲେ ନ ଥିଲା, ଯାହା ଆମର ଆଦ୍ୟ ଦାଂପତ୍ୟ ଜୀବନରେ କୌଣସି ଗଣ୍ଡଗୋଳ ସୃଷ୍ଟି କରିପାରିଥାଆନ୍ତା । ତାର ମୁଖ୍ୟ କାରଣ ଦୁଇଟି । ବାପାଙ୍କର ସଂସ୍କାରବାଦୀ ଆଭିମୁଖ୍ୟ, ଯାହା ଖାପ୍ ଖାଇଯାଉଥିଲା, ଧର୍ମର ଉପଚାର ପ୍ରତି ବି. ଦାସଙ୍କର ଅନାସ୍ଥା ସାଙ୍ଗରେ । ସେ ହିସାବରେ ବାପା ସାନ ଗାନ୍ଧୀଜୀଟିଏ ଏବଂ ବି. ଦାସ ଉଦାରପନ୍ଥୀ ପଣ୍ଡିତ ନେହେରୁଙ୍କ ଶିଷ୍ୟ ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ବାପା ଅଛବମାନଙ୍କୁ ଖୋଜି ଲୋଡ଼ି ଆଣୁଥିଲେ ଘର କାମ କରିବା ଲାଗି, ବୋଉର 'କିଏ କଣ କହିବ' ଜାତୀୟ କୁନ୍ଥୁକୁନ୍ଥୁକୁ ଅଗ୍ରାହ୍ୟ କରି, ଯେଉଁଠି ବି. ଦାସ ଏଇସବୁ ଘରୋଇ ବ୍ୟାପାରକୁ ପୂରାପୂରି ଛାଡ଼ି ଦେଇଥିଲେ ପତ୍ନୀ ରୁକ୍ମିଣୀ ଦେବୀଙ୍କ ଉପରେ । ଏବଂ ଗଂଜାମର ବିଶିଷ୍ଟ କଂଗ୍ରେସ ନେତା ନିରଂଜନ ପଟନାଏକଙ୍କ ଭଉଣୀ ରୁକ୍ମିଣୀ ଦେବୀ ଥିଲେ ଏଭଳି ଏକ ଭଦ୍ରମହିଳା ଯେ ଅତି ଚମତ୍କାର ଭାବରେ ତାଙ୍କର ଦ୍ୱିବିଧ ଭୂମିକା ନିଭେଇ ପାରୁଥିଲେ । କଂଗ୍ରେସ ନେତା ତଥା ବି. ଦାସ ସାହେବଙ୍କ ସ୍ତ୍ରୀ ଏବଂ ଓଡ଼ିଆ କରଣ ସମାଜର ଶୁଭଦୃଷ୍ଟିକୁ ଜଗି ରଖି ଚଳିବାକୁ ଚାହୁଁଥିବା ଘରଣୀ । ତେଣୁ ସ୍ୱାମୀଙ୍କର ବିରାଗଭାଜନ ନ ହୋଇ ମଧ୍ୟ ସେ ଏଭଳି କିଛି କାମ କରୁ ନଥିଲେ, ଯେଉଁଥିରେ ତାଙ୍କ ସମାଜ ତାଙ୍କୁ ନାପସନ୍ଦ କରିବ । ଯଥା, ଆମ ଦୁଇ ପରିବାର ମଧ୍ୟରେ ଯୌତୁକ ଦିଆନିଆର ପ୍ରଶ୍ନ ନ ଉଠିଥିଲେ ମଧ୍ୟ ସେ ଯଥାସମୟରେ ଯଥାବିଧି ଭାରଥୋଉରର ବ୍ୟବସ୍ଥା କରୁଥିଲେ । ଏବଂ ଯାହା କିଛି କରୁଥିଲେ ଝିଅଜ୍ୱାଇଁଙ୍କ ସୁଖସ୍ୱାଚ୍ଛଂଦ୍ୟ ପାଇଁ, ସେଥିରେ ପୁଅଘର ଖୁସି ହେବା ଉଚିତ । ହେଲେ ଏଇସବୁ ସାମାନ୍ୟ ଟିକିନିଖି ଆୟୋଜନ କଣ ସ୍ୱାମୀଙ୍କର ଜାଣିବା ଦରକାର ? ତା'ଛଡ଼ା ସ୍ୱାମୀଙ୍କର ଅନାସ୍ଥା ଭାବ ସତ୍ତ୍ୱେ ପୂଜାପୂଜି କରିବାରେ ତାଙ୍କର ଯେଉଁ ନିଷ୍ଠା ଏବଂ ଆଗ୍ରହ ଥିଲା, ତା ଆମ ଘର ତୁଳନାରେ ଯଥେଷ୍ଟ ଅଧିକ ଥିଲା ବୋଲି କହିଲେ ଭୁଲ୍ ହେବ ନାହିଁ । ଶେଷକୁ କହିଦିଏ ଯେ ସେତେବେଳକୁ ବାପାଙ୍କର ଜାତୀୟତାବାଦରେ କେଉଁ ଚାକିରୀଆ ମନୋବୃତ୍ତିର ନାଆଁଗନ୍ଧ ନ ଥିଲା । ଅପରଂତୁ ଆମେ ବାପପୁଅ ଏଭଳି ଏକ ପର୍ଯ୍ୟାୟକୁ ଉନ୍ନୀତ ହେଲୁଣି ଇତି ମଧ୍ୟରେ, ଯେ ଏଇ ଜାତୀୟତାବାଦର ଉଚିତ ଏବଂ ଅନୁଚିତ ଦିଗକୁ ନେଇ କେତେ ଯୁକ୍ତିତର୍କ ଚାଲେ ଆମ ଭିତରେ । ସେ ନେହେରୁସମ୍ମତ ଜାତୀୟତାକୁ ନରମପନ୍ଥୀ ଦୁର୍ବଳତା ବୋଲି କୁହନ୍ତି । କିନ୍ତୁ ମୁଁ ସେତେବେଳେ ମହାନୁଭବ ବିଶ୍ୱଧର୍ମୀ ନେହେରୁବାଦର ପ୍ରେମରେ ପଡ଼ିଥିଲି । ସେ ଯାହାହେଉ ଦି ସମୁଧିଙ୍କ ମଧ୍ୟରେ କେଉଁ ରାଜନୀତିମୂଳକ ତର୍କର ଆବଶ୍ୟକତା ଥିଲା, ନା ମୋର ଶାନ୍ତିପ୍ରିୟ ବୋଉ ଓ ବୁଦ୍ଧିମତୀ ଶାଶୁଙ୍କ ମଧ୍ୟରେ ସାଂସାରିକ ମତଭେଦର ଅବକାଶ । ତେଣୁ କାହିଁ କେଉଁ ବୈଷମ୍ୟର ଛାଇ ଦେଖା ଦେବ ଏଇ ଦୁଇ ପରିବାରଙ୍କ ସଂପର୍କରେ ?

ଛାଡ଼, ଆମକୁ କଣ ମିଳିବ ସେଥିରୁ ? ଆମେ କେଶ-କୁମ ଆମର ଅନ୍ତରଂଗ ସଂସାରରେ ବିଭୋର ହୋଇ ରହିଥିଲୁ, ଯଦିଓ ମୋର କର୍ମକ୍ଷେତ୍ର କଟକରେ ନ ଥିଲା ଏର୍‌ଡ଼ଂଗାର ସେଟ୍‌ଲ୍‌ମେଣ୍ଟ ଟ୍ରେନିଂଗ୍ ପରେ । ମୁଁ ପୁରୀ କଲେକ୍‌ଟରେଟ୍‌ରେ ମାଜିଷ୍ଟ୍ରେଟ୍ କାମର ଟ୍ରେନିଂଗ୍ ପାଉଥିଲି, ଜଣେ ସଂପର୍କୀୟଙ୍କ ଘରେ ରହି । ମଝିରେ ମଝିରେ କଟକ ଆସୁଥିଲି ଯାହା, ନବପରିଣୀତା ସାଙ୍ଗରେ ମିଳିତ ହେବା ପାଇଁ । ଏବଂ ଗୃହସ୍ଥ ହିସାବରେ ମୋର କୌଣସି ବାସ୍ତବ ଦାୟିତ୍ୱ ନ ଥିଲା, କେବଳ ଏକ ତାତ୍ତ୍ୱିକ ଦାୟିତ୍ୱବୋଧ । ଜଣାଥିଲା ଯେ ବାପାବୋଉ ବୁଝୁଛନ୍ତି ଓ ବୁଝିବେ ତାଙ୍କ ପୁଅବୋହୂଙ୍କ ଭଲମନ୍ଦ ସୁଖସ୍ୱାଚ୍ଛନ୍ଦ୍ୟ ବିଷୟରେ, ଯେପର୍ଯ୍ୟନ୍ତ ଦୃଶ୍ୟପଟ ଏହିପ୍ରକାର ଥିବ । ଅବଶ୍ୟ କୁମ ଯେ ଏତେ ମୁକ୍ତ ବୋଲି ଭାବିପାରୁଥିବ ନିଜକୁ, ତା ବୋହୂପଣିଆର ଦାୟିତ୍ୱକୁ ନେଇ, ତା' ମୁଁ କହୁନାହିଁ । ତେବେ ସେ ନିଜକୁ ବେଶ୍ ଚଳେଇ ନେଇ ପାରିଥିଲା ତା'ର ଶାଶୁଶ୍ୱଶୁରସଂବଳିତ ନୂଆ ସଂସାରରେ, ଏଥିରେ ସନ୍ଦେହ ନାହିଁ ।

ଏଇ ସୁଖୀ ଏବଂ ଆଶାୟୀ ଯୁଗ୍ମଜୀବନର ଗୋଟିଏ ସୁନେଲି , କହିବାକୁ ଗଲେ ଜ୍ୟୋତ୍ସ୍ନାଧୁଆ, ତେଣୁ ରୂପେଲି ମୁହୂର୍ତ୍ତକୁ ମନେ ନ ପକାଇ ରହିପାରୁ ନାହିଁ । ଆକାଶରେ ଭରା ଜହ୍ନ ଥିଲା ସେତେବେଳେ । ଏବଂ ଆମେ ସଦ୍ୟ ମିଳିତ ହେବା ପରେ ବାହାରକୁ ଆସି ଅନେଇ ଥିଲୁ ଜହ୍ନକୁ, ପାଖାପାଖି ଠିଆହୋଇ । ସେଇଠୁଁ କୁମ କହିଲା - ଏଇ ଚାନ୍ଦ ପରି କୁନୁମୁନିଆଟିଏ ଆସନ୍ତା ନାହିଁ ଆମ କୋଳକୁ ? ଏବଂ ମୁଁ କହିଲି, ତଥାସ୍ତୁ । ବିଶ୍ୱାସ କରିବାକୁ ଇଚ୍ଛା ହୁଏ ଯେ ଏହିପ୍ରକାର ଅନ୍ତରତମ କାମନା ପ୍ରାର୍ଥନା ଫଳବତୀ ହୁଏ ବେଳେବେଳେ । କାରଣ ତା ପରଦିନ ମୁଁ ମୋ କର୍ମଭୂମିକୁ ଫେରିଗଲି । ଏବଂ ଆମେ ପୁଣି ମିଳିତ ହେଲା ପୂର୍ବରୁ କୁମ ଅନ୍ତଃସତ୍ୱା । ଏବଂ ସେଇ ଚାନ୍ଦମୁହିଁ ଜନ୍ମ ହେଲା ଆମ 'ଚଂଦ୍ରବଂଦାପନା'ର ପ୍ରାୟ ନଅମାସ ପରେ । କିନ୍ତୁ ସତେ ଏମିତି କଣ ହୁଏ ? ହୋଇଥିବ । କେଉଁ ଚାନ୍ଦ କେବେହେଲେ ଅପହୁଂଚ ହୋଇ ପାରିଛି କି ରୋମାଣ୍ଟିକ୍‌ମାନଙ୍କ ପାଇଁ ?

ଚାହୁଁ ଚାହୁଁ ଆସିଗଲା ଭାରତର ସ୍ୱାଧିନତା ଦିବସ । ଯେଉଁ ଦିନଟିକୁ ଆମେ ଚାହିଁ ବସିଥିଲୁ ପିଲାଟି ଦିନୁ । ଆମେ ସବୁ ମନ୍ତ୍ରୀ ହେବା, ଦେଶୀଲୋକ ଗୋଟା ଗୋଟା ... ବୋଲି ତାଳି ମାରି ନାଚି ଉଠିବା ସମୟରୁ । ଅବଶ୍ୟ ଅନେକ କିଛି ଘଟିଗଲାଣି ଇତି ମଧ୍ୟରେ, ସେଇ ଈପ୍‌ସିତ ମନ୍ତ୍ରୀପଣକୁ ଉପହାସ କଲା ପରି । ୧୯୪୨ରେ ଚାବୁକ୍‌ମାଡ଼ରୁ ବର୍ତ୍ତିଗଲା ପରେ, ଆହୁରି କେତେ ଦୁଃଖଦ ଅନୁଭୂତି ଆସିଥିଲା ମୋ ପାଇଁ । ୧୯୪୩ରେ ମଧ୍ୟ ସ୍ୱଚକ୍ଷୁରେ ଦେଖିଛି ଦୁର୍ଭିକ୍ଷର କରାଳ ରୂପ । ପରାଧିନ ଜାତିର ଜୀବନରେ ଘଟିଥିବା ଦୁର୍ଭିକ୍ଷ, ଯାହାର କୌଣସି ପ୍ରତିକାର କରିପାରିବ ନାହିଁ ଯୁଦ୍ଧ ଲଢୁଥିବା ଇଂରେଜ ସରକାର । ସେହେତୁ ଦେଖିବାକୁ ପଡ଼ିଛି ଖଡ଼ଗପୁର ରେଲ୍‌ୱେ ଷ୍ଟେସନ୍‌ର ପ୍ଲାଟଫର୍ମ ଓ ରେଲଲାଇନ୍ ଉପରେ

ପଡ଼ି ରହିଥିବା ଭେଳା ଭେଳା ଶବ, ପାଟଣାରୁ ଛୁଟିରେ ଓଡ଼ିଶାକୁ ଆସିଲା ବେଳେ । ଯୁଦ୍ଧର ଅବସାନ ପରେ ମଧ୍ଯ ଯାହାସବୁ ଘଟିଗଲା ଜାତିର ଜୀବନରେ, କଲିକତାରେ ସଂଘଟିତ ପ୍ରତ୍ୟକ୍ଷ କାର୍ଯ୍ୟବିଧି ଦିବସ (Direct Action Day)ର ହିନ୍ଦୁ ମୁସଲମାନ ହଣାକଟା, ବିହାର ଓ ନୋଆଖାଲିରେ ତାର ପୁନରାବୃତ୍ତି, ତା' ଉତ୍ତାରୁ ପାର୍ଟିସନ ପୂର୍ବରୁ ଏବଂ ପରେ ଦ୍ୱିପାକ୍ଷିକ ରକ୍ତରଂଜିତ ପଳାୟନର ପର୍ବ - ମୁଁ ସେଥିର ପ୍ରତ୍ୟକ୍ଷଦର୍ଶୀ ନ ହୋଇଥିଲେ ମଧ୍ୟ ମୋର ସ୍ୱାଧିନତାମୁଖୀ ଉତ୍‌କଣ୍ଠାକୁ କ'ଣ ଯଥେଷ୍ଟ ବାଧା ହୋଇନାହିଁ ? ତଥାପି ... ତଥାପି ଏଇ ସ୍ୱାଧିନତା ଦିବସ ଆସିବାକୁ ଥିଲା ଏବଂ ଆସିଛି । ମୁଁ ସେତେବେଳେ ପୁରୀରେ ଥିଲି ପ୍ରୋବେସନାରୀ ଡେପୁଟି ମାଜିଷ୍ଟ୍ରେଟ୍ ହୋଇ । ଏବଂ ମୁଁ ସେଇ ଚିରସ୍ମରଣୀୟ ଦିବସଟିକୁ ଅନୁଭବ କରିବାକୁ ଚାହିଁଲି । ଉଲ୍ଲାସର ସହ । ସତେକି ଏଇକ୍ଷଣି ଅବଶ୍ୟ ତାଳି ମାରି ନାଚି ଉଠି ହେବ ।

କିନ୍ତୁ ମୋର ମନେ ହେଲା ମୁଁ ନିଜକୁ ଭୁଲାଉଛି । କାରଣ ଏଇ ଅନୁଭବ ମୋର ବ୍ୟକ୍ତିଗତ ପାଉଣା ନୁହେଁ, ସମଗ୍ର ଜାତିର ପ୍ରାପ୍ୟ । କିନ୍ତୁ କାହିଁ କେଉଁ ଆନନ୍ଦ ଉତ୍ସବ ? ସରକାରୀ କୋଠାମାନଙ୍କରେ ତ୍ରିରଂଗ ପତାକା ଉଡୁଛି ସତ ଏବଂ ଲାଟ୍ ସାହେବଙ୍କ କୋଠିରେ ବିରାଟ ରିସେପ୍‌ସନ୍‌ର ଆୟୋଜନ କରାଯାଇଥିବ ନିଶ୍ଚୟ । କିନ୍ତୁ ଭାରତର ଜନତା, ଆବାଳବୃଦ୍ଧବନିତା ? ତାଙ୍କୁ କଣ କିଛି ମିଳିଗଲା ପରି ଲାଗୁନାହିଁ ଆଜି ? ମୁଁ କହୁନାହିଁ ଯେ ଆମେ ସତରେ ଅଣ୍ଟାରେ ହାତ ଦିଆଦେଇ ହୋଇ ନାଚିବା ବିତ୍‌ବଜାରରେ । ହେଲେ କିଛି ଗୋଟାଏ ଉତ୍ସବର ଆୟୋଜନ କଣ କରାଯାଇପାରି ନ ଥାଆନ୍ତା, ଜନତା ପାଇଁ ଏବଂ ଜନତାକୁ ନେଇ ? ମୁଁ ନିରାଶ ହେଲି । କିନ୍ତୁ ମୁଁ ଯେତେବେଳେ ମୋର ନୈରାଶ୍ୟ ବ୍ୟକ୍ତ କଲି ମୋର ସଂପର୍କୀୟ ବନ୍ଧୁଙ୍କ ଆଗରେ, ଯାହାଙ୍କ ଘରେ ମୁଁ ରହିଥିଲି ଏବଂ ସେ ମଧ୍ୟ ଥିଲେ ଜଣେ ବରିଷ୍ଠ ଡେପୁଟି ମାଜିଷ୍ଟ୍ରେଟ୍, ସେ ମୃଦୁ ମୃଦୁ ହସିଲେ ମୋ ଆଡ଼କୁ ଚାହିଁ । ମନେ ହେଲା ସେ କହିବାକୁ ଚାହୁଁଛନ୍ତି ମୋତେ, ତମେ ତଥାପି ପିଲାଟିଏ ହୋଇ ରହିଗଲ, କେଶ !

ହଉ ହେଲା । କିନ୍ତୁ ସେଇ ଦିନଠୁ ମୋର ଛାତି ଯଦି ଟିକିଏ ଫୁଲି ଉଠିଲା ଯେ ଭାରତୀୟ ହେବା ଛଡ଼ା ମୁଁ ମଧ୍ୟ ଏଣିକି ସ୍ୱାଧିନ ଭାରତର ଜଣେ ସିପାହୀ ଭାବରେ ଗଣା, ଯେ ତାର ଅପହୃତ ଗୌରବକୁ ଫେରାଇ ଆଣିପାରିବ, ତେଣୁ ପ୍ରୋବେସନାରୀ ଡେପୁଟି ମାଜିଷ୍ଟ୍ରେଟ୍ କେ.ସି. ଦାସକୁ ସାମାନ୍ୟ ଚାକିରୀଆଟାଏ ବୋଲି ଭାବ ନାହିଁ, ତାକୁ ବି କଣ ପିଲାଳିଆମି ବୋଲି କହିବ ?

ଏହି ପରିପ୍ରେକ୍ଷୀରେ ମୋର ଗୋଟିଏ ଅନୁଭୂତି ବିଷୟରେ କିଛି କହିବାର ଅଛି, ଯାହାର ସଂପର୍କ ଅଛି ଏଇ ନବଜାଗୃତ ଦାୟିତ୍ୱବୋଧ ଏବଂ ଆତ୍ମଗାରିମା ସାଙ୍ଗରେ । ଶୁଣନ୍ତୁ -

ଅକ୍ଟୋବର ୨ ତାରିଖ ୧୯୪୭ । ସ୍ୱାଧିନ ଭାରତର ପ୍ରଥମ ଗାନ୍ଧୀ ଜୟନ୍ତୀ । ଯୋଜନା ଅନୁଯାୟୀ ବିଭିନ୍ନ ଛୋଟବଡ଼ ପ୍ରଶାସକମାନଙ୍କୁ ବିଭିନ୍ନ ଧରଣର ଦାୟିତ୍ୱ

ଦିଆଯାଇଥିଲା ସେଦିନ ପାଇଁ । ଜାତିପିତାଙ୍କ ସମ୍ମାନରେ କିଛି ନୂଆ କାମର ଶୁଭାରମ୍ଭ ଅବା ପ୍ରତୀକାତ୍ମକ ପ୍ରଦର୍ଶନ । ଯାହା ନିଶ୍ଚିତରେ ଗାନ୍ଧିଧର୍ମୀ ହୋଇଥିବ । ପ୍ରୋବେସନାରୀ ଡେପୁଟି ମାଜିଷ୍ଟ୍ରେଟ୍ ହିସାବରେ ମୋତେ ମଧ୍ୟ ଗୋଟିଏ କାମ ଦିଆ ହୋଇଥିଲା । ମୋତେ କୁହାଗଲା ଯେ ତମେ ପୁରୀ ପାଖରେ ଥିବା ଅମୁକ ଗାଆଁକୁ ଯିବ ଏବଂ ସେଠି ''ଗାଆଁ ପରିମଳ''ର ପ୍ରଚାର କରିବ । ଝାଡୁ ଧରିବାକୁ ମଧ୍ୟ ପଛେଇବ ନାହିଁ, ଦରକାର ପଡ଼ିଲେ । 'ୟେସ୍ ସାର !' ମୁଁ କହିଲି, ମନରେ ଟିକେ ହେଲେ ଦ୍ୱିଧା ନ ରଖି ।

ମୋତେ ଯାହା କରିବାକୁ କୁହା ଯାଇଥିଲା ମୁଁ ଠିକ୍ ସେଇଆ କଲି । ଏବଂ ମୁଁ ଅଭିଭୂତ ହେଲି, କହିବାକୁ ଗଲେ ମୋତେ ଲାଜ ମାଡ଼ିଲା, ଯେଉଁ ଭାବରେ ସେମାନେ ମୋତେ ବଧେଇ ଦେଲେ, କୃତଜ୍ଞତାର ସହ । ଯେ ଏତେଦିନକେ ଜଣେ ହାକିମ, ପୁଣି ଜଣେ ଟୋକା ହାକିମ ଆସିଛନ୍ତି ତାଙ୍କ ଉପକାର କରିବା ଲାଗି । ସେମାନେ ମୋତେ ଝାଡୁ ଧରିବାକୁ ଦେଲେ ନାହିଁ । ହେଲେ ମୋତେ କହି ଚାଲିଲେ ତାଙ୍କ ଦୁଃଖଦୁର୍ଦ୍ଦଶାର କାହାଣୀ । ପିଇବା ପାଣିର ଅଭାବ, ପାଖରେ ଭଲ ଡାକ୍ତରଖାନାଟିଏ ନାହିଁ, ସ୍କୁଲରେ ମାଷ୍ଟର ନାହାନ୍ତି ଇତ୍ୟାଦି ଇତ୍ୟାଦି । ମୁଁ ପ୍ରତ୍ୟେକ ଅଭାବ ଅସୁବିଧାକୁ ଟିପି ନେଲି । ଏବଂ ତାଙ୍କୁ ଆଶ୍ୱାସନା ଦେଲି ଯେ ମୁଁ ବୁଝିବି ତାଙ୍କ କଥା, ଅବଶ୍ୟ ବୁଝିବି ଏବଂ ତାଙ୍କୁ ଆସି କହିବି କଣ କରାଗଲା ସେ ବିଷୟରେ । ପ୍ରୋବେସନାରୀ ଡେପୁଟି ମାଜିଷ୍ଟ୍ରେଟ୍‌ର ମୁଖନିଃସୃତ ଅଭୟବାଣୀର ଛତ୍ରେ ଛତ୍ରେ ରହିଥିଲା ଏକ ସୁସ୍ପଷ୍ଟ ଅଂଗୀକାର - ଇଏ ନୂଆ ସରକାର, ଆମ ନିଜ ସରକାର । ଅତଏବ ଦେଖିବ ଆମେ କଣ କରିବୁ । ଥୁରୁଥୁରିଆ ବୁଢ଼ାଟିଏ ମଧ୍ୟ ଆସିଥିଲା ଅନ୍ୟମାନଙ୍କ ସାଙ୍ଗରେ, ମୋତେ ବଳେଇ ଦେବା ପାଇଁ, ମୁଁ ମୋ ସାଇକେଲ୍‌ରେ ଚଢ଼ି ଫେରିଆସିଲା ବେଳକୁ । କହିଲା, ପୁଣି ଆସିବ ବାବୁ । ବେଶି ଡ଼େରି କରିବ ନାହିଁ । ଯେମିତିକି ମୋର ପୁଣି ଦେଖା ହୋଇପାରିବ ତମ ସାଙ୍ଗରେ । ମୁଁ ବାରମ୍ବାର ମୁଣ୍ଡ ଟୁଙ୍ଗାରିଲି । ଆଉ କଣ କରିପାରି ଥାଆନ୍ତି ?

ଫେରିଆସି ମୁଁ ମୋର ରିପୋର୍ଟ ସାଙ୍ଗକୁ , ଆଉ ଖଣ୍ଡେ କାଗଜ ବି' ବଢ଼େଇ ଦେଇଥିଲି ମୋ ଉପର ହାକିମଙ୍କ ହାତକୁ । କହିଲି - ଏଥିରେ ଆଉ କେତେଟା କଥା ଅଛି ସାର୍ । ସେ ଟିକିଏ ଭୂରୁ କୁଂଚେଇ ତାକୁଇ ପ୍ରଥମେ ପଢ଼ି ବସିଲେ । ପଢୁ ପଢୁ ତାଙ୍କ ମୁହଁ ଗମ୍ଭୀର ହୋଇଗଲା ଓ ତାଙ୍କ ପାଟିରୁ ବାହାରିଲା -

''ତମକୁ ଏଇଆ କରିବାକୁ କୁହା ହୋଇଥିଲା ? ତାଙ୍କ ଗୁହାରି ଶୁଣିବା ପାଇଁ ?''

ମୁଁ ନିରୁତ୍ତର ହୋଇ ରହିଲି ।

ସେଇଠୁ ସେ ହଠାତ୍ ଚମକି ଉଠିଲା ପରି କହିଲେ,

''ବାବୁ, ତମେ ତାଙ୍କୁ କିଛି ପ୍ରମିଜ୍ କରି ଆସି ନାହଁ ତ ?''

''ନୋ ସାର୍, ପ୍ରମିଜ୍ ନୁହେଁ, କିନ୍ତୁ ମୁଁ ତାଙ୍କୁ ଆଶ୍ୱାସନା ଦେଇଛି ଯେ ଆମେ କରିବୁ, ଯାହା ସଂଭବ ଆମ ଦ୍ୱାରା ।'' କ୍ଷମା କରିବେ, ମୋର ସାହସ ହେଲା ନାହିଁ କହିବା

ଲାଗି ଯେ ମୁଁ ତାଙ୍କୁ କହିଛି ଫେରି ଆସି ଜଣାଇବି, ଆମେ ଯାହା କରିଛୁ ତାଙ୍କ ଦୁଃଖ ଘୁଂଚେଇବା ଲାଗି ।

ସେଇଠୁ ସେ ନରମିଗଲେ ଏବଂ ମୋତେ କହିଲେ, ପିତୃସୁଲଭ ପରାମର୍ଶ ଦେଲାପରି,

''ଶୁଣ ୟଂଗ୍‌ମ୍ୟାନ୍ । ଯେତିକି କରିବା ଦରକାର, ତମକୁ ଦିଆ ହୋଇଥିବା କାମ ଅନୁଯାୟୀ, କେବଳ ସେତିକି କରିବାକୁ ଶିଖ । ଏବଂ ତାକୁ ଭଲ କରି କର । ଅଯଥାରେ ଗହୀରକୁ ଯାଇ ବିପଦକୁ ଡାକି ଆଣ ନାହିଁ - ବୁଝିଲ ?''

ବୁଝିଲି । ସେଇଥିଲା ମୋ ନୌକରସାହୀ ଜୀବନର ପହିଲି ପାଠ । ତେବେ କହି ହେଉନାହିଁ ମୁଁ ସେଇ ପାଠ ଅନୁଯାୟୀ ନିଜକୁ ଚଳେଇ ପାରିଥାଆନ୍ତି କି ନାହିଁ, ଯଦି ମୋର କର୍ମକ୍ଷେତ୍ର ଭିନ୍ନ ହୋଇ ନ ଥାଆନ୍ତା କିଛି ଦିନ ପରେ, ଯେଉଁଠି ପ୍ରତ୍ୟକ୍ଷ ଲୋକସଂପର୍କର ଅବକାଶ ରହିଲା ନାହିଁ, ତେଣୁ ଉପସ୍ଥିତ 'ଦରକାରୀ' କାମର ବାହାରେ କେଉଁ ସାମୂହିକ କର୍ତ୍ତବ୍ୟର ତାଡ଼ନା ।

କେବଳ ଗୋଟିଏ ଗ୍ଲାନିବୋଧ ରହିଯାଇଛି ମୋ ମନରେ, ଯେ ସେ ବୁଢ଼ା ସାଙ୍ଗରେ ଆଉ ଦେଖା ହୋଇ ପାରିଲା ନାହିଁ ।

ଏହି ଭାବରେ ମୁଁ ମୋ କର୍ମଜୀବନର ପ୍ରଥମ ଏବଂ ଏକ ବିଶେଷ ମହତ୍ୱପୂର୍ଣ୍ଣ ବର୍ଷକୁ ପାରି ହୋଇ ଯାଇଥିଲି । ମୋଟାମୋଟି ସୁରୁଖୁରୁରେ ଏବଂ ଅନେକ ଆଶା ଓ ବିଶ୍ୱାସକୁ ତଥାପି ମୁଠେଇ ଧରି ।

ସେଇଠୁ ୧୯୪୮ । ସେଇବର୍ଷ ଏପ୍ରିଲ୍ ୧୮ ତାରିଖ ରାମ ନବମୀ ଦିନ ଆମ ଇପ୍ସିତା ଚାନ୍ଦମୁହାଁର ଜନ୍ମ (ହଁ, ପ୍ରଥମ ପିଲାଟି ଝିଅ ହେଉ ବୋଲି ମଧ ଆମେ ଚାହିଁଥିଲୁ) । ଧନ୍ୟ କହିବ ଅଦୃଷ୍ଟର ଲୀଳାଖେଳା ! କିନ୍ତୁ ରୁହନ୍ତୁ, ତା ମାଆ ତାକୁ କେଉଁ ନାଆଁରେ ଡାକିଲା ଜାଣନ୍ତି ? ଡାକିଲା 'ହୀନୁ' ! କହିଲା, ହୀନିକପାଳୀଟା ମହାତ୍ମାଗାନ୍ଧୀଙ୍କୁ ଦେଖି ପାରିଲା ନାହିଁ । କାରଣ ତା'ର ପୃଥିବୀକୁ ଆସିବାର ଅଢ଼େଇ ମାସ ଆଗରୁ ସେ ଚାଲିଯାଇଛନ୍ତି । ନାଥୁରାମ ଗଡ୍‌ସେ ବୋଲି ଗୋଟାଏ ବଦ୍ଧ ପାଗଳ ତାଙ୍କୁ ଗୁଳି କରି ମାରି ଦେଇସାରିଲାଣି । ମାଆର ଇଚ୍ଛାକୁ କିଏ ବାରଣ କରିବ, ତା ଯେତେ ବିଚିତ୍ର ହେଉ ପଛେ ? କିନ୍ତୁ ଅନ୍ୟମାନେ ଆଗେଇ ଆସିଲେ ତାଙ୍କ ମନଲାଖି ବିଭିନ୍ନ ନାଆଁ ଦେବା ପାଇଁ । ବାପା କହିଲେ ତା ଭଲ ନାଆଁ ହେବ ବିଦ୍ୟୁତ୍‌କୁମାରୀ ଓ ମୁଁ ତାକୁ 'ହେନା' ବୋଲି ଡାକିବି । ତା ବାହାଘର ନିମନ୍ତ୍ରଣ ପତ୍ର ମଧ୍ୟ ଛପା ହୋଇଥିଲା 'ହେନା' ନାଆଁରେ, ତା ଜେଜେଙ୍କ ଇଚ୍ଛା ଅନୁଯାୟୀ । କିନ୍ତୁ ତା ଅଜା ତାକୁ 'ସ୍ୱାଧିନା' ବୋଲି ଡାକିଲେ, ଯେହେତୁ ସେ ପରିବାରର ପ୍ରଥମ ସନ୍ତାନ, ଯେ ସ୍ୱାଧିନତା ପରେ ଜନ୍ମ ହୋଇଛି । ଏବଂ ଆଈ ତାଙ୍କ କୁନୁମୁନିଆ ସୁଂଦରୀ ନାତୁଣୀକୁ 'କୁନୁ'

ବୋଲି ଡାକିଲେ, ନାଆଁଟା ଯେତେ ପୁରୁଣା ପୋଚରା ହେଉ ପଛେ । ଆଉ ତା ବାପା ? ସେ ଏଇ ନାଆଁ ଦିଆନିଆ ଭିତ୍‌ରେ ପଶିଲା ନାହିଁ । କିନ୍ତୁ ସେ ଅସ୍ୱୀକାର କରିପାରିବ ନାହିଁ ଯେ ଅନେକ ଦିନ ଯାଏଁ ସେ ତା ଶିଶୁ ସନ୍ତାନର ଫଟୋକୁ ତା ପର୍ସରେ ପୂରେଇ ବୁଲୁଥିଲା । ହେଲେ ମୋର ବିଶ୍ୱାସ ପ୍ରତ୍ୟେକ ପହିଲି ପିଲାର ବାପ ମୋର ଏଇ ଅତିଶୟତାକୁ ବୁଝିବ, ତୁଛା ହସକଥାଟାଏ ବୋଲି ଭାବିବ ନାହିଁ ।

ଯାହାହେଉ ଏଭଳି ଗୋଟିଏ ଦେବଦୁର୍ଲଭ ପ୍ରାଣୀ ମୋ ସାହିତ୍ୟ ଭିତରକୁ ଆସିବ ନାହିଁ କେମିତି ? ବଡ଼ ହେଲା ପରେ ସେ କେତେ ଦୁଃଖକଷ୍ଟ ଭୋଗିଛି, କେତେ ଉଠାପକା ଭିତର ଦେଇ ଯାଇଛି, ହେଲେ ମୁଁ ସେଥିରେ ହାତ ଦେଇପାରି ନାହିଁ, କାଳେ ତା ଅନୁଭବର ଅବମାନନା ହେବ । କିନ୍ତୁ ଶିଶୁ ହୀନୁ, ବାଳିକା ହୀନୁ, କୁମାରୀ ହୀନୁ ସେଇ ତାର ରୂପଗୁଣକୁ ଥାପିଲା ଆଣି ମୋ ଲେଖା ଉପରେ, ଆଉ ମୁଁ ତାକୁ ଫେରାଇ ଦେଇ ପାରିନଥାଆନ୍ତି । ତେଣୁ କଥାବସ୍ତୁ ସାଙ୍ଗରେ ତାର କୌଣସି ସଂପର୍କ ଥାଉ ବା ନ ଥାଉ, ସେଇ ହେଲା ମୋର କେତୋଟି ଅତିପ୍ରିୟ ଗଳ୍ପର ବାଳିକା ନାୟିକା । ସାତଆଠ ବର୍ଷ ବୟସରୁ ଚଉଦ ପନ୍ଦର ବର୍ଷ ହେବା ଯାଏଁ । ଏବଂ ସେଇ ଗୋଟିଏ ନାଆଁ ଥିଲା ତାର, ତିନୋଟି ଯାକ ଗଳ୍ପରେ, ''ଗୀତା'' । ମୁଁ ତାକୁଇ ମନେ ପକେଇଛି ତାରି ରୂପଗୁଣ, ଚାଲିଚଳଣ ଓ କଥାକୁହାର ଢ଼ଂଗ, ଯେତେବେଳେ ସେ କୋଉ ପ୍ରଜାପତି ପଛରେ ଗୋଡ଼େଇଛି ଆଉ ତାକୁ 'ଦୁଷ୍ଟ' ବୋଲି କହୁଛି (ଭଂଗା ଖେଳଣା), ଭୋଳ ହୋଇ ଯାଇଛି ତାର ନୂଆ ଆମେରିକାନ୍ ସାଙ୍ଗମାନଙ୍କୁ ନେଇ, ତାଙ୍କର ହାବଭାବକୁ ବେଳେବେଳେ ବୁଝି ନ ପାରି ବ୍ୟସ୍ତ ହେଲେ ମଧ୍ୟ (କାନ୍ଦୁରୀ) ଏବଂ ହୁଣ୍ଡୀ ଯେତେବେଳେ ସାଧବ ବୋହୂ ପୋକମାନଙ୍କୁ ଗୋଟେଇ ଆଣି ତା ଡିବାରେ ପୂରାଉଛି, ହେଲେ ଶେଷକୁ ତା ପିଲାଳିଆ ରାଗ ଦେଖାଇ ତାଙ୍କୁ ତଳକୁ ଛାଡ଼ି ଦେଉଛି ଗୋଟି ଗୋଟି କରି (ନାଲି ଗୁଲୁଗୁଲୁ ସାଧବ ବୋହୂ) । ସେଇ ଗୀତା, ଯେ ହୀନୁକୁ ନକଲ କରୁଛି । ପରେ ମୋ ଜୀବନରେ ଆସିଥିବା ସନ୍ତାନମାନେ ମଧ୍ୟ ଆସିଛନ୍ତି ମୋ ସାହିତ୍ୟକୁ । ବିଭିନ୍ନ ଚରିତ୍ରକୁ ଗଢ଼ିବା ଦିଗରେ ମୋତେ ସାହାଯ୍ୟ କଲା ପରି । କିନ୍ତୁ ଏମିତି ଗୋଟିପଣେ ନୁହେଁ । ସେ ଥିଲା ମୋର ପହିଲି ସନ୍ତାନ, ତେଣୁ ବୋଧହୁଏ ସେ ମୋ ତରୁଣ ମନର ପ୍ରବଣତାକୁ ବାନ୍ଧିରଖିଥିଲା ବେଶି ଦିନ ଯାଏଁ ।

ହଁ, ଗାଂଧୀନିଧନ ଏକ ନିଦାରୁଣ ଅନୁଭବ ଥିଲା ଜାତି ପାଇଁ, ଯାହା ଗଭୀର ଦୁଃଖ ଆଣି ଦେଇଥିଲା ପ୍ରାୟ ପ୍ରତ୍ୟେକ ଭାରତୀୟର ମନରେ । କଂଗ୍ରେସଘର ଝିଅ କୁମ କଥା ଛାଡ଼, ଯେ ସେଇ ଦୁଃଖକୁ ପଛରେ ପକେଇ ପାରିଲା ନାହିଁ, ତା ପ୍ରଥମ ସନ୍ତାନର ନାଆଁ ଦେଲା ବେଳେ । କିନ୍ତୁ ମୋର ମନେ ଅଛି ବାପା ବି କେମିତି ମର୍ମାହତ ହୋଇଥିଲେ ସେଇ ଖବର ପାଇଲାରୁ । ଯଦିଓ ସେ ତାଙ୍କର ତଥାକଥିତ ପାକିସ୍ଥାନତୋଷଣ ମନୋଭାବକୁ ମୋଟେ

ପସନ୍ଦ କରିପାରି ନଥିଲେ । ଯାହାହେଉ ସ୍ୱାଧିନ ଭାରତର ତଥାପି ଯଥେଷ୍ଟ କାରଣ ଥିଲା, ସେତେବେଳେ ଆଶାବାଦୀ ହେବା ଲାଗି । ମୁଖ୍ୟତଃ ଜ୍ୟୋତିର୍ମୟ ବିଶ୍ୱନେତା ପଣ୍ଡିତ ନେହେରୁ ଆମର ପ୍ରଧାନମନ୍ତ୍ରୀ ହୋଇଥିବା ଯୋଗୁ ।

୧୯୪୮ ଶେଷ ହେଲା ପୂର୍ବରୁ ମୋ କର୍ମ ଜୀବନରେ ଏକ ନୂଆ ସଂଭାବନା ଦେଖା ଦେଲା । ଶ୍ୱଶୁର ବି. ଦାସ ମୋ ସାଙ୍ଗରେ ଲଗେଇଲେ ସେ ବର୍ଷର ଅଲ୍‌ଇଣ୍ଡିଆ ସର୍ଭିସ୍ ପରୀକ୍ଷା ଦେବା ଲାଗି । ଏଇ ପରୀକ୍ଷା ସ୍ଥଗିତ ଥିଲା ମଝିରେ । ତେଣୁ ମୋତେ ଏଇ ସୁଯୋଗ ମିଳି ନ ଥିଲା ଆଗରୁ । କିନ୍ତୁ ବୟସ ସୀମା ହେତୁ ଏଇ ମଧ୍ୟ ମୋର ଶେଷ ସୁଯୋଗ । କିନ୍ତୁ ... କିନ୍ତୁ ... ରୀତିମତ ପଢ଼ାପଢ଼ି ଦରକାର ସେଥିପାଇଁ । ସେଇ ସୁଯୋଗ କେମିତି ମିଳିବ ମୋତେ ? ତଥାପି ମୁଁ ଏଇ ଚ୍ୟାଲେଂଜ୍ ଗ୍ରହଣ ନ କରି ରହିପାରିଲି ନାହିଁ । ଚାଳିଶ ଦିନ ଛୁଟି ନେଇ ପୁଣି ପାଠ ପଢ଼ିଲି । ଏବଂ ଦେଇଦେଲି ପରୀକ୍ଷାଟା । ହେଲେ ହେବ ନ ହେଲେ ନାହିଁ, ଏହି ଭାବରେ ।

ସେତେବେଳେ ଯେଉଁ କାମ କରିବାକୁ ପଡୁଥିଲା ମୋତେ, ସେଥିର ଖଟଣିକୁ ସାମାନ୍ୟ ବୋଲି କୁହାଯାଇ ନପାରେ । ହୀନୁ ଜନ୍ମବେଳେ ଆମେ ବାପାଙ୍କ ପାଖରେ ଥିଲୁ, ବର୍‌ହମ୍‌ପୁରରେ, ତାଙ୍କ ଜଜ୍ କୋଠିରେ । ଆଉ ମୁଁ ସବୁଦିନେ ବସ୍‌ରେ ଛତ୍ରପୁରକୁ ଯାଉଥିଲି, ସେଠିକା କଲେକ୍ଟରେଟ୍‌ରେ କାମ ଶିଖିବା ପାଇଁ । ତାପରେ ପରେ ମୋତେ ଗଂଜାମର ସେଟଲ୍‌ମେଣ୍ଟ କାମରେ ପଶିବାକୁ ପଡ଼ିଲା, ଏର୍‌ଡଂଗାରେ ମିଳିଥିବା ଟ୍ରେନିଂଗ୍‌ର ସଦୁପଯୋଗ କଲା ପରି । ଏବଂ ମୋତେ ଦିନକୁ ଅନ୍ତତଃ ଯୋଡ଼ାଏ ଗାଆଁ ଯିବାକୁ ପଡୁଥାଏ, ସାଇକେଲ୍‌ରେ ଅମିନଙ୍କ ସର୍ଭେ କାମର ଯାଂଚ୍‌ପର୍‌ତାଲ୍ କରିବା ଲାଗି । ଅର୍ଥାତ୍ ନିଜେ ମାପିଚୁପି ତାର ଭୁଲ୍‌ଠିକ୍ ଦେଖି ଆସିବା ଲାଗି ।

୧୯୪୯ରେ ବାପା ବ୍ରହ୍ମପୁରରୁ ଫେରି ଆସିଲେଣି କଟକକୁ । ଏବଂ ମୁଁ ଗଲିଣି ଆସ୍କାକୁ । ବ୍ରହ୍ମପୁରରେ ଅଳ୍ପ କେତୋଟି ମାସ ନିଜ ଘରକରଣାର ମିଠାଖଟା ଅନୁଭବ ପରେ ଆସ୍କାର ଘରକରଣା । ସେଠି ମଧ୍ୟ ମୁଁ ସେଟ୍‌ଲ୍‌ମେଣ୍ଟ କାମରେ ରହିଥିଲି । କିନ୍ତୁ ଏଇକ୍ଷଣି ସର୍ଭେ କାମ ନୁହେଁ, କାହାର କେଉଁ ଜମି ବୋଲି ସ୍ଥିର କରିବା ଦିଗରେ ଗଦାଗଦା କେସ୍ ବିଚାର କରିବା କାମ ।

ଆସ୍କା ରହଣିର ପ୍ରଥମ ଉଲ୍ଲେଖଯୋଗ୍ୟ ଘଟଣା ହେଉଛି ସାହିତ୍ୟରଥି ଗୋପୀନାଥ ମହାନ୍ତିଙ୍କ ସହିତ ମୋର ପରିଚୟ, ବନ୍ଧୁତା ଏବଂ କ୍ରମବର୍ଦ୍ଧମାନ ଘନିଷ୍ଠତା । ସେ ବି ସେତେବେଳେ ଅନ୍ୟତମ ଡେପୁଟି ମାଜିଷ୍ଟ୍ରେଟ୍ ଭାବରେ ନିଯୁକ୍ତ ହୋଇଥିଲେ ଏବଂ 'ଦାନାପାଣି' ଉପନ୍ୟାସର କଥାବସ୍ତୁ ତାଙ୍କ ମନରେ ଗଜୁରି ଉଠୁଥାଏ, ଆପଣା ଚାକିରୀ ଜୀବନର ଅସନ୍ତୋଷକୁ ନେଇ । ଯାହା ସେ ଜଣାଇଥିଲେ ମୋତେ, ନିଃସଙ୍କୋଚରେ । ଘରୁ ବାହାରି

ଖୋଜେ ବାଟ ଗଲେ ତାଙ୍କ ସାଙ୍ଗରେ ଦେଖା ହୋଇପାରିବ । ସେଇଠୁ ଶୁଣିବାକୁ ମିଳିବ ତାଙ୍କର ସ୍ୱାଗତଧର୍ମୀ ଜୁଆରିଆ ହସ । ତାପରେ ଚାହାପାନ ଓ ସାହିତ୍ୟବିହାର । କିନ୍ତୁ ଏହି ସାହିତ୍ୟବିହାରର ବିଚାରଧାରା ମୋଟେ ହାଲୁକା ଉପରଠାଉରିଆ ନୁହେଁ । ସେ ଭାବିଚିନ୍ତି ନିଶ୍ଚିତରେ କୁହନ୍ତି ଯାହା ସେ କହିବାକୁ ଚାହାନ୍ତି, ହେଲେ ମନେ ହେବ ସେ ରସିକତା କରୁଛନ୍ତି । ଘନିଷ୍ଠତା ବଢ଼ିଲାରୁ ଆମର ବେଶ୍ ଯୁକ୍ତିତର୍କ ହୁଏ ବେଳେବେଳେ ବିଭିନ୍ନ ସାହିତ୍ୟର ଭଲମନ୍ଦକୁ ନେଇ, ନିଜ ସାହିତ୍ୟ ସମେତ । ହେଲେ ସାହିତ୍ୟବିହାରର ଉପଭୋଗ କେବେହେଲେ ବ୍ୟାହତ ହୁଏ ନାହିଁ । ଏହି ସଂକ୍ରାନ୍ତରେ ଉଲ୍ଲେଖଯୋଗ୍ୟ ସେ ଯେଉଁ ନିଷ୍ଠା ଏବଂ ଆନ୍ତରିକତାର ସହ ମୋ ସ୍ତ୍ରୀଙ୍କର ନୂଆ ଲେଖାର ସମୀକ୍ଷା କରିଥିଲେ । ଆଉ କେଉଁ ପ୍ରତିଷ୍ଠିତ ଲେଖକ ବୋଧହୁଏ ଦି'ପଦ ସାହିତ୍ୟମୂଳକ ଶୁଭେଚ୍ଛା ଶୁଣାଇଥାଆନ୍ତା । କିନ୍ତୁ ଗୋପୀବାବୁ "ଭଲ ଭଲ" ଜାତୀୟ ଏଣୁତେଣୁ କହିଲେ ନାହିଁ । ଜଣେ ସମୀକ୍ଷକ ହିସାବରେ ତାର ବିଶ୍ଳେଷଣ କରି ଲେଖିଗଲେ ଦି'ତିନି ପୃଷ୍ଠାର ଲେଖା, ତା' ଗପଗୁଡ଼ିକର ଭଲମନ୍ଦ, ନୂଆ ଲେଖକକୁ ପ୍ରୋତ୍ସାହିତ କରିବା ସହ । ଯେପରିକି ସେ ଭବିଷ୍ୟତରେ ଜଣେ ବଡ଼ ଲେଖିକା ହୋଇପାରିବ । ଲେଖକ ତଥା ମଣିଷ ଗୋପୀବାବୁଙ୍କ ପ୍ରତି ମୋର ଅସାମାନ୍ୟ ଶ୍ରଦ୍ଧା ଥିଲା । ଜଣେ ଲେଖକ ହିସାବରେ ମୁଁ ତାଙ୍କ ଠାରୁ ଯାହା ପାଇଛି, ତାରି କିଂଚିତ୍ ସୂଚନା ଦେବାକୁ ଚେଷ୍ଟା କରିଛି ମୋ 'ମଣିହରା' ଗଳ୍ପ ସଂକଳନରେ ଉତ୍ସର୍ଗପତ୍ରରେ । ଯେ ମୁଁ ଆପଣଙ୍କଠାରୁ ଶିଖିଛି ଯେ କାଦୁଅର ରଂଗ ଅଛି, ଘାସର ବାସ୍ନା ଅଛି, ପବନ ବେଦପାଠ କରେ ଏବଂ ଶୁକ୍ରଜାନି ଦାର୍ଶନିକ । କିନ୍ତୁ ତାଙ୍କ ସ୍ନେହୀ ବଡ଼ଭାଇପଣର ନଜିର୍ ଦେଇପାରିଛି କେଉଁଠି ?

ଗୋପୀବାବୁଙ୍କ ପାଖ ଛାଡ଼ିଲା ପୂର୍ବରୁ କହିଦିଏ ଆଉ ଗୋଟିଏ ଜ୍ଞାତବ୍ୟ ମଜାକଥା ତାଙ୍କ ସାହିତ୍ୟ ଏବଂ ଆମ ଆସ୍କାରହଣିକୁ ନେଇ । ତାଙ୍କର ଛୋଟିଆ ହାଲୁକା ଉପନ୍ୟାସ 'ଶରତବାବୁଙ୍କ ଗଳି' ଆମ ଆସ୍କାଜୀବନର ସହାବସ୍ଥାନ ଉପରେ ଆଧାରିତ । ମୁଖ୍ୟ ଚରିତ୍ର ଶରତବାବୁ ଥିଲେ ସେଠିକାର ମୁନ୍‌ସିଫ୍, ଯାହାଙ୍କ ଘରେ ଟେକା ପଡ଼ିଲା ଏବଂ ହାକିମି ବୁଦ୍ଧିବିଚାର କାହିଁ କେତେ ଉର୍ଦ୍ଧ୍ୱକୁ ଉଠିଲା । ଏବଂ ତାଙ୍କ ଭିତରେ ଥିବା କିଶୋରବାବୁ, ଯେ ବୀରବିକ୍ରମରେ କାମ କରନ୍ତି, ଦି'ମିନିଟ୍‌ରେ କେଉଁ କେସ୍‌ଟାକୁ ସାରିଦେଇ ଲମ୍ବା ଦସ୍ତଖତଟିଏ ଛାଡ଼ି ଦିଅନ୍ତି, ତାର ମଡ଼େଲ୍ ଆଉ କିଏ ଥିଲା, ବନ୍ଦୋବସ୍ତ ହାକିମ କିଶୋରୀବାବୁଙ୍କ ଛଡ଼ା ? ପୁଣି ଉପନ୍ୟାସର ଶେଷକୁ ଯେଉଁ ଲୋଭୀ ଶିଶୁ ପୁଳିଏ ମୂଲ୍ୟବାନ୍ କାଗଜପତ୍ର ହାତରେ ଧରୁଛି ତାକୁ ପାଟିରେ ପୂରେଇବା ପାଇଁ, ସେ ମୋ ଦେଢ଼ବର୍ଷର କୁନି ଝିଅ ହୀନୁ ପରା !

ସେଇ ବର୍ଷ ମୋର ଦ୍ୱିତୀୟ ସନ୍ତାନର ଆବିର୍ଭାବ । ପୁଅଟିଏ । କଟକରେ ତାର ଜନ୍ମ, ଜୁଲାଇ ୨୩ ତାରିଖରେ, ତା ଅଜାଙ୍କ ଘରେ । ମାଆର ଇଚ୍ଛା ଅନୁଯାୟୀ ତାର ନାଆଁ

ଦିଆଗଲା ବିନୟ କୁମାର, ଡାକ ନାଆଁ ବିନୁ । ଗୋରା ସୁନ୍ଦରିଆ ପିଲାଟିଏ । ଠିଆ ନାକ, ସରୁ ଓଠ ଇତ୍ୟାଦି । କୁମ ଥଟ୍ଟା କରି କୁହେ ଯେ ସେ ତମ ବଂଶର ନୁହେଁ, ଆମ ଘର ଚେହେରା ପାଇଛି । ହେଲେ ଦୁଃଖର ବିଷୟ ଯେ ପିଲାଟା ନିହାତି ଦୁର୍ବଳିଆ ହୋଇଥିଲା, ଏବଂ ନାନାଦି ରୋଗରେ ପଡ଼ି କଷ୍ଟ ପାଉଥିଲା ଜନ୍ମ ହେଲା ବେଳୁ ।

ଏଣେ ଗୋଟାଏ ନୂଆ କର୍ମଜୀବନର ଭବିଷ୍ୟତ ଇଶାରା କରୁଥିଲା ମୋତେ । ମୋତେ ଜଣାଇ ଦିଆହେଲାଣି ଯେ ଗତ ଅଲ୍‌ଇଣ୍ଡିଆ ସିଭିଲ୍ ସର୍ଭିସ୍ ପରୀକ୍ଷାରେ ମୁଁ କୃତକାର୍ଯ୍ୟ ହୋଇଛି ଏବଂ ମୋତେ ଅମୁକ ଦିନ ଦିଲ୍ଲୀରେ ଥିବା ୟୁନିଅନ୍ ପବ୍‌ଲିକ୍ ସର୍ଭିସ୍ କମିଶନ୍‌ଙ୍କ ଆଗରେ ମୌଖିକ ପରୀକ୍ଷା ଦେବାକୁ ପଡ଼ିବ । ଗ୍ରୀଷ୍ମ ଶେଷର ଦିଲ୍ଲୀ । ଯେତିକି ତାତି, ସେତିକି ଝାଳ ବହୁଛି ଦେହରୁ । ମୁଁ ରହିଲି ମୋର ଶ୍ୱଶୁର ବି. ଦାସ ଏମ୍.ପି.ଙ୍କର ଫିରୋଜଶାହା ରୋଡ଼ରେ ଥିବା ବଂଗଳାରେ ଯଦିଓ ସେ ସେତେବେଳେ ନ ଥାଆନ୍ତି ସେଠି । ସେଇଥିଲା ମୋର ପ୍ରଥମ ଦେଖା ମହାନଗରୀ ଏବଂ ଦେଶର ରାଜଧାନୀ ଦିଲ୍ଲୀ ସାଙ୍ଗରେ । ତାର ପ୍ରଶସ୍ତ ପରିମଳ ପରିବେଶ, ରାଜପଥ, ଜନପଥ, ପାର୍ଲିଆମେଣ୍ଟ୍ ହାଉସ୍, କନଟ୍‌ପ୍ଲେସ୍ ଇତ୍ୟାଦିର ଐଶ୍ୱର୍ଯ୍ୟ ମୋତେ ଅବଶ୍ୟ ଚମତ୍‌କୃତ କଲା । ହେଲେ ତାର ସେଇ ଅମଳିନ ବିସ୍ତାର ମଧ୍ୟ ମୋତେ ନିହାତି ନିଛାଟିଆ ଲାଗିଲା, କଟକ ସହର ସମେତ ଓଡ଼ିଶାର ବିଭିନ୍ନ ସହରର ଅନ୍ତରଂଗତା ପରେ । କିନ୍ତୁ କିଏ ଜାଣିଥିଲା ସେଇ ହେବ ମୋ କର୍ମଭୂମିର ବିରାଟ ଚେନାଏ, ମୋର ଏକାଧିକ ଗଳ୍ପ ତଥା ଗୋଟିଏ ଉପନ୍ୟାସର ପୃଷ୍ଠଭୂମି ଏବଂ ସେହି ମଧ ହେବ ଯଥାକ୍ରମେ ମୋର ଦ୍ୱିତୀୟ ଘର, ମୋ ପିଲାମାନଙ୍କ ବସତିକୁ ନେଇ ?

ମୌଖିକ ପରୀକ୍ଷାରେ ମୁଁ ଭଲ କରିଛି ବୋଲି ମୋତେ ଜଣାଇଲେ ଶ୍ୱଶୁର ମହାଶୟ, ବିଶ୍ୱସ୍ତ ସୂତ୍ରରୁ ଅବଗତ ହୋଇ । ଏବଂ ମୋ ପାଖକୁ ଚିଠି ଆସିଲା କେତେ ମାସ ପରେ ଯେ ମୋତେ ଇଣ୍ଡିଆନ୍ ଅଡ଼ିଟ୍ ଏଣ୍ଡ୍ ଆକାଉଣ୍ଟସ୍ ସର୍ଭିସ୍ ପାଇଁ ବଛା ହୋଇଛି । ମୁଁ ରାଜି ଥିଲେ ମୋତେ ଯଥାଶୀଘ୍ର ମାଡ୍ରାସ୍ ଯାଇ ନିର୍ଦ୍ଦିଷ୍ଟ ଟ୍ରେନିଂଗ୍ ସ୍କୁଲ୍‌ରେ ଯୋଗ ଦେବାକୁ ପଡ଼ିବ । ଜଣେ ପ୍ରୋବେସନ୍‌ର ହିସାବରେ । ଏବଂ ଯଥାକ୍ରମେ ଯୋଡ଼ିଏ ଡିପାର୍ଟମେଣ୍ଟାଲ୍ ପରୀକ୍ଷା ପାସ୍ କରିବାକୁ ହେବ । ତାପରେ ଯାଇ ମୁଁ ଚାକିରୀରେ ସ୍ଥାୟୀ ହୋଇପାରିବି ।

ହଉ, ଯାହା ଭାଗ୍ୟରେ ଅଛି । ଏହି ଭାବରେ ମୁଁ ମାଡ୍ରାସ୍ ଯାଇ ଏଇ ନୂଆ ଚାକିରୀରେ ଯୋଗ ଦେଲି । ମାର୍ଚ୍ଚ ୧୫ ତାରିଖ ୧୯୫୦ । ସେଇଠୁ ଏକ ସଂପୂର୍ଣ୍ଣ ଭିନ୍ନ କର୍ମଜୀବନ ମୋତେ ଟୁଲେଇବାକୁ ହେଲା ସୁଦୀର୍ଘ ୩୨ ବର୍ଷ, ଅଠାବନ ବର୍ଷ ବୟସ ହେଲାରୁ ଅବସର ନେବା ଯାଏଁ । ତାର କେତେ ମାସ ଉତ୍ତାରୁ ଆସାମ ବିଦ୍ୟୁତ୍ ବୋର୍ଡ଼ରେ ପୁନଃନିଯୁକ୍ତି । ଏପ୍ରିଲ୍ ୧୯୮୫ରେ ମୁଁ ଫେରିଆସିଛି ଘରକୁ, ଅର୍ଥାତ୍ କଟକ ଖଟ୍‌ବିନ୍ ସାହିରେ ଥିବା ଏଇ ପୈତୃକ ଘରକୁ, ଯାହାର ନାଆଁ 'ବିପ୍ରଚରଣ ଭବନ' ବୋଲି ଦିଆଯାଇଛି ବାପାଙ୍କ ମୃତ୍ୟୁ ପରେ । ବୃତ୍ତିଗତ କର୍ମଜୀବନର ଶେଷ । ସେଇଠୁ କେବଳ ସାହିତ୍ୟ, ଅନବରତ ସାହିତ୍ୟ ।

ବେଶ୍ । କିନ୍ତୁ 'ହଉ ଯାହା ଭାଗ୍ୟରେ ଅଛି', ଏହି ପ୍ରକାର ଦୀର୍ଘଶ୍ୱାସ କାହିଁକି, ଏଭଳି ଗୋଟିଏ ଅଲ୍ ଇଣ୍ଡିଆ ସର୍ଭିସ୍‌ରେ ଯୋଗ ଦେଲା ବେଳକୁ ? ଏହି ପ୍ରଶ୍ନର ଉତ୍ତରରେ ମୁଁ କେବଳ ଏତିକି କହିବି ଯେ ସେତେବେଳେ ଚାକିରୀର ନାଆଁଟା ମୋତେ ଡରେଇଲା । ଇଣ୍ଡିଆନ୍ ଅଡ଼ିଟ୍ ଏଣ୍ଡ ଆକାଉଣ୍ଟସ୍ ସର୍ଭିସ୍ । ସରଳ ଓଡ଼ିଆରେ ହିସାବ କିତାବ କାମ । ମୁଁ କଣ ଏଇଆ ଚାହିଁଥିଲି ? ମାର୍କ ଅନୁଯାୟୀ ଆଇ.ଏ.ଏସ୍. କି ଆଇ.ଏଫ୍.ଏସ୍. ଚାକିରୀ ମିଳିଲା ନାହିଁ ମୋତେ, ଠିକ ଅଛି, (ସ୍ୱତଂତ୍ର ଅଧିକା ପେପର ନ ଥିଲା ସେତେବେଳେ ଆଇ.ଏ.ଏସ୍.-ଆଇ.ଏଫ୍.ଏସ୍. ପ୍ରାର୍ଥୀଙ୍କ ପାଇଁ) କିନ୍ତୁ ଆଉ କୌଣସି ସର୍ବଭାରତୀୟ ଚାକିରୀ ଯଚା ହୋଇ ପାରିନଥାଆନ୍ତା ମୋତେ ? ମୁଁ ନିଜକୁ ଚେତାଇ ଦେଲି ଯେ ଶ୍ୱଶୁରଙ୍କ ପରାମର୍ଶ ଅନୁଯାୟୀ ମୁଁ ଏଇ ଚାକିରୀଟିକୁ ରଖିଥିଲି ମୋ ପସନ୍ଦର ତୃତୀୟ ସ୍ଥାନରେ । ଗୋଟାଏ ବେପରୁଆ ଢ଼ଂଗ ଦେଖାଇ । ଯେ ଉପରୋକ୍ତ ଚାକିରୀ ଦିଟା ଛଡ଼ା ଆଉ କିଛି ଲୋଭନୀୟ ନୁହେଁ ମୋ ପାଇଁ । ତା'ଛଡ଼ା ମୋତେ କୋଉଠୁ କୋଉ ଚାକିରୀଟାଏ ମିଳିଯାଉଛି ଏଇ ମାସେ ଖଣ୍ଡେ ପଢ଼ି, ଯେ ମୁଁ ଭାବୁଛି ସେ ବିଷୟରେ ? କିନ୍ତୁ ସେହିସାବରେ ମୁଁ ଭଲ ମାର୍କ ରଖିଥିଲି ବୋଲି କହିବାକୁ ହେବ । ଏଇଠି ଉଲ୍ଲେଖଯୋଗ୍ୟ ଯେ, ପରେ ଯାହା ଜଣାପଡ଼ିଲା ମାର୍କ ସିଟ୍‌ରୁ, ମୁଁ ପ୍ରବଂଧ ରଚନା (Essay) ପେପ୍‌ରରେ ସମସ୍ତ ପ୍ରାର୍ଥୀଙ୍କ ମଧ୍ୟରେ ସର୍ବୋଚ୍ଚ ମାର୍କର ଅଧିକାରୀ ହୋଇଥିଲି । ଏଇ ସୌଭାଗ୍ୟ କିଛି କମ୍ ନଥିଲା 'ବର୍ଷାଋତୁ'ର ରଚୟିତା ପାଇଁ ।

କିନ୍ତୁ ଚାକିରୀରେ ପଶିଲା ପରେ ମୁଁ ବୁଝିଲି, ଯଥାକ୍ରମେ, ଯେ ମୋର ଭାଗ୍ୟକୁ ଆଦରିବା ଭାବ ଅମୂଳକ ଥିଲା । ଏଇ ଚାକିରୀ ମୋତେ ଦେଶବିଦେଶର ଦୃଶ୍ୟ ଦେଖାଇ କେତେ ମହାର୍ଘ ଅନୁଭବ ଆଣି ଦେଇଛି ସେକଥା ଛାଡ଼, କେଉଁଥିପାଇଁ ମୁଁ ଏଇ ବୃତ୍ତିକୁ ବିଶେଷ ସମ୍ମାନଷ୍ପଦ ଓ ମୋ ବ୍ୟକ୍ତିତ୍ୱର ଅନୁକୂଳ ବୋଲି ସ୍ୱୀକାର କଲି, ତା ହେଉଛି ଏହି ପ୍ରକାର :

— ପ୍ରକୃତରେ ମୋତେ ନିଜେ କେଉଁ ଅଂକ କଷିବାକୁ ପଡ଼ିବ ନାହିଁ ଏଇ ଚାକିରୀରେ, ମୋ ଛାତ୍ରଜୀବନକୁ ମନେ ପକାଇ । ଅସଲ ହେଉଛି, ହିସାବ କିତାବର ମୌଳିକ ତଥ୍ୟଗୁଡ଼ିକୁ ବୁଝିବା କଥା, ଯେ କାହିଁକି କାହାକୁ 'ଲାଭ' କହିବ, କାହାକୁ 'କ୍ଷତି' କହିବ, କେଉଁଭାବରେ ଏଇ ଲାଭ କ୍ଷତିର ବାସ୍ତବ ସତକୁ ଏପାଖ ସେପାଖ କରିଦିଆଯାଏ ବେଳେବେଳେ, ଜାଣିଶୁଣି କିମ୍ୱା ଅଜାଣତରେ, ଇତ୍ୟାଦି । ସେହେତୁ ମୋର କୌଣସି ଅସୁବିଧା ହୋଇନାହିଁ ଯଥାସମୟରେ ଡିପାର୍ଟମେଣ୍ଟାଲ୍ ପରୀକ୍ଷା ପାସ୍ କରି ଚାକିରୀରେ ମୁକରିର୍ ହେବାରେ । ଆଉ ସେଣିକି ତମେ ତ ଜଣେ ଅଧିକାରୀ, ତେଣୁ ଅଂକକସା ଭୁଲଠିକ୍‌ର ଦାୟିତ୍ୱ ତମର ନୁହେଁ, ତମ ଅଧୀନରେ କାମ କରୁଥିବା କର୍ମଚାରୀମାନଙ୍କର । ତମର ଖାଲି ନିର୍ଦ୍ଦେଶ ଦେବା କଥା ସେଥିର

ତଥ୍ୟଗତ ନିର୍ଣ୍ଣୟକୁ ନେଇ । ତେଣୁ ସିଏ ଗୋଟାଏ ପିଲାଳିଆ ମିଛବାଘ ଥିଲା, ଯାହାକୁ ମୁଁ ଅବିଳମ୍ବେ ଘଉଡ଼େଇ ଦେଇ ପାରିଥିଲି ।

— ଦ୍ୱିତୀୟରେ ଗୋଟାଏ ପ୍ରଶ୍ନ ଆସେ କେତେକଙ୍କ ମନରେ ଯେ ମୋର ଏଇ ବୃତ୍ତି ମୋତେ ଖାପ ଖାଉନାହିଁ ମୋର ଲେଖକୀୟ ମାନସିକତା ସାଙ୍ଗରେ । ମୋର ମନେ ଅଛି, ଆଜିର ଜଣେ ବରିଷ୍ଠ କଂଗ୍ରେସ ନେତା ଓ ସେବେଳର ଇଣ୍ଡିଆନ୍ ଫରେନ୍ ସର୍ଭିସ୍ ଅଫିସର୍, ନଟବର ସିଂହ ମୋତେ ପରିହାସରେ ପଚାରିଥିଲେ ନିଉୟର୍କରେ, ମୁଁ ଯେତେବେଳେ ଯାଇଥିଲି ତାଙ୍କ ଦପ୍ତରକୁ (ୟୁନାଇଟେଡ଼୍ ନେସନ୍‌ରେ ଭାରତର ପରମାନେଣ୍ଟ୍ ରିପ୍ରେଜେଣ୍ଟେଟିଭ୍‌ଙ୍କ ଅଫିସ୍) ଅଡ଼ିଟ୍ କରିବା ପାଇଁ - ଦାସ୍ ସାହେବ, ମୁଁ ଶୁଣିଲି ଆପଣ ଜଣେ ଜଣାଶୁଣା ଲେଖକ । କିନ୍ତୁ ଇଏ ତ ବଡ଼ ଆଚମ୍ବିତ କଥା ! ହିସାବକିତାବ ସାଙ୍ଗରେ ଆପଣ ସାହିତ୍ୟକୁ ମିଳେଇ ପାରୁଛନ୍ତି କେମିତି ? ଏବେ ମଧ୍ୟ ବିଭିନ୍ନ ବୁଦ୍ଧିଜୀବୀମାନଙ୍କ ମୁହଁରୁ ମୋତେ ଏହି ପ୍ରକାର ପ୍ରଶ୍ନବାଚୀ ଶୁଣିବାକୁ ମିଳେ । ମୋତେ ଆଶ୍ଚର୍ଯ୍ୟ ଲାଗେ । କାରଣ କ୍ୱଚିତ୍ କେଉଁ ପ୍ରଶାସକ ଲେଖକ କି ଇଂଜିନିୟର୍ ଲେଖକକୁ ଏଭଳି ପ୍ରଶ୍ନ ପଚରାଯାଏ । କିନ୍ତୁ ଯେହେତୁ ମୁଁ ଅଡ଼ିଟ୍ ଆକାଉଣ୍ଟ୍‌ସର ଲୋକ ତମେ ଭାବୁଛ ମୋର ମାନସିକତା ଏତେ ରୋକ୍‌ଠୋକ୍, ରୁକ୍ଷ, ଅବା ନୀରସ ହୋଇଥିବ ଯେ କବିତା କଳ୍ପଲତା ମୋର ଏକାନ୍ତ ଅପହୁଞ୍ଚ ? ଏବଂ ମୁଁ କେଉଁ କଳାତ୍ମକ ସୃଷ୍ଟି ପାଇଁ ଅକ୍ଷମ ? ମୁଁ ଏହିପ୍ରକାର ଭ୍ରାନ୍ତ ଧାରଣାର ଠିକଣା ଜବାବ୍ ଦେବାକୁ ଚେଷ୍ଟା କରିଛି ମୋର 'ହିସାବନିକାଶ' ନାମକ ପ୍ରବଂଧରେ ('ଲେଖକର ସଂସାର' ସଂକଳନର ଅନ୍ତର୍ଭୁକ୍ତ) ଏବଂ କହିଛି ଯେ ଅପର ପକ୍ଷେ ଏଇ ହିସାବକିତାବର ଅନୁଶାସନ ହିଁ ମୋତେ ଶିଖେଇଛି ବାସ୍ତବ ସତ୍ୟକୁ ମୁଠେଇ ଧରିବା ଲାଗି । ତାରି ପରିଭାଷା ହେଉଛି ସାହିତ୍ୟର 'ଅନୁଭୂତ ସତ୍ୟ' । ଅର୍ଥାତ୍ କଅଣ ଭଲ ଅବା ଭଲ ଲାଗୁଛି ଶୁଣେଇବାକୁ, ତା'ର ପାଲରେ ନ ପଡ଼ି ତୁମ ଅନୁଭୂତ ସତ୍ୟକୁ ବ୍ୟକ୍ତ କର, ଯେତେଦୂର ସଂଭବ । ସେଇଥିରେ ସାହିତ୍ୟକୁ ଲାଭ ତଥା ସମାଜକୁ ହିତ ।

— ଏବଂ ସବୁଠାରୁ ବଡ଼ କଥା ହେଉଛି ମୋର ସ୍ୱାଧୀନତାବୋଧ । ଯେ ମୋର ଯାହା କରିବା କଥା, ସେଥିରୁ ମୋତେ ଓହରିଯିବାକୁ ପଡ଼ିବ ନାହିଁ କେଉଁ କର୍ତ୍ତୃପକ୍ଷ ଅବା ତଥାକଥିତ ଲୋକମତର ଚାପରେ । କେଉଁ ମନ୍ତ୍ରୀ, ବିଧାୟକ ଅଥବା ବଡ଼ ସାହେବଙ୍କ କୁହାଅକୁହା ନିର୍ଦ୍ଦେଶରେ । ହଁ, ଜଣେ ଅଡ଼ିଟ୍ ଅଫିସର୍ ହିସାବରେ ମୁଁ ଷୋଳଅଣା ହାକିମଟିଏ ନୁହେଁ ଯାହାକୁ ଦୁନିଆ ଖାତିର୍ କରିବ ବୋଲି ଆଶା କରାଯାଏ । କିନ୍ତୁ ମନେ ରଖ ଯେ ମୋତେ ବି କାହାରିକୁ ଖାତିର୍ କରିବାକୁ ପଡ଼ିବ ନାହିଁ, ତା'ର କ୍ଷମତା ଦୃଷ୍ଟିରୁ । କେବଳ ନିଜ ବଡ଼ ହାକିମଙ୍କ ଛଡ଼ା, ଯେ ସମଧର୍ମାବଲମ୍ବୀ, ତେଣୁ ମୋ କାମରେ ହସ୍ତକ୍ଷେପ କରିବେ ନାହିଁ । ତାଙ୍କ ବୁଦ୍ଧିବିଚାର ଖଟେଇ ସେ ମୋର ନିର୍ଣ୍ଣୟକୁ ସମର୍ଥନ କରିବେ କି କାଟି ଦେବେ, ସେ କଥା ଭିନ୍ନ ।

ଏହି ପରିପ୍ରେକ୍ଷୀରେ ମୋର ମନେ ପଡ଼େ ଭାରତର ପ୍ରଥମ କଂପ୍ଟ୍ରୋଲର୍ ଏଣ୍ଡ ଅଡ଼ିଟର ଜେନେରାଲ୍ ଭି. ନରହରି ରାଓଙ୍କ କଥା । ସେ ଥିଲେ ମୋର ଶ୍ୱଶୁର ଏବଂ ତଦାନୀନ୍ତନ ପବ୍ଲିକ୍ ଆକାଉଣ୍ଟସ୍ କମିଟିର ଚେୟାରମ୍ୟାନ୍ ବି. ଦାସଙ୍କର ବିଶେଷ ବନ୍ଧୁ । ସେ ମଝିରେ ମଝିରେ ଆସନ୍ତି ବି. ଦାସଙ୍କର ଫିରୋଜଶାହା ରୋଡ଼ରେ ଥିବା ବଂଗଳାକୁ, ମୁଁ ଯେଉଁଠି ରହିଥିଲି ଦିଲ୍ଲୀରେ ପୋଷ୍ଟିଂଗ୍ ହେଲାପରେ । ହୃଷ୍ଟପୁଷ୍ଟ ଢ଼ିମାଆଖିଆ ଭଦ୍ରଲୋକ, ଯେ ଅନେକଟା ପୁରାତନ ଚିତ୍ରତାରକା ଚନ୍ଦ୍ରମୋହନ ପରି ଦେଖା ଯାଆନ୍ତି, ମୋତେ ଥରେ ଡାକିକରି କହିଲେ, 'ବିଲିଭ୍ ମି ୟଂଗ୍‌ମ୍ୟାନ୍ ୟୁ ଉଡ୍ ବି' ପ୍ରାଉଡ୍ ଅଫ୍ ଦିସ୍ ସର୍ଭିସ୍' । କହିଲେ ଯେ ହାଇକୋର୍ଟ ସୁପ୍ରିମ୍‌କୋର୍ଟର ଜଜ୍‌ମାନଙ୍କ ଛଡ଼ା ଆଉ କାହାକୁ ମିଳିବ ନାହିଁ ଏଭଳି ସ୍ୱାଧିନତା, ଏଭଳି ମର୍ଯ୍ୟାଦା, ଆମ ସ୍ୱାଧିନ ଭାରତରେ ।

..ଥ୍ୟାଂକ୍ ୟୁ ସାର୍, ମୁଁ ଗର୍ବିତ ଏଇ ଚାକିରୀରେ ଯୋଗ ଦେଇ । ସ୍ୱାଧିନତାବୋଧର ଏଇ ଗର୍ବକୁ କେବେହେଲେ କୋହଳ କରିବାକୁ ପଡ଼ିନାହିଁ ମୋତେ । ସାର୍, ଆପଣ କଣ ନିଜେ ତାର ଏକ ଜ୍ୱଳନ୍ତ ଉଦାହରଣ ଦେଇଯାଇ ନାହାନ୍ତି ଆମକୁ ? ଯେତେବେଳେ ଆପଣ ମୁକ୍ତ କଣ୍ଠରେ ଘୋଷଣା କଲେ ଯେ କଂପାନୀ ଆଇନର ଉପଯୋଗ କରି ଗୋଟାଏ ସରକାରୀ କଂପାନୀ ଗଢ଼ିବା, ଯେଉଁଥିରେ ଶେୟାର୍ ହୋଲ୍‌ଡ଼ର୍ ମାତ୍ର ଜଣେ, ମାନ୍ୟବର ଭାରତ ସରକାର, ସଂବିଧାନ ପ୍ରତି ଶଠତା (a fraud on the Constitution) ଛଡ଼ା ଆଉ କିଛି ନୁହେଁ ? ଭାରତ ସରକାର ଶୁଣିଲେ ନାହିଁ ଆପଣଙ୍କ କଥା, କିନ୍ତୁ ଆଉ କେଉଁ ସରକାରୀ ଅଧିକାରୀ ଏଭଳି ଏକ ମନ୍ତବ୍ୟ ଶୁଣାଇ ପାରିଥାଆନ୍ତା ସେତେବେଳର ମହାମହିମ ନେହେରୁ ସରକାରଙ୍କ ତଥାକଥିତ ସାମ୍ୟବାଦୀ ନୀତି ବିରୁଦ୍ଧରେ ?

ଯାହାହେଉ ଚାକିରୀରେ ପାଦ ଦେବା ସମୟର ସମସ୍ତ ଉଦ୍‌ବେଗ ସତ୍ତ୍ୱେ ସେଥିର ନୂତନତ୍ୱରେ ଏକପ୍ରକାର ଉଦ୍ଦୀପନା ଥିଲା । ଅଧିକଂନ୍ତୁ ମାନ୍ଦ୍ରାଜ ପରି ଗୋଟିଏ ଭିନ୍ନ ମହାନଗରୀ, ବିଭିନ୍ନ ପ୍ରାନ୍ତରୁ ଆସିଥିବା ସହକର୍ମୀମାନଙ୍କ ସାହଚର୍ଯ୍ୟ ଏବଂ ସର୍ବୋପରି ବଂଗୋପସାଗରର ଅନ୍ୟ ଏକ ବେଳାଭୂମି । ପୁରୀ ସମୁଦ୍ର କୂଳଠାରୁ ଆହୁରି ପ୍ରଶସ୍ତ ଏବଂ ଢେଉମାନେ ବୋଧହୁଏ ଆହୁରି ନୀଳ ଏବଂ ଉତ୍ତାଳ । କିନ୍ତୁ ମାସେ ଯାଇଛି କି ନାହିଁ ଘରୁ ଏକ ଦାରୁଣ ଦୁଃସମ୍ବାଦ ମିଳିଲା-ବିନୁ ଚାଲିଗଲା । ଏପ୍ରିଲ୍ ୯ ତାରିଖ ୧୯୫୦ ।

ଆଉ ନାହିଁ ଆମ ପୁଅ । ଚାଲିଯାଇଛି । ଯେତେ ଶୁକୁଟା ହେଲେ ବି ସେ ହସୁଥିଲା ତା ମାଆ ମୁହଁକୁ ଚାହିଁ । ବିସ୍‌କୁଟ୍ ଲଜେନ୍‌ସ୍ ବି ଲାଳେଇ ଲାଳେଇ ଖାଇପାରୁଥିଲା ତା ପାକୁଆ ପାଟିରେ । କିନ୍ତୁ ସେ ଠିକ୍ କଲା ଯେ ଆଉ ଲଢ଼ି ପାରିବ ନାହିଁ ବଂଚି ରହିବାର ବଢ଼ି ଚାଲିଥିବା କଷ୍ଟ ସାଙ୍ଗରେ । ଆଖି ବୁଜି ଦେବ ।

ତୁରନ୍ତ ଫେରି ଆସିଲି ଘରକୁ । ମଧ୍ୟ ତା ମାଆ ସାଙ୍ଗରେ ମିଶି ଆଖିରୁ ଲୁହ ଝରେଇଥିଲି । କିନ୍ତୁ ତାପରେ ? ଯଥା ପୂର୍ବଂ ତଥା ପର, କିଛି ଦିନ ପରେ । ସଂସାରର ନିୟମ ।

ନିୟମ ? କାହାର ନିୟମ ? ଇଏ କେଉଁ ଆଡ଼ର ନିୟମ ଯେ ଯେତେ ଯାହା ହେଉ ପଛେ ଚକ ଗଡ଼ି ଚାଲିବ, କିଛି ନ ହୋଇଥିଲା ପରି ? ଯୁଧିଷ୍ଠିର କହିଥିଲେ ଧର୍ମବକଙ୍କୁ 'ଅହନ୍ୟହନି ଭୂତାନି ଗଚ୍ଛନ୍ତି ଯମସ୍ୟାଳୟଂ ଅପରେ ସ୍ଥାତୁମିଚ୍ଛନ୍ତି, କିମାଶ୍ଚର୍ଯ୍ୟମତଃପରମ୍ ?' ଅର୍ଥାତ୍ ପ୍ରତି ମୁହୂର୍ତ୍ତରେ କେହି ନା କେହି ଯମଘରକୁ ଯାଉଛନ୍ତି କିନ୍ତୁ ତଥାପି ଅନ୍ୟମାନେ ବଂଚିବାକୁ ଚାହୁଁଛନ୍ତି, ଏହାଠାରୁ ବଳି ଆଶ୍ଚର୍ଯ୍ୟର କଥା କିଛି ନାହିଁ । ଅଛି, ଯେ ମୁଁ ମଧ୍ୟ ଠିକ୍ ଆଗ ଭଳି ବଂଚିବାକୁ ଚାହୁଁଛି । ଯେ ତା ମଣିକୁ ହରାଇଥିଲେ ମଧ୍ୟ ଫଣୀକୁ ବେଶି ସମୟ ଲାଗେ ନାହିଁ ଆଗ ଭଳି ଫଅଁ ଫଅଁ ହେବାକୁ, ଆଗ ଭଳି ସୁଖ କରିବାକୁ । ସତେକି ତାର କୋଉ ଧନ ହଜି ଯାଇନାହିଁ । ହଜିଲା ଧନ ଆପେ ଆପେ ଫେରି ଆସିବ, ଶୂନ୍ୟସ୍ଥାନ ପୂରଣ ହୋଇଯିବ । ଲାଜ ନାହିଁ ତୋ ମୁହଁକୁ ? ଏହି ମର୍ମରେ ମୁଁ ନିଜକୁ ମାନେ ମଣିଷଦଶାକୁ ଉପହାସ କରିଥିଲି, ମୋର ବହୁ ଅନୂଦିତ ସୁବିଦିତ 'ମଣିହରା' ଗଳ୍ପରେ, ମୋ ଆଖିଲୁହ ଶୁଖିଯିବାର ଅନେକ ଦିନ ପରେ । ମନେଥିବ ମୋ ଗଳ୍ପର ଉମେଶ ବାବୁ ଓ ନିର୍ମଳାଙ୍କୁ ଯୁଗଟାଏ ଲାଗି ନଥିଲା, ପୁଣି ତାଙ୍କ ଯୋଡ଼ି ଖଟରେ ଏକାଠି ହେବା ପାଇଁ । ହେଲା ଏବେ ମାଆକୁ ଗୋଟାଏ ଅଛିଣ୍ଡା ପ୍ରଶ୍ନର ଉତ୍ତର ମିଳିଲା ନାହିଁ (ବାପ ଶୋଇ ଯାଇଥିଲା ସେତେବେଳକୁ), ଯେ ପୁଅକୁ ସେମାନେ ପୋଡ଼ିଦେଲେ ନା ପୋତିଦେଲେ, କାହିଁକି ନା ଗୋଟାଏ ଦରଚୁଚୁମା ଲଜେନ୍ସ୍ ଲାଖିଯାଇଥିବ ତା ଜାମା ପକେଟ୍‌ର କୋଣରେ । କିନ୍ତୁ ସେଥିରେ ଯାଏ କେତେ ଆସେ କେତେ ? କଣ ମିଳିବ ତାର ସେଇ ଆବ୍‌ସର୍ଡ଼ ପ୍ରଶ୍ନରୁ ?

ହଁ, ମୋର ସଂସାର ଯଥାବିଧି ଆଗେଇ ଚାଲିଲା । ପୁତ୍ରହରା ମାଆକୁ ମୁଁ ମୋ ଚାକିରୀଜାଗା ମାନ୍ଦ୍ରାଜକୁ ନେଇଆସିଲି । ଏବଂ ଆମ ନିଜ ଘରକରଣା ସୁରୁ ହେଲା ପୁଣି ଏକ ନୂଆ ପରିବେଶରେ ।

ମାନ୍ଦ୍ରାଜର ଟ୍ରେନିଂଗ୍ ପରେ ପୁଣି ପୁରୀ, କିନ୍ତୁ ଏଥର ଏକ ଭିନ୍ନ ଶ୍ରେଣୀର ପ୍ରୋବେସନର୍ ହୋଇ । ସେତେବେଳେ ଓଡ଼ିଶାର ଆକାଉଣ୍ଟାଣ୍ଟ୍ ଜେନେରାଲ୍ ଅଫିସ୍ ରାଂଚୀରେ ଥିଲା, କିନ୍ତୁ ପୁରୀରେ ତାର ଗୋଟିଏ ବ୍ରାଂଚ୍ ଅଫିସ୍ ଥିଲା । ମୋତେ ସେଠିକି ପଠା ହେଲା ସେଠିକାର କାମ ଶିଖିବା ଲାଗି । କିନ୍ତୁ ଏଣିକି ପ୍ରତ୍ୟକ୍ଷ କାମ କରିବାକୁ ହେବ, ବିଭିନ୍ନ ଅଫିସର୍‌ମାନଙ୍କ ତତ୍ତ୍ୱାବଧାନରେ ।

ପୁରୀରେ ଆମେ ରହୁଥିଲୁ ଶ୍ୱଶୁରଙ୍କ ଆର୍ମଷ୍ଟ୍ରଂଗ୍ ରୋଡ୍‌ରେ ଥିବା ନିଜ ଘରେ । ସେଇଠି ଆମ ଦ୍ୱିତୀୟ ଝିଅର ଆବିର୍ଭାବ ହେଲା । ଅଗଷ୍ଟ ୪ ତାରିଖ ୧୯୫୧ । ଏମିତି ଆଗଚଲା ଥିଲା ଆମର ସେଇ ଝିଅଖଣ୍ଡକ, ଯେ ସେ କୁଆଡ଼େ ପୂରାପୂରି ଭୂମିଷ୍ଠ ନ ହେଉଣୁ, 'ମୁଁ ଆସିଗଲି !' ବୋଲି ଜଣାଇଥିଲା ଦୁନିଆଁକୁ, ଗୋଟାଏ ବିରାଟ କୁଆଁକୁଆଁ ରଡ଼ି ଛାଡ଼ି ଦେଇ । ବେଶ୍ ହୃଷ୍ଟପୁଷ୍ଟ ହୋଇଥିଲା ପିଲାଟା । ପୁରୀରେ ଜନ୍ମ ହୋଇଥିବାରୁ ମୁଁ ତା ନାଆଁ ଦେଇଥିଲି 'ବୀଚିବାଳା', ଡାକ ନାଆଁ ଚିନୁ ।

ପୁରୀ ପରେ ରାଂଚୀ । ହେଡ୍ ଅଫିସ୍‌ର କାମ ଶିଖିବା ଲାଗି । ରାଂଚୀରେ ଥିଲାବେଳେ ସ୍ୱାଧିନ ଭାରତର ପ୍ରଥମ ସାଧାରଣ ନିର୍ବାଚନ, ଏବଂ ମୋ'ର ମଧ ଛୋଟ ଭୂମିକାଟିଏ ଥିଲା ସେଥିରେ । ମୋତେ ପ୍ରିଜାଇଡିଂଗ୍ ଅଫିସର୍ ହେବାକୁ ପଡ଼ିଲା ଛୋଟାନାଗପୁରର 'ବସିଆ' ନାମକ ଗୋଟିଏ ଦୂରବର୍ତ୍ତୀ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ । ବନଭୂମି । ଏବଂ ଆମେ ଯେଉଁଠି ଡେରା ପକେଇଲୁ ତା'କୁ ଆକ୍ଷରିକ ଅର୍ଥରେ ପର୍ଣ୍ଣକୁଟୀର ବୋଲି କୁହାଯାଇପାରେ । ଖାଲି ସେତିକି ନୁହେଁ, ପାଖଆଖ ଗାଆଁରେ ଥିବା ଲୋକମାନେ ଆମ ପାଖ ମାଡ଼ିଲେ ନାହିଁ, କାରଣ ଆମେ ଆସିଛୁ ଶତ୍ରୁପକ୍ଷ ସରକାରଙ୍କ ତରଫରୁ, ଯେଉଁମାନେ ତାଙ୍କ ନିଜ ରାଜ୍ୟ 'ଝାଡ଼ଖଣ୍ଡ' କରିବାକୁ ଦେଉନାହାନ୍ତି । ଯେଉଁ ରାଜ୍ୟ ତାଙ୍କ ରାଜା ଜୟପାଳ ସିଂହ ଆଣିଦେବେ । ଯାହାହେଉ ତାଙ୍କୁ କୁହାଯାଇଛି ଯେ ତମେ ସମସ୍ତେ ଆସିବ, କେହି ଅଟକି ଯିବ ନାହିଁ, ତମ ରାଜାଙ୍କ ପାଇଁ ଭୋଟ ଦେବା ଲାଗି । ଅର୍ଥାତ୍ ଯେଉଁ ଖଣ୍ଡେ ଖଣ୍ଡେ କାଗଜ ଦିଆଯିବ ତମ ହାତକୁ ତମେ ତାକୁ କୁକୁଡ଼ା ଛାପ ବାକ୍ସରେ ଗଳେଇଦେବ (ସେହିପ୍ରକାର ବ୍ୟବସ୍ଥା ଥିଲା ସେତେବେଳେ, ପ୍ରତ୍ୟେକ ପ୍ରାର୍ଥୀ ପାଇଁ ସ୍ୱତଂତ୍ର ବାକ୍ସ) । ସେଇଆ ହେଲା । ଅଶୀରୁ ନବେ ପ୍ରତିଶତ ଭୋଟ ଏବଂ ପ୍ରାୟ ସମସ୍ତ ଭୋଟ ତାଙ୍କ ରାଜାଙ୍କ ପାଇଁ । ମୋ ଅନୁଭୂତିର ଶେଷକଥା ହେଉଛି ଯେ ମୋତେ ଗୋଟାଏ ସାର୍ଟିଫିକେଟ୍ (Certificate of merit , 1st class) ମିଳିଥିଲା ସରକାରଙ୍କ ଠାରୁ, ପ୍ରିଜାଇଡିଂଗ୍ ଅଫିସର୍ ହିସାବରେ ପ୍ରଶଂନୀୟ କାମ ପାଇଁ । କେଉଁଥିପାଇଁ ମୁଁ ବିଶେଷ ପ୍ରଶଂସାର ପାତ୍ର ହେଲି, ଜାଣେ ନାହିଁ । ଯାହାହେଉ ସିଏ ହେଉଛି ମୋର ଅନ୍ୟତମ ସଯତ୍ନରେ ସାଇତି ରଖିଥିବା ପ୍ରଶଂସାପତ୍ର । ଏବଂ ଆଜି 'ଝାଡ଼ଖଣ୍ଡ' ପ୍ରଦେଶ ଗଢ଼ା ହେଲା ପରେ ମୋର ମନକୁ ଆସୁଛି ଯେ ଥୋକେ ବୁଢ଼ାବୁଢ଼ୀ ନିଶ୍ଚୟ ବଂଚି ରହିଥିବେ ସେଇ ଅଂଚଳରେ, ଯେଉଁମାନଙ୍କ ଛାତି ଫୁଲି ଉଠୁଥିବ ତାଙ୍କ ନିଜ ଭୂମିକାର ସ୍ମରଣରେ । ଯେ କିଭଳି କରାମତି ଦେଖାଇଥିଲେ ସେମାନେ ସେଇ ପହିଲି ଭୋଟଦିଆ ଦିନ, ତାଙ୍କର ଏଇ ରାଜ୍ୟକୁ ହାସଲ କରିବା ଲାଗି ।

ଦୁଇ ବର୍ଷିଆ ଟ୍ରେନିଂଗ୍ ଏବଂ ଡିପାର୍ଟମେଣ୍ଟାଲ୍ ପରୀକ୍ଷାରେ ପାସ୍ କରି ସାରିବା ପରେ ମୁଁ ମୁକରିର୍ ହେଲି ଚାକିରିରେ । ଏବଂ ମୋର ପ୍ରଥମ ପୋଷ୍ଟିଂଗ୍ ଥିଲା ଦିଲ୍ଲୀରେ । ଦିଲ୍ଲୀର ଗୋଟିଏ ଆକାଉଣ୍ଟାଣ୍ଟ୍ ଜେନେରାଲ୍ ଅଫିସରେ ଆସିଷ୍ଟାଣ୍ଟ୍ ଆକାଉଣ୍ଟାଣ୍ଟ୍ ଜେନେରାଲ୍ । କେତୋଟି ନିର୍ଦ୍ଦିଷ୍ଟ ସେକ୍‌ସନ୍‌କୁ ଚଳାଇବାର ସଂପୂର୍ଣ୍ଣ ଦାୟିତ୍ୱ । ଏବଂ ସ୍ତ୍ରୀ ପିଲାଙ୍କୁ ନେଇ ମୁଁ ରହିଲି ଶ୍ୱଶୁର ବି. ଦାସଙ୍କର ୫ ନମ୍ବର ଫିରୋଜଶାହା ରୋଡ଼ରେ ଥିବା ବଂଗଳାରେ । ବିଭିନ୍ନ ସ୍ତରରେ ଏକ ନୂଆ ଅଧ୍ୟାୟର ଆରମ୍ଭ । ୧୯୫୨ ରୁ ୧୯୫୮ । ଏଥିରୁ ଶେଷ ଦୁଇଟି ବର୍ଷ ଆମେ ଥିଲୁ ଆମକୁ ମିଳିଥିବା ସ୍ୱତଂତ୍ର ସରକାରୀ କ୍ୱାଟର୍ସରେ । କିନ୍ତୁ ବସ୍ତୁତଃ ଆମେ ଏକାଠି ଥିଲୁ । ଶ୍ୱଶୁରଙ୍କ ପରିବାର, ସେ ଯେତେବେଳେ ଥାଆନ୍ତି ସେଠି, ଏବଂ ମୋର ଛୋଟିଆ ପରିବାର ।

ପାରିବାରିକ ସ୍ତରରେ ଗୋଟିଏ ଅତି ଦୁଃଖଦ ଘଟଣା ଘଟିଥିଲା ଆମେ ଦିଲ୍ଲୀରେ ଥିଲାବେଳେ, ୧୯୫୪ ମସିହାରେ । କୁମର ସବାସାନ ଭାଇ ଅଜୁ (ଭଲ ନାଆଁ ଉତ୍କଳ ରଂଜନ) ପ୍ରେମଜନିତ ଆତ୍ମହତ୍ୟା କଲା ତାଙ୍କ କଟକ ଘରେ । କାହିଁକି ନା ସେ ଯେଉଁ ଝିଅକୁ ବାହା ହେବାକୁ ଚାହୁଁଥିଲା, ତାକୁ ତାର ବାପମାଆ ଆଉ କେଉଁଠି ବାହା ଦେବାକୁ ବସିଛନ୍ତି । ଭୀଷଣ ଦୁଃଖ ଓ ରାଗ ଆସିଲା ମୋ ମନରେ । ଇଡ଼ିଅଟ୍ ! ପ୍ରେମ ପାଇଁ କିଏ ଆତ୍ମହତ୍ୟା କରେ ଆଜିକାଲି, ବିଶେଷତଃ ଆମ ବୁଦ୍ଧିଜୀବି ଶିକ୍ଷିତ ସମାଜରେ ? ସେ ମୋର ବିଶେଷ ପ୍ରିୟପାତ୍ର ଥିଲା, କାରଣ ସେ ବି ଗପକବିତା ଲେଖୁଥିଲା ତା ଭିଣୋଇ ପରି । ହେଲା ଯେ, କିନ୍ତୁ ତା ବୋଲି ତୁ କଣ ଏତେ ଦୂରକୁ ଯିବୁ ତୋର ଲେଖକୀୟ ସେନ୍‌ସିଟିଭ୍ ମନକୁ ନେଇ ? ତୋର ବୁଦ୍ଧିସୁଦ୍ଧି ଗଲା କୁଆଡ଼େ ? ସେଇ ରାଗଦୁଃଖ ମୋତେ ପ୍ରେରଣା ଦେଇଛି ମୋର 'ନିଶାପ' ଗଳ୍ପଟିକୁ ଲେଖିବା ପାଇଁ, ଯେଉଁଥିରେ ପ୍ରେମିକର ବୋକାମି ସାଙ୍ଗକୁ ମୋର କହିବାକୁ ଇଚ୍ଛା ହୋଇଛି ଯେ ଝିଅଟା କିନ୍ତୁ ଅସଲ ମୋହିନୀଟିଏ । ଦେଖୁନା ତାର ଭାଉ କେମିତି ବଢ଼ି ଯାଇଛି ତା' ପାଇଁ ଜଣେ ଆତ୍ମହତ୍ୟା କରିଛି ବୋଲି ? ହେଲେ ମୋତେ ସ୍ୱୀକାର କରିବାକୁ ପଡ଼ିବ ଯେ ମୋର ରାଗ ପଛକୁ ଥିଲା ଗୋଟାଏ ଗ୍ଲାନିବୋଧ । ଟୋକା ଗୋଟାଏ ଚିଠି ଲେଖିଥିଲା ମୋ ପାଖକୁ, ଯେ ସେ ବଂଚି ରହିପାରିବ ନାହିଁ ସେଇ ଝିଅକୁ ବାହା ନ ହେଲେ । ମୁଁ ସେକଥା ଜଣେଇ ଦେଇଥିଲି ତା ବାପାମାଆଙ୍କୁ, ଯାହା ସେ ଚାହୁଁଥିଲା । ଆଉ କଣ କରିପାରିଥାଆନ୍ତି ? ଆଉ ତାର ବାପାମାଆ ବି କଣ କରିପାରିଥାଆନ୍ତେ, ଯେତେବେଳେ ଝିଅର ବାପାମାଆଙ୍କ ମତିଗତି ଭିନ୍ନ ବୋଲି ସେ ଲେଖିଛି ? ହଁ, ଯଥେଷ୍ଟ ସଫେଇ ଅଛି ମୋ ପାଖରେ, ଯେ ମୋର ଆଉ କିଛି କରିବାର ନ ଥିଲା । ତଥାପି ଗୋଟାଏ ଗ୍ଲାନିବୋଧ ରହିଯାଇଛି ମୋ ମନରେ ଯେ ମୁଁ ବିଶେଷ ଚେଷ୍ଟା କରିଥିଲେ ହୁଏତ ....

ହେଲେ ସୁଖବୋଧର କାରଣ ଏବଂ ସନ୍ତକ ହିସାବରେ ମଧ୍ୟ ତିନୋଟି ଘଟଣା ଘଟିଥିଲା ମୋର ପାରିବାରିକ ଜୀବନରେ । ଆଉ ତିନୋଟି ସନ୍ତାନଙ୍କର ଆବିର୍ଭାବ ।

ଝିଅଟିଏ । ଅଗଷ୍ଟ ୨୦ ତାରିଖ ୧୯୫୩ । ସୁକୁମାରୀ ସୁନ୍ଦରୀଟିଏ, ଗୋଟିଏ ସୁଦଶା ବ୍ରତ ଦିନ ଜନ୍ମ ହୋଇଥିଲା, ଦିଲ୍ଲୀର ଲେଡ଼ି ହାର୍ଡ଼ିଜ୍ ହସପିଟାଲ୍‌ରେ । ତା ନାଆଁ ରହିଲା ବିଶ୍ୱଜିତା, ଡ଼ାକ ନାଆଁ ବେବି । ହେଲେ ତାର ଆଈ ତାକୁ ଗେହ୍ଲାରେ ମୋ ସୁଦଶା ରାଣୀ ବୋଲି ଡାକିବାକୁ ଭଲ ପାଉଥିଲେ ।

ଝିଅଟିଏ । ଏପ୍ରିଲ୍ ୧୩ ତାରିଖ ୧୯୫୫ । ସେ ଜନ୍ମ ହୋଇଥିଲା କଟକରେ । ନାଆଁ ବିଦ୍ୟାବତୀ, ଯାହାକୁ ସେ ଛୋଟ କରି ବିଦ୍ୟାରେ ରଖିଛି । ଡାକନାଆଁ କୁନ୍‌ବେବି ।

ପୁଅଟିଏ । ଜୁଲାଇ ୧୨ ତାରିଖ ୧୯୫୭ । ଦିଲ୍ଲୀର ଉଇଲିଂଡନ୍ ହସପିଟାଲ୍‌ରେ ଜନ୍ମ । ଦିଲ୍ଲୀର ଅଧିଷ୍ଠାତା ଦେବତା ହନୁମାନଙ୍କ କୃପାରୁ ମଙ୍ଗଳବାର ଦିନ ଜନ୍ମ ହୋଇଥିଲା

ବୋଲି ତା ନାଆଁ ଦିଆଗଲା ଅଂଜନିକୁମାର । ଏବଂ ତାକ ନାଆଁ ଧୀରୁ, ଯେହେତୁ ସେ ଅତି ଧୀର ଶାନ୍ତ ଶିଶୁଟିଏ ବୋଲି ମନେ ହେଉଥିଲା ତାର ଜନ୍ମ ବେଳକୁ ।

କିନ୍ତୁ ଏଇ ଛଅବର୍ଷ ବ୍ୟାପୀ ଦିଲ୍ଲୀରହଣିର ବିଶେଷ ଗୁରୁତ୍ୱ ହେଉଛି ମୋର ବୃତ୍ତିଗତ ଅଭିଜ୍ଞତା ଏବଂ ଶ୍ୱଶୁର ବି. ଦାସଙ୍କ ସହିତ ମୋର ବହୁମୁଖୀ ପରିଚୟକୁ ନେଇ, ଯାହା ଅନ୍ୟଥା ସଂଭବ ହୋଇ ନ ଥାଆନ୍ତା । ଘନିଷ୍ଠ ସଂପର୍କ ଥିଲା ସେଇ ଦୁଇଟି ମଧ୍ୟରେ । ସଂପର୍କର ନକ୍‌ସା ଏହି ପ୍ରକାର - ଆମ ହିସାବକିତାବ ଧନ୍ଦାର ଶେଷକଥା ହେଉଛି ଅଡ଼ିଟ୍ ରିପୋର୍ଟ, ଯାହା ପାର୍ଲିଆମେଣ୍ଟରେ ପେଶ୍ କରାଯାଏ ଗୋଟିଏ କମିଟିରେ ଏବଂ କମିଟିର ସୁପାରିଶ ଅନୁଯାୟୀ ସରକାର କଣ କଲେ ନ କଲେ ତା'ର ଅଜବବହୁତ ଚର୍ଚ୍ଚା ହୁଏ ପାର୍ଲିଆମେଣ୍ଟ୍‌ରେ । ଜଣାଶୁଣା କଥା ଯେ ଆମର କାମ ହେଉଛି ସରକାରଙ୍କ ଦୋଷତ୍ରୁଟି ବାଛିବା, ଯେଉଁଥିରେ ଲାଭ କମିଗଲା ଅବା କ୍ଷତି ବଢ଼ିଗଲା, ବିଭିନ୍ନ ଧରଣର ଅପବ୍ୟୟ, ଅବହେଳା ଅବା ଦୁର୍ନୀତି ହେତୁ, ତେଣୁ କିଛି କରିବା ଆବଶ୍ୟକ ବୋଲି ଆମେ କହିଥାଉ ପାର୍ଲିଆମେଣ୍ଟ୍ ଓରଫ୍ ଏଇ କମିଟିକୁ । ଏବଂ ଏଇ କମିଟିର ଚେୟାର୍‌ମ୍ୟାନ୍ ଥିଲେ ଶ୍ରୀଯୁକ୍ତ ବି. ଦାସ । ତାର ପ୍ରଥମ ଚେୟାର୍‌ମ୍ୟାନ୍ ସଂବିଧାନ ପ୍ରତିଷ୍ଠିତ ହେଲା ପରେ, ଏବଂ ସେଇ ଆସନରେ ରହିଲେ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ । ପାର୍ଲିଆମେଣ୍ଟ୍‌ର ସେଣ୍ଟ୍ରାଲ୍ ହଲ୍ ଛଡ଼ା, ତାଙ୍କର ଗୋଟିଏ ଆବକ୍ଷ ପ୍ରତିକୃତି ଶୋଭା ପାଉଛି କମିଟି ରୁମ୍‌ରେ । ଏବଂ ଗବେଷକମାନେ କହି ଯାଇଛନ୍ତି ଯେ ତାଙ୍କରି ଯୋଗୁଁ ଏକ ସୁସ୍ଥ ଏବଂ ମର୍ଯ୍ୟାଦାବନ୍ତ ପରମ୍ପରା ସୃଷ୍ଟି ହୋଇ ପାରିଛି ଏଇ କମିଟିର କାର୍ଯ୍ୟବିଧିରେ, ଯାହା ବାରି ହୋଇଯାଏ ।

କିନ୍ତୁ ମଜା କଥା ହେଉଛି ଯେ ଯଦିଓ ଏଇ କମିଟି ବ୍ରିଟିଶ ପାର୍ଲିଆମେଣ୍ଟ୍‌ର ପବ୍‌ଲିକ୍ ଆକାଉଣ୍ଟସ୍ କମିଟିର କାର୍ଯ୍ୟବିଧିକୁ ଅନୁସରଣ କରେ, ଯାହାକି ସ୍ୱାଭାବିକ, ମୂଳରୁ ଗୋଟିଏ ପରମ୍ପରାର ବିଚ୍ୟୁତି ଘଟିଲା ବି. ଦାସଙ୍କ ନିଯୁକ୍ତିକୁ ନେଇ । କାରଣ ପରମ୍ପରା ଅନୁଯାୟୀ ବିରୋଧୀ ଦଳର ନେତା ସେଥିର ଅଧ୍ୟକ୍ଷ ହେବା କଥା । କିନ୍ତୁ ବି. ଦାସ ତ ଥିଲେ ପ୍ରଶାସକ କଂଗ୍ରେସ ଦଳର ନେତା, ତାଙ୍କୁ କେମିତି ଏଇ ଦାୟିତ୍ୱ ଦିଆଗଲା ? ପାର୍ଲିଆମେଣ୍ଟ୍ ପୂର୍ବର ସେଣ୍ଟ୍ରାଲ୍ ଆସେମ୍‌ଲିରେ ତାଙ୍କର ଯେଉଁ ଅଭିଜ୍ଞତା ଥିଲା ବିରୋଧୀ ଦଳର ନେତା ହିସାବରେ, ସେଇଥିପାଇଁ ? ହୋଇଥିବ । କିନ୍ତୁ ତା ସାଙ୍ଗକୁ ମଧ୍ୟ ଥିଲା ତାଙ୍କର ଭାବମୂର୍ତ୍ତି । ଯେ ଏଇ ବରିଷ୍ଠ ନେତା ଶାସକ ଦଳର ସଭ୍ୟ ହୋଇଥିଲେହେଁ ତାଙ୍କଠାରୁ ସୁଚିନ୍ତିତ ବୁଦ୍ଧିବିଚାର ଏବଂ ନିରପେକ୍ଷତା ଆଶା କରାଯାଏ । ତାଙ୍କ ପରେ ବ୍ରିଟିଶ୍ ପରମ୍ପରା ଫେରି ଆସିଛି । ପାର୍ଲିଆମେଣ୍ଟ୍ ତଥା ରାଜ୍ୟ ବିଧାନସଭାମାନଙ୍କର ବିରୋଧୀ ଦଳର ନେତାଙ୍କୁ ହିଁ ପି.ଏ.ସି.ର ଚେୟାର୍‌ମ୍ୟାନ୍ କରାଯାଏ । ବି. ଦାସ ଥିଲେ ସେଥିର ପ୍ରଥମ ଓ ଶେଷ ବ୍ୟତିକ୍ରମ ।

କିନ୍ତୁ ମୁଁ ଜଣେ ଅଡ଼ିଟ୍ ଅଫିସର୍ ହିସାବରେ ଏଇ ଚେୟାର୍‌ମ୍ୟାନ୍‌ଙ୍କ ସଂସ୍ପର୍ଶରେ ଆସି ନଥିଲି । ତା'ର ଦାୟିତ୍ୱ ମିଳିଲା ଅନେକ ଦିନ ପରେ, ଯେତେବେଳେ ମୁଁ ଆକାଉଣ୍ଟାଣ୍ଟ୍

ଜେନେରାଲ୍ ହୋଇ ସାରିଥିଲି, ହେଲେ ସେ ନ ଥିଲେ । ଏଇ ପହିଲି ଦିଲ୍ଲୀରହଣି ବେଳେ ମୁଁ କେବଳ ସେଇ କମିଟିରେ ଆସି ବସୁଥିଲି ସରକାରଙ୍କ ତରଫରୁ । କାରଣ ୧୯୫୪ ମସିହାରେ ମୁଁ ଅର୍ଥ ମନ୍ତ୍ରଣାଳୟକୁ ଡେପୁଟେସନ୍‌ରେ ଆସିଲି, ବଜେଟ୍ ଡିଭିଜନ୍‌ର ଜଣେ ଅଣ୍ଡର୍ ସେକ୍ରେଟେରୀ ହିସାବରେ । ଏବଂ ମୋର ଅନ୍ୟତମ କାମ ଥିଲା କମିଟିର ଆଳାପଆଲୋଚନାକୁ ମନ ଦେଇ ଶୁଣିବା ଏବଂ ସେଥିରୁ ଠିକଣା ଖିଅ ବାହାର କରି ଆମ ଜଏଣ୍ଟ ସେକ୍ରେଟେରୀ-ସେକ୍ରେଟେରୀ-ମନ୍ତ୍ରୀ ମହୋଦୟଙ୍କୁ ଜଣାଇବା ଯେ ଅମୁକ ବିଷୟରେ ପ୍ରାସଂଗିକ ମନ୍ତ୍ରଣାଳୟକୁ ମୂଳରୁ ସଚେତନ କରିଦେବା ଉଚିତ, ଭବିଷ୍ୟତ ପାଇଁ ।

ଏଇ କାମ ମୋତେ ଯେଉଁ ମୂଲ୍ୟବାନ୍ ଅଭିଜ୍ଞତା ଆଣିଦେଲା ତାହା ଅନସ୍ୱୀକାର୍ଯ୍ୟ । କାରଣ ତାହା ଥିଲା ସାମଗ୍ରିକ ଏବଂ ସର୍ବେକ୍ଷଣମୂଳକ । ଅର୍ଥ ମନ୍ତ୍ରଣାଳୟ ତରଫରୁ ଅନ୍ୟ ସମସ୍ତ ମନ୍ତ୍ରଣାଳୟର କାରବାରକୁ ଚିହ୍ନିଲା ପରି । ସେମାନଙ୍କର ବାସ୍ତବ ଅଭାବଅସୁବିଧାର ସଫେଇ ତଥା ସେମାନଙ୍କର ଦୁର୍ନୀତିଜନକ ଦୋଷ, ତ୍ରୁଟି ଏବଂ କାରସାଦି । ଏବଂ ସେଇଠି ମୋତେ ଯେଉଁ ପରିଚୟ ମିଳିଲା ବି. ଦାସଙ୍କ ଭିନ୍ନସ୍ତରୀୟ ବ୍ୟକ୍ତିତ୍ୱର, ତାହା ମଧ୍ୟ ମୋର ଅବିସ୍ମରଣୀୟ ହୋଇ ରହିଲା "ନେତୃତ୍ୱ" ନାମକ ବସ୍ତୁଟିକୁ ଆହୁରି ଭଲ ଭାବରେ ବୁଝିଲା ପରି । ସେ ଯେଉଁ ନେତୃତ୍ୱ ପ୍ରସାରିତ କରୁଥିଲେ ତାଙ୍କ ଚଉକିରେ ବସି, ସେଥିରେ କେଉଁ ଦଳର ଭୂମିକା ନ ଥିଲା । ଥିଲା କେବଳ ବୁଦ୍ଧିବିଚାରର ଆମନ୍ତ୍ରଣ, ଯେ ଚାଲନ୍ତୁ ଦେଖିବା ତତ୍‌କାଳ ପରିସ୍ଥିତିରେ କଅଣ କରିବା ଉଚିତ ଥିଲା । ଅଡିଟର୍ ଜେନେରାଲ୍, ଭାରତ ସରକାର ଏବଂ ପାର୍ଲିଆମେଣ୍ଟ୍ ଏଇ ତ୍ରିମୂର୍ତ୍ତିଙ୍କ ଯୋଗ୍ୟ ପ୍ରତିନିଧିମାନେ ରହିଛନ୍ତି ଏଠି, ତେଣୁ କୌଣସି ସମସ୍ୟା ବଳେଇଯିବ ନାହିଁ ଆମ ବୁଦ୍ଧିବିଚାରକୁ । ଏହିପ୍ରକାର ମନୋଭାବ ହେତୁ ସେ କେବେହେଲେ କେଉଁ କମିଟିର ସଦସ୍ୟମାନଙ୍କୁ ଜେରା କରିବାର ଅନୁମତି ଦିଅନ୍ତି ନାହିଁ ସରକାରୀ ସାକ୍ଷୀମାନଙ୍କୁ । ହସଖୁସି ଓ ରସିକତା ମଧ୍ୟ କିଛି କମ୍ ନଥାଏ, ଏଇ ତ୍ରିପାକ୍ଷିକ ପ୍ରତିନିଧିମାନଙ୍କ ମଧ୍ୟରେ । ଏବଂ ଶେଷକୁ ଯେଉଁ ନିର୍ଣ୍ଣୟଗୁଡ଼ିକ ଗୃହୀତ ହୁଏ ସେଥିରେ କାହାରି ଆପତ୍ତିର କାରଣ ଥିବ ବୋଲି ମନେ ହୁଏ ନାହିଁ ।

ବୋଧହୁଏ ତାଙ୍କର ଏଇ ନିର୍ଦଳୀୟ ଉଦାର ଏବଂ ପ୍ରାଜ୍ଞ ମନୋଭାବ ହେତୁ, ବିଭିନ୍ନ କ୍ଷେତ୍ରର ଗଣ୍ୟମାନ୍ୟ ବ୍ୟକ୍ତିମାନେ ତାଙ୍କର ବଂଧୁ ହୋଇପାରିଥିଲେ । ସେମାନଙ୍କ ମଧ୍ୟରୁ ଅନେକେ ଆସନ୍ତି ତାଙ୍କ ବଂଗଳାକୁ ଏବଂ ମୁଁ ନିଜକୁ ଯଥାର୍ଥରେ ଲାଭବାନ୍ ମନେ କରୁଥିଲି ତାଙ୍କ ସଂସ୍ପର୍ଶରେ ଆସି । ଯଥା - ପ୍ରଥମ ଅଡ଼ିଟର୍ ଜେନେରାଲ୍ ଭି. ନରହରି ରାଓ, ଯାହାଙ୍କ ବିଷୟରେ କହିଛି ପୂର୍ବରୁ, ଆମ ସର୍ଭିସ୍‌କୁ ଆସିଥିବା ପ୍ରଥମ ଓଡ଼ିଆ ପ୍ରକାଶ ଚନ୍ଦ୍ର ପାଢ଼ୀ (ମୁଁ ହେଲି ଦ୍ୱିତୀୟ) ଯେ ସେଣ୍ଟ୍ରାଲ୍ ବୋର୍ଡ଼ ଅଫ୍ ରେଭିନିଉର ଚେୟାର୍‌ମ୍ୟାନ୍ ଥିଲେ, ବରିଷ୍ଠ ଆଇ.ସି.ଏସ୍. ଅଫିସର ଏସ୍. ରଂଗନାଥନ୍, ପଡ଼ୋଶୀ କଂଗ୍ରେସ ନେତା ତ୍ରିଭୁବନ

ନାରାୟଣ ସିଂହ, ସ୍ୱନାମଧନ୍ୟ ପତ୍ରକାର ସାର୍‌ ଉଷାନାଥ ସେନ୍‌, ବରିଷ୍ଠ ତଥାକଥିତ ମାଂଦାଦଳ (Liberal party)ର ନେତା ପଣ୍ଡିତ ହୃଦୟନାଥ କୁଂଜରୁ, ଅନ୍ୟତମ କଂଗ୍ରେସ ନେତା ଲାଲବାହାଦୂର ଶାସ୍ତ୍ରୀ, ଓଡ଼ିଶାର ସାମ୍ୟବାଦୀ ନେତା ସୁରେନ୍ଦ୍ରନାଥ ଦ୍ୱିବେଦୀ, ଓଡ଼ିଶାର ଅନ୍ୟତମ ସ୍ୱାଧିନତା ସଂଗ୍ରାମୀ ଶାରଂଗଧର ଦାସ, ଓଗେର । କିନ୍ତୁ ଯେଉଁ କେତେଜଣଙ୍କ ସ୍ୱଭାବଚରିତ୍ର ମୋତେ ବିଶେଷ ଭାବରେ ମୁଗ୍ଧ କରିଥିଲା ସେମାନେ ହେଉଛନ୍ତି ଲାଲ୍‌ବାହାଦୂର ଶାସ୍ତ୍ରୀ ଏବଂ ତାଙ୍କର ଅପୂର୍ବ ବିନୟଭାବ । (ପ୍ରଥମ ଦେଖାରେ ସେ ମୋତେ ସହାସ୍ୟ ନମସ୍କାରଟିଏ ପକେଇଥିଲେ ମୋର ଅଡ଼ିଟ୍‌ କ୍ଷମତାକୁ ଭୟ କଲାପରି), ପଣ୍ଡିତ କୁଂଜରୁଙ୍କର ଅନୁପମ ସୌଜନ୍ୟ ଓ ଶାଳୀନତା ଏବଂ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କର ନିର୍ଦ୍ଦଳୀୟ ଓ ଦୂରଦୃଷ୍ଟିସଂପନ୍ନ ଚିନ୍ତାଧାରା ଯାହା ଅନେକାଂଶରେ ମିଶିଯାଉଥିଲା ବି. ଦାସଙ୍କ ସାଙ୍ଗରେ ।

ଏହି ଭାବରେ ସେଇ ଛଅବର୍ଷ ଭିତରେ ମୋର ଆତ୍ମପ୍ରତ୍ୟୟ ଯଥେଷ୍ଟ ବଢ଼ି ଯାଇଥିଲା । ହିସାବକିତାବ ତଥା ଅର୍ଥ ବ୍ୟବସ୍ଥା ଉଭୟ କ୍ଷେତ୍ରରେ ମୋର ଅଭିଜ୍ଞତା ଏବଂ ଶ୍ୱଶୁରଙ୍କ ଯୋଗୁଁ ଦିଲ୍ଲୀର 'ଉପର ମହଲ' ସହିତ ମୋର ଯତ୍‌ସାମାନ୍ୟ ପରିଚୟ ହେତୁ । ମନେ ହେଉଥିଲା ଏଣିକି ମୁଁ ଅଧିକରୁ ଅଧିକ ଗୁରୁଦାୟିତ୍ୱ ତୁଲେଇ ପାରିବି, ରାଷ୍ଟ୍ରପତିଙ୍କ ସେବକ ହିସାବରେ ।

ସେଇଠୁଁ ହଠାତ୍‌ ଦିନେ ମୋର ଜଏଣ୍ଟ ସେକ୍ରେଟେରୀ ଗୋଟାଏ ପ୍ରଶ୍ନ ପଚାରିଲେ ମୋତେ, ମୋର ଆତ୍ମବଢ଼ିମାକୁ ପରଖିଲା ପରି -

ଦାସ୍‌, ସାଏଗନ୍‌କୁ ଯିବ ?

ସାର୍‌ ?

ଦକ୍ଷିଣ ଭିଏତ୍‌ନାମ୍‌ର ରାଜଧାନୀ ସାଏଗନ୍‌ । ସେଠିକି ଯିବ ତମେ ଜଣେ 'କମନ୍‌ୱେଲ୍‌ଥ୍‌ ବିଶେଷଜ୍ଞ'' ହୋଇ । ଏବଂ ତାଙ୍କ ସରକାରଙ୍କୁ ବୁଝେଇଆସିବ, ଆମ ସ୍ୱଳ୍ପସଂଚୟ ଯୋଜନା କେମିତି ଓ କାହିଁକି ଏତେ ଲୋକପ୍ରିୟ ହୋଇପାରିଛି । କଣ କହୁଛ ? ମାତ୍ର ତିନିମାସ ପାଇଁ ।

କାବା ହେଲି । ହେଲେ 'ଥ୍ୟାଂକ୍‌ ୟୁ, ସାର୍‌' ବୋଲି କହିଲି, ଯାହା ମୋ ଠାରୁ ଆଶା କରାଯାଏ । ହଁ, ସ୍ୱଳ୍ପସଂଚୟ ଯୋଜନାର ନୀତିନିର୍ଦ୍ଧାରଣ ଏବଂ ଉପରିସ୍ଥ ତତ୍ତ୍ୱାବଧାନ ଆମ ବଜେଟ୍‌ ଡିଭିଜନ୍‌ରେ ହୁଏ । ଏବଂ ଅଣ୍ଡର୍‌ ସେକ୍ରେଟେରୀ ସ୍ତରରେ ମୁଁ ସେଇ କାମକୁ ନେଇ ଅନେକ ନୋଟ୍‌ ଲେଖିଛି ମୋ ଉପର ହାକିମମାନଙ୍କ ଅବଗତି ଅବା ନିର୍ଦ୍ଦେଶ ପାଇଁ । ମଧ ଉଲ୍ଲେଖଯୋଗ୍ୟ ଯେ ବରାଦ୍‌ ଅନୁଯାୟୀ ମୁଁ ଗୋଟିଏ ଏକାଂକିକା ନାଟିକା ଲେଖିଥିଲି ସ୍ୱଳ୍ପସଂଚୟର ପ୍ରଚାର ପାଇଁ, ଯାହା ସେବେଳର ମନ୍ତ୍ରୀ ଟି.ଟି. କୃଷ୍ଣମାଚାରୀଙ୍କ ମନକୁ ପାଇଛି ବୋଲି ଶୁଣି ଖୁସି ହୋଇଥିଲି । କିନ୍ତୁ ମୁଁ ସେଥିର ବିଶେଷଜ୍ଞ ହେଲିଣି କେବେଠୁଁ ? ହେଲେ ମୁଁ

ମୋର ଆତ୍ମପ୍ରତ୍ୟୟକୁ ହଟିବାକୁ ଦେଲି ନାହିଁ । ମନେ ମନେ କହିଲି ଯେ ମୁଁ ପାରିବି, ଅବଶ୍ୟ ପାରିବି । ମୁଁ ସେମାନଙ୍କୁ ପାଠ ପଢ଼େଇ ପାରିବି ।

ଯେଉଁମାନେ ମୋତେ ବଧେଇ ଦେବା ସହିତ ବିଶେଷ ଆନନ୍ଦିତ ହୋଇଥିଲେ ମୋର ଏଇ ସ୍ୱପ୍ନମିଆଦି ନିଯୁକ୍ତି ପାଇଁ, ସେମାନଙ୍କର ଅଗ୍ରଣୀ ଥିଲେ ମୋର ଶ୍ୱଶୁର ମହାଶୟ ବି. ଦାସ । ସେତେବେଳେ ସେ କଟକରେ ଥିଲେ ଏବଂ ଏଭଳି ଗୋଟିଏ ଚିଠି ଲେଖିଥିଲେ ମୋ ପାଖକୁ ଯେ ମନେ ହେବ ଏଇଠୁଁ ଆରମ୍ଭ ହେଲା ମୋ ସଫଳତାର ଦୁରନ୍ତ ଅଭିଯାନ ।

ସେଇଥିଲା ମୋର ପ୍ରଥମ ବିଦେଶ ଯାତ୍ରା । ମଧ୍ୟ ଉଡ଼ାଜାହାଜରେ ବସିବାର ପ୍ରଥମ ଅନୁଭୂତି । ଫେବୃଆରୀ ୧୯୫୮ ।

ଏୟାର୍ ଇଣ୍ଡିଆ ଜେଟ୍ ବିମାନର ଗୋଟିଏ ଫାଷ୍ଟକ୍ଲାସ୍ ସିଟ୍ । ଫାଷ୍ଟକ୍ଲାସ୍ ପ୍ୟାସେଂଜର୍ ହିସାବରେ ମୋତେ 'ମହାରାଜା'ଙ୍କ ତରଫରୁ ଗୋଟିଏ ଛୋଟିଆ ସୁଟ୍‌କେଶ୍ ମଧ୍ୟ ମିଳିଥିଲା, ଉପହାର ସ୍ୱରୂପ । ଏତେ ଖାତିର୍ ଜଣେ ମାମୁଲି ଅଣ୍ଡର୍ ସେକ୍ରେଟେରୀ ପାଇଁ ? ହଁ, ଆଜିକାଲିର କଟକଣା ନ ଥିଲା ସେତେବେଳେ, ସରକାରୀ ଅଫିସରମାନଙ୍କ ବିମାନଯାତ୍ରା ଉପରେ । ତାଛଡ଼ା ମହାରାଜାଙ୍କ ଆର୍ଥିକ ଅବସ୍ଥା ମଧ୍ୟ ସ୍ୱଚ୍ଛଳ ଥିଲା ।

ପ୍ରଥମେ ଥାଏଲାଣ୍ଡର୍ ରାଜଧାନୀ ବ୍ୟାଂଗ୍‌କକ୍‌ରେ ଓହ୍ଲାଇଯିବାକୁ ପଡ଼ିବ । ସେଠି ଗୋଟିଏ ରାତିର ରହଣି । ତା'ପରଦିନ ଦକ୍ଷିଣ ଭିଏତ୍‌ନାମ ରାଜ୍ୟର ଛୋଟ ପ୍ଲେନ୍‌ଟିଏ ଧରି ସାଏଗନ୍‌ରେ ପହଞ୍ଚିବା କଥା ।

ବ୍ୟାଂଗ୍‌କକ୍‌ରେ ସେଇ ଗୋଟିଏ ରାତି ଅବିସ୍ମରଣୀୟ । ସେଇଠି ମୋର ପରିଚୟ ହୁଏ ଭିନ୍ନ ଏକ ସଭ୍ୟତା ସାଙ୍ଗରେ, ଯେଉଁଠି ଉନ୍ମୁକ୍ତ ଯୌନ ବିହାରକୁ ଏତେ ସ୍ୱୀକୃତି ଓ ମର୍ଯ୍ୟାଦା ଦିଆଯାଏ । ଏଠି କେଉଁ ରେଡ୍‌ଲାଇଟ୍ ଡିଷ୍ଟ୍ରିକଟ୍ ବୋଲାଉଥିବା ମାର୍କାମରା ନିଷିଦ୍ଧ ଅଂଚଳ ଅବା ସରୁଗଳି ମିଂଜିମିଂଜି ଆଲୁଅର ଡାକରା ନାହିଁ, ଯେଉଁଠିକି ଲୁଚି ଲୁଚି ଯିବା ଶ୍ରେୟସ୍କର, ନ ହେଲେ ତମେ ତଳକୁ ଖସିଯିବ ସମାଜର ଆଖିରେ । ଏଠି ସବୁ ଚଳେ, ହ୍ୱାରାହାରୀ (ଅନ୍ୟ ଅର୍ଥରେ ନର୍ମାଲ୍) ମଣିଷ ପାଇଁ । ଅର୍ଥାତ୍ ଏକା ସାଙ୍ଗରେ ପତ୍ନୀ ପରିବାର ସୁଖ, ଏକାଧିକ ପ୍ରଣୟିନୀଙ୍କ ସହିତ ପ୍ରେମ, ଏବଂ ଉନ୍ମୁକ୍ତ ଯୌନବିହାର । ତେଣୁ ଟୁରିଷ୍ଟଙ୍କୁ ଖୋଲାଖୋଲି ଆମନ୍ତ୍ରଣ କରାଯାଏ, ରାସ୍ତାରେ ହେଉ ଅବା ହୋଟେଲ୍ ରୁମରେ - ୱେଲ୍‌କମ୍ ଡିଅର୍ ସାର୍ ଏହି ସ୍ୱର୍ଗପୁରୀକୁ, ଏହି ସମସ୍ତ ଅପ୍‌ସରା ଅପେକ୍ଷା କରି ରହିଛନ୍ତି ଆପଣଙ୍କ ପାଇଁ, ମେନୁକାର୍ଡ଼ ରହିଲା ଆପଣଙ୍କ ପାଖରେ । ମୁଁ କାର୍ଡ଼ର ଉପଯୋଗ କରିବାକୁ ଚାହିଁଲି ନାହିଁ । କିନ୍ତୁ ପାଖରେ ଥିବା ଗୋଟିଏ ନାଇଟ୍‌କ୍ଲବ୍‌ର ନିଅନ୍‌ଲାଇଟ୍ ଆମନ୍ତ୍ରଣକୁ ଅସ୍ୱୀକାର କରିପାରିଲି ନାହିଁ । ସେଇଥିଲା ମୋର ପ୍ରଥମ ନାଇଟ୍ କ୍ଲବ୍‌ର ଅନୁଭୂତି ଏବଂ ମୋର ଗଳ୍ପ 'ପୁଅ କାନ୍ଦୁଛି'ର ମୂଳାଧାର । ମଧ୍ୟ ମୋର ପ୍ରଥମ ହିନ୍ଦୀରେ ଅନୁଦିତ ଏବଂ ପ୍ରକାଶିତ

ହୋଇଥିବା ଗଳ୍ପ । ତାହା ପ୍ରଥମେ ପ୍ରକାଶ ପାଇଲା "ସାରିକା" (ମେ, ୧୯୬୯)ରେ, କିନ୍ତୁ ସେମାନେ ତା ନାଆଁ ଦେଇଥିଲେ "ଆଦିମ ଆକାଶ" । ଏଇ ନାଆଁରେ ମଧ୍ୟ ଗଳ୍ପଟି ସ୍ଥାନିତ ହୋଇଛି କମଲେଶ୍ୱରଙ୍କ ଦ୍ୱାରା ୧୯୯୪ରେ ସଂକଳିତ ଓ ସଂପାଦିତ "ଭାରତୀୟ ଶିଖର କଥା କୋଷ, ଓଡ଼ିଆ କାହାନୀୟାଁ"ରେ ।

ଅତି ଦୟନୀୟ ମୋ 'ପୁଅ କାନ୍ଦୁଛି'ର ନାୟକ ରାଧାନାଥ ଜଣକ । ବିଚରା ବିଅର୍ ପିଇଲା, ଉପଭୋଗ କଲା, ଅଥଚ କାନ୍ଦିଲା ଘରେ ଛାଡ଼ି ଆସିଥିବା ସ୍ତ୍ରୀ ସୁମି, କାନ୍ଦୁରା ପୁଅ, ଆଉ ମୁତୁରୀ ଝିଅକୁ ମନେ ପକାଇ । ଯାହାହେଉ ଟଳଟଳ ହୋଇ ପଦାକୁ ବାହାରି ଆସିଲା ପରେ ସେ କହିଲା ନାହିଁ କି, ଯେ ସେ ସୁମିକୁ କହିବ ସବୁକଥା ଘରକୁ ଫେରିଗଲେ ? ଆଶା କରାଯାଏ ସେଇଥିରେ ସେ ନିଜକୁ ଖଲାସ କରିଦେଇ ପାରିଥିବ, ମୁକୁଳି ଯାଇଥିବ ସେଦିନ ରାତିର ସେଇ 'ବିଦେଶୀ' ବିଭ୍ରାନ୍ତିରୁ । ପୁଣି ଆଉ କେବୁଟା ନାଇଟ୍ କ୍ଲବ୍‌ର ଗରାଖ ନ ହେବା ଯାଏଁ ।

ସାଏଗନ୍‌ର ବିଦେଶ ଭିନ୍ନ ପ୍ରକାର ଥିଲା । ବ୍ୟାଂଗ୍‌କକ୍‌ର ଲୋକଗହଳି ନ ଥିଲା ସେଠି । ତଥା ନାନା ଧ୍ୱନି, ବର୍ଣ୍ଣ ଏବଂ ଗଂଧର ଉଗ୍ର ସମାବେଶ । ହେଲେ ସଂଜବେଳେ ସେଥିର ପ୍ରଶସ୍ତ ପରିଚ୍ଛନ୍ନ ଆଭିନିଉମାନଙ୍କରେ ବୁଲୁବୁଲୁ ତମକୁ ଶୁଣିଲା ପରି ଲାଗିବ କେଉଁ ସଂଭ୍ରାନ୍ତ 'କଟେଜ୍' ଭିତରୁ, କେତେ କିଣିକିଣି, ଟୁଂଗଟାଂଗ୍, ମଧ୍ୟ ସଂଗୀତର ପଦେ ଏବଂ ହଠାତ୍ ଉର୍ଦ୍ଧ୍ୱକୁ ଉଠିଥିବା ହୋ' ହୋ' ହସ । ଅର୍ଥାତ୍ ଘରୋଇ ପାର୍ଟି ଚାଲିଛି ସେଠି । କାଁ ଭାଁ ନୁହେଁ, ଏକାଧିକ ଜାଗାରେ । ଏବଂ ଦିନବେଳେ କର୍ମରତ ନାରୀପୁରୁଷଙ୍କ ଗତିଗମନ ଭିତରେ ତମକୁ ଦିଶିଯିବ ଫୁଟ୍‌ପାଥ୍‌ରେ ଚାଲୁଥିବା କେତେ ଲହୁଣୀରଂଗ ତରୁଣୀଙ୍କ ଚରଚର ଚାଲି । ତାଙ୍କ ପାରଂପରିକ ସିଲ୍କ ପାଇଜାମା ଏମିତି ଭାବରେ କଟା ହୋଇଥାଏ ମଝିରୁ ଯେ ଜାନୁଯୁଗଳ ସୁଦୃଶ୍ୟ ହୁଏ ନାହିଁ ସିନା, ତାର ଝଲକ ନିଶ୍ଚୟ ତମ ଆଖିରେ ପଡ଼ିବ । ମୋଟ ଉପରେ ଏକଦା ଫରାସୀଅଧିକୃତ ରାଜ୍ୟର ରାଜଧାନୀ ସାଏଗନ୍‌ରେ ଫରାସୀ ଭୋଗବିଳାସର ନମୁନା ମିଳେ, ତଥା ସେଥିର ସୌଖୀନ କଳାତ୍ମକତା । ଏଣେ ସ୍ୱଦେଶୀ ବୌଦ୍ଧଧର୍ମରୁ ଉଦ୍‌ଭୂତ ଏକପ୍ରକାର ଶାନ୍ତଭାବ । ଯାହାର ଗୋଟିଏ ପାଖ ହେଉଛି ପ୍ରତ୍ୟକ୍ଷ ସୁଖବୋଧ ଯଥା ଉପରୋକ୍ତ ଝିଅମାନଙ୍କ ମୁହଁରେ ଲାଖି ରହିଥିବା ହାସ୍ୟରେଖା । ଏବଂ ଅପର ପାଖ ହେଉଛି ଶୁଖୁଆ, ମାଛ ଶସ୍ ଆଦି ଘରତିଆରି ଖାଦ୍ୟଦ୍ରବ୍ୟକୁ ନେଇ ବାଉଁଶ ଭାର ବୋହି ଧପାଲି ଚାଲିଥିବା ବେପାରୀର ମୁହଁରେ ମାଖି ରହିଥିବା ସହନଶୀଳତା । କ୍ୱଚିତ୍ ମୁଁ କେଉଁ କ୍ଲେଶର କୁଂଚନ ଦେଖିଛି ସେମାନଙ୍କ ମୁହଁରେ, ପିଲାରୁ ବୁଢ଼ା ଯାଏଁ, ସେମାନେ ଯେଉଁ ଶ୍ରେଣୀର ହୁଅନ୍ତୁ ନା କାହିଁକି । ତାଛଡ଼ା ସାଏଗନ୍ ସହର ହେଉଛି ସାଏଗନ୍ ନଈ କୂଳରେ ଥିବା ଗୋଟିଏ ବନ୍ଦର, ଯେଉଁଠି ଜାହାଜ ରହେ କିଛି ସମୟ, ହୁଏତ କିଛି ଦିନ ଏବଂ ନାବିକମାନେ ଶୃଙ୍ଖଳା ଭୂଇଁକୁ

ଓହ୍ଲେଇ ଆସନ୍ତି ଫୂର୍ତ୍ତି କରିବା ପାଇଁ । ସେହେତୁ ସାଏଗନ୍ ମଧ୍ୟ ଚିରାଚରିତ ଯୌନବିହାରର ଖୋରାକ୍ ଯୋଗାଏ ନାବିକମାନଙ୍କ ପାଇଁ । ହେଲେ ସେଥିର ଆମନ୍ତ୍ରଣ ଏତେ ଉଗ୍ର ଏବଂ ଆକ୍ରମକ ନୁହେଁ ବ୍ୟାଂଗ୍‌କକ୍ ପରି । ସେ ଥାଏ ତା ଜାଗାରେ, ଠିକଣା ଲୋକଙ୍କୁ ସୁଖ ଦେବା ପାଇଁ ।

କିନ୍ତୁ କେବଳ ନାବିକମାନେ କଣ ଏହି ପ୍ରକାର ଆନନ୍ଦର ଗରାଖ ହେବାର ଯୋଗ୍ୟ, ଆଉ କେହି ନୁହନ୍ତି ? ବିଦେଶରୁ ଆସିଥିବା ଆଉ କଣ କେହି ନ ଥାଆନ୍ତି, ସାଧାରଣତଃ ଯେଉଁମାନେ କାଲି ସକାଳେ ଫେରିଯିବେ ତାଙ୍କ ଗାଆଁକୁ ? ଏଠି ତାଙ୍କର କେଉଁ ଘର ନାହିଁ କି ଘରକରଣା, ତେଣୁ ସେମାନଙ୍କର ମଧ୍ୟ କିଛି ପାଇବା ଉଚିତ ନୁହେଁ କି ସେଇ ଆନନ୍ଦ ପସରାରୁ ? ବ୍ୟାଂଗ୍‌କକ୍ ତୁଳନାରେ ସାଏଗନ୍‌ରେ ଘର କରି ରହିଥିବା ଭାରତୀୟଙ୍କ ସଂଖ୍ୟା ନଗଣ୍ୟ, କିନ୍ତୁ ସେଇ ସମୟକୁ ଥୋକେ ଉର୍ଦ୍ଧିପିଂଧା ଭାରତୀୟ ରହିଥିଲେ ସେଠି । ଭାରତୀୟ ସେନାବାହିନୀର ଲୋକେ, ଯେଉଁମାନେ ସଂଯୁକ୍ତ ରାଷ୍ଟ୍ରସଂଘ (United Nations Organisation) ତରଫରୁ ରହିଥିଲେ ସାଏଗନ୍‌ରେ, ତାଙ୍କ ହେଡ୍ କ୍ୱାଟର୍ସ ହିସାବରେ, ଗଣତାନ୍ତ୍ରିକ ଦକ୍ଷିଣ ଭିଏଟ୍‌ନାମ ଏବଂ କମ୍ୟୁନିଷ୍ଟ ଉତ୍ତର ଭିଏଟ୍‌ନାମ ମଧ୍ୟରେ ସ୍ଥାପିତ ଯୁଦ୍ଧବିରତି ଉପରେ ନଜର ରଖିବା ପାଇଁ । ହେଲେ ମୁଁ ଦେଖିବାରେ ଓ ଜାଣିବାରେ, ଅଜସ୍ର ଅବସର ଥିଲା ତାଙ୍କ ପାଖରେ, ସାଏଗନ୍‌ରୁ ମିଳୁଥିବା ସୁଖର ଅତିଥି ହେବା ପାଇଁ । ସେମାନଙ୍କ ମଧ୍ୟରୁ ଅନେକେ ମୋର ବନ୍ଧୁ ହୋଇ ପାରିଥିଲେ ସେଇ କେତେ ଦିନ ଭିତରେ । ତେଣୁ ମୁଁ ସେଇ ବଂଧୁତାର ସୁଯୋଗ ନେଇ ଗପଟିଏ ଲେଖି ନ ଥାଆନ୍ତି କେମିତି ? ଲେଖିଛି । ତା ନାଆଁ "ସାଏଗନ୍‌ରେ ସୁଖ" । କିଭଳି ମୁକ୍ତିବୋଧ ଅବା ପଳାୟନବାଦ ଥିଲା ସେଥିରେ ଏବଂ କେତେଦୂର କେଉଁ ବାଂଛିତ ସୁଖ ମିଳିଥିଲା ତାଙ୍କୁ, ତାରି ରୂପାୟନ ମାତ୍ର । ଏବଂ ମୋର ବିଶ୍ୱାସ ଯେ ହାଲୁକା ବିଦ୍ରୂପ ଠାରୁ ସହାନୁଭୂତିର ମାତ୍ରା ବେଶି ଅଛି ସେଥିରେ, ମେଜର୍ ରାୟ, କ୍ୟାପ୍ଟେନ୍ ଚକ୍ରବର୍ତ୍ତୀ ଓ କ୍ୟାପ୍ଟେନ୍ ସହାୟ ଓଗେରଙ୍କ ପାଇଁ । ଭାରତକୁ ଫେରି ଆସିଲା ପରେ ମୁଁ ମିସେସ୍ ସହାୟଙ୍କ ହାତରଂଧା ବୁଟଛତୁ ଓ ମାଛଭଜାର ଆତିଥ୍ୟ ସ୍ୱୀକାର କରିପାରି ନାହିଁ, ସେକଥା ଭିନ୍ନ ।

ମୁଁ ଯେଉଁ କାମ ପାଇଁ ଆସିଥିଲି ଏଠିକି, ତାକୁ ତୁଲେଇବାରେ କୌଣସି ଅସୁବିଧା ହୋଇ ନଥିଲା ମୋର । ଦକ୍ଷିଣ ଭିଏଟ୍‌ନାମ ସରକାର ମିସେସ୍ ତ୍ରାଂଗ୍ ନାମକ ଜଣେ କର୍ମକର୍ତ୍ତାଙ୍କୁ ଖଂଜି ଦେଇଥିଲେ ମୋ ପାଇଁ, ଯେ ମୋତେ ସାହାଯ୍ୟ କରିବେ ମୋ କାମରେ । ମୁଁ ଚାହୁଁଥିବା ତଥ୍ୟ ଯୋଗାଇ ଦେବେ ମୋତେ, ତାଙ୍କ ସଂଚୟ ଯୋଜନା ସହିତ ସଂପୃକ୍ତ ଲୋକମାନଙ୍କ ସାଙ୍ଗରେ ମୋର ଚିହ୍ନା କରେଇ ଦେବେ ଏବଂ ସର୍ବୋପରି ଅତିଥିଙ୍କର ବ୍ୟକ୍ତିଗତ ସୁଖସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ରଖିବେ । ଏବଂ ସେ କେଉଁଥିରେ ହେଲେ ଊଣା କରିନାହାନ୍ତି । ବିଶେଷତଃ କାଳେ ମୁଁ ବୋର୍ ହେବି ସାଏଗନ୍‌ରେ, ସେଇଲାଗି ସେ ମୋତେ ନେଇ ଯାଇଥିଲେ ସମୁଦ୍ର ଉପକୂଳରେ

ଥିବା Cap. St Jacques ଏବଂ ଉତ୍ତରରେ ଥିବା କାଶ୍ମୀର ଉପତ୍ୟକା ତୁଲ୍ୟ Dalat ନାମକ ଦୁଇଟି ଜାଗାକୁ, ଯାହା ନିଃସନ୍ଦେହରେ ମୋର ଉପଭୋଗ୍ୟ ହୋଇଥିଲା ।

କିନ୍ତୁ ତଥାପି, ଦୁଃଖର ବିଷୟ, ଯେ ମୁଁ ମୋର ନିର୍ଦ୍ଧାରିତ ତିନିମାସର ରହଣିକୁ ପୂରା କରିପାରିଲି ନାହିଁ ସାଏଗନ୍‌ରେ । ମୁଁ ମୋ କାମ ଶେଷ କଲି, ଏକ ବିସ୍ତାରିତ ରିପୋର୍ଟ ବାଢ଼ି ଦେଇ ଏଠିକା ସରକାରଙ୍କ ଅବଗତି ପାଇଁ, କିନ୍ତୁ ମୁଁ ଭାରତ ସରକାରଙ୍କ ଅନୁମତି ମାଗିଲି ଯଥାଶୀଘ୍ର ଫେରିଯିବା ଲାଗି । ତିନିମାସ ପୂରା ନ ହେଲେ ନାହିଁ । କାରଣ କ୍ରମଶଃ ମୋତେ ସେଠି ଅଧିକରୁ ଅଧିକ ଏକୁଟିଆ ଲାଗିଲା ଏବଂ ସେଇ ଏକୁଟିଆପଣ ଘନେଇ ଯାଇ ଏକ ବିଷାଦରୋଗ (depression) ରେ ପରିଣତ ହେଲା ଯେତେବେଳେ ମୁଁ ଗୋଟାଏ ଦାରୁଣ ଦୁଃସଂବାଦ ଶୁଣିବାକୁ ପାଇଲି । ଘରୁ ଚିଠି ଆସିବା ଆଗରୁ ସାଏଗନ୍‌ରେ ମିଳୁଥିବା ଭାରତୀୟ ଇଂରାଜୀ ଖବରକାଗଜରୁ । ଯେ ମୋର ଶ୍ୱଶୁର ବି. ଦାସ ଏମ୍.ପି. ଆଉ ନାହାନ୍ତି । ହଠାତ୍ ରକ୍ତଚାପଜନିତ ଷ୍ଟ୍ରୋକ୍‌ରେ ଅଚେତ ହୋଇ ପଡ଼ି ଦିନକ ଭିତରେ ଚାଲିଯାଇଛନ୍ତି ସେପୁରକୁ । ସେ ନିଃସନ୍ଦେହରେ ମୋର ଦ୍ୱିତୀୟ ବାପା ଥିଲେ, ଆଇନ୍‌ଗତ ସମ୍ବନ୍ଧର ଯଥେଷ୍ଟ ଉର୍ଦ୍ଧ୍ୱରେ । ତାଙ୍କଠାରୁ ମିଳିଥିବା ସ୍ନେହଶ୍ରଦ୍ଧା ଛଡ଼ା ସେ ଯେଉଁ ଅଭିଜ୍ଞତା ଆଣିଦେଇଥିଲେ ମୋତେ, ମୋ କର୍ମଜୀବନର ସାଫଲ୍ୟ ପାଇଁ, ତା ଭୁଲିବାର ନୁହେଁ ।

ଭାରତ ସରକାର ମୋ ଅନୁରୋଧକୁ ସ୍ୱୀକାର କଲେ । ଦକ୍ଷିଣ ଭିଏତ୍‌ନାମ ସରକାର ମଧ୍ୟ ଆମ ସରକାରଙ୍କୁ ଜଣାଇଲେ ଯେ ସେମାନେ ମୋ କାମରେ ସନ୍ତୁଷ୍ଟ । ଏବଂ ସାଏଗନ୍‌ର ମେୟର୍ ଯେଉଁ ବିଦାୟକାଳୀନ ଡିନ୍‌ରର ଆୟୋଜନ କରିଥିଲେ ମୋ ପାଇଁ, ସେଥିରେ ଗୋଟିଏ ସ୍ମରଣଯୋଗ୍ୟ ବସ୍ତୁ ଥିଲା, ଆତିଥ୍ୟର ଆଡ଼ମ୍ବର ଛଡ଼ା । ତାହା ସେମାନଙ୍କର ଉଚ୍ଚବର୍ଗୀୟ ପାରମ୍ପରିକ ଭୋଜନ, ଯାହା ମିସେସ୍ ଟ୍ରାଂଗ୍ କହିଲେ ମୋତେ । ଯେଉଁଥିରେ କେଜାଣି କେତେ ରକମର ମାଛ, ମାଂସ, କଂକଡ଼ା ଇତ୍ୟାଦିର ବ୍ୟଂଜନ, ଗୋଟିଏ ପରେ ଗୋଟିକର ଶୋଭାଯାତ୍ରା ପରେ ସେଥିର ସମାପ୍ତି ଘୋଷଣା କରେ ଏକ ବିଶିଷ୍ଟ ବସ୍ତୁ । ଏବଂ ତାକୁ ଆମ ପଖାଳ ଛଡ଼ା ଆଉ କିଛି କହି ହେଉ ନାହିଁ । ହେଲେ ମୋତେ ଭଲ ଲାଗିଲା । ଏବଂ ମୋତେ କୁହାଗଲା ଯେ ଏହା ଭୋଜନରେ ଭାରସାମ୍ୟ ଆଣିଦିଏ, ତେଣୁ ଶରୀରକୁ ହିତ ।

ଏହି ଭାବରେ ମୁଁ ଦିଲ୍ଲୀକୁ ଫେରିଆସିଲି । କିଛି ବାଧା ହେଲା ନାହିଁ ମୋ ଚାକିରୀକୁ । କିନ୍ତୁ ମୋ ନିଜ ମନରେ ଗୋଟାଏ ଦୁଃଖ ରହିଗଲା ଯେ ଏହାକୁ ମୋ କର୍ମଜୀବନର ଏକ ସଫଳ କାହାଣୀ ବୋଲି କୁହାଯାଇ ନପାରେ ।

ଫେରି ଆସିଲା ପରେ ମୁଁ ପ୍ରାୟ ଚାରିମାସ ପାଇଁ ଆଉ ଗୋଟିଏ ମନ୍ତ୍ରଣାଳୟକୁ (Ministry of Works, Irrigation and Power) ଗଲି, ଡେପୁଟି ସେକ୍ରେଟେରୀ ତଥା ସେମାନଙ୍କର ଆର୍ଥିକ ପରାମର୍ଶଦାତା ହିସାବରେ । ଏବଂ ତାପରେ ମୋତେ ଗୋଟାଏ କାମ

ମିଳିଲା ପ୍ରାୟ ବର୍ଷକ ପାଇଁ, ଯାହାର ପ୍ରକୃତରେ ବିଶେଷ କିଛି ସଂପର୍କ ନ ଥିଲା ମୋର ଅଡ଼ିଟ୍ ଆକାଉଣ୍ଟାସ୍ ଏବଂ ଫାଇନାନ୍ସ ସମ୍ବନ୍ଧୀୟ ଅଭିଜ୍ଞତା ସାଙ୍ଗରେ । କାରଣ ମୁଁ ହେଲି ଗୋଟିଏ ଉଚ୍ଚସ୍ତରୀୟ ବେସରକାରୀ ଅନୁସଂଧାନକାରୀ ଦଳର ସରକାରୀ ସଚିବ । ମୋର ସଂଜ୍ଞା ହେଲା -

Secretary to the Study Team on Social Welfare and Backward Classes : Committee on Plan Projects.

ଯୋଜନା କମିଶନଙ୍କ ଦ୍ୱାରା ଏଇ ଦଳ ଗଠିତ ହୋଇଥିଲା ଏବଂ ନିଯୁକ୍ତି ପତ୍ରରେ କୁହାହୋଇଥିଲା ଯେ ସେମାନେ ସମାଜକଲ୍ୟାଣ ଏବଂ ଆଦିବାସୀମାନଙ୍କ ପ୍ରଗତି ପାଇଁ ଯେଉଁସବୁ ଯୋଜନାବଦ୍ଧ କାମ କରାହେଉଛି ଦେଶରେ, ତାର ସମୀକ୍ଷା କରି ଗୋଟିଏ ରିପୋର୍ଟ ଦେବେ ଭାରତ ସରକାରଙ୍କୁ । ତାର ଅଧ୍ୟକ୍ଷା ଥିଲେ ଶ୍ରୀମତୀ ରେଣୁକା ରାୟ, ଏମ୍.ପି. ଏବଂ ଜଣେ ସମାଜତତ୍ତ୍ୱବିଦ୍ ଓ କେତେକ ସମାଜକଲ୍ୟାଣ ଏବଂ ଆଦିବାସୀ ଉନ୍ନୟନ ଦିଗରେ କାମ କରୁଥିବା ବିଶିଷ୍ଟ ବ୍ୟକ୍ତି ଏବଂ ଜଏଣ୍ଟ ସେକ୍ରେଟେରୀ ପାହ୍ୟାରେ ଥିବା ଜଣେ ଆଇ.ସି.ଏସ୍. ଅଫିସର୍ ତାର ସଦସ୍ୟ ଭାବରେ ନିଯୁକ୍ତ ହୋଇଥିଲେ । ଭାରତର ବିଭିନ୍ନ ରାଜ୍ୟର ମୁଖ୍ୟମନ୍ତ୍ରୀ ତଥା ଆଦିବାସୀ ଓ ସମାଜକଲ୍ୟାଣର ଦାୟିତ୍ୱରେ ଥିବା କର୍ମକର୍ତ୍ତାମାନଙ୍କ ସହିତ ଆଳାପ ଆଲୋଚନା ପରେ ଟିମ୍‌କୁ ଯଥାଯୋଗ୍ୟ ପରାମର୍ଶ ଦେବା ସହ, ଚୂଡ଼ାନ୍ତ ରିପୋର୍ଟର ଚିଠା ପ୍ରସ୍ତୁତ କରିବା ଥିଲା ମୋର ପ୍ରଧାନ କାମ । ଏଇ ସଂପୂର୍ଣ୍ଣ ନୂଆ ଧରଣର କାମରେ ମୁଁ ମଜ୍ଜି ଯାଇଥିଲି । ଟିମ୍‌ର ସମସ୍ତ ସଦସ୍ୟ ଏବଂ ବିଶେଷତଃ ଅଧ୍ୟକ୍ଷା ଶ୍ରୀମତୀ ରାୟଙ୍କ ପ୍ରତି ମୁଁ କୃତଜ୍ଞ ଯେ ରିପୋର୍ଟରେ ମୋର ନିଷ୍ଠା ଏବଂ ଅକ୍ଳାନ୍ତ ପରିଶ୍ରମର ପ୍ରଶଂସା କରାଯାଇଛି । ହେଲେ ମୁଁ କେବଳ ଜଣେ ଉଚ୍ଚପଦାଧିକାରୀ ସଦସ୍ୟଙ୍କର ବିସ୍ମୟଜନକ ଅଜ୍ଞାନ ବିଷୟରେ କିଛି ନ କହି ରହିପାରୁନାହିଁ, ଜଣେ ସ୍ୱାଭିମାନୀ ଓଡ଼ିଆ ହିସାବରେ । ଘଟଣା ଏହି ପ୍ରକାର - ସେମାନେ ଯେତେବେଳେ ଓଡ଼ିଶାକୁ ଆସିଲେ, ମୁଁ ସେମାନଙ୍କୁ କୋଣାର୍କର ଭଗ୍ନ ସୂର୍ଯ୍ୟ ମନ୍ଦିର ଏବଂ ଭୁବନେଶ୍ୱରର ବିଭିନ୍ନ ମନ୍ଦିର ଦେଖାଇ ଆଣିଥିଲି । ଏବଂ କହିବା ବାହୁଲ୍ୟ ଯେ ସେମାନେ ସେଥିର ଅନୁପମ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟରେ ମୁଗ୍‌ଧ ହୋଇଥିଲେ । କିନ୍ତୁ ତାପରେ ସଦସ୍ୟ ଶ୍ରୀଯୁକ୍ତ ଜେ.ଏସ୍. ଲାଲ୍, ଆଇ.ସି.ଏସ୍. ମୋତେ ପଚାରୁଛନ୍ତି- ମିଷ୍ଟର୍ ଦାସ, ଏଇସବୁ କାମ କଣ ଓଡ଼ିଆମାନେ କରିଥିଲେ ? ସତେକି କେଉଁ ମିଶରୀୟ କି ମାୟା ସଭ୍ୟତା ଥିଲା ଏଇ ଅଞ୍ଚଳରେ, ଯାହା ଲୁପ୍ତ ହୋଇଯାଇଛି । ଏବଂ ସେଇମାନେ ହିଁ କରିଥିବେ ଏହିପ୍ରକାର ବିରାଟ ସୁନ୍ଦର କାଳଜୟୀ କାମ, ଆଜିର ଦରିଦ୍ର ଅନୁନ୍ନତ ଓଡ଼ିଆ ନୁହଁନ୍ତି । ମୁଁ ମୋର ରାଗକୁ ସଂଭାଳି ନେଇ ଯାହା କହିବାର କହିଲି, ଯେଉଁଥିରେ ତାଙ୍କର ଅଜ୍ଞାନ ପ୍ରତି ଆକ୍ଷେପ ନ ଥିଲା ନୁହେଁ । ହେଲେ ବେଳେବେଳେ ମୋର ମନ ହୁଏ, ମୋ ଦୀର୍ଘ ପ୍ରବାସୀ ଜୀବନର ବିଭିନ୍ନ ଅନୁଭୂତିକୁ ନେଇ, ଯେ ଲାଲ୍ ସାହେବଙ୍କ ଧାରଣା ଭିନ୍ନ ନୁହେଁ ଭାରତର

ଅନେକ ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ଠାରୁ । ଏବଂ ସେଦିଗରେ ଆମକୁ ମଧ୍ୟ ଆମର ଦୋଷ ସ୍ୱୀକାର କରିବାକୁ ପଡ଼ିବ । ଆମେ ନିଜକୁ ଯଥାବିଧି ଉପସ୍ଥାପିତ କରିପାରିନାହୁଁ ସର୍ବଭାରତୀୟ କ୍ଷେତ୍ରରେ ।

ଏଇ କାମ ସରିଲା ପରେ ମୁଁ ଫେରି ଆସିଲି ମୋ ଅଡ଼ିଟ୍ ଡିପାର୍ଟମେଣ୍ଟକୁ । ଏବଂ ଖୁସି ହେଲି ଯେ ମୋର ଅନୁରୋଧ କ୍ରମେ ସେମାନେ ମୋତେ ପଠାଉଛନ୍ତି ଓଡ଼ିଶାକୁ । ଭୁବନେଶ୍ୱରକୁ ଆସି ଯାଇଥିବା ଏ.ଜି. ଓଡ଼ିଶା ଅଫିସ୍‌ରେ ଡେପୁଟି ଆକାଉଣ୍ଟାଣ୍ଟ୍ ଜେନେରାଲ୍ (ଆଡ଼୍‌ମିନ୍‌ଷ୍ଟ୍ରେସନ୍) ପଦରେ । ସେଇ ପ୍ରଥମ ଓ ଶେଷଥର ପାଇଁ ମୁଁ ଓଡ଼ିଶାରେ ଥିଲି, ଜଣେ ସର୍ବଭାରତୀୟ ସର୍ଭିସ୍‌ର ସଦସ୍ୟ ହିସାବରେ ।

କିନ୍ତୁ ନିଜ ଘରେ ଥାଇ କାମ କରିବାର ସୁଖ ଚାରିମାସରୁ ବେଶି ଟପି ଯାଇ ପାରିଲା ନାହିଁ । କାରଣ ମୋତେ ପ୍ରମୋସନ୍‌ରେ ମାନ୍ଦ୍ରାଜ ଯିବାକୁ କୁହାଗଲା । ସିନିୟର୍ ଡେପୁଟି ଆକାଉଣ୍ଟାଣ୍ଟ୍ ଜେନେରାଲ୍ । ଏ.ଜି. ଆନ୍ଧ୍ରପ୍ରଦେଶର ଯେଉଁ ବ୍ରାଂଚ୍ ଅଫିସ୍ ତଥାପି ରହିଥିଲା ମାନ୍ଦ୍ରାଜରେ, ତାର ବଡ଼କର୍ତ୍ତା ଅର୍ଥାତ୍ ହେଡ଼ ଅଫ୍ ଦି ଅଫିସ ହୋଇ । ଡିସେମ୍ବର ୧୯୫୯ ।

ହେଡ୍ ଅଫ୍ ଦି ଅଫିସ୍ ହେବା ଗୋଟିଏ ନୂଆ ଅନୁଭୂତି ଥିଲା ମୋ ପାଇଁ । କେଉଁ ଅଫିସର ଅନ୍ୟତମ ଅଧିକାରୀ ନୁହେଁ । ଛୋଟ ହେଉ ବଡ଼ ହେଉ, ଗୋଟିଏ ଅଫିସର ମୁଖ୍ୟ । ସେଥିର ଦାୟିତ୍ୱ ଭିନ୍ନ ଏବଂ ସ୍ୱତନ୍ତ୍ର । ଯଥେଷ୍ଟ ମର୍ଯ୍ୟାଦା, ମଧ୍ୟ ମୁଣ୍ଡବଥା । ଏଠି ତମର ସଂପର୍କ କେବଳ ଜଣଜଣିକିଆ କର୍ମଚାରୀମାନଙ୍କ ସହିତ ନୁହେଁ, ଯେଝାଯେଝା ଅଫିସ କାମକୁ ନେଇ । ଏଠି ସେମାନଙ୍କର ବିଭିନ୍ନ ସଂଗଠନ ସାଙ୍ଗରେ ମଧ୍ୟ ତମକୁ ଉଚିତ ବ୍ୟବହାର କରିବାକୁ ପଡ଼ିବ । ପ୍ରଧାନତଃ ଦୁଇଟି ସହିତ - ତାଙ୍କର ଟ୍ରେଡ୍ ୟୁନିୟନ୍‌ଧର୍ମୀ ଆସୋସିଏସନ୍ ଏବଂ ଅବସର ବିନୋଦନ ପାଇଁ ଉଦ୍ଦିଷ୍ଟ ରିକ୍ରିଏସନ୍ କ୍ଲବ୍ । ଯାହାହେଉ କ୍ରମଶଃ ମୋର ମନେ ହେଲା ଯେ ଏଇ ଦାୟିତ୍ୱକୁ ତୁଲେଇବାକୁ ହେଲେ ମୋତେ ନିଜକୁ ଗୋଟାଏ ''ବାପ'' ବୋଲି ମନେ କରିବାକୁ ହେବ ! କିନ୍ତୁ ମୁଁ କଣ ଏଠି ନିଭେଇ ପାରିବି ସେହିଭଳି ଗୋଟାଏ ଭୂମିକା ? ମୋର ଆସ୍ପର୍ଦ୍ଧା କିଛି କମ ନୁହେଁ ତ ?

ତେବେ ଆମ ସଂପର୍କ ସୁରୁଖୁରୁରେ ଗତି କଲା । ମଧ୍ୟ ମୋର ମନେ ହେଲା ବେଳେବେଳେ, ଯେ ସେମାନେ ମୋତେ ପ୍ରକୃତରେ ଭଲ ପାଆନ୍ତି । ଏବଂ ମୋର ଉଚିତ ହେଉଛି ତାକୁ ସ୍ୱୀକାର କରିବା ଓ ତାର ପ୍ରତିଦାନ ଦେବା । ସେଥିରେ ମୋ ପ୍ରଶାସନିକ ଇମେଜ୍‌ରେ ଆଂଚ ଲାଗିଲେ ଲାଗୁ - ଆଇ ଡୋଣ୍ଟ କେୟାର୍ । ବୋଧହୁଏ ଏଇ ମନୋଭାବର ବଶବର୍ତ୍ତୀ ହୋଇ ମୁଁ ଉଚିତରୁ ଅଧିକ ଉପକାର କରିବାକୁ ଚେଷ୍ଟା କାଲି ସେମାନଙ୍କର । ତାଙ୍କ ଚାକିରୀ ସମ୍ବନ୍ଧୀୟ ଅଭାବ ଅସୁବିଧାକୁ ଦୃଢ଼ତାର ସହ ବାଢ଼ିଲି ଆମ ଡିପାର୍ଟମେଣ୍ଟର ବଡ଼କର୍ତ୍ତା ଅର୍ଥାତ୍ ଅଡ଼ିଟର୍ ଜେନେରାଲ୍‌ଙ୍କ ପାଖରେ, ଯାହା ମୋତେ ନ୍ୟାଯ୍ୟ ବୋଲି ମନେ ହେଲା ।

ଅଧିକା ଗ୍ରାଣ୍ଟ ଅଣେଇଲି ତାଙ୍କ ରିକ୍ରିଏସନ୍ କ୍ଲବ୍ ପାଇଁ । ଇତ୍ୟାଦି । ଫଳରେ ଗୋଟାଏ ଅପ୍ରତ୍ୟାଶିତ ପୁରସ୍କାର ମିଳିଲା ମୋତେ । କହୁଛି ଶୁଣନ୍ତୁ -

ରିକ୍ରିଏସନ୍ କ୍ଲବ୍‌ର ବାର୍ଷିକ ଉତ୍ସବରେ ସେମାନେ ମୋତେ ଡାକିଥିଲେ ମୁଖ୍ୟ ଅତିଥି ହେବା ପାଇଁ । ଭଲ କଥା । ଏହାହିଁ କରାଯାଏ ସାଧାରଣତଃ ଔପଚାରିକ କାଇଦା ହିସାବରେ । କିନ୍ତୁ ମୁଁ ଟିକିଏ ଆଶ୍ଚର୍ଯ୍ୟ ହେଲି ଯେତେବେଳେ ସେମାନେ କହିଲେ ଯେ ମ୍ୟାଡ଼ାମ୍ ବି ଆସିବେ, ସେ ପୁରସ୍କାରମାନ ବଢ଼େଇଦେବେ ବିଜେତାମାନଙ୍କ ହାତକୁ । ହେଲେ ମୁଁ ମାନିନେଲି ତାଙ୍କ କଥା । ଭାବିବାକୁ ଭଲ ଲାଗିଲା ଯେ ସେମାନେ ପ୍ରକୃତରେ ମୋତେ ଭଲ ପାଆନ୍ତି । ମ୍ୟାଡ଼ାମ୍ ମଧ୍ୟ ଆସିଲେ ଏବଂ ତାଙ୍କ ଭୂମିକା ନିଭାଇଲେ । ଯଥାବିଧି ସହାସ୍ୟ ବଦନରେ ପୁରସ୍କାରଗୁଡ଼ିକ ବଢ଼େଇ ଦେଉଥାଆନ୍ତି ବିଜେତାମାନଙ୍କ ହାତକୁ । ଶେଷକୁ ସଂଚାଳକ ଘୋଷଣା କଲେ ଆଉ ଗୋଟିଏ ସ୍ପେଶାଲ ପୁରସ୍କାର ଦେବାର ଅଛି ଜଣଙ୍କୁ । ଏଇଆ କହି ସେ ଗୋଟିଏ କାଗଜରେ ଗୁଡ଼ା ହୋଇଥିବା ଚିତ୍ରପଟ ଉନ୍ମୋଚନ କଲେ ଏବଂ ତାକୁ ବଢ଼େଇ ଦେଲେ ମ୍ୟାଡ଼ାମ୍‌ଙ୍କ ଆଡ଼କୁ । ଏବଂ କହିଲେ ଏଇଟିକୁ ମ୍ୟାଡ଼ାମ୍ ଦୟାକରି ବଢ଼େଇ ଦେବେ ତାଙ୍କ ପାଖରେ ବସିଥିବା ସାର୍‌ଙ୍କ ହାତକୁ । ସେ ଯେଉଁ ସ୍ନେହଶ୍ରଦ୍ଧା ଦେଖାଇଛନ୍ତି ଆମ ପ୍ରତି ଏବଂ ଯେଉଁଭଳି ଉପକାର କରିଛନ୍ତି ଆମର, ତାର ଯତ୍‌ସାମାନ୍ୟ ଅଂଗୀକାର ସ୍ୱରୂପ ।

ଏଁ ? ବିସ୍ଫାରିତ ନେତ୍ରରେ ମୁଁ ଅନେଇଲି ମୋତେ ମିଳିଥିବା ସ୍ପେଶାଲ୍ ପୁରସ୍କାରଟିକୁ । ମୋରି ଫଟୋ । ତାକୁ କେତେ ଖଂଜରେ ଉଠେଇ ନେଇଛନ୍ତି ସେମାନେ । ଆଉ ତାକୁ ଫ୍ରେମ୍‌ରେ ବଂଧେଇ ... ଗଡ୍ ! ମୁଁ ଅଭିଭୂତ ହୋଇ ପଡ଼ିଲି ।

ସେଇ ଫଟୋଟି ସଯତ୍ନରେ ରହିଛି ମୋ ପାଖରେ । ଏବଂ ଅଦ୍ୟାବଧି ଶୋଭା ପାଉଛି ଆମ ଘର କାନ୍ଥରେ କି କାଚ ଆଲମାରିରେ । ଏମିତି ଗୋଟିଏ ପୁରସ୍କାରକୁ ମୁଁ କେମିତି ଭଲା ଲୁଚେଇ କରି ରଖିଥାଆନ୍ତି ?

କିନ୍ତୁ ମାନ୍ଦ୍ରାଜରେ ମଧ୍ୟ ବର୍ଷଟାଏ ରହିପାରିଲି ନାହିଁ । ୧୯୬୧ରେ ମୋତେ ଡାକରା ଆସିଲା ଦିଲ୍ଲୀ ଯିବା ଲାଗି । ଏକାଉଣ୍ଟାଣ୍ଟ ଜେନେରାଲ୍ ସେଣ୍ଟ୍ରାଲ୍ ରେଭିନିଉଜ୍ (ଏ.ଜି.ସି.ଆର୍) ଅଫିସରେ ଅନ୍ୟତମ ସିନିଅର୍ ଡେପୁଟି ଆକାଉଣ୍ଟାଣ୍ଟ୍ ଜେନେରାଲ୍ ହୋଇ ।

ପୁଣି ଦିଲ୍ଲୀ । କିନ୍ତୁ ପୂର୍ବର ସରାଗ ଆଉ ନାହିଁ ଦିଲ୍ଲୀ ପ୍ରତି । ଯେଉଁ 'ବାପା' ମୋତେ ଦିଲ୍ଲୀକା ସହର୍ ଦେଖାଇଥିଲେ ଏବଂ ରାଜପ୍ରାସାଦରେ କାମ କରିବାର ସ୍ୱାଦ ଚଖେଇଥିଲେ ସେତ ଆଉ ନାହାନ୍ତି ଏଠି । ଶାଶୁ ବି ସହଜେ କଟକରେ ଯାଇ ଅଛନ୍ତି । ଆଉ ମାନ୍ଦ୍ରାଜରେ ହେଡ୍ ଅଫ୍ ଦି ଅଫିସ୍ ହୋଇ ବସିବା ଠାରୁ କେଉଁ ହିସାବରେ ଭଲ ଏଠି ନମ୍ବର ଟୁ କି ନମ୍ବର ଥ୍ରି ହୋଇ ଫାଇଲ୍ ଚଷିବା ? ତା'ଛଡ଼ା ଏହିପ୍ରକାର ଘନଘନ ବଦଳିରେ ଯେଉଁ ଅସୁବିଧା ହେଉଛି ମୋ ପିଲାଙ୍କ ପାଠପଢ଼ା ନେଇ, ତାକୁ କଣ ସେମାନଙ୍କର ବୁଝିବା ଉଚିତ

ନୁହେଁ ? ବିଶେଷତଃ ବାରବର୍ଷ ବୟସର ବଡ଼ଝିଅ ହୀନୁ ପାଇଁ । ପ୍ରଥମେ ଆସି ତାକୁ ଯେଉଁ ସ୍କୁଲରେ ନାଆଁ ଲେଖାଇଲି, ସେଠି ତାକୁ ତିରସ୍କୃତ ହେବାକୁ ପଡ଼ିଥିଲା, ତାମିଲ୍ ଦେଶର ସୁପ୍ରସିଦ୍ଧ ପର୍ବ 'ପୋଂଗଲ୍' ବିଷୟରେ ତାକୁ କିଛି ଜଣା ନ ଥିଲା ବୋଲି । ଭାଗ୍ୟକୁ ଗୋଟିଏ ଇଂରେଜି ମିଡ଼ିୟମ୍ ସ୍କୁଲ୍ ମିଳିଯାଇଛି ଏବେ ଏବଂ ସେ ଭଲ କରୁଛି । ଏଇକ୍ଷଣି ପୁଣି ଯିବ ଆଉ କେଉଁଠିକି, ଗୋଟାଏ ନୂଆ ସ୍କୁଲ୍‌ରେ ସିଲାବସ୍ ଅନୁଯାୟୀ ପାଠ ପଢ଼ିବା ପାଇଁ ? ପ୍ରଥମ ଥର ପାଇଁ ମୋର ମନେ ହେଲା ଯେ ଏଇ ଅଲ୍ ଇଣ୍ଡିଆ ସର୍ଭିସ୍‌ରେ ବାଲାନ୍ସସିଟ୍‌ର କ୍ରେଡ଼ିଟ୍ ସାଇଡ୍‌ରେ ଯାହା ଥାଉ ନା କାହିଁକି, ଡେବିଟ୍ ସାଇଡ୍‌ରେ କିଛି କିଛି କମ୍ ଆଇଟେମ୍ ନାହିଁ ।

ଯାହାହେଉ ପ୍ରତିବାଦ କରି ଲାଭ ନାହିଁ କିଛି । ସମଦଶାପନ୍ନ ଭାଇଭଉଣୀଙ୍କ ଅଭାବ ନାହିଁ ଆମ ଡିପାର୍ଟମେଣ୍ଟ୍‌ରେ । ଅଗତ୍ୟା ଦିଲ୍ଲୀକୁ ଗଲି ଏବଂ ନୂଆ ଅଫିସ୍‌ରେ କାମ କରିବାକୁ ଲାଗିଲି ।

କିନ୍ତୁ ଅଳ୍ପ କେଇ ମାସ ପରେ ଗୋଟାଏ ଫୋନ୍ ଆସିଲା ଆମ ବଡ଼କର୍ତ୍ତା ଅଡିଟର୍ ଜେନେରାଲ୍‌ଙ୍କ ଅଫିସରୁ - ମିଷ୍ଟର ଦାସ, ପ୍ରସ୍ତୁତ ଅଛନ୍ତି ଆପଣ ଆମେରିକା ଯିବା ଲାଗି ? ଡାଇରେକ୍ଟର୍ ଅଫ ଅଡ଼ିଟ୍, ଇଣ୍ଡିଆନ୍ ଆକାଉଣ୍ଟସ୍ । ହେଡ୍‌କ୍ୱାଟର୍ସ, ୱାଶିଂଗ୍‌ଟନ୍ ଡି.ସି । ଦି'ତିନି ବର୍ଷ ରହିବାକୁ ପଡ଼ିବ ସେଠି ... ।

ଏଭଳି ଏକ ଚମକପ୍ରଦ ପ୍ରସ୍ତାବ ପାଇଁ ମୁଁ ସତରେ ପ୍ରସ୍ତୁତ ନ ଥିଲି । ତେଣୁ କହିଲି, ମୁଁ ଭାବି କରି କହିବି କିଛି ଦିନ ପରେ । ସେଇଠୁ ସେ କହୁଛନ୍ତି, ଭାରପ୍ରାପ୍ତ ଅଫିସର୍ ଜଣକ -

''ଓ-କେ । କିନ୍ତୁ ବେଶି ଡେରି କରିବେ ନାହିଁ । ବାଏ ଦି ୱେ ମିଷ୍ଟର୍ ଦାସ, ହୋପ୍ ୟୁ ଡୋଣ୍ଟ୍ ମାଇଣ୍ଡ୍, ଆପଣଙ୍କର କେତୋଟି ପିଲା ?''

''ପାଞ୍ଚୋଟି । କିନ୍ତୁ କାହିଁକି ପଚାରିଲେ ସେ କଥା ?''

''ୱେଲ୍ ଫର୍‌ଗେଟ୍ ଇଟ୍ । ଇଟ୍ ୱାଜ୍ ଜଷ୍ଟ ଲାଇକ୍ ଦ୍ୟାଟ୍ ।'' ମାନେ ଭୁଲିଯାଆନ୍ତୁ ସେକଥା । ଏମିତି ପଚାରିଦେଲି । ତାପରେ ଗୋଟାଏ ନିରର୍ଥକ 'ହିଁ-ହିଁ' ହସ ।

କିନ୍ତୁ ପରେ ବୁଝିଲି ଯେ ସେ ମିଛୁଟାରେ ପଚାରି ନାହାନ୍ତି ସେକଥା । ବହୁ ସନ୍ତାନର ବାପାମାନଙ୍କୁ ସାଧାରଣତଃ ମିଳେ ନାହିଁ ଏଇ ପୋଷ୍ଟିଂଗ୍ । ବ୍ୟୟସଂକୋଚ ତଥା ଇମେଜ୍ ଦୃଷ୍ଟିରୁ । ଯାହାହେଉ ମୁଁ ଠିକ୍ କଲି ଦି'ଦିନ ଭିତରେ ଯେ ମୁଁ ଯିବି ଆମେରିକାକୁ । ଇଏ ଗୋଟିଏ ପ୍ରାଇଜ୍ ପୋଷ୍ଟିଂଗ୍, ନାନାଦି କାରଣରୁ ଏବଂ ଯାକୁ ମନା କରିବା ଠାରୁ ବଳି ମୂର୍ଖତା ଆଉ କିଛି ନାହିଁ । ହେଲେ ମୁଁ ଯିବି ମୋର ପାଞ୍ଚ ପିଲା ଓ ସ୍ତ୍ରୀଙ୍କୁ ନେଇ । ନହେଲେ ନାହିଁ । ଏହି ଭାବରେ ମୁଁ ମୋର ସମ୍ମତି ଜଣାଇ ଦେଲି ଅଡ଼ିଟର୍ ଜେନେରାଲ୍ ଅଫିସକୁ । ଏବଂ ବଦଳି ହୁକୁମ୍ ମିଳିଗଲା ମୋତେ କିଛି ଦିନ ଉତ୍ତାରୁ ।

ପ୍ରସ୍ତୁତି ପାଇଁ ଯେତିକି ସମୟ ଦିଆହୋଇଥିଲା ମୋତେ, ତାରି ଭିତରେ ଘରକୁ ଯାଇ ବାପାବୋଉଙ୍କଠାରୁ ବିଦାୟ ନେଇ ଆସିବାର ସମୟ ହେଲା ନାହିଁ । କେବଳ ଚିଠିର ଦିଆନିଆ । ବାଂଛିତ ସ୍ନେହାଶୀର୍ବାଦ ଉଣା ନ ଥିଲା ସେମାନଙ୍କ ଚିଠିରେ । ହେଲେ ଯେଉଁ ଧାଡ଼ିଏ ଲେଖା ଥିଲା ବାପାଙ୍କ ଚିଠିରେ ତାଙ୍କର ବିଚ୍ଛେଦ ଦୁଃଖ ଏବଂ ସାନ୍ତ୍ୱନାକୁ ଚିହ୍ନାଇବାକୁ ଯାଇ, ସେଥିରେ ଗୋଟାଏ ବିଶେଷତ୍ୱ ଥିଲା । ଲେଖିଥିଲେ - ଭଗବାନଙ୍କ କୃପାରୁ ଏଇ ଦି'ତିନିବର୍ଷ ବିତିଯିବ ଚାହୁଁ ଚାହୁଁ, ଆଉ ତମେ ସବୁ ଭଲରେ ଭଲରେ ଫେରି ଆସିବ ଘରକୁ । ଏବଂ ଏଇ ସମୟତକ ଆମର ପାଥେୟ ହୋଇ ରହିବ, ତୋର ନୂଆ ବହି ଖଣ୍ଡକ, ''ଭଂଗା ଖେଳଣା'' ।

ହଁ, ୧୯୬୧ ଗୋଟିଏ ସ୍ମରଣୀୟ ବର୍ଷ ନ ଥିଲା ପାଇଁ କେବଳ ମୋର ଆମେରିକା ଯାତ୍ରା ଯୋଗୁଁ । ବ୍ୟାଂଗ୍‌କକ୍ -ସାଏଗନ୍ ମାତ୍ର ଗୋଟାଏ ଝଲକ ଦେଖାଇଥିଲା ମୋତେ ଏକ ଭିନ୍ନ ପୃଥିବୀର । ମଧ୍ୟ ଦୁଃଖ ଦେଇଥିଲା ମୋତେ, ବ୍ୟକ୍ତିଗତ କାରଣରୁ । କିନ୍ତୁ ଆମେରିକା ଥିଲା, ଅନେକ ଦୃଷ୍ଟିରୁ ଏକ ନୂଆ ଏବଂ ବରଣୀୟ ପୃଥିବୀ, ଯେଉଁଠି ମୁଁ ଅନେକ ଦିନ ରହିଲି । ଏବଂ ଏକୁଟିଆ ନ ଥିଲି । ତେଣୁ ୧୯୬୧ରେ ଏଇ ବିଦେଶ ଯାତ୍ରାର ମହତ୍ୱ ଅନସ୍ୱୀକାର୍ଯ୍ୟ । କିନ୍ତୁ ତାଛଡ଼ା ଏଇ ବର୍ଷ ମୋର ପ୍ରଥମ ଗଳ୍ପ ସଂକଳନ ''ଭଂଗା ଖେଳଣା'' ପ୍ରକାଶିତ ହୋଇଥିଲା । ଯାହାକୁ ମୁଁ ବାପାବୋଉଙ୍କୁ ଉତ୍ସର୍ଗ କରିଥିଲି । କେଉଁ ଲେଖକ ଉଣା କରି ପାରିବ ଏଭଳି ଏକ ଘଟଣାର ମହତ୍ତ୍ୱକୁ ?

ଏଇଠି ଗୋଟିଏ ସ୍ୱାଭାବିକ ପ୍ରଶ୍ନ ଆସିପାରେ ଆପଣମାନଙ୍କ ମନରେ । ପଚାରିବାକୁ ଚାହିଁବେ - କଣ ହେଲା ? ଆପଣଙ୍କ ପ୍ରଥମ ଗଳ୍ପ 'ପରଦା ତଳେ' ପ୍ରକାଶିତ ହେଲା ୧୯୪୨ରେ, ଯେତେବେଳେ ଆପଣଙ୍କୁ ୧୮ ବର୍ଷ ହୋଇଥିଲା । କିନ୍ତୁ ଆପଣଙ୍କର ପ୍ରଥମ ଗଳ୍ପ ସଂକଳନ ଛପା ହେଲା ତାର ଉଣେଇଶ ବର୍ଷ ପରେ, ଯେତେବେଳେ ଆପଣଙ୍କୁ ୩୭ ବର୍ଷ ? କଣ ଶୋଇ ପଡ଼ିଥିଲେ ମଝିରେ ?

ନାଇଁ ଆଜ୍ଞା, ଶୋଇ ପଡ଼ି ନଥିଲି । ବେଶ୍ କେତେଗୁଡ଼ିଏ ଗଳ୍ପ ଓ କବିତା ଲେଖିଛି । କ୍ରମଶଃ ବେଶି ବେଶି ଗଳ୍ପ । କବିତା ଗୁଡ଼ିକ 'ଶଂଖ, 'ଚତୁରଂଗ' ଓ 'ସହକାର'ରେ ପ୍ରକାଶ ପାଇଥିଲା । ଏବଂ ଗଳ୍ପଗୁଡ଼ିକ ମଧ୍ୟ ...

କ୍ଷମା କରିବେ । ଗଳ୍ପଗୁଡ଼ିକ ରୀତିମତ ପ୍ରକାଶ ପାଉ ନଥିଲା ଅନେକ ଦିନ ଯାଏଁ । ସେଥିପାଇଁ କେବଳ ମୁଇଁ ଦାୟୀ, ଆଉ କେହି ନୁହେଁ । କୁହାଯାଇ ପାରେ ଯେ ବସିବା, ଠିଆ ହେବା, ଚାଲିବା ଓ କଥା କହିବା ଠାରୁ ଆରମ୍ଭ କରି ମୋ ଜୀବନର ସମସ୍ତ ସାର୍ଥକ ଉଦ୍ୟମ ଏମିତି ଟିକିଏ ଡେରି ହୋଇ ଯାଇଛି । ଗଳ୍ପଗୁଡ଼ିକ, ଗୋଟିଏ ପରେ ଗୋଟିଏ 'ଝଂକାର'ରେ ପ୍ରକାଶ ପାଇଲା ପଚାଶ ଦଶକରେ ଏବଂ ତାହାହିଁ ମୋତେ ବିଶେଷ ପରିଚିତ କରିପାରିଥିଲା ପାଠକପାଠିକାଙ୍କ ମହଲରେ । ଏହି ସଂକ୍ରାନ୍ତରେ ମୁଁ କୃତଜ୍ଞ ମୋର ସ୍ତ୍ରୀ କୁମ ଏବଂ ଏକଦା

'ଝଂକାର'ର ସଂପାଦକ ହୋଇଥିବା ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ପ୍ରତି । ଜାନକୀବାବୁ ବୈବାହିକ ସୂତ୍ରରେ ମୋର ସଂପର୍କୀୟ । ତାଙ୍କ ସ୍ତ୍ରୀ ଜୟନ୍ତୀ କୁମର ମାମୁଁଝିଅ ଭଉଣୀ । ସେ ଥରେ ଆସିଥିଲେ ବି. ଦାସଙ୍କ ପାଖକୁ, ଯେତେବେଳେ ମୁଁ ତାଙ୍କ ପାଖରେ ଥିଲି, ଦିଲ୍ଲୀର ଫିରୋଜଶାହା ରୋଡ଼ରେ ଥିବା ବଂଗଳାରେ । ମୋ ଲେଖକପଣିଆ ବିଷୟରେ କିଛି କହିବାକୁ ଯାଇ ମୋ ସ୍ତ୍ରୀ ତାଙ୍କ ହାତରେ ଗୁଂଜିଦେଲେ କହିଲେ ଚଳେ, ମୋର ଚାରୋଟି ଗଳ୍ପ । କହିଲେ ଆପଣ ନିଜେ ପଢ଼ନ୍ତୁ ଏଇ ଗପ କେତୋଟିକୁ ଏବଂ ତାକୁ ଛପାଇବେ 'ଝଂକାର'ରେ, ଆପଣଙ୍କୁ ଭଲ ଲାଗିଲେ । ଜାନକୀବାବୁଙ୍କୁ ଭଲ ଲାଗିଲା ଏବଂ ସେଗୁଡ଼ିକ ଯଥାକ୍ରମେ ଛପା ହେଲା 'ଝଂକାର'ରେ । ଏବଂ ତା'ପରଠୁଁ ସୁଧୀ ପାଠକପାଠିକାମାନଙ୍କ ବାହାବା ପାଇଲାରୁ, ମୋର ଗଳ୍ପ ଲେଖିବା ଓ ସେଗୁଡ଼ିକୁ ବିଭିନ୍ନ ପତ୍ରପତ୍ରିକାରେ ଛପାଇବାର କାମ ବଢ଼ି ଚାଲିଲା ।

କିନ୍ତୁ ତଥାପି ଡେରି ହେଲା ଦେଖନ୍ତୁ, ଗଳ୍ପ ସଂକଳନଟିଏ ଛପାଇବାରେ । ଏଦିଗରେ ମୁଁ ଗୋପୀବାବୁ, ତଥା ତାଙ୍କ ଅଗ୍ରଜ କାହ୍ନୁବାବୁଙ୍କ ଠାରେ ଋଣୀ । କାହ୍ନୁବାବୁ କୁଆଡ଼େ ମୋର ପ୍ରକାଶିତ ଗଳ୍ପ 'ଭଂଗା ଖେଳଣା'କୁ ଏତେ ଭଲ ପାଇଲେ ଯେ ତାକୁ ଶହେରୁ ଶହେ ମାର୍କ ଦେଲେ, ଯାହା ଗୋପୀବାବୁ କହିଲେ ମୋତେ । ସେଇଠୁ କଥା ପଡ଼ିଲା, ମୁଁ କାହିଁକି ବହିଟିଏ ବାହାର କରି ନାହିଁ ଆଜିଯାଏ । ମୋ ପାଖରେ ତାର କୌଣସି ସଫେଇ ନ ଥିଲା । ସେଇଠୁ ଗୋପୀବାବୁ କହିଲେ ଦେଖିବା କଣ କରାଯାଇପାରେ । ଏବଂ ସେ କହିଲେ ତାଙ୍କ ବଡ଼ଭାଇଙ୍କୁ । ମୋର 'ଭଂଗାଖେଳଣା'କୁ ବିଶେଷ ଭଲ ପାଇଥିବା କାହ୍ନୁବାବୁ ଜୟପୁର (କୋରାପୁଟ)ର 'ବିକାଶ ପ୍ରତିଷ୍ଠାନ' ଅର୍ଥାତ୍ ସାହିତ୍ୟାନୁରାଗୀ ଶ୍ରୀ ରାମନାଥ ପଣ୍ଡାଙ୍କୁ ପ୍ରବର୍ତ୍ତାଇଲେ ମୋ ସାଙ୍ଗରେ କଥାବାର୍ତ୍ତା କରି ମୋ ଠାରୁ କେତୋଟି ଗଳ୍ପ ନେଇ ତାକୁ ବହି ଆକାରରେ ଛପାଇବା ପାଇଁ । ଏହି ଭାବରେ ମୋର ପ୍ରଥମ ଗଳ୍ପ ସଂକଳନ ପ୍ରକାଶିତ ହେଲା । ଏବଂ ସହଜେ ତାର ନାଆଁ ରଖାଗଲା 'ଭଂଗାଖେଳଣା' ।

ଛାଡ଼ନ୍ତୁ ସେକଥା ପରେ । ଏଇକ୍ଷଣି ଗୋଟିଏ ନୂଆ ଏବଂ ସୁନ୍ଦର ପୃଥିବୀ ଅପେକ୍ଷା କରି ରହିଛି ପରା ମୋ ପାଇଁ ? ଆଉ ଦେଖୁନାହାନ୍ତି, ମୋ ଚାରିବର୍ଷିଆ ପୁଅ ଧୀରୁ କେମିତି ହୁଇସଲ୍ ମାରି ବୁଲୁଛି ଜାହାଜର ଏମୁଣ୍ଡରୁ ସେମୁଣ୍ଡ ? ସେଇ ଜାହାଜ ଆମକୁ ଲଣ୍ଡନ ନେଇଯିବ । ସେଇଠୁ କିଛି ଦିନ ପରେ ଆମେ ଆଉ ଗୋଟାଏ ଜାହାଜ ଧରି ନିଉୟର୍କ ଯିବୁ, ଆଟ୍‌ଲାଣ୍ଟିକ୍ ମହାସାଗର ପାରି ହୋଇ । ତାପରେ ୱାଶିଂଗ୍‌ଟନ୍ ଡି.ସି. । ପହଞ୍ଚୁ ପହଞ୍ଚୁ ନଭେମ୍ବର, ବେଶ୍ ଶୀତ ପଡ଼ିଯାଇଥିବ, ମୁଁ କହିଲି । ସେଇଠୁ ପୁଅ ପଚାରୁଛି - କଅଣ ବରଫ ପଡୁଥିବ ? କେଜାଣି, ମୁଁ କହିଲି, ହସି ଦେଇ । ହେଲେ ଭାବିବାକୁ ଇଚ୍ଛା ହେଉଥାଏ ଯେ ଭଲ ହୁଅନ୍ତା ପରା ସେଇଆ ହେଉଥିଲେ, ଆମେ ସେଠି ପହଞ୍ଚିଲା ବେଳକୁ । ଆମକୁ ସ୍ୱାଗତ ଜଣାଇଲା ପରି । ମୁଂଚନ୍ତୁ ଦେବାଃ କୁସୁମସ୍ୟ ବୃଷ୍ଟି !



# କର୍ମଜୀବନ

## ଆମେରିକାରୁ ଆଫ୍ରିକା ଯାଏ (୧୯୬୧-୧୯୭୫)

ଜାହାଜରେ ଦୋହଲି ଦୋହଲି ଯିବ ମାସକ ଯାଏଁ, ଗୋଟାଏ ପୋଷ୍ଟରୁ ଆଉ ଗୋଟାଏ ପୋଷ୍ଟରେ ଜଏନ୍ କରିବା ଲାଗି ? ଯଦିଓ ଉଡ଼ାଜାହାଜରେ ଗଲେ ଦିନେ କି ଦି'ଦିନରୁ ବେଶୀ ଲାଗିବ ନାହିଁ ? ଭଲ ତ ! ଏହିପ୍ରକାର ମଂତବ୍ୟ ଶୁଣିବାକୁ ମିଳେ ବଂଧୁମାନଙ୍କ ଠାରୁ ମୁଁ ଯେତେବେଳେ ତାଙ୍କୁ କୁହେ ମୋର ଆମେରିକା ଯାତ୍ରା ବିଷୟରେ । କିନ୍ତୁ ଏଇ ନିୟମ ଥିଲା ସେତେବେଳେ, ବ୍ୟୟସଂକୋଚ ଦୃଷ୍ଟିରୁ । ଯେହେତୁ ଉଡ଼ାଜାହାଜର ଭଡ଼ା ଅଧିକ । ଭ୍ରମାତ୍ମକ ନିୟମ । କାରଣ ଜଣେ ଦରମାଖିଆ ସରକାରୀ ଚାକିରୀଆ ଠାରୁ କୌଣସି କାମ ନିଆଯାଉ ନାହିଁ ମାସକ ଯାଏଁ, ତାର ମୂଲ୍ୟ କଳନା କରିବାକୁ ଭୁଲିଗଲେ, ବୋଧହୁଏ, ତତ୍‌କାଳୀନ ଅର୍ଥ ବିଭାଗର ବଂଧୁମାନେ । ଅଥବା ଭାବିଲେ ଯେ ସେଇଟା ଅତ୍ୟନ୍ତ ସୂକ୍ଷ୍ମ ବିଚାର, ତେଣୁ ଗ୍ରହଣୀୟ ନୁହେଁ । ଯାହାହେଉ ଆମେ ଏଇ ନିୟମର ଉପଭୋକ୍ତା ହୋଇ ଏକ ଦୀର୍ଘ ନୌକାବିଳାସର ସୌଭାଗ୍ୟ ଲାଭ କରିଥିଲୁ, ଏହା ଏକ ବାସ୍ତବ ସତ୍ୟ । ସେଇ ପ୍ରଥମ ଓ ଶେଷଥର ପାଇଁ, କାରଣ ଆମେ ଫେରି ଆସିଲା ବେଳକୁ ନିୟମ ବଦଳି ଯାଇଥିଲା ।

ହଁ, ଆମେ ସେଇ ସମୟତକ କେବଳ ଖାଇଲୁ, ପିଇଲୁ, ଶୋଇଲୁ, ଏବଂ ଆମ ଦିନଗୁଡ଼ିକୁ ନିଠେଇ ନିଠେଇ ଉପଭୋଗ କଲୁ । ବିଶେଷତଃ ଲଣ୍ଡନରେ ପହଞ୍ଚିବା ଯାଏ । ଚାରି ବର୍ଷର ପୁଅ ଧୀରୁ ତ ହୁଇସଲ୍ ମାରି ବୁଲୁଥାଏ ଜାହାଜର ଏମୁଣ୍ଡରୁ ସେମୁଣ୍ଡ, ସହଯାତ୍ରୀମାନଙ୍କ ସାଦର ସଂଭାଷଣର ଦୁର୍ବୋଧ୍ୟ ଉତ୍ତରଟାଏ ଛାଡ଼ି ଦେଇ । ଆଉ ଝିଅମାନେ ଖେଳୁଥାଆନ୍ତି ବସି ତାଙ୍କ ମନପସନ୍ଦ ଖେଳ, ସାମୟିକ ମତଭେଦ ଓ ରାଗରୁଷା ସମେତ । ଆମକୁ ଯେତିକି ଜାଗା ମିଳିଥାଏ, ଦୁଇଟି ମଧ୍ୟମ ଧରଣର କେବିନ୍ ଏବଂ ଗୋଟିଏ ସାନ୍ ଡେକ୍, ସେତିକ ଯଥେଷ୍ଟ ଥିଲା ତାଙ୍କର ସମସ୍ତ ଖେଳିବା ଓ ନ-ଖେଳିବାର କାର୍ଯ୍ୟକଳାପ ପାଇଁ । ଆମ ବାପାମାଆଙ୍କୁ ମଧ୍ୟ ଯଥେଷ୍ଟ ସମୟ ଓ ସୁଯୋଗ ମିଳୁଥିଲା ଦି'ଜଣିଆ ତାସଖେଳ ଓ ଗପସପ ଉତ୍ତାରୁ ଉପର ଡେକ୍‌ରେ ପଦଚାରଣ କରିବା ଏବଂ ଲାଉଞ୍ଜରେ ବସି ମ୍ୟାଗାଜିନ୍ ପଢ଼ିବା ଲାଗି । କ୍ୱଚିତ୍ ବୋର୍ ହେଉଥିଲୁ ଆମେ । ଉତ୍ତାଳ ନୀଳଲହରୀର ଦୃଶ୍ୟ କଣ କେବେହେଲେ ଚିଟା ଲାଗିବ ? ବିଶେଷତଃ ତା' ଯେମିତି ବଦଳୁଥାଏ ଘଡ଼ିକି ଘଡ଼ି, ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ଯାଏ ? ଏହି ପରିପ୍ରେକ୍ଷୀରେ ଗୋଟାଏ ନୂଆ ଦୃଶ୍ୟ ଦେଖିବାକୁ

ମିଳିଲା ଆମକୁ । ଉଡ଼ନ୍ତା ମାଛ । ଏତେ ଦୂରକୁ ଏତେ ଉଚ୍ଚକୁ ଲଂଫ ଦେଉଥିବା ମାଛ ଆମେ ଆଗରୁ କେବେ ଦେଖି ନ ଥିଲୁ । ଆମ ଜାହାଜ ତାଙ୍କୁ ଡିଷ୍ଟର୍ବ କଲା ବୋଲି ସେମାନେ ଏମିତି ଅସ୍ଥିର ହୋଇ ଉଠୁଛନ୍ତି ? ନା, ତା, ନୁହେଁ ବୋଲି ଆମକୁ କୁହାଗଲା । ତାଙ୍କର ଦସ୍ତୁର୍ ସେଇଆ, ବଂଗୋପସାଗରରେ ଥିବା ଏଇ ବିଚିତ୍ର ଖେଳୁଆଡ଼ମାନଙ୍କର ।

ଲଣ୍ଡନରେ ପହଞ୍ଚିଲା ବେଳକୁ ପାଞ୍ଚୋଟି ପୁତ୍ରକନ୍ୟା ବିଶିଷ୍ଟ ଦାସ ଫ୍ୟାମିଲି 'ଏସ୍.ଏସ୍. ଷ୍ଟ୍ରାଥାଡ଼େନ୍' ଜାହାଜର କ୍ୟାପଟେନ୍, କର୍ମଚାରୀ, ତଥା ପ୍ରାୟ ସମସ୍ତ ସହଯାତ୍ରୀମାନଙ୍କର ସହିତ ବେଶ୍ ପରିଚିତ ହୋଇଯାଇଥିଲେ । ତେଣୁ ଆମେ ଯେତେବେଳେ 'ବାଏ ବାଏ' କହିଲୁ ପରସ୍ପରକୁ, ଜାହାଜରୁ ଓହ୍ଲେଇ ଯେଝା ଯେଝା ବାଟ ଧରିବା ଲାଗି, ସେଥିରେ ଅଳ୍ପବହୁତ ବିଦାୟର ଭାବ ଥିଲା । ତାହା ଯେତେ ହାଲୁକା ହେଉ ନା କାହିଁକି ।

ତାପରେ ଲଣ୍ଡନ୍ । ଦକ୍ଷିଣ ଲଣ୍ଡନ୍‌ରେ ଥିବା ଗୋଟିଏ ହୋଟେଲ୍‌ରେ ଆମେ ରହିଲୁ କିଛି ଦିନ, ସାଉଥ୍‌ହାଂପ୍‌ଟନ୍ (Southhampton)ରୁ ଆମେରିକା ଅଭିମୁଖୀ ଜାହାଜରେ ଚଢ଼ିଲା ପୂର୍ବରୁ । ଲଣ୍ଡନ ମହାନଗରୀ ଏକ ବିରାଟ ସୁନ୍ଦର ନୂଆ ସହର ଥିଲା ଆମ ସମସ୍ତଙ୍କ ପାଇଁ । କିନ୍ତୁ ଆମେ ଦିନେ ବ୍ରିଟୀଶ୍ ରାଜାଙ୍କର ପ୍ରଜା ଥିଲୁ ପରା ? ତେଣୁ ଲଣ୍ଡନ୍‌ର କେଉଁ ଦୃଶ୍ୟ ଏବଂ ଦୃଶ୍ୟକଥା ଅଦେଖା ଅଶୁଣା ଅଛି ଆମର ? ସେହେତୁ ଆଶ୍ଚର୍ଯ୍ୟ ହେବାର ନୁହେଁ ଯେତେବେଳେ ପିଲାଏ 'ଲଣ୍ଡନ୍ ବ୍ରିଜ୍ ଇଜ୍ ଫଲିଂଗ୍ ଡାଉନ୍' ବୋଲି ଗୀତଟିଏ ଛାଡ଼ି ଦେଲେ, ଯେତେବେଳେ ଆମେ ଟେମ୍‌ସ୍ ନଈ ଉପରେ ଥିବା ସୁବିଦିତ ଲଣ୍ଡନ୍ ବ୍ରିଜ୍ ପାରି ହେଉଥିଲୁ ଟ୍ୟାକ୍ସିରେ । ଏବଂ ମୋତେ ସବୁଠାରୁ ମଜା ଲାଗିଲା ଯେତେବେଳେ ମୁଁ ଆମ ହୋଟେଲ୍ ପାଖରେ ଥିବା ହାଇଡ୍ ପାର୍କକୁ ବୁଲିବାକୁ ଗଲି ସଂଜବେଳକୁ, ଏବଂ ଡ଼ାବଲ୍ ମଂଚ ଭାଷଣ (Soapbox oratory)ର ଆଖିଦେଖା ଦୃଶ୍ୟ ଦେଖିବାକୁ ପାଇଲି । ଦେଖିଲି ପାର୍କର ଯେଉଁଠି ବୋଲି ସେଇଠି କେଉଁ ବକ୍ତାଟିଏ ଗୋଟିଏ ଉଂଚ ଜାଗା ତିଆରି କରି ନେଇଛି ନିଜ ପାଇଁ । ଏବଂ ଅଧିକାଂଶରେ ତାହା ଯେକୌଣସି ଧରଣର ବାକ୍ସଟିଏ । ତାରି ଉପରେ ଠିଆ ହୋଇ ସେ ଝାଡ଼ି ଦେଉଛି ତାର ବକ୍ତବ୍ୟ । ଥୋକେ ମଧ୍ୟ ଠିଆ ହୋଇ ଯାଉଛନ୍ତି ତା ସାମନାରେ, ସେ କଅଣ କହୁଛି ବୋଲି ଶୁଣିବା ପାଇଁ । ମନେ ହେବ ଇଏ ମଧ୍ୟ ସାଂଧ୍ୟବିହାରର ଅନ୍ୟତମ ଉପଭୋଗ, ଉଭୟ ବକ୍ତା ଏବଂ ଶ୍ରୋତାଙ୍କ ପାଇଁ, ବିଷୟବସ୍ତୁ ଯାହା ହେଉ ନା କାହିଁକି, ଏବଂ ସେଥିରେ କିଛି ସାରକଥା ଥାଉ ବା ନ ଥାଉ । ତାଛଡ଼ା ଲଣ୍ଡନ ପୁଲିସବାଲାଙ୍କ ଠାଣି, ବକିଂଗହାମ୍ ପ୍ରାସାଦର ଗାର୍ଡ଼ମାନଙ୍କ ଥାଟ, ଶସ୍ତା ଓ ସୁଲଭ 'ଫିସ୍ ଏଣ୍ଡ ଚିପ୍‌ସ୍' ରେସ୍ତୋରାଁ, ସୋହୋ ସ୍କୋୟାର୍‌ର ସେକ୍ସବିପଣୀ, ଫୁଟ୍‌ପାଥରେ ଭାୟୋଲିନ୍ ବାଜାଉଥିବା ଅଂଧ ଭିକାରୀ, ଇତ୍ୟାଦି ଇତ୍ୟାଦିର ଦୃଶ୍ୟ ଅଭିନବ ବୋଲି ମନେ ହେଲା ନାହିଁ । ବରଂ ଅଂକ ମିଳେଇବାର ଆନନ୍ଦ ଆଣିଦେଲା ମନରେ ।

ଲଣ୍ଡନ୍ ସରୁ ନ ସରୁଣୁ ଆମେ ଅନେଇ ବସିଲୁ, କେବେ ପହଞ୍ଚିବୁ ଆମେରିକାରେ । ବେଶି ଦୂର ନୁହେଁ । ମାତ୍ର ପାଞ୍ଚଛଅଦିନର ବାଟ । ମଝିରେ ଆଟ୍‌ଲାଣ୍ଟିକ୍ ସମୁଦ୍ରକୁ ପାରି ହୋଇଗଲେ ଗଲା । ଆଉ ଆମେ ଏଥର କେଉଁ ଜାହାଜରେ ବସିବୁ ଜାଣିଛ ପିଲାଏ ? ଯାର ନାଆଁ 'ଏସ୍.ଏସ୍. କୁଇନ୍ ଏଲିଜାବେଥ୍ ।' ପୃଥିବୀର ସବୁଠାରୁ ବଡ଼ ସମୁଦ୍ର ଜାହାଜ । ଏବଂ 'ଏ' କ୍ଲାସ୍ ଜାହାଜ ଭିତରେ ଗଣା । ଏହି ଭାବରେ ମୁଁ ନିଜକୁ ତଥା ସ୍ତ୍ରୀପିଲାଙ୍କୁ ପ୍ରୋତ୍ସାହିତ କଲି, ଏଥିଁ ଅଧିକ ଉପଭୋଗ କରିବା ଲାଗି ଆମର ଯାତ୍ରାର ଶେଷ ଅଂଶଟିକୁ ।

କିନ୍ତୁ ଦୁଃଖର ବିଷୟ ଯେ ଏଇ ସ୍ୱନାମଧନ୍ୟ ଜାହାଜର ଗତିବିଧି ଆମକୁ ସୁହାଇଲା ନାହିଁ । ବିଶେଷତଃ ଆମ ବାପାମାଆ ଦି'ଜଣଙ୍କୁ । ହଁ, ଏଇ ଜାହାଜରେ ଯେଉଁଭଳି ଖାଦ୍ୟପେୟ ମିଳେ, ପିଲାମାନଙ୍କ ଖେଳକଉତୁକ ପାଇଁ ଯେଉଁପ୍ରକାର ଭଳି ଭଳି ବସ୍ତୁ ମହଜୁଦ୍ ଥାଏ ରିକ୍ରିଏସନ୍ ହଲ୍‌ରେ, ଦୃଶ୍ୟ ଦେଖା ପାଇଁ ଯେଉଁ ପ୍ରକାର ବ୍ୟବସ୍ଥା କରାଯାଇଥାଏ ଉପର ଡେକ୍‌ରେ, ସେହି ସମସ୍ତ ଦୃଷ୍ଟିରୁ ଏହାକୁ 'ଏ' କ୍ଲାସ୍ ଜାହାଜ ବୋଲି ଅବଶ୍ୟ କହିବା ଉଚିତ । କିନ୍ତୁ ହାୟ ! ସେଥିରେ କିଛି ଲାଭ ହେଲା ନାହିଁ ଆମର । କାରଣ ସାମୁଦ୍ରିକ ଅସୁସ୍ଥତା (sea sickness) ନାମକ ବିଶିଷ୍ଟ ଅସୁସ୍ଥତା ଆକ୍ରାନ୍ତ କଲା ଆମକୁ, ଜାହାଜର ଅତ୍ୟଧିକ ଦୋଳନ ହେତୁ । କିଛି ହେଲେ ଆମ ପାଟିକୁ ରୁଚିଲା ନାହିଁ, ମୁଣ୍ଡ ଘୁରାଇଲା, ବାନ୍ତି ଉଠିଲା, ଇତ୍ୟାଦି । ତେବେ ଯାହାହେଉ ଛଅଟା ଦିନ ପାରି ହୋଇଗଲା କୌଣସି ମତେ । ଏବଂ ନିଉୟର୍କର ଉତ୍ତୁଙ୍ଗଅଟ୍ଟାଳିକାବିଶିଷ୍ଟ ସୁପ୍ରସିଦ୍ଧ ସ୍କାଏ ଲାଇନ (skyline), ଦିଶିଗଲା ଆମକୁ । ମଧ୍ୟ ଷ୍ଟାଚ୍ୟୁ ଅଫ୍ ଲିବର୍ଟି (statue of liberty), ମହାମହିମ ସ୍ୱାଧିନତାର ଦେବୀମୂର୍ତ୍ତି, ଯେ ସ୍ୱାଧିନତାର ମଶାଲ ଜଳେଇ ଡାକୁଛନ୍ତି ଆମକୁ, ଏଇ ନୂଆ ପୃଥିବୀର ବାସିନ୍ଦା ହେବା ପାଇଁ ।

କିନ୍ତୁ ନିଉୟର୍କରେ ଦୃଶ୍ୟ ଦେଖିବାର ଅବକାଶ ନାହିଁ ବର୍ତ୍ତମାନ । ପ୍ଲେନ୍ ଧରି ସିଧାସଳଖ ଯିବାକୁ ହେବ ୱାଶିଂଗ୍‌ଟନ୍ ଡି.ସି., ଯୁକ୍ତରାଷ୍ଟ୍ର ଆମେରିକାର ରାଜଧାନୀ ଏବଂ ମୋ କର୍ମକ୍ଷେତ୍ରର କେନ୍ଦ୍ରସ୍ଥଳୀ, ଆସନ୍ତା ଦି'ତିନିବର୍ଷ ପାଇଁ । ସେଠି ପହଞ୍ଚିଲା ପରେ ଆମକୁ ଯଥାର୍ଥରେ ପ୍ରଥମେ ଚିହ୍ନାଇ ଦିଆଗଲା ୱାଶିଂଗ୍‌ଟନ୍ ମନୁମେଣ୍ଟ୍ (Washington monument) । ମାତୃଦେଶ ଇଂଲଣ୍ଡର କର୍ତ୍ତୃତ୍ୱରୁ ମୁକ୍ତ କରି, ଉପନିବେଶକୁ ସ୍ୱାଧିନତା ଆଣି ଦେଇଥିବା ଜର୍ଜ ୱାଶିଂଗ୍‌ଟନ୍‌ଙ୍କର ଜୟଜୟକାର କରୁଥିବା ସ୍ମୃତିସ୍ତମ୍ଭ । ଏକ ଅସାଧାରଣ ଦମ୍ଭ ଓ ସାହସିକତାର ପ୍ରତୀକ । ସତତ ନମସ୍ୟ ।

ୱାଶିଂଗ୍‌ଟନ୍‌ରେ ଆମକୁ ରହିବାକୁ ହେଲା ଗୋଟିଏ ହୋଟେଲ୍‌ରେ । ତମ ଘରଭଡ଼ା ବାବଦ ଭତ୍ତାର ସୀମା ଭିତରେ ଥିବା ଠିକଣା ଘର କିମ୍ବା ଫ୍ଲାଟ୍ ନ ମିଳିବାଯାଏ ତମେ ହୋଟେଲ୍‌ରେ ରହିପାରିବ ତିନିମାସ ଯାଏଁ ଏବଂ ତମ ରହିବା ଖର୍ଚ୍ଚ ମିଳିବ ସରକାରଙ୍କଠାରୁ ।

ମଧ୍ୟ ତମକୁ ଅଧିକା ଭତ୍ତା କିଛି ମିଳିବ, ହୋଟେଲ୍‌ରହଣିର କ୍ଷତିପୂରଣ ପାଇଁ । ମୁଁ ସେ ବିଷୟରେ କିଭଳି ପ୍ରଶ୍ନ ଉଠାଇଥିଲି, କହିବି ସେକଥା ପରେ । ବର୍ତ୍ତମାନ କେବଳ ଏତିକି କହିଲେ ହେବ, ଯେ କେଉଁ କ୍ଷତିରେ ପଡ଼ି ନଥିଲୁ ଆମେ, ସେଇ ହୋଟେଲ୍‌ରେ ରହିବା ଯୋଗୁ । ଯାହାହେଉ ତିନିମାସ ନ ପୁରୁଣୁ ଆମକୁ ଗୋଟାଏ ଠିକଣା ଘର ମିଳିଗଲା । ନିଉୱାର୍କ ଷ୍ଟ୍ରୀଟ୍‌ରେ ଥିବା ଗୋଟିଏ ପୁରୁଣାକାଳିଆ କଟେଜ୍‌ତୁଲ୍ୟ ଘର । ମାସାଚୁସେଟ୍‌ସ୍ ଆଭିନିଉରେ ଥିବା ଆମ ଅଫିସଠାରୁ ବେଶି ଦୂର ନୁହେଁ ।

ବର୍ତ୍ତମାନ କହିବାକୁ ହେବ ମୁଁ କିଭଳି କାମ କରିବାକୁ ଆସିଥିଲି ଏଠିକି । ତା'ର ସାରକଥା କଅଣ, ତାର ଘେର କେଉଁଠୁ କେଉଁଯାଏ, ଏବଂ ସେଥିରୁ ମିଳୁଥିବା ଆନୁଷଙ୍ଗିକ ଓ ବ୍ୟକ୍ତିଗତ ଲାଭକ୍ଷତି କେଉଁ ପ୍ରକାର ।

ଏଇ ପଦବୀର ନାଆଁ ହେଲା, ଡାଇରେକ୍ଟର ଅଫ ଅଡ଼ିଟ୍, ଇଣ୍ଡିଆନ୍ ଆକାଉଣ୍ଟସ୍ (Director of Audit, Indian Accounts) ଅର୍ଥାତ୍ ନିର୍ଦ୍ଦେଶକ, ଭାରତୀୟ ହିସାବକିତାବର ସମୀକ୍ଷା । ଏବଂ ଏଇ ସମୀକ୍ଷାର ଘେର କେବଳ ଏଠିକା ଭାରତୀୟ ଦୂତାବାସର ହିସାବକିତାବକୁ ଆଂକୁଡ଼ି ଧରି ନାହିଁ । ସମଗ୍ର ଯୁକ୍ତରାଷ୍ଟ୍ର ଆମେରିକା, କ୍ୟାନେଡ଼ା, ମେକ୍‌ସିକୋ ଏବଂ ଦକ୍ଷିଣ ଆମେରିକାର ବିଭିନ୍ନ ଦେଶରେ ଖର୍ଚ୍ଚ ହେଉଥିବା ଅବା ହାତକୁ ଆସୁଥିବା ଭାରତୀୟ ଆୟବ୍ୟୟର ହିସାବକିତାବ ମଧ୍ୟ ଆମ ଅଡ଼ିଟ୍‌ର ଘେର ଭିତରେ ଥିଲା । ସେହେତୁ ୱାଶିଂଗ୍‌ଟନ୍ ଡିସି ଆମର ହେଡ଼କ୍ୱାଟର୍ସ ଥିଲା ସିନା, ଆମକୁ ଅର୍ଥାତ୍ ଡାଇରେକ୍ଟର କିମ୍ବା ଡେପୁଟି ଡାଇରେକ୍ଟରଙ୍କ ତତ୍ତ୍ୱାବଧାନରେ ଗୋଟିଏ ଦୁଇତିନିଜଣିଆ ଅଡ଼ିଟ୍ ପାର୍ଟିକୁ ଯିବାକୁ ପଡୁଥିଲା, ମଝିରେ ମଝିରେ, ସେହିସବୁ ସ୍ଥାନକୁ । ଯେଉଁଠି ଭାରତ ସରକାରଙ୍କ ହିସାବକିତାବ ରହିଛି । ଏହାହିଁ ଥିଲା ଏଇ କାର୍ଯ୍ୟଭାରରୁ ମିଳୁଥିବା ଏକ ବିରାଟ ଆନୁଷଙ୍ଗିକ ଲାଭ, ଏଇ ଦୁନିଆଁଦେଖା ଅନୁଭୂତି । ଏବଂ ଆନୁଷଙ୍ଗିକ କ୍ଷତି କିଛି ହେଲେ ଥିଲା ଆମ କାହାରି ପାଇଁ ବୋଲି ମୋର ମନେ ହେଉ ନାହିଁ ।

ଦୁଃଖ କେବଳ ଏତିକି ଯେ ସ୍ତ୍ରୀପିଲାଙ୍କୁ ଏଇ ଅନୁଭୂତିରେ ସାମିଲ କରିବା ସଂଭବ ନ ଥିଲା ନିଜ ଖର୍ଚ୍ଚରେ । ଖାଲି ନିଉୟର୍କରେ ବେଶ୍ କିଛି ଦିନ ଏବଂ ନାଏଗ୍ରାଫଲସ୍‌କୁ ଦେଖି ଆସିବା ଛଡ଼ା । ପରେ ଆଉ କିଛି କହିବି ସେ ବିଷୟରେ । ଏଇକ୍ଷଣି କହୁଛି ଶୁଣନ୍ତୁ ମୋ ନିଜ ଦୁନିଆଁଦେଖା ଅନୁଭୂତିର ବିସ୍ତାର କେଉଁ ସବୁ ସହର ଏବଂ ଅଞ୍ଚଳକୁ ନେଇ ବଳିଷ୍ଠ ହୋଇପାରିଥିଲା ।

— ଯୁକ୍ତରାଷ୍ଟ୍ର ଆମେରିକାର ଏପାଖରୁ ସେପାଖ, ଆଟ୍‌ଲାଣ୍ଟିକ୍ ମହାସାଗରରୁ ପ୍ରଶାନ୍ତ ମହାସାଗର ଯାଏଁ, ଏବଂ ତା ଭିତରେ ଥିବା ଅନେକ ଦର୍ଶନୀୟ ସ୍ଥାନ । ନିଉୟର୍କ, ସିକାଗୋ, ସାନ୍‌ଫ୍ରାନ୍‌ସିକୋ, ଲସ୍ ଆଂଜେଲେସ୍, ଲାସ୍‌ଭେଗାସ୍, ଗ୍ରାଣ୍ଡ କ୍ୟାନିଅନ୍, ମାୟାମି ଇତ୍ୟାଦି ।

— କ୍ୟାନେଡ଼ାର ରାଜଧାନୀ ଅଟୋଓ୍ୱା, ପୂର୍ବାଞ୍ଚଳରେ ଫରାସୀ ଭାଷାଭାଷୀଙ୍କ ଦ୍ୱାରା ଅଧ୍ୟୁଷିତ କୁଇବେକ୍ ସିଟି ଓ ମଣ୍ଟ୍ରିଏଲ୍ ।

— ମେକ୍ସିକୋ ସିଟି ଓ ପାଖଆଖ ଦର୍ଶନୀୟ ସ୍ଥାନ ।

— ବ୍ରାଜିଲ୍‌ର ରିଓ ଡି ଜେନେରୋ (Rio de janeiro) ଏବଂ ପାଖଆଖ ଦର୍ଶନୀୟ ସ୍ଥାନ ।

ଆର୍ଜେଣ୍ଟିନାର ରାଜଧାନୀ ବୁଏନୋ ଏୟାରିସ୍ (Buenos Aires), ଏବଂ ପାଖଆଖ ଦର୍ଶନୀୟ ସ୍ଥାନ ।

ଚୀଲିର ରାଜଧାନୀ ସାନ୍‌ତିଆଗୋ (Santiago) ଏବଂ ପାଖଆଖ ଦର୍ଶନୀୟ ସ୍ଥାନ ।

କହିବାକୁ ବସିଲେ ଅନେକ କିଛି କହିହେବ ଏଇ ଦୁନିଆଁ ଦେଖା ଅନୁଭୂତିକୁ ନେଇ । କିନ୍ତୁ ତାହା ସମୟସାପେକ୍ଷ । ତେଣୁ କେବଳ କେତୋଟି ବିଶିଷ୍ଟ ଦୃଶ୍ୟ ଓ ସେଥିରୁ ଉଦ୍‌ଭୁତ ଅନୁଭବ ବିଷୟରେ କହୁଛି, ଯାହା କହିହେବ ।

ପ୍ରଥମେ ଆମେରିକା । ହେଡ଼କ୍ୱାଟର୍ସ ଓ୍ୱାଶିଂଗ୍‌ଟନ୍‌ର ବାହାରେ ଥିବା ବିଭିନ୍ନ ଅଞ୍ଚଳରୁ ମିଳିଥିବା ଅନୁଭୂତିର ଉପାଦାନ ।

ନିଉୟର୍କ ତ ବାରଂବାର ଯିବାକୁ ପଡୁଥାଏ । କାରଣ ସେଠି ଥିଲା ଭାରତର କନ୍‌ସଲ୍ ଜେନେରାଲ୍‌ଙ୍କ ଅଫିସ୍ । ଭାରତର ହିସାବଖାତା ବେଶ୍ ଓଜନିଆ ଏଇ ଅଫିସରେ, ଭାରତ ଓ ଆମେରିକା ଭିତରେ ଚାଲିଥିବା ବାଣିଜ୍ୟ ବ୍ୟବସାୟକୁ ନେଇ, ଯେଉଁଥିରେ ସରକାରଙ୍କ ଭୂମିକା ରହିଛି । ତା'ଛଡ଼ା ପୃଥିବୀର ବ୍ୟବସାୟାତ୍ମକ ରାଜଧାନୀ (Commercial capital) ବୋଲାଉଥିବା ଏଇ ମହାନଗରୀରେ କନ୍‌ସଲ୍ ଜେନେରାଲ୍‌ଙ୍କୁ ନାନା ବ୍ୟୟସାପେକ୍ଷ ଉଦ୍ୟମ କରିବାକୁ ପଡ଼ିଥାଏ, ଭାରତର ବାଣିଜ୍ୟଉପଯୋଗୀ ସଂପଦକୁ ଚିହ୍ନାଇବା ଲାଗି । ସେହେତୁ ଆମକୁ ଦେଖିବାକୁ ପଡ଼େ, ସେହି ଉଦ୍ୟମକୁ କେତେଦୂର ଯଥାର୍ଥ ବୋଲି କୁହାଯାଇପାରିବ ।

ବେଳେବେଳେ ମୋତେ ଏଠି ରହିବାକୁ ପଡ଼େ ମାସ ମାସ ଧରି । ଏକୁଟିଆ ଜୀବନ ଏବଂ ପ୍ରଚୁର ସମୟ ମୋ ହାତରେ । ଏଇ ପରିସ୍ଥିତିରେ କିଭଳି ଉପାଦାନ ମିଳୁଥିଲା ମୋତେ ମୋର ଲେଖନୀୟ ଭାବଭାବନା ପାଇଁ, ଯେଉଁଥିରେ ମୁଁ ମୋର ଅଡ଼ିଟ୍ ବହିର୍ଭୂତ ଜୀବନକୁ ଅର୍ଥାନ୍ୱିତ କରି ପାରିଥିଲି ବୋଲି କହିବି ? ଆଶୁ ଉତ୍ତର ଦେଇ ହେବ ଏଇ ପ୍ରଶ୍ନର ଯେ ଅନେକ କିଛି ମିଳିବାର ପ୍ରତିଶ୍ରୁତି ଥିଲା । କାରଣ ନିଉୟର୍କ ହେଉଛି ବ୍ୟକ୍ତିସ୍ୱାଧିନତାକୁ ନେଇ ଗର୍ବ କରୁଥିବା ଦେଶର ନିଷ୍ପାପର ଦର୍ପଣ । କିନ୍ତୁ ସେ ହିସାବରେ କଣ ଯଥେଷ୍ଟ ସମୟ ଥିଲା ମୋ ହାତରେ ? ତାଛଡ଼ା ଜଣେ ଭାରତୀୟ ବରିଷ୍ଠ ବ୍ୟୁରୋକ୍ରାଟ୍ କେତେ ଦୂରକୁ ଯାଇପାରିବ ତାର ଜିଜ୍ଞାସାକୁ ଚରିତାର୍ଥ କରିବା ଲାଗି ? ସେହେତୁ ମୁଁ ଯାହା କିଛି କହିବାକୁ

ଯାଉଛି, ତା ନିଃସନ୍ଦେହରେ ବିଚିତ୍ର ଏବଂ ମୋର ଅନୁଭୂତ ସତ୍ୟ, କିନ୍ତୁ ତାକୁ ସଂପୂର୍ଣ୍ଣ ବୋଲି କହି ହେବ ନାହିଁ । ସେଥିର ଦୁଇଟି ନମୁନା ଦେବାକୁ ଯାଉଛି, ଯେଉଁଥିରୁ ଆପଣ ବୁଝିବେ ଯେ କାହିଁକି ଏଭଳି ଦ୍ୱିଧାଭାବ ଆସୁଛି ମୋ ମନରେ ।

ଆଶ୍ଚର୍ଯ୍ୟ ହେଲି ଦେଖି ଯେ ଧନୀ ଦେଶର ଦରିଦ୍ର ଏତେ କୁତ୍ସିତ ହୋଇପାରେ । ମନେ ହେବ ସେ କୁତ୍ସିତ ବୋଲି ଦେଖେଇ ହେବାକୁ ଚାହେଁ ନିଜକୁ, ଯଦିଓ ତାକୁ ସେମିତି କିଛି ଦରିଦ୍ର ବୋଲି କୁହାଯିବ ନାହିଁ । କାରଣ ଏଇ ଯେଉଁ କଳା ଲୋକଟା ଫୁଟ୍‌ପାଥିରେ ଗଡୁଛି, ଖଣ୍ଡେ ଦୂରରେ ଆଉ ଗୋଟାଏ କଳା ଲୋକ ଦୁର୍ବୋଧ୍ୟ ଗାଳିଗୁଲଜ ସାଙ୍ଗକୁ ଫଟା ଗଳାର ଗୀତଟାଏ ଛାଡ଼ି ଦେଇଛି, ଆଉ ଟିକିଏ ଦୂରରେ ...ଇସ୍ ! କଣ ହୋଇଛି ଏମାନଙ୍କର ? କେବଳ ଆଜି ନୁହେଁ । ସେଦିନ ବି ଆସିଥିଲି ଏଇ ବାଟେ, ଏଇ ବାଓରୀ (Bowery) ଅଂଚଳ ଦେଇ ଯାଉଥିଲି କେଉଁଠିକି ଏବଂ ଦେଖିଥିଲି ଏହିପ୍ରକାର ଦୃଶ୍ୟ । ସମସ୍ତେ ଅବଶ୍ୟ ମାତାଲ, କିନ୍ତୁ ସାଧାରଣ ପ୍ୟାଣ୍ଟ୍‌ସାର୍ଟ ପିନ୍ଧିଛନ୍ତି, ଶୁଣିଲି ସେମାନଙ୍କର ବଖୁରିକିଆ ଘର ଅଛି ତାଙ୍କ ନିଗ୍ରୋପଡ଼ାରେ, ମଧ୍ୟ ପୁରୁଣା ମେଛଡ଼ା କାର୍ । କିନ୍ତୁ ତଥାପି ସେମାନେ ଏମିତି ଦେଖେଇ ହେଉଛନ୍ତି ତାଙ୍କର ହୀନମନ୍ୟତା ? ଜଣେ ଗୋରା ବନ୍ଧୁ ମୋତେ କହିଲେ - ଡୋଣ୍ଟ ବଦର୍ । ନିଷ୍କର୍ମା ଗୁଡ଼ାକ, ତାଙ୍କର ସ୍ୱଭାବ ସେଇଆ । କିନ୍ତୁ ଜଣେ ଶିକ୍ଷିତ ନିଗ୍ରୋ ବନ୍ଧୁ କହିଲେ - ଏଇ ଭାବରେ ସେମାନେ ତାଙ୍କ ପ୍ରତିବାଦର ସ୍ୱର ଉଠେଇବାକୁ ଚାହାଁନ୍ତି । ଯେ ଦେଖ ସମସ୍ତେ, ଦେଖ ଆମକୁ କେତେ ଗରିବ, ଗରିବରୁ ବଳି ନିଉଛୁଣା କରି ରଖିଛି ଏଇ ଗୋରାମାନଙ୍କ ସମାଜ । କାରଣ ଆମେ ହେଉଛୁ 'ବ୍ଲଡ଼ି ନିଗର୍ସ' ! କାହା କଥା ସତ ? ସେଇଠୁ ମୁଁ ବୁଝିଲି ଜଣେ ନିରପେକ୍ଷ ତୃତୀୟ ବ୍ୟକ୍ତି ହିସାବରେ ଯେ ପ୍ରକୃତ ସତ୍ୟ ହେଉଛି ମଝିମଝିକିଆ । ମାନେ ଦିହିଁଙ୍କ ଦୋଷ । ମୋଟକଥା, କଳାଗୋରା ତଥାପି ଭାଇ-ଭାଇ ହୋଇ ପାରିନାହାନ୍ତି ଏଠି, ଯଦିଓ ସେମାନେ ସମସ୍ତେ ସମାନ, ସ୍ୱାଧିନ ଏବଂ 'ଦି ଗ୍ରେଟ୍ ଆମେରିକା'ର ସଂତାନ, ସଂବିଧାନ ଏବଂ ଆଇନକାନୁନ ଅନୁଯାୟୀ । ଛାଡ଼, ଏଥିକୁ ଉପାୟ ନାହିଁ । ଦି'ତିନିଥର ପରେ ମୁଁ ଆଉ ସେବାଟେ ଆସିବାକୁ ଚାହିଁଲି ନାହିଁ । ସ୍ଥିର କଲି ଯେ ମୋର ଅଧିକ କିଛି ବୁଝିବାର ନାହିଁ ।

କିନ୍ତୁ ମୁଁ ମଧ୍ୟ ଦେଖିଲି ଏଇ ସ୍ୱାଧିନଚେତା ଦେଶର ଅନ୍ୟ ଏକ ରୂପ । ପ୍ରତିବାଦ ନୁହେଁ, ଘୋର ଅବଜ୍ଞାର ଆଖିଦୁରୁଶିଆ ଚେହେରା । ସମାଜର ଭଦ୍ର, ସଭ୍ୟ ଏବଂ ସୌଖୀନ ସୁନ୍ଦର ସଂସ୍କାରକୁ ହସି ଉଡ଼େଇ ଦେଲାପରି । ଯେଉଁ ସଂସ୍କାରର ଅନ୍ୟ ନାଆଁ ଶଠତା ! ଯେଉଁଥିରେ ଖାଲି ବର୍ଣ୍ଣବିଭେଦ ନାହିଁ, ଅଛି ଯେତେକ ଉଚିତ ଅନୁଚିତର ଅକୁହା ଅନୁଶାସନ । ଟୁ ହେଲ୍ ଉଇଥ୍ ଇଟ୍ ! ଦେଖ, ଆଖି ପୂରେଇ ଦେଖ ଆମେ କଣ କରୁଛୁ । ଏହି ମର୍ମରେ ଶ୍ୱେତାଂଗିନୀ ଦିନ ଦି ପ୍ରହରରେ କେଉଁ ନିଗ୍ରୋ ଟୋକାର ଦେହରେ ହାତ ବେଢ଼େଇ ଆଣି

ତାକୁ ଚୁଂବନ ଦିଏ । ତହୁଁ ନିଗ୍ରୋ ଯୁବକ ହିଁ ହିଁ ହୋଇ ହସେ ତମ ଆଡ଼କୁ ଚାହିଁ, ତମର ବିମୂଢ଼ତାକୁ ଦେଖି ହସିଲା ପରି । ଇଏ ହେଉଛି ନିଉୟର୍କର ଗ୍ରୀନ୍‌ଉଇଚ୍ ଭିଲେଜ୍ । କହିବାକୁ ଗଲେ ଏଠି ସଚେତନ ଅଣସଭ୍ୟତାର ଚିତ୍କାର । ଯାହାର ସଂଦେଶ ହେଉଛି ଯେ କରିଯାଅ ଯାହା ମନ ହେଉଛି ତମର, ଆଉ ମାର ଗୋଲି ସଭ୍ୟତାକୁ । ଜାଣିଶୁଣି ବିଚିତ୍ର ନାଆଁ ଦିଆ ହୋଇଥାଏ ଭିଲେଜ୍‌ର ଦୋକାନମାନଙ୍କୁ । ଯଥା :- କାଫେ ଇଡ୍, ଫ୍ରଏଡ୍‌କୁ ମନେ ପକେଇ, ସୋଲ୍ ଗ୍ୟାଲେରୀ, ଧର୍ମାତ୍ମାମାନଙ୍କୁ ଥଟ୍ଟା କଲା ପରି, ହଣ୍ଟେଡ୍ ବୁକ୍‌ସପ୍ ଅର୍ଥାତ୍ ଭୂତ ଲାଗିଛି ଏଇ ବହି ଦୋକାନରେ, ନାଇଟ୍ ଆଉଲ୍ କ୍ଲବ୍ ଅର୍ଥାତ୍ ଇଏ ହେଉଛି ରାତ୍ରିଚର ପେଚାମାନଙ୍କ ପେଣ୍ଡ, ଇତ୍ୟାଦି ଇତ୍ୟାଦି । ଯାହାହେଉ ମୁଁ ପଶିଗଲି 'ଦି ସାଇକ୍ଲୋପ୍‌ସ୍ କାଫେ' ନାମକ ଗୋଟିଏ ରେସ୍ତୋରାଁରେ । ଯାହା କଂପି ଉଠୁଛି ସେମାନଙ୍କ ହସଖୁସିରେ । ବସିପଡ଼ ଯେଉଁଠି ତମ ଇଚ୍ଛା, ଖାଅ ଯାହା ଇଚ୍ଛା ହେଉଛି ତମର, ମଝି ଟେବୁଲ୍ ଉପରେ ରଖା ହୋଇଥିବା ନାନାଦି ଚଟ୍‌ପଟି ବସ୍ତୁ, ତମ ପାଖରେ ଠିଆ ହୋଇଥିବା ଯୁବତୀକୁ ଚୁମାଟିଏ ମଧ୍ୟ ଦେଇପାର, ଯଦି ତାର କୌଣସି ଆପତ୍ତି ନ ଥାଏ ଏବଂ ନାଚ, ଖାଅ, ଫୂର୍ତ୍ତି କର । ଆରାମ ଖୋଜ ନାହିଁ, କେଉଁ ନରମ ସୋଫା ନାହିଁ ଏଠି ତମକୁ ଆରାମ ଦେବା ଲାଗି । କେବଳ ଆନନ୍ଦ, ରାଶି ରାଶି ଆନନ୍ଦ । ମୋତେ ଏଠି କୁହାଗଲା ଗୋଟିଏ ଇଣ୍ଡିଆନ୍ ଗୀତ ଗାଇବା ପାଇଁ । ଏବଂ ମୁଁ ଗାଇଲି ଗୋଟିଏ ପୁରୁଣା ଓଡ଼ିଆ ଗୀତ । 'ବାଟୋଇ ଭାଇ ବେଗି ବେଗି ପାହୁଣ୍ଡ ଜଗି ଯା', ଯାହାକୁ ସେମାନେ କରତାଳି ପୂର୍ବକ ବାହାବା କରିଥିଲେ । କ୍ଷମା କରିବେ, ମୁଁ କେଉଁ ଅନ୍ତରଂଗ ବଂଧୁତାର ଦୁଃସାହସ କରିପାରିଲି ନାହିଁ ଏଠି, ହେଲେ ଏମାନଙ୍କର ଏଇ କାରବାରକୁ ମୁଁ ତୁଚ୍ଛା ଲୋକଦେଖାଣିଆ କି ପିଲାଳିଆ ବୋଲି ଭାବି ପାରିଲି ନାହିଁ । ଏମାନେ ମିଛ ନୁହଁନ୍ତି । ଆତ୍ମୀୟତାର ପୂଜାରୀ ଏମାନେ, ତେଣୁ ହାସ୍ୟାସ୍ପଦ ନୁହଁନ୍ତି ।

କିନ୍ତୁ ନିଉୟର୍କ ମହାନଗରୀରେ କଣ କେବଳ ଏଇସବୁ ନକାରାତ୍ମକ ଦୃଶ୍ୟକୁ ମୁଁ ମୋ ନୂତନ ଅନୁଭୂତିର ଯୋଗ୍ୟ ବୋଲି ଭାବିଲି ? କେଉଁଠି ଦୟନୀୟ ହୀନମନ୍ୟତା, ତ ଆଉ କେଉଁଠି ମହା ବିଦ୍ରୂପର ରୋଳ ? ନା ଆଜ୍ଞା, ତା ମୋଟେ ନୁହେଁ । ଏଇ ସମସ୍ତ ଦୃଶ୍ୟ ବିରଳ ଏବଂ ବିଚିତ୍ର, ହେଲେ ତାର ତାତ୍ପର୍ଯ୍ୟକୁ ମୁଁ ପୂରାପୂରି ଧରି ପାରୁନାହିଁ, ସେଇଥିଲାଗି ତାକୁଇ ପ୍ରଥମେ ବଖାଣିଲି ।

ବୈଷୟିକ ସମୃଦ୍ଧି, ସାମାଜିକ ପ୍ରଗତି ଏବଂ ବ୍ୟକ୍ତିମାନସର ଉନ୍ନତି କଣ ହାତଧରାଧରି ହୋଇ ଚାଲିପାରିବ ନାହିଁ ନା ଚାଲୁ ନାହିଁ ଏଇ ସଭ୍ୟ ସ୍ୱାଧିନ ଦେଶରେ ? କିଏ କହିଲା ସେକଥା ? ସେଥିର ପ୍ରାମାଣିକ ଦୃଶ୍ୟ ମଧ ଦେଖାଏ ଏଇ ମହାନଗରୀ ଏବଂ ମୁଁ ତାର ଉପଭୋକ୍ତା ନ ହୋଇ ରହିପାରିଥାଆନ୍ତି କେମିତି ?

ହଁ, ମୁଁ ଏଠି ଦେଖିଛି ନାନା ସମୃଦ୍ଧିର କୃତି ଏବଂ ଚମତ୍କୃତ ହୋଇଛି । ସେଥିରେ କେବଳ ପ୍ରଗତି ଓ ମାନସିକ ବିକାଶର ସ୍ୱାକ୍ଷର ନାହିଁ, ମଧ ଅଛି ଏକ ବଡ଼େଇର ଭାବ । ଯେ

ଦେଖ ଆମେ କେତେ ଉପରକୁ ଉଠିଲୁଣି । ଦେହ, ମନ, ବୁଦ୍ଧି, କେଉଁ କ୍ଷେତ୍ରରେ ଭଲା ଆମେ ମହାନନ୍ଦର ଉପାଦାନ ତିଆରି କରି ନାହୁଁ ନିଜ ପାଇଁ, ତଥା ବିଶ୍ୱଜଗତର ଉପଭୋଗ ପାଇଁ ?

ଯଥା ମେଟ୍ରୋପଲିଟାନ୍ ମ୍ୟୁଜିୟମ୍ ଅଫ୍ ଆର୍ଟ (Metropolitan Museum of Art) । ମୁଁ ଘଣ୍ଟା ଘଣ୍ଟା ଧରି ବସି ରହିଛି ତା ଭିତରେ, ଇତିହାସପ୍ରସିଦ୍ଧ କଳାକାରମାନଙ୍କ ମୌଳିକ କୃତିଗୁଡ଼ିକୁ ଦେଖି ତାର ଐଶ୍ୱର୍ଯ୍ୟକୁ ପୂରାପୂରି ଗ୍ରହଣ କରି ନେବା ଲାଗି । ମହାବୌଦ୍ଧିକ ଏବଂ ପ୍ରାୟଶଃ ଦୁର୍ବୋଧ ପିକାସୋ ଓ ସାଲଭାଡ଼ର୍ ଡାଲିଙ୍କ ଠାରୁ ଆରମ୍ଭ କରି କାହିଁରେ କେତେ ପଛକୁ, ସମ୍ମୋହକ ଏବଂ ରୋମାଣ୍ଟିକ୍ ରାଫେଲ୍, ରେମ୍‌ବ୍ରାଣ୍ଟ, ଭିନ୍‌ସେଣ୍ଟ ଭାନ୍ ଗଗ୍, ରେନୋଏର୍ ଓଗେରଙ୍କ ବାଟ ଦେଇ । ବୈଷୟିକ ସମୃଦ୍ଧିର ଶୀର୍ଷରେ ପହଞ୍ଚି ନ ଥିଲେ ଏଭଳି ଅମୂଲ୍ୟ ଧନର ଗନ୍ତାଘର ସୃଷ୍ଟି ହୋଇ ପାରିଥାଆନ୍ତା ? ମଧ୍ୟ ଯାଇଛି ପୃଥିବୀର ସର୍ବୋଚ୍ଚ ଅଟ୍ଟାଳିକା ଏମ୍‌ପାୟାର୍ ଷ୍ଟେଟ୍ ବିଲ୍‌ଡ଼ିଂଗ୍‌ର ଉପରକୁ । ଦେଖିଛି ବ୍ରଡ୍‌ୱେରେ ମଂଚସ୍ଥ ହେଉଥିବା ନୂଆ ନାଟିକାର ପହିଲି ରାତି (ପ୍ରଭାବଶାଳୀ ଆମେରିକାନ୍ ବନ୍ଧୁମାନଙ୍କ ଦୟା ନ ହୋଇଥିଲେ ସେଇ ଭିଡ଼ ଭିତରେ ପଶି ହୋଇ ନ ଥାଆନ୍ତା) । ରକ୍‌ଫେଲର୍ ସେଣ୍ଟରରେ ବସି ରହି ଦେଖିଛି ସେଠି ଫରଫର ହୋଇ ଉଡୁଥିବା ପୃଥିବୀର ବିଭିନ୍ନ ଦେଶର ପତାକାମାନଙ୍କୁ, ଆମ ତ୍ରିରଂଗ ପତାକା ସମେତ, ସମୃଦ୍ଧ ଆମେରିକା ସେସମସ୍ତଙ୍କୁ ତା'ର ଅତିଥି ରୂପେ ବରଣ କରି ନେଲା ପରି । ରାତି ଅଧରେ ଦାଉ ଦାଉ ନିଅନ୍ ଆଲୁଅରେ ହାଲୋଳ ହୋଇ ଉଠିଥିବା ଟାଇମ୍ ସ୍କୋୟାରରେ ଘୁରି ବୁଲିଛି, କେଉଁଠିକି ଯିବି ବୋଲି ସ୍ଥିର କରି ନ ପାରି । ହେଲେ ଯାଇଛି କେତୋଟି ଭିନ୍ନଦେଶୀୟ ରେସ୍ତୋରାଁ, ନାଇଟ୍ କ୍ଲବ୍, ମ୍ୟୁଜିକ୍ ହଲ୍ ଇତ୍ୟାଦି ସ୍ଥାନକୁ । ସେଥିରେ ନିର୍ଘୋଷିତ ବୈଶିଷ୍ଟ୍ୟ କଣ ବୋଲି ଜାଣିବା ଲାଗି । ଏବଂ ମୋଟାମୋଟି ଲାଭବାନ୍ ହୋଇଛି, ନୂଆନୂଆ ଅନୁଭୂତିକୁ ଗୋଟେଇବା ଦିଗରେ ।

ହେଲେ ଅନେକ ସମୟରେ ମୁଁ ମୋ ହୋଟେଲ୍‌ର [ସାଧାରଣତଃ ମୁଁ ସିକ୍‌ସଥ୍ ଅଭିନିଉରେ ଥିବା ବାରବିଜନ୍ ପ୍ଲାଜା, (Barbizon Plaza) ହୋଟେଲ୍‌ରେ ରହୁଥିଲି] ପାଖରେ ଥିବା ସେଣ୍ଟ୍ରାଲ୍ ପାର୍କରେ ବସି ରହେ, ଥକି ଗଲା ପରି । କୁହେ, ଆଜି ଆଉ ଯିବି ନାହିଁ କେଉଁଠିକି । ଏଇ ହ୍ରଦର କୂଳରେ ବସି ରହିବି । ଏବଂ ଦେଖୁଥିବି ଏଇ ଚିରପରିଚିତ ହଂସମାନଙ୍କୁ । ସେମାନଙ୍କର ଶାନ୍ତ ଦୋଳାୟିତ ଆନନ୍ଦରୁ ସତେ କିଛି ମିଳିଯିବ ପରା ! ସେଇଠୁଁ ବେଳେ ବେଳେ ଗୋଟାଏ ପ୍ରଶ୍ନ ଆସେ ମୋ ମନକୁ - ନିଉୟର୍କ ନଗରୀ, ଯାହାର ବାର୍ଷିକ ବଜେଟ୍ ଭାରତ ସରକାରଙ୍କ ବଜେଟ୍‌ଠାରୁ ଅଧିକ (ସେବେଳର ଷ୍ଟାଟିସ୍‌ଟିକସ୍ ଅନୁଯାୟୀ), ତାକୁ କଣ ବିକାଶଶୀଳ ଭାରତ କିମ୍ବା ତା'ର କେଉଁ ବଡ଼ ସହର ତା'ର ମଡ଼େଲ୍ ଭାବରେ ଗ୍ରହଣ କରିପାରିବ ? ବୋଧହୁଏ ନୁହେଁ । କେମିତି ଭଲା ଗୋଟିଏ ମଡ଼େଲ୍ ହେବ

ଏଇ ସହର, ତା'ର ସମସ୍ତ ଆଖିଝଲସା କୃତିତ୍ୱ ସତ୍ତ୍ୱେ, ଯାହାର କ୍ରାଇମ୍‌ଗ୍ରାଫ୍, ଅପରାଧର ନକ୍‌ସା, ମଧ୍ୟ ସବୁଠାରୁ ଉଚ୍ଚରେ ବୋଲି କୁହାଯାଏ ? ଏବଂ ବର୍ଷକୁ ହାରାହାରି ୪୦,୦୦୦ ଲୋକ ଟ୍ରାଫିକ୍ ଆକ୍‌ସିଡେଣ୍ଟରେ ପ୍ରାଣ ହରାନ୍ତି ?

କିନ୍ତୁ ଏମିତି ହେବା କଣ ଅନିବାର୍ଯ୍ୟ ? ସମୃଦ୍ଧିର କଣ ଶକ୍ତି ନାହିଁ, ସ୍ୱାଧିନତା ଓ ସମାନତା, ସଭ୍ୟତା ଏବଂ ଆତ୍ମିକତାକୁ ସମନ୍ୱିତ କରିପାରିବ, ଯେଉଁଥିରେ ସର୍ବେ ସୁଖୀ ହୋଇପାରିବେ, ଜଣକୁ ଜଣେ, ଏବଂ କେଉଁ ଅପଦୃଶ୍ୟର ଅବକାଶ ନ ଥିବ, ସେଥିରେ ବୈଚିତ୍ର୍ୟ ଥାଉ ବା ନଥାଉ ? ଭାବନା ଥଳକୂଳରେ ପହଞ୍ଚିପାରେ ନାହିଁ । ମଧ ପାରିନାହିଁ ଆଜିଯାଏଁ ।

ଛାଡ଼ନ୍ତୁ, ନିଉୟର୍କର ଆଖିଦେଖା ଅନୁଭୂତିକୁ ନେଇ, ଏତିକି କହିଲେ ଚଳିବ । ଏଥର କୁହେ କିଛି କିଛି ଆମେରିକାର ଅନ୍ୟାନ୍ୟ କେତୋଟି ସ୍ଥାନ ବିଷୟରେ, ଯେଉଁଠିକି ମୁଁ ଯାଇଥିଲି, ଏବଂ ଯାହାର କିଛି ଉଲ୍ଲେଖନୀୟ ବୈଶିଷ୍ଟ୍ୟ ଅଛି ମୋର ଏଇ ଉପାଖ୍ୟାନ ପାଇଁ । ସେଗୁଡ଼ିକ ସଂକ୍ଷେପରେ ଏହିପ୍ରକାର :-

— ପଶ୍ଚିମ ଉପକୂଳରେ ଥିବା ସାନ୍‌ଫ୍ରାନ୍‌ସିସ୍କୋ । ଆମେରିକାର ସବୁ ସହର ପ୍ରାୟ ଏକାଭଳି ଲାଗେ । କେବଳ ଏଇ ଗୋଟିକ ଛଡ଼ା । କାରଣ ଏଠି ସେମାନେ ଜାଣିଶୁଣି ବିଗତ ଅତୀତର ସୌନ୍ଦର୍ଯ୍ୟକୁ ବଂଚେଇ ରଖିବାକୁ ଚାହିଁଛନ୍ତି । ସେହେତୁ ଏଇ ସହରରେ ଥିବା କୋଠାସବୁ ଅପେକ୍ଷାକୃତ ସାନ, କଲିକତାର ଟ୍ରାମ୍‌କାର ତୁଲ୍ୟ କେବ୍‌ଲ୍‌କାରକୁ ତଥାପି ବ୍ୟବହାର କରାଯାଉଛି ଲୋକମାନଙ୍କ ଯିବାଆସିବା ପାଇଁ, କେତୋଟି ନିର୍ଦ୍ଦିଷ୍ଟ ଫୁଟ୍‌ପାଥିରେ ମାଛକଂକଡ଼ା ଆଦିର ପସରା ମେଲା ହୋଇଥାଏ ବାଟଚଲା ଗରାଖମାନଙ୍କ ପାଇଁ, ଇତ୍ୟାଦି ଇତ୍ୟାଦି ।

— ଡିସ୍‌ନିଲ୍ୟାଣ୍ଡ । ସେଇ ପଶ୍ଚିମ ଉପକୂଳରେ ଥିବା ଗୋଟିଏ ଅପରୂପ ସଂସାର, କେବଳ ପିଲାମାନଙ୍କ ପାଇଁ । ହେଲେ ଯାହାକୁ ଦେଖି କୌଣସି ବଡ଼ମଣିଷ ମୁଗ୍ଧ ନ ହୋଇ ରହିପାରିବ ନାହିଁ । ୱାଲ୍ଟ ଡିସ୍‌ନିଙ୍କ ଦ୍ୱାରା କଳ୍ପିତ ଏବଂ ସଂଯୋଜିତ କାର୍ଟୁନ୍ ଚରିତ୍ରମାନଙ୍କ ସଂସାର - ମିକି ମାଉସ୍ ମୂଷା, ବଗ୍‌ସ୍ ବନ୍‌ନୀ ଠେକୁଆ, ଓଗେର । କଳ୍ପନା ଓ ବୈଜ୍ଞାନିକ କୌଶଳ ଏକାଠି ମିଶି କିଭଳି କିମିଆଁ ଦେଖାଇପାରେ ଅର୍ଥର ଅଭାବ ନ ଥିଲେ, ତାର ଏକ ଅପୂର୍ବ ଉଦାହରଣ ।

— ଦକ୍ଷିଣ ପଶ୍ଚିମର ତଥାକଥିତ ମରୁଦେଶରେ ଥିବା ଲାସ୍ ଭେଗାସ୍ । ଯାହାକୁ ଲଗାମ୍‌ଛଡ଼ା ମଉଜମଜଲିସ୍‌ର ମକ୍‌କା ବୋଲି କୁହନ୍ତି । ଯେଉଁଠି କେଜାଣି କେତେ ରକମର ଜୁଆଖେଳ ଚାଲିଥାଏ ଦିନରାତି । ମୁହୂର୍ତ୍ତକରେ ଲକ୍ଷଲକ୍ଷ ଡଲାର୍ ମିଳିଯାଏ ଚମକୁ, ହେଲେ ଚାହୁଁ ଚାହୁଁ ମିଳେଇଯାଏ । ଏଇଠି ଗୋଟିଏ ସ୍ୱୀକାରୋକ୍ତି ବାଢ଼ିବାରେ ଆପତ୍ତି ନାହିଁ ମୋର ।

ମୁଁ ମଧ୍ଯ ଜୁଆ ଖେଳିଥିଲି, ମୋର ସହକର୍ମୀମାନଙ୍କ ସାଂଗରେ ଯୋଗ ଦେଇ । ଏବଂ ବେଶ୍ କିଛି ଡଲାର୍ ମିଳିଗଲା ମୋତେ । କିନ୍ତୁ ମୁଁ ମଧ୍ୟ ପଡ଼ିଲି ସେଇ ଜୁଆନଗରୀର ପାଲରେ । ମୋର ଆହୁରି ଆହୁରି ଜିତିବାକୁ ଇଚ୍ଛା ହେଲା । ଫଳରେ ଯାହାକିଛି ଜିତିଥିଲି, ସବୁତକ ହରେଇଲି । ଏଠିକାର 'ଷ୍ଟ୍ରିପ୍' ନାମକ ବିପଣୀରେ ମଧ୍ୟ ରହିଛି ନିଉୟର୍କର ବ୍ରଡ୍‌ୱେ ପରି, ନାନାଦି ନାଚଗୀତ ଓ ରାତି ଉପଭୋଗର ସଂଭାର । କିନ୍ତୁ ତାକୁ ନେଇ ନୂଆ କିଛି କହିବାର ନାହିଁ ।

— ମଧ୍ୟଦେଶରେ ଥିବା ଗ୍ରାଣ୍ଡ କାନିଅନ୍ । ପ୍ରକୃତିର ଏଭଳି ଏକ ବିରାଟ ସୁନ୍ଦର ସମ୍ମୋହକ ଦୃଶ୍ୟ ମୁଁ ଆଉ କେଉଁଠି ଦେଖିଛି ବୋଲି ମନେ ହୁଏ ନାହିଁ । ଭୂଖଣ୍ଡର ଏକ ପ୍ରାଗୈତିହାସିକ ଉତ୍‌ଥାନପତନର ଦୃଶ୍ୟ । ପାଚିରୀଘେରା ଏକ ବିସ୍ତୃତ କ୍ଷେତ୍ର, ଯାହାର ତଳକୁ ଅନେଇଲେ ଦେଖିବ କେଉଁ ଅତଳତଳରୁ ମଥା ଟେକି ଉଠିଥିବା ବିରାଟ ପର୍ବତ ମାନ । କାହାର ନାଆଁ ମାଉଣ୍ଟ ବିଷ୍ଣୁ ଓ ଆଉ କାହାର ନାଆଁ ମାଉଣ୍ଟ ଶିବ । କେମିତି ଭଲା ଫେରି ଆସିବ ସେମାନଙ୍କୁ ନମସ୍କାର ନ କରି ?

ବାକୀ ଅନେକ ଜାଗାକୁ ତ ଯାଇଛି, ଯଥା ନିଉୟର୍କର ସାନଭାଇ ପରି ମନେ ହେଉଥିବା ସିକାଗୋ, ଏବଂ ଫ୍ଲୋରିଡ଼ାର ରାଜଧାନୀ ମାୟାମି, ଯେଉଁଠି ମହାଧନୀମାନେ ବେଳାଭୂମିକୁ ବାଣ୍ଟି ନେଇଛନ୍ତି ନିଜ ନିଜ ଆମୋଦପ୍ରମୋଦ ପାଇଁ । କିନ୍ତୁ କିଛି ଅଧିକ ବିଶେଷ ନାହିଁ ସେମାନଙ୍କ ବିଷୟରେ କହିବା ଲାଗି । ଆଉ ୱାଶିଂଗ୍‌ଟନ୍ ରହଣି ବିଷୟରେ ତ ପରେ କହିବି ବିସ୍ତୃତ ଭାବରେ, କାରଣ ସେଇ ଥିଲା ମୋର ଘର ଅଢ଼େଇ ବର୍ଷ ଯାଏ । ତେଣୁ ବର୍ତ୍ତମାନ ଚାଲନ୍ତୁ ଯିବା ଆମେରିକାର ବାହାରକୁ ଯେଉଁଠି ଭାରତୀୟ ହିସାବଖାତା ସବୁ ଅପେକ୍ଷା କରି ରହିଥିଲା ଆମ ଅଡ଼ିଟ୍ ପାଇଁ । ପ୍ରଥମେ ଦକ୍ଷିଣକୁ । ବିଭିନ୍ନ ଦେଶ । ଏବଂ ପ୍ରତ୍ୟେକେ ଭିନ୍ନ ତଥା ଅଭିନବ ଅନୁଭୂତିର ଆବାହକ ଥିଲେ ମୋ ପାଇଁ ।

— ମେକ୍‌ସିକୋ । ଭାଷା ସ୍ପାନିଶ୍ । ଆମରି ଭଳି ଦରିଦ୍ର । ଖାଦ୍ୟର ସ୍ୱାଦୁ ପ୍ରାୟ ଆମରି ଭଳି, କାରଣ ସେମାନେ ମଧ୍ୟ ସେହିସବୁ ମସଲାମସଲି ବ୍ୟବହାର କରନ୍ତି ତାଙ୍କ ତରକାରୀପତ୍ର ରାନ୍ଧିବା ପାଇଁ । ଏବଂ ଏଠି ମଧ୍ୟ ଅଛି ଏକ ପ୍ରାଚୀନ ସଭ୍ୟତାର ସନ୍ତକ । ଏହି ସମସ୍ତ କାରଣରୁ ଅନେକ ଆଗ୍ରହ ଏବଂ କୌତୂହଳ ଥିଲା ମନରେ, ମେକ୍ସିକୋ ଦେଖିବା ଲାଗି । ଏବଂ ତାହା ଅନେକାଂଶରେ ଚରିତାର୍ଥ ହୋଇଥିଲା, ଏଥିରେ ସନ୍ଦେହ ନାହିଁ । ହେଲେ ମଝିରେ ଆଉ ଗୋଟିଏ ଅନୁଭୂତି ଆସି ପହଞ୍ଚିଥିଲା ମୋ ପାଇଁ, ଯେଉଁଥିରେ ମୋ ମୁଣ୍ଡ ଗୋଳମାଳ ହୋଇଗଲା । ବୁଲ୍ ଫାଇଟ୍ ।

ହଁ, ଏଠି ମଧ୍ୟ ସ୍ପାନିଶ୍ କଲ୍‌ଚର୍ । ତେଣୁ ବୁଲ୍ ଫାଇଟ୍ । ଏଠିବି ଦେଖିବ ସେମାନେ କେମିତି 'ହୋଏଲା ହୋଏଲା' କହି ପାଟି କରି ଉଠନ୍ତି ରଣଭୂମିର ଚାରିପାଖରେ ବସି,

ଦୁଃସାହସୀ ବୀରପୁରୁଷକୁ ପ୍ରୋତ୍ସାହିତ କରି ଜିତେଇବା ପାଇଁ, ଯେତେବେଳେ ସେ ଲଢୁଥିବ ରକ୍ତମୁଖା ହିଂସ୍ର ବୁଲ୍ ସାଙ୍ଗରେ । ଏହିପ୍ରକାର ପ୍ରତିଶ୍ରୁତି ମିଳିଥିଲା ମୋତେ, ତାକୁ ଦେଖିବାକୁ ଯିବା ପୂର୍ବରୁ । ହେଲେ ଅବିଳମ୍ବେ ମୋର ମନ ହେଲା ସେଠୁ ପଳେଇ ଆସିବା ଲାଗି । କାରଣ ମୁଁ ଦେଖିଲି ଯେ ଇଏ କୋଉ ଯୁଦ୍ଧ ନୁହେଁ, ହିଂସ୍ରପଶୁ ଓ ବୀରପୁରୁଷ ଭିତରେ । ହୁଣ୍ଡା ଜନ୍ତୁଟାକୁ ରଗେଇ ତାକୁ କେତେ କଲବଲ କରି ମରା ଯାଇପାରେ ତାରି ଏକ ପ୍ରଦର୍ଶନ । ଏବଂ ସେଇ ପ୍ରଲମ୍ବିତ ନିଷ୍ଠୁରତା, ସେଇ ହେଉଛି ମଜା । କ'ଣ ହୁଏ ନା, ଅରଣା ମହିଁଷି ଜାତୀୟ ଗୋଟାଏ ଜନ୍ତୁକୁ ଲୁହାବାଡ଼ଦିଆ ପଡ଼ିଆ ଭିତରେ ଛାଡ଼ିଦିଆଯାଏ । ସେ ଧାଇଁ ବୁଲେ, ପଳେଇ ଯିବାକୁ ବାଟ ପାଏ ନାହିଁ, ତେଣୁ ବାଉଳା ହୁଏ । ରାଗେ, କିନ୍ତୁ ତାକୁ ଆହୁରି ରଗେଇବା ପାଇଁ ଜଣେ ଘୋଡ଼ସବାର ପଶେ ସେଇ ପଡ଼ିଆ ଭିତରକୁ ଏବଂ ତା ପଛରେ ଗୋଡ଼େଇ ଗୋଡ଼େଇ ତାକୁ ଭୁଷିଦିଏ ବର୍ଛାରେ । ପଶୁ ଯନ୍ତ୍ରଣାରେ ଆର୍ତ୍ତନାଦ କରେ । କିନ୍ତୁ ତାକୁ ଆହୁରି ଅଧିକ ରଗେଇବାକୁ ହେବ । ତେଣୁ ବୀର ଘୋଡ଼ାସବାର ଘୁରି ଆସେ ଥୋଡ଼ାଏ ବାଟ, ପୁଣି ତାକୁ ତା ବର୍ଛାରେ ଭୁଷି ଦେବା ଲାଗି । ରକ୍ତ ବୁହେ, ଏବଂ ବାଉଳା ହୋଇ ଉଠିଥିବା ପଶୁ ଖାଲି ଏପାଖ ସେପାଖ ହୁଏ ମୁଣ୍ଡିଆଟାଏ ମାରିବ ବୋଲି କାହାକୁ ହେଲେ । କିନ୍ତୁ ସେ କେଉଁଠୁ ଭଲା ପାରିବ ? କ୍ରମଶଃ ଆହୁରି ଆହୁରି ବର୍ଛାଘାତ ହୁଣ୍ଡା ପଶୁଟା ଉପରେ । କିନ୍ତୁ ଉଚିତ ବ୍ୟବଧାନରେ, ଯେମିତିକି ଖେଳ ଶୀଘ୍ର ଖତମ୍ ହୋଇଯିବ ନାହିଁ ଏବଂ ଗ୍ୟାଲେରୀରେ ବସିଥିବା ଦର୍ଶକମାନଙ୍କୁ ତାଙ୍କ ଟିକେଟ୍‌ର ପୂରା ମୂଲ୍ୟ ମିଳିବ । ଶେଷକୁ ରକ୍ତାକ୍ତ ପଶୁ ପୂରାପୂରି ହାଲିଆ ହୋଇ ଟଳଟଳ ହେଲାବେଳେ ଅଶ୍ୱାରୋହୀ ଓହ୍ଲେଇ ଆସିବ ତଳକୁ ତା ସାଙ୍ଗରେ ଯୁଦ୍ଧ କରିବ ବୋଲି । ଗୋଟାଏ ନାଲି କନା ହଲେଇବ ତା ଆଗରେ ଏବଂ ଏପାଖ ସେପାଖ ହୋଇ ନିଜକୁ ବଂଚେଇଲା ପରି ହେବ ବୁଲ୍‌ର ଅକ୍ଷମ ଆକ୍ରମଣରୁ । ଏବଂ ଶେଷକୁ ଏଭଳି ଗୋଟାଏ ଚୋଟ ମାରିବ ତାକୁ ଯେ ତାର ପ୍ରାଣ ଛାଡ଼ିଯିବ ଏବଂ ସେ ଟଳି ପଡ଼ିବ ଭୂଇଁରେ । ହୋଏଲା !

ହଁ, ଇଏ ବି ଗୋଟାଏ ଅନୁଭୂତି, ଯାହା ମୋ ଟିପାଖାତାରେ ରହିବ । କିନ୍ତୁ ମୋର ଭାବିବାକୁ ଇଚ୍ଛା ହେଲା ନାହିଁ ଯେ ଏଇ ହିଂସାତ୍ମକ ଆନନ୍ଦ, ତାକୁ ସାଡ଼ିଜମ୍ କୁହ ବା ଆଉ ଯାହା, ଇଏ ତଥାପି ତିଷ୍ଠି ରହିଛି ମଣିଷ ସମାଜରେ । କେଉଁ ବିକୃତ ବ୍ୟକ୍ତିମାନସରେ ନୁହେଁ, ସମାଜର ଏକ ସ୍ୱୀକୃତ ଏବଂ ଉପଭୋଗ୍ୟ ଦୃଶ୍ୟ ହିସାବରେ ।

ଯାହାହେଉ, ଏଇ ଅପଦୃଶ୍ୟ ଛଡ଼ା ସତସତିକା କେତୋଟି ଦୃଶ୍ୟ ମଧ ରହିଛି ମୋ ଟିପାଖାତାରେ, ଯାହାକୁ ମେକ୍ସିକୋର ବୈଶିଷ୍ଟ୍ୟ ବୋଲି କହିବାକୁ ହେବ । ଯଥା - ଡ଼େଂଗା ଡେଂଗା ପପ୍‌ଲାର୍ ଗଛ ବେଷ୍ଟିତ ସରୁ ସରୁ କେନାଲ୍ ଭିତରେ ଚାଲିଛି ଆମ ନଉକା, କାହା ନାଆଁ ଲୋଲିତା ତ କାହା ନାଆଁ ଆଂଜେଲିକା, ନୃତ୍ୟଗୀତ ମଧ୍ୟ ପରିବେଷିତ ହେଉଛି ଆମ

ପାଇଁ, ପାଖରେ ଚାଲିଥିବା ବିଭିନ୍ନ ନଉକାରେ । ଏବଂ ଆମେ ଚାଲିଛୁ ତ ଚାଲିଛୁ, ନିରୁଦ୍ଦେଶ ଯାତ୍ରୀ, ଯେଝା ଯେଝା ସ୍ୱପ୍ନରେ ବିଭୋର ହୋଇ । ଦେଖୁଛି ହସ୍ତଶିଳ୍ପ ନିର୍ମିତ ନାନା କଣ୍ଢେଇ, ମେକ୍ସିକାନ୍ ସୋମ୍ବ୍ରୋରୋ (Sombrro) ଟୋପି ଇତ୍ୟାଦି ଦ୍ରବ୍ୟର ବୁଲାବିକାଳିମାନଙ୍କୁ, ଯେଉଁମାନେ ତମ ପଛରେ ଗୋଡ଼େଇଥାଆନ୍ତି, ତାଙ୍କ ଜିନିଷ ବିକିବେ ବୋଲି, କଲିକତାର ଚୌରଂଗୀ ଓ ଦିଲ୍ଲୀର ଜନପଥ ମାର୍କେଟ୍‌ରେ ଯେଉଁ ପ୍ରକାର ଦୃଶ୍ୟ ଦେଖିବାକୁ ମିଳେ । ମଧ୍ୟ ଧନିକମାନଙ୍କର ମହାମହା ପ୍ରାସାଦତୁଲ୍ୟ ନିବାସ ଯାହାର ବିଶେଷତ୍ୱ ହେଉଛି ଯେ ତାହା ଆଗ୍ନେୟଗିରିରୁ ନିର୍ଗତ ଲାଭାରେ ନିର୍ମିତ । ତହୁଁ ପ୍ରାଚୀନ ଆଜଟେକ୍ ସଭ୍ୟତାର ପିରାମିଡ୍ ତୁଲ୍ୟ ସୂର୍ଯ୍ୟମନ୍ଦିର ଓ ଚନ୍ଦ୍ରମନ୍ଦିର । ମଣିଷର ମୃତ ଦେହକୁ ତା' ଉପରକୁ ନିଆଯାଏ, ଚନ୍ଦ୍ରସୂର୍ଯ୍ୟଙ୍କୁ ସମର୍ପଣ କଲା ପରି । ଇତ୍ୟାଦି ।

ଶେଷରେ ମୋର ମନକୁ ଆସିଛି ଯେ ଆମ ପରି ଇଏ ବି ଗୋଟିଏ ଗରିବ ଦେଶ । ତେଣୁ ଏହାର ଦୋଷତ୍ରୁଟିକୁ ଏତେଟା ଧରିବାର ନୁହେଁ ଏବଂ କାମନା କର ଯେ ଦେଶ ଯଥାଶୀଘ୍ର ସମୃଦ୍ଧ ହୋଇ ଉଠୁ ଉତ୍ତରରେ ଥିବା ତାର ପଡ଼ୋଶୀ ରାଜ୍ୟ ପରି, ହେଲେ ଫେରି ପାଉ ତାର ପ୍ରାଚୀନ ସଭ୍ୟତାର ଗୌରବ । ଆମେ କଣ ଠିକ୍ ସେଇଆ ଚାହୁଁ ନା ଆମ ନିଜ ଦେଶ ପାଇଁ, ତାହା ଯେତେ ଦୁଷ୍କର ବୋଲି ମନେ ହେଉ ପଛେ ?

— ବ୍ରାଜିଲ୍ । ଭାଷା ପର୍ତ୍ତୁଗିଜ୍ । ଆମେ ଥିଲୁ ସୁନ୍ଦର ନଗରୀ "ରିଓ-ଡ଼ି-ଜାନେରୋ" (Rio de Janeiro)ରେ, ଯେଉଁଠି ଭାରତର ଦୂତାବାସ ଥିଲା । ଯଦିଓ ନୂଆ ରାଜଧାନୀ ହୋଉଛି ବ୍ରାଜିଲିଆ । ଧନ୍ୟବାଦ । କାରଣ ରିଓକୁ ପ୍ରକୃତରେ ଗୋଟିଏ ସୁନ୍ଦରନଗରୀ ବୋଲି କହିବାକୁ ହେବ । ଯାହାର ସାମ୍‌ନାରେ ନୀଳ ସମୁଦ୍ର ଏକ ପ୍ରଶସ୍ତ ଏବଂ ଅର୍ଦ୍ଧଗୋଲାକାର ବେଳାଭୂମି ସୃଷ୍ଟି କରିଛି । ପୃଥିବୀ ବିଖ୍ୟାତ "କୋପାକାବାନା" (Copacabana) । ଏବଂ ପଛରେ ରହିଛି କର୍କୋଭାଦୋ (Corcovado) ପାହାଡ଼ । ଯାହା ଉପରେ ଯୀଶୁଖ୍ରୀଷ୍ଟ ଠିଆ ହୋଇଛନ୍ତି ତାଙ୍କ ଦୁଇ ବାହୁ ବିସ୍ତାର କରି । ଆମକୁ କୁହାଗଲା ଯେ ଯୀଶୁଖ୍ରୀଷ୍ଟଙ୍କର ଏହିପ୍ରକାର ରୂପ ତମକୁ ଆଉ କେଉଁଠି ଦେଖିବାକୁ ମିଳିବ ନାହିଁ । ଅନ୍ୟ ସବୁଠି ସେ କ୍ରୁଶବିଦ୍ଧ, ଅବା ବିଷାଦଗ୍ରସ୍ତ । କିନ୍ତୁ ଏଠି ସେ ସୁଦୀପ୍ତ, ପ୍ରଶାନ୍ତ ଏବଂ ତାଙ୍କ ବାହୁ ମେଲାଇଛନ୍ତି ବ୍ରାଜିଲ୍‌ବାସୀଙ୍କୁ ଆଲିଂଗନ କରିବା ଲାଗି । ମୁଁ ଅନ୍ୟ ଏକ ଅର୍ଥରେ ମଧ୍ୟ ଏହାକୁ ଏକ ସୁନ୍ଦରନଗରୀ ବୋଲି କହିବାକୁ ଚାହେଁ, କାରଣ ଏଠିକାର ବାସିନ୍ଦାମାନେ ମଧ୍ୟ ସୁନ୍ଦର, ଉଚ୍ଛଳ ପ୍ରାଣବନ୍ତ ଜୀବନସରାଗକୁ ଯଦି ସୁନ୍ଦର ବୋଲି କୁହାଯାଏ । ଏଇଠି ମୁଁ ପ୍ରଥମେ ଦେଖିଲି ଲାଟିନ୍ ଚରିତ୍ରର ବିଶେଷତ୍ୱ କଅଣ, ଯାହା ବାରି ହୋଇଯାଏ, 'ଆଂଗ୍ଲୋସାକ୍ସନ୍' ଚରିତ୍ର ଠାରୁ । ଭାବୋଚ୍ଛ୍ୱାସ । ଯାହାକୁ ପ୍ରକାଶ କରିବାରେ କୌଣସି ବାଧା ନାହିଁ, ଯେକୌଣସି କ୍ଷେତ୍ରରେ । ତେଣୁ ଦେଖ, ବିଚ୍‌ବଜାରରେ ଏମାନେ କେମିତି ଗୀତ ବୋଲନ୍ତି, କଳି କରନ୍ତି,

ହୋ ହଲ୍ଲା ହୁଅନ୍ତି, ମଧ୍ୟ ବାଟଚଲା ଟ୍ରାଫିକ୍‌କୁ ଅଟକେଇ ଦିଅନ୍ତି ବେଳେବେଳେ, ପରସ୍ପରକୁ ଭିଡ଼ିଧରି ଚୁମା ଦେବା ଲାଗି । ଯେଉଁ ପ୍ରକାର ଦୃଶ୍ୟ ମୁଁ ଦେଖିନାହିଁ କେବେହେଲେ ଲଣ୍ଡନ୍ କିମ୍ବା ନିଉୟର୍କରେ । କେବଳ ନିଉୟର୍କର ବେପରୁଆ ଓ ବେଖାତିରିଆ ବୋଲି ନିଜକୁ ଦେଖେଇ ହେଉଥିବା ଗ୍ରୀନ୍‌ଉଇଚ୍ ଭିଲେଜ୍ ଛଡ଼ା । ଷ୍ଟାଟିସ୍‌ଟିକସ୍ ଅନୁଯାୟୀ ଏଠି ମଧ୍ୟ ଅନେକ ଦରିଦ୍ର ଅଛନ୍ତି ଯଦିଓ ଏହାକୁ ମେକ୍‌ସିକୋ ପରି ଗୋଟିଏ ଦରିଦ୍ର ଦେଶ ବୋଲି କୁହାଯିବ ନାହିଁ । ରିଓର ଦୋକାନ ବଜାର ଓ ରାସ୍ତାଘାଟ ଚକଚକିଆ ସିନା, କିନ୍ତୁ ପାହାଡ଼ ଉପରେ ଯେଉଁମାନେ ବସା ବାନ୍ଧି ଅଛନ୍ତି, 'ଫାଭେଲା' ବୋଲାଉଥିବା ବସ୍ତିମାନଙ୍କରେ, ସେମାନେ ଦରିଦ୍ର ନୁହଁନ୍ତି ତ ଆଉ କଣ ? କିନ୍ତୁ ସେମାନେ ମଧ୍ୟ ଓହ୍ଲାଇ ଆସନ୍ତି ରାସ୍ତାକୁ ତଥା ବେଳାଭୂଇଁକୁ, ଏକାଠି ମିଶି ରଂଗରସ ହେବା ପାଇଁ । ବିଶେଷତଃ କାର୍ଣ୍ଣିଭାଲ୍ (Carnival) ଅର୍ଥାତ୍ ମଉଛବ ବେଳେ, ଯାହା ଲାଗି ରହିଥାଏ ବ୍ରାଜିଲ୍‌ରେ । ହୁଏତ ଖାଲି ଦେହରେ, କିମ୍ବା ଛିଣ୍ଡା ଜାମାପଟା ପିନ୍ଧି । ଏବଂ ଯେଉଁମାନେ ଗୀତ ବୋଲିବାକୁ ଏତେ ଭଲ ପାଆନ୍ତି ସେମାନେ କଣ ସହଜେ କବିପ୍ରାଣ ନୁହଁନ୍ତି, ନା ସାହିତ୍ୟକୁ ଭଲପାଇବା ତାଙ୍କ ସ୍ୱଧର୍ମ ହେବା ସ୍ୱାଭାବିକ ନୁହେଁ ? ଏହି ଦୃଷ୍ଟିରୁ ମୁଁ ଯଥାଶୀଘ୍ର ବୁଝିଲି ଯେ ଆମ ଦୂତାବାସକୁ ଏଇ ଯେଉଁ ବ୍ରାଜିଲିୟାନ୍ ଟୋକାଟିଏ ଆସିଛି ମୋତେ ଖୋଜି ଖୋଜି, କାରଣ ସେ ଦୂତାବାସର କାହାଠୁ ଶୁଣିଛି ଯେ ମୁଁ ଜଣେ ଲେଖକ, ଏଥିରେ ବିଶେଷ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏବଂ ସ୍ୱଭାବକବିମାନେ ମଧ୍ୟ ସ୍ୱଭାବଖେଳୁଆଡ଼ ହେବା ବିଚିତ୍ର ନୁହେଁ । ମୁଁ ଯେଉଁ ସମୁଦ୍ରକୂଳିଆ ହୋଟେଲ୍‌ରେ ଥିଲି, ସେଇଠୁ ମୁଁ ସ୍ୱଚକ୍ଷୁରେ ଦେଖିଛି, ସେମାନେ କେମିତି ଆନନ୍ଦରେ ଭଲିବଲ୍ ଖେଳୁଛନ୍ତି, ମଧ୍ୟ ଫୁଟ୍‌ବଲ୍ ଖେଳୁଛନ୍ତି ବେଳାଭୂଇଁ ଉପରେ, ଲାଗି ରହିଥିବା ବର୍ଷାକୁ ଖାତିର ନ କରି ।

ଏହି ପରିପ୍ରେକ୍ଷୀରେ ମୋତେ ଗୋଟିଏ ଅବିସ୍ମରଣୀୟ ଦୃଶ୍ୟ ଦେଖିବାକୁ ମିଳିଲା ରିଓରେ, ଯାହାର ଉଲ୍ଲେଖ ନ କରି ରହି ହେବ ନାହିଁ । ପ୍ରଣୟୀଯୁଗଳ ପ୍ରକାଶ୍ୟରେ ପରସ୍ପରକୁ ଚୁମା ଦେବାର ଦୃଶ୍ୟ କିଛି ନୂଆ ନୁହେଁ ପାଶ୍ଚାତ୍ୟ ଦେଶରେ । କିନ୍ତୁ ଏମାନେ ଯେ ବେଳେବେଳେ ବାଟଚଲା ଟ୍ରାଫିକ୍ ଅଟକେଇ ଦିଅନ୍ତି ଚୁମା ଦେବା ଲାଗି - ଯାହା ମୁଁ ଆଗରୁ କହିଛି - ତା ନୁହେଁ । ଏଠିକା ପାର୍କରେ ମୁଁ ଦେଖିଛି ଚୁଂବନର ମହୋତ୍ସବ । ଏକା କୁଂଜବନରେ ଷୋଳସହସ୍ର ଗୋପୀ ଷୋଳସହସ୍ର କୃଷ୍ଣଙ୍କ ସାଙ୍ଗରେ ପ୍ରେମ ହେଲା ପରି । ପାର୍କର ପ୍ରାୟ କୌଣସି ବେଂଚ୍ ଖାଲି ମିଳିଲା ନାହିଁ ମୋତେ, ଯେଉଁଠି ମୁଁ ଏକୁଟିଆ ହୋଇ ବସିଥାଆନ୍ତି ମନୋରମ ସଂଜକୁ ଉପଭୋଗ କରିବା ଲାଗି । ସତେକି ଏଭଳି ଦୃଶ୍ୟ ତମର ବି ଉପଭୋଗ କରିବା କଥା, ନ ହେଲେ ଦୟାକରି ଅପସରି ଯାଅ । ମୁଇତୋ ଓବ୍ରିଗାଡ଼ୋ (Muito Obrigado) ଅର୍ଥାତ୍ ଅନେକ ଧନ୍ୟବାଦ । କିଛି ଅଶ୍ଳୀଳତା ନ ଥିଲା ତାଙ୍କ ପ୍ରେମଲୀଳାରେ, କିନ୍ତୁ ଅନ୍ତରଂଗତାର ଉଣା ନଥିଲା । ମୋର ସଦା ମନେ ରହିବ ସେଇ ଦୃଶ୍ୟ, ଏକାଠି ଏତେ ଫୁଲ ଫୁଟି ଉଠିବାର

ଶୋଭା । ମଲା, କୋଉ ଫୁଲ ଭଲା ଫୁଟି ଉଠିବାକୁ ଚାହିଁବ ବଂଦ କମରା ଭିତରେ, ଏତିକି ବୁଝିପାରୁନ, ମିଷ୍ଟର୍ ଟୁରିଷ୍ଟ ?

ଏଥର ଚାଲନ୍ତୁ ଆହୁରି ଦକ୍ଷିଣକୁ ଯିବା, ଅନ୍ୟ ଏକ ଲାଟିନ୍ ଦେଶକୁ ଦେଖି ଆସିବା ଲାଗି ।

— ଆର୍ଜେଣ୍ଟିନା । ଭାଷା ସ୍ପାନିଶ୍ । ରାଜଧାନୀ ବୁଏନସ୍ ଏରିସ୍ (Buenos Aires) ଯେଉଁଠି ଭାରତୀୟ ଦୂତାବାସର ହିସାବଖାତା ଥିଲା । ଏବଂ ଆମେ ସେଠି ପହଞ୍ଚିଲୁ ଯାଇ ତାର ଯାଂଚ କରିବା ଲାଗି ।

ପ୍ରଥମ ଦେଖାରେ ମନେ ହେଲା ଯେ ଏଇ ଦେଶକୁ ଶହେରୁ ଶହେ ମାର୍କ ମିଳିବ ତାର ପ୍ରଗତିକୁ ନେଇ, ଯଦି ରାଜଧାନୀ ଦେଶର ପ୍ରତିବିମ୍ବ ହୋଇଥାଏ । ଯାହା ମେକ୍ସିକୋ କିମ୍ବା ବ୍ରାଜିଲ୍ ଦ୍ୱାରା ସଂଭବ ହୋଇନାହିଁ । ଦେଖୁନା, ରାସ୍ତାରେ ଚାଲିଥିବା ଲୋକେ କେତେ ଫିଟ୍‌ଫାଟ୍ ଦିଶୁଛନ୍ତି ? ତାଙ୍କ ଚେହେରାକୁ ବି ଦେଖୁନ ? କେତେଜଣ ଏମିତି ଗୋରା ଦିଶୁଥିଲେ ରିଓ କି ମେକ୍ସିକୋ ସିଟୀର ରାସ୍ତା ଘାଟରେ ? ଆଉ ଯାଙ୍କର ରାଜପଥ 'ଆଭେନିଡ଼ା କରିଏଣ୍ଟିସ୍' (Avenida Corientes)ର ଚାକଚକ୍ୟ କେଉଁ ଗୁଣରେ ଊଣା ନିଉୟର୍କର ବ୍ରଡ୍‌ୱେଠାରୁ ? ପୁଣି ଦେଖ କେତେ ପରିଚ୍ଛନ୍ନ ପାର୍କ, ପ୍ଲାଜା, ଓ ଘୋଡ଼ସବାର ବୀରମାନଙ୍କ ପ୍ରତିମୂର୍ତ୍ତି ଖୁନ୍ଦି ହୋଇ ରହିଛି ଏଇ ସହରରେ । ଏଇ ସବୁଥିରୁ ମନେ ହେବ ଯେ ଏଠିକାର ଆଦିମ ଅଧିବାସୀମାନେ କେବଳ ପରାସ୍ତ ଏବଂ ଅଧିକୃତ ହୋଇନାହାନ୍ତି ସ୍ପେନ୍ ଏବଂ ପର୍ତ୍ତୁଗାଲ୍‌ରୁ ଆସିଥିବା ଗୋରା ବିଜେତାମାନଙ୍କ ଦ୍ୱାରା । ତାଙ୍କର ଅସ୍ତିତ୍ୱ ଲୋପ ପାଇଗଲାଣି ଅଥବା ବିଜେତାମାନେ ତାଙ୍କୁ ପୂରାପୂରି ୟୁରୋପୀୟ କରିଦେଲେଣି, ଯାହା ଅନ୍ୟତ୍ର ହୋଇପାରି ନାହିଁ ।

ମୁଁ ପରେ ବୁଝିଲି ତାର ଭେଦ । ଯେ ମେକ୍ସିକୋ ଏବଂ ବ୍ରାଜିଲ୍‌ରେ ବିଜେତା ଦେଶର ଲୋକେ ସହଜେ ମିଶିଗଲେ ଆଦିମ ଅଧିବାସୀମାନଙ୍କ ସାଙ୍ଗରେ । ଥୋକେ ରେଡ୍ ଇଣ୍ଡିଆନ୍ ମାନଙ୍କ ସାଙ୍ଗରେ ମିଶି ଯାଇ ମେଷ୍ଟିଜୋ (Mestizo) ବୋଲାଇଲେ, ଏବଂ କେତେକେ କଳା ନିଗ୍ରୋମାନଙ୍କ ସାଙ୍ଗରେ ମିଶି ଯାଇ ମୁଲାଟୋ (Mulatto) ବୋଲାଇଲେ । ଏବଂ ଷୋଳଅଣା ଗୋରା ଲୋକମାନେ ତଥାପି ସଂଖ୍ୟାଧିକ ଥିଲେ ମଧ୍ୟ, ଗୋଟାଏ ମିଶାମିଶି ଜାତିର ସଂସ୍କୃତିରେ ବାନ୍ଧି ହୋଇଗଲେ ସମସ୍ତେ । କିନ୍ତୁ ଏଠି ତା ହେଲା ନାହିଁ । ୟୁରୋପୀୟ ଗୋରାମାନଙ୍କୁ ଦୀର୍ଘକାଳ ଯାବତ୍ ଯୁଦ୍ଧରେ ବ୍ୟାପୃତ ହେବାକୁ ପଡ଼ିଲା ଅବଶିଷ୍ଟ ଅଂଚଳର ମିଶ୍ରିତ ଜାତିର ଯୋଦ୍ଧାମାନଙ୍କ ସାଙ୍ଗରେ । ତାଙ୍କୁ କଡ଼ିଲୋ (Caudillo) କୁହାଯାଉଥିଲା ଏବଂ ତାଙ୍କ ଆଗୁଆ ବୀର ଥିଲେ ଘୋଡ଼ସବାର ଗାଉଚୋ (Gaucho) ଯେଉଁମାନଙ୍କ ବୀରତ୍ୱ ବିଷୟରେ ଅନେକ କିଂବଦନ୍ତୀ ଏବଂ ଲୋକଗୀତି ଅଛି । କିନ୍ତୁ ଅବଶେଷରେ ଆଗନ୍ତୁକ

ବିଦେଶୀ ମାନେ ଜିତିଲେ ଏବଂ ସେମାନେ ଅସଭ୍ୟ କଡ଼ିଲୋମାନଙ୍କ ସଂସ୍କୃତିରୁ ନିଜକୁ ବଂଚାଇ ରଖିବାକୁ ଚାହିଁଲେ । ଏବଂ ଯଥାକ୍ରମେ ଅବିମିଶ୍ରିତ ୟୁରୋପୀୟ ସଭ୍ୟତାକୁ ଲଦିଦିଆଗଲା ଅନ୍ୟମାନଙ୍କ ଉପରେ । ଏଇ ରାଜଧାନୀ ସେଇ ଚେଷ୍ଟାକୃତ ସାଂସ୍କୃତିକ ବିଜୟର ପ୍ରତିକୃତି ।

ଯାହାହେଉ ମୋର ମନେ ହେଲା ଯେ ଇଏ ପୂରାପୂରି ଗୋଟିଏ ଗୋରା ଏବଂ ୟୁରୋପୀୟ ଦେଶ ଏବଂ ମୋତେ ସମୟ ଲାଗିଲା ଦେଖିବା ପାଇଁ ଯେ ୟୁରୋପୀୟ ହେଲେ ମଧ୍ୟ ଏମାନଙ୍କର ଲାଟିନ୍‌ପଣିଆ ତଥାପି ବାରି ହୋଇ ଯାଉଛି । ବର୍ତ୍ତମାନ କହୁଛି ଶୁଣନ୍ତୁ, ଏଠି ଥିଲା ବେଳର କେତୋଟି ବିଶିଷ୍ଟ ଅନୁଭୂତି ବିଷୟରେ ।

ପହଞ୍ଚିବାର କିଛି ଦିନ ପରେ ଶୁଣିଲି କଣ ନା ପୁଣି ଗୋଟାଏ ବିପ୍ଳବର ଆବିର୍ଭାବ ହେଲାଣି ଏଇ ଦେଶରେ । ଯେକୌଣସି ରାଜନୈତିକ ସଂକଟ ଉତ୍ତାରୁ ଯେଉଁ ରାଜନୈତିକ ପରିବର୍ତ୍ତନ ହୁଏ, ତାକୁ ଏମାନେ ରିଭଲ୍ୟୁସନ୍ ଅର୍ଥାତ୍ ବିପ୍ଳବ ବୋଲି କୁହନ୍ତି । (ଗଣତାନ୍ତ୍ରିକ ନିର୍ବାଚନର ପରମ୍ପରା ସୃଷ୍ଟି ହୋଇ ନ ଥିଲା ସେତେବେଳକୁ) । ସେଇ ହିସାବରେ ଡିକ୍‌ଟେଟର ପେରନ୍‌କୁ ତଡ଼ିଦେଲା ପରଠୁଁ କୁଆଡ଼େ ୩୭ଟି ରିଭଲ୍ୟୁସନ୍ ହୋଇସାରିଲାଣି ଏବଂ ଇଏ ହେଉଛି ଅର୍ଥାତ୍ ହେବାକୁ ଯାଉଛି ଅଠତିରିଶ ନମ୍ବର । ଶୁଣିଲୁ ବିଦ୍ରୋହୀ ସୈନ୍ୟମାନେ ନାନାଦି ହିଂସାକାଣ୍ଡ ଆରମ୍ଭ କରି ସାରିଲେଣି ପ୍ରେସିଡେଣ୍ଟ ଗୁଇଡ଼ୋଙ୍କୁ ହଟେଇବା ଲାଗି । ଏଠିସେଠି ଯୁଦ୍ଧ ଚାଲିଛି, କେତେ ଲୋକ ମଲେଣି, ଇତ୍ୟାଦି ଯାବତୀୟ ଗୁଜବ । ହେଲେ ରାଜଧାନୀ ଶାନ୍ତ । ଉଦ୍‌ବିଗ୍ନତାର ଚିହ୍ନବର୍ଣ୍ଣ ନାହିଁ କେଉଁଠି ହେଲେ, ଯଦିଓ ଅଫିସମାନଙ୍କର ଛୁଟି, ଆମ ଦୂତାବାସ ସମେତ । ସେହେତୁ ସମୟ ପ୍ରଶସ୍ତ ଥିଲା ମୋ ପାଇଁ ଅନ୍ୟତମ ଘୋଡ଼ସବାର ବୀରଙ୍କ ପ୍ରତିମୂର୍ତ୍ତି ସାମନାରେ ବସି ଶୀତଦିନିଆ ଖରା ପୋଇଁବା ପାଇଁ । ରାଜଧାନୀର ଅନେକ ଅନ୍ୟାନ୍ୟ ନାଗରିକମାନେ ମଧ୍ୟ ସେହି ପ୍ରକାର ଆରାମ କରୁଥିଲେ । ଯାହାହେଉ ବିପ୍ଳବ ଅଧାରୁ ରହିଗଲା, କାରଣ ପ୍ରେସିଡେଣ୍ଟ୍ ଗୁଇଡ଼ୋ ଗୋଟାଏ ବୁଝାମଣା କରି ନେଇ ପାରିଲେ ବିଦ୍ରୋହୀ ସେନାପତି ଜାତୀୟ ନେତାମାନଙ୍କ ସାଙ୍ଗରେ । ଏବଂ ଆମେ ସ୍ୱସ୍ତିର ନିଃଶ୍ୱାସ ମାରିଲୁ, ତାହା ଅକାରଣ ହେଉ ନା କାହିଁକି ।

ମଧ୍ୟ ମନେ ଅଛି, ରାଜଧାନୀର କିଛି ଦୂରରେ ଥିବା 'ଲା ବୋକା' (La Boca) ନାମକ ରେସ୍ତୋରାଁରେ ଯେଉଁଭଳି ଅଭ୍ୟର୍ଥନା ମିଳିଲା ଆମକୁ, ଆମେ ପ୍ରକୃତ ଇଣ୍ଡିଆନ୍ ବୋଲି । ଯାହାଙ୍କୁ ସେମାନେ ଦେଖି ନ ଥିଲେ ଏଥି ପୂର୍ବରୁ । ତେଣୁ ଆମକୁ ତାଙ୍କ ସାଙ୍ଗରେ ମିଶି ନାଚିବାକୁ ପଡ଼ିଲା (ମୁଁ ସେ ଦିଗରେ ଅକ୍ଷମ ବୋଲି ରକ୍ଷା ପାଇଗଲି) ଏବଂ ମାଗଣା ଡ୍ରିଂକ୍‌ସ୍ ଯୋଗାଇ ଦିଆଗଲା ଆମକୁ, ବିଶିଷ୍ଟ ଅତିଥି ହିସାବରେ । ଭାବିଲି - ଲାଟିନ୍‌ମାନଙ୍କ ଛଡ଼ା ଏଭଳି ଭାବୋଚ୍ଛ୍ୱାସ ମିଳିଥାଆନ୍ତା ଆଉ କେଉଁ ଦେଶରେ, କେଉଁ ଭିନ୍ନଦେଶୀୟ ଅତିଥି

ପାଇଁ ? ଏବଂ ମନେ ଅଛି ଏଠିକାର ସୁସ୍ୱାଦୁ ଏଂପାନେଡ଼ା (Empanada), ଏକପ୍ରକାର କଟ୍‌ଲେଟ୍ ଜାତୀୟ ଖାଦ୍ୟ, କାଫେ କ୍ରିମା, ମେଂଚାଏ ତାଜା ଲହୁଣୀ ବିଶିଷ୍ଟ କଫି ଇତ୍ୟାଦି, ଯାହା ମୁଁ ଏମାନଙ୍କ ଭୂତଳସ୍ଥିତ 'ଗ୍ୟାଲେରିଆ' ବୋଲାଉଥିବା ବଜାରବିପଣୀରେ ବୁଲି ବୁଲି ସେବନ କରୁଥିଲି । ଆଉ କେମିତି ଭୁଲିବି ଯେ ଆଭେନିଡ଼ା କରିଏଣ୍ଟିସ୍‌ରେ ଗୋଟିଏ ସିନେମା ଘରର ନାଆଁ ଥିଲା 'ହିନ୍ଦୁ' ଏବଂ ଗୋଟିଏ ବହି ଦୋକାନରେ ସ୍ପାନିଶ୍ ଭାଷାରେ ଅନୂଦିତ ହୋଇ ରବୀନ୍ଦ୍ରନାଥଙ୍କର କବିତା ଦି'ଧାଡ଼ି ଶୋଭା ପାଉଛି, ଗୋଟିଏ ଫ୍ରେମ୍‌ରେ ବନ୍ଧା ହୋଇ ?

— ସେଇଠୁ ଦକ୍ଷିଣତମ ଦେଶ ଚିଲି । ଭାଷା ସ୍ପାନିଶ୍ । ତାର ରାଜଧାନୀ ସାନ୍‌ତିଆଗୋ (Santiago)ରେ ଆମକୁ ରହିବାକୁ ପଡ଼ିଥିଲା କିଛି ଦିନ, ଆମ ଦୂତାବାସର ହିସାବପତ୍ର ଦେଖିବା ପାଇଁ ।

ସାନ୍‌ତିଆଗୋ ଦର୍ଶନରେ ମୋର ମନେ ହେଲା ଯେ ଗୋରା ବିଦେଶୀମାନେ ଲଢ଼ି ଲଢ଼ି ସମଗ୍ର ଦକ୍ଷିଣ ଆମେରିକାକୁ ଦଖଲ କରି ସାରି ହାଲିଆ ହେଲା ପରେ ଆସିଛନ୍ତି ଏଠିକି ଆରାମ କରିବା ପାଇଁ । ଏଠି କେଉଁ ମିଶାମିଶି ସଭ୍ୟତାର ବର୍ଣ୍ଣବିଭବ ନାହିଁ, ଯାହା ବ୍ରାଜିଲରେ ଦେଖିବାକୁ ମିଳିଥିଲା, ମଧ୍ୟ ସେଠିକାର ବିଶୃଂଖଳା । କେଉଁ ମିଶାମିଶି ଜାତିର ଅସଭ୍ୟ ମାନଙ୍କୁ ଦବେଇ ଦେଇ ୟୁରୋପୀୟ ସଭ୍ୟତାକୁ ଠିଆ କରେଇବାର ପ୍ରଚେଷ୍ଟା ମଧ୍ୟ ଦିଶୁନାହିଁ ତମକୁ ଜଳଜଳ ହୋଇ, ଯାହା ଆର୍ଜେଣ୍ଟିନାରେ ଦେଖିଲା ପରି ଲାଗୁଥିଲା । ମଧ୍ୟ ଶୁଣିବାକୁ ମିଳୁଥିଲା । ଏଠି ସମୃଦ୍ଧି ଅଛି, ମଧ୍ୟ ୟୁରୋପୀୟ ସଭ୍ୟତାର ପରିପ୍ରକାଶ, କିନ୍ତୁ ସବୁ ଯେମିତି ଶାନ୍ତ, ସମାହିତ । ଲୋକଗହଳି ମଧ୍ୟ ନାହିଁ, ଅବା ଦୋକାନ ବଜାରର ଚହଳ । ଅଳ୍ପ କେତୋଟି ଦିନ ସ୍ୱଚ୍ଛନ୍ଦରେ କଟିଗଲା ଏଠି । ହେଲେ ସ୍ମୃତିରେ ରହିଛି ଯେଉଁ କେତୋଟି ଅନୁଭୂତି, ତାକୁ ଲିପିବଦ୍ଧ କରିବି ନାହିଁ କେମିତି ?

ମନେ ଅଛି, ଭିନା ଡେଲ୍ ମାର୍ (Vina del Mar), ଯାହାର ଆକ୍ଷରିକ ଅର୍ଥ ସମୁଦ୍ରର ଦ୍ରାକ୍ଷାବନ । ସମୁଦ୍ରକୂଳରେ ଥିବା ଛୋଟ ଜାଗାଟିଏ, ଯେଉଁଠିକି ଆମେ ଯାଇଥିଲୁ ଛୁଟି ବିତେଇବା ଲାଗି । ସେଠିକାର ନୀଳ ସମୁଦ୍ର ଏବଂ ଉତ୍ତାଳ ତରଂଗ ମୋତେ ଆଜିଯାଏ ଦେଖିଥିବା ସବୁ ସମୁଦ୍ର ଓ ତରଂଗର ଶେଷକଥା ବୋଲି ମନେ ହେଲା । ମୋତେ କୁହାଗଲା ଯେ ଏଠିକା ସମୁଦ୍ରରେ ଗୋଟାଏ ଶୀତପ୍ରବାହ ପ୍ରବାହିତ ହୁଏ, ତା' ନାଆଁ ହମ୍‌ବୋଲ୍ଟସ୍ କରେଣ୍ଟ୍ (Humboldt's current) ସେଇଲାଗି ମୋତେ ଏମିତି ଲାଗୁଛି । ହୋଇଥିବ । ମଧ୍ୟ ମନେ ଅଛି ଲସ୍ ଲୀଲ୍‌ନୋ (Los Lilnos) ନାମକ ଗୋଟିଏ ସମୁଦ୍ରକୂଳିଆ ରେସ୍ତୋରାଁ ଯେଉଁଠି ଆମେ ଲାଂଗୋଷ୍ଟିନୋ (ବଡ଼ ସମୁଦ୍ର ଚିଂଗୁଡ଼ିର ବ୍ୟଂଜନ)ର ସଦ୍‌ବ୍ୟବହାର କରିବା ସହ, 'କୁଏକା' ନାମକ ଗୋଟିଏ ସ୍ପାନିଶ୍ ଲୋକନୃତ୍ୟର ଦୃଶ୍ୟ ଉପଭୋଗ କରୁଥିଲୁ । ପରସ୍ପର ଆଡ଼କୁ ରୁମାଲ୍ ହଲେଇ, କେତେବେଳେ ଆଗକୁ ଝୁଂକିଯାଇ ତ କେତେବେଳେ ପଛକୁ

ଫେରିଆସି, ପ୍ରେମ ଜଣାଇବା ହେଉଛି ଏଇ ଯୁଗଳ ନୃତ୍ୟର ସାରକଥା । ପୁରୁଷ ଆଗଚଲା । ହେଲେ ସ୍ତ୍ରୀଟି ଛଇଳି, ମିଛ 'ନାହିଁ ନାହିଁ' କହି ତାକୁ ନିମନ୍ତ୍ରଣ କରୁଛି, ଯେଉଁଥିରେ ପୁରୁଷ ଆହୁରି ଉତ୍ତେଜିତ ହୋଇ ଉଠୁଛି । ଏବଂ ମୋର ସଦାସ୍ମରଣୀୟ ହୋଇ ରହିବ ଭାରତର ରାଜଦୂତଙ୍କ ଘରେ ଅନୁଷ୍ଠିତ ଗାନ୍ଧୀ ଜୟନ୍ତୀ । ଭାବି ନଥିଲି ଏତେ ଚିଲି ଅଧିବାସୀ ଆସିବେ ଏଭଳି ଏକ ଅନୁଷ୍ଠାନରେ ଯୋଗ ଦେବା ପାଇଁ । ଏତେ ଭାବବିହ୍ୱଳ ହୋଇ ଶୁଣିବେ ଗାନ୍ଧୀଙ୍କ ଭଜନ । ଏବଂ ଶୋକାର୍ତ୍ତ ହୋଇ ଉଠିବେ, ଯେତେବେଳେ ଗୋଟାଏ ଟେପ୍ ରେକର୍ଡ଼ର୍ ଶୁଣାଇଲା ଗାନ୍ଧୀଙ୍କୁ ହତ୍ୟା କରିବାର କାହାଣୀ । ବିଭିନ୍ନ ଗଣ୍ୟମାନ୍ୟ ଲୋକ ଆସିଥିଲେ ଏଇ ସଭାକୁ ଏବଂ ଚିଲିର ଚିଫ୍ ଜଷ୍ଟିସ୍ ଥିଲେ ତା'ର ସଭାପତି । ଏଠିକା ଖବରକାଗଜରେ ମଧ୍ୟ ଯେଉଁପ୍ରକାର ପ୍ରାଧାନ୍ୟ ଦିଆ ହୋଇଥିଲା ଏହି ଦିନଟି ପ୍ରତି, ଗାନ୍ଧୀଜୀଙ୍କ ଫଟୋ ସମେତ, ତାହା ଯେକୌଣସି ଭାରତୀୟର ମନକୁ ଛୁଇଁବ, ତାକୁ ବିସ୍ମିତ କରିବା ସହ, ଏଥିରେ ସନ୍ଦେହ ନାହିଁ ।

ପ୍ରକୃତ ପକ୍ଷେ ଏଇ ହେଉଛି ମୋ ସୁଖଦ ସ୍ମୃତିର ଶେଷକଥା, ଚାରୋଟି ଲାଟିନ୍ ଦେଶ ବୁଲି ଆସିଲା ପରେ । ଯେ ସେମାନେ ଆମକୁ, ଗାନ୍ଧୀ-ରବୀନ୍ଦ୍ରନାଥଙ୍କ ଦେଶକୁ ଭଲ ପାଆନ୍ତି । ଆଧୁନିକ ଓ ଶିକ୍ଷିତ ବ୍ରିଟିଶ ଆମେରିକାନ୍‌ର ଭଲପଣିଆ କି ଉଦାରତା ନୁହେଁ, ଏକ ଭାବଦଗ୍ଧ ଏବଂ ଆନ୍ତରିକ ଶ୍ରଦ୍ଧାର ପରିପ୍ରକାଶ । ଅନେକ ଧନ୍ୟବାଦ । ତାଙ୍କରି ଭାଷାରେ କହିଲେ - ମୁଇତୋ ଓବ୍ରିଗାଡ଼ୋ । ମୁଚାସ୍ ଗ୍ରାସିଆସ୍ ।

— ବାକୀ ରହିଲା କ୍ୟାନେଡ଼ା । ଆମେରିକାର ଉତ୍ତରରେ ଥିବା ପଡ଼ୋଶୀ ଦେଶ, ଯାହା ଉତ୍ତର ଆମେରିକାର ଅନ୍ତର୍ଭୁକ୍ତ ବୋଲି କୁହାଯାଏ ବ୍ୟାପକ ଅର୍ଥରେ । ବିଶେଷତଃ ସାଂସ୍କୃତିକ ସ୍ତରରେ ।

ଦେଶ ହେଲେ ମଧ୍ୟ ବସ୍ତୁତଃ ମହାଦେଶ, ତାର ଆକାର ପ୍ରକାର ଅନୁଯାୟୀ । କିନ୍ତୁ ଲୋକସଂଖ୍ୟା ପ୍ରାୟ ଓଡ଼ିଶା ସାଙ୍ଗରେ ସମାନ । ଏଇଥିରୁ ବୁଝନ୍ତୁ ଯେ ଫୁଟ୍‌ପାଥରେ ଚାଲୁଥିବା ଲୋକ ଜଣକ ତମକୁ କାହିଁକି ହଠାତ୍ ହସି ହସି 'ହ୍ୟାଲୋ, ହାଓ ଆର୍ ୟୁ ?' ବୋଲି ସଂଭାଷଣ କରୁଛି, ନିଧିଟିଏ ପାଇଲା ପରି ।

ସମୃଦ୍ଧ ଦେଶ । ଅନେକ ସଂପଦ ରହିଛି ସ୍ୱଳ୍ପ ଅଧିବାସୀମାନଙ୍କୁ ସୁଖ ଦେବା ପାଇଁ । ହେଲେ ଅଶାନ୍ତ ନୁହେଁ, ପଡ଼ୋଶୀ ଆମେରିକା ପରି । କାରଣ ଏଠି ବର୍ଣ୍ଣବିଭେଦର ସମସ୍ୟା ନାହିଁ । ଅଛି କେବଳ ଗୋଟିଏ ଭାଷାଗତ ବିଭେଦ, ଇଂରାଜୀ ଓ ଫରାସୀ ଭାଷାଭାଷୀ ଲୋକମାନଙ୍କ ଭିତରେ, ଯାହା ମୋଟାମୋଟି ଆୟତ୍ତରେ ରହିଛି । ଏବଂ ଇଏ ମଧ୍ୟ ଚକ୍ଷୁଶୂଳ ନୁହେଁ ଅନ୍ୟ କେଉଁ ଦେଶର, ତାର 'କ୍ଷମତା' ଯୋଗୁଁ, ଯାହା ଆମେରିକାର ଭାଗ୍ୟରେ ଅଛି ବୋଲି ମନେ ହୁଏ ।

ଏହିଭଳି ଗୋଟିଏ ଶାନ୍ତ, ସୁସ୍ଥ ଓ ସମୃଦ୍ଧ ଦେଶରେ କଣ ବୈଶିଷ୍ଟ୍ୟ ଅଛି, ଯାହା ମୋର ଏଇ ଦୁନିଆଁଦେଖା ଦୃଶ୍ୟପଟକୁ ଖାପ ଖାଇଯିବ ଏବଂ ମୁଁ ତାର ବର୍ଣ୍ଣନା କରି ବସିବି, ମୋର ଏଇ ଅନୁଭୂତି ସଂହିତାରେ ? ପ୍ରକୃତରେ ମୁଁ ଯେତେବେଳେ କ୍ୟାନେଡ଼ାର ରାଜଧାନୀ ଅଟୋୱାରେ ଥିଲି ପ୍ରାୟ ମାସକ ଯାଏଁ, କାରଣ ସେଇଠି ଆମର ଦୂତାବାସ ଥିଲା, ମୁଁ ବୋର୍ ହୋଇଗଲି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ହେଲେ ମୁଁ ବେଳେବେଳେ ତାଙ୍କ ପାର୍ଲିଆମେଣ୍ଟକୁ ଯାଏ, ଦର୍ଶକ ଗ୍ୟାଲେରିରେ ବସେ ଏବଂ ମୋତେ ଖୁସି ଲାଗେ ଦେଖି ଯେ ଏମାନେ ବି ବେଳେ ବେଳେ ସ୍ୱର ଉଂଚେଇ କଳି କରିପାରନ୍ତି । କିନ୍ତୁ ପଶ୍ଚିମ ଉପକୂଳରେ ଥିବା ଭ୍ୟାଂକୋଭର୍ ବି.ସି., ଯେଉଁଠି ଆମ କନ୍‌ସଲ୍ ଜେନେରାଲ୍‌ଙ୍କ ଅଫିସ୍ ଅଛି, ସେଠି ମୁଁ ବୋର୍ ହୋଇ ପାରିଲି ନାହିଁ, କାରଣ ଜାଗାଟି ଅତି ସୁନ୍ଦର । ପ୍ରାକୃତିକ ସୌନ୍ଦର୍ଯ୍ୟର ସମସ୍ତ ଉପାଦାନ ଏଇ ସହର ତଥା ପ୍ରଦେଶରେ ରହିଲା ପରି ଲାଗେ, ନୀଳ ସମୁଦ୍ର, ନୀଳ ଶୈଳ ଏବଂ ଏକାଧିକ ହ୍ରଦ, ନଈ ତଥା ସମୁଦ୍ର ଆଡ଼କୁ ପଂଝା ମେଲେଇଥିବା ଜଳଧାରା । ଯଥାର୍ଥରେ 'ବିଉଟିଫୁଲ୍ ବ୍ରିଟୀଶ କଲମ୍ବିଆ' ବୋଲି ଲେଖାଥାଏ ଏଠିକା କାର୍‌ରେ ଲାଗିଥିବା ନମ୍ବର ପ୍ଲେଟ୍‌ରେ । ମୁଁ ସମୁଦ୍ର କୂଳରେ ଯାଇ ବସେ ଏବଂ ଦେଖେ ମହାସାଗର ତଥା ପୋତାଶ୍ରୟରେ ଆସି ଲାଗୁଥିବା ଜାହାଜମାନଙ୍କର ଦୃଶ୍ୟ । ସହର ମଝିରେ ଥିବା ଷ୍ଟାନ୍‌ଲି ପାର୍କକୁ ଯାଇ ପୁଚ୍ଛ ମେଲାଇଥିବା ମୟୂରମାନଙ୍କୁ ଦେଖିବା ଛଡ଼ା ମୁଁ ମଧ୍ୟ ମଜାର ସାନ ଜନ୍ତୁଟିଏ ଦେଖିଲି । କଳା କୁଚୁକୁଚୁ ଗୁଣ୍ଡୁଚି ମୂଷା । କିନ୍ତୁ ଦୁଷ୍ଟ, ମୋଟେ ଧରାଛୁଆଁ ଦେଲା ନାହିଁ, ମୁଁ ଯେତେ ଚେଷ୍ଟା କଲେ ମଧ୍ୟ । ପୂର୍ବାଂଚଳରେ ଥିବା ମଣ୍ଟ୍ରିଏଲ୍ ସହରକୁ ମଧ୍ୟ ମୁଁ ଯାଇଥିଲି, ଖାଲି ବୁଲି ଆସିବା ପାଇଁ । ଏବଂ ଦେଖିଲି ଯେ ବର୍ଣ୍ଣାଢ଼୍ୟ ଏବଂ କୋଳାହଳମୟ ସହରଟି ପ୍ରାଣପଣେ ନକଲ କରୁଛି ନ୍ୟୁୟର୍କକୁ । ବିଶେଷତଃ ବିଭିନ୍ନ ଆମୋଦପ୍ରମୋଦର ପସରା ମେଲାଇ ।

କିନ୍ତୁ ଭିନ୍ନ ଏବଂ ବିଶିଷ୍ଟ ବୋଲି କହିବାକୁ ହେବ କେବଳ ଗୋଟିଏ ସ୍ଥାନ । କୁଇବେକ୍ ସିଟି । କାରଣ ଫରାସୀ ଭାଷାଭାଷୀ ଏଇ ଅଂଚଳଟି ନିଜର ସ୍ୱତଂତ୍ର ବ୍ୟକ୍ତିତ୍ୱକୁ ଚିହ୍ନାଇବାକୁ ଚାହେଁ, ଏବଂ ତାର ସ୍ୱାଧିକାର ଦାବୀ କରି ବସେ । ଥୋକେ କୁହନ୍ତି ଆମେ ତମଠାରୁ ଅଲଗା ହୋଇଯିବାକୁ ଚାହୁଁ ଏବଂ ଥୋକେ କୁହନ୍ତି ଆମେ ରହିବୁ ତମ ସାଙ୍ଗରେ, ଯଦି ତମେ ଆମକୁ ସବୁଥିରେ ସମାନ ଅଧିକାର ଦିଅ । ଏଇଠି କହୁଛି ଶୁଣନ୍ତୁ ନିଜ ଅନୁଭୂତିର ସାନକଥାଟିଏ । କୁଇବେକ୍ ସିଟିକୁ ଯିବା ବାଟରେ ଆମେ ଗୋଟିଏ ରାସ୍ତାକଡ଼ର ଚା'ଦୋକାନକୁ ଯାଇଥିଲୁ, ଜଳପାନ କରିବା ପାଇଁ । ସେଠି ମଧ୍ୟ ଆମକୁ ବିଶେଷ ଖାତିର୍ ମିଳିଲା ଭାରତବାସୀ ବୋଲି । କିନ୍ତୁ ସ୍ୱାଧିନୋତ୍ତର ଭାରତର ପ୍ରଗତି ବିଷୟରେ କିଛି ଆଳାପ କରୁ କରୁ ଦୋକାନମାଲିକ ହଠାତ୍ ଗୋଟାଏ ଦୀର୍ଘନିଃଶ୍ୱାସ ପକେଇ କହିଲେ - କିନ୍ତୁ ଆମେ ତ ସ୍ୱାଧିନ ହୋଇପାରି ନାହୁଁ ଆଜିଯାଏ !

ତାଙ୍କର ଏଇ ରାଜନୈତିକ ସମସ୍ୟା ଅନେକ ହାଲୁକା ହୋଇଗଲାଣି ଯା ଭିତରେ । ଫରାସୀ ଭାଷାକୁ ଦେଶର ଦ୍ୱିତୀୟ ରାଜଭାଷାର ମର୍ଯ୍ୟାଦା ଦେବା ଏବଂ କୁଇବେକ୍ ପ୍ରଦେଶରେ ତାର ପ୍ରାଧାନ୍ୟ ସ୍ୱୀକାର କରିବା ଦିଗରେ ନାନାଦି ବିଧିବିଧାନର ପ୍ରଣୟନ ହେତୁ । କିନ୍ତୁ ଯେତେବେଳେ ମୁଁ ଦେଖୁଥିଲି କୁଇବେକ୍ ସିଟିର ଏହି ଭିନ୍ନମନ୍ୟତା, ଚା' ଦୋକାନୀର ଶ୍ଳେଷୋକ୍ତି ଠାରୁ ଆରମ୍ଭ କରି କେବଳ ଫରାସୀ ଭାଷାର ଉଚ୍ଚାରଣ, ମୁହଁର କଥା ତଥା ସାଇନ୍‌ବୋର୍ଡ଼ର ଲେଖାରେ । ଏପରିକି ମୋତେ ଏଠି ଫେରି ପାଇଲା ପରି ଲାଗିଲା 'ରିଓ'ର ଛବିଳ ବିଶୃଂଖଳା । କାର୍ ସବୁ ସମାନ ଗତିରେ ସିଧାସଳଖ ଚାଲୁନାହାନ୍ତି । 'ପେଁ ପାଁ' କରି ଇଆଡ଼େ ସିଆଡ଼େ ଚାଲୁଛନ୍ତି ଆମ ଦେଶ ପରି । ଏବଂ ରାସ୍ତାଘାଟରେ ରଚିତ ପାଟିତୁଣ୍ଡ କିଛି କମ୍ ନୁହେଁ । ସତେକି ସେମାନେ ଯେକୌଣସି ଭାବରେ ତମକୁ ଜଣାଇବାକୁ ଚାହାନ୍ତି ଯେ ସେମାନଙ୍କ ଆତ୍ମା ଲାଟିନ୍, ଆଂଗ୍ଲୋ ସାକ୍ସନ୍ ନୁହେଁ ।

ଏଇଠି ସରିଲା ମୋର ଦୁନିଆଁଦେଖା କାହାଣୀ, ମୋର ବୃତ୍ତିଗତ ଗସ୍ତରୁ ମିଳିଥିବା ଅନୁଭୂତିକୁ ନେଇ । ଏଥର ଫେରିବା କଥା ଘରକୁ । ପ୍ରକୃତରେ ମୁଁ ଯେତେବେଳେ ଫେରି ଆସେ ୱାଶିଂଗ୍‌ଟନ୍ ଡି.ସି.କୁ ଏବଂ ୱାଶିଂଗ୍‌ଟନ୍ ମନୁମେଣ୍ଟ୍ ଆଖିରେ ପଡ଼େ ବିମାନ ଓହ୍ଲେଇଲା ବେଳକୁ, ମୋର ମନେ ହୁଏ ମୁଁ ମୋ ଘରକୁ ଫେରୁଛି । ଏଇଠି ମୋ ସ୍ତ୍ରୀ ଓ ପାଞ୍ଚୋଟି ପିଲାଙ୍କ ନୂଆଜୀବନ । ଏବଂ ଏଇଠି ମୋର ଦୈନନ୍ଦିନ କାମ ଓ ରହଣିର ଅନୁଭୂତି, ଯାହାର ତାତ୍ପର୍ଯ୍ୟ ଅନେକ ଅଧିକ ହେବାକୁ ବାଧ୍ୟ ମୋ ବ୍ୟକ୍ତିଗତ ଜୀବନର ପରିପ୍ରେକ୍ଷୀରେ । ବର୍ତ୍ତମାନ କହୁଛି କିଛି ସେ ବିଷୟରେ ।

ପ୍ରଥମେ ମୋର ସ୍ତ୍ରୀ ପିଲାଙ୍କ କଥା । ସେମାନଙ୍କ ଅନୁଭବ ଓ ଅନୁଭୂତିରୁ ଉପଲବ୍ଧ ଯତ୍‌ସାମାନ୍ୟ କଥା, ଯାହା ଉଲ୍ଲେଖଯୋଗ୍ୟ । ମୋଟ ଉପରେ ମୁଁ କହିବି ଯେ ଏଇ ନୂଆ ଦେଶ ତାଙ୍କୁ ବେଶ୍ ଆରେଇ ଯାଇଥିଲା ଏବଂ ସେମାନେ ଖୁସି ଥିଲେ । ଚାରିପାଞ୍ଚ ବର୍ଷର ପୁଅ ଧୀରୁକୁ କେଉଁ ସ୍କୁଲ୍‌ରେ ଆଡ୍‌ମିସନ୍ ମିଳିଲା ନାହିଁ । ମୋତେ କୁହାଗଲା ଯେ ଏଠି ପିଲାଙ୍କ ପାଠ ପଢ଼ିବା ମନା, ତାଙ୍କୁ ଛଅ ବର୍ଷ ପୂରିବା ପୂର୍ବରୁ । ତମେ ପୁଅକୁ ଗୋଟାଏ ଖେଳସ୍କୁଲ, ଅର୍ଥାତ୍ ନର୍ସେରୀକୁ ନେଇଯାଇପାର । ତେଣୁ ସେ ଗଲା ଗୋଟାଏ ଘରପାଖ ନର୍ସେରୀକୁ । କିନ୍ତୁ ଅନ୍ୟ ପିଲାମାନଙ୍କୁ ଯଥାଶୀଘ୍ର ମିଳିଗଲା ଅଦୂରବର୍ତ୍ତୀ ଜୁନିଅର୍ ଏବଂ ହାଇସ୍କୁଲ୍ । ସବୁଗୁଡ଼ିକ ସରକାରୀ ସ୍କୁଲ, ତେଣୁ ଟିଉସନ୍ ଖର୍ଚ୍ଚ ଦେବାକୁ ପଡ଼େ ନାହିଁ । ହେଲେ ଏଇ ସରକାରୀ ସ୍କୁଲ୍‌ଗୁଡ଼ିକୁ କୌଣସି ହିସାବରେ ନିକୃଷ୍ଟ ବୋଲି କୁହାଯିବ ନାହିଁ । ବିଶେଷ ବ୍ୟକ୍ତିଗତ କାରଣ ନ ଥିଲେ କୌଣସି ବାପମାଆ ତାଙ୍କ ପିଲାଙ୍କୁ କେଉଁ ବ୍ୟୟସାପେକ୍ଷ ପ୍ରାଇଭେଟ୍ ସ୍କୁଲକୁ ପଠାଇବାକୁ ଚାହିଁବେ ନାହିଁ ।

ପିଲାମାନଙ୍କୁ ବହିଖାତାର ବୋଝ ବୋହି ଯିବାକୁ ପଡ଼େ ନାହିଁ ତାଙ୍କ ସ୍କୁଲକୁ । କାରଣ ତାଙ୍କୁ ମିଳିଥିବା ବହିଖାତା ଯେଝା ଯେଝା ଡେସ୍କ ଡ୍ରୟର୍‌ରେ ଥାଏ । ଏବଂ ସାଧାରଣତଃ

ତାଙ୍କୁ ପଢ଼ିବା ଲେଖିବାର କୌଣସି ହୋମ୍‌ୱାର୍କ ଦିଆଯାଏ ନାହିଁ । ତେବେ ତାଙ୍କୁ ପ୍ରୋତ୍‌ସାହିତ କରାଯାଏ ତାଙ୍କ ଘରୋଇ ଜୀବନର ଅଳ୍ପବହୁତ ଜଣାଇବା ପାଇଁ କ୍ଲାସ୍‌ରେ, ସହପାଠୀ ପିଲା ଏବଂ ଶିକ୍ଷକମାନଙ୍କ ସହିତ ଆତ୍ମୀୟତା ବଢ଼ାଇବା ଲାଗି । ଏହି ପରିପ୍ରେକ୍ଷୀରେ ଗୋଟିଏ କୌତୂହଳପୂର୍ଣ୍ଣ କଥା କହିବାର ଅଛି । ମୋ ବଡ଼ଝିଅ ହୀନୁର କ୍ଲାସ୍‌ରେ କଥା ପଡ଼ିଥିଲା ଯେ କେମିତି ଏବଂ କେଉଁଠି ତାଙ୍କ ବାପାମାଆ ପରସ୍ପରକୁ ଭେଟିଲେ, ଭଲ ପାଇଲେ ଏବଂ ବାହା ହେଲେ । ଝିଅ କହିଲା, ମୁଁ କିଛି ଜାଣେ ନାହିଁ ସେବିଷୟରେ, ହେଲେ ପଚାରିବି ତାଙ୍କୁ । କିନ୍ତୁ ପଚାରିଲାରୁ ଆମେ ଯେତେବେଳେ କହିଲୁ ଯେ ଆମର ଭେଟ ହୋଇ ନଥିଲା ବାହାଘର ଆଗରୁ, ସେ ଆକାଶରୁ ଖସିଲା । ହସି ଉଠିଲା । ହେଲେ ପରେ ପରେ କାନ୍ଦିଲା ପରି ହେଲା । ଯେ ଏଭଳି ଅଦ୍‌ଭୁତ କଥା ସେ କହିପାରିବ ନାହିଁ ତା' କ୍ଲାସରେ, ସାଙ୍ଗମାନେ ତାକୁ ଥଟ୍ଟା କରିବେ । କେମିତି ସେ ତାର ଏଇ ସଂକଟରୁ ରକ୍ଷା ପାଇଲା, ତା' ସେଇ ଜାଣେ । ଆଉ ଗୋଟିଏ ଜିନିଷ ତାକୁ ବିଚିତ୍ର ଲାଗିଥିଲା, ଆମ ଦୁଇ ଦେଶ ଭିତରେ ଥିବା ବିଭେଦକୁ ନେଇ । କହିଲା ବାପା, ଜାଣିଛ, ଏଠି ମାଷ୍ଟରମାନେ କ୍ଲାସକୁ ଆସିଲେ କେହି ହେଲେ ଠିଆ ହୋଇ ପଡ଼ନ୍ତି ନାହିଁ, ଆମ ଇଣ୍ଡିଆ ପରି । 'ଗୁଡ୍ ମର୍ଣ୍ଣିଂଗ୍ ସାର୍' ବୋଲି ବି କୁହନ୍ତି ନାହିଁ । ଆଉ ଏମିତି ଥଟ୍ଟା ନକଲ ହୁଅନ୍ତି ତାଙ୍କ ସାଙ୍ଗରେ, ଆଉ କଣ କହିବି ! ହେଲେ କେଉଁ ପିଲାକୁ ଖରାପ ଲାଗିବ, ତଥାକଥିତ ଗୁରୁଜନ ମାନଙ୍କର ଆହୁରି ପାଖକୁ ଆସିପାରିଲେ, ସେମାନେ ବାପାମାଆ ହୁଅନ୍ତୁ କି ମାଷ୍ଟର ମାଷ୍ଟ୍ରାଣୀ ? ହଁ, ଆଉ ଗୋଟିଏ କଥା କହିଦିଏ ତାଙ୍କ ସ୍କୁଲପାଠପଢ଼ା ନେଇ, ବିଶେଷତଃ ଜୁନିଅର୍ ସ୍କୁଲ୍‌ରେ, ଯାହା ମୋତେ ବିଶେଷ ଭଲ ଲାଗିଥିଲା । ଗୋଟିଏ ଚମତ୍କାର ପଦ୍ଧତି, ତା ନାଆଁ ହେଉଛି, "Show and Tell" । ଅର୍ଥାତ୍ ଘରୁ ବସ୍ତୁଟିଏ ଆଣି ଦେଖାଅ ଆମକୁ ଏବଂ କୁହ କିଛି ସେ ବିଷୟରେ । ଯଥା, କେଉଁ ବିଶିଷ୍ଟ ଫୁଲ ଦାନୀଟିଏ, ଛବିଟିଏ, ଫୁଲଅଂକା ହୋଇଥିବା ରୁମାଲ୍‌ଟିଏ, ଅବା ସେମିତି କିଛି । ଏବଂ କୁହ ସେଇଟି ତୁମକୁ କାହିଁକି ଭଲ ଲାଗେ, ଏବଂ ତାର ବିଶେଷତ୍ୱ କଅଣ । ଏହି ଭାବରେ ଯେଉଁ ପ୍ରୋତ୍‌ସାହନ ମିଳେ ପିଲାଙ୍କୁ ନିଜକୁ ବ୍ୟକ୍ତ କରିବା ପାଇଁ, ଖାଲି ମୁଖସ୍ଥ କରିଥିବା ପାଠର ପୁନରୁଦ୍ଧାର ନ କରି, ସେଥିର କଣ ଯଥେଷ୍ଟ ମୂଲ୍ୟ ନାହିଁ ତାଙ୍କ ମାନସିକ ବିକାଶ ଦିଗରେ ? ଏବଂ ଏହିପ୍ରକାର ପଦ୍ଧତି କଣ ଆମେ ଆମ ସ୍କୁଲମାନଙ୍କରେ ଚଳେଇ ପାରନ୍ତେ ନାହିଁ ?

କୁମର ମନରେ ଟିକିଏ ଆଶଙ୍କା ଥିଲା ଯେ ଏଇ ଦୂରବିଦେଶରେ ତାକୁ ଏକୁଟିଆ ଲାଗିବ, ଯେହେତୁ ମୁଁ ମୋ କାମରେ ବ୍ୟସ୍ତ ରହିବି, ଆଉ ଟୁର୍‌ରେ ଯାଉଥିବି ଏଠିକି ସେଠିକି, ତେଣୁ ତା ସାଙ୍ଗରେ ପଦେ କଥା କହିବାର ଲୋକ ନ ଥିବେ ତାର ଦୀର୍ଘ ଦିପହରମାନଙ୍କରେ । କିନ୍ତୁ ତାର ଆଶଙ୍କା ଅଚିରେ ଦୂର ହୋଇଗଲା । ଏକେ ମୋର ଅତି ଛୋଟିଆ ଅଫିସ୍, ଜଣେ ଅବିବାହିତା ଡେପୁଟି ଡାଇରେକ୍ଟର୍ ଏବଂ ଛଅଜଣ ଆକାଉଣ୍ଟାଣ୍ଟଙ୍କୁ ନେଇ, ବସ୍ତୁତଃ ଗୋଟିଏ

ଯୌଥ ପରିବାର ବୋଲି ମନେ ହେଲା । ଏକାଠି ମିଶି ପିକ୍‌ନିକ୍ କରିବା ଠାରୁ ଆରମ୍ଭ କରି, ସ୍ତ୍ରୀ, ସ୍ୱାମୀ ଓ ପିଲାମାନଙ୍କୁ ନେଇ ବିବିଧ ବିଭିନ୍ନ ଆସର ସୃଷ୍ଟି କରିବାରେ । ତଥା କେଉଁ 'ସେଲ୍' ସଉଦାର ଅଭିଯାନରେ ସାଥୀ ହେବା ପାଇଁ । କିନ୍ତୁ ତା'ଛଡ଼ା କଣ କମ୍ ଭାରତୀୟ ଥିଲେ ସେଠି, ଆମରି ଡିପ୍ଲୋମାଟିକ୍ ମହଲରେ, ଯେଉଁମାନଙ୍କୁ ଯଥେଷ୍ଟ ସୁବିଧାସୁଯୋଗ ମିଳୁଥିଲା ପରସ୍ପର ସହିତ ମିଳିତ ହୋଇ, ଯଥାକ୍ରମେ ନିଜନିଜର ବିଶିଷ୍ଟ ବନ୍ଧୁ ବାଛି ନେବା ପାଇଁ ?

କିନ୍ତୁ କଣ ଲେଖା ହୋଇଛି ଯେ ଭାରତୀୟମାନେ ତମର ବନ୍ଧୁ ହୋଇପାରିବେ ? ସେଦିଗରେ କୁମ ଅନେକ ଆଗକୁ ଯାଇପାରିଲା, ମୋ ତୁଳନାରେ, ଏକାଧିକ ଅଣଭାରତୀୟ ସଂଗିନୀଙ୍କୁ ହାସଲ କରିବାରେ । ସହଜେ ମିଳାମିଶା କରିପାରିବା ତ ତାର ଗୋଟିଏ ବିଶିଷ୍ଟ ଚରିତ୍ରଗୁଣ, ଯାହା ମୁଁ କହିଛି ଆଗରୁ । କିନ୍ତୁ ତା'ଛଡ଼ା ତାର ସହାୟକ ହେଲା ୱାଶିଂଗ୍‌ଟନ୍‌ରେ ଗଢ଼ି ଉଠିଥିବା ଗୋଟିଏ ଚମତ୍କାର ସଂସ୍ଥା, ଯାହାର ନାଆଁ 'ୱେଲ୍‌କମ୍ ଟୁ ୱାଶିଂଗ୍‌ଟନ୍ କ୍ଲବ୍' । ଖାସ୍ ଡିପ୍ଲୋମାଟିକ୍ ମହଲର ପତ୍ନୀମାନଙ୍କ ପାଇଁ । ଯେଉଁମାନଙ୍କୁ ସାଦର ଅଭିବାଦନ ଜଣାଇ କୁହାଯାଉଛି, ଆସ ଏକାଠି ହେବା । ତମ ସ୍ୱାମୀମାନେ ତ ବ୍ୟସ୍ତ ରହୁଛନ୍ତି ତାଙ୍କ ପାଇଁ ନିର୍ଦ୍ଦିଷ୍ଟ ହୋଇଥିବା କାମ କରିବାରେ । ଏବଂ ସେମାନଙ୍କୁ ତ ହେଲମେଳ ହେବାକୁ ପଡୁଛି ଆମ ସ୍ୱାମୀମାନଙ୍କ ସାଙ୍ଗରେ, ସେଇ କାମ ଜରିଆରେ । କିନ୍ତୁ ଆମେ କଣ ସ୍ୱତଂତ୍ର ଭାବରେ ଏକାଠି ହୋଇ ପାରନ୍ତେ ନାହିଁ, ପରସ୍ପରକୁ ଆହୁରି ଭଲ ଭାବରେ ଜାଣିବା ପାଇଁ ? ତଥା ପରସ୍ପରର ସଂସ୍କୃତିରୁ ନୂଆ କିଛି ପାଇବା ପାଇଁ ? ସହଜେ ଅନୁମେୟ ଯେ ତାଙ୍କ ସରକାରଙ୍କ ବିଦେଶ ବିଭାଗ ଏଇ କ୍ଲବ୍‌ର ପୃଷ୍ଠପୋଷକ ଥିଲା । କିନ୍ତୁ ଏହି କ୍ଲବ୍‌ର ଯଥେଷ୍ଟ ସ୍ୱାତଂତ୍ର୍ୟ ଥିଲା ବିଭିନ୍ନ ସଦସ୍ୟମାନଙ୍କୁ ବିଭିନ୍ନ ଭାବରେ ଆକୃଷ୍ଟ କରିବା ଲାଗି । କାହା ପାଇଁ ବ୍ରିଜ୍‌ଖେଳ ତ କାହାପାଇଁ ଫଟୋଗ୍ରାଫି, ଅବା କାହା ପାଇଁ କ୍ଲାସିକାଲ୍ ମ୍ୟୁଜିକ୍ । ଯାହାହେଉ କୁମକୁ ବେଶ୍ କେତେଜଣ ଆମେରିକାନ୍ ସାଙ୍ଗ ମିଳିଗଲେ ଏଇ କ୍ଲବ୍ ଜରିଆରେ । ସେମାନଙ୍କ ମଧ୍ୟରେ ଥିଲେ ପରେ ସେକ୍ରେଟେରୀ ଅଫ୍ ଷ୍ଟେଟ୍ ହୋଇଥିବା ଉଇଲିୟମ୍ ରୋଜର୍ସଙ୍କ ସ୍ତ୍ରୀ । ଆମେରିକାରୁ ଫେରି ଆସିବାର ଅନେକ ଦିନ ଯାଏ ପତ୍ରାଳାପ ଓ ପାରିବାରିକ ଫଟୋର ଦିଆନିଆ ହେଉଥିଲା ଦି'ଜଣଙ୍କ ଭିତରେ ।

କିନ୍ତୁ କେବଳ ଜଣେ ଥିଲେ କୁମର ଭଲ ସାଙ୍ଗରୁ ବଳି ଆତ୍ମିକ ସାଙ୍ଗ । ସେ ଥିଲେ ଜଣେ ଆମେରିକାନ୍ ମିଶନାରୀଙ୍କ ସ୍ତ୍ରୀ, ଡିପ୍ଲୋମାଟିକ୍ ଗହଳିର ଅନେକ ଦୂରରେ । ହେଲେ ସେ କେମିତି ତାର ଏତେ ନିକଟକୁ ଆସିପାରିଲେ, ତା ନିଜ ବଡ଼ ଭଉଣୀ ପରି, ତାର ଭେଦ ଜଣା ନାହିଁ ମୋତେ । ଜଣା ନାହିଁ କି ମୁଁ ଜାଣିବାକୁ ଚାହେଁ ନାହିଁ । ଥାଉ ସେ ରହସ୍ୟ ତା ନିଜର ହୋଇ, ତା' ଅନୁଭୂତିର ଏକ ଅମୂଲ୍ୟ ଧନ ।

ଏହିପ୍ରକାର ବନ୍ଧୁତା ଛଡ଼ା କୁମକୁ ଗୋଟାଏ ଭିନ୍ନ କାମ କରିବାର ସୁଯୋଗ ମିଳିଥିଲା ଏଠି । ନିଃସ୍ୱାର୍ଥ ଜନସେବା । ଜଣେ ବରିଷ୍ଠ ଭାରତୀୟ ଅର୍ମି ଅଫିସରଙ୍କ ସ୍ତ୍ରୀଙ୍କ ସାଙ୍ଗରେ ମିଶି ସେ ନର୍ସମାନଙ୍କ ସହଯୋଗୀ (Nurses' Aide) ଭାବରେ କାମ କଲା ୱାଶିଂଗ୍‌ଟନ୍‌ରେ ଥିବା ଦୁଇଟି ବଡ଼ ହସପିଟାଲ୍‌ରେ । ନର୍ସମାନେ ଯେଉଁସବୁ କାମ କରନ୍ତି, ତାକୁ ସେଇ ସବୁ କାମ କରିବାକୁ ପଡୁଥିଲା, ରୋଗୀମାନଙ୍କୁ ଔଷଧପତ୍ର କିମ୍ବା ଇଂଜେକ୍‌ସନ୍ ଦେବା ଛଡ଼ା । ତାଙ୍କ ବିଛଣା ସଜାଡ଼ିବା, ତାଙ୍କୁ ବେଡ଼୍‌ପ୍ୟାନ୍ ଦେବାଠାରୁ ଆରମ୍ଭ କରି ତାଙ୍କ ସାଙ୍ଗରେ ଖୁସିଗପ ହୋଇ ତାଙ୍କ ଦୁଃଖକଷ୍ଟକୁ ହାଲୁକା କରିବା କାମ । ଏହି ସଂକ୍ରାନ୍ତରେ କୁମକୁ ମଧ୍ୟ ଗୋଟିଏ ପ୍ରଶଂସାମୂଳକ ସାର୍ଟିଫିକେଟ୍ ମିଳିଛି ଆମେରିକାନ୍ ରେଡ଼କ୍ରସ୍ ସୋସାଇଟି ତରଫରୁ । ହଁ, କୁମର ଆମେରିକା ରହଣି କେବଳ ସୁଖମୟ ନ ଥିଲା (ବହୁ ସଂତାନବତୀର ଅଛିଣ୍ଡା ଘରଜଂଜାଳ ସତ୍ତ୍ୱେ), ତାହା ମଧ୍ୟ ଏକ ବିଶେଷ ସାର୍ଥକତା ଆଣି ଦେଇଥିଲା ତାପାଇଁ ।

ସେଇଠୁଁ ମୋ ନିଜ କଥା । କିଭଳି କାମ କରିବାକୁ ପଡୁଥିଲା ମୋତେ ? କିଛି ନୂଆ ଅନୁଭୂତି ଆସିଥିଲା କି ସେଠି, ସେଇ କାମକୁ ନେଇ ? ଏବଂ ମୋ ସାହିତ୍ୟ ?

ୱାଶିଂଗ୍‌ଟନ୍‌ରେ ମୋ କାମ ଥିଲା ମୋ ଡେପୁଟି ଓ ଛଅଜଣ ଆକାଉଣ୍ଟାଣ୍ଟ୍‌ଙ୍କ ସହଯୋଗରେ ଭାରତୀୟ ଦୂତାବାସ ଓ ଇଣ୍ଡିଆ ସପ୍ଲାଏ ମିଶନ୍‌ର ହିସାବଖାତାର ଯାଂଚ କରିବା । କାମ ହିସାବରେ କିଛି ନୂତନତ୍ୱ ନ ଥିଲା ସେଥିରେ । କିନ୍ତୁ ପ୍ରଶାସନିକ ସଂପର୍କକୁ ନେଇ ଗୋଟାଏ ଅଡୁଆ ଥିଲା ମୋ ପାଇଁ । ଏଠି ମୁଁ କେବଳ ଭାରତର ଅଡ଼ିଟର୍ ଜେନେରାଲ୍‌ଙ୍କ ପ୍ରତିନିଧି ଭାବରେ କାମ କରୁଥିବା ଜଣେ ଅଡ଼ିଟ୍ ଅଫିସର୍ ନୁହେଁ । ମୁଁ ମଧ୍ୟ ଜଣେ ଫାଷ୍ଟ୍‌ସେକ୍ରେଟେରୀ ପାହ୍ୟାର ଡିପ୍ଲୋମାଟିକ୍ ଅଫିସର୍, ଯାହାର କେତୋଟି ସୁବିଧାସୁଯୋଗ ତଥା ଦାୟିତ୍ୱ ରହିଛି ସେଥିଯୋଗୁ । ଏବଂ ତାର ନିୟନ୍ତ୍ରକ ହେଉଛନ୍ତି ଭାରତର ରାଜଦୂତ । ସେହେତୁ ଭିନ୍ନ ଏକ ସ୍ତରରେ ମୁଁ ମଧ୍ୟ ତାଙ୍କର ଅଧିନସ୍ଥ । କିନ୍ତୁ ମୋତେ ତାଙ୍କ ବିଚାରକୁ ମଧ୍ୟ ବେଳେବେଳେ ସମାଲୋଚନା କରିବାକୁ ପଡ଼ିବ ମୋ ଅଡ଼ିଟ୍ କାମର କ୍ରମରେ । ମୋର ମନେ ହେଲା ମୋର ପୂର୍ବସୂରୀମାନେ ଅଳ୍ପବହୁତ କୋହଳ ମନୋଭାବ ଦେଖାଇଛନ୍ତି ରାଜଦୂତଙ୍କ ଆଦେଶ ନିର୍ଦ୍ଦେଶରେ କରା ହୋଇଥିବା କାମକୁ ନେଇ । କିନ୍ତୁ ମୁଁ କଣ କରିପାରିବି ସେମିତି ? ଏଇ ଥିଲା ମୋର ଚିନ୍ତା । କିନ୍ତୁ ଏ ଦିଗରେ ମୋର ସୌଭାଗ୍ୟ ଯେ ସେତେବେଳେ ଆମର ରାଜଦୂତ ଥିଲେ ସ୍ୱନାମଧନ୍ୟ ବି.କେ. ନେହେରୁ । ପ୍ରଧାନମନ୍ତ୍ରୀ ଜବାହର୍‌ଲାଲ୍ ନେହେରୁଙ୍କ ଆତ୍ମୀୟ ଏବଂ ଜଣେ ଉଦାର ଭାବାପନ୍ନ ବ୍ୟକ୍ତି ଯେ ଆମର ଅଡ଼ିଟ୍ ସମୀକ୍ଷାକୁ ଗୋଟାଏ ଦରକାରୀ ପିଲାଖେଳ ହିସାବରେ ନେଉଥିଲେ ବୋଲି ମୋର ମନେ ହେଲା । ଏବଂ ମୁଁ ଶୁଣିଲି ଯେ ତାଙ୍କ ବିଚାରକୁ ତ୍ରୁଟିପୂର୍ଣ୍ଣ ବୋଲି କୁହାଯାଉଛି ବୋଲି ଦେଖିଲେ ସେ ହସି ଦେଉଥିଲେ । ସତେକି ଏମିତି ଆମର କହିବା କଥା ଏବଂ ସେଥିରେ କିଛି ଯାଏ ଆସେ

ନାହିଁ । ରାଜକାର୍ଯ୍ୟକୁ ବାଧା ହେବ ନାହିଁ । କିନ୍ତୁ ମୋ କାର୍ଯ୍ୟକାଳ ପୂରିବା ପୂର୍ବରୁ ଗୋଟିଏ ଅଡ଼ିଟ୍ ଘଟଣା ଘଟିଲା ମୋ ଯୋଗୁଁ, ଯେଉଁଥିରେ ରାଜକାର୍ଯ୍ୟକୁ ବାଧା ନ ହେଲା ନାହିଁ ଏବଂ ମିଷ୍ଟର୍ ନେହେରୁ ନିଜେ କଣ ଭାବିଲେ ସେ ଜାଣନ୍ତି, କିନ୍ତୁ ଡିପ୍ଲୋମାଟିକ୍ ସଂପ୍ରଦାୟରେ ମୋର ଲୋକପ୍ରିୟତାକୁ ଯଥେଷ୍ଟ ବାଧା ହେଲା ବୋଲି ମୋର ଧାରଣା । କାରଣ ଆମ ଡିପ୍ଲୋମାଟିକ୍ ସଂପ୍ରଦାୟର ସ୍ୱାର୍ଥ ବ୍ୟାହତ ହେଲା । କଥାଟା ଏହି ପ୍ରକାର -

ମୋର ବୁଝିବାରେ ଡେରି ହେଲା ନାହିଁ ଏଠିକି ଆସିଲା ପରେ ଯେ ଏଇ ସଂପ୍ରଦାୟର ଲୋକେ ଯେଉଁ ସୁବିଧାସୁଯୋଗ ପାଆନ୍ତି ୱାଶିଂଗ୍‌ଟନ୍ ଡି.ସି.ରେ, ତାହା ତାଙ୍କ ଭାରତରେ ଥିବା ସହକର୍ମୀଙ୍କ ଠାରୁ ଯଥେଷ୍ଟ ଅଧିକ । ଏବଂ ଅନେକାଂଶରେ ଅକାରଣ ବୋଲି ମନେ ହେବ । ଯଥା - ଯେଉଁ ଦେଶରେ ସ୍କୁଲ୍ ପାଠପଢ଼ାର ଫିସ୍ ଦେବାକୁ ପଡ଼େ ନାହିଁ ସେଠି ଭତ୍ତା କାହିଁକି ମିଳିବ ତମକୁ ସରକାରଙ୍କ ଠାରୁ, ତମ ସ୍କୁଲକୁ ଯାଉଥିବା ପିଲାଙ୍କ ପାଠପଢ଼ା ଲାଗି ? ପୁଣି ସରକାର କାହିଁକି ଭତ୍ତା ଯୋଗେଇବ ତମ ଲନ୍ ପାଇଁ ଦରକାର ହେଉଥିବା ମାଳୀ ପାଇଁ ? ଘର କାମରେ ସାହାଯ୍ୟ କରିବାକୁ ଆସୁଥିବା ମେଡ୍ ପାଇଁ ? କିନ୍ତୁ ମୁଁ ଚୁପ୍ ହୋଇ ରହିଲି । କାରଣ ମୋତେ ବୁଝିବାକୁ ପଡ଼ିଲା ଯେ ଗରିବ ଦେଶର ଡିପ୍ଲୋମାଟ୍‌ମାନେ ଗରିବଙ୍କ ପରି ଚଳିବେ ଏଇ ସମୃଦ୍ଧ ଦେଶରେ, ତା କେମିତି ହେବ ? ଏମାନଙ୍କ ସାଙ୍ଗରେ, ତଥା ଅନ୍ୟ ଦେଶର ଡିପ୍ଲୋମାଟ୍‌ଙ୍କ ସାଙ୍ଗରେ ପାଦ ମିଳେଇ ଚାଲିବାକୁ ହେବ ତ ? କିନ୍ତୁ ମୁଁ ଚୁପ୍ ହୋଇ ରହିପାରିଲି ନାହିଁ ଯେତେବେଳେ ଦେଖିଲି ଯେ ଆତ୍ମମର୍ଯ୍ୟାଦାର ଆଳରେ ଏକ ବିଚିତ୍ର ଭତ୍ତା ମିଳୁଛି ଭାରତର ଡିପ୍ଲୋମାଟ୍‌ମାନଙ୍କୁ । ୱାଶିଂଗ୍‌ଟନ୍‌ରେ ପହଞ୍ଚିଲା ପରେ ଯେଉଁ ହୋଟେଲ୍‌ରେ ରହିବାକୁ ପଡ଼େ ତାଙ୍କୁ ଉପଯୁକ୍ତ ଘରଟିଏ କି ଫ୍ଲାଟଟିଏ ପାଇବା ଯାଏଁ, ସେଇ ହୋଟେଲ୍ ଖର୍ଚ୍ଚ ଦେବା ଛଡ଼ା ସରକାର ତାଙ୍କୁ ଗୋଟାଏ ଅଧିକା ଭତ୍ତା ଦିଅନ୍ତି, ହୋଟେଲ୍ ରହଣିର ଅପୂରଣ ଘୁଂଚେଇବା ଲାଗି । ତିନିମାସ ଯାଏଁ ମିଳିବ ଏଇ ଭତ୍ତା । ଏବଂ ଲୋକମୁଖରେ ତାକୁ 'କାର୍ ଆଲାଉନ୍ସ' କୁହାଯାଏ, କାରଣ ସେଇ ଟଙ୍କାରେ ଗୋଟାଏ ନୂଆ ଛୋଟ କାର୍ କିଣି ହୋଇଯିବ । ମୁଁ ଆପତ୍ତି ଉଠେଇଲି । ପଚାରିଲି, ଇଏ କେଉଁ ଅପୂରଣର କ୍ଷତିପୂରଣ ଜାଣିପାରେ କି ? ପ୍ରାୟ ପ୍ରତ୍ୟେକ ହୋଟେଲ୍‌ରେ ରିଫ୍ରିଜିରେଟର୍ ଛଡ଼ା, ଇଲେକ୍‌ଟ୍ରିକ୍ ଚୁଲି ଏବଂ ରାନ୍ଧିବା ପରଷିବା ଖାଇବା ପିଇବାର ସମସ୍ତ ଉପକରଣ ଖଂଜା ହୋଇଥାଏ ତମ ନିଜର ବ୍ୟବହାର ପାଇଁ । ବେଡ୍‌ରୁମ୍ ଓ ଡ୍ରଇଂରୁମ୍‌ର ସାଜସରଂଜାମରେ ମଧ୍ୟ କୌଣସି ଅଭାବ ନାହିଁ । ତାହେଲେ କେଉଁଥିପାଇଁ ଏଇ ଭତ୍ତା ? ସମୁଚିତ ଉତ୍ତର ମିଳିଲା ନାହିଁ । ସେହେତୁ ମୁଁ ଏଇ ପ୍ରଶ୍ନବାଚୀକୁ ରଖିଲି ଆମ ଅଡ଼ିଟ୍ ରିପୋର୍ଟରେ ଏବଂ କହିଲି ଯେ ନିୟମଟାକୁ ବାତିଲ୍ କରାଯାଉ । ଅଡ଼ିଟର୍ ଜେନେରାଲ୍ ମଧ୍ୟ ତାର ଅନୁମୋଦନ କଲେ । ତାପରେ ପବ୍‌ଲିକ୍ ଆକାଉଣ୍ଟାଣ୍ଟ୍‌ସ୍ କମିଟି ଓ ପାର୍ଲିଆମେଣ୍ଟ୍ କିଭଳି ମଂତବ୍ୟ ଦେଲେ ସେ ବିଷୟରେ,

ମୁଁ ଜାଣେ ନାହିଁ ସେକଥା । ମୁଁ ମୋ କାମ କରି ଦେଇଛି । କିନ୍ତୁ ସେପାଖର ବଂଧୁମାନେ ଅନେଇଲେ ମୋ ଆଡ଼କୁ ଜଳଜଳ ହୋଇ, ସତେକି ଏଭଳି ବିଶ୍ୱାସଘାତକତା ସେମାନେ ଆଶା କରି ନଥିଲେ ମୋଠୁଁ ।

କିନ୍ତୁ ଏହି ପରିପ୍ରେକ୍ଷୀରେ ଗୋଟିଏ ନୀତିଗତ ଏବଂ ବ୍ୟକ୍ତିଗତ ପ୍ରଶ୍ନ ଉଠିଥିଲା ମୋ ପାଇଁ । ମୁଁ ମଧ୍ୟ ଏଇ ଭତ୍ତାର ହକ୍‌ଦାର୍ । ଏବଂ ଯେପର୍ଯ୍ୟନ୍ତ ନିୟମର ପରିବର୍ତ୍ତନ ନ ହୋଇଛି, କୌଣସି କାରଣ ନାହିଁ ମୁଁ ନିଜକୁ ଏଇ ଅର୍ଥଲାଭରୁ ବଂଚିତ କରିବି । କିନ୍ତୁ ମୋର ନୀତିଧର୍ମୀ ବିବେକ କହିଲା ଯେ ମୁଁ ଯେତେବେଳେ ଏଇ ଭତ୍ତାକୁ ଅଯୌକ୍ତିକ ବୋଲି କହିଛି, ମୋର ଉଚିତ ନୁହେଁ ତାକୁ ଗ୍ରହଣ କରିବା । ତେଣୁ ଯଦିଓ ମୁଁ ମୋ ଅଫିସ୍‌ର କାହାରିକୁ ବାରଣ କଲି ନାହିଁ ତାଙ୍କ ଆଇନ୍‌ଗତ ପାଉଣା ହାସଲ କରିବା ଲାଗି, ମୁଁ ମୋ ନିଜ ପାଇଁ ବିଲ୍‌ଟିଏ ପେସ୍ କରିପାରିଲି ନାହିଁ । ଏବଂ ସେହେତୁ ମୁଁ ଗୋଟିଏ ବୋକା ବୋଲି ଶୁଣିବାକୁ ମିଳିଲା ବନ୍ଧୁମାନଙ୍କ ଠାରୁ । ହେଲେ କଣ କରାଯିବ ? ମୁଁ ନିଜକୁ କହିଲି ଯେ ସେ ହିସାବରେ ମୋ ବାପା ବଡ଼ବାପା, ବିଶେଷତଃ ପ୍ରବାଦପୁରୁଷ ବଡ଼ବାପା ରାୟବାହାଦୂର ରାଧାଚରଣ ଦାସ, କଣ ନିର୍ଘାତ୍ ବୋକା ନ ଥିଲେ ? ତେଣୁ ମୁଁ ଆଉ ପ୍ରକାରେ ହୋଇପାରିଥାଆନ୍ତି କେମିତି ?

ଏଇ ଥିଲା ଗୋଟିଏ ସ୍ୱରଚିତ ଏବଂ ଉଲ୍ଲେଖଯୋଗ୍ୟ ଅଡ଼ିଟ୍-ଘଟଣା, ମୋ ବେଳର । ଆଉ କଣ କହିବି ? ଡିପାର୍ଟମେଣ୍ଟର ସଂଭବତଃ କ୍ଷୁଦ୍ରତମ ଅଫିସଟିକୁ ଚଳାଇବାରେ କୌଣସି ମୁଣ୍ଡବଥା ନଥିଲା । କାମକୁ ମଧ୍ୟ କୌଣସି ହିସାବରେ ଭାରୀ କିମ୍ୱା ଜଟିଳ ବୋଲି କୁହାଯାଇ ପାରିବ ନାହିଁ ।

ହଁ, ଡିପ୍ଲୋମାଟ୍ ହିସାବରେ ଆଉ ଗୋଟିଏ କାମ କରିବାକୁ ପଡ଼ିଥିଲା ଆମ ସ୍ୱାମୀ-ସ୍ତ୍ରୀଙ୍କୁ । ମାସକୁ ଥରେ ଦି'ଥର ପାର୍ଟି ଡାକିବା । ବଡ଼ ଧରଣର ପାର୍ଟି ଯେଉଁଠି ଡ୍ରିଂକ୍‌ସ୍ ଅନିବାର୍ଯ୍ୟ, କାରଣ ଆଶା କରାଯାଏ ଯେ ଅତିଥିମାନଙ୍କ ମଧ୍ୟରେ ଅନ୍ତତଃ ଅଧେ ଆମେରିକାନ୍ ଥିବେ । ଭୁଲିଯାଅ ଯେ ଦୂତାବାସର ସରକାରୀ ପାର୍ଟିରେ ସୁରାପାନ ନିଷିଦ୍ଧ, ଆମ ରାଷ୍ଟ୍ରନୀତିର ପରିପ୍ରେକ୍ଷୀରେ । ଡିପ୍ଲୋମାଟିକ୍ ସ୍ତରରେ ବନ୍ଧୁଭାବ ସ୍ଥାପନ କରିବାକୁ ହେଲେ ଡିନର୍ ପୂର୍ବରୁ ହୁଇସ୍‌କି ଆଦି ଡ୍ରିଂକ୍‌ସ୍, ଡିନର୍ ସାଙ୍ଗକୁ ୱାଇନ୍ ଏବଂ ଡିନର୍ ପରେ ବ୍ରାଣ୍ଡି ଆଦି ଲିକିଓର୍ (liqueur) ପରଷିବା ବିଧେୟ । ନ ହେଲେ କେଉଁ ଆମେରିକାନ୍ (ମଧ୍ୟ ହାରାହାରି ଉଚ୍ଚବର୍ଗ ଇଣ୍ଡିଆନ୍) ତମ ପାର୍ଟିକୁ ଆସିବାକୁ ଚାହିଁବ ? ଏହାହିଁ ଥିଲା ଅକୁହା ନିର୍ଦ୍ଦେଶ ଆମ ପାଇଁ । ଏବଂ ଆମେ ତାକୁ ନିଷ୍ଠାର ସହିତ ପାଳନ କରୁଥିଲୁ । ଏବଂ ଇଏ ମଧ୍ୟ ଗୋଟିଏ ନୂଆ ଅନୁଭୂତି ଥିଲା ମୋ ଟିପାଖାତା ପାଇଁ ।

ଏଇଥିଲା ମୋଟାମୋଟି ମୋ ୱାଶିଂଗ୍‌ଟନ୍ ରହଣିର ଅନୁଭୂତି । ତା'ଛଡ଼ା ଛୁଟିଦିନରେ ସ୍ତ୍ରୀପିଲାଙ୍କୁ ସାଙ୍ଗରେ ନେଇ ପୋଟୋମାକ୍ ନଈ କୂଳରେ, ରକ୍ କ୍ରିକ୍ ପାର୍କରେ, ଅଥବା

ୱାଶିଂଗ୍‌ଟନ୍ ମନୁମେଣ୍ଟ୍‌, ଲିଂକନ୍ ଷ୍ଟାଚ୍ୟୁ ଆଦି ସ୍ମୃତିପୀଠମାନଙ୍କରେ ସମୟ ବିତେଇବାର ସୁଖ । ଗୋଟିଏ ଶୀତପ୍ରଧାନ ଦେଶ ହିସାବରେ ୱାଶିଂଗ୍‌ଟନ୍‌ର ନାତିଶୀତୋଷ୍ଣ ଜଳବାୟୁ ମଧ୍ୟ ଅନୁକୂଳ ଥିଲା ମୋ ପାଇଁ ।

ୱାଶିଂଗ୍‌ଟନ୍ ବାହାରେ ମୁଁ ପରିବାରଙ୍କୁ ଯୋଡ଼ିଏ ଜାଗାକୁ ବୁଲେଇ ନେଇଯାଇପାରିଥିଲି, ପାଖଆଖର କେତୋଟି ପିକ୍‌ନିକ୍ ସ୍ପଟ୍ ଛଡ଼ା । ସେମାନେ ନିଉୟର୍କକୁ ଆସିଥିଲେ ମୋ ସାଙ୍ଗରେ ପ୍ରାୟ ଦୁଇ ସପ୍ତାହ ପାଇଁ । ତେଣୁ ତାକୁ ବେଶ୍ ଭଲଭାବରେ ଦେଖିଥିଲେ ବୋଲି କୁହାଯାଇପାରେ । ଏବଂ ନାଏଗ୍ରା । ସେଇ ମହାନ ସୁନ୍ଦର ଜଳପ୍ରପାତର ଗାରିମା କିଏ ଭଲା ଭୁଲିପାରିବ ? ବିଶେଷତଃ ମନେ ରହିଥିବ ସେଇ ଶିହରଣ ଦେହ ଓ ମନ ଉଭୟର ରୋମାଂଚ, ଯେତେବେଳେ ଆମେ ଖଣ୍ଡେ ଖଣ୍ଡେ ପ୍ଲାଷ୍ଟିକ୍ ହଳଦିଆ ରେନ୍‌କୋଟ୍ ପିନ୍ଧି ଜଳପ୍ରପାତର ସୁରକ୍ଷିତ, କଡ଼େ କଡ଼େ ଥିବା କରିଡ଼ର୍‌ରେ ଚାଲୁଥିଲୁ, ତାର ପାଣି ଛିଟିକାକୁ ଅନୁଭବ କରିବା ପାଇଁ ।

ଆମ ଅଢ଼େଇ ବର୍ଷର ଆମେରିକା ରହଣି ଯଥାର୍ଥରେ ଉପଭୋଗ୍ୟ ତଥା ଅବିସ୍ମରଣୀୟ ଥିଲା ଆମ ସମସ୍ତଙ୍କ ପାଇଁ ।

ଏହି ସମୟରେ ଭାରତ ଏବଂ ଆମେରିକା ମଧ୍ୟରେ ଥିବା ବଂଧୁତ୍ୱ ମଧ୍ୟ ଏକ ଉତ୍ତୁଂଗ ଶିଖରିକୁ ଉଠିଥିଲା ଦୁଇଟି ଜାଜ୍ୱଲ୍ୟମାନ ବ୍ୟକ୍ତିତ୍ୱକୁ ନେଇ - ଭାରତର ଜବାହାରଲାଲ୍ ନେହେରୁ ଏବଂ ଆମେରିକାର ପ୍ରେସିଡେଣ୍ଟ୍ ଜେ.ଏଫ୍. କେନେଡ଼ି । ନେହେରୁ ସେଠିକି ଯାଇଥିଲେ ଆମେ ଥିଲାବେଳେ ଏବଂ ଉଦ୍‌ବୋଧନମୂଳକ ଦିପଦ କଥା କହିଥିଲେ ଆମକୁ ଭାରତୀୟ ଦୂତାବାସରେ । ଏବଂ ସେତେବେଳର ଯେଉଁ ଛବିଟିଏ ତୋଳା ହୋଇଥିଲା କେଉଁ ପତ୍ରକାର ଦ୍ୱାରା, ଦୁଇ ନେତା ପାଦ ମିଳେଇ ଚାଲୁଛନ୍ତି ହ୍ୱାଇଟ୍ ହାଉସ୍‌ର ଲନ୍‌ରେ, କେଉଁ ସୁଦୂର ସୂର୍ଯ୍ୟୋଦୟ ସାଙ୍ଗରେ ଆପଏଣ୍ଟମେଣ୍ଟ୍ ଥିଲାପରି, ତାହା ସହଜେ ଏକ ସୁବିଦିତ ଚିତ୍ରପଟ ହୋଇ ରହିଛି, ଦୁଇ ଦେଶର ଜନସାଧାରଣଙ୍କ ପାଇଁ ।

କିନ୍ତୁ ହାୟ । କେତୋଟି ଦୁଃଖଦ ଘଟଣା ମଧ୍ୟ ଘଟିଥିଲା ଏଇ ଦୁଇ ଦେଶର ଇତିହାସରେ, ଏଇ ଅଢ଼େଇ ବର୍ଷ ଭିତରେ, ଗୋଟିଏ ପରେ ଗୋଟିଏ । ୧୯୬୨ରେ ଭାରତକୁ ସହିବାକୁ ପଡ଼ିଲା ଏକ ଲଜ୍ଜାଜନକ ପରାଭବ, ପଡ଼ୋଶୀ ଚାଇନା ହାତରୁ, ଯାହା ନେହେରୁଙ୍କ ପାଇଁ ମଧ୍ୟ ଏକ ବ୍ୟକ୍ତିଗତ ପରାଭବ ଥିଲା ବୋଲି କହିଲେ ଭୁଲ୍ ହେବ ନାହିଁ । ସେଇଠୁଁ ୧୯୬୩ ନଭେମ୍ବରରେ ପ୍ରେସିଡ଼େଣ୍ଟ କେନେଡ଼ିଙ୍କ ନିଧନ । ତାହା ଏକ ମର୍ମଂତୁଦ ଅନୁଭବ ଥିଲା ଆମ ସମସ୍ତଙ୍କ ପାଇଁ । ଏବଂ ଦିନକ ପରେ ମୋର ଆଠବର୍ଷ ବୟସର ସାନଝିଅ ଯେତେବେଳେ ବାହାରିଲା, ଆମ ବଗିଚାରୁ ତୋଳି ଆଣିଥିବା ହଳଦିଆ ଗୋଲାପ ଫୁଲଟିଏ ଧରି, ଫୁଲଟିକୁ କେନେଡ଼ିଙ୍କ ସ୍ମୃତିରେ ଜଳୁଥିବା ଅନିର୍ବାଣ ଦୀପ ପାଖରେ ଥୋଇ ଆସିବ

ବୋଲି, ତାର କେଉଁ ସାଙ୍ଗମାନଙ୍କ ସାଙ୍ଗରେ ମିଶି, ଆମେ ତାକୁ ଗୋଟିଏ ପିଲାଳିଆ ଭାବପ୍ରବଣତା ବୋଲି ଭାବି ପାରିଲୁ ନାହିଁ । ଅପରନ୍ତୁ ଆମର ମନେ ହେଲା ସେ ଯାଉଛି ସେଠିକି ଆମର ଏଇ ଭାରତୀୟ ପରିବାରଟିର ପ୍ରତିନିଧି ହୋଇ । ସେତିକି ହୁଏତ ଆମେ ନିଜେ କରି ପାରିଥାଆନ୍ତୁ । ଥ୍ୟାଂକ୍‌ସ୍, ଡିଅର୍ ଗାର୍ଲ୍ !

ତା'ପର ବର୍ଷ ଆରମ୍ଭରେ ଆମକୁ ଆଦେଶ ହେଲା ଭାରତକୁ ଫେରି ଆସିବା ପାଇଁ । ଏତେ ଶୀଘ୍ର ? ତିନିବର୍ଷ ପୂରା ହୋଇ ନାହିଁ ପରା ? ୱାଶିଂଗ୍‌ଟନ୍‌ରେ ପହଞ୍ଚୁ ନ ପହଞ୍ଚୁଣୁ ଶୁଭଂକରୀ ବରଫପାତର ଦୃଶ୍ୟ ଦେଖିବାକୁ ମିଳିଥିଲା ଆମର ମନସ୍କାମନା ପୂର୍ଣ୍ଣ ହେଲା ପରି । ସେଇ ଦୃଶ୍ୟଟିକ ଦେଖି ନ ଥାଆନ୍ତୁ ମଧ୍ୟ ଫେରିଲା ବେଳକୁ ? କିନ୍ତୁ ତା ହେଲା ନାହିଁ । ପୂରା ତିନିବର୍ଷ ରହି ଯାଇଥିଲେ ବଡ଼ଝିଅର ସ୍କୁଲପଢ଼ା ମଧ୍ୟ ଶେଷ ହୋଇଯାଇଥାଆନ୍ତା । କିନ୍ତୁ ମୋର ଆବେଦନ ଗୃହୀତ ହେଲା ନାହିଁ । ତେଣୁ ୧୯୬୪ ଜୁନ୍ ମାସରେ ଆମେ ଫେରି ଆସିଲୁ ଭାରତକୁ । ତାର କିଛି ଦିନ ପୂର୍ବରୁ ମେ ୨୭ ତାରିଖରେ ନେହେରୁଜୀ ମଧ୍ୟ ଚାଲିଯାଇଥିଲେ । ମୋର ମନେ ହେଲା ଗୋଟାଏ ଉଜ୍ଜ୍ୱଳ ଅଧ୍ୟାୟର ସମାପ୍ତି ଘଟିଲା, ମୋ ପାଇଁ, ତଥା ଭାରତ ଆମେରିକାର ଇତିହାସରେ ।

ମୋର ପୋଷ୍ଟିଂଗ୍ ହେଲା କଲିକତାକୁ । ସେଠି ଥିବା ଗୋଟିଏ ପୋଷ୍ଟାଲ୍ ଅଡିଟ୍ ଅଫିସର କର୍ତ୍ତା ହେବା ପାଇଁ । ହଉ, ଧନ୍ୟବାଦ ।

ଯାହାହେଉ ଫେରିବା ବାଟରେ- ଏଥର ଫେରିବାକୁ ପଡ଼ିଲା ଉଡ଼ାଜାହାଜରେ- ଆମକୁ ସୁଯୋଗ ମିଳିଲା ଆଉ ଗୋଟିଏ ନୂଆ ଦେଶ ଦେଖି ଆସିବା ପାଇଁ । ୱାଶିଂଗ୍‌ଟନ୍‌ରୁ ଫେରି କାଏରୋରେ କାମ କରୁଥିବା ଜଣେ ବନ୍ଧୁଙ୍କ ଆମଂତ୍ରଣ କ୍ରମେ । ସେଇଠି ଆମେ ରହିଲୁ ଦି'ତିନି ଦିନ, ତାଙ୍କ ଅତିଥି ହୋଇ । ପ୍ରଥମେ ଦେଖିଲୁ କେତୋଟି ପିରାମିଡ୍, ତଥାପି 'ବଂଚି' ରହିଥିବା କେତେକ ରାଜାରାଣୀମାନଙ୍କୁ, ତଥା ତାଙ୍କୁ ଯୋଗାଇ ଦିଆଯାଇଥିବା ଐଶ୍ୱର୍ଯ୍ୟର ଭଣ୍ଡାର । ସହଜେ ମୁଗ୍‌ଧ ହେଲୁ । କିନ୍ତୁ କାଏରୋ କଥା ମନେ ପଡ଼ିଲେ ମୋର ଆଖିକୁ ଦିଶିଯାଏ କେତୋଟି ବିକ୍ଷିପ୍ତ ଦୃଶ୍ୟ, ଯାହା ମୋତେ କହିଲା ପରି ଲାଗେ ଯେ ଆରବିଆନ୍ ନାଇଟ୍‌ସ୍ (Arabian Nights)ର ମିଶର ଦେଶ ତଥାପି ବଦଳି ନାହିଁ, ଏତେ ଶୀଘ୍ର ବଦଳି ପାରିବ ନାହିଁ । କର୍ମରତ ଜଗୁଆଳିମାନେ କେମିତି ହାଇମାରି ଢୁଳଉଛନ୍ତି ଦେଖ, ଫାଟକକୁ ଆଉଜି କରି ଏବଂ ଦିନ ଦି'ପହରରେ । ଏବଂ ତୋଫା ରାତି ଆକାଶର ତାରାମାନଙ୍କ ତଳେ କେତେ ଖୁସିଗପ ଚାଲିଛି ଦେଖିପାର, ହୁକ୍କା ସେବନ ସାଙ୍ଗକୁ । ମଧ୍ୟ ମନେ ଥିବ କେମିତି ଜଣେ ମିଶର ରମଣୀ ତିଆରିଲେ ବନ୍ଧୁପତ୍ନୀଙ୍କୁ, ନିର୍ଦ୍ଦିଷ୍ଟ ସ୍ଥାନରେ ହାତ ପକେଇ, ଯେ ତାଙ୍କୁ ପିଠିରୁ ଚେନାଏ ଦିଶିଯାଉଛି ବାଟ ଚାଲିଲା ବେଳେ, ଯାହାକି ଘୋର ଲଜ୍ଜାର ବିଷୟ । ତଥାପି ଆଧୁନିକ କାଏରୋ ଏକ ବାସ୍ତବ ସତ୍ୟ, ଆମ ନୂଆଦିଲ୍ଲୀ ପରି । ଯାହାକି

ପୁରୁଣା କାଏରୋକୁ ଲାଗିକରି ଅଛି, ପୁରୁଣା ଦିଲ୍ଲୀ ପରି । ଏବଂ କେବଳ ଭୌଗଳିକ ଅର୍ଥରେ ନୁହେଁ ।

ବର୍ତ୍ତମାନ କିଛି କହୁଛି ଶୁଣନ୍ତୁ ମୋ ସାହିତ୍ୟ ବିଷୟରେ, ଭାରତକୁ ଫେରିଯିବା ପୂର୍ବରୁ । ଯେ ସୁଖ କରିବା ସାଙ୍ଗରେ ମୁଁ କିଭଳି ସାହିତ୍ୟ ଲେଖିଛି ଆମେରିକାରେ ରହିଲା ବେଳେ । ସତକଥା କହିବାକୁ ଗଲେ ମୁଁ ବିଶେଷ କିଛି ଲେଖିନାହିଁ । କିନ୍ତୁ ଆମେରିକା ଅନୁଭୂତି ମୋର ଏକାଧିକ ଗଳ୍ପର ମୂଳାଧାର ଥିଲା ଯଦିଓ ସବୁଗୁଡ଼ିକ ସେଠି ଥିଲାବେଳେ ଲେଖା ହୋଇ ନଥିଲା । ତାହା ଏହି ପ୍ରକାର :-

''କାନ୍ଦୁରୀ'' । ମୋର ବାଳିକା ନାୟିକା ଗୀତାର ଆମେରିକା ଅନୁଭୂତିକୁ ନେଇ ରଚିତ । ତାର ସୂଚନା ମୁଁ ତ ଦେଇସାରିଛି ପୂର୍ବରୁ ।

''ଆମରି ଭିତରୁ ଜଣେ ।'' ଏହାର ସ୍ୱରଚିତ ଇଂରାଜି ଅନୁବାଦର ଶୀର୍ଷକ "Death of an Indian" । ଏଇ ଗଳ୍ପ ବିଷୟରେ କିଛି କହିବା ପୂର୍ବରୁ ଚିହ୍ନେଇବାକୁ ପଡ଼ିବ ଏଇ ''ଆମେ'' ମାନଙ୍କୁ । ଅବଶ୍ୟ ଭାରତୀୟ ଏମାନେ, କିନ୍ତୁ ବିଶିଷ୍ଟ ଧରଣର ଭାରତୀୟ । ଛାତ୍ର ନୁହଁନ୍ତି, ବ୍ୟବସାୟୀ ନୁହଁନ୍ତି, ଅଥବା ଯେଉଁମାନେ ଏଠିକି ଆସିଛନ୍ତି ସବୁଦିନ ପାଇଁ ରହିବା ଲାଗି । ଏମାନେ ହେଉଛନ୍ତି ସରକାରୀ ଚାକିରୀଆ ଭାରତୀୟ, ଯେଉଁମାନେ ନିର୍ଦ୍ଦିଷ୍ଟ କେତୋଟି ବର୍ଷ ପରେ ଫେରିଯିବେ ଭାରତକୁ । ତେଣୁ ଏଇ ଦେବଦତ୍ତ ସୁଯୋଗର ଫାଇଦା ଉଠେଇବା ହେଉଛି 'ଆମର' ପ୍ରାଥମିକ କର୍ତ୍ତବ୍ୟ, ଅଫିସ କାମ ଛଡ଼ା । ଏବଂ ଫାଇଦାର ପ୍ରଥମ କଥା ହେଲା ଏଇ ଯେ ଆମକୁ ସୁଲଭ ମୂଲ୍ୟରେ ଗୋଟେଇ ନେବାକୁ ପଡ଼ିବ, ଏଠିକାର ନାନାଦି ଫରେନ୍ ଏବଂ ଦୁର୍ଲଭ ବସ୍ତୁ, ଯାହା ଭାରତରେ ସ୍ୱପ୍ନ । ତେଣୁ ସଦାବେଳେ ଯେଉଁ ସେଲ୍ ଲାଗି ରହିଥାଏ ଏଠିକା ଦୋକାନ ବଜାର ଓ ସୁପର୍ ମାର୍କେଟରେ, ପ୍ରଥମେ ତାରି ସବିଶେଷ ଚର୍ଚ୍ଚା କରିବାକୁ ପଡ଼େ, ଆମେ ଯେତେବେଳେ ଭେଟୁ ପରସ୍ପରକୁ । ଯାହାହେଉ, ଜଣେ ଚାଲିଗଲା ଆମ ଭିତରୁ । ଦୁଃଖର ବିଷୟ । ଆମେ ଯଥାବିଧି ଶୋକ ମନେଇଥିଲୁ ତା ପାଇଁ । ଖୋଦ୍ ଆମ୍ବାସଡ଼ର ଆସିଥିଲେ ଶୋକସଭାକୁ, ଏବଂ ଗୀତା ପଢ଼ା ହୋଇଥିଲା । ତାର ତରୁଣୀ ବିଧବା ମଧ୍ୟ ତାର ଶୋକ ବ୍ୟକ୍ତ କରିଥିଲା ଉଚିତ ଭାବରେ । ସେଇଠୁ ଗୋଟାଏ ପ୍ରଶ୍ନ ଉଠିଲା - ଏଇ ଅଳ୍ପବୟସୀ ବିଧବାକୁ କଣ ବାଧ୍ୟ ହୋଇ ଫେରିଯିବାକୁ ପଡ଼ିବ ଇଣ୍ଡିଆକୁ ? ଏଠିକା ସୁଖର ସଂଧାନ ଓ ପ୍ରତିଶ୍ରୁତିକୁ ଛାଡ଼ିଛୁଡ଼ି ଦେଇ ? ବୁଝାପଡ଼ିଲା ଯେ ବିଚାରୀ ଚାହୁଁଛି ଏଠି ରହିଯିବ ବୋଲି, ତା ପିଲାର ଭବିଷ୍ୟତ ଦୃଷ୍ଟିରୁ । ଆଚ୍ଛା, ଏଥିରେ ଏତେ ଆଶ୍ଚର୍ଯ୍ୟ ହେବାର କଣ ଅଛି ?

ଏଇ ଗଳ୍ପଟିର ଇଂରାଜୀ ରୂପାନ୍ତର ମୋର ପ୍ରଥମ ଇଂରାଜି ସଂକଳନ "Death of an Indian"ରେ ପ୍ରକାଶିତ ହୋଇଛି । ସାହିତ୍ୟ ଏକାଡ଼େମୀ ଦ୍ୱାରା ପ୍ରକାଶିତ

"Contemporary Indian short stories, Vol-III"ରେ ମଧ୍ୟ ସ୍ଥାନିତ ହୋଇଛି । ଏବଂ ଉଲ୍ଲେଖଯୋଗ୍ୟ ଯେ ଏହି ଗଳ୍ପଟି "Our favourite Indian Stories by Khuswant Singh & Neelam Kumar" ନାମକ ସଂକଳନରେ ସ୍ଥାନିତ ହୋଇଛି । ଏବଂ ୨୦୦୧ ମସିହାରେ ମୁମ୍ବାଇର "jaico Books" ଦ୍ୱାରା ପ୍ରକାଶ ପାଇଛି । ହଁ ମରାଠୀ ସାହିତ୍ୟ ପତ୍ରିକା ''ସଂକ୍ରମଣ''ର ୨୦୦୧ର ଦିଆଲୀ ସଂଖ୍ୟାରେ ମଧ୍ୟ ଏହି ଗଳ୍ପର ମରାଠୀ ଅନୁବାଦ ପ୍ରକାଶିତ ହୋଇଛି । ଅନୁବାଦିକା ମୁମ୍ବାଇ ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ଅଧ୍ୟାପିକା ଶ୍ରୀମତୀ ସୁଧା ଯୋଶୀ ।

''ଭଗବାନ୍‌ଙ୍କ ଛବି ।'' ଆମେ ସେଠି ଥିଲାବେଳେ ଆମେରିକାର ଗୋଟିଏ ନିଗ୍ରୋ ଚର୍ଚ୍ଚରେ ବୋମା ପଡ଼ିଥିଲା । ତଦ୍ୱାରା ବାରତେରବର୍ଷର ଚାରୋଟି ନିଗ୍ରୋ ଝିଅ ନିହତ ହୋଇଥିଲେ । ମଧ୍ୟ ଯିଶୁଖ୍ରୀଷ୍ଟଙ୍କର ବିଷାଦଗ୍ରସ୍ତ ମୁହଁ ଭାଂଗି ରୂରମାର୍ ହୋଇଯାଇଥିଲା । ଗଳ୍ପଟି ଏଇ ସତ ଘଟଣା ଉପରେ ଆଧାରିତ । ଗଳ୍ପରେ ଥିବା ସୁଧୀବୃଂଦ (ସହଜେ ସମସ୍ତେ ଗୋରା), ଦୁଃଖ କରୁଥିଲେ ଏଇ ଘଟଣାଟିକୁ ନେଇ । ଆଃ, ବିଚରା ଯୀଶୁଖ୍ରୀଷ୍ଟଙ୍କର ମୁହଁ ବି ଭାଂଗିରୁଜି ଯାଇଛି ? ସତେ ଭଗବାନଙ୍କର ମହାଦୁଃଖ ଏଇ କଳାଲୋକମାନଙ୍କ ପାଇଁ । କାରଣ ଏମାନେ ଭଲ ହୋଇପାରୁନାହାନ୍ତି ଆଜିଯାଏଁ । ଲେଖକର ମନେ ପଡୁଛି ଏହି ସଂକ୍ରାନ୍ତରେ, ଭାରତରେ ଥିବା ତାର ଜଣେ ଧର୍ମାତ୍ମା ଆତ୍ମୀୟଙ୍କ ମୁଖନିଃସୃତ ଦୁଃଖ - ଆଃ ! ମୂଲିଆମାନେ ଏତେ ମିଛ କୁହନ୍ତି କାହିଁକି ? ଉହ୍ୟ ରହିଗଲା ଯେ କଳାନିଗ୍ରୋ ହୁଅନ୍ତୁ କି ମଳିମୁଣ୍ଡିଆ ମୂଲିଆ, ସେମାନେ ଅବଶ୍ୟ ଭଗବାନଙ୍କ ସଂତାନ ଏବଂ ଭଗବାନ ତାଙ୍କ ପାଇଁ କଷ୍ଟ ପାଉଛନ୍ତି, କିନ୍ତୁ ସେ ତାଙ୍କୁ ଉଦ୍ଧାର କରିପାରୁ ନାହାନ୍ତି । ତାଙ୍କର ଖରାପ ଗୁଣ ଯୋଗୁଁ । ଏହି ବୁଦ୍ଧିବିଚାର, ଯେଉଁଥିରେ ଭଗବାନଙ୍କୁ ମଧ୍ୟ ସାମିଲ୍ କରାଯାଇଛି, ଯାକୁ କଣ ମହାନୁଭବ ଉଚ୍ଚମନ୍ୟତା ବୋଲି କହିବ ନା ଆତ୍ମଶଠତା ? ଏବଂ ଏଇ କଣ ସତେ ଆମର ବୁଦ୍ଧିଜୀବୀ ତଥା ଭଲମଣିଷ ମଧ୍ୟବିତ୍ତର ମାନସିକତା ? ଏଇ ହେଲା ଲେଖକର ପ୍ରଶ୍ନବାଚୀ, ତାର ପ୍ରିୟ ପାଠକପାଠିକାମାନଙ୍କ ପାଇଁ ।

''ଚୁମ୍ବନ ।'' ଏଇ ଗଳ୍ପରେ ଥିବା ଗୋଟିଏ ପ୍ରଶ୍ନୋତ୍ତର ଉଦ୍ଧାର କଲେ ଭଲ ହେବ ପରା ।

ପ୍ରଶ୍ନ : ବିଦେଶରେ, ମାନେ ଏଇ ପଶ୍ଚିମ ଦେଶରେ, ଚୁମ୍ବନଟା କି ଜିନିଷ ? ଦିନ ନାହିଁ, ରାତି ନାହିଁ, ରାସ୍ତାଘାଟ ପୋଖରୀପଡ଼ିଆ ପର୍ବତ ସମୁଦ୍ର, ଯୁଆଡ଼େ ଦେଖ ତାର ଯେଉଁ ଦୃଶ୍ୟ ତମ ଆଖିରେ ପଡ଼ିବ, ସେସବୁ କଣ ଦେଖିବାକୁ ଭଲ ଲାଗେ ନା ଖରାପ ଲାଗେ ?

ଉତ୍ତର : ଚୁମ୍ବନ ପୁଣି ଖରାପ ଲାଗିବ କାହିଁକି ? ଏ ଥିଂଗ୍ ଅଫ୍ ବିଉଟି ....

ଏଇ ବାଦାନୁବାଦ ହେଉଛି ଗଳ୍ପର ମୂଳକଥା । ଯେଉଁଥିରେ ରହିଛି ଲେଖକର କିଛି ଆତ୍ମ ଅନୁଭୂତି । ରିଓର ଗୋଟିଏ ପାର୍କରେ ସେଇ ସମବେତ ଚୁମ୍ବନର ଦୃଶ୍ୟ, ଫୁଲଗୁଡ଼ିକ

ଏକାଠି ଫୁଟି ଉଠିଲା ପରି । ମଧ୍ୟ ମେକ୍ସିକୋ ସିଟିରେ ଦେଖିଥିବା ବୁଲ୍ ଫାଇଟ୍, ପଶୁଟାକୁ ତିଳତିଳ କରି ମାରି ଦେବାର ହିଂସ୍ର ଉଲ୍ଲାସ । ଯାହା କୁଆଡ଼େ ସେକ୍ସ ଉଲ୍ଲାସର ପାଖାପାଖି । ସେଣିକି ପଢ଼ିବା ହେଉ ।

"ମୋନାଲିସା ।" ରେନାସାଁର ସୁପ୍ରସିଦ୍ଧ ଶିଳ୍ପୀ ଲିଓନାର୍ଡ୍ରୋ ଡା ଭିଂଚୀ (Leonardo Da Vinci)ଙ୍କର ପୃଥିବୀବିଖ୍ୟାତ ଛବିଟି - ନକଲ କରା ଛବି ନୁହେଁ, ମୌଳିକ ଛବି ଗୋଟିକ - ୱାଶିଂଗ୍‌ଟନ୍‌କୁ ଅଣା ହୋଇଥିଲା ଆମେ ସେଠି ଥିଲାବେଳେ । ସେଇ ମହିମାନ୍ୱିତା ଓ ସସ୍ମିତା ନାରୀ ଜଣକ କିଭଳି ଚହଳ ସୃଷ୍ଟି କରିଥିଲେ ଏଇ ସହରରେ, ବିଶେଷତଃ ଆମ ଭାରତୀୟ ଚାକିରୀଆମାନଙ୍କ ମହଲରେ, ହାକିମମାନଙ୍କ ଠାରୁ ଆରମ୍ଭ କରି କିରାଣୀ ବର୍ଗୀୟ ବାବୁମାନଙ୍କ ପରିବାରରେ, ତାରି କୌତୂହଳପୂର୍ଣ୍ଣ ସତମିଛକୁ ନେଇ ଗଢ଼ା ହୋଇଛି ଏଇ ଗପଟି ।

"ଘରବାହୁଡ଼ା" । ଗଳ୍ପଟିର ଶୀର୍ଷକ ହିଁ କହି ଦେଉଛି ଏଇ ଗପରେ କଣ ଅଛି । ଅଛି ୱାଶିଂଗ୍‌ଟନ୍ ଡି.ସି. ପରେ ଘରକୁ ଫେରି ଆସିବାର ଅନୁଭୂତି । ସେଇ ଘରବାହୁଡ଼ାର ମହାବ୍ୟତିପାତତୁଲ୍ୟ ଅନୁଭୂତି (Traumatic experience) କାଳକ୍ରମେ ଉଣା ହୋଇଗଲା ଅବଶ୍ୟ, କିନ୍ତୁ ତାର ଶେଷପ୍ରଶ୍ନ କଣ କାଳକ୍ରମେ ଉଭେଇ ଯାଇପାରିଛି ? ଯେ ଦେଶପ୍ରୀତିକୁ ତରାଜୁରେ ନ ଥୋଇ ଯଦି ତମକୁ ଏଦେଶ ଓ ସେଦେଶ ଭିତରେ ଗୋଟିକୁ ବାଛିବାକୁ ପଡ଼େ, ତାହାହେଲେ ତମର କଣ କରିବା କଥା । କଥା ହେଉଛି ମୁଁ ସିନା ଦମ୍ଭରେ କହିପାରିଲି ନିଜକୁ ଯେ ମୁଁ ମୋର ଏଇ ଅଂଧାରୁଆ ଜନନୀଜଠରକୁ ଡରିବି ନାହିଁ, ଡରିବି ନାହିଁ ଆଉ ତାକୁ ଭଲ ପାଇବି, ଆଜି ମୋର ଯେଉଁ ତିନୋଟି ନାତିନାତୁଣୀ ସେଠି ପାଠ ପଢୁଛନ୍ତି ଅଥବା ବିଭିନ୍ନ ମନଲାଖି ଓ ଲାଭଜନକ ଧନ୍ଦା କରୁଛନ୍ତି ସେମାନେ କଣ ସେହି ପ୍ରକାର ଦାମ୍ଭିକ ପ୍ରତିଶ୍ରୁତି ଦେଇ ପାରିବେ ନିଜକୁ ? କେଜାଣି ।

ଏହି ସମସ୍ତ ଗଳ୍ପ ମୋର ଦ୍ୱିତୀୟ ଗଳ୍ପ ସଂକଳନ 'ଘର ବାହୁଡ଼ା'ରେ ସଂଗୃହୀତ ହୋଇଛି । କେବଳ 'ମୋନାଲିସା' ଛଡ଼ା । କେଜାଣି କେମିତି ସେଇଟି ଅପ୍ରକାଶିତ ହୋଇ ରହି ଯାଇଥିଲା। ତାହା ଏବେ ମୋର ସପ୍ତଦଶ ଗଳ୍ପସଂକଳନ 'ଶେଷଗଳ୍ପ'ରେ ସ୍ଥାନିତ ହୋଇଛି ।

ୱାଶିଂଗ୍‌ଟନ୍ ଡି.ସି. ପରେ ଦକ୍ଷିଣ କଲିକତାର ଗରିଆ ହାଟ ପାଖରେ ଥିବା ଗୋଟିଏ ସରୁ ରାସ୍ତା, ତା ନାଆଁ କାଂକୁଲିଆ ରୋଡ୍ । ସେଇ ରାସ୍ତାରୁ ବାହାରିଥିବା ଗୋଟିଏ ଗଳିରେ ଭଡ଼ା ଘରଟିଏ ମିଳିଲା ଆମକୁ, ସରକାରୀ କ୍ୱାଟର୍ସ ମିଳିବା ଯାଏଁ । ଘରମାଲିକ ଥାଆନ୍ତି ଉପରମହଲାରେ, ତେବେ ଦାଣ୍ଡଘରକୁ ଛାଡ଼ି ଯୋଡ଼ିଏ ଛୋଟିଆ ରୁମ୍ । କିନ୍ତୁ ଆଉ କେତେ ଖୋଜି ବୁଲିବ ମଣିଷ, ଠିକଣା ଘରଟିଏ ମିଳିବା ପାଇଁ ? ତାଛଡ଼ା ନୂଆ ଅଫିସରୁ ମୋତେ ସାହାଯ୍ୟ କରିବାକୁ ଆସିଥିବା ସହକାରୀ ଜଣକ ମୋତେ ଦମ୍ଭ ଦେଲେ । କହିଲେ, "ସାର୍, ଭାରି ଭଲ ଲୋକ ଏମାନେ, ମୁଁ ଜାଣେ ଏମାନଙ୍କୁ । ଦିନକରେ ନିଜର ହୋଇଯିବେ ।

ତାଙ୍କ ପାଟିରୁ କଥା ନ ସରୁଣୁ ଘରମାଲିକଙ୍କ ସାନଝିଅ ଧାଇଁ ଆସିଲା ଉପରମହଲାରୁ ବହି ଖଣ୍ଡେ ଧରି, ଏବଂ ପଚାରୁଛି ମୋର ସ୍ତ୍ରୀ ତଥା ତାର କାକୀମାଙ୍କୁ ଗୋଟାଏ ଜରୁରୀ ପ୍ରଶ୍ନ - କାକୀମା, ଆପଣ କଣ ସେଠି ଶାଢ଼ୀ ପିନ୍ଧୁଥିଲେ ନା ଗାଉନ୍, ଏଇ ଛବିରେ ଥିବା ମେମ୍‌ସାହେବଙ୍କ ପରି ? ସେଇଠୁଁ ମୁଁ ବୁଝିଲି ସହକାରୀ ବନ୍ଧୁ ଜଣକ ଯାହା କହୁଥିଲେ, ତାର ତାତ୍ପର୍ଯ୍ୟ କଅଣ ।

ଆମେ ସେଠି ପହଞ୍ଚିଲା ବେଳକୁ ବର୍ଷାଋତୁ ଆସିଗଲାଣି । ତେଣୁ ଆମ କାଂକୁଲିଆ ରୋଡ୍‌ରେ ଆଣ୍ଠୁଏ ପାଣି । କିନ୍ତୁ ସହକାରୀ ଜଣକ କହିଲେ, କିଛି ଚିନ୍ତା ନାହିଁ ସାର୍ । ମୁଁ ତ ପାଖରେ ଥାଏ ମୁଁ ଆସି ନେଇଯିବି ଆପଣଙ୍କୁ ସବୁଦିନେ, ବସ୍‌ଷ୍ଟାଣ୍ଡ ଯାଏ । ମୋର କହିବାକୁ ମନ ହେଲା - ଘର ମାଲିକଙ୍କ କଥା ଛାଡ଼, ଆପଣଙ୍କଠାରୁ ଯେଉଁ ଉପକାର ତଥା ଆତ୍ମୀୟତା ମିଳୁଛି ମୋତେ, ତା ମୁଁ ଆଉ କାହାଠୁଁ ପାଇଥାଆନ୍ତି ?

କିନ୍ତୁ ଦୁଃଖର ବିଷୟ ଅଫିସ୍‌ରେ ମଧ୍ୟ - ବେଶ୍ ବଡ଼ ଅଫିସ୍‌ଟିଏ - ମୁଁ ଏଇ ଆତ୍ମୀୟତାର ଆକ୍ରମଣରୁ ରକ୍ଷା ପାଇପାରିଲି ନାହିଁ । ଅର୍ଥାତ୍ ମୁଁ ତାର ପ୍ରତିରୋଧ କରିବାର ବାଟ ପାଇଲି ନାହିଁ । ଯେଉଁ ଆତ୍ମୀୟତା ମୋତେ ଦେଖିଲାକ୍ଷଣି 'ସାର୍, କେମନ୍ ଆଛେନ୍ ?' ବୋଲି କୁହେ ହସି ହସି, ତା' ସାଙ୍ଗକୁ ନମସ୍କାରଟିଏ ମିଳୁ ବା ନ ମିଳୁ । ହେଲେ ମୋର ବୁଝିବାକୁ ଡେରି ହୁଏ ନାହିଁ ଯେ ଏଇ ଲୋକଟି ଏତେବେଳକେ ଆସୁଛି ଅଫିସ୍‌କୁ, ଦିନ ଏଗାରଟା ବେଳକୁ । ସତେକି ସେଥିରେ କିଛି ଯାଏ ଆସେ ନାହିଁ । ସମୟକୁ ମାପି କରି ଚଳିବା ଅନ୍ୟତମ ବୁର୍ଜୁଆପଣ ଛଡ଼ା ଆଉ କିଛି ନୁହେଁ । କିନ୍ତୁ ଅମୁକ କାମରେ ଏତେ ଡ଼େରି ହେଲାଣି, କିମ୍ବା ଏଭଳି ଗୋଟିଏ ବଡ଼ ଭୁଲ୍ ହୋଇଛି ବୋଲି କହିଲେ ମଧ୍ୟ ମୋତେ ଶୁଣିବାକୁ ମିଳେ ଏକପ୍ରକାର ସାନ୍ତ୍ୱନାବାଣୀ, ମୋତେ ହିଁ ବୋଧ ଦେଲା ପରି । କିଛି ଚିନ୍ତା କରନ୍ତୁ ନାହିଁ ସାର୍, ସବୁ ଠିକ୍ ହୋଇଯିବ । ମୋଟ ଉପରେ ଏଇ ଅଫିସ୍‌ର ଅଡ଼ିଟ୍ କାମ ନିକୃଷ୍ଟ ଧରଣର ଥିଲା ବୋଲି କହିବି ନାହିଁ, କିନ୍ତୁ ଏହି ପ୍ରକାର ମନୋଭାବ ସାଙ୍ଗରେ ମୁଁ ସାଲିସ୍ କରିପାରେ ନାହିଁ । ହଁ, ବୁଝୁଛି ଇଏ ମାଡ୍ରାସ୍ କି ଅନ୍ୟ କେଉଁ ଜାଗା ନୁହେଁ, ଇଏ ହେଉଛି କଲିକତା । ଏବଂ ମୁଁ ଯାହା ଦେଖୁଛି ଏଠି, ଇଏ ହେଉଛି ଏଠିକା ଅଫିସ୍‌ମାନଙ୍କର ପରମ୍ପରା । ତେଣୁ ମୁଁ ଯଦି କୌଣସି ଅନୁଶାସନ ଜାରି କରି ବସେ, ତାହେଲେ ସେମାନେ ତାଙ୍କ ଚିରାଚରିତ ଏବଂ ନିୟମିତ 'ଇନ୍‌କିଲାବ୍ ଜିଂଦାବାଦ୍‌ର' ଧ୍ୱନି ଖାଲି ଡିପାର୍ଟମେଣ୍ଟ୍ ଓ କର୍ତ୍ତୃପକ୍ଷ ନୁହେଁ, ପ୍ରତ୍ୟକ୍ଷରେ ମୋରି ଉପରକୁ ଛାଟିବେ । ଏବଂ ତାଙ୍କୁ ସହଜେ ଶାସ୍ତି ଦେଇ ହେବ ନାହିଁ । ତଥାପି ...

ତଥାପି କଅଣ ? ହଁ ମୁଁ ଅଳ୍ପବହୁତ କିଛି ଆରମ୍ଭ କରି ଦେଇଥିଲି, କାଗଜପତ୍ର ଜରିଆରେ । କିନ୍ତୁ ତାହା ଯଥେଷ୍ଟ ନୁହେଁ । ଏବଂ ତାକୁ ପ୍ରକୃତରେ ଖଟେଇ ପାରିଥିଲି ବୋଲି କହି ହେବ ନାହିଁ । ନିଜକୁ କହୁଥିଲି, ହବ ହବ, ଆଉ କିଛି ଦିନ ଯାଉ ...

ଆଶା କରୁଛି ମୁଁ ସଫଳ ହୋଇଥାଆନ୍ତି । କିନ୍ତୁ ତା'ପୂର୍ବରୁ ଗୋଟିଏ ଘଟଣା ଘଟିଲା ଯେଉଁଥିରେ ମୋତେ ଏଇ ଅଫିସ୍‌ମାଲିକଗଣରୁ ଓହରି ଯାଇ, ଏକ ଭିନ୍ନ ଧରଣର ଚ୍ୟାଲେଂଜ୍ ସ୍ୱୀକାର କରିବାକୁ ପଡ଼ିଲା । ବର୍ଷେ ନ ପୂରୁଣୁ ମୋତେ ପଚରାଗଲା ମୁଁ ଡ଼େପୁଟେସନ୍‌ରେ ଯିବି କି ନାହିଁ ଗୋଟାଏ ତଥାକଥିତ ମାରାତ୍ମକ ଜାଗାକୁ । ତା ନାଆଁ କ୍ୟାଲ୍‌କାଟା କରୋପରେସନ୍ । ଲୋକ ମୁଖରେ ଚୋର୍‌ପୋରେସନ୍ । କିନ୍ତୁ ମୋର ମନେ ହେଲା ଯେ ଏଇଭଳି ଗୋଟାଏ ଚ୍ୟାଲେଂଜ୍ ଦରକାର ଥିଲା ମୋ ପାଇଁ । ନହେଲେ ମୁଁ ବୋଧହୁଏ ମାଣ୍ଡେଇ ଯାଇଥାଆନ୍ତି । କିନ୍ତୁ ନିଷ୍କ୍ରିୟତା ଚଳିବ ନାହିଁ ଏଠି । ମୋତେ ନିଜକୁ ଜାହିର୍ କରିବାକୁ ହେବ । ଯେଉଁଥିପାଇଁ ମୋତେ ଧରା ହୋଇ ଅଣା ହୋଇଛି ଅଡ଼ିଟ୍ ଡିପାର୍ଟମେଣ୍ଟରୁ । ଆଉ କୁଆଡ଼େ ବାଛି ବାଛି ମୋତେ ହିଁ ବଛା ହୋଇଛି ଏଇ ଗୁରୁ ଦାୟିତ୍ୱ ତୁଲେଇବା ପାଇଁ । ଓକେ ଥ୍ୟାଂକ୍‌ସ୍ । ମୁଁ ପାରିବି ।

୧୯୬୫ ରୁ ୧୯୬୯, ଦୀର୍ଘ ଚାରିବର୍ଷ ମୁଁ ରହିଲି କଲିକତା କର୍ପୋରେସନ୍‌ର ଲାଲ୍‌ବାଡ଼ିରେ, ତାଙ୍କର ଚିଫ୍ ଆକାଉଣ୍ଟାଣ୍ଟ୍ ଆଣ୍ଡ ଫାଇନାନ୍ସ୍ ଅଫିସର୍ ପଦବୀରେ । ମୋ କାମ ହେଲା ତାଙ୍କ ହିସାବଖାତାରେ ଶେଷ ଦସ୍ତଖତ୍ ମାରିବା ଏବଂ କର୍ପୋରେସନ୍‌ର ମୁଖ୍ୟ କାର୍ଯ୍ୟକର୍ତ୍ତାମାନଙ୍କୁ ବିଶେଷତଃ ସର୍ବୋଚ୍ଚ ଅଧିକାରୀ କମିସନର୍ ମହୋଦୟଙ୍କୁ ସମୁଚିତ ଆର୍ଥିକ ପରାମର୍ଶ ଦେବା । ଇଏ କୋଉ ଅପୂରୁବ କାମ, ଯାହା ଜଣା ନାହିଁ ମୋତେ ? କିନ୍ତୁ ଯଥାଶୀଘ୍ର ମୋତେ ବୁଝିବାକୁ ପଡ଼ିଲା ଯେ ମୋତେ ପ୍ରକୃତରେ ଜଣା ନାହିଁ । କାରଣ ଏଠି ନିରୋଳାରେ ଭାବିଚିନ୍ତି ମତାମତ ଦେଇ ହେବ ନାହିଁ କୌଣସି ପ୍ରସ୍ତାବ ଉପରେ । ମନେ ରଖିବାକୁ ହେବ ଯେ ଏଇ ପ୍ରସ୍ତାବର ଅନୁମୋଦନ ସାଧାରଣତଃ ମୋର ସୁପାରିଶ ଉପରେ ନିର୍ଭର କରେ । ଏବଂ ଏଇ ଅନୁମୋଦନ ବିନା ସହରର କେଉଁ ଗୋଟିଏ ଗଳିରେ ଲିଭି ଯାଇଥିବା ଆଲୁଅ ଜଳିବ ନାହିଁ, କେଉଁ ଗୋଟିଏ ରାସ୍ତା ମରାମତି ହେବ ନାହିଁ ଏବଂ ପୁଣି ଗୋଟିଏ ଗର୍ତ୍ତରେ ଗଳି ପଡ଼ିବ କେଉଁ ନିର୍ବୋଧ ପିଲା କିମ୍ବା ବୁଢ଼ା, ଇତ୍ୟାଦି । ଯେଉଁ ଦୁଃଖଦ କାହାଣୀର ବର୍ଣ୍ଣନା କରୁଥିଲେ ସେଇ ୱାର୍ଡ଼ର କାଉନ୍‌ସିଲର୍ ହାଲ୍‌ଦାର୍ ମହାଶୟ । କିନ୍ତୁ ମନେ ନାହିଁ ବିରୋଧୀ ଦଳର କାଉନ୍‌ସିଲର୍ କୁଣ୍ଡୁ ମହୋଦୟ ଯାହା କହୁଥିଲେ ମୋତେ ସେଦିନ ରାଗ ଓ ଦୁଃଖରେ ଜର୍ଜରିତ ହୋଇ ? ଯେ ସେଠିକାର ରାସ୍ତାରେ ଆଉ ଚାଲି ହେଉ ନାହିଁ, ସେଠିକାର ପିଇବା ପାଣି ନର୍ଦ୍ଦମା ପାଣି ଠାରୁ ଭିନ୍ନ ନୁହେଁ, ଏବଂ ସବୁ ଦୁର୍ଗତିର ମୂଳାଧାର ହେଉଛି ଏଇ ପେଟୁଆ ସରକାର ? ହେଲେ ପ୍ରଶ୍ନ ହେଉଛି ଯେ ମୋର ସୀମିତ ସଂବଳ ଦି' ଆଡ଼କୁ ପାଇବ ନାହିଁ । ମଧ୍ୟ ଦି' ଦଳର ତଥା ସ୍ୱାଧିନ ବୋଲାଉଥିବା ଆହୁରି କେତେ କାଉନ୍‌ସିଲର୍ ଅଛନ୍ତି ଯାହାଙ୍କ ଦାବୀ ଓ ଗୁହାରି କିଛି କମ୍ ଓଜନିଆ ନୁହେଁ । କାହାକୁ ଅର୍ଥାତ୍ କେଉଁ ଅଂଚଳକୁ ବେଶି ଅନୁଗୃହୀତ କରିବ ଫାଇନାନ୍ସ ଅଫିସର୍ ତା ପରାମର୍ଶ ଦ୍ୱାରା ? ଏହି

ପରିପ୍ରେକ୍ଷୀରେ ମଧ୍ୟ ମନେ ରଖିବାକୁ ହେବ ଯେ କର୍ପୋରେସନ୍‌ର ଆର୍ଥିକ ଅବସ୍ଥା ଅତ୍ୟନ୍ତ ଶୋଚନୀୟ । ରାଜ୍ୟ ସରକାରଙ୍କ ଧାରଣା ଯେ ହେଉଛି ତାର କାରଣ ହେଉଛି ତୃଣମୂଳ ସ୍ତରରେ କାର୍ଯ୍ୟ କରୁଥିବା ଗଣତନ୍ତ୍ର (grassroots democracy)ର କର୍ଦମାକ୍ତ ରାଜନୀତି, ଦୁର୍ନୀତି, ଅବହେଳା ଏବଂ ବେପରୁଆ ଖର୍ଚ୍ଚ । ଯାହାକୁ କମିସନର୍ ସାହେବ ଇଚ୍ଛା କଲେ ରୋକି ଦେଇ ପାରିବେ । ତେଣୁ ଆମେ ବାହାରୁ ଜଣେ ଦକ୍ଷ ଅଫିସର୍‌ଙ୍କୁ ଆଣିଛୁ ତାଙ୍କ ଇଚ୍ଛାଶକ୍ତିକୁ ବଢ଼େଇବା ପାଇଁ । କିନ୍ତୁ ଏଣେ ମେୟର୍ ସାହେବ ମୋତେ ଡାକି କରି କହିଛନ୍ତି, ଆତ୍ମୀୟତାର ଭାବ ଦେଖାଇ, ଯେ ରାଇଟର୍ସ ବିଲ୍‌ଡିଂଗ୍ ବାଲା ବୁଝୁନାହାନ୍ତି ଆମର ଦୁଃଖ କେଉଁଠି । କିନ୍ତୁ ଆପଣ ବୁଝିବେ, କାରଣ ଆପଣ ବାହାରୁ ଆସିଛନ୍ତି ଏବଂ କେଉଁ ଦଳରେ ନାହାନ୍ତି । ବୁଝିବେ ଏବଂ ଚାପ ଦେବେ ସେମାନଙ୍କ ଉପରେ, ଆମର ନ୍ୟାଯ୍ୟ ପାଉଣା ବଢ଼େଇ ଦେବା ଲାଗି ଆମ ହାତକୁ, ଆମେ କେଉଁ ଭିଖ ମାଗୁ ନାହୁଁ, ଇତ୍ୟାଦି । ଶେଷକଥା, ଆପଣ ପାରିବେ । ଇନ୍‌କିଲାବ୍ ଜିଂଦାବାଦ୍‌ର କୁହାଟ ବି କିଛି କମ୍ ନୁହେଁ ଏଠି । ଏବଂ ସେମାନେ ବି ମୋତେ କହି ଚାଲିଛନ୍ତି, ସ୍ୱର ଉଂଚେଇ ଯେ ଆପଣ ପାରିବେ । ଆପଣ ବାହାର ଲୋକ । ପୁଣି ଅଡ଼ିଟ୍ ଡିପାର୍ଟମେଣ୍ଟ୍‌ର ଲୋକ । ତେଣୁ ଆପଣ ଅବଶ୍ୟ ପାରିବେ । ଆମର ଦୁଃଖଦୁର୍ଦ୍ଦଶା ଦୂର କରି ଦେଇପାରିବେ ।

ଆରେ ମୁଁ କଣ କହି ନ ଥିଲି ମୁଁ ପାରିବି ବୋଲି ? ସେଇ କଥାଟାକୁ ଏତେ ଦୋହରେଇ ହେଉଛ କାହିଁକି ? ମୁଁ ମନେ ମନେ ବ୍ୟସ୍ତ ହୋଇ ଉଠେ ଏବଂ ଝରକାବାଟେ ଅନେଇ ରହେ ଦରିଦ୍ର ଓ ଦୟନୀୟ କଲିକତା ନଗରୀର ଦୈନଂଦିନ ଦୃଶ୍ୟ ଏବଂ ଭାବିବସେ ମୋ ଆଗାମୀ ଗପର ପ୍ଲଟ୍ । ଭୁଲିଯାଏ ଯେ ଫ୍ରଏଡ୍ ଠିକ୍ ଏଇଆ କହିଥିଲେ (ଅବଶ୍ୟ ଭୁଲ୍ କହିଥିଲେ) ଯେ କଳାକାରମାନେ ସ୍ୱଭାବତଃ ପଳାୟନବାଦୀ ।

କିନ୍ତୁ ପ୍ରକୃତପକ୍ଷେ ମୁଁ କେତେଦୂର ପାରି ଉଠିଲି, ମୋର ଏଇ ନୂଆ ଦାୟିତ୍ୱ ତୁଲାଇବାରେ ? ମୁଁ ଅନେକ ଚେଷ୍ଟା କରିଛି ଲାଲ୍‌ବାଡ଼ିକୁ ଆସନ୍ନ ଦେଆଲିଆପଣରୁ ବଂଚେଇବା ପାଇଁ । ମଧ୍ୟ ଲଢ଼ିଛି ରାଜ୍ୟ ସରକାରଙ୍କ ସାଙ୍ଗରେ ତାକୁ ତାର ନ୍ୟାଯ୍ୟ ପାଉଣା ଆଣିଦେବା ଲାଗି । ଫାଇଲ୍‌ରେ ଲେଖିଥିବା ମୋର ଟାଣୁଆ ନୋଟ୍‌ସବୁ ମଧ୍ୟ ବେଳେବେଳେ ବାହାରିଛି ଖବରକାଗଜରେ (କିଛି ଗୋପନୀୟ ରହିପାରେ ନାହିଁ ସେଠି) ଯେଉଁଥିରୁ ମନେ ହେବ ଯେ ମୁଁ ଗୋଟାଏ ଉଦ୍ଧାରକର୍ତ୍ତା 'ହିରୋ' ଭାବରେ ଆସିଛି ଏଠିକି । କିନ୍ତୁ ମୁଁ କେତେଦୂର ସଫଳ ହୋଇପାରିଛି ତା ଭାବିବା ବିଷୟ । ଏବଂ ମୋତେ କିଛି ସାଧୁବାଦ ଶୁଣିବା ସାଙ୍ଗକୁ ଯେଉଁ ପ୍ରକାର ନିନ୍ଦା ମଧ୍ୟ ଶୁଣିବାକୁ ମିଳିଛି କର୍ପୋରେସନ୍ ଚେମ୍ବର୍ କିମ୍ବା କମିଟି ମିଟିଂଗ୍‌ରେ, ବିଭିନ୍ନ କାଉନ୍‌ସିଲରମାନଙ୍କ ଠାରୁ, ଯେ ମୁଁ ନିରପେକ୍ଷ ନୁହେଁ ଅବା ମୋର ବୁଝିବା ଶକ୍ତି ନାହିଁ (କାରଣ ମୁଁ ତାଙ୍କ ପ୍ରସ୍ତାବକୁ ଗ୍ରହଣ କରିପାରି ନାହିଁ), ତାକୁ ନେଇ ମୁଁ ଅଳ୍ପବହୁତ

ଅଶାନ୍ତ ହୋଇ ଉଠି ନାହିଁ ବୋଲି କହିଲେ ସତ୍ୟର ଅପଳାପ ହେବ । ତଥାପି ମୁଁ ନିଜକୁ କୁହେ ଯେ ମୋର ଦୁଇବର୍ଷିଆ ମିଆଦ ପୂରିବା ପରେ ମଧ୍ୟ ଆହୁରି ଦୁଇ ବର୍ଷ ରହିବାକୁ ପଡ଼ିଲା, ଉଭୟ ରାଜ୍ୟ ସରକାର ଏବଂ ମେୟର୍ ମହୋଦୟଙ୍କ ଅନୁରୋଧ କ୍ରମେ, ଏହାହିଁ କଣ ମୋର କର୍ମକୁଶଳତାର ସାର୍ଟିଫିକେଟ୍ ବୋଲି ଭାବିବା ଉଚିତ୍ ନୁହେଁ ? ଯାହାହେଉ ୧୯୬୮ରେ ଆକାଉଣ୍ଟାଣ୍ଟ୍ ଜେନେରାଲ୍ ପାହ୍ୟାକୁ ଉନ୍ନୀତ ହେଲା ପରେ ମୁଁ ଅଡ଼ି ବସିଲି ଯେ ମୁଁ ନିଜ ଡିପାର୍ଟମେଣ୍ଟକୁ ଫେରିଯିବାକୁ ଚାହେଁ, ମୋ କେରିଅର୍ ଦୃଷ୍ଟିରୁ । ଏବଂ ତାକୁ ମୋର କର୍ତ୍ତୃପକ୍ଷ ଗଣ ଟାଳି ଦେଇ ପାରିଲେ ନାହିଁ ବେଶିଦିନ ଯାଏଁ । ନ ହେଲେ ହୁଏତ ମୋତେ ଆହୁରି କେତେ ବର୍ଷ ଯାଏଁ ମୋତେ ସେଇ କର୍ପୋରେସନ୍‌ର କର୍ଦ୍ଦମରେ ଘାଣ୍ଟି ହେବାକୁ ପଡ଼ିଥାଆନ୍ତା ।

ହେଲେ ମୁଁ କହି ଆସିଛି ନିଜକୁ, ହୁଏତ ଟିକିଏ ଥଟ୍ଟା କଲା ପରି, ଯେ ଭାରତ ସରକାରଙ୍କ କ୍ଲାସ୍ ଉଆନ୍ ଚାକିରୀ, ବିଶେଷତଃ ଅଡ଼ିଟ୍ ଡିପାର୍ଟମେଣ୍ଟ୍‌ର ସଂଭ୍ରାନ୍ତ ନିରାପଦ ଦୂରତ୍ୱରେ ଥାଇ ମୋତେ ଏହି ପ୍ରକାର ଅଭିଜ୍ଞତା ଆଉ ମିଳିଥାଆନ୍ତା କେଉଁଠି ? ଏଇ ଲୋକସଂପର୍କ ଏବଂ ତୃଣମୂଳ ଗଣତନ୍ତ୍ରର ପ୍ରତ୍ୟକ୍ଷ ଅନୁଭୂତି ?

ଅଫିସ୍‌କାମର ଜଂଜାଳ ସାଙ୍ଗକୁ ମୋର ଘରୋଇ ଜୀବନ ମଧ୍ୟ ବିଶେଷ ସୁଖମୟ ନ ଥିଲା ଏଇ ସମୟରେ । ପିଲାଙ୍କ ପାଠପଢ଼ା ଅର୍ଥାଭାବ ଇତ୍ୟାଦିକୁ ନେଇ ମଥା ଟେକିଥିବା ନାନାଦି ଉଦ୍‌ବେଗକୁ ବଳି ଗୋଟାଏ ମହା ଆଶଙ୍କାମୂଳକ ଉଦ୍‌ବେଗ ଦେଖାହେଲା ମୋ ଜୀବନରେ । ବଡ଼ଝିଅ ହୀନୁର ସ୍ୱାସ୍ଥ୍ୟ । ହଠାତ୍ ଜଣେ ଡାକ୍ତର କହିଲେ ଯେ ତା ହାର୍ଟରେ କିଛି ଗଣ୍ଡଗୋଳ ଅଛି, ତେଣୁ ତାକୁ କେଉଁ ହାର୍ଟ ସ୍ପେଶାଲିଷ୍ଟକୁ ଦେଖାନ୍ତୁ । ଆମେ ତାଙ୍କ କଥା ବିଶ୍ୱାସ କରିପାରିଲୁ ନାହିଁ । କିନ୍ତୁ ସ୍ପେଶାଲିଷ୍ଟ ଡାକ୍ତର କହିଲେ, ସବୁ ପରୀକ୍ଷା ନିରୀକ୍ଷା ପରେ, ଯେ କଥାଟା ସତ । ସାଧାରଣ କାଶସର୍ଦ୍ଦି ଟିକିଏ ବଢ଼ିଯାଇଛି କେତେବେଳେ ଏବଂ ଷ୍ଟ୍ରେପ୍‌ଟୋକୋକାଇ (Streptococci) ବୀଜାଣୁମାନେ ହାର୍ଟ ଭିତରେ ପଶି ତାର ଭାଲ୍‌ଭକୁ ସଂକୁଚିତ କରିଦେଇଛନ୍ତି । ଉପାୟ ? ଡାକ୍ତର କହିଲେ - ୱେଲ୍, ଔଷଧ ଦ୍ୱାରା ବେମାରିକୁ ଆୟତ୍ତରେ ରଖି ହେବ, କିନ୍ତୁ ସ୍ଥାୟୀ ଆରୋଗ୍ୟ ପାଇଁ ଅପରେସନ୍ ଛଡ଼ା ଅନ୍ୟ ଉପାୟ ନାହିଁ । ହେଲେ ଦେଖନ୍ତୁ, ଅପେକ୍ଷା କରନ୍ତୁ । ଏହିଭଳି ଅବସ୍ଥାରେ ମଧ୍ୟ ମଣିଷ ବଂଚି ରହିପାରେ ବୁଢ଼ା ହେବା ଯାଏ ।

ଆମେ କଥାଟାକୁ ଲୁଚେଇ ରଖିଲୁ ଅନେକଦିନ ଯାଏଁ । ବିଶେଷତଃ ଏଇଥିପାଇଁ ଯେ ଝିଅର ବାହା ହେବା ବୟସ ହୋଇଗଲାଣି । ମୋ ବାପାବୋଉ ବ୍ୟସ୍ତ ହୋଇ ଉଠିଲେଣି ତାଙ୍କ ବଡ଼ ନାତୁଣୀକୁ ବାହା ଦେବା ପାଇଁ । ହୀନୁ ଓରଫ୍ ହେନା ବିଶେଷ ପ୍ରିୟ ଥିଲା ବାପାଙ୍କର ଏବଂ ସେ ଚାହୁଁଥିଲେ ତା ଶୁଭପରିଣୟର କର୍ତ୍ତା ହେବା ଲାଗି, ସେ ବେଶି ବୁଢ଼ା

ହୋଇ ଅକର୍ତ୍ତବ୍ୟ ହେବା ପୂର୍ବରୁ । କିନ୍ତୁ ଆମେ ଚୁପ୍ ରହୁଥିଲୁ । ମନେ ହେବ ଆମେ ସଂପୂର୍ଣ୍ଣ ଉଦାସୀନ ସେ ବିଷୟରେ । କେମିତି ଭଲା କହିବୁ ଯେ ତା ହାର୍ଟର ଅବସ୍ଥା ଏହି ପ୍ରକାର, ତେଣୁ ଏଇକ୍ଷଣି ବାହାଘରର ପ୍ରଶ୍ନ ଉଠୁ ନାହିଁ ? ଏଣେ ହୀନୁର ଗ୍ରାଜୁଏଟ୍ ପଢ଼ା ସରିଗଲାଣି । ପାଠପଢ଼ା ନେଇ ଅନେକ ଉତ୍‌ଥାନ ପତନ ସତ୍ତ୍ୱେ ସେ ଇଂରାଜୀରେ ଡିଷ୍ଟିଂକ୍‌ସନ୍ ସହ ବି.ଏ. ପାସ୍ କରିଛି । କିନ୍ତୁ ତା'ପରେ ?

ଏହି ପରିସ୍ଥିତିରେ ଯେତେବେଳେ ଅର୍ଡ଼ର୍ ଆସିଲା, କର୍ପୋରେସନ୍‌କୁ ନମସ୍କାର କରି ଡିପାର୍ଟମେଣ୍ଟକୁ ଫେରି ଆସିବା ପାଇଁ, ମୋର ମନେ ହେଲା ଯେ ଯାହାହେଉ ଅନ୍ତତଃ ଗୋଟାଏ ଆତ୍ମ ଶାନ୍ତି ମିଳିବ ଏଣିକି । ଏବଂ ମୁଁ ଏଭଳି ଗୋଟିଏ ପୋଷ୍ଟକୁ ଗଲି ଯାହାକୁ ଶାନ୍ତିପ୍ରଦ ବୋଲି କହିବାକୁ ହେବ । ଦକ୍ଷିଣ ପୂର୍ବ ରେଲ୍‌ୱେର ଚିଫ୍ ଅଡ଼ିଟର୍ । ଆକାଉଣ୍ଟାଣ୍ଟ୍ ଜେନେରାଲ୍ ପାହ୍ୟାର ପୋଷ୍ଟ, କିନ୍ତୁ ଏ.ଜି. ଅଫିସ ଚଳାଇବାର ଦଡ଼ମଡ଼ି ନାହିଁ । କାରଣ ଇଏ କେବଳ ଗୋଟିଏ ଅଡ଼ିଟ୍ ଅଫିସ୍, ହିସାବପତ୍ର ରଖିବାର ଦାୟିତ୍ୱ ଆଉ କାହାର, ଆମର ନୁହେଁ । ତେଣୁ କାମ କମ୍, ଲୋକଗହଳି ମଧ୍ୟ କମ୍ । ଏହି ପ୍ରକାର ବ୍ୟବସ୍ଥାର କାରଣ ହେଉଛି ଏଇ ଯେ ରେଲ୍‌ୱେ ଏବଂ ଡିଫେନ୍ସ ବିଭାଗର ହିସାବପତ୍ର ସେଇମାନେ ହିଁ ରଖନ୍ତି, ଅଡ଼ିଟର୍ ଜେନେରାଲ୍‌ଙ୍କ ସଂବିଧାନିକ ଦାୟିତ୍ୱ କେବଳ ସେଥିର ସମୀକ୍ଷା କରିବା । କିନ୍ତୁ ସ୍ୱାଧିନତା ଓ ସଂବିଧାନ ପୂର୍ବର ବ୍ୟବସ୍ଥା ଅନୁଯାୟୀ କେନ୍ଦ୍ର ସରକାରଙ୍କ ସିଭିଲ୍ ଡିପାର୍ଟମେଣ୍ଟ୍ ଓ ରାଜ୍ୟ ସରକାରମାନଙ୍କ ଶେଷ ପର୍ଯ୍ୟାୟଭୁକ୍ତ ହିସାବପତ୍ର ମଧ୍ୟ ଆମକୁ ତିଆରି କରିବାକୁ ପଡୁଥିଲା (ଇତିମଧ୍ୟରେ କେନ୍ଦ୍ର ସରକାରଙ୍କର ଏବଂ ଆଂଶିକ ଭାବରେ କେତେକ ରାଜ୍ୟ ସରକାରଙ୍କର ଏଇ ଦାୟିତ୍ୱ ସେମାନେ ନେଇସାରିଲେଣି ନିଜ ଉପରକୁ), ଯାହା ଫଳରେ ବଡ଼ ବଡ଼ ଏ.ଜି. ଅଫିସର୍ କୋଳାହଳ ଏବଂ ଗଣ୍ଡଗୋଳ ଆମକୁ ହିଁ ତୁଲେଇବାକୁ ପଡୁଥିଲା ।

ମୋର ଅଫିସ୍ ଥିଲା ଗାର୍ଡ଼ନ୍ ରିଚ୍‌ରେ ଏବଂ ମୁଁ ମଧ୍ୟ ସେଠି ଥିବା ରେଲ୍‌ୱେ କଲୋନିରେ ରହିପାରିଥାଆନ୍ତି । କିନ୍ତୁ ଦୂର ହେଉ ପଛେ ମୁଁ ଇଚ୍ଛାପୂର୍ବକ ଆଲିପୁର୍‌ରେ ରହିଲି । ସେଣ୍ଟ୍ରାଲ୍ ଗଭର୍ଣ୍ଣମେଣ୍ଟ ଅଫିସର୍‌ସ୍ କ୍ୱାଟର୍ସ, ବେଲ୍‌ଭେଡ଼ିଅର୍ ଇଷ୍ଟେଟ୍‌ରେ । ଯେଉଁଠି ଆମେ ରହିଲୁଣି କେବେଠୁଁ, ଅଳ୍ପ କେତୋଟି ମାସ ପାଇଁ କାଂକୁଲିଆ ରୋଡ୍‌ର ଆତ୍ମୀୟତାର ଅନୁଭବ ଉତାରୁ । ଏଇ କଲୋନିରେ ମନ ଲାଗି ଯାଇଥିଲା ଆମର । କଲିକତାର ଏକ ବିଶେଷ ପରିଷ୍କାର ପରିଚ୍ଛନ୍ନ ଅଂଚଳ ବୋଲି ନୁହେଁ, ଏଠିକାର ସମଭାବାପନ୍ନ ଆତ୍ମୀୟତା ସତେ ଭଲ ଲାଗୁଥିଲା ଆମକୁ । ଏକାଶ୍ରେଣୀର ଲୋକ, ଆମେ ସପରିବାର ମିଳାମିଶା କରୁଥିଲୁ ପରସ୍ପର ସହିତ ଗୋଟିଏ ଗାଆଁରେ ରହିଲା ପରି । ଆପଣା କ୍ଲବ୍, ଭଜନମଣ୍ଡଳୀ, କୋଅପରେଟିଭ୍ ଷ୍ଟୋର୍, ଦୁର୍ଗାପୂଜା, ଦିଆଲୀ ଉତ୍ସବ ଇତ୍ୟାଦିକୁ ନେଇ । ଏଇ ବାତାବରଣ ଯଥେଷ୍ଟ ସାହାଯ୍ୟ କରିଥିଲା ଆମକୁ, ଆମର ବ୍ୟକ୍ତିଗତ ଦୁଃଖକଷ୍ଟକୁ କିଛିଟା ହାଲୁକା କରିବାରେ । ଏଇଠି

ମଧ୍ୟ ଅନ୍ୟାନ୍ୟ ଅନେକ ସରକାରୀ ଚାକିରୀଆ ବନ୍ଧୁଙ୍କ ମଧ୍ୟରେ ଜଣେ ଆମର ବିଶେଷ ଘନିଷ୍ଠ ହୋଇ ଉଠିଲେ ଏବଂ ସେଇ ଘନିଷ୍ଠତା ଏବେ ମଧ୍ୟ ଅଛି । ସେ ହେଉଛନ୍ତି ଶ୍ରୀ ଶ୍ୟାମ ସ୍ୱରୂପ ଜୋହରୀ, ଯେ ଇଣ୍ଡିଆନ୍ ଅର୍ଡ଼ନାନ୍ସ ଫ୍ୟାକ୍ଟରୀ ସର୍ଭିସ୍‌ର ଅଫିସର୍ ଏବଂ ଆଡ଼ିସନାଲ୍ ଡାଇରେକ୍ଟର୍ ଜେନେରାଲ୍ ପଦବୀରେ ରହିଥିଲେ ସେତେବେଳେ । ଏବଂ ସେଇ ବନ୍ଧୁତ୍ୱରୁ ମିଳୁଥିବା ସ୍ନେହସହାନୁଭୂତିର ମୂଲ୍ୟ କିଛି କମ୍ ନ ଥିଲା ଆମ ପାଇଁ ।

ସାଉଥ୍ ଇଷ୍ଟର୍ଣ୍ଣ ରେଲ୍‌ୱେର ଚିଫ୍ ଅଡ଼ିଟର୍ ହିସାବରେ କେତୋଟି ବିଶେଷ ଆନୁଷଂଗିକ ସୁଖ ମଧ୍ୟ ମିଳିଥିଲା ମୋତେ । ମୁଖ୍ୟତଃ ରେଲ୍‌ୱେ ପାସ୍, ଏବଂ ସରକାରୀ ଗସ୍ତରେ ଗଲାବେଳେ ରେଲ୍‌ୱେ ସେଲୁନ୍ । ପ୍ରଶସ୍ତ ସେଲୁନ୍, ଯେଉଁଥିରେ ସମସ୍ତ ପରିବାରକୁ ନେଇଯାଇ ହେବ ତମ ସାଙ୍ଗରେ । ସେଇ ସୁଯୋଗରେ ମୁଁ ସ୍ତ୍ରୀ ପିଲାଙ୍କୁ ଖଡ଼୍‌ଗପୁର, ବିଳାସପୁର, ବିଶାଖାପାଟଣା ଆଦି କେତୋଟି ନୂଆ ଜାଗାକୁ ବୁଲେଇ ନେଇ ଯାଇ ପାରିଥିଲି । ଏବଂ ପାସ୍ ଖଣ୍ଡକ ବେଶ୍ କାମ ଦେଲା ମୋତେ, ବେଶି ଥର କଟକକୁ ଯାଇ ବାପାମାଆଙ୍କ ସାଙ୍ଗରେ ଦେଖା କରିଆସିବା ପାଇଁ ।

କିନ୍ତୁ ଏଇ ସୁଖଭୋଗ ମଧ୍ୟ ତିଷ୍ଠି ରହି ପାରିଲା ନାହିଁ ବେଶି ଦିନ । ବର୍ଷେ ପୂରୁ ନ ପୂରୁଣୁ ମୋତେ ପଚରାଗଲା - ମିଷ୍ଟର୍ ଦାସ୍, ବରୋଦା ଯିବ କି ?

ବରୋଦା ? ଆକାଶରୁ ଖସିଲି । ସେଠି କୋଉ ଅଫିସଟା ଅଛି ଆମର ?

ହଁ । ଡେପୁଟେସନ୍‌ରେ ଯିବ ଇଣ୍ଡିଆନ୍ ଡେଆରୀ କର୍ପୋରେସନ୍‌ର ଫାଇନାନ୍‌ସିଆଲ୍ ଆଡ୍‌ଭାଇସର୍ ହୋଇ । ତାର ବଡ଼କର୍ତ୍ତା କିଏ ଜାଣିଛ ? ଅମୁଲ୍ ଡେଆରୀକୁ ଗଢ଼ିଥିବା ସୁପ୍ରସିଦ୍ଧ ଡଃ ଭର୍ଗିଜ୍ କୁରିଅନ୍ । ଏବେ ଗଢ଼ା ହୋଇଛି ଏଇ ସରକାରୀ କଂପାନୀ ଏବଂ ଆମେ ତମକୁ ହିଁ ବାଛିଛୁ, ମୂଳରୁ ତାର ଆର୍ଥିକ ଅବସ୍ଥାକୁ ମଜବୁତ୍ କରିବା ପାଇଁ । କଣ କହୁଛ ?

ସମୟ ନେଲି ଭାବିବା ପାଇଁ । ପୁଣି ପଳେଇବି ଆଉ କୁଆଡ଼େ, ଡିପାର୍ଟମେଣ୍ଟକୁ ଛାଡ଼ି ଦେଇ ? ଅବଶ୍ୟ ସରକାରୀ କଂପାନୀରେ କାମ କରିବା ଗୋଟାଏ ନୂଆ ଅନୁଭୂତି ହେବ ମୋ ପାଇଁ । ବିଶେଷତଃ ଡକ୍ଟର କୁରିଅନ୍‌ଙ୍କ ପରି ଜଣେ କରିତ୍‌କର୍ମାଙ୍କ ସହକାରୀ ଭାବରେ । କିନ୍ତୁ କଥା ହେଉଛି ମୁଁ କଣ ଆଉ ଟୋକାଟିଏ ହୋଇ ଅଛି, ଯେ ଦୌଡ଼ି ପଳାଉଥିବି ଯୁଆଡ଼େ ବୋଲି ସିଆଡ଼େ ପାଂଚପିଲାଙ୍କୁ ସାଙ୍ଗରେ ଧରି ? ସେମାନେ ବଡ଼ ହେଲେଣି, ବଡ଼ କ୍ଲାସରେ ପଢ଼ିଲେଣି, ଏଣିକି ତାଙ୍କୁ ଡିଷ୍ଟର୍ବ୍ କରିବା ଉଚିତ ହେବ କି ? ଏହିପ୍ରକାର ମିଶ୍ରିତ ପ୍ରତିକ୍ରିୟାକୁ ନେଇ ମୁଁ ଘାଣ୍ଟିହେଲି କିଛି ଦିନ । ବେଳେବେଳେ ମନ ହେଉଥାଏ ଯେ କଲିକତା ଯଥେଷ୍ଟ ହେଲାଣି, ଯଥେଷ୍ଟ ଶାନ୍ତି ମିଳିଲାଣି ମୋତେ, ଆମେରିକାରେ ଏତେ ସୁଖ କରିଥିଲି ବୋଲି, ତେଣୁ ଏଠୁ ଚାଲିଯିବା ହିଁ ଶ୍ରେୟସ୍କର । କିନ୍ତୁ ପ୍ରାକ୍ଟିକାଲ୍ ଦୃଷ୍ଟିରୁ ... । ସେଇଠୁଁ ସମସ୍ତ ଦ୍ୱିଧାକୁ ଦିଶିଗଲା ମୋର ପୁରୁଣା ବଦ୍‌ଗୁଣ ବିଶେଷ । ଯେ ଇଏ ବି ଗୋଟାଏ ଚ୍ୟାଲେଂଜ୍ । ତେଣୁ ମୁଁ ତାକୁ ଗ୍ରହଣ ନ କରିବି କେମିତି ? ଯେସ୍ ସାର୍ । ମୁଁ ପାରିବି । ପୂର୍ଣ୍ଣଚ୍ଛେଦ ।

ଏହି ଭାବରେ ମୁଁ କଲିକତା ଛାଡ଼ିଲି ପ୍ରାୟ ଛଅବର୍ଷ ପରେ । ୧୯୭୦ ମସିହାରେ । ବି.ଏ. ପାସ କରି ସାରିଥିବା ବଡ଼ଝିଅ ଓ ସ୍କୁଲରେ ପଢୁଥିବା ପୁଅ ବରୋଦାକୁ ଆସିଲେ ଆମ ସାଙ୍ଗରେ । ଏବଂ କଲେଜ ପଢ଼ାଳି ଅନ୍ୟ ତିନିଜଣ ରହିଲେ କଲିକତାରେ । ବନ୍ଧୁ ଜୋହରୀ ସାହେବଙ୍କ ଘରେ ଅବା କଲେଜ୍ ହଷ୍ଟେଲ୍‌ରେ, ତାଙ୍କ ତତ୍ତ୍ୱାବଧାନରେ । ଏବଂ ମୁଁ ବାହାରିଲି ପୁଣି ଗୋଟାଏ ଚ୍ୟାଲେଂଜ୍‌ର ମୁକାବିଲା କରିବା ଲାଗି ।

କିନ୍ତୁ ବରୋଦା ଜୀବନ ବିଷୟରେ କିଛି କହିବା ପୂର୍ବରୁ ଲେଖକକୁ କୈଫିୟତ୍ ଦେବାକୁ ପଡ଼ିବ ତା ସାହିତ୍ୟକୁ ନେଇ । ଯେ କିଭଳି ସାହିତ୍ୟ ସେ ଲେଖିଛି ଏଇ ପାଞ୍ଚଛଅ ବର୍ଷ ବ୍ୟାପୀ କଲିକତା ଜୀବନକୁ ନେଇ । ହଁ, ଲେଖିଛି ଅନେକ କିଛି ତାର ନାନା ଦୁଃଖଜଂଜାଳ ସତ୍ତ୍ୱେ । କିମ୍ବା ହୁଏତ ସେଇଥିଯୋଗୁଁ, ପଳାୟନ ଅବା କ୍ଷତିପୂରଣର ତଥ୍ୟ ଅନୁଯାୟୀ । କିନ୍ତୁ ଏଇ କେତୋଟି ବର୍ଷର କଲିକତା, ପୃଷ୍ଠଭୂମି ନୁହେଁ, ପ୍ରତ୍ୟକ୍ଷ ଅନୁଭୂତିଜନିତ ଚିନ୍ତା ଓ ଚେତନାର କଲିକତା, ଯେଉଁ ଗପଗୁଡ଼ିକ ଲେଖେଇଛି ମୋ ହାତରେ, ତାର ରଚନାକାଳ ଯେବେ ହେଉ ପଛେ, ବର୍ତ୍ତମାନ କେବଳ ସେଇ କେତୋଟିର ବିଷୟରେ କହିଲେ ପ୍ରାସଂଗିକ ହେବ ବୋଲି ମୁଁ ଭାବୁଛି । ସଂକ୍ଷେପରେ ସେଗୁଡ଼ିକ ଏହି ପ୍ରକାର :-

''ଗୋଟିଏ ଲାଲ୍ ସଂଧ୍ୟା ।'' ନକସଲ୍ ବିଦ୍ରୋହ ତେଜି ଉଠି ନ ଥାଏ ସେତେବେଳକୁ । ବୋମା ଫୁଟୁ ନ ଥିଲା ଯେଉଁଠି ବୋଲି ସେଇଠି, କିମ୍ବା ପୁଲିସ୍‌କୁ ବାରମ୍ବାର ଗୁଳି ଚଳେଇବାକୁ ପଡୁ ନଥିଲା । ସେତେବେଳେ ଯାହା ଘଟୁଥିଲା, ତାକୁ ଜଣେ ପତ୍ରକାର ମାଟିନି ରିଭଲ୍ୟୁସନ୍ (Matinee revolution)ର ଆଖ୍ୟା ଦେଇଥିଲେ ରହସ୍ୟରେ । କାରଣ ପ୍ରାୟ ଉପରବେଳା ସିଏ ଦେଖାଦିଏ, ଟେକାପଥର ବୃଷ୍ଟି ଓ ଫାଙ୍କା ଗୁଳି ଆୱାଜକୁ ନେଇ, ତା ପରେ ସବୁକିଛି ଶାନ୍ତ ହୋଇଯାଏ । ଯାହାହେଉ ମୁଁ ଦିନେ ସେଇ ରିଭଲ୍ୟୁସନର କବଳରେ ପଡ଼ିଥିଲି ଏବଂ କର୍ପୋରେସନ୍‌ର ଜଣେ ବରିଷ୍ଠ ସହକର୍ମୀଙ୍କ ଲମ୍ବା ବୁଇକ୍ ଗାଡ଼ିର ଆଶ୍ରା ନେବାକୁ ପଡ଼ିଥିଲା ଘରକୁ ଫେରିବା ପାଇଁ । ଏହା ମଧ୍ୟ ସତ ଯେ ବାଟରେ ଟେକାମାଡ଼ ହୋଇଥିଲା ଆମ ଉପରକୁ, ଗୁଳିର ଆୱାଜ୍ ଶୁଣା ଯାଇଥିଲା ଏବଂ ବନ୍ଧୁ ଗାଡ଼ିକୁ ବୁଲେଇ ନେଇଥିଲେ ତାଙ୍କର ଜଣେ ସୁନ୍ଦରୀ ଓ ସୁଶିକ୍ଷିତା ଶାଳୀଙ୍କ ଘରକୁ, ଯେ ମଧ୍ୟ ଥିଲେ ଜଣେ ସମୃଦ୍ଧ ଶିଳ୍ପପତିଙ୍କ ପତ୍ନୀ । ଏଇ ଅନୁଭୂତିଟିକ ମୋତେ ଉସ୍‌କେଇଲା ଏଇ ଗପକୁ ଲେଖିବା ପାଇଁ । ନାୟକ ଜଣେ ତଳମଧ୍ୟବିତ୍ତ ଶିକ୍ଷିତ ବୁଦ୍ଧିଜୀବି, ଯେ ନିଜକୁ ବିପ୍ଳବୀ ବୋଲି ମନେ କରେ । ଏବଂ ଏହି ପ୍ରକାର ଅନୁଭୂତିକୁ ନେଇ ସେ ସ୍ଥିର କଲା ଯେ ସେ ଆଗେ ଉପରକୁ ଉଠିବ ଏହିଭଳି ସୌଖୀନ ଏବଂ ଉଚ୍ଚାଂଗ ପରିବେଶର ଅଧିକାରୀ ହେବ, ତାପରେ ଯୋଉ କଥା । ସେ ମନେ ମନେ କହିଲା ତାର ଦଳିତ ଓ ବୁଭୁକ୍ଷୁ ଭାଇଭଉଣୀମାନଙ୍କୁ - ଆରେ ବୁଝୁନ, ମୁଁ ଉପରକୁ ଉଠିଲେ ସିନା ତୁମକୁ ଉଠେଇ ନେଇ ପାରିବି ? କାର୍ଯ୍ୟକାରୀ ନେତାଟିଏ ହୋଇ ପାରିବି ? କଅଣ କିଛି ଭୁଲ୍ କହିଲା ସେ ?

ଏହାର ସ୍ୱରଚିତ ଇଂରାଜି ରୂପାନ୍ତର "Red Evening", Penguin Boots, UKଙ୍କ ଦ୍ୱାରା "New Indian writing" ନାମକ ସଂକଳନରେ (୧୯୭୪)ରେ ପ୍ରକାଶିତ ହୋଇଛି । ସଂପାଦକ କବି ଆଦିଲ୍ ଜସ୍‌ସାଓ୍ୱାଲା । ଶ୍ରୀମତୀ ପ୍ରଜ୍ଞା ପାରମିତାଙ୍କ ଦ୍ୱାରା ରଚିତ ଅନ୍ୟ ଏକ ଇଂରାଜୀ ଅନୁବାଦ "A Crimson Evening" Cuttack Student's storeଙ୍କ ଦ୍ୱାରା ପ୍ରକାଶିତ (୧୯୭୪) "Modern short stories from Indian Authors" ନାମକ ସଂକଳନରେ ପ୍ରକାଶିତ ହୋଇଛି ।

''ଘେରାଉ'' । ଇଏ ହେଲା ଉପର ମଧ୍ୟବିତ୍ତ ଏବଂ ହାଲୁକା ବାମପଂଥୀ ଅଧିକାରୀଙ୍କର ସଂକଟ । ସେ ଗୋଟିଏ ହାକିମ । ସେହେତୁ ତାକୁ ହାକିମି ମର୍ଯ୍ୟାଦା ରକ୍ଷା କରିବାକୁ ପଡ଼ିବ । ମଧ୍ୟ ମାନିବାକୁ ପଡ଼ିବ ପ୍ରଶାସନିକ ସଂହିତାର ଲିଖିତ ଅଲିଖିତ ନିୟମାବଳୀ । କିନ୍ତୁ ତାର ଦରଦୀମନ କହୁଛି ଯେ ତାକୁ ଘେରାଉ କରିଥିବା ଲୋକମାନେ ଅନେକାଂଶରେ ଦୁଃଖୀ, ତେଣୁ ତାଙ୍କ ଦୁଃଖ ଦୂର କରିବା ଉଚିତ । ଏହି ପରିସ୍ଥିତିରେ ସେ କେଉଁ ଆଡ଼କୁ କେତେ ଡିଗ୍ରୀ ଢ଼ଳିଲା, ଏବଂ ତା ମନକୁ ବୋଧ ଦେଇ ପାରିଲା ମୁଁ ତାରି ରୂପାୟନ କରିବାକୁ ଚେଷ୍ଟା କରିଛି ଏଇ ଗପରେ । ଏଥିରେ ଲେଖକ-ହାକିମ ନିଜ ମାନସିକତାକୁ ନେଇ ଖେଳୁଛି ବୋଲି ଭାବୁଛନ୍ତି କି, ତାର କେଉଁ ଅନୁଭୂତିର ପରିପ୍ରେକ୍ଷୀରେ ? ହୋଇଥିବ । ଗଳ୍ପଟିର ବଂଗଳା ରୂପାନ୍ତର ପଶ୍ଚିମବଂଗ ଆକାଉଣ୍ଟାଣ୍ଟ୍ ଜେନେରାଲ୍‌ଙ୍କ ଅଫିସ୍ କର୍ମଚାରୀମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଓ ସଂପାଦିତ 'ଅବସର' ନାମକ ପତ୍ରିକାରେ ପ୍ରକାଶିତ ହୋଇଛି ।

''ଶହେ ପୁଅ ।'' ହଁ, ମୁଁ କଟକକୁ ଆସିଥିଲି ଏବଂ ଦିନଟ୍ରେନ୍‌ରେ ଫେରିଯାଉଥିଲି କଲିକତା । କିନ୍ତୁ ବାଟରେ ଟ୍ରେନ୍‌କୁ ଅଟକେଇ ଦିଆହେଲା କୌଣସି କାରଣରୁ । ଗୋଟିଏ ଛୋଟିଆ ଷ୍ଟେସନ୍‌ରେ । ସେଇଠୁ ମୁଁ ଗୋଟିଏ ବିପରୀତମୁଖୀ ଟ୍ରେନ୍‌ରେ ଖଡ଼୍‌ଗପୁରକୁ ଆସିବା ପାଇଁ ସ୍ଥିର କଲି । ଯେଉଁଠି ମୋ ଝିଆରୀଙ୍କ୍ୱାଇଁ ରେଳବାଇର ଜଣେ ବଡ଼ କର୍ତ୍ତା । ତା' ଘରେ ରହିବି ଏବଂ ସୁବିଧାରେ କଲିକତାକୁ ଫେରି ଆସିବାର ବ୍ୟବସ୍ଥା କରିବି । ଏଦଂ ସେଇ ଲୋକାଲ ଟ୍ରେନ୍‌ରେ ମୋର ଭେଟ ହୁଏ 'ଶହେ ପୁଅ'ଙ୍କ ସାଙ୍ଗରେ । ଯେଉଁମାନେ ଏକାଧାରରେ ବିପ୍ଳବୀ, ଛତରା ଏବଂ ଦାୟିତ୍ୱହୀନ ବୋଲି ମନେ ହେଉଛନ୍ତି । ପ୍ରକୃତରେ ସେମାନେ ଚେନ୍ ଟାଣି ଗାଡ଼ିକୁ ଅଟକେଇ ଦେବାର ଚେଷ୍ଟା କରିଥିଲେ, ଯେମିତିକି କେଉଁ ଛୋଟେଇ ଛୋଟେଇ ଆସୁଥିବା ସହପାଠୀ ଜଣକ ଟ୍ରେନ୍ ଧରି ପାରିବ । ମଧ୍ୟ ମୋଠାରୁ ଟଂକାଟିଏ ମାଗି କରି ତା ଆଡ଼କୁ ଫିଗିଦେଇଥିଲା ଜଣେ ତାକୁ ସାହାଯ୍ୟ କରିବା ପାଇଁ । ପଚାରନ୍ତୁ ନାହିଁ ଯେ ସତରେ ତାଙ୍କର କୋଉ ସାଙ୍ଗଭାଇ ଏଇ ଟଙ୍କାଟିକୁ ମୋତେ ପରେ ଫେରାଇ ଦେଇଥିଲା କି ନାହିଁ, ଯାହା ଏଇ ଗପରେ ଅଛି । କଥା ହେଉଛି ଯେ ଯଦି ସଂବେଦନା ବୋଲି ଗୋଟିଏ ଜିନିଷ ରହିଛି, ଏଇ କୌରବଜାତୀୟ ଶହେପୁଅଙ୍କ ମନରେ ଏବଂ ଏଇ ଆନ୍ତରିକତା, ତାଙ୍କର ଅକ୍ଷମ

ବନ୍ଧୁଟିକୁ ସାହାଯ୍ୟ କରିବା ଲାଗି, ତାହେଲେ କଣ ତାଙ୍କୁ ଏତେ ଖରାପ ବୋଲି ଭାବିବା ? ଯେମିତିକି ତାଙ୍କର ନାଶ ଯିବା ଉଚିତ ?

ଏଇ ଗଳ୍ପଟି ଇଂରାଜି, ହିନ୍ଦୀ, ଗୁଜରାଟୀ, କନ୍ନଡ଼ ଓ ମାଲୟାଲମ୍ ଭାଷାରେ ଅନୁଦିତ ହୋଇ ବିଭିନ୍ନ ପତ୍ରପତ୍ରିକା ଏବଂ ସଂକଳନରେ ପ୍ରକାଶିତ ହୋଇଛି । ଏହାର ସ୍ୱରଚିତ ଇଂରାଜି ଅନୁବାଦ "Hundred Sons" ମଧ୍ୟ ନିକଟରେ ଦିଲ୍ଲୀର "Sristi" ନାମକ ପ୍ରକାଶନ ସଂସ୍ଥା ଦ୍ୱାରା "Great writers : Oriya stories" ନାମକ ସଂକଳନରେ ସ୍ଥାନିତ ହୋଇଛି ।

''କ୍ରାନ୍ତି ପାଇଁ ଟିକେଟ୍'' । ଏଇ ଗଳ୍ପ ପାଇଁ ଅନୁଭୂତିର ଖୋରାକ୍ ମୋତେ ସେଇ ଛଅବର୍ଷ ଭିତରେ ମିଳି ନ ଥିଲା । ମିଳିଲା, ଯେତେବେଳେ ମୁଁ ବରୋଦାରୁ ଆସିଥିଲି କଲିକତାକୁ କୌଣସି କାମରେ, ''କ୍ରାନ୍ତି'' ନାମକ ଗୋଟିଏ ନୂଆ ସିନେମା ଛବି ପାଇଁ ଟିକେଟ୍ ଖଣ୍ଡେ ଯୋଗାଡ଼ କରି ପାରିଲି ବହୁତ କଷ୍ଟରେ, ହେଲେ ତାକୁ ସିନେମା ହଲ୍‌ର ଗେଟ୍ ପାଖରେ ଦେଇ ଦେଲି ଆଉ କାହାକୁ । ଯେ ତାର ଦାମ୍ ବି ଦେଲା ନାହିଁ ମୋତେ, ଖାଲି ହସି ଦେଲା । ସତେକି ମୁଁ ବୁଝିବି ସେ କାହିଁକି ହସୁଛି । ଆସନ୍ତା କ୍ରାନ୍ତି କେଉଁ ଦୃଷ୍ଟିରେ ଦେଖିବ, ମୋ ପରି ଲୋକମାନଙ୍କୁ । ସେଣିକି ପଢ଼ିବା ହୁଅନ୍ତୁ ।

ଇତି ମଧ୍ୟରେ ମୋର ଶାଶୁ ରୁକ୍ମିଣୀ ଦେବୀଙ୍କର ବିୟୋଗ ହୋଇ ଯାଇଥିଲା ୧୯୬୯ ମସିହାରେ, ତାଙ୍କୁ ୬୫ ବର୍ଷ ନ ହେଉଣୁ । ବି. ଦାସଙ୍କ ଠାରୁ ସେ ପ୍ରାୟ କୋଡ଼ିଏ ବର୍ଷ ସାନ ଥିଲେ ଏବଂ ରାଜନୀତିଜ୍ଞ ସ୍ୱାମୀଙ୍କ ଘରକରଣାକୁ ଅତ୍ୟନ୍ତ ନିପୁଣତାର ସହ ତୁଲେଇ ନେଇ ପାରିଥିଲେ । କିନ୍ତୁ ସ୍ୱାମୀଙ୍କ ମୃତ୍ୟୁ ପରେ ସେ ଭାଙ୍ଗି ପଡ଼ିଲେ ଏବଂ ପ୍ରାୟ ଅସୁସ୍ଥ ରହୁଥିଲେ । କୁମ ତାଙ୍କର ବିଶେଷ ପ୍ରିୟପାତ୍ର ଥିଲା ।

ଯାହାହେଉ ମନରେ ଦମ୍ଭ ଧରିଲୁ ବରୋଦାକୁ ବାହାରିଲା ବେଳକୁ, ଯେ ଏଇ ସଂପୂର୍ଣ୍ଣ ନୂଆ ଜାଗା, ନୂଆ କାମ ଓ ନୂଆ ପରିବେଶରେ ଆମର ପରିସ୍ଥିତି ସୁଧୁରିଯିବ ।

କିନ୍ତୁ କୌଣସି ପ୍ରତିଶ୍ରୁତି ମିଳୁ ନଥିଲା ଆମକୁ, ଆମର ସବୁଠାରୁ ବଡ଼ ଉଦ୍‌ବେଗକୁ ନେଇ । ଆମ ଝିଅର କଣ ହେବ ? ସେ କଣ ବାହା ହୋଇ ତା ନିଜ ଘରସଂସାର କରିପାରିବ ନାହିଁ ? ବରୋଦାର ସରକାରୀ ଡାକ୍ତର ମଧ୍ୟ ଆମକୁ ନିରାଶ କଲେ ଏ ଦିଗରେ । କହିଲେ, ନା, ତାକୁ ବାହା ଦେବା ଉଚିତ ହେବ ନାହିଁ । ତାର ଦୁର୍ବଳ ହାର୍ଟ୍ ସଂଭାଳି ପାରିବ ନାହିଁ ପିଲା ଜନ୍ମ କରିବାର କଷ୍ଟ । ବରଂ ସେ ଅଭିଆଡ଼ୀ ରହୁ । ସମାଜସେବା କିମ୍ବା ଆଉ କେଉଁ କାମରେ ନିୟୋଜିତ କରି ଦେଉ ନିଜକୁ ।

ଦିଲ୍ଲୀକୁ ମୁଁ ଯାଉଥିଲି ମଝିରେ ମଝିରେ, ଆମ କଂପାନୀ କାମରେ । ସେଇଠି ଦିଲ୍ଲୀର ଅଲ୍ ଇଣ୍ଡିଆ ମେଡ଼ିକାଲ୍ ଇନ୍‌ଷ୍ଟିଚିଉଟ୍‌ରେ କାମ କରୁଥିବା ଜଣେ ସଂପର୍କୀୟ ଡାକ୍ତରଙ୍କ ପରାମର୍ଶ ନେଇଥିଲି ଝିଅ ବିଷୟରେ । ଏବଂ ସେ ମୋତେ ଗୋଟିଏ ନୂଆ ଆଶାବାଣୀ

ଶୁଣାଇଲେ । କହିଲେ, ହଁ, ବରୋଦାର ଡାକ୍ତର ଯାହା କହିଲେ ତା ଭୁଲ ନୁହେଁ । କିନ୍ତୁ ଇନ୍‌ଷ୍ଟିଚିଉଟ୍‌ର ହାର୍ଟ୍ ସ୍ପେଶାଲିଷ୍ଟ, ଡଃ ଗୋପୀନାଥ୍ ଏହି ଧରଣର ଅନେକ ଅପରେସନ୍ କରିସାରିଲେଣି । ଏବଂ କ୍ୱଚିତ୍ କୌଣସି କେସ୍‌ରେ ସେ ଫେଲ୍ ମାରିଛନ୍ତି । ତେଣୁ ତାଙ୍କ ସାଙ୍ଗରେ ପରାମର୍ଶ କଲେ ଭଲ ହୁଅନ୍ତା ନାହିଁ ?

ଅପରେସନ୍ ? କିନ୍ତୁ ବରୋଦାର ଡାକ୍ତର କହିଲେ ପରା ଯେ ସଫଳତାର ଚାନ୍ସ ଫିଫ୍‌ଟି ଫିଫ୍‌ଟି ? ମୁଁ କେମିତି ଭଲା ଏତେବଡ଼ ରିସ୍କ ନେବି ମୋ ଝିଅ ପାଇଁ ? ତାଠାରୁ ବରଂ ସେ ବଂଚି ରହୁ ଏମିତି । କିନ୍ତୁ ଆମ କାନ୍ଦୁରୀ ଝିଅ ସବୁକଥା ଶୁଣିଲା ପରେ ଆମକୁ କହୁଛି, ଆଶ୍ଚର୍ଯ୍ୟ କରିଦେଇ, ଡକ୍ଟର୍ ଗୋପୀନାଥଙ୍କର ଯଦି ସାହସ ଅଛି ଯେ ମୋତେ ଅପରେସନ୍ କରି ଭଲ କରି ଦେବେ, ତାହେଲେ ମୋର ବି ଅଛି ସେଇ ସାହସ । ଏମିତି ଅକାମି ହୋଇ ବଂଚି ରହିବା ଠାରୁ ଅପରେସନ୍‌ର ରିସ୍କ ନେବା ଭଲ ।

ଶେଷକୁ ସେଇଆ ହେଲା । ଡକ୍ଟର ଗୋପୀନାଥ ନିର୍ଭୟବାଣୀ ଶୁଣାଇଥିଲେ ଏବଂ ଅପରେସନ୍ ସଂପନ୍ନ ହେଲା ୧୯୭୧ ମସିହାରେ, ଦିଲ୍ଲୀ ଅଲ୍‌ଇଣ୍ଡିଆ ମେଡ଼ିକାଲ୍ ଇନ୍‌ଷ୍ଟିଚିଉଟ୍‌ରେ । ନିଖୁଣ ଅପରେସନ୍, ଯେମିତିକି କଟାଦାଗଟା ଦିଶିବ ନାହିଁ ସହଜେ । ଡକ୍ଟର ଗୋପୀନାଥ କହିଲେ ହସି ହସି - ମୁଁ ତା' କେମିତି ହେବାକୁ ଦେଇଥାଆନ୍ତି ? ତା ବର ତାକୁ ଖୁଣି ନ ଥାଆନ୍ତା ?

କିନ୍ତୁ ବିଧିର ବିଡ଼ମ୍ବନା ଯେ ସେଇ କଟାଦାଗ ସେତିକିରେ ରହିଲା ନାହିଁ । କାରଣ ଅପରେସନ ବେଳର କୌଣସି ଯନ୍ତ୍ରପାତିରୁ ଆସିଥିବା ଇନ୍‌ଫେକ୍‌ସନ୍ (infection) ଯୋଗୁଁ ଝିଅ ଶୀଘ୍ର ଭଲ ହୋଇ ଉଠିଲା ନାହିଁ । ହାର୍ଟ୍‌ର ଚାରିପାଖରେ ପୂଜ ଜମିଲା । ଔଷଧ ପହଞ୍ଚିଲା ନାହିଁ ସେଯାଏଁ । ତେଣୁ ତାକୁ ଆହୁରି ଦି'ଥର ଅପରେସନ୍ କରିବାକୁ ପଡ଼ିଲା ଏବଂ ହସ୍‌ପିଟାଲ୍ ବେଡ୍‌ରେ ପଡ଼ି ରହିବାକୁ ହେଲା ତିନିଚାରି ମାସ ଯାଏଁ । ଯାହାହେଉ ଭଗବାନଙ୍କ କୃପାରୁ ସେ ବଂଚି ଗଲା । ଏବଂ ଯଥାକ୍ରମେ ସୁସ୍ଥ ହୋଇ ଉଠିଲା ।

ଭଗବାନଙ୍କ କୃପାରୁ ସେ ଭଲ ହୋଇଗଲା, ଏଇ ପଦକ ଯେତେ କହିଲେ ଦୋହରେଇ ହେଲେ ମଧ୍ୟ ଯଥେଷ୍ଟ ନୁହେଁ । ଭଗବାନ୍ ନାମକ ଜଣେ ରକ୍ଷାକର୍ତ୍ତା ଅବଶ୍ୟ ଅଛନ୍ତି ବୋଲି ନ ଭାବିଲେ ବଂଚି ରହିବା ଦୁଷ୍କର । ତେଣୁ ପ୍ରାର୍ଥନାକୁ କଦାପି ଗୋଟିଏ ନିର୍ବୋଧତା ବୋଲି କହି ହେବ ନାହିଁ । କିନ୍ତୁ ନିଜକୁ ବୁଦ୍ଧିଜୀବୀ ବୋଲି ମଣୁଥିବା ସତ୍ତ୍ୱେ ମୁଁ ଯେଉଁ ପ୍ରକାର କାମ କଲି, ଫୁଲ ସୁଂଘିଲି, ଚାଉଳ ବିଂଚିଲି, ମଂତ୍ର ପଢ଼ିଲି, ପାଚନ ସେବନ କଲି ଇତ୍ୟାଦି, ବ୍ରାହ୍ମଣ ଜ୍ୟୋତିଷ-ପୁରୋହିତ ମାନଙ୍କ ନିର୍ଦ୍ଦେଶରେ. ଯେମିତିକି ଝିଅ ବଂଚି ଉଠିବ, ତା' ମନେ ପଡ଼ିଲେ ହସ ଲାଗେ । ଲାଜ ଲାଗେ । କିନ୍ତୁ ଏଇ ହେଉଛି ମଣିଷଦଶା । ବୁଦ୍ଧି ଶେଷକୁ ହାରିଯାଏ, ଭଲ ପାଇବାର ଚରମ ସ୍ୱାର୍ଥ ଆଗରେ । ଯାହା କରିବାକୁ କହିଲେ

କରିବି, କିନ୍ତୁ ମୋ ଝିଅ ବଂଚି ଯାଉ । ଏଇ ହେଲା ମୋ ସ୍ୱାର୍ଥାନ୍ୱିତ ଆବେଗର ମହାମନ୍ତ୍ର । କେଉଁ ବୌଦ୍ଧିକତା ଭଲା ତା ଆଗରେ ତିଷ୍ଠି ରହି ପାରିବ ?

ଝିଅର ଚିକିତ୍ସା ଯୋଗୁଁ ଏଇ ପ୍ରଲମ୍ବିତ ଦିଲ୍ଲୀ ରହଣି, ତଥା ପାରିବାରିକ ଉଦ୍‌ବେଗ ହେତୁ ମୋର ଚ୍ୟାଲେଂଜ୍ ବୋଲି ମନେ ହେଉଥିବା ନୂଆ କାମରେ କିଛି ଅସୁବିଧା ହୋଇଥିଲା କି ? ନା, ମୋଟେ ନୁହେଁ । ଇଣ୍ଡିଆନ୍ ଡେଆରୀ କର୍ପୋରେସନ୍‌ର ''ଅପରେସନ୍ ଫ୍ଲଡ୍'' ପ୍ରକଳ୍ପର ଉଦ୍ଦେଶ୍ୟ ହେଉଛି ବିଦେଶରୁ ଦାନ ଅବା ଅତି ସୁଲଭ ମୂଲ୍ୟରେ ମିଳୁଥିବା ମିଲ୍କ ପାଉଡ଼ର୍‌କୁ ବିଭିନ୍ନ ଗ୍ରେଡ୍‌ରେ ଦୁଗ୍ଧ ହିସାବରେ ପ୍ରସ୍ତୁତ କରି, ଉପଯୁକ୍ତ କୋଲ୍‌ଡ୍ ଷ୍ଟୋରେଜ୍‌ରେ ରଖି, ତାକୁ ବିଭିନ୍ନ ଏଜେନ୍‌ସି ଦ୍ୱାରା ଦେଶର ବିଭିନ୍ନ କୋଣକୁ ପଠାଇବା । ଏବଂ ବିକ୍ରୟଲବ୍‌ଧ ଧନ ଦ୍ୱାରା ଦେଶରେ ନୂଆ ନୂଆ ଡେଆରୀ ପ୍ରୋଜେକ୍ଟ ସ୍ଥାପିତ କରିବା । ଯେପରିକି କ୍ଷୀରସମୁଦ୍ର ଗୋଟାଏ ସବୁଦିନିଆ ସଂପଦ ହୋଇ ରହିବ ଦେଶବାସୀଙ୍କ ପାଇଁ । ହେଲେ କାମଟା ବିଶେଷ କିଛି କଠିନ ନଥିଲା, ଆର୍ଥିକ ପରାମର୍ଶ କିମ୍ବା ତତ୍ତ୍ୱାବଧାନ ଦୃଷ୍ଟିରୁ । ଏବଂ ଡକ୍ଟର କୁରିଆନ୍‌ଙ୍କୁ ମୁଣ୍ଡ ଘୁରେଇବାକୁ ପଡୁ ନଥିଲା ନାନାଦି ଛୋଟ ଛୋଟ ସମସ୍ୟା ନେଇ । ଆମେ ତାଙ୍କୁ ମୁକ୍ତ କରି ରଖିବାକୁ ଚାହୁଁଥିଲୁ ନୀତିଗତ ଶେଷ ନିର୍ଣ୍ଣୟ ପାଇଁ । ମଧ୍ୟ ସ୍ୱପ୍ନ ଦେଖିବା ପାଇଁ ।

ତାଙ୍କର ଏଇ ସ୍ୱପ୍ନ ବିଷୟରେ ମୋର ଗୋଟିଏ ଅନୁଭୂତି ଅଛି ଯାହା ଶୁଣିବାକୁ ଭଲ ଲାଗିବ ଦେଶର ସମସ୍ତ ଦୁଗ୍ଧପ୍ରେମୀ ମାନଙ୍କୁ । ଆଜିକାର 'ମଦର୍ ଡାଏରୀ' ତାଙ୍କ ସ୍ୱପ୍ନରୁ ହିଁ ସଂଭୂତ ବୋଲି କହିଲେ ଭୁଲ୍ ହେବ ନାହିଁ । ଦିନେ ସକାଳେ ମୁଁ ଓ ମୋର ପ୍ରଶାସନିକ ସହକର୍ମୀ ମିଷ୍ଟର୍ ଭରତ୍ ଗପୁଥିଲୁ ତାଙ୍କ ସାଙ୍ଗରେ ସବୁଥର ପରି, ଯେତେବେଳେ ସେ ଆନନ୍ଦରୁ ଆସି ପହଞ୍ଚନ୍ତି ବରୋଦାରେ, କର୍ପୋରେସନ୍‌ର କାମ ଦେଖିବା ପାଇଁ । ଏଣୁ ତେଣୁ ଖୁସିଗପ, କାମ ବିଷୟରେ କିଛି ଆଲୋଚନା କରିବା ପୂର୍ବରୁ । ସେଇଠୁ ହଠାତ୍ କହୁଛନ୍ତି ଗପ ମଝିରେ - ଜାଣିଛ ? କାଲି ରାତିରେ ମୋତେ ନିଦ ହେଲା ନାହିଁ ସହଜେ । ମୁଁ ଗୋଟାଏ ସ୍ୱପ୍ନ ଦେଖିଲି । ଯେ ମେକ୍ସିକୋରେ ମୁଁ ଯାହା ଦେଖି ଆସିଥିଲି, ବେଶି ବଡ଼ ନଥିଲା ତାର ଘେର, ସେଇ ଜିନିଷଟା ଏଠି ହୋଇ ପାରିବ ନାହିଁ କାହିଁକି ? ଦୁଗ୍ଧ ଭଣ୍ଡାର, ବଡ଼ରୁ ଛୋଟ ଛୋଟ । ପାଣି ଟାଙ୍କିରୁ ଛୋଟ ଛୋଟ ପାଣି କୁଣ୍ଡ ପରି, ମଝିରେ ଲମ୍ବା ଲମ୍ବା ପାଇପ୍ । ସେଇଠୁ ତମେ ଯିବ ତମ ଘର ପାଖରେ ଥିବା କେଉଁ ଦୁଧ କୁଣ୍ଡ ପାଖକୁ, ଟ୍ୟାପ୍ ଖୋଲିଦେବ, ଆଉ ତମ ପାତ୍ର ଭରି ଆଣିବ । ମେସିନ୍ କହିଦେବ ତମେ କେତେ ନେଲ, ଆଉ ତାର ମୂଲ୍ୟ କେତେ । କଅଣ କରି ହେବ ନାହିଁ ଏତିକି, ଆମ ଦେଶରେ ? ଆମେ ଚୁପ୍ ରହିଲୁ । ସେଭଳି ସ୍ୱପ୍ନ ପ୍ରତି ହଁ ଭରିବାର କି ମୁଣ୍ଡ ହଲେଇବାର ଧୃଷ୍ଟତା ନ ଥିଲା ଆମର । କିନ୍ତୁ ସେ କହି‍େ ୍ଠ ଖଲାସ ହୋଇଗଲେ । ଏବଂ ସେଇ ଦିନଠୁଁ ତାଙ୍କ ସ୍ୱପ୍ନକୁ ସାକାର କରିବାରେ ଲାଗି ୍ ‍ଲେ । ଏବଂ ଆଜି ତାହା ତାଙ୍କ ମନଲାଖି ସଫଳ ହୋଇ ପାରିନାହିଁ

ହୁଏତ, କିନ୍ତୁ ଯାହା କିଛି ହୋଇପାରିଛି, 'ମଦର ଡେଆରୀ' ଯୋଗୁଁ ମିଳିଥିବା ଏଇ ବ୍ୟାପକ ଓ ସୁଲଭ ଦୁଗ୍ଧ ପ୍ରବାହ ତାହା ତାଙ୍କର ସେହି ସ୍ୱପ୍ନରୁ ଉଦ୍‌ଭୁତ ନୁହେଁ ତ ଆଉ କଅଣ ? ଏଇ ସ୍ୱପ୍ନ ପ୍ରବଣତା, ତ'ହୁଁ ଗୋଟାଏ ନିଶ୍ଚିତ ଲକ୍ଷ୍ୟ ପ୍ରସ୍ତୁତ କରି ତାକୁ ସାଧିତ କରିବାର ଅପ୍ରତିହତ ଉଦ୍ୟମ ଏହାହିଁ ଥିଲା ତାଙ୍କ ବ୍ୟକ୍ତିତ୍ୱ ଏବଂ ନେତୃତ୍ୱର ବଡ଼କଥା । ତା ସାଙ୍ଗକୁ ଏକ ଆତ୍ମୀୟତାର ଭାବ, ତାଙ୍କ ପାଇଁ କାମ କରୁଥିବା ସହକର୍ମୀମାନଙ୍କ ପ୍ରତି । ମୋ ଝିଅର ଅପରେସନ୍ ପୂର୍ବରୁ ଏବଂ ପରେ ସେ ଆମର ଦିଲ୍ଲୀରେ ରହିବା ପାଇଁ ଯେଉଁ ପ୍ରକାର ବ୍ୟବସ୍ଥା କରିଥିଲେ 'ଅମୂଲ୍'ର ଆନୁକୂଲ୍ୟରେ, ସେଥିପାଇଁ ମୁଁ ବିଶେଷ ଭାବରେ କୃତଜ୍ଞ ତାଙ୍କ ପ୍ରତି । ଶୁଭକାମନା ସହ ଫୁଲତୋଡ଼ାଟିଏ ମଧ୍ୟ ସେ ପଠେଇବାକୁ ଭୁଲି ନ ଥିଲେ ଝିଅ ପାଇଁ, ତା ଅପରେସନ୍ ପୂର୍ବରୁ ।

ଗପଟିଏ ବି ମୁଁ ଲେଖି ନାହିଁ କି ମୋ ବରୋଦା ରହଣିର ପୃଷ୍ଠଭୂମିରେ ? ବରୋଦା ଗୋଟିଏ ଆଧୁନିକ ଏବଂ ପରିଷ୍କାର ପରିଚ୍ଛନ୍ନ ସହର । କିନ୍ତୁ ରାସ୍ତାଘାଟରେ ଏତେ ଗଧ କାହିଁକି ବୁଲୁଛନ୍ତି ଏଠି ? ଅନେକ ବୋଝବୁହା ଓଟମାନଙ୍କୁ ମଧ୍ୟ ଦେଖିଛି ଏଠି, ମରୁଭୂମିର ପାଖ ହୋଇ ଥିବାରୁ । କିନ୍ତୁ ମୋତେ କାବା ଲାଗିଲା ଏଇ ଗଧମାନଙ୍କୁ ଦେଖି, କାରଣ ସେମାନେ କିଛି କାମ କରୁଛନ୍ତି ବୋଲି ମୋର ମନେ ହେଲା ନାହିଁ । ଯଦିଓ ମୋର ଧାରଣା ଭୁଲ୍ ହୋଇଥିବ ନିଶ୍ଚୟ । ଯାହାହେଉ ମୁଁ ଗୋଟିଏ ଗଧର ଭେଟ କରେଇଲି ବରୋଦାକୁ ବୋର୍ଡ଼ ମିଟିଂଗ୍ ପାଇଁ ଆସିଥିବା ଏବଂ ଉପରକୁ ଉଠିବା ପାଇଁ ବ୍ୟାକୁଳ ହେଉଥିବା କେ. ନବୀନ୍‌ଙ୍କ ସାଙ୍ଗରେ । ଏକ ନିଷ୍କ୍ରିୟ ଏବଂ ସଂଭବତଃ ଅଶ୍ଳୀଳ ଗଧ ସାଙ୍ଗରେ । ଯେତେବେଳେ ମିଷ୍ଟର ନବୀନ୍ ବୋର୍ଡ଼ ମିଟିଂଗ୍‌ରୁ ଫେରୁଥିଲେ ଓ ତାଙ୍କ ମନରେ ସୁଖ ନ ଥିଲା । ଗପର ନାଆଁ ''ଗଧମାନେ କଣ କରନ୍ତି ?'' ସେଣିକି ପଢ଼ିବା ହୁଅନ୍ତୁ ।

କିନ୍ତୁ ନିଷ୍କ୍ରିୟ ଗଧ କିମ୍ବା କର୍ମବୀର ଡଃ କୁରିଅନ୍, କେହି ମୋତେ ବରୋଦାରେ ଅଟକେଇ ରଖି ପାରିଲେ ନାହିଁ ବେଶି ଦିନ । ଦେଢ଼ ବର୍ଷ ନ ପୂରୁଣୁ ତାଙ୍କୁ ଅନୁରୋଧ କରାଗଲା ମୋତେ ଛାଡ଼ିଦେବା ପାଇଁ, ଯଦି ତାଙ୍କର କିଛି ଆପତ୍ତି ନ ଥାଏ । କିନ୍ତୁ କାହିଁକି ? ମୁଁ କାବା ହୋଇ ପଚାରିଲି ଡଃ କୁରିଅନ୍‌ଙ୍କୁ, ଯେତେବେଳେ ସେ କଥାଟା ପକେଇଲେ ମୋ ଆଗରେ । ସେଇଠୁ ସେ ମୁରୁକି ହସଟିଏ ଦେଇ କହୁଛନ୍ତି ମୋତେ - କାହିଁକି ନା ଏଇକ୍ଷଣି ଯୋଉ ନକ୍ସଲ୍ ଉପଦ୍ରବ ଲାଗିଛି କଲିକତାରେ, କେହି ସେଠିକି ଆକାଉଣ୍ଟାଣ୍ଟ୍ ଜେନେରାଲ୍ ହୋଇ ଯିବାକୁ ଚାହୁଁ ନାହାନ୍ତି । କିନ୍ତୁ ବର୍ତ୍ତମାନର ଏ.ଜି.ଙ୍କ ଟର୍ମ୍ ପୂରିଗଲାଣି, ଆଉ ସେ ବ୍ୟସ୍ତ ହୋଇ ଉଠିଲେଣି ଚାଲିଯିବା ପାଇଁ ।

ସେଇଲାଗି ମୋର ସେଠିକି ଯିବା ଦରକାର, ମୋର ଏଠିକା ଟର୍ମ୍ ନ ପୂରୁଣୁ ?

ନା ତା ନୁହେଁ ଯେ, କିନ୍ତୁ ସେମାନେ ଭାବୁଛନ୍ତି ଯେ ଦାସ୍ ବୋଧହୁଏ ମାଇଣ୍ଡ୍ କରିବ ନାହିଁ । ସେ ପାରିବ । ତାଛଡ଼ା କଲିକତା ତା ଘରପାଖ ନୁହେଁ କି ?

ତିକ୍ତ ହସଟିଏ ହସିବାକୁ ଇଚ୍ଛା ହେଲା । ହେଲେ ପରେ କୁମ ସାଙ୍ଗରେ କଥାବାର୍ତ୍ତା ହେଲା ପରେ ମୁଁ ଭାବିଲି ଯେ ନକ୍ସଲ୍ ଉପଦ୍ରବକୁ ଖାତିର୍ ନ କରି ମୁଁ ମୋ କାମକୁ ତୁଲେଇ ପାରିବି କି ନାହିଁ, ସେ କଥା ଛାଡ଼ିଦିଅ । ମୁଁ ପୁଣି ସେମିତିକା ଚ୍ୟାଲେଂଜ୍‌ର ପାଲରେ ପଡ଼ିବାକୁ ଚାହେଁ ନାହିଁ । କିନ୍ତୁ ପାରିବାରିକ ସ୍ୱାର୍ଥ ଦୃଷ୍ଟିରୁ ମୋର ପ୍ରକୃତରେ ଘରପାଖ କଲିକତାକୁ ଫେରିଯିବା ଉଚିତ । ବିଶେଷତଃ ଏଇଥିପାଇଁ, ଯେ ସୁସ୍ଥ ହୋଇ ଉଠିଥିବା ବଡ଼ଝିଅର ବାହାଘରକୁ ଆଉ ଟାଳି ଦେଇ ହେବ ନାହିଁ ।

ଏହି ଭାବରେ ମୁଁ ଫେରିଆସିଲି କଲିକତାକୁ, ୧୯୭୧ର ଶେଷଭାଗରେ ପଶ୍ଚିମବଂଗର ଆକାଉଣ୍ଟାଣ୍ଟ୍ ଜେନେରାଲ୍ ହୋଇ । ପ୍ରତ୍ୟକ୍ଷ ରାଜନୀତିରେ ଜଡ଼ିତ, 'ଇନ୍‌କିଲାବ ଜିଂଦାବାଦ୍' ମୁଖରିତ ଏବଂ ଆମ ଡିପାର୍ଟମେଣ୍ଟ୍‌ର ଅନ୍ୟତମ ବଡ଼ ଓ ଗଣ୍ଡଗୋଳିଆ ଅଫିସ୍‌ର ବଡ଼କର୍ତ୍ତା ହୋଇ । କେମିତି ମୁଁ ଏଇ ଅଫିସ୍‌କୁ ସଂଭାଳି ନେଇ ପାରିଲି ଅଥବା ସେମାନେ ମୋତେ ଆୟତ୍ତ କରି ନେଲେ, ମୁଁ ପରେ କହିବି ସେକଥା । ବର୍ତ୍ତମାନ କହିନିଏ ମୋର ପାରିବାରିକ ସ୍ୱାର୍ଥ କେତେଦୂର ସାଧିତ ହୋଇ ପାରିଲା, ଘରପାଖକୁ ଫେରି ଆସିବା ହେତୁ ।

ହେଲା । ବଡ଼ଝିଅର ବାହାଘର ଗୋଟିଏ ମନପସନ୍ଦ ଜାଗାରେ । କ୍ୱାଇଁ ସୁଶିକ୍ଷିତ । ଆହମଦାବାଦ୍ ମ୍ୟାନେଜ୍‌ମେଣ୍ଟ୍ ସ୍କୁଲରୁ ଏମ୍.ବି.ଏ. ପାସ କରି ବମ୍ବେରେ ଥିବା ଗୋଟିଏ ମଲ୍‌ଟି ନେସନାଲ୍ କଂପାନୀରେ କାମ କରୁଥିବା ଜଣେ ଉଦୀୟମାନ ଯୁବକ । କେନ୍ଦୁଝର ଘଟଗାଆଁରେ ଘର । ୧୯୭୨ ମେ ମାସରେ ବାହାଘର ସଂପନ୍ନ ହେଲା କଟକରେ, ପାରଂପରିକ ରୀତିରେ । ବାପାଙ୍କର ମନୋବାଂଛା ମଧ୍ୟ ପୂରଣ ହେଲା । ଯେ ସେ ତାଙ୍କ ଗେହ୍ଲା ନାତୁଣୀର ବାହାଘର ଦେଖିଲେ । ଖାଲି ଦେଖିଲେ ନୁହେଁ, ତାର ପୁରୋଧା ହୋଇପାରିଲେ ।

ତାପରେ ପରବର୍ତ୍ତୀ ଯୋଡ଼ିଏ ଘଟଣା, ପରବର୍ତ୍ତୀ ଦୁଇ ବର୍ଷରେ, ଯାହା ବିଶେଷ ସୁଖ ଆଣି ଦେଇଥିଲା ଆମ ଦୁଇଜଣଙ୍କ ପାଇଁ -

୧୯୭୩ ମାର୍ଚ୍ଚରେ ବଡ଼ ନାତିର ଜନ୍ମ କଲିକତାରେ । ପହିଲି ସଂତାନର ପହିଲି ସଂତାନ । ସେଇ ସ୍ୱାଭାବିକ ଆନନ୍ଦ ଛଡ଼ା ଗୋଟିଏ ସ୍ୱସ୍ତିର ନିଃଶ୍ୱାସ । କାରଣ ସଦ୍ୟ ସକ୍ଷମ ହୋଇ ଉଠିଥିବା ହାର୍ଟ୍ ପ୍ରସବ ବେଦନାକୁ ସହ୍ୟ କରିପାରିବ କି ନାହିଁ, ସେ ବିଷୟରେ ଯେଉଁ ଆଶଙ୍କା ଥିଲା ଆମ ମନରେ - ନିଜେ ଡାକ୍ତର ମଧ୍ୟ ସେଥିରୁ ମୁକ୍ତ ନ ଥିଲେ - ତାହା ଦୂରୀଭୂତ ହୋଇଗଲା । କୌଣସି ଗଣ୍ଡଗୋଳ ହୋଇନାହିଁ, ପ୍ରସୂତିର କିମ୍ବା ଶିଶୁର । ପିଲାଟିର ନାଆଁ ଦିଆଗଲା ଅନୁରାଗ ।

ଏବଂ ମେ ଅଠର ୧୯୭୪ରେ ଦ୍ୱିତୀୟ ନାତିର ଜନ୍ମ ମଧ୍ୟ କଲିକତାରେ । ଭାରତର ଇତିହାସରେ ଏକ ସ୍ମରଣୀୟ ଦିବସ, କାରଣ ସେଇଦିନ ଆମେ ଗୋଟିଏ ପରମାଣୁ ବୋମାର ବିସ୍ଫୋରଣ କରି ଦୁନିଆଁକୁ ଜଣାଇ ଦେଲୁ ଯେ ଏଦିଗରେ ମଧ୍ୟ ଆମର କରାମତି ଅଛି ।

ବେଶ୍ ହୃଷ୍ଟପୁଷ୍ଟ ହୋଇଥିଲା ପିଲାଟି ଓ ଭାରୀ ଭୋକ ହେଉଥିଲା ତାକୁ ତା' ଜନ୍ମ ବେଳକୁ । ତା ନାଆଁ ଦିଆଗଲା ଅଂଶୁମାନ୍ ।

ପାରିବାରିକ କ୍ଷେତ୍ରରେ ଆଉ କହିବାର ନାହିଁ ବିଶେଷ କିଛି । କିନ୍ତୁ ପଶ୍ଚିମବଙ୍ଗର ନୂଆ ଆକାଉଣ୍ଟାଣ୍ଟ ଜେନେରାଲ୍ କେତେଦୂର ସଫଳ ହୋଇପାରିଲେ ତାଙ୍କ କାମରେ, ସେ ବିଷୟରେ କିଛି କହିବାକୁ ପଡ଼ିବ ।

ମୋତେ ଯଦି ପଚରାଯାଏ ଯେ ମୋର କେଉଁ ଆଦେଶ ନିର୍ଦ୍ଦେଶ ଯୋଗୁଁ ଅଫିସ୍ କର୍ମୀମାନେ ନିୟମିତ ସମୟରେ ଆସୁଥିଲେ କି ଏବଂ ସେହେତୁ ଅଫିସ୍‌ର ଦକ୍ଷତା କଣ ବଢ଼ିଯାଇଥିଲା, ମୁଁ କହିବି ଯେ ମୁଁ ସେମିତି କିଛି ନୂଆ ହୁକୁମ୍‌ନାମା ଜାରୀ କରି ନଥିଲି ଏବଂ ଅଫିସ୍ ଦକ୍ଷତାର ପୂର୍ବାପରକୁ ମୁଁ ଯାଂଚ କରି ଦେଖି ନାହିଁ । କିନ୍ତୁ ମୋର ମନେ ହୁଏ ଯେ ସେମାନଙ୍କର ଅଶାନ୍ତ ଭାବ ଏବଂ 'ଇନ୍‌କିଲାବ'ର ଉଂଚ ଆୱାଜ୍ କିଛି କମି ଯାଇଥିଲା ମୋ ଯୋଗୁଁ ଏବଂ ସେହେତୁ ସେମାନଙ୍କ କର୍ମକୁଶଳତାରେ ଉନ୍ନତି ଘଟିଥିବ ବୋଲି ଆଶା କରିବା ଉଚିତ୍ । କେବଳ ଏଇଥିପାଇଁ ନୁହେଁ ଯେ ମୁଁ ସ୍ୱଭାବତଃ ନରମପଂଥୀ ଓ ଶାନ୍ତିପ୍ରିୟ, ତେଣୁ ତାଙ୍କ ଉଂଚ ଆୱାଜ୍ ଅତ୍ୟନ୍ତ ଶ୍ରୁତିକଟୁ ହୁଏ ମୋ ପାଇଁ ଏବଂ ମୁଁ ତାଙ୍କୁ ବାରଂବାର ଡାକୁଥିଲି ମୋ ଚେମ୍ବରକୁ ଆସି ମୋତେ ତାଙ୍କ ଦୁଃଖଦୁର୍ଦ୍ଦଶା ଶୁଣାଇବା ଲାଗି । ସେମାନେ ମଧ୍ୟ କ୍ରମଶଃ ଜାଣିବାକୁ ପାଇଲେ ଯେ ମୁଁ ଜଣେ ଲେଖକ ଏବଂ ସେ ବିଷୟରେ ମୁଁ ତାଙ୍କୁ ଅଧିକରୁ ଅଧିକ ଅବଗତ କରାଇଲି । ସେଇଠୁଁ ସେମାନେ ବୋଧହୁଏ ବୁଝିଲେ ଯେ ମୁଁ ଜଣେ ହାକିମ ସତ, କିନ୍ତୁ ଭିନ୍ନ ଧରଣର ହାକିମ । ଏବଂ ଏହି କ୍ରମରେ ମୁଁ ଗୋଟିଏ ବିଶେଷ କୃତିତ୍ୱ ହାସଲ କରି ପାରିଥିଲି । ମୁଁ ତାଙ୍କରି ଭିତରୁ ଜଣେ ହୋଇପାରିଲି । କଳାତ୍ମକ ସ୍ତରରେ । ସେମାନେ ''ଅବସର'' ନାମକ ଯେଉଁ ପତ୍ରିକାଟି ପ୍ରକାଶ କଲେ, ମୁଁ ମଧ୍ୟ ଥିଲି ତାର ଜଣେ ପ୍ରତିଷ୍ଠାତା ସଦସ୍ୟ । ମୁଁ ମୋର କେତୋଟି ଗଳ୍ପ ତାଙ୍କୁ ପଢ଼ି ଶୁଣାଉଥିଲି, ସେମାନେ ସେଇ ଶୁଣିବା କଥାକୁ ବଂଗଳାରେ ଟିପି ନେଉଥିଲେ ଏବଂ ତାର ବଂଗଳା ଅନୁବାଦ ମୋତେ ପଢ଼ି ଶୁଣାଉଥିଲେ । ଏବଂ ସେଇ ଅନୁଦିତ ଗଳ୍ପଗୁଡ଼ିକ ପ୍ରକାଶିତ ହେଉଥିଲା ତାଙ୍କର ପତ୍ରିକାରେ । ''ଘେରାଉ'' ମଧ୍ୟ ଥିଲା ସେଇ ଗଳ୍ପମାନଙ୍କ ମଧ୍ୟରୁ ଗୋଟିଏ । ଆଜି ମୁଁ ଯଥାର୍ଥରେ ଗର୍ବିତ ଏବଂ ଆନନ୍ଦିତ ଯେ ସେମାନେ ତାଙ୍କର ଏଇ ଲେଖକ ହାକିମ ଜଣକୁ ମନେ ରଖିଛନ୍ତି ଆଜିଯାଏଁ । ମୋତେ ଆମନ୍ତ୍ରିତ କରିଥିଲେ ଏବେ ''ଅବସର'' ର ରୌପ୍ୟ ଜୟନ୍ତୀ ଉତ୍ସବରେ ଯୋଗ ଦେବା ଲାଗି । ମୁଁ ନାନା କାରଣରୁ ଯାଇପାରିଲି ନାହିଁ, କିନ୍ତୁ ସେମାନେ ମୋର ଫଟୋ ଓ ଶୁଭେଚ୍ଛା ସଂଦେଶ ପତ୍ରିକାର ବିଶେଷ ସଂଖ୍ୟାରେ ଛପାଇଥିଲେ । ମଧ୍ୟ ମୋର ଗଳ୍ପ "Death of an Indian"ର ବଂଗଳା ଅନୁବାଦ ''ଜନୈକ ଭାରତୀୟର୍ ମୃତ୍ୟୁ'' ସେଥିରେ ପ୍ରକାଶିତ ହୋଇଥିଲା ।

କଲିକତା ରହଣିର ଏଇ ଦ୍ୱିତୀୟ ପର୍ଯ୍ୟାୟରେ ମଧ୍ୟ ମୁଁ ବେଶ୍ କେତୋଟି ଗଳ୍ପ ଲେଖିଥିଲି । ହେଲେ ସେଥିମଧ୍ୟରୁ ଯେଉଁ ଗୋଟିକ ମୋର ସେଇ ସମୟର କଲିକତା ଅନୁଭୂତି ଉପରେ ଆଧାରିତ, ତଥା ମୋର ଅନ୍ୟତମ ସୁବିଦିତ ଗଳ୍ପ, ତା ହେଉଛି ''ରାତି କୁକୁର'' । ପ୍ରଥମେ ମୁଁ ଯେଉଁଠି ଆସି ରହିଥିଲି, ବେଲ୍‌ଭେଡ଼ିଅର୍‌ର ସରକାରୀ କ୍ୱାର୍ଟର୍ସକୁ ଫେରିଯିବା ପୂର୍ବରୁ, ସେଇଠି ଭୁକୁଥିଲେ ଏଇ ରାତି କୁକୁର ଗୁଡ଼ାକ ଓ ମୋର ନିଦ ହାରାମ କରି ଦେଉଥିଲେ । ସେଇଲାଗି ମୁଁ ବୋଧହୁଏ ଏହିପ୍ରକାର ପ୍ରତିଶୋଧ ନେଲି ତାଙ୍କ ଉପରେ । ନକ୍‌ସଲ୍ ଏବଂ କଂସଲ୍ (ଅର୍ଥାତ୍ କଂଗ୍ରେସର ଗୁଣ୍ଡା) ମାନଙ୍କ ଭିତରେ ରଚିତ ଯୁଦ୍ଧ ଭିତରେ ପଡ଼ି ଯେଉଁ ଜନ୍ତୁଟା ମଲା ସେ କିଏ ନା ଗୋଟିଏ ନିରୀହ ଧେଡ଼ୀ କୁକୁର । ବିଚାରୀ କେଉଁଥିରେ ନଥାଏ, ହେଲେ ସେଇ ମଝିରେ ପଡ଼ି ମଲା । ମଝିମଝିକିଆ ଶାନ୍ତିପ୍ରିୟ ଅର୍ଥାତ ଭୀରୁ ଭଦ୍ରଲୋକ, ଯେ କେଉଁ ଦଳରେ ନାହିଁ । ଏହି ଗଳ୍ପର ଇଂରାଜି, ହିନ୍ଦୀ ଓ ଗୁଜରାଟୀ ଅନୁବାଦ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଛି । ଏହାର ଫରାସୀ ଅନୁବାଦ ମଧ୍ୟ ପ୍ୟାରିସ୍‌ରୁ ପ୍ରକାଶିତ ''ୟୁରୋପ'' ନାମକ ଗୋଟିଏ ସାହିତ୍ୟ ପତ୍ରିକାର ଭାରତୀୟ ସାହିତ୍ୟକୁ ଚିହ୍ନାଉଥିବା ଗୋଟିଏ ବିଶେଷ ସଂସ୍କରଣରେ ସ୍ଥାନିତ ହୋଇଥିଲା । ଏହା ମଧ୍ୟ ଗୋଟିଏ ନାଟକରେ ରୂପାନ୍ତରିତ ହୋଇ ମଂଚସ୍ଥ ହୋଇଛି, ୧୯୮୪ ମସିହାରେ । ନାଟ୍ୟକାର ଶ୍ରୀ ପ୍ରଫୁଲ୍ଲ ରଥ ।

୧୯୭୪ ମସିହାରେ ମୋତେ ଆଦେଶ ମିଳିଲା ଡାଇରେକ୍ଟର୍ ଅଫ୍ କମର୍ସିଆଲ୍ ଅଡ଼ିଟ୍ ନର୍ଦନ୍ ଜୋନ୍ (Director of Commercial Audit, Northern Zone) ତଥା ମେମ୍ବର, ଅଡ଼ିଟ୍ ବୋର୍ଡ଼ (Member, Audit Board) ପଦରେ ଦିଲ୍ଲୀକୁ ଫେରି ଆସିବା ପାଇଁ । ଅଡ଼ିଟର୍ ଜେନେରାଲ୍‌ଙ୍କ ତରଫରୁ ଗୋଟିଏ ଅଡ଼ିଟ୍ ବୋର୍ଡ଼ର ବ୍ୟବସ୍ଥା କରାଯାଇଥିଲା ଇତି ମଧ୍ୟରେ, ଯାହାର କାମ ହେଉଛି ସରକାରୀ କଂପାନୀମାନଙ୍କ ହିସାବପତ୍ର ସମୀକ୍ଷା କରି ସେଥିରେ ରିପୋର୍ଟ ପ୍ରସ୍ତୁତ କରିବା । ଇଏ ଗୋଟିଏ ନୂଆ ଧରଣର ଅଡ଼ିଟ୍ ବୋଲି କୁହାଯାଉଥିଲା । କାରଣ ହିସାବର ଭୁଲ୍‌ଠିକ୍ ଛଡ଼ା ଆମକୁ ଦେଖିବାକୁ ହେବ ଯେ କଂପାନୀର ମୌଳିକ ଉଦ୍ଦେଶ୍ୟ ସାଧିତ ହୋଇଛି କି ନାହିଁ । Financial Audit କୁ ଅତିକ୍ରମ କରି Performance । ବେଶ୍, ଏଥର ଦିଲ୍ଲୀକୁ ବଦଳି ହୋଇ ଆସିବାରେ ଦୁଃଖ ନାହିଁ । ବଡ଼ଝିଅ ତ ବାହା ହୋଇ ସୁଖରେ ଅଛି । ଏବଂ ଅନ୍ୟ ଯେଉଁମାନେ ଗ୍ରାଜୁଏଟ୍ ଏବଂ ପୋଷ୍ଟଗ୍ରାଜୁଏଟ୍ ପଢ଼ାର ବିଭିନ୍ନ ସ୍ତରରେ ଅଛନ୍ତି, ସେମାନେ ଅନାୟାସରେ ଖାପି ହୋଇଯିବେ ଦିଲ୍ଲୀର କଲେଜ୍‌ମାନଙ୍କରେ ।

କିନ୍ତୁ ୧୯୭୪ ରୁ ୧୯୭୫, ମାତ୍ର ଗୋଟିଏ ବର୍ଷ ମୋତେ ଏଇ ନୂଆ ଏବଂ ବିଶେଷ ରୁଚିକର କାମର ଦାୟିତ୍ୱ ନେବାକୁ ପଡ଼ିଥିଲା । ଏଇ କାମରେ ଥିଲା ବେଳେ ମୁଁ କୁମକୁ ମଧ୍ୟ କେତୋଟି ନୂଆ ଜାଗା ବୁଲେଇ ଆଣି ପାରିଥିଲି । ସେଥି ମଧ୍ୟରେ ସବୁଠାରୁ ଦର୍ଶନୀୟ ଥିଲା ଗୋଆ, ବିଦେଶୀ ଟୁରିଷ୍ଟମାନଙ୍କର ସ୍ୱର୍ଗ ।

ସେଇଠୁ ୧୯୭୫ରେ ଇନ୍ଦିରାଜୀ ଏମ୍ରଜେନ୍ସି ଘୋଷଣା କରି ସାରିଲା ପରେ ମୋତେ ଯେତେବେଳେ ପଚରାଗଲା ମୁଁ Commonwealth Fund For Technical cooperation (CFTC) ନାମକ ଆନ୍ତର୍ଜାତିକ ସଂସ୍ଥା ତରଫରୁ ଜଣେ ବିଶେଷଜ୍ଞ ହିସାବରେ ଯିବାକୁ ଚାହିଁବି କି, ଆଫ୍ରିକାକୁ ଦୁଇ ବର୍ଷ ପାଇଁ, ସ୍ୱାଜିଲାଣ୍ଡ ନାମକ ରାଜ୍ୟର ପରିବହନ ସଂସ୍ଥାର ବିତ୍ତୀୟ ମୁଖ୍ୟ ହିସାବରେ, ମୁଁ ବିନା ଦ୍ୱିଧାରେ କହିଲି, ହଁ । ଧନ୍ୟବାଦ । ଆମେରିକା ପରେ ମୁଁ ଲୋଭେଇଲି ଏଇ ତଥାକଥିତ ଅଂଧାରୁଆ ମହାଦେଶ (Dark Continent) କୁ ଯିବା ପାଇଁ, ଏକ ଅଭିନବ ସ୍ୱାଦୁର ସୁଖ ପାଇବି ବୋଲି, ଖାଲି ତା ନୁହେଁ । ମୋର ମନେ ହେଲା ଇଏ ଏକ ବିଶିଷ୍ଟ ସ୍ୱୀକୃତି ଯାହାକୁ ନାହିଁ କରିବାର ନୁହେଁ ।



# କର୍ମଜୀବନ : ସ୍ୱୀକୃତି
# (୧୯୭୫-୧୯୮୫)

ଆଫ୍ରିକାକୁ ଯିବା ପାଇଁ ଯେଉଁ ଆମନ୍ତ୍ରଣ ମିଳିଲା ମୋତେ, ତାକୁ ମୁଁ କାହିଁକି ବିନା ଦ୍ୱିଧାରେ ହଉ, ଧନ୍ୟବାଦ ବୋଲି ଗ୍ରହଣ କରି ନେଲି, ସତେକି ଗୋଟାଏ ବହୁ ଅପେକ୍ଷିତ ସ୍ୱୀକୃତି ମିଳିଗଲା ମୋତେ, ଏ ବିଷୟରେ ଦି'ପଦ କହିବାକୁ ପଡ଼ିବ । କାରଣ ପ୍ରକୃତରେ ସେଭଳି ସଫଳତାବୋଧର କୌଣସି କାରଣ ନଥିଲା । ମୁଁ କଣ ମୋର ପ୍ରମୋସନ୍ ପାଇ ନାହିଁ ଯଥା ସମୟରେ ନା ଭଲ ଭଲ ଡେପୁଟେସନ୍ ମିଳିନାହିଁ ମୋତେ ? ମଧ୍ୟ ଅନେକ ସମୟରେ ଏଭଳି ଡେପୁଟେସନ୍, ଯେ ମନେ ହେବ ସେମାନେ ଭାବିଚିନ୍ତି ମୋତେ ହିଁ ବାଛିଛନ୍ତି କିଛି ଗୋଟାଏ ଅସାଧାରଣ ଦାୟିତ୍ୱ ତୁଲେଇବା ଲାଗି । ତଥାପି ଗୋଟିଏ ଆନ୍ତର୍ଜାତିକ ସଂସ୍ଥା ମୋତେ ବାଛିଛନ୍ତି ବୋଲି ଏତେ ଖୁସି ହେବାର କଣ ଅଛି ? ପୁଣି କେଉଁଠିକି ନା ଅଂଧାରି ଆଫ୍ରିକାର କେଉଁ ଅଜଣା ରାଜ୍ୟକୁ ଯିବା ପାଇଁ ?

ସେହେତୁ ମୋର ଏଇ ସ୍ୱୀକାରୋକ୍ତି । କଥା ହେଉଛି ଯେ ସେତେବେଳକୁ ମୋତେ ୫୨ ବର୍ଷ ହେଲାଣି । ମଧ୍ୟାହ୍ନର ସୂର୍ଯ୍ୟ ଢ଼ଳି ଗଲାଣି ପଶ୍ଚିମକୁ । ତେଣୁ ବୋଧହୁଏ ଗୋଟାଏ ନିଶ୍ଚିତ ସ୍ୱୀକୃତିବୋଧର ବିଶେଷ ଆବଶ୍ୟକତା ଥିଲା ମୋ ପାଇଁ । ଯେ ମୁଁ ହାରାହାରି ଦକ୍ଷ ଅଫିସରଟିଏ ନୁହେଁ, ଅଧିକ ବିଶେଷ । ଆଭରେଜ୍ ନୁହେଁ, ୱେଲ୍ ଏବଭ୍ ଆଭରେଜ୍ । ଅନ୍ତତଃ ମୋର ବୃତ୍ତିଗତ ଜୀବନକୁ ନେଇ ।

ଅନ୍ତତଃ । କାରଣ ସେତେବେଳେ ଆଉ ଗୋଟାଏ ଅଭାବବୋଧ ମଧ୍ୟ ଆସୁଥିଲା ମୋ ମନରେ, ମୋ ଜୀବନର ଅନ୍ୟ ଏକ ସ୍ତରରେ । ଯେ ଲେଖକ କିଶୋରୀଚରଣଙ୍କୁ ତାର ନ୍ୟାଯ୍ୟ ସ୍ୱୀକୃତି ମିଳିନାହିଁ ଆଜିଯାଏ । ଯଦିଓ ମୋର ସେମିତି ଭାବିବା ଉଚିତ ନ ଥିଲା ବୋଲି ଅନେକ କହିପାରନ୍ତି ନାନାଦି ତଥ୍ୟ ବାଢ଼ି ଦେଇ । ଯଥା :-

୧୯୭୫ ବେଳକୁ ମୋର ପାଞ୍ଚଟି ଗଳ୍ପସଂକଳନ ପ୍ରକାଶିତ ହୋଇଗଲାଣି । ସେଗୁଡ଼ିକ ହେଲା - ଭଂଗାଖେଳଣା (୧୯୬୧), ଲକ୍ଷ ବିହଂଗ (୧୯୬୮), ଘରବାହୁଡ଼ା (୧୯୬୮), ମଣିହରା (୧୯୭୦) ଏବଂ ଠାକୁର ଘର (୧୯୭୫) । ମୋଟ ୬୧ ଗୋଟି ଗଳ୍ପ । ସେଥିମଧ୍ୟରୁ କେତୋଟି ବିଭିନ୍ନ ଗଳ୍ପସଂଗ୍ରହ (anthology)ରେ ମଧ୍ୟ ସ୍ଥାନ ପାଇଛି । ନିଷ୍କ୍ରିୟତାର କଳରବ କରୁଥିବା ଗୋଟିଏ ନୂଆ ଧରଣର ଗଳ୍ପ ''ଲକ୍ଷବିହଂଗ'' କଦି ସତି

ରାଉତରାଏଙ୍କ ''ଦିଗନ୍ତ'' ପତ୍ରିକାରେ ପ୍ରକାଶ ପାଇ ପାଠକ ମହଲରେ ବିଶେଷ ଆଦୃତ ହେଲା ପରି ମନେ ହୋଇଛି । ମେ ୬ ତାରିଖ ୧୯୭୩ର "Times of India" ସଂବାଦପତ୍ରର ସାହିତ୍ୟିକ ବିଶେଷ ସଂଖ୍ୟାରେ ତାର ଇଂରାଜି ଅନୁବାଦ "A Million Birds" ପ୍ରକାଶ ପାଇଛି । ତାକୁ ପଢ଼ି ବମ୍ବେର ବିଶିଷ୍ଟ କବି ଓ ସାହିତ୍ୟିକ ଆଦିଲ୍ ଜସାଓ୍ୱାଲା ମୋର ଲେଖା ପ୍ରତି ଆକୃଷ୍ଟ ହୋଇ ମୋର ଗଳ୍ପ ''ଗୋଟିଏ ଲାଲ୍ ସଂଧ୍ୟା''ର ଇଂରାଜି ଅନୁବାଦ "Red Evening"କୁ ଛପାଇଛନ୍ତି "Penguin Books, UK"ର "New writing in India"ନାମକ ସଂକଳନ (ପ୍ରଥମ ସଂସ୍କରଣ ୧୯୭୪)ରେ । ମଧ୍ୟ ବିଭିନ୍ନ ବିଶିଷ୍ଟ ଲେଖକ ସାହିତ୍ୟିକମାନଙ୍କ ସହିତ ମୋର ପରିଚୟ ହେଲାଣି, ଯେଉଁମାନେ ମୋର ସାହିତ୍ୟକୁ ଭଲ ପାଆନ୍ତି ବୋଲି ଜଣାଇଛନ୍ତି । ମୁଖ୍ୟତଃ ଓଡ଼ିଶାର ଗୋପୀନାଥ ମହାନ୍ତି ଏବଂ ସଚି ରାଉତରାଏ । ଏବଂ ବଂଗଳାର ସ୍ୱର୍ଗୀୟ କବି ବିଷ୍ଣୁ ଦେ ଓ ଅଧ୍ୟାପିକା କବୟିତ୍ରୀ ନବନୀତା ଦେବସେନ୍ । ନବନୀତାଙ୍କର କବିତାଠାରୁ ମୋତେ ଅଧିକ ଆକୃଷ୍ଟ କରିଥିଲା ତାଙ୍କର ଉଚ୍ଛଳ ସାହିତ୍ୟ ପ୍ରେମ, ଯାହା କେବଳ ବଂଗ ସାହିତ୍ୟ ପ୍ରତି ନୁହେଁ, ସମଗ୍ର ଭାରତୀୟ ସାହିତ୍ୟ ପ୍ରତି ରହିଥିଲା । ସେ ପ୍ରଥମେ ମୋ ସାଙ୍ଗରେ ଦେଖା କରିବାକୁ ଆସିଥିଲେ ଜଣେ ବିଶିଷ୍ଟ ଲେଖକ ହିସାବରେ, ଯେତେବେଳେ ମୁଁ କଲିକତାରେ ଥିଲି, ପଶ୍ଚିମବଂଗର ଆକାଉଣ୍ଟାଣ୍ଟ ଜେନେରାଲ୍ ହୋଇ ଏବଂ ଓଡ଼ିଆ ସାହିତ୍ୟ ବିଷୟରେ ଅନେକ କିଛି ଜାଣିବାକୁ ଚାହିଁଥିଲେ । ୧୯୭୨ରେ 'ଜୀବନରଂଗ' ସାହିତ୍ୟସଂସ୍ଥା ଗୋଟିଏ ଉପାୟନ ବଢ଼ାଇ ଦେଇଥିଲେ ମୋ ହାତକୁ ଏବଂ ୧୯୭୪ରେ ମୋତେ ପୁରସ୍କାରଟିଏ ମିଳିଥିଲା 'ପ୍ରଜାତନ୍ତ୍ର ପ୍ରଚାର ସମିତି'ଙ୍କ ଠାରୁ ତାଙ୍କ ବିଷୁବ ସମ୍ମିଳନୀରେ । ୧୯୭୪ରେ ଔପନ୍ୟାସିକ ବିଭୂତି ପଟ୍ଟନାୟକ ମଧ୍ୟ ଗୋଟିଏ ସାକ୍ଷାତ୍କାର ପ୍ରକାଶ କରିଥିଲେ ତାଙ୍କ ପତ୍ରିକା 'ଗଳ୍ପ'ରେ ଯେଉଁଥିରେ ସେ ଉଦୀୟମାନ ଗାଳ୍ପିକ କିଶୋରୀଚରଣଙ୍କ ପ୍ରତି ତାଙ୍କର ଉଚ୍ଛ୍ୱସିତ ସାଧୁବାଦ ଜଣାଇଥିଲେ, ସେଥିର ପ୍ରାକ୍ କଥନରେ । ଇତ୍ୟାଦି ।

'ସ୍ୱୀକୃତି ଆଉ କେଉଁ ଧାତୁରେ ଗଢ଼ା ?' ବୋଲି ମୋତେ ଅବଶ୍ୟ ପଚାରିବା ଉଚିତ । ତଥାପି ମୋର ସେତେବେଳେ ମନେ ହେଉଥାଏ ଯେ ଯଦିଓ ମୁଁ ବେଶ୍ ପରିଚିତ ହୋଇ ଗଲିଣି ସାହିତ୍ୟିକ ମହଲରେ ଏବଂ ମୋତେ ଅଳ୍ପବହୁତ ପ୍ରଶଂସା ମିଳିଛି ମୋର ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣ ଯୋଗୁଁ, ମୋର ଭାବମୂର୍ତ୍ତି ଯଥାବିଧି ଗ୍ରହଣୀୟ ହୋଇପାରି ନାହିଁ ସାହିତ୍ୟର କର୍ତ୍ତୃପକ୍ଷମାନଙ୍କ ଦରବାରରେ । ମନେ ହେବ ମୁଁ ମୁଖ୍ୟସ୍ରୋତରୁ ଦୂରେଇ ହୋଇ ରହିଥିବା ଗୋଟିଏ ସଂଭ୍ରାନ୍ତ ଓ ମଧ୍ୟବିତ୍ତ ଲେଖକ, ଯେ ତାର ସୀମିତ ପରିସର ଭିତରୁ ମୁକୁଳି ଆସିପାରୁ ନାହିଁ । ତେଣୁ ସେ 'ଆମରି ଭିତରୁ ଜଣେ' ନୁହେଁ ଏବଂ ତାକୁ ଅନୁରୂପ ସ୍ୱୀକୃତି ମିଳିବା ଉଚିତ ନୁହେଁ । ହଉ, ନ ହେଲା ନାହିଁ, ଆଇ ଡୋଣ୍ଟ୍ କେୟାର୍ ।

ଦୁଃଖର ବିଷୟ ଏହିପ୍ରକାର ଗୋଟାଏ ଅଭିମାନିଆ ସ୍ୱର ଗୁମୁରି ଉଠୁଥିଲା ସେତେବେଳେ ମୋ ମନ ଭିତରେ, ଯେତେବେଳେ ମୁଁ ମୁଠେଇ ଧରିଲି ଆଫ୍ରିକାରୁ ମିଳିଥିବା ନିମନ୍ତ୍ରଣ ପତ୍ର । ଉଚିତରୁ ଅଧିକ ଉତ୍ସାହର ସହ । ସତେକି ଏଇ ଗୋଟାଏ ମହାସ୍ୱୀକୃତି ମିଳିଯାଇଛି ମୋତେ । ଅନ୍ତତଃ ମୋର ବୃତ୍ତିଗତ ଜୀବନର । ଧନ୍ୟବାଦ ।

ତା ସାଙ୍ଗକୁ ଗୋଟାଏ ପିଲାଳିଆ ଭାବ ଆସୁଥିଲା ମୋ ମନରେ, ଯେ ଆଫ୍ରିକା ମାନେ ଆଡ୍‌ଭେଂଚର୍ । ପାଶ୍ଚାତ୍ୟ ତଥା ପ୍ରାଚ୍ୟ ଜଗତଠାରୁ ସଂପୂର୍ଣ୍ଣ ଭିନ୍ନ ଗୋଟାଏ ଅଂଧାରି ମୁଲକର ପ୍ରତ୍ୟକ୍ଷ ଅନୁଭବ । ସେଠି ଆଧୁନିକ ସଭ୍ୟତାର ଆଲୁଅ ଆସି ପହୁଂଚିଛି ଏବେ ଏଇ କାଲି ସକାଳେ ଏବଂ ମୁଁ ମଧ୍ୟ ସେଇ ସଭ୍ୟତାର ବାର୍ତ୍ତାବହ । ମୁଁ ଆସିଛି ପରା ଆଧୁନିକ ହିସାବକିତାବ ଓ ବିତ୍ତୀୟ ପ୍ରଶାସନ (Modern Accounts and Financial Administration) ଦିଗରେ ତାଙ୍କୁ କିଛି ଶିଖେଇବି ବୋଲି ? ତେଣୁ ଗୋଟାଏ ମିଶନାରୀ ସୁଲଭ ଉଦାର ଉଚ୍ଚମନ୍ୟ ଭାବ ମଧ୍ୟ ଆସୁଥିଲା ମୋ ମନରେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସ୍ୱାଜିଲ୍ୟାଣ୍ଡ୍ । ଦକ୍ଷିଣ ଆଫ୍ରିକାରେ ଥିବା ଛୋଟିଆ ରାଜ୍ୟଟିଏ, ଯାହା ପୂର୍ବେ ବ୍ରିଟିଶ ସାମ୍ରାଜ୍ୟର କର୍ତ୍ତୃତ୍ୱରେ ଥିଲା, କିନ୍ତୁ ବର୍ତ୍ତମାନ ତାଙ୍କ ନିଜ ରାଜା ସୋବୁଜାଙ୍କ ଉଦାର ରାଜଛତ୍ର ତଳେ ରହି ଯଥାଶୀଘ୍ର ଆଧୁନିକ, ଉନ୍ନତ ଏବଂ ସମୃଦ୍ଧ ହେବାକୁ ବସିଛି । ଉତ୍ତମ । କେବଳ ସାମ୍ରାଜ୍ୟର ବଦଳରେ ଆସିଥିବା କମନ୍‌ୱେଲ୍‌ଥ୍ ନୁହେଁ, ଜାତିସଂଘ (UNO), ତଥା ସମଗ୍ର ଗଣତାନ୍ତ୍ରିକ ପୃଥିବୀର ଶୁଭଦୃଷ୍ଟି ପଡ଼ିଥିଲା ସେତେବେଳେ ଏଇ ରାଜ୍ୟ ଉପରେ । କାରଣ ଭୟ ହେଉଥିଲା ଯେ ତାକୁ ଘଣ୍ଟ ଘୋଡ଼େଇ ରଖି ଯଥାବିଧି ସାହାଯ୍ୟ ନ କଲେ ତାର ଦକ୍ଷିଣକୁ ଥିବା ଭେଦଭାବାପନ୍ନ, ହେଲେ ସମୃଦ୍ଧ, ରିପବ୍ଲିକ୍ ଅଫ୍ ସାଉଥ୍ ଆଫ୍ରିକା ଗିଳିଦେବ ତାକୁ । ସେହି ଉଦ୍ଦେଶ୍ୟରେ ଜାତିସଂଘ ଓ କମନ୍‌ୱେଲ୍‌ଥ ସମେତ ବିଭିନ୍ନ ଦେଶରୁ ଆସିଥିବା ବିଶେଷଜ୍ଞ ମାନେ ସେଠି ଭିଡ଼ ଜମେଇଥିଲେ । ଏବଂ ମୁଁ ହେଲି ତାଙ୍କରି ଭିତରୁ ଜଣେ । ଅନ୍ୟତମ ଉପକାରୀ ବଂଧୁଟିଏ । ମୁଁ ମୋର ଏହି ଭୂମିକାକୁ ବରଣ କଲି ଆନ୍ତରିକ ନିଷ୍ଠା ଏବଂ ଆଗ୍ରହର ସହିତ ।

ପାହାଡ଼ପର୍ବତ ଘେରା ଏଇ ରାଜ୍ୟଟି ମଧ୍ୟ ସୁନ୍ଦର । ଏବଂ ସାମାନ୍ୟ ଉଚ୍ଚ ଭୂଇଁରେ ଥିବାରୁ ପ୍ରାୟଶଃ ସମଶୀତୋଷ୍ଣ । ପାଞ୍ଚଛଅଦିନ ଖରା ହେଲା ପରେ ଅସରାଏ ବର୍ଷା କଂପେଇ ଦିଏ ତାର ରାଜଧାନୀ ଆମ୍ବାବେନ୍ (Ambabane) କୁ ଯେଉଁଠି ଆମେ ଥିଲୁ, ପ୍ରଚଣ୍ଡ ବିଜୁଳି ଘଡ଼ଘଡ଼ି ସହ । ଏବଂ ତାର ନୀଳଶ୍ୟାମଳ ତନୁକୁ ଧୋଇ ଧାଇ ଆହୁରି ନିର୍ମଳ ଚିକିଚିକି କରି ଛାଡ଼ି ଯାଏ । ଚିକିଚିକି ଆଉ କଥାକୁହା । ସ୍ୱାଜି ପିଲାଙ୍କର ଚିକ୍କଣ କଳା ମୁହଁରେ ଝଲି ଉଠୁଥିବା ତୋଫା ଚାହାଣୀ ପରି ।

ରୁହନ୍ତୁ, ଆମ୍ଭାବେନ୍‌ରେ ଆସି ପହଞ୍ଚିବା ପୂର୍ବରୁ କହିଦିଏ ପଦେ ଆମର ଯାତ୍ରାପଥ ବିଷୟରେ । ଉଡ଼ାଜାହାଜରେ ଆସିଲୁ ଆମେ ସ୍ୱାମୀ-ସ୍ତ୍ରୀ ଦି'ଜଣ । କେଉଁ ପିଲା ନାହାନ୍ତି ଏଥର ଆମ ସାଙ୍ଗରେ । ବଡ଼ଝିଅ ତ ବାହାସାହା ହୋଇ କଲିକତାରେ ଅଛି ଏଇକ୍ଷଣି, ତାର ସ୍ୱାମୀ ଓ ଦି'ପିଲାଙ୍କୁ ନେଇ । ଏବଂ ଅନ୍ୟମାନେ ଅଛନ୍ତି ଦିଲ୍ଲୀରେ, ଗ୍ରାଜୁଏଟ୍ ଏବଂ ପୋଷ୍ଟଗ୍ରାଜୁଏଟ ପଢ଼ାର ବିଭିନ୍ନ ସ୍ତରରେ । ତେଣୁ ଏଥର ମିଷ୍ଟର୍ ଦାସଙ୍କର ଅବକାଶ ନଥିଲା ତାଙ୍କ ପରିବାର-ପୁରୁଷପଣର ଚମତ୍‌କାରିତା ଦେଖାଇବା ଲାଗି । ଯାହା ସଂଭବ ହୋଇଥିଲା ଆମେରିକା ଅଭିମୁଖୀ ଜାହାଜରେ । ଏଇ ପ୍ରଥମ ଥର ପାଇଁ ଆମେ ପୂରାପୂରି ଏକୁଟିଆ ରହିବୁ ଆମ ଦି'ଜଣିଆ ନୀଡ଼ରେ । ମୁଁ କୁମକୁ ପରିହାସରେ କହିଲି ଯେ ଇଏ ହେଉଛି ଆମର ଦ୍ୱିତୀୟ ହନିମୁନ୍, ଯଦିଓ ପ୍ରଥମ ହନିମୁନ୍‌ର ସୌଭାଗ୍ୟ ମିଳିନଥିଲା ଆମକୁ । ଏବଂ ଆଶା କଲୁ ଯେ କଥାଟା ନିହାତି ନିରର୍ଥକ ହୋଇ ରହିବ ନାହିଁ ।

ସ୍ୱାଜିଲାଣ୍ଡକୁ ଆସିବା ବାଟରେ ଦି'ଦିନ ରହିବାକୁ ପଡ଼ିଥିଲା କେନିଆର ରାଜଧାନୀ ନାଏରୋବିରେ । ଏବଂ ସେଇଠି ପ୍ରଥମେ ବୁଝିଲୁ ଯେ ଆଜିର ଆଫ୍ରିକାକୁ ଅଂଧାର ମୁଲକ ବୋଲି ମନେ କରିବା କେତେ ଭ୍ରମାତ୍ମକ । କାରଣ ନାଏରୋବିକୁ ବିନା ଦ୍ୱିଧାରେ ଗୋଟିଏ ଆଧୁନିକ ମହାନଗର କହିବାରେ କାହାରି ଆପତ୍ତି ରହିବ ନାହିଁ । ବଡ଼ ବଡ଼ ଚଉଡ଼ା ରାସ୍ତା, ସୁସଜ୍ଜିତ ବଜାର ବିପଣୀ, ଧାଡ଼ି ଧାଡ଼ି ହୋଇ ଚାଲିଥିବା କାର ବସ୍ ଇତ୍ୟାଦିର ଗହଳି .... ଆଧୁନିକ ସହରର କେଉଁ ରୂପଗୁଣ ଦିଶିବାକୁ ନାହିଁ ଏଠି ? ଏବଂ ଯେଉଁ ସ୍ତ୍ରୀପୁରୁଷ ଚାଲିଛନ୍ତି ରାସ୍ତାର ଫୁଟ୍‌ପାଥ୍‌ରେ, ମଧ୍ୟ ହସୁଛନ୍ତି ବେଳେବେଳେ ଖିଲିଖିଲି ହୋଇ, ତାଙ୍କ ବେଶଭୂଷା ଏବଂ ଆଚାର ବ୍ୟବହାର କେଉଁ ହିସାବରେ ଆମ ରାଜଧାନୀ ନୂଆଦିଲ୍ଲୀର ଜନପଥରେ ଠେଲାପେଲା ହୋଇ ଚାଲିଥିବା ଜନତାଠାରୁ ଊଣା ବୋଲି କହିବ, ସମୃଦ୍ଧି ଅବା ସୁଖବୋଧର ଅନୁମାନକୁ ନେଇ ? ଭାରତୀୟ ଦୂତାବାସରେ କାମ କରୁଥିବା ଜଣେ ଭଦ୍ରଲୋକ ଆମର ସହାୟକ ହୋଇଥିଲେ ଦି'ଦିନ ପାଇଁ । ସେ ମୋର ଉପରୋକ୍ତ ପ୍ରଶଂସାମୂଳକ ମଂତବ୍ୟର ସମର୍ଥନ କଲେ । କହିଲେ- ହଁ ବେଶ୍ କିଛି ଆଗେଇ ଆସି ପାରିଛି ଏଇ ଦେଶ ସ୍ୱାଧିନତା ପରେ ଏବଂ ସେଥିପାଇଁ ୟାଙ୍କର ନେହେରୁବାଦୀ ନେତା ଜୋମୋ କେନିୟାଟାଙ୍କୁ ଧନ୍ୟବାଦ ଦେବା ଉଚିତ । କିନ୍ତୁ ଆଜ୍ଞା, ନାଏରୋବି କେନିୟାର ରାଜଧାନୀ ହୋଇପାରେ, କିନ୍ତୁ ଦେଶର ଦର୍ପଣ ନୁହେଁ । ଦୀପତ୍ତଳେ ଅଂଧାର ବୋଲି ଯେଉଁ କଥା ଅଛି ଆମର ତା'ଏଠି ଅକ୍ଷରେ ଅକ୍ଷରେ ସତ୍ୟ । ୟା'ପଛକୁ ଅଂଧାର ଅଛି ଆଜ୍ଞା, ଅନେକ ଅଂଧାର ଏବଂ ତାକୁ ଘୁଂଚାଇବାରେ ଅନେକ ଦିନ ଲାଗିବ ।

ନିରାଶ ହେଲି ନାହିଁ । ଆମ ଭାରତର ପରିସ୍ଥିତି ବିଶେଷ ଭିନ୍ନ ବୋଲି କହି ହେବ ନାହିଁ । କିନ୍ତୁ ଆମେ ଭାଇ-ଭାଇ ଆଗେଇ ଚାଲିଛୁ, ସ୍ୱାଧୀନତା ପାଇଲା ପରେ, ଜଣକ

ପଛକୁ ଜଣେ, ନେହେରୁ-କେନିୟାଟାଙ୍କ ଆଦର୍ଶକୁ ଅନୁସରଣ କରି । ନା କଣ କହୁଛନ୍ତି ? - ପଚାରିଲି ବଂଧୁଙ୍କୁ । ସେ କିନ୍ତୁ କେବଳ ହସି ଦେଲେ ଟିକିଏ ।

ପରେ ବୁଝିଲି ସେ କାହିଁକି ଏମିତି ହସିଲେ । କାରଣ ସଂଜବେଳକୁ ଯେତେବେଳେ ନଗରଭ୍ରମଣ ପାଇଁ ବୁଲି ବାହାରିଲୁ ଆମେ ଦି'ଜଣ, ତାଙ୍କଠୁ ବିଦାୟ ନେଲା ପରେ, ସେ ଗୋଟାଏ ଆର୍ତ୍ତନାଦ କଲା ପରି ମନେ ହେଲା । କହିଲେ - ''ନାଇଁ ଆଜ୍ଞା, କରିବେ ନାହିଁ ସେକଥା । ଅନ୍ତତଃ ମ୍ୟାଡ଼ାମ୍‌ଙ୍କୁ ପାଦରେ ଚଲେଇ ନେବେ ନାହିଁ କେଉଁଠିକି, ସଂଜ ବୁଡ଼ିଲା ପରେ ।''

''କାହିଁକି ?''

''କାହିଁକି ନା - କ୍ଷମା କରିବେ, ମୁଁ ଆପଣଙ୍କୁ ଡରଉଛି ବୋଲି ଭାବିବେ ନାହିଁ, ଯେକୌଣସି ଇଣ୍ଡିଆନ୍‌କୁ ପଚାରିଲେ ସେ ମଧ୍ୟ ଏଇ ପରାମର୍ଶ ଦେବ । କାରଣ ସୁବିଧା ପାଇଲେ ସେମାନେ ମ୍ୟାଡ଼ାମ୍‌ଙ୍କୁ .... ଅନ୍ତତଃ ତାଙ୍କ ବେକରୁ ସୁନାହାର କି କାନରୁ ସୁନାର ଦୁଲ୍ ଛିଣ୍ଡେଇ ଆଣିବେ, ଆଉ ତାର କୌଣସି ପ୍ରତିକାର ନାହିଁ ।''

''କିଏ ସେମାନେ ? କୋଉ ଚୋରଡକାଏତଙ୍କ ଦଳ ?''

''ନାଇଁ ଆଜ୍ଞା, ଏଠିକାର ସାଧାରଣ ଲୋକେ । ଆପଣ ଜାଣନ୍ତି ନାହିଁ ସେମାନେ କେତେ ଘୃଣା କରନ୍ତି ଆମ ଇଣ୍ଡିଆନ୍‌ମାନଙ୍କୁ ।''

ଘୃଣା କରନ୍ତି ଇଣ୍ଡିଆନ୍‌ମାନଙ୍କୁ ? ମୁଁ ଆକାଶରୁ ଖସିଲି । ବଲବଲ ହୋଇ ଅନେଇ ରହିଲି ବଂଧୁଙ୍କ ମୁହଁକୁ ।

ସେଇଠୁଁ ଆମର ଚର୍ଚ୍ଚା ହେଲା କିଛି ସମୟ ଏହି ବିଷୟରେ । ଯେ ଏଭଳି ଘୃଣାଭାବ କେଉଁଠୁ ଆସିଲା ପ୍ରାୟ ସମଦଶାପନ୍ନ ଭାଇଭାଇଙ୍କ ଭିତରେ, ଏବଂ କିଏ ସେଥିପାଇଁ ଦାୟୀ । କିଛି ମତଭେଦ ମଧ୍ୟ ରହିଲା ଆମ ଭିତରେ । ହେଲେ ମୋର ବୁଝିବାରେ ବାକୀ ରହିଲା ନାହିଁ ଯେ ବେପାର କରିବା ପାଇଁ ଏଠିକି ଆସିଥିବା ଭାରତୀୟ ଭାଇମାନଙ୍କୁ ସେମାନେ ଭଗାରି ବୋଲି ମଣିଲେ ଏବଂ ତାର ପ୍ରଧାନ କାରଣ ହେଉଛି ଏଇ, ଯେ ଆମେ ଆମ ଉଂଚ ଆସନରୁ ଓହ୍ଲେଇ ଆସିବାକୁ ଚାହିଁଲୁ ନାହିଁ ତାଙ୍କ ସାଙ୍ଗରେ ମିଶିବା ଲାଗି । ଆମ ଉଚ୍ଚମନ୍ୟତା ହିଁ ଆମର କାଳ ହେଲା । ତା'ର ଆଧାର ଆମର ବୈଷୟିକ ସମୃଦ୍ଧି ହେଉ ଅବା ସାଂସ୍କୃତିକ ଉତ୍‌କର୍ଷ । ଅବା ଆଉ କିଛି ।

ଏଇ 'ଆଉ କିଛି'ର ଏକ ହାସ୍ୟାସ୍ପଦ ନିଦର୍ଶନ ମିଳିଗଲା ଆମକୁ ଆମ୍ୱାବେନ୍‌କୁ ଆସିଲା ପରେ । ଯାହା ଅନୁଭୂତ ହୀନମନ୍ୟତାର ଏକ ବିକୃତ ଭିନ୍ନ ରୂପ ଛଡ଼ା ଆଉ କିଛି ନୁହେଁ । କାଣୀ ବିରାଡ଼ି ଅସରପା ଉପରେ କାଢ଼ ଦେଖେଇଲା ପରି । ଅଳ୍ପଦିନ ହେଲା ଆସି ପହୁଂଚିଛୁ ଆମେ, ଆମ ପାଇଁ ନିର୍ଦ୍ଦିଷ୍ଟ ହୋଇଥିବା ଆପାର୍ଟମେଣ୍ଟ୍ ହାଉସ୍‌ରେ । ପାଖ ଘରେ

ଜଣେ ଭାରତୀୟ ପରିବାର ଅଛନ୍ତି ବୋଲି ଜାଣିଲାରୁ, ଆମେ ଯାଇଥିଲୁ ତାଙ୍କ ସାଙ୍ଗରେ ଦେଖା କରିବା ଲାଗି । 'ବିଶେଷଜ୍ଞ', ପତି-ପତ୍ନୀ ଦୁଇଜଣ ଯାକ । କଥା ପଡୁ ପଡୁ ପତ୍ନୀ କହିଲେ ଦୁଃଖ କଲାପରି, ଯେ ତାଙ୍କୁ ଯଥାଶୀଘ୍ର ଏଇ ପଡ଼ା ଛାଡ଼ି ଯିବାକୁ ପଡ଼ିବ । କାହିଁକି, କଣ ହେଲା କି ? ବୁଝିବାକୁ ଡେରି ଲାଗିଲା ଆମକୁ, ହେଲେ ବୁଝିଲା ପରେ କାବା ହୋଇ ଉଠିଲୁ । କଥା ହେଉଛି ଯେ ଭଦ୍ରମହିଳା ଆସନ୍ନପ୍ରସବା । ଏବଂ ତାଙ୍କୁ ଭୟ ଲାଗୁଛି । କାରଣ ସକାଳୁ ଉଠିଲା କ୍ଷଣି ତାଙ୍କ ଆଖିରେ ପଡୁଛି କଳା କୁଚୁକୁଚୁ ସ୍ୱାଜି ପିଲାମାନଙ୍କ ଚେହେରା । ସେଥିର ପ୍ରଭାବ ପଡ଼ିବ ନାହିଁ ତ ତାଙ୍କ ଗର୍ଭରେ ଥିବା ପିଲା ଉପରେ ? ତାଙ୍କର ଏଇ ପ୍ରଥମ ସଂତାନ ଉପରେ ? ହେ ଭଗବାନ୍ । ସେଇଥିପାଇଁ ସେ ଗୋଟିଏ ଉପଯୁକ୍ତ ପଡ଼ା ଖୋଜୁଛନ୍ତି, ଯେଉଁଠି ସେ ଏଇ ସଂଭାବିତ କୁପ୍ରଭାବରୁ ମୁକ୍ତ ହୋଇ ପାରିବେ । ଅର୍ଥାତ୍ ଗୋରାଙ୍କ ଆଖିରେ କଳା ବୋଲାଇଲେ କଣ ହେବ, ଆମେ ଏତେ କଳା ନୋହୁଁ ଏମାନଙ୍କ ପରି । ଏବଂ ଆମର ମଧ୍ୟ ଅଧିକାର ଅଛି ଗୌରବର୍ଣ୍ଣର ଆଗ୍ରହୀ ହେବା ପାଇଁ । କିଛି ଭୁଲ୍ ଅଛି ଏଥିରେ ?

ଯାହାହେଉ ସ୍ୱାଜିଲାଣ୍ଡରେ ରହିବାର ସେଇ ଦୁଇବର୍ଷ (୧୯୭୫-୭୭) ଭିତରେ ନାଏରୋବି ଜାତୀୟ କୌଣସି ଆଶଂକାର ସମ୍ମୁଖୀନ ହେବାକୁ ପଡ଼ିନାହିଁ ଆମକୁ, ଭାରତୀୟ ହିସାବରେ । କିମ୍ବା ଏଇ କଳା-ଗୋରା ବୈଷମ୍ୟକୁ ନେଇ କୌଣସି ଅପ୍ରିୟ ଅନୁଭୂତିର ଶିକାର ହେବାକୁ ପଡ଼ିନାହିଁ । ସେଥିପାଇଁ କେବଳ ସ୍ୱାଜି ଭାଇଭଉଣୀଙ୍କ ନମନୀୟ ଚରିତ୍ର କିମ୍ବା ଆମର ସ୍ୱଗୁଣକୁ ଧନ୍ୟବାଦ ଦେବା ଉଚିତ ନୁହେଁ । ସେଠି କେଉଁ ସୁନିର୍ଦ୍ଦିଷ୍ଟ ଭାରତୀୟ ସଂପ୍ରଦାୟ ନ ଥିଲା । ଥିଲା ଭାରତୀୟ, ପାକିସ୍ଥାନୀ, ଜର୍ମାନ୍, ଡଚ୍, ବେଲ୍‌ଜିଆନ୍, ଅଷ୍ଟ୍ରେଲିୟାନ୍ ଇତ୍ୟାଦି ଇତ୍ୟାଦିଙ୍କୁ ନେଇ ଏକ ବିଚିତ୍ରବର୍ଣ୍ଣା ଆନ୍ତର୍ଜାତିକ ସଂପ୍ରଦାୟ । ତଥାକଥିତ ବିଶେଷଜ୍ଞମାନଙ୍କ ଦଳ, ଯେଉଁମାନେ ଏଠିକି ଆସିଛନ୍ତି ମାତ୍ର କେଇଟା ବର୍ଷ ପାଇଁ, ଯେଝା ଯେଝା କଣ୍ଟ୍ରାକ୍ଟ ଅନୁଯାୟୀ, ତା'ପରେ ଫେରିଯିବେ ସ୍ୱଦେଶକୁ । ବେଶ୍ କିଛି ଟଙ୍କା ରୋଜଗାର କରି ସାରିଲା ପରେ । ତେଣୁ ଦେଶର ଅଧିବାସୀ ସ୍ୱାଜିମାନଙ୍କ ସାଂଗରେ, ତଥା ସହକର୍ମୀ ଆନ୍ତର୍ଜାତିକ ଭାଇଭଉଣୀଙ୍କୁ ନେଇ ଭଲରେ ଭଲରେ କେଇଟା ଦିନ ବିତେଇ ଦେଲେ ଯାଏ ।

କିନ୍ତୁ ଏଇ ସହଜ ସ୍ୱଚ୍ଛନ୍ଦ ସଂପର୍କ ମଧ୍ୟ ତିଷ୍ଠି ପାରି ନଥିଲା ଗୋଟିଏ ଜାଗାରେ । ସ୍ୱାଜିଲାଣ୍ଡରେ ନୁହେଁ, ସେଠିକି ଆସିବା ଏବଂ ସେଠୁ ଫେରିଯିବା ବାଟରେ ଯେତେବେଳେ ଆମକୁ ତତ୍‌କାଳୀନ ଗୋରା ଅଧ୍ୟୁଷିତ ରିପବ୍‌ଲିକ୍ ଅଫ୍ ସାଉଥ୍ ଆଫ୍ରିକାର ଜୋହାନ୍‌ସ୍‌ବର୍ଗ ଏୟାର ପୋର୍ଟରେ ଓହ୍ଲାଇବାକୁ ପଡ଼େ ଏବଂ ସେଠି ଅପେକ୍ଷା କରିବାକୁ ହୁଏ ଆଉ ଗୋଟାଏ ପ୍ଲେନ୍ ଧରିବା ପାଇଁ । ଏୟାର ପୋର୍ଟରେ ସେଇ ଘଣ୍ଟାଏ ଦି'ଘଣ୍ଟାର ରହଣି ଆମକୁ ଚେତାଇ ଦିଏ ଯେ ଆମେ ଇଣ୍ଡିୟାନ୍, ଏଠିକାର ଏଇ ଗୋରା ଶାସକପଣର ବିରୋଧୀ । ସେହେତୁ ଏୟାରପୋର୍ଟ୍‌ର ରକ୍ଷୀମାନେ ଆମକୁ କଟମଟ କରି ଅନାନ୍ତି, ଅଯଥାରେ ଜେରା କରନ୍ତି

ଏବଂ ସିକ୍ୟୁରିଟୀ ନାଆଁରେ ଆମର ଦେହମୁଣ୍ଡ ଏବଂ ଜିନିଷପତ୍ରକୁ ଏପରି ଭାବରେ ପରୀକ୍ଷା କରନ୍ତି ଯେ ରାଗ ଆସେ ମନରେ । ହେଲେ ଆମେ ସେଇ ରାଗକୁ ସଂଭାଳି ନେଉ କୌଣସି ମତେ । ନହେଲେ ସେମାନେ ଆମକୁ ଆଇନ୍‌କାନୁନ୍ ଦେଖାଇ ଯଥେଷ୍ଟ ହଇରାଣ କରିପାରନ୍ତି ବୋଲି କେତେକ ଭୁକ୍ତଭୋଗୀ ଭାରତୀୟ ବଂଧୁ ଚେତାଇ ଦେଇଥିଲେ ଆମକୁ ।

ମୋଟ ଉପରେ ଆମର ଦୈନନ୍ଦିନ ବ୍ୟକ୍ତିଗତ ଜୀବନକୁ ଦ୍ୱିତୀୟ ହନିମୁନ୍ ବୋଲି କୁହ ବା ନ କୁହ, ତାହା ବୋଧହୁଏ ଏଥିଁ ଅଧିକ ଉପଭୋଗ୍ୟ ହୋଇ ପାରି ନଥାଆନ୍ତା, ଏକ ନୂଆ ସଂସାରର ବାତାବରଣକୁ ନେଇ । ଅର୍ଥାଭାବ ନ ଥିଲା । ଯଥେଷ୍ଟ ଅବସର ମିଳୁଥିଲା ଘରେ ବସି ଆରାମ କରିବା ପାଇଁ, ଅଥବା ଦୋକାନବଜାରରେ ବୁଲି ଆସିବା ପାଇଁ । ଏବଂ ପିଲାମାନଙ୍କଠାରୁ ଯେଉଁ ଚିଠି ମିଳୁଥିଲା, ସେଥିରୁ ମନେ ହେଉଥିଲା ତାଙ୍କର କୌଣସି ଅଭାବ ଅସୁବିଧା ନାହିଁ । ଯଦିଓ ବେଳେବେଳେ ସନ୍ଦେହ ହେଉଥିଲା ଯେ ଏଭଳି ସୁଖସ୍ୱାଚ୍ଛନ୍ଦ୍ୟର ଇସ୍ତାହାର ସତ ହୋଇ ନପାରେ, ସେମାନେ ଜାଣିଶୁଣି ଲେଖୁଛନ୍ତି ଏମିତି, ଦୂର ବିଦେଶରେ ଥିବା ବାପାବୋଉଙ୍କୁ ହଇରାଣ ନ କରିବା ଲାଗି ।

ଆଉ ଆମର ବାହାର ଦୁନିଆଁ ? ପରିବେଶ ଏବଂ ସାମାଜିକ ଜୀବନ ? ସେ ବିଷୟରେ କିଛି କହିବା ଆବଶ୍ୟକ ।

ପ୍ରଥମେ ଏଇ ଛୋଟିଆ ସୁନ୍ଦର ସହର ଆମ୍ୱାବେନ୍, ଯାହାର ଉଚିତ ଉଚ୍ଚାରଣ କେବଳ ସ୍ୱାଜିମାନେ ହିଁ କରିପାରିବେ । ଏତେ ଛୋଟିଆ ଯେ ପ୍ରାୟ ଘଣ୍ଟାକ ଭିତରେ ତାର ବଜାର ବିପଣୀରେ ବୁଲି ଆସି ହେବ । କିନ୍ତୁ ଆଶ୍ଚର୍ଯ୍ୟ, ତାର ରୂପଗୁଣ ଏତେ ଉଚ୍ଚ ଧରଣର ଯେ ତାକୁ ୟୁରୋପ-ଆମେରିକାର ଯେକୌଣସି ଛୋଟ ସହରର ମାର୍କେଟ ପ୍ଲେସ୍ ସାଙ୍ଗରେ ତୁଳନା କରିହେବ । ଗୋଟିଗୋଟିକିଆ ଦୋକାନଠାରୁ ଆରମ୍ଭ କରି ସୁପର୍ ମାର୍କେଟ୍ ଯାଏଁ । ଯେତେବେଳେ ଭାରତର କୌଣସି ବଡ଼ ସହରରେ ମଧ୍ୟ ସୁପରମାର୍କେଟଟିଏ ନ ଥିଲା ବୋଲି ମୋର ବିଶ୍ୱାସ । ଏବଂ ଯନ୍ତ୍ରପାତି ଠାରୁ ଆରମ୍ଭ କରି ଖାଦ୍ୟ, ପାନୀୟ, ପୋଷାକପତ୍ର ଏବଂ ଦୈନିକ ବ୍ୟବହାର ଉପଯୋଗୀ କେଉଁ ବସ୍ତୁ ମିଳୁନାହିଁ ଏଠି, ଯାହା ତମକୁ କେଉଁ ପାଶ୍ଚାତ୍ୟ ଦେଶରେ ମିଳିପାରିଥାଆନ୍ତା ? ହଁ, ଏଥିମଧ୍ୟରୁ କ୍ୱଚିତ କେଉଁ ବସ୍ତୁ ସ୍ୱାଜିଲାଣ୍ଡରେ ନିର୍ମିତ । ସବୁକିଛି ବାହାରୁ ଅଣା ହୋଇଛି, ପଡ଼ୋଶୀ ଏବଂ ସମୃଦ୍ଧ ରିପବ୍‌ଲିକ୍ ଅଫ ସାଉଥ୍ ଆଫ୍ରିକା ସମେତ ବିଦେଶରୁ । ଏବଂ ଦୋକାନ ବଜାରର ମାଲିକମାନେ ପ୍ରାୟ ସମସ୍ତେ ବିଦେଶୀ । ସ୍ପାନିଶ୍, ଡଚ୍, ବ୍ରିଟିଶ୍ ଏବଂ ଦକ୍ଷିଣ ଆଫ୍ରିକାର ଡଚ୍ ସଂଭୂତ ଆଫ୍ରିକାନର୍ । ତେଣୁ ଏଇ ସମୃଦ୍ଧି ପରମୁଖାପେକ୍ଷୀ ଏବଂ କୃତ୍ରିମ ବୋଲି କହିବାକୁ ପଡ଼ିବ । ମଧ୍ୟ ଆମ୍ୱାବେନ୍‌ରୁ କିଛି ଦୂରକୁ ଚାଲିଗଲେ ସ୍ପଷ୍ଟ ଦିଶିଯିବ ତମକୁ, ଦୀପତଳର କିଟିକିଟିଆ ଅଂଧାର । ବଣଜଙ୍ଗଲ ଭିତରେ ମୁଣ୍ଡ ଟେକିଥିବା ବାଡ଼ବତାପତରର ତିଆରି କୁଡ଼ିଆ ଘରମାନ । ଏବଂ ତା ପାଖରେ

ଚଳପ୍ରଚଳ ହେଉଥିବା ଦରଲଂଗଳା, ହେଲେ ମୁଣ୍ଡରେ ଅନାବନା ଠେକୋଟିଏ ଭିଡ଼ିଥିବା (ହୁଏତ ପକ୍ଷୀପରଟିଏ ଖୋସା ହୋଇଥିବ ସେଥିରେ) ସ୍ୱାଜିପୁରୁଷ, ମୁଣ୍ଡରେ ଟୋକେଇ ବୋହିଥିବା କିନ୍ତୁ ଫ୍ରକ୍ ପିନ୍ଧା ଏବଂ ବେକରେ ମାଳୀହାର ଲମ୍ୱେଇଥିବା ସ୍ୱାଜି ନାରୀ, ଏବଂ ସଦା ହାସ୍ୟବନ୍ତ ଓ ପୂରାପୂରି ଲଂଗଳା ସ୍ୱାଜି ପିଲାମାନେ । ସେତେବେଳେ ମୁଁ ନିଜକୁ କୁହେ- ହେଉ, ଆମକୁ ବି କଣ ସେମାନେ ବାହାରୁ ଆମଦାନୀ କରି ଆଣିନାହାନ୍ତି ବର୍ତ୍ତମାନ ପାଇଁ ? କିନ୍ତୁ ଏଇ ହେଉଛି ପ୍ରଗତିର ପହିଲି ପାହାଚ । ନିଷ୍ଠା ଓ ଅଧ୍ୟବସାୟ ଅଛି ଏମାନଙ୍କର, ଉପରକୁ ଉଠିବା ପାଇଁ । ତେଣୁ ଧୀରେ ଧୀରେ ଦୃଶ୍ୟ ବଦଳିଯିବ ଏବଂ ଆମ୍ୱାବେନ୍ ସଦୃଶ ପରିବେଶ ସବୁଠି ମିଳିଯିବ ତମକୁ । ସେଇଠୁ ସ୍ୱାଜିଲାଣ୍ଡର ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଆହୁରି ଭଲ ଭାବରେ ଉପଭୋଗ କରିହୁଏ ।

ହେଲେ ଆମ୍ୱାବେନ୍‌ର ପୋଷାକପିନ୍ଧା ଏବଂ ଅଳ୍ପବହୁତ ଇଂରେଜି କହିପାରୁଥିବା 'ସଭ୍ୟ' ସ୍ୱାଜିମାନେ ମଧ୍ୟ କଣ ଆମ ସାମାଜିକ ଜୀବନରେ ସାମିଲ୍ ହୋଇପାରିଥିଲେ ? ନା । ଦୁଃଖର ସହିତ କହିବାକୁ ପଡୁଛି ଯେ ତା ସଂଭବ ହୋଇପାରିଲା ନାହିଁ । ଅଫିସ୍‌ରେ ଏକାଧିକ ଶିକ୍ଷିତ ସ୍ୱାଜି ସହକର୍ମୀମାନଙ୍କ ସହିତ ଯଥେଷ୍ଟ ସଂପର୍କ ରହିଥିଲା ନିଶ୍ଚୟ, ଯାହାର ଖିଅ ଧରି ଏକପ୍ରକାର ସାମାଜିକ ବଂଧୁତାର ସ୍ତରକୁ ଯାଇହେବ ବୋଲି ଭାବିବା ଉଚିତ, କିନ୍ତୁ ସେତିକ ହୋଇ ପାରିଲା ନାହିଁ । ମୋର କେତେକ ଭାରତୀୟ ବିଶେଷଜ୍ଞ ବଂଧୁମାନେ ହସି ହସି କହିଲେ ମୋର ବିଫଳତା ଦେଖି - କଅଣ ଭାବିଥିଲେ ଯେ ଆମେ ସମସ୍ତେ ଫେଲ୍ ମାରିଗଲୁ, ଆଉ ଆପଣ ଏକା ଆସି ପହୁଂଚିଯାଇଛନ୍ତି ଏଠି, ତାଙ୍କ ହୃଦୟକୁ ଜୟ କରି ନେବେ ବୋଲି ? କ୍ଷମା କରିବେ, ଇଏ ଇଣ୍ଡିଆ ନୁହେଁ । ଏବଂ ସ୍ୱାଜି ମଣିଷ ଭିନ୍ନ ଧାତୁରେ ଗଢ଼ା । ନା, ସେମାନେ ଖରାପ ନୁହଁନ୍ତି । ବରଂ ଅନେକ ହିସାବରେ ଆମଠୁ ଭଲ । କିନ୍ତୁ ସେମାନେ ଆମ ସାଙ୍ଗରେ ମିଶିବାକୁ ଚାହାନ୍ତି ନାହିଁ । ପୂର୍ବଚ୍ଛେଦ । ତାକୁ ତାଙ୍କର ଇନ୍‌ଫିରିଅରିଟ୍ କମ୍‌ପ୍ଲେକ୍ସ (ହୀନମନ୍ୟତା) କୁହ ବା ଆଉ ଯାହା । କିନ୍ତୁ ମୁଁ ତାଙ୍କର ଏଇ ନିର୍ଣ୍ଣୟାତ୍ମକ ପୂର୍ବଚ୍ଛେଦକୁ ମାନି ନେଇପାରେ ନୁହେଁ । ମନେ ପଡ଼େ ନାଏରୋବିର ଭାରତୀୟମାନଙ୍କ କଥା । ତାଙ୍କର ଇନ୍‌ଫିରିଅରିଟ୍ କମ୍‌ପ୍ଲେକ୍ସ, ନା ମୋର ଅନ୍ତର୍ନିହିତ ସୁପିରିଅରିଟି କମ୍‌ପ୍ଲେକ୍ସ (ଉଚ୍ଚମନ୍ୟତା) ? ନ ହେଲେ ମୁଁ କଣ ଆମ ଅଫିସ୍‌ର ଖୁସିବାସିଆ ସହକର୍ମୀ ମିଷ୍ଟର ଟୁଆଲାଙ୍କୁ ଆଉ ଥରେ ଡାକି ନ ଥାଆନ୍ତି ତାଙ୍କ ସ୍ତ୍ରୀଙ୍କୁ ସାଙ୍ଗରେ ଆଣି ଆମ ଘରେ ଚା ଖାଇବା ଲାଗି ? ଅଥବା ଥରକରୁ ବେଶୀ ମୁଁ ଯାଇ ନ ଥାଆନ୍ତି ତାଙ୍କ ଘରକୁ ? କିନ୍ତୁ ମୁଁ ବିଶେଷ ଚେଷ୍ଟା କଲି ନାହିଁ ସେଦିଗରେ । ଧରିନେଲି ଯେ ସେ ଆମର ପାରିବାରିକ ବଂଧୁ ହେବାକୁ ଚାହାନ୍ତି ନାହିଁ । ଏହାହିଁ କଣ ବାସ୍ତବ ସତ୍ୟ ନୁହେଁ, ଯାହାକୁ ମୁଁ ସହଜେ ସ୍ୱୀକାର କରିପାରୁ ନାହିଁ ?

ବଂଧୁ ନ ହୋଇପାରିଲେ ନାହିଁ, କିଭଳି ଧାରଣା ହେଲା ମୋର ତାଙ୍କ ସ୍ୱଭାବଚରିତ୍ର ଉପରେ, ଦୁଇବର୍ଷବ୍ୟାପୀ ଆମର ନିତିଦିନିଆ ହେଲମେଳ ଓ ଦିଆନିଆର ଅନୁଭୂତିକୁ ନେଇ ?

ପ୍ରଥମତଃ ମନେ ହେଲା ଯେ ଏମାନେ ଆଦୌ ଧଇଁସଇଁ ହେବାକୁ ଚାହାଁନ୍ତି ନାହିଁ । ଜଣେ ପତ୍ରକାର ବ୍ୟଂଗାତ୍ମକ ମନ୍ତବ୍ୟଟିଏ କରିଥିଲେ ଆମେରିକାର ସଭ୍ୟତା ବିଷୟରେ, ଯାହାକି ଊଣାଅଧିକେ ସମସ୍ତ ତଥାକଥିତ ସତ୍ୟ ଏବଂ ପ୍ରଗତିମୁଖୀ ସଂସାର ପ୍ରତି ପ୍ରଯୁଜ୍ୟ । ଯେ ''ସୁଖର ଅନୁଧାବନ'' (pursuit of happiness) ବୋଲି ଯେଉଁ ପଦଟିଏ ରହିଛି ତାଙ୍କ ରାଷ୍ଟ୍ରନୀତିର ତୃତୀୟ ମୂଳମଂତ୍ର ରୂପେ ତାହା ପ୍ରକୃତରେ ''ଅନୁଧାବନର ସୁଖ'' ଛଡ଼ା ଆଉ କିଛି ନୁହେଁ । ସେଇ ସୁଖକୁ ମଧ୍ୟ ଆବଶ୍ୟକ 'ଟେନ୍‌ସନ୍' ଅର୍ଥାତ୍ ଉଦ୍‌ବେଗର ଅନ୍ୟ ନାମ ବୋଲି କୁହାଯାଇପାରେ । କିନ୍ତୁ ଆଫ୍ରିକାର ଅନ୍ୟତମ ଆଦିମ ଅଧିବାସୀ 'ବାଣ୍ଟୁ' ମାନଙ୍କ ଉପଜାତି ବୋଲାଉଥିବା ସ୍ୱାଜିମାନେ ତା'ର ଧାର ଧାରନ୍ତି ନାହିଁ ବୋଲି ମନେ ହୁଏ । ପ୍ରଗତିର ଆଉ କେଇଟା ଉପର ପାହାଚକୁ ଉଠିଲେ କଣ ହେବ ସେକଥା ଭିନ୍ନ, କିନ୍ତୁ ଆଜି ଯେତେବେଳେ ଦୋଳାୟମାନ ଭଙ୍ଗୀରେ ବାଟ ଚାଲୁଥିବା ସ୍ୱାଜି ଜଣକ ''ୟେ-ବୋ'' ବୋଲି ଲମ୍ୱେଇ କରି ଗୋଟାଏ କୁଶଳ ସଂଭାଷଣ କରେ, ତମକୁ ଦେଖିଲାକ୍ଷଣି, ତାହା ତାର ଗୋଟାଏ ତୃପ୍ତିର ହେକୁଟି ପରି ଲାଗେ । ଏଇ କ୍ଷଣିକ ଜୀବନଟାକୁ ଦିବ୍ୟ ଉପଭୋଗ କଲା ପରି । ଏବଂ ସେ ଆଶା କରୁଛି ଯେ ତମେ ବି ତାକୁ ସେଇଭଳି ଉପଭୋଗ କରୁଥିବ । ସେଇଠୁ ତମ ପାଟିରୁ ବାହାରିବା କଥା ''ସାଓବୋନା'', ଅର୍ଥାତ୍ ହଁ ଭାଇ ଠିକ୍ ସେଇଆ, ଧନ୍ୟବାଦ ।

ଏଇ ସୁସ୍ଥିବାଦୀ ଉପଭୋଗପରାୟଣ ସ୍ୱାଜିକୁ ଅଳସୁଆ କହିପାର । ତାର ବଦ୍‌ରାଗୀପଣ ପ୍ରତି ମଧ୍ୟ ସଦା ସାବଧାନ ରହିବା ଉଚିତ । କିନ୍ତୁ ସେ କ୍ୱଚିତ୍ ମିଛ କୁହେ । ମିଛ କହିବା, ତଥା ଜାଣିଶୁଣି ଠକେଇବା ଠାରୁ ବଳି ପାପ ଆଉ କିଛି ନାହିଁ ତାଙ୍କ ନୈତିକ ଅଭିଧାନରେ । ହଁ, ତାଙ୍କ ଉପଭୋଗରେ ରହିଛି ମଦ୍ୟ, ମାଂସ ଏବଂ ଏକାଧିକ ନାରୀସଂଗର ଭୂମିକା । ନାରୀମାନେ ବହୁବିଧ ପତ୍ନୀ ହୁଅନ୍ତୁ ଅବା ପ୍ରଣୟିନୀ । କିନ୍ତୁ ମନେ ରଖ ଯେ ଯଦି କେଉଁ ପତ୍ନୀ କିମ୍ବା ପ୍ରଣୟିନୀ ଭାବିଲା ଯେ ତାକୁ ସୁଖ ଲାଗୁ ନାହିଁ ତମ କାରବାର, ସେ ଅନାୟାସରେ ତମକୁ ଛାଡ଼ି ଦେଇ ଚାଲିଯାଇପାରେ ଆଉ କେଉଁ ପୁରୁଷ ପାଖକୁ । ଏବଂ ତଦ୍ୱାରା ସେ ଯେ ତା' ପୁରୁଷସାଥିର ଉପାର୍ଜନରୁ ବଂଚିତ ହେଲା ତାର ପ୍ରଶ୍ନ ଉଠୁ ନାହିଁ । କାରଣ ମୁଷ୍ଟିମେୟ ପାଠୁଆଙ୍କ କଥା ଛାଡ଼ିଦିଅ, ସାଧାରଣତଃ ନାରୀ ହିଁ ଉପାର୍ଜନ କରେ ତାର ସ୍ୱାମୀ, ପ୍ରେମିକ, ଓ ପିଲାଛୁଆଙ୍କୁ ପୋଷିବା ପାଇଁ । ଜମିରେ ଶସ୍ୟ ଉପୁଜାଇ, କିଣାବିକାର ହାଟ ବସେଇ, ବୋଝ ବୋହି, କେଉଁ ବିଶେଷଜ୍ଞର ଘରେ ବାସନମଜା ଲିପାପୋଛା ଆଦି କାମ କରି, ଇତ୍ୟାଦି । ହୁଏତ ତା' ମର୍ଦ୍ଦ ତାର ସହାୟକ ହୁଏ ବେଳେବେଳେ । ଏବଂ ସବୁଠାରୁ ବଡ଼କଥା ହେଉଛି ଯେ କେଉଁ ପୁରୁଷ ଆସୁ ବା ଯାଉ, ସେଥିରେ ତା ପିଲାଙ୍କର କିଛି ଯାଏ ଆସେ ନାହିଁ । ପିଲାମାନେ ସହଜେ ତାଙ୍କ ମାଆର । ଏହି ପରିପ୍ରେକ୍ଷୀରେ 'ବାଷ୍ଟାର୍ଡ଼୍' (ଜାରଜ ସଂତାନ) ଶବ୍ଦଟି କେଉଁଠୁ ଆସିଲା ଏବଂ କାହିଁକି ତାକୁ ଗାଳିଗୁଲଜ ରୂପେ ବ୍ୟବହାର କରାଯାଏ

ଆମ ଆର୍ଯ୍ୟ (Indo Aryan) ସମାଜରେ, ତାହା ସ୍ୱାଜି ସଂସ୍କାରର ଅଗମ୍ୟ । ତାଙ୍କ ସମାଜ ଆଶା କରେ ଯେ ଯଦି କେଉଁ ଅବିବାହିତା ସ୍ତ୍ରୀର ପିଲାଟିଏ ହେଲା, ତା' ବାପ ତା ମାଆକୁ ବାହା ହେବା ଉଚିତ । ଏବଂ ଅଧିକାଂଶ କ୍ଷେତ୍ରରେ ତାହାହିଁ ହୁଏ । କିନ୍ତୁ ଯେଉଁଠି ବାପ ରାଜି ନ ହେଲା କୌଣସି କାରଣରୁ, ସେଠି "ଲୋବଲା" ନାମକ କ୍ଷତିପୂରଣର ବ୍ୟବସ୍ଥା ରହିଛି । ତା' ଟଂକାସୁନାରେ ହେଉ କିମ୍ବା ଉପଯୁକ୍ତ ସଂଖ୍ୟାର ଗାଈମଇଁଷି, ମାଆ ଓ ଜାତିଭାଇଙ୍କ ମର୍ଯ୍ୟାଦା ଅନୁଯାୟୀ । ବାସ୍, କଥା ସରିଲା । ପିଲାଟି ଆନନ୍ଦରେ ବଢ଼ିବାକୁ ଲାଗିଲା ତାପରେ ମାଆର ପଣତକୁ ଧରି, ହୁଏତ ଭିନ୍ନ ବାପାମାନଙ୍କ ଆଡୁ ଆସିବାକୁ ଥିବା ଅନ୍ୟାନ୍ୟ ଭାଇଭଉଣୀଙ୍କ ଗହଣରେ । ବାଷ୍ଟାର୍ଡ୍ ? କଣ ତା ଅର୍ଥ ?

ତାହେଲେ କଣ କେବଳ ଭାରତୀୟ ବିଶେଷଜ୍ଞମାନେହିଁ ଥିଲେ ଆମ ସାମାଜିକ ଜୀବନର ଆଧାର ? ହଁ, ମୋଟାମୋଟି ସେଇଆ । କିନ୍ତୁ ଆମେ ଯେଉଁ ଆପାର୍ଟମେଣ୍ଟ ହାଉସ୍‌ରେ ଥିଲୁ, ତାହା ଥିଲା ଏକ ଆନ୍ତର୍ଜାତିକ ବିଶେଷଜ୍ଞମାନଙ୍କ ପେଣ୍ଠ । ଯେଉଁଠି କେବଳ ଜଣେ ମାଳୟାଳୀ ଯୁବକ ଛଡ଼ା ବାକୀ ସମସ୍ତେ ଥିଲେ ଜର୍ମାନ୍, ଡଚ୍, ଇଟାଲିୟାନ୍, ବ୍ରିଟିଶ୍ ଆଦି ବିଭିନ୍ନ ବିଦେଶୀ । ସେମାନଙ୍କ ସାଙ୍ଗରେ ବଂଧୁ ନ ହୋଇପାରିଲେ ବି ସେମାନଙ୍କର ବିବିଧ ବିଚିତ୍ର ପ୍ରବାସୀ ଜୀବନକୁ ପାଖରୁ ଦେଖିବାର ସୁଯୋଗ ମିଳୁଥିଲା ମୋତେ ଏବଂ ତାହା ଏକ ଉପଭୋଗ୍ୟ ଅନୁଭୂତି ଥିଲା ମୋ ପାଇଁ । ବିଶେଷତଃ ଏକ ଲେଖକ ହିସାବରେ । ସେଇ ଅନୁଭୂତିକୁ ନେଇ ମୁଁ ଗୋଟିଏ ଇଂରାଜି ଗଳ୍ପ ଲେଖିଛି । ତା ନାଆଁ "A Saucer of Milk । ତସଲାଏ କ୍ଷୀର, ପୁଷି ପାଇଁ । ମୁଖ୍ୟ ଚରିତ୍ର ହେଉଛି ଇଟାଲୀରୁ ଆସିଥିବା ଜଣେ ବିଶେଷଜ୍ଞଙ୍କ ସାନଝିଅ ଟିନା । ସେ ତାର ଗେହ୍ଲା ପୁଷି ଏବଂ ଦୂରନ୍ତ ପ୍ରାଣପ୍ରାଚୁର୍ଯ୍ୟକୁ ନେଇ କିଭଳି ଚହଳ ସୃଷ୍ଟି କରିଥିଲା ଆମ ଆନ୍ତର୍ଜାତିକ ବିଶେଷଜ୍ଞମାନଙ୍କ ରାଜ୍ୟରେ, ବିଶେଷତଃ ଜଣେ ବୁଦ୍ଧିବାଦୀ ଏବଂ ନିଃସଂଗ ଭାରତୀୟର ମାନସିକତାରେ, ତାହାହିଁ ଥିଲା ମୋ କାହାଣୀର କଥାବସ୍ତୁ । ଏଇ ଗଳ୍ପଟି କବି ଜୟନ୍ତ ମହାପାତ୍ରଙ୍କ ଦ୍ୱାରା ପ୍ରତିଷ୍ଠିତ ଓ ସଂପାଦିତ "ଚନ୍ଦ୍ରଭାଗା" ସାହିତ୍ୟ ପତ୍ରିକାର ସର୍ବପ୍ରଥମ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ଏହାର ସ୍ୱରଚିତ ଓଡ଼ିଆ ରୂପାନ୍ତର 'ତନୟା'କୁ ମଧ୍ୟ ଦେଖିବାକୁ ପାଇବେ ୨୦୦୦ ମସିହା "ସହକାର"ର ଶାରଦୀୟ ସଂଖ୍ୟାରେ ।

ଆମର କେତେକ ପ୍ରବାସୀ ଭାରତୀୟ ଭାଇଭଉଣୀମାନେ ମଧ୍ୟ ବେଶ୍ କିଛି ବୈଚିତ୍ର୍ୟ ଆଣି ଦେଇଥିଲେ ଆମ ସାମାଜିକ ଜୀବନର ଉପଭୋଗ ପାଇଁ । ଯେଉଁଥିରୁ ମୋର ମନେ ହେଲା ଯେ ଭାରତରେ ସେମାନଙ୍କର ଏଇ ଦୋଷଗୁଣ ବୋଧହୁଏ ଏମିତି ଫୁଟି ଉଠି ପାରିନଥାଆନ୍ତା । ପଂଜାବରୁ ଆସିଥିବା ସେହି ଅନ୍ତଃସତ୍ତ୍ୱା ଭଦ୍ରମହିଳାଙ୍କ କଥା ତ କହିଛି ଏଥିପୂର୍ବରୁ । ସେମାନେ ଦିହେଁ ଆର୍କିଟେକ୍ଟ । ସେଇ ଅଂଚଳରୁ ଆସିଥିବା ଜଣେ

ଇଂଜିନିୟର୍ ବିଶେଷଜ୍ଞ ସର୍ବସମ୍ମୁଖରେ ତାଙ୍କ ଦ୍ୱିତୀୟା ସ୍ତ୍ରୀ (ପ୍ରଥମା ଭାରତରେ ଅଛନ୍ତି)ଙ୍କ ସାଙ୍ଗରେ କଳି ନ କରି ରହିପାରନ୍ତି ନାହିଁ । ହେଲେ ଆମ ଘରୋଇ ପାର୍ଟିମାନଙ୍କରେ ମଦ୍ୟପାନ କଲାବେଳେ ସେ ଅନୁଶୋଚନାରେ ଦଗ୍‌ଧ ହୋଇ କାନ୍ଦିଲା ପରି ହୁଅନ୍ତି, ଏବଂ ଏଭଳି ପ୍ରଶଂସା କରନ୍ତି ତାଙ୍କ ସ୍ତ୍ରୀଙ୍କର, ଯେ କହିଲେ ନ ସରେ । ପଶ୍ଚିମ ବଂଗରୁ ଆସିଥିବା ଜଣେ ଆଇନଜ୍ଞ ବିଶେଷଜ୍ଞ ବଂକା ହସ ହସନ୍ତି ଏହିପ୍ରକାର ଦୃଶ୍ୟ ଦେଖିଲାରୁ ଏବଂ ମୋତେ ପରେ କୁହନ୍ତି ଯେ ଆମେ ଅର୍ଥାତ୍ କେବଳ ପୂର୍ବାଂଚଳରୁ ଆସିଥିବା ଭାରତୀୟମାନେ ଏହିସବୁ ଜାଗାକୁ ଆସିବା ଉଚିତ । କାରଣ ଆମେ ହିଁ ଭାରତୀୟ ସଂସ୍କୃତିର ଯଥାର୍ଥ ପ୍ରତିନିଧି । ହେଲେ ନର୍ମାଲ୍ ଅର୍ଥାତ୍ ସାଦା, ଭଦ୍ର ତଥା ମେଳାପି ଭଦ୍ରଲୋକମାନେ ମଧ୍ୟ ଥିଲେ ଆମ ବିରାଦରିରେ । ତାଙ୍କ ଭାବଭଙ୍ଗୀ ଓ କଥାକୁହାରେ କିଛି ତାତି, ମୁନ, ଅବା ବୈଚିତ୍ର୍ୟ ନ ଥାଉ ପଛେ, ତାହା ଆମ ଅଳସ ସଂଧ୍ୟାବିହାରର ଉପଯୋଗୀ ହୋଇପାରୁଥିଲା । ଏହି ପରିପ୍ରେକ୍ଷୀରେ କହିରଖେ ଯେ ବିରାଦରିରେ କେବଳ ଭାରତୀୟ ନ ଥିଲେ, ମଧ୍ୟ ଭାରତ ଉପମହାଦେଶର ଲୋକେ । ଶ୍ରୀଲଙ୍କା ଓ ପାକିସ୍ଥାନରୁ ଆସିଥିବା ଜଣେ ଦିଜଣ । ଯାହାକି ସ୍ୱାଭାବିକ ।

କିନ୍ତୁ ହାୟ ! ଏଇ ସ୍ୱାଭାବିକତା ବିପରୀତ ରୂପ ଧାରଣ କଲା ମୋ ପାଇଁ, ଆମ ଅଫିସ୍‌ରେ । ସେଠି ମୋର ଜଣେ ପାକିସ୍ଥାନୀ ସହକର୍ମୀ ଥିଲେ । ଏଭଳି ଏକ ସହକର୍ମୀ ଯାହାଙ୍କ ସହିତ ଘନିଷ୍ଠ ସହଯୋଗ ନିତାନ୍ତ ଆବଶ୍ୟକ ଥିଲା, ଆମ ଅନୁଷ୍ଠାନର କର୍ମକୁଶଳତା ଏବଂ ମର୍ଯ୍ୟାଦା ପାଇଁ । କାରଣ ମୁଁ ଥିଲି ସ୍ୱାଜିଲାଣ୍ଡର "କେନ୍ଦ୍ରୀୟ ପରିବହନ ସଂଗଠନ" (Central Transport Organization)ର ବିତ୍ତୀୟ ପରାମର୍ଶଦାତା ଓ ଅର୍ଥ ବିଭାଗର ମୁଖ୍ୟ ଏବଂ ସେ ଥିଲେ ଇଂଜିନିୟରିଂଗ୍ ବିଭାଗର ମୁଖ୍ୟ । ବସ୍ତୁତଃ ଆମେ ଅନୁଷ୍ଠାନର ବଡ଼କର୍ତ୍ତା, ଜଣେ ସ୍ୱାଜି ଅଧିକାରୀଙ୍କର ଦୁଇ ବାହୁ ଥିଲୁ ବୋଲି କହିଲେ ଚଳେ । କିନ୍ତୁ ଦୁର୍ଭାଗ୍ୟ, ଏଇ ଦୁଇ ବାହୁଙ୍କ ମଧ୍ୟରେ ଉଚିତ ସମନ୍ୱୟ ରହିପାରିଲା ନାହିଁ । ସେ ପ୍ରାୟ ମୋ ବିଚାରକୁ ପିଲାଳିଆ ଓ ପୁରୁଣାକାଳିଆ ବୋଲି ହସି ଉଡ଼େଇଦିଅନ୍ତି, ଏବଂ ମୁଁ ତାଙ୍କ ବିଚାରକୁ ବ୍ୟୟସାପେକ୍ଷ, ତେଣୁ ଅନୁଷ୍ଠାନ ପ୍ରତି କ୍ଷତିକାରକ ବୋଲି ଗ୍ରହଣ କରିପାରେ ନାହିଁ । ସେହେତୁ ଆମର ନରମପନ୍ଥୀ ସ୍ୱାଜି ବଡ଼କର୍ତ୍ତା ଉଭୟଙ୍କୁ 'ହଁ ବୁଝିଲି ଆପଣ ଯାହା କହୁଛନ୍ତି ଠିକ୍'ବୋଲି କହିଲେ ମଧ୍ୟ ତାଙ୍କୁ ରାଜଦରବାରରେ ଗୁହାରି କରିବାକୁ ପଡ଼ିଲା ଯେ ସେ ଆଉ ପାରି ଉଠୁ ନାହାନ୍ତି, ଭାରତ ଓ ପାକିସ୍ଥାନରୁ ଆସିଥିବା ଏଇ ଦୁଇ ବିଚକ୍ଷଣ ବିଶେଷଜ୍ଞଙ୍କ କୃପାରୁ । ଶେଷକୁ ଭଦ୍ରଲୋକ ଛୁଟି ନେଲେ କେଇ ମାସ ପାଇଁ ତାଙ୍କ ଅସୁସ୍ଥତା ଯୋଗୁଁ । କିନ୍ତୁ ତାର ଫଳାଫଳ ଆହୁରି ବିଷମ ହୋଇ ଉଠିଲା, କାରଣ CFTCଙ୍କ ପରାମର୍ଶ ଅନୁଯାୟୀ ମୋତେ ସଂସ୍ଥାର ଅସ୍ଥାୟୀ ଚେୟାରମ୍ୟାନ୍ ପଦରେ ବସେଇ ଦିଆଗଲା ଏବଂ ତାହା ଅସହ୍ୟ ହୋଇ ଉଠିଲା ମୋର ସେଇ ସହକର୍ମୀଙ୍କ ପାଇଁ । ସେ କଥାକଥାକେ ବିଦ୍ରୋହର ଭାବ ଦେଖାଇଲେ,

ଯଦ୍ୱାରା ନିତିଦିନିଆ କାମ ଅଟକି ରହିଲା କିମ୍ବା ବିଗିଡ଼ି ଗଲା । ଭୂତପୂର୍ବ ଚେୟାରମ୍ୟାନଙ୍କୁ ଛୁଟିର ଅଧାରୁ ଫେରି ଆସିବାକୁ ପଡ଼ିଲା । କିନ୍ତୁ ମୋ ପାକିସ୍ଥାନୀ ଭାଇଙ୍କର ବିଦ୍ରୋହୀଭାବ ବଦଳିଲା ନାହିଁ । ଅପରଂତୁ ମୋ କଥା ଛାଡ଼, ସେ ସ୍ୱାଜି ଉପର ଅଧିକାରୀମାନଙ୍କ ପ୍ରତି ଘୋର ଅବଜ୍ଞାସୂଚକ ବ୍ୟବହାର କଲେ । ଶେଷକୁ ଏମିତି ହେଲା ଯେ ରାଜା ତାଙ୍କୁ ହୁକୁମ୍ ଦେଲେ ଚବିଶ ଘଣ୍ଟା ଭିତରେ ତାଙ୍କର ପିଲାଛୁଆକୁ ନେଇ ସ୍ୱାଜିଲାଣ୍ଡ ଛାଡ଼ି ଚାଲିଯିବା ପାଇଁ । ଏଭଳି ଅପମାନ ମିଳି ନଥିଲା ଏଥିପୂର୍ବରୁ କେଉଁ ବିଦେଶରୁ ଆସିଥିବା ବିଶେଷଜ୍ଞଙ୍କୁ, ସ୍ୱାଜିଲାଣ୍ଡର ଇତିହାସରେ ।

କାହିଁକି ଏମିତି ହେଲା ? ମୁଁ ବୟସରେ ଏବଂ ଅଭିଜ୍ଞତାରେ ବଡ଼ ତାଙ୍କଠୁ । ତେଣୁ ଉଦାର ବଡ଼ଭାଇପଣ ଦେଖାଇ ମୋର କଣ ତାଙ୍କୁ ମନେଇବା ଉଚିତ ନ ଥିଲା, ତାଙ୍କ ଉଗ୍ର ବିଦ୍ରୋହୀ ଭାବରେ ବିଚଳିତ ନ ହୋଇ ? ଏଇ ଗ୍ଲାନିବୋଧ ବେଳେ ବେଳେ ଆସେ ମୋ ମନରେ । କିନ୍ତୁ ପରେ ପରେ ମନକୁ ଆସେ ଯେ ଇଏ ହେଉଛି ଭାରତ ଓ ପାକିସ୍ଥାନ ମଧ୍ୟରେ ଥିବା ଭାଇ-ଭଗାରିପଣର ଅନ୍ୟତମ ଦୃଷ୍ଟାନ୍ତ । ଯାହାକୁ ଅସ୍ୱୀକାର କରିହେବ ନାହିଁ । ମନେ ପଡ଼େ, ସେ ଯାହା ଥରେ କହିଥିଲେ ମୋତେ ବିରାଦରିର ଗୋଟିଏ ଘରୋଇ ବୈଠକରେ । କହିଲେ ଜାଣିଛନ୍ତି ମିଷ୍ଟର୍ ଦାସ୍, ୧୯୭୧ର ବାଂଗଲାଦେଶ ଯୁଦ୍ଧରେ ଯେଉଁ ଯୁଦ୍ଧବନ୍ଦୀମାନେ ଅଟକ ହୋଇ ରହିଥିଲେ ଆପଣଙ୍କ ଜେଲ୍‌ରେ, ସିମ୍‌ଲା ଚୁକ୍ତିପରେ ଛାଡ଼ ପାଇବା ପୂର୍ବରୁ, ମୋ ସାନଭାଇ ମଧ୍ୟ ଥିଲା ତାଙ୍କ ଭିତରୁ ଜଣେ ? ଭାବେ ଯେ ଏଇ ଘଟଣାଟି ବୋଧହୁଏ ମୋ ପାକିସ୍ଥାନୀ ଭାଇକୁ ଉଚିତରୁ ଅଧିକ ଭଗାରି କରି ଦେଇଥିଲା ମୋ ପାଇଁ, ହୁଏତ ତା ନିଜ ଅଜାଣତରେ ।

ମୋ ଅଫିସଜୀବନରେ ଆସିଥିବା ଏହି ଅପ୍ରୀତିକର ଅନୁଭୂତିକୁ ଅସ୍ୱୀକାର କରି ହେବ ନାହିଁ । ଏହା ମଧ୍ୟ ସତ ଯେ ଏଇ 'ଭାରତ-ପାକିସ୍ଥାନ ଯୁଦ୍ଧ' ଯୋଗୁଁ ସ୍ୱାଜିଲାଣ୍ଡ ସରକାର ସ୍ଥିର କଲେ ଯେ ଏଣିକି କେବଳ ଗୋଟିଏ ଦେଶରୁ ବିଶେଷଜ୍ଞଙ୍କ ଦଳ ଆସିବ ଅସୁସ୍ଥ ହୋଇ ପଡ଼ିଥିବା ସଂସ୍ଥାଟିକୁ ସୁସ୍ଥ କରିବା ପାଇଁ । ସେହେତୁ ମୋ କଣ୍ଟ୍ରାକ୍ଟର ଦୁଇବର୍ଷିଆ ମିଆଦକୁ ସେମାନେ ବଢ଼େଇବାକୁ ଚାହିଁଲେ ନାହିଁ, ମୋ କାମର ଯେତେ ପ୍ରଶଂସା କଲେ ମଧ୍ୟ । ଗୋଟିଏ ସ୍ୱୟଂସଂପୂର୍ଣ୍ଣ ବ୍ରିଟିଶ ବିଶେଷଜ୍ଞଙ୍କ ଦଳ ଆସିବେ ସଂସ୍ଥାର ଭବିଷ୍ୟତକୁ ସଜାଡ଼ିବା ଲାଗି । ଏହି ନିଷ୍ପତ୍ତି ମୋତେ ଜଣାଇଦିଆଗଲା ବିଦାୟ ସଂବର୍ଦ୍ଧନାର ଅବ୍ୟବହିତ ପୂର୍ବରୁ । ଏବଂ ମୁଁ ଫେରି ଆସିଲି ଭାରତକୁ ଦୁଇବର୍ଷ ପୂରିବାର ଅଳ୍ପଦିନ ପରେ । ହଉ । ନିଜକୁ କହିଲି ଯେ ଅପ୍ରୀତିକର ହେଉ ପଛକେ ଇଏ ବି ଗୋଟିଏ ଅଭିଜ୍ଞତା । ଏବଂ ଏଭଳି ଏକ ଅଭିଜ୍ଞତା ଯାହାକୁ ଅସାଧାରଣ ବୋଲି କୁହାଯିବ । ଧନ୍ୟବାଦ ।

ଏବଂ ଉଲ୍ଲେଖଯୋଗ୍ୟ ଯେ ସ୍ୱାଜିଲାଣ୍ଡ ସହିତ କୌଣସି ସଂପର୍କ ନ ଥିଲେ ମଧ୍ୟ ସେଇଠି ମୋତେ ମିଳିଥିଲା ସେଇ ବସ୍ତୁଟି, ଯାହାକୁ ମୁଁ ଲୋଡୁଥିଲି, ହେଲେ 'ଆଇ ଡୋଣ୍ଟ୍

କେୟାର୍' ବୋଲି କହୁଥିଲି । ରାଜଦରବାରର ସ୍ୱୀକୃତି ମୋ ସାହିତ୍ୟ ପାଇଁ । ଆଜି ମୁଁ ବୁଝୁଛି ସେଇ ସ୍ୱୀକୃତିର ମୂଲ୍ୟ କେତେ ସାମାନ୍ୟ ମୋ ସାହିତ୍ୟର ସାର୍ଥକତା ଦିଗରେ । ଏବଂ ବୁଝୁଛି ଯେ ମୁଁ କେବେହେଲେ ମୋ ଇମେଜରୁ ମୁକ୍ତ ହୋଇପାରିବି ନାହିଁ । ଯେ ମୁଁ ଭାରତୀୟ ସଂସ୍କୃତିର ପରଂପରା, ତେଣୁ ମୁଖ୍ୟସ୍ରୋତରୁ ବିଚ୍ଛିନ୍ନ ହୋଇ ପଡ଼ିଥିବା ଜଣେ ବୁଦ୍ଧିଜୀବୀ, ତଥା କେଉଁ ଆଶାବାଣୀ ଶୁଣେଇ ପାରୁ ନଥିବା ଲେଖକ । ମନସ୍ତତ୍ତ୍ୱକୁ ଆବୁରି ଧରିଛି, ହେଲେ ତତ୍ତ୍ୱଦର୍ଶୀ ହୋଇପାରିଲି ନାହିଁ । ଇତ୍ୟାଦି । ମନେ ହେବ ଯେ ସାହିତ୍ୟ କ୍ଷେତ୍ରରେ ମଧ୍ୟ ମୁଁ ଗୋଟିଏ ବିଶେଷଜ୍ଞ ହୋଇ ରହିଗଲି । ହେଉ, ଆଜି ମୋର ସେଇ ଭିନ୍ନ ନିଜତ୍ୱକୁ ହିଁ ମୁଁ ମୋର ଅମୂଲ୍ୟ ଧନ ବୋଲି ମଣୁଛି । କିନ୍ତୁ ମାନୁଛି ଯେ ସେତେବେଳେ ମୁଁ ଉକ୍ତ ଆଖିଦୁରୁଶିଆ ସରକାରୀ ସ୍ୱୀକୃତିକୁ ଲୋଡୁଥିଲି, ତେଣୁ ବିଶେଷ ଖୁସି ହେଲି ତାକୁ ପାଇଲାରୁ । ୧୯୭୬ରେ ମୋତେ ମିଳିଥିବା ଓଡ଼ିଶା ସାହିତ୍ୟ ଏକାଡ଼େମୀ ଏବଂ ପରେ ପରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର । ଓଡ଼ିଶା ସାହିତ୍ୟ ଏକାଡ଼େମୀ ମୋତେ ଜଣାଇଲେ ଯେ ଗତ ପାଞ୍ଚବର୍ଷ ମଧ୍ୟରେ ପ୍ରକାଶିତ ଗଳ୍ପଉପନ୍ୟାସ ବିଭାଗରେ ମୋର ଗଳ୍ପସଂକଳନ 'ମଣିହରା' ସବୁଠାରୁ ଉତ୍କୃଷ୍ଟ ବୋଲି ବିବେଚିତ ହୋଇଛି । ଏବଂ କେନ୍ଦ୍ର ସାହିତ୍ୟ ଏକାଡ଼େମୀ କହିଲେ, ମୋତେ ବଧେଇ ଦେବା ସହ ଯେ ଓଡ଼ିଆ ଭାଷା ସାହିତ୍ୟ କ୍ଷେତ୍ରରେ ୧୯୭୬ ମସିହାର ପୁରସ୍କାର ମିଳିଛି ମୋତେ, ମୋର ଗଳ୍ପସଂକଳନ 'ଠାକୁରଘର' ପାଇଁ । ମନେ ହେବ ଯେ ହଠାତ୍ ଚେତା ହେଲା ସେମାନଙ୍କର, ଯେ ଡେରି ହୋଇଯାଉଛି, ଲୋକଟାକୁ ଗୋଟାଏ ପୁରସ୍କାର ମିଳିବା ଉଚିତ ଏଥର ।

ଅବଶ୍ୟ ଖୁସି ହେଲି । ତା' ସାଙ୍ଗକୁ ମଧ୍ୟ ଟିକିଏ ଆଶ୍ଚର୍ଯ୍ୟ ହେଲି ଯେତେବେଳେ ପରିଣୀତା କୁମ ମୋ ହାତକୁ ଧରି କହୁଛି, କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇବାର ଖବର ପାଇବା ପରେ - 'ଏତେଦିନକେ ମନେ ପଡ଼ିଲା ତାଙ୍କର !' ତା' ଆଖିରେ ଆଖିଏ ଲୁହ ।

ଏଇଆକୁ କଣ ଆନଂଦାଶ୍ରୁ କୁହନ୍ତି ? ତାର କ୍ରିୟାକରଣକୁ ବୁଝିବାର ଶକ୍ତି ନ ଥିଲା ମୋର । ତେବେ ତାର ସହ-ଅନୁଭବ ମୋ ସାହିତ୍ୟ ଜୀବନକୁ ମଧ୍ୟ ତା'ର ଘେର ଭିତରକୁ ନେଇ ଆସିଛି ଏମିତି, ଏହାହିଁ ଲକ୍ଷେ ଟଙ୍କା ବୋଲି ମନେ ହେଲା ମୋର । ଯାହାହେଉ ତାକୁ ବୁଝେଇଲା ପରି କହିଲି, 'ଶୁଣ, ଏତେ ଡେରିରେ ଏଇ ପୁରସ୍କାର ଖଣ୍ଡକ ମିଳିଲା, ଏଥିରେ ଦୁଃଖ କରିବାର କିଛି ନାହିଁ । ଜଣାଶୁଣା କଥା ଯେ ମୁଁ ତରତର ହୋଇ ଜନ୍ମ ହୋଇ ପଡ଼ିଲେ ମଧ୍ୟ ମୋର ପେଟେଇବା, ହାମୁଡ଼େଇବା, ଠିଆ ହେବା, କଥା କହିବା ଠାରୁ ଆରମ୍ଭ କରି ବହି ଛପେଇବା ଆଦି ଯେତେକ ସଫଳତା ଉଚିତରୁ ଅଧିକ ଡେରିରେ ଆସିଛି ମୋ ପାଇଁ । ତେଣୁ ଯେଉଁ ଫୁଲସବୁ ଡେରିରେ ଫୁଟେ, ମୁଁ ସେଥିରୁ ଗୋଟିଏ ବୋଲି ଧରିନେଲେ ଯାଏ ।'

ସେତେବେଳକୁ ସେ ତା ଭାବାବେଗରୁ ଉତୁରି ଆସିଲାଣି ଏବଂ କହୁଛି ମୋତେ, ତା ଲୁହ ପୋଛି ଦେଇ - 'ଉହୁଁ, ତା ନୁହେଁ । ବୁଝାପଡ଼ିଲା ଯେ ମୋ ସୃଷ୍ଟିର ଆଶ୍ରା ନ ନେଲେ ତମ ସୃଷ୍ଟିକୁ କେହି ପଚାରିବେ ନାହିଁ । ସେଇଠୁଁ କହୁଛି ମୋ ବିମୂଢ଼ ଚାହାଣୀ ଉଦ୍ଦେଶ୍ୟରେ ହସଟିଏ ଛାଡ଼ି ଦେଇ - ''କିଓ, ତମେ କଣ ଭୁଲିଯାଇଛ, ଯେ ତମେ ଏଇ 'ଠାକୁରଘର' ବହିଟିକୁ ବଢ଼େଇ ଦେଇଛ ମୋର ପାଁଚୋଟି ପିଲା, ହୀନୁ, ଚିନୁ, ବେବି, କୁନ୍‌ବେବି ଓ ଧୀରୁଙ୍କ ହାତକୁ ? ତା ହୋଇ ନଥିଲେ କଣ ଏଇ ପୁରସ୍କାର କେବେହେଲେ ତମକୁ ମିଳିଥାଆନ୍ତା ବୋଲି ଭାବୁଛ ?'' ଏହି ଭାବରେ ସେ ଗୋଟାଏ ପାଠ ପଢ଼େଇଲା ସେଦିନ, ସୃଷ୍ଟିର ମାହାତ୍ମ୍ୟକୁ ନେଇ । ଏବଂ କହିବା ବାହୁଲ୍ୟ ମୁହୂର୍ତ୍ତଟି କିଭଳି ଉପଭୋଗ୍ୟ ହୋଇ ଉଠିଥିଲା ଆମ ଦି'ଜଣଙ୍କୁ ନେଇ ।

ଶାରଦୀୟ ୧୯୭୭ରେ ମୁଁ ଫେରିଆସିଲି ଭାରତକୁ । ମଧ୍ୟ ମୋ ନିଜ ଡିପାର୍ଟମେଣ୍ଟକୁ । ନିଯୁକ୍ତି - ରାଜସ୍ଥାନର ଆକାଉଣ୍ଟାଣ୍ଟ୍ ଜେନେରାଲ୍ । ଅବସ୍ଥାନ - ଜୟପୁର । ଏବଂ ଲେଖାନଗରରେ ମହାଲେଖାକାରଙ୍କ ପାଇଁ ନିର୍ଦ୍ଦିଷ୍ଟ ହୋଇ ରହିଥିବା ନିବାସ ।

''ଲେଖାନଗର''ର ଅର୍ଥ ଆକାଉଣ୍ଟାଣ୍ଟ୍ ଜେନେରାଲ୍‌ଙ୍କ ଅଫିସ୍‌ରେ କାମ କରୁଥିବା କର୍ମଚାରୀ ଏବଂ ଅଧିକାରୀମାନଙ୍କ ବସତି । ଏବଂ ଇଏ ଗୋଟାଏ ପୋଷାକି ନାଆଁ ନୁହେଁ । ଯଥାକ୍ରମେ ମୁଁ ଦେଖିଲି ଯେ ୟା'କୁ ଏ.ଜି. କଲୋନୀ ବୋଲି କହୁଥିବା ଲୋକେ ଯେତିକି ''ଲେଖାନଗର'' ବୋଲି କହୁଥିବା ଲୋକେ ତାଠୁଁ ବେଶି ହେବେ ପଛେ କମ୍ ହେବେ ନାହିଁ । ମୁଁ ମଧ୍ୟ ଲକ୍ଷ୍ୟ କଲି ଯେ ଏଠିକାର ଲୋକେ ଯେଉଁ ପ୍ରକାର ହିନ୍ଦୀ କହୁଛନ୍ତି, ତାକୁ ଶୁଦ୍ଧ ହିନ୍ଦୀ ବୋଲି କୁହାଯିବ, ଯାହା ମୁଁ ଉତ୍ତର ଭାରତରେ କ୍ୱଚିତ୍ ଶୁଣିବାକୁ ପାଇଛି । ଯଥା ସେମାନେ ପ୍ରାୟଶଃ କଷ୍ଟକୁ କଷ୍ଟ୍ ବୋଲି କୁହନ୍ତି, ତକ୍‌ଲୀଫ୍ କୁହନ୍ତି ନାହିଁ, କ୍ଷମା ବଦଳରେ 'ମାଫୀ' ମାଗନ୍ତି ନାହିଁ । ଶୁଣି ଭଲ ଲାଗିଲା ମୋତେ ଏବଂ ମୁଁ ତାଙ୍କୁ ବଧେଇ ଦେବାରେ ହେଳା କଲି ନାହିଁ । କିନ୍ତୁ ଭଲ ଲାଗିଲା ନାହିଁ ଯେତେବେଳେ ଦେଖିଲି ଯେ ନାନା ଆଦେଶ ନିର୍ଦ୍ଦେଶର ଅଂଗୀକାର ସ୍ୱରୂପ ଯେଉଁ ହିନ୍ଦୀ ଶବ୍ଦ ଶୁଣିବାକୁ ମିଳୁଛି 'ୟେସ୍ ସାର୍' ବଦଳରେ, ତା 'ଜୀ-ହାଁ' ନୁହେଁ, 'ହୁକୁମ୍' । ସେଇଠୁଁ ବୁଝିଲି ଯେ ସେମାନେ ରାଜାରାଜୁଡ଼ା ବେଳର ଅଭ୍ୟାସଟାକୁ ଛାଡ଼ି ପାରିନାହାନ୍ତି ଆଜିଯାଏଁ, ଯଦିଓ ସେବେଳର ବିନୟାବନତ ଭାବ ଗଲାଣି କେବେଠୁଁ । ଏବଂ ଆଶା କଲି ଯେ କର୍ପୂର ତ ଉଡ଼ି ଗଲାଣି, କନାଖଣ୍ଡକ ଆଉ ପଡ଼ି ରହି ପାରିବ ନାହିଁ ବେଶିଦିନ ।

ଯାହାହେଉ ଲେଖାନଗରର ଯେଉଁ ଘରଟି ନିର୍ଦ୍ଦିଷ୍ଟ ହୋଇ ରହିଥିଲା ମହାଲେଖାକାରଙ୍କ ପାଇଁ, ତାକୁ ରାଜପ୍ରାସାଦ ବୋଲି ନ କହିଲେ ନାହିଁ, ଅନ୍ୟତମ ଟାଇପ୍‌ବଂଧା ସରକାରୀ କ୍ୱାଟର୍ସ ବୋଲି କହିବାକୁ ଇଚ୍ଛା ହେବ ନାହିଁ, ବିଶେଷତଃ ଘରକୁ ଘେରି ରହିଥିବା

ପ୍ରଶସ୍ତ ଉଦ୍ୟାନ ପାଇଁ । ସେଇ ଉଦ୍ୟାନର ସତେଜ ସୁନ୍ଦର ଫୁଲସବୁ ଯେଉଁଭଳି ସ୍ୱାଗତ ଜଣାଇଥିଲେ ଆମକୁ, ତାହା ଏକ ମହାର୍ଘ ଅନୁଭବ ଥିଲା ଆମ ପାଇଁ, ମୋ ଚାକିରୀ ଜୀବନରେ । ପରେ ପରେ ସେମାନଙ୍କର ଜଗୁଆଳି ମଧ୍ୟ ଗୋଟାଏ ଲମ୍ବା ନମସ୍କାର ପକାଇଥିଲା ଆମକୁ । ଏବଂ ବୁଝିଲି ଯେ ସେ ଆମ ମାଳୀ ଏବଂ ନିୟମ ଅନୁଯାୟୀ ତାର ବେତନ ସରକାର ଯୋଗାଇବେ । କିଓ ମହାଲେଖାକାରଙ୍କ ମର୍ଯ୍ୟାଦା କଣ କେବଳ ତାଙ୍କରି ବେଶଭୂଷଣ ଚାଲିଚଳଣ ଉପରେ ନିର୍ଭର କରେ ? ତାଙ୍କ ଘରବାରିର କଣ ଗୋଟାଏ ମର୍ଯ୍ୟାଦା ନାହିଁ, ଯାହା ଜନସାଧାରଣଙ୍କ ଆଖିରେ ପଡ଼ିବା ଉଚିତ ? ଏବଂ ସେଇ ମର୍ଯ୍ୟାଦାର ରକ୍ଷଣାବେକ୍ଷଣ କଣ ଲୋକପ୍ରିୟ ସରକାରଙ୍କ ଦାୟିତ୍ୱ ନୁହେଁ ? ପଚାରିବାକୁ ସାହସ ହେଲା ନାହିଁ ଯେ ଏଠିକାର ଏଇ ପରଂପରାକୁ କାହିଁକି ଗ୍ରହଣ କରାଯାଇ ନାହିଁ ଡିପାର୍ଟମେଣ୍ଟର ଅନ୍ୟ ମହାଲେଖାକାରଙ୍କ ପାଇଁ । ରଂଗବେରଂଗ ଗୋଲାପ ସବୁ ଯେମିତି ହସୁଥାଆନ୍ତି ଆମ ଆଡ଼କୁ ଚାହିଁ । ତାଙ୍କର ଅମର୍ଯ୍ୟାଦା ହେବ ନାହିଁ ଏଭଳି ଅଗଭଂଗା ପ୍ରଶ୍ନ ଉଠେଇଲେ ?

ମୋଟ ଉପରେ ରାଜସ୍ଥାନର ଆକାଉଣ୍ଟାଣ୍ଟ ଜେନେରାଲ ହୋଇ ଜୟପୁରରେ ସେଇ ବର୍ଷଟିଏ ମୋ କର୍ମଜୀବନର ଏକ ବିଶେଷ ସ୍ୱଚ୍ଛନ୍ଦ ଏବଂ ସୁଖକର ସାନ ଅଧ୍ୟାୟଟିଏ ବୋଲି ମୁଁ କହିବି । ପ୍ରଥମତଃ ସ୍ୱଦେଶକୁ ଫେରିଆସିବାର ଆନନ୍ଦ । ଘରେ ବାପାବୋଉଙ୍କ ସାଙ୍ଗରେ ପୁନର୍ମିଳିତ ହେବାର ସୁଖ । ବାପା ଆହୁରି ବୁଢ଼ା ହୋଇ ଗଲେଣି ଏବଂ ଅନେଇ ବସିଛନ୍ତି ମୁଁ କେବେ ଆସି ରହିବି ସେଠି ସବୁଦିନ ପାଇଁ । ଖଣ୍ଡେ ଚିଠି ଲେଖିଥିଲେ ମୋ ପାଖକୁ ମୁଁ ସ୍ୱାଜିଲାଣ୍ଡରେ ଥିଲାବେଳେ, ଯେ ତାଙ୍କୁ ଗୋଟିଏ ଅମୂଲ୍ୟ ଜନ୍ମଦିନର ଉପହାର ମିଳିଗଲା ତାଙ୍କ ଜନ୍ମଦିନରେ ଯେତେବେଳେ ସେ ରେଡ଼ିଓରୁ ଶୁଣିଲେ, ମୁଁ ଏ ବର୍ଷର ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଛି ବୋଲି । ଏବଂ ଦିଲ୍ଲୀରେ ପିଲାମାନଙ୍କ ସାଙ୍ଗରେ ପୁନର୍ମିଳିତ ହେବାର ଉଲ୍ଲାସ । ବଡ଼ଝିଅ ବାଂଗାଲୋର୍‌ରେ ଅଛି ଏଇକ୍ଷଣି, କିନ୍ତୁ ବାକୀ ସମସ୍ତେ ଦିଲ୍ଲୀରେ । ଦିଲ୍ଲୀରେ ପୋଷ୍ଟିଂଗ୍ ହୋଇଥିଲେ ଆହୁରି ଭଲ ହୋଇଥାଆନ୍ତା ନିଶ୍ଚୟ । ତେବେ ଜୟପୁରରୁ ଦିଲ୍ଲୀ ଏମିତି କେତେଦୂର କି ? ତେଣୁ ଆମେ ଏଣିକି ପରସ୍ପରର ସୁଖଦୁଃଖରୁ ବିଚ୍ଛିନ୍ନ ହୋଇ ରହିବୁ ନାହିଁ ଏଇ ପ୍ରତିଶ୍ରୁତି ଥିଲା ଯଥେଷ୍ଟ, ଆପାତତଃ । ଏବଂ ସର୍ବୋପରି ଥିଲା ଏକ ଜାତୀୟ ସହ- ଅନୁଭବର ଆନନ୍ଦ । କାରଣ ମୁଁ ଦେଶକୁ ଫେରିଆସିଲି ଠିକ୍ ସେଇ ସମୟରେ, ଯେତେବେଳେ ଏମର୍‌ଜେନ୍‌ସିର ମହାନିଶା କଟିଯାଇଛି କିଛି ଦିନ ପୂର୍ବରୁ । ଏବଂ ନୂଆ ଜନତା ସରକାର ମହାତ୍ମାଗାନ୍ଧୀଙ୍କ ସମାଧି ପାଖରେ ଶପଥ ନେଇ ଆସିଲେଣି ଯେ ସେମାନେ ଦେଶବାସୀଙ୍କୁ ତାଙ୍କ ସ୍ୱାଧୀନତା ତଥା ସଂବିଧାନଗତ ସ୍ୱାଧିକାର ଫେରାଇଦେବେ । ମୁକ୍ତିବୋଧର ଏକ ଅପୂର୍ବ ଉତ୍ତେଜନା ଚାରିଆଡ଼େ । ଘନ ଘନ ଅନୁଷ୍ଠିତ ସଭାସମିତି ଏବଂ କେତେ ନୂଆ ନୂଆ ପତ୍ରପତ୍ରିକାରେ ଏକ ନବଜାଗୃତିର ନିର୍ଘୋଷ । ବ୍ୟୁରୋକ୍ରାଟ୍ ଟିଏ ହୋଇଥିଲେ ମଧ୍ୟ

କେମିତି ଭଲା ମୁଁ ଏଇ ବାତାବରଣରୁ ଦୂରେଇ ହୋଇ ରହିପାରିଥାଆନ୍ତି ? କେତେକ ବଂଧୁ କହୁଥିଲେ ମୋତେ ରସିକତା କରି - ମହା ଚାଲାଖ୍ ତମେ ମିଷ୍ଟର ଦାସ୍ ! ଏମର୍‌ଜେନ୍‌ସିର ଦୁଇବର୍ଷଯାକ ପଳେଇ ଯାଇ ରହିଲ ଆଉ କେଉଁଠି, ଆଉ ଫେରିଆସିଛ ଠିକ୍ ଏତିକିବେଳକୁ । ମୁଁ ହସିଦିଏ ମୋର ଚତୁରତା ଓରଫ୍ ସୌଭାଗ୍ୟ ପାଇଁ ।

ତାପରେ ମୋ ଅଫିସ୍ ଜୀବନ । ପୂର୍ବରୁ ମଧ୍ୟ ଥରେ ମୁଁ ଆକାଉଣ୍ଟାଣ୍ଟ୍ ଜେନେରାଲ୍ ପଦବୀରେ ଥିଲି, ବୃତ୍ତିଗତ ଅଡ଼ିଟ୍ ଆକାଉଣ୍ଟସ୍ କାମରେ ତଦାରଖ କରିବା ସହ ଗୋଟାଏ ସାମ୍ରାଜ୍ୟ ତୁଲ୍ୟ ଅଫିସ୍ ଚଳାଇବାର ଦାୟିତ୍ୱ ନେଇ, କଲିକତାରେ ପଶ୍ଚିମବଂଗର ଆକାଉଣ୍ଟାଣ୍ଟ୍ ଜେନେରାଲ୍ ହୋଇ । ଏବଂ ସେଠି ମୁଁ ମୋ ଲେଖକପଣିଆର ଅସ୍ତ୍ର ପ୍ରୟୋଗ କରିଥିଲି, ବିକ୍ଷୁବ୍‌ଧ ପ୍ରଜାମାନଙ୍କୁ ସମ୍ଭାଳିବା ପାଇଁ, ମନେଇବା ପାଇଁ । କିନ୍ତୁ ଏଠି ସେଭଳି କୌଣସି ସାଧନର ଆବଶ୍ୟକତା ନ ଥିଲା । କାରଣ ସହଜେ ସମସ୍ତେ ଜାଣିଗଲେଣି ମୋର ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇବାର ସଂବାଦ ଯୋଗୁଁ, ଯେ ଏଇ ନୂଆ ମହାଲେଖାକାର ଜଣକ ମଧ୍ୟ ଜଣେ ବିଶିଷ୍ଟ ଲେଖକ । ସେଇ ଇମେଜ୍‌ର କରାମତି ହେଉ ବା ରାଜସ୍ଥାନୀ କର୍ମଚାରୀଙ୍କର ସ୍ୱଭାବଗତ ସୌଜନ୍ୟ, ଏଠି ମୋତେ ଏକ ଅପୂର୍ବ ସଫଳତା ମିଳିଥିଲା ପ୍ରଜାପାଳନର ସ୍ତରରେ । ରିକ୍ରିଏସନ୍ କ୍ଲବ୍ କଥା ଛାଡ଼ିଦିଅ, ଯେଉଁମାନେ ମୋର ଲେଖକୀୟ କଳାତ୍ମକତାକୁ ସମ୍ମାନ ଦେଉଥିଲେ, ତାଙ୍କର ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମର ପୁରୋଧା ହେବା ଲାଗି ଅନୁରୋଧ କରି । ଅଫିସ୍‌ର ଟ୍ରେଡ୍ ୟୁନିଅନ୍ ଜାତୀୟ ଆସୋସିଅନ୍ (କର୍ମଚାରୀ ସଂଘ) ମଧ୍ୟ ମୋତେ ତାଙ୍କ ଶୁଭାକାଙ୍କ୍ଷୀ ବଡ଼ଭାଇ ବୋଲି ମଣୁଥିଲେ । ଅନ୍ତତଃ ସେହିପ୍ରକାର ଆସ୍ଥା ଆଣି ଦେଇଥିଲେ ମୋ ମନରେ । ତାଙ୍କର କର୍ମକର୍ତ୍ତାମାନେ ମୋତେ 'ଘରୋଇ' ଭାବରେ ଭେଟି ମୋର ପରାମର୍ଶ ନେଉଥିଲେ । ଯେ ସାର୍, କୁହନ୍ତୁ କଣ କରିବା ଏଇ ସମସ୍ୟା ବିଷୟରେ ? କେଉଁ ଭାବରେ ଅପର ବଡ଼କର୍ତ୍ତାମାନଙ୍କୁ ଅଡ଼ିଟ୍‌ର ଜେନେରାଲ୍ ଅଫିସ୍ ତଥା ଭାରତ ସରକାରଙ୍କୁ ମନେଇବା ଆମର ଏଇ ନ୍ୟାଯ୍ୟ ଦାବୀ ପୂରଣ କରିବା ଲାଗି । କେତେଜଣ ଅଫିସର୍ ମୁଖ୍ୟ (Head of the Office) ମାନଙ୍କୁ ମିଳିଥାଏ ଏଭଳି ଆତ୍ମୀୟତାର ଅନୁଭବ ?

ବାକୀ ରହିଲା ମୋର ବୃତ୍ତିଗତ କାମ, 'ଲେଖା' ଓ 'ଲେଖା ପରୀକ୍ଷା' । ଲେଖା ପରୀକ୍ଷା ଅର୍ଥାତ୍ ଅଡ଼ିଟ୍ କାମର ପରିପ୍ରେକ୍ଷୀରେ ତମକୁ ଅବଶ୍ୟ ସମାଲୋଚନା କରିବାକୁ ପଡ଼ିବ ରାଜ୍ୟ ସରକାରଙ୍କ ନାନାଦି ଅର୍ଥଭିତ୍ତିକ ଅବହେଳା, ଅପବ୍ୟୟ, ଅନିୟମ ଇତ୍ୟାଦି, ଯାହା ତମ ଆଖିରେ ପଡ଼ିଛି । ଏବଂ ସେହେତୁ ରାଜ୍ୟ ସରକାରଙ୍କ ଅଧିକାରୀମାନଙ୍କ ସାଙ୍ଗରେ କଥାକଟାକଟି କରିବା ଅନିବାର୍ଯ୍ୟ । ଚିଠିପତ୍ରର ଦିଆନିଆରେ ହେଉ ଅଥବା ପବ୍‌ଲିକ୍ ଆକାଉଣ୍ଟସ୍ କମିଟିରେ ମୁହାଁମୁହିଁ ହୋଇ । ଏବଂ ବେଳେ ବେଳେ ତାହା ଉଗ୍ରରୂପ ଧାରଣ କରେ । ଏଇ ଅନୁଭୂତି କିଛି ନୂଆ ନ ଥିଲା ମୋ ପାଇଁ । କିନ୍ତୁ ଯାହା ନୂଆ ଥିଲା ତା' ହେଉଛି

ଏଇ ଯେ ଏଇ ବୃତ୍ତିଗତ ବିରୋଧାତ୍ମକ ଆଚରଣ ସତ୍ତ୍ୱେ, ଆକାଉଣ୍ଟାଣ୍ଟ୍ ଜେନେରାଲ୍‌ଙ୍କୁ ସେମାନେ ଗ୍ରହଣ କରି ନେଇଥିଲେ ରାଜଦରବାରର ଅନ୍ୟତମ ସମ୍ମାନୀୟ ସାମନ୍ତ ହିସାବରେ । ଗଭର୍ଣ୍ଣର୍‌ଙ୍କ ଠାରୁ ଆରମ୍ଭ କରି ଚିଫ୍ ସେକ୍ରେଟେରୀ ଓ ରାଜ୍ୟ ସରକାରଙ୍କ ବିଭିନ୍ନ ବରିଷ୍ଠ ଅଧିକାରୀମାନଙ୍କ ଠାରୁ ବରାବର ନିମନ୍ତ୍ରଣ ମିଳୁଥିଲା ମୋତେ ତାଙ୍କ ସାଙ୍ଗରେ ବସି ଚା' ଖାଇବା ପାଇଁ । ଚିଫ୍ ସେକ୍ରେଟେରୀ ଗୋଟିଏ ବିଦାୟ ଭୋଜିର ଆୟୋଜନ କରିଥିଲେ, ମୁଁ ଜୟପୁରରୁ ବଦଳି ହୋଇ ଆସିବା ପୂର୍ବରୁ । ଏବଂ ବିଶେଷ ଉଲ୍ଲେଖଯୋଗ୍ୟ ଯେ ପବ୍‌ଲିକ୍ ଆକାଉଣ୍ଟସ୍ କମିଟି ମଧ୍ୟ ମୋତେ ବିଦାୟ ସମ୍ବର୍ଦ୍ଧନା ଦେଇଥିଲେ, ଗୋଟିଏ ବିଶେଷ ବୈଠକ ଜରିଆରେ ।

କିନ୍ତୁ ଏଭଳି ସୌହାର୍ଦ୍ଦ୍ୟ ସତ୍ତ୍ୱେ ମୋତେ କହିବାକୁ ପଡୁଛି ଯେ ଜଣେ ଅଡ଼ିଟ୍ ଅଫିସର୍ ହିସାବରେ ମୋତେ ଏଭଳି ଗୋଟିଏ ବିଷୟର ଉଲ୍ଲେଖ କରିବାକୁ ପଡ଼ିଥିଲା ଏଠି ଥିଲାବେଳେ, ଆମ ଅଡ଼ିଟ୍ ରିପୋର୍ଟରେ, ଯାହାର ପଟାନ୍ତର ନାହିଁ । ସାଧାରଣତଃ ଆମର ଅଡ଼ିଟ୍ ସମୀକ୍ଷା ହୁଏ ତାଙ୍କ ଆୟବ୍ୟୟର ରସିଦ୍, ଭାଉଚର୍ ଏବଂ ହିସାବଖାତାକୁ ନେଇ । ଏବଂ ସେଇଥିରୁ ମିଳିଥିବା ଭୁଲତ୍ରୁଟିକୁ ଆମେ ଦର୍ଶାଇ ଥାଉ ଆମ ଅଡ଼ିଟ୍ ରିପୋର୍ଟରେ । କିନ୍ତୁ ଏଠି ଦୈବାତ୍ ଆମ ନଜରକୁ ଆସିଲା ଏକ ବିଚିତ୍ର ବ୍ୟାପାର । କାଗଜପତ୍ର ସବୁ ଠିକ୍ ଅଛି, କୌଣସି ଭାଉଚର୍ କିମ୍ବା ରସିଦ୍, ସାର୍ଟିଫିକେଟ୍ ଆଦି ତ୍ରୁଟିପୂର୍ଣ୍ଣ ନୁହେଁ, କିନ୍ତୁ କାହିଁ ସେଇ ରାସ୍ତା ଖଣ୍ଡକ ଯେଉଁ 'କାମ'ର କାଗଜପତ୍ର ସୁରକ୍ଷିତ ହୋଇ ରହିଛି ଇତିହାସ ପାଇଁ ? କେଉଁଠୁ କେଉଁ ଯାଏଁ ଲମ୍ବିଛି ସେଇ ରାସ୍ତା ? ଏଭଳି ଏକ ଘୋର ମିଥ୍ୟାଚାରକୁ ପଦାରେ ପକାଇଥିବାର ଦୁର୍ଭାଗ୍ୟ ଆଉ କେବେ ହୋଇ ନଥିଲା ମୋର, ଜଣେ ଅଡ଼ିଟ୍ ଅଧିକାରୀ ହିସାବରେ । ହଁ, ଦୁର୍ଭାଗ୍ୟ ବୋଲି କହୁଛି, କାରଣ ମୁଁ ମଧ୍ୟ ଜଣେ ଭାରତୀୟ ଏବଂ ମୋର ମୁଣ୍ଡ ତଳକୁ ହୋଇଯାଇଥିଲା । ଯେ ଆମେ ଭାରପ୍ରାପ୍ତ ଅଧିକାରୀ କର୍ମଚାରୀ କେତେଜଣ ହାତ ଧରାଧରି ହୋଇ ଏଭଳି ଏକ ବିଶ୍ୱାସଘାତକତା କରିପାରିଲୁ ନିଜ ଦେଶ ଓ ସମାଜ ପ୍ରତି, ଦି'ପଇସା ଲାଭ କରିବା ପାଇଁ । ହେଲେ ଭାବିବା କଥା ଯେ ଏଥିରେ ଅଡ଼ିଟ୍‌ର କିଛି ବାହାଦୂରୀ ନ ଥିଲା ପ୍ରକୃତରେ । ଦୈବାତ୍ ଏଇ ଅପକର୍ମ ଆମ ଆଖିରେ ପଡ଼ିଲା, ସେଇ ଅଂଚଳକୁ ଅନ୍ୟ କେଉଁଥିପାଇଁ ଯାଇଥିଲା ବେଳେ । ବରଂ ଏଇଥିରୁ ବୁଝା ପଡ଼ିଲା ଯେ ଆମର ଏଇ ଲେଖା ପରୀକ୍ଷା, ଘଟଣାସ୍ଥଳୀକୁ ନ ଯାଇ କେବଳ କାଗଜପତ୍ରର ଯାଂଚ, କେତେ ଭ୍ରମାତ୍ମକ ହୋଇପାରେ । ତେଣୁ ବାସ୍ତବ ଉଣ୍ଡି ଆମକୁ ବେଳେବେଳେ ସରଜମିନ ତଦନ୍ତ କରିବା ଉଚିତ, ଯାହା ବର୍ତ୍ତମାନ ଆମ ଅଡ଼ିଟ୍ ଅଭିଧାନରେ ନାହିଁ, କିନ୍ତୁ, ଅନ୍ୟାନ୍ୟ ଅନେକ ଦେଶରେ ପ୍ରଚଳିତ । ମୋର ଏହି ପ୍ରକାର ମତ ଦୃଢ଼ୀଭୂତ ହୋଇ ଯାଇଛି ସେଇ ଦିନଠୁଁ ।

ଯାହାହେଉ ବ୍ୟକ୍ତିଗତ ଦୃଷ୍ଟିରୁ ମୋର ଭାଗ୍ୟ ଭଲ ଯେ ପବ୍ଲିକ୍ ଆକାଉଣ୍ଟସ୍ କମିଟିରେ ଏଇ ଅଡ଼ିଟ୍ ପାରାର ଆଲୋଚନା ବେଳକୁ ମୁଁ ବଦଳି ହୋଇ ଚାଲିଆସିଥିଲି ସେଠୁ । ତେଣୁ ଯେଉଁମାନଙ୍କର ତତ୍ତ୍ୱାବଧାନ ସତ୍ତ୍ୱେ (କିମ୍ବା ତାଙ୍କ ସହିତ ସଲାସୁତରା ହେତୁ) ଏଭଳି ଅପକର୍ମ ହୋଇପାରିଲା, କମିଟି ଘରେ ବସି ତାଙ୍କ ମୁହାଁମୁହିଁ ହେବାର ଦୁଃଖ ଭୋଗିବାକୁ ପଡ଼ିଲା ନାହିଁ ।

ଜୟପୁର ଛାଡ଼ିବା ପୂର୍ବରୁ ବୀରଭୂମି ରାଜସ୍ଥାନର ନାନା ଐତିହାସିକ ଘଟଣାର ସ୍ମାରଣିକା ବିଷୟରେ କିଛି କହିବି ନାହିଁ କେମିତି ଜଣେ ଦର୍ଶକ ହିସାବରେ ? ଅବା ଏଇ ମରୁଭୂମି ସଂଲଗ୍ନ ଅଂଚଳର ଆଖିଦେଖା ବିଶେଷତ୍ୱ ନେଇ ? କିନ୍ତୁ କହି ବସିଲେ ରାତି ପାହିଯିବ । ତେଣୁ କେବଳ ସେଇସବୁ ଦୃଶ୍ୟ ବିଷୟରେ କହୁଛି କିଛି ଯାହା ମୋ ମନରେ ବିଶେଷ ଆନନ୍ଦ, କୌତୂହଳ ଅବା ପ୍ରଶ୍ନବାଚୀ ସୃଷ୍ଟି କରିଥିଲା ।

ଢ଼ାଉଆ ରଂଗର କୋଠାବାଡ଼ି ବିଶିଷ୍ଟ, ତେଣୁ ଗୋଲାପି ସହର Pink City ନାମରେ ଅଭିହିତ ଜୟପୁର ଗୋଟିଏ ପରିଷ୍କାର ପରିଚ୍ଛନ୍ନ ଏବଂ ଯୋଜନା ଅନୁଯାୟୀ ନିର୍ମିତ ଆଧୁନିକ ସହର, ଏଥିରେ ସନ୍ଦେହ ନାହିଁ । କିନ୍ତୁ କେଜାଣି କେମିତି ସେଇ ରଂଗରୂପର ସମାନତା, କୌଣସି ତରଂଗ ସୃଷ୍ଟି କରିପାରିଲା ନାହିଁ ମୋ ମନରେ । ତାର ପ୍ରାସାଦ ଓ ଦୁର୍ଗମାନଙ୍କରେ ମଧ୍ୟ ସେମିତି କିଛି ଅଭିନବ ବସ୍ତୁ ମିଳିଲା ନାହିଁ ମୋତେ, ଯଦିଓ ସେଗୁଡ଼ିକ ଏକାଧାରରେ ବିଶାଳ ଓ ସୁନ୍ଦର ବୋଲି କହିବାକୁ ହେବ । ବିଶେଷତଃ ସହର ମଧ୍ୟରେ ଥିବା 'ହାଓ୍ୱାଇ ମହଲ' ନାମକ ରାଜପ୍ରାସାଦ ।

କିନ୍ତୁ ମୋ ସ୍ମୃତିପଟରେ ଲାଖି ରହିଛି ଚିତୋରଗଡ଼ ଯାତ୍ରା, ବିକାନୀରକୁ ଟୁର୍‌ରେ ଯାଇଥିଲାବେଳେ । ବାଟରେ ବିସ୍ତୃତ ମହାଶୂନ୍ୟ ପ୍ରାନ୍ତର ଯେଉଁଠି କେବଳ ବାଲିସ୍ତୂପ ଓ ବଣବୁଦା । ହେଲେ ଭାବିବା ବିଷୟ ଯେ ଏଇ ଅଂଚଳରେ ମଧ୍ୟ ଅଛି 'ସାଓ୍ୱନ୍' ଘାସର ପ୍ରାଦୁର୍ଭାବ, ଯାହା ଗାଈଗୋରୁଙ୍କ ଖାଦ୍ୟ, ଏବଂ ଯେଉଁଥିପାଇଁ ଏଠିକାର ଗୋଦୁଗ୍ଧ ଏତେ ପ୍ରଚୁର ଏବଂ ଉତ୍କୃଷ୍ଟ ଧରଣର । ନହେଲେ କି ବିକାନୀର ସହର ରସଗୋଲା ଆଦି ନାନା ଛେନାମିଠା ପ୍ରସ୍ତୁତ କରି ବାହାରକୁ ରପ୍ତାନି କରିବାର ଏଭଳି ପ୍ରସିଦ୍ଧି ଲାଭ କରି ପାରିଥାଆନ୍ତା ? ପ୍ରକୃତରେ ଓଡ଼ିଶା ବାହାରେ ଏବଂ ସୁଲଭ ମୂଲ୍ୟରେ ଏଭଳି ସୁସ୍ୱାଦୁ ରସଗୋଲା ମିଳିପାରେ ବୋଲି ମୋର ଧାରଣା ନ ଥିଲା । କିନ୍ତୁ ହାୟ ! ଯେଉଁଠି କ୍ଷୀର ନଈ ପ୍ରବାହିତ ହେଉଛି ବୋଲି କହିଲେ ଚଳେ, ସେଠି ପାଣିର ଏତେ ଅଭାବ ଯେ ପାଣିର କୂଅସବୁ ବିଭିନ୍ନ ପରିବାର ଅବା ଗ୍ରାମର ଅମୂଲ୍ୟ ସଂପତ୍ତି ବୋଲି ସୁରକ୍ଷିତ ହୋଇ ରହିଥାଏ, ତାଲାଚାବି ତଥା ନିର୍ଦ୍ଦିଷ୍ଟ ଜଗୁଆଳିମାନଙ୍କ ସାହାଯ୍ୟରେ । ସେହିଭଳି ଏକାଧିକ ସୁରକ୍ଷିତ କୂଅ ମଧ୍ୟ ମୋ ଆଖିରେ ପଡ଼ିଥିଲା ଏଇ ଅଂଚଳ ପାରି ହେଲା ବେଳେ । ଏବଂ ମୁଁ ବୁଝିଲି ଯେ ଅତିଥିଙ୍କୁ ପ୍ରଥମେ

ସୁଶୀତଳ ପାଣି ମୁନ୍ଦିଏ ପିଇବାକୁ ଦେବା କାହିଁକି ଏଠିକା ଅତିଥି ସଂସ୍କାରର ଏକ ସୁପ୍ରଧାନ ପହିଲି କଥା । ଏବଂ କାହିଁକି ପଡ଼ୋଶୀ କାବା ହୋଇ ଅନେଇଲେ ମୋ ଆଡ଼କୁ ଆଘାତ ପାଇଲା ପରି, ଯେତେବେଳେ ମୁଁ ପ୍ରଥମେ ଯାଇଥିଲି ତାଙ୍କ ଘରକୁ, ହେଲେ ମୋ ହାତକୁ ବଢ଼େଇ ଦିଆଯାଇଥିବା ପାଣି ଗିଲାସଟିଏ ଗ୍ରହଣ କରିବାକୁ ନାହିଁ କରିଦେଲି ।

ଏବଂ ଚିତୋରଗଡ଼ରେ ପହଞ୍ଚିଲା ପରେ ଚାହିଁ ରହିଲି ସେଇ ଗଡ଼ଟିକୁ । ଏଇ କଣ ସେଇ ଦୁର୍ଗ ଯାହା ବାରଶହ ବର୍ଷ ତଳେ ନିର୍ମିତ ହୋଇଥିଲା ଏବଂ ତିନି ତିନିଥର ଲୁଣ୍ଠିତ ହୋଇଥିଲା ପ୍ରଥମ ଆଠଶହ ବର୍ଷ ଭିତରେ ? ଏବଂ କିଭଳି ଶୌର୍ଯ୍ୟ ଓ ସୌନ୍ଦର୍ଯ୍ୟର ପରାକାଷ୍ଠା ଦେଖାଇଥିଲେ ସେମାନେ - ପଦ୍ମିନୀ, କୁମ୍ଭ, ବନବୀର ଓ ରାଣାପ୍ରତାପ ଓଗେର, ଯେଉଁମାନଙ୍କ ବଡ଼ପଣକୁ କାଳ ସହିପାରିଲା ନାହିଁ, ତେଣୁ ତାର ସାକ୍ଷୀ ବୋଲାଉଛି ଏଇ ଧ୍ୱସ୍ତବିଧ୍ୱସ୍ତ ବିରାଟ ଦୁର୍ଗ ? ଅତିଶୟତାକୁ କଣ ବାଦ ଦେଇ ହୁଅନ୍ତା ନାହିଁ ବଡ଼ପଣରୁ, ଯେମିତିକି କାଳ ସମେତ ଶତ୍ରୁର କୁଟିଳ କଟାକ୍ଷରୁ ରକ୍ଷା ପାଇ ପାରିଥାଆନ୍ତା ସେମାନଙ୍କ ସଂସାର ?

ବିକାନୀରରେ 'ଜୟ ଜଂଗଲଧର ବାଦଶାହ !'ଙ୍କର ପ୍ରଶସ୍ତି ଖୋଳା ହୋଇ ରହିଥିଲା ସେଠିକାର ଲାଲ୍‌ଗଡ଼ ଓ ଜୁନାଗଡ଼ ପ୍ରାସାଦ ମାନଙ୍କରେ । ଇତିହାସ କୁହେ ଯେ ଏଇ ରାଠୋର ବୀର ପ୍ରାଣପାତ ପୂର୍ବକ ହଜାର ହଜାର ହିନ୍ଦୁମାନଙ୍କୁ ରକ୍ଷା କରିଥିଲେ ମାଡ଼ି ଆସୁଥିବା ମୋଗଲ ସେନାଙ୍କ କବଳରୁ । ହେଲେ ଏଇ ଦୁର୍ଗମାନଙ୍କ ପ୍ରାଚୀରରେ ମଧ୍ୟ ଅଂକିତ ହୋଇ ରହିଛି ଅନେକ ସତୀ ମାନଙ୍କ ହାତଚିହ୍ନ । ଯାହା ସେମାନେ ରଖିଯାଇଛନ୍ତି ଯୁଦ୍ଧରେ ପ୍ରାଣପାତ କରିଥିବା ବୀର ସ୍ୱାମୀମାନଙ୍କ ନିଧନ ପରେ, ଚିତାରେ ଝାସ ଦେବା ପୂର୍ବରୁ, ଭବିଷ୍ୟତକୁ ପ୍ରେରଣା ଦେବା ପାଇଁ । ପୁଣି ସେଇ ପ୍ରଶ୍ନ ଆସେ ମନରେ - କାହିଁକି ଏଇ ଅତିଶୟତା ? କିଭଳି ପ୍ରେରଣା ମିଳୁଛି ଆମକୁ ସେହି ନାହିଁ-ନ-ଥିବା ବୀରତ୍ୱ ଓ ସତୀତ୍ୱରୁ ? ଏବଂ ଯଦି ବା ମିଳୁଥାଏ ତାହା କେଉଁ ଭାବରେ ଓ କେତେଦୂର କାର୍ଯ୍ୟକାରୀ ହୋଇ ପାରୁଛି ଆଜିକାର ସଂଯତ, ସଂଭ୍ରାନ୍ତ ଓ ତଥାକଥିତ ବୁଦ୍ଧିବାଦୀ ଯୁଗରେ ?

ଏହିପ୍ରକାର ଅନୁଧ୍ୟାନର ଅବକାଶ ରହିଲା ନାହିଁ ଯେତେବେଳେ ମୁଁ ଯାଇଥିଲି ଉଦୟପୁରକୁ । ଅତି ସୁନ୍ଦର ଏଇ ସହରଟି । ଏଠି ସବୁ କୋଠାବାଡ଼ିରେ ନରମ ଶୁଭ୍ରତାର ପ୍ରଲେପ । ଜୟପୁରର ବ୍ୟାପକ ନାଲିଚିଆପଣର ଅପର ପାଖ । ଏବଂ ରାଜସିକ ବିଳାସ ନିବାସର ଶେଷକଥା ବୋଲି ମନେ ହେଲା ଜୟପୁରର 'ଲେକ୍ ପ୍ୟାଲେସ୍' । ଏକ ପ୍ରଶସ୍ତ ଏବଂ ସ୍ୱଚ୍ଛସୁନ୍ଦର ଜଳାଶୟ ଉପରେ ଠିଆ ହୋଇଥିବା ଚିକିଚିକି ଧଳା ରାଜମହଲ, ଯାହା ବର୍ତ୍ତମାନ ଏକ ପଂଚତାରକା ହୋଟେଲରେ ପରିଣତ ହୋଇଛି । ସେଠିକି ଯାଇଥିଲି ଓଳିକ ପାଇଁ, ସେଇ ପରିବେଶକୁ ଯତ୍‌ସାମାନ୍ୟ ଉପଭୋଗ କରିବା ଲାଗି, ଯେତେଦୂର ସଂଭବ ।

ରାଜସ୍ଥାନରେ ଥିଲାବେଳେ ତା ବାହାରେ ଥିବା କେତୋଟି ସ୍ମରଣୀୟ ସ୍ଥାନକୁ ଯିବାର ସୁଯୋଗ ମିଳିଥିଲା । ଆଜମିର ଏବଂ ଭରତପୁର । ସେଇଠୁଁ ମଥୁରା ଓ ବୃନ୍ଦାବନ । ଠିକେ ଠିକେ କହୁଛି, ସେସବୁ ଜାଗାର ଅନୁଭୂତି ବିଷୟରେ -

ସପ୍ତମ ଶତାବ୍ଦୀରେ ଚୌହାନ ରାଜବଂଶ ଦ୍ୱାରା ପ୍ରତିଷ୍ଠିତ ଆଜମିର ସହରକୁ ରାଜପୁତନାର ସବୁଠାରୁ ପୁରୁଣା ସହର ବୋଲି କୁହାଯାଏ, ଯାହାର ନାଆଁ ଥିଲା ଅଜୟମେରୁ । କଥାଟାକୁ ଟିପି ରଖିଲି । କିନ୍ତୁ ଉପଭୋଗ କଲି ସର୍କିଟ୍ ହାଉସ୍‌ରେ ବସି ପ୍ରଶସ୍ତ ସୁନ୍ଦର 'ଆନ୍ନାସାଗର' ନାମକ ଲେକ୍‌କୁ ଅନେଇ ରହିବାର ଅଳସବିଳାସ । ଜୈନ 'ସୋନେକୋ ମନ୍ଦିର'କୁ ଯାଇ ଦେଖିଲି କେମିତି କେତେ ସୁନାରେ ଚିତ୍ରିତ ହୋଇଛି ଋଷଭନାଥଙ୍କ ଜନ୍ମବୃତ୍ତାନ୍ତ, ତାକୁ ଆହୁରି ମୂଲ୍ୟବାନ୍ କରିବା ଲାଗି । ପାପନାଶକ ପୁଷ୍କର ହ୍ରଦରେ ବୁଡ ଦେଲି ସତ, କିନ୍ତୁ ମୋର ପାପତକ ଧୋଇଦିଅ ବୋଲି କହିବାର ଦୁର୍ବଳତାକୁ ଘଉଡ଼େଇ ଦେଇ ପାରିଲି । ଏବଂ ଖ୍ୱାଜା ନିଜାମୁଦ୍‌ଦିନ୍ ଚିସ୍ତିଙ୍କ ଦରଘାକୁ ଯାଇ ଦେଖିଲି ଯେ ହିନ୍ଦୁମନ୍ଦିରମାନଙ୍କ ପରି ଏଠି ମଧ୍ୟ ପଣ୍ଡାମାନେ ହାଉଜାଉ ହେଉଛନ୍ତି ଦର୍ଶକଙ୍କୁ ଧର୍ମ କରିବା ଲାଗି ଉସ୍‌କେଇବା ପାଇଁ, ଯଥାବିଧି ମୁଦ୍ରା ବିନିମୟରେ । ଯେଉଁଥିରେ ଉଭୟଙ୍କୁ ହିତ ।

ସେଇଠୁଁ ସେଇ ଅନନ୍ୟ ପକ୍ଷୀନଗରୀ ଭରତପୁର । କେତେ ରଂଗର ଏବଂ କେତେ କିସମର ପକ୍ଷୀମାନଙ୍କୁ ନେଇ ସାପ ଚଢ଼େଇ, ରଂଗୀନ ବଗ, ଚାମୁଚ ଥଣ୍ଟ, ଓଗେର, ଯେଉଁମାନେ ନିଜ ନିଜ ଇଲାକାରେ ରାଜତ୍ୱ କରନ୍ତି । ଅଣ୍ଡା ଦିଅନ୍ତି, ଅଣ୍ଡା ଫୁଟିଲେ ପିଲାମାନଙ୍କୁ ଉଡ଼ିବା ଶିଖାନ୍ତି, ପ୍ରେମ କରନ୍ତି, ଧ୍ୟାନ କରନ୍ତି, ତଥା ଶିକାର । କିନ୍ତୁ ପରସ୍ପର ସାଙ୍ଗରେ ଲଢ଼େଇ କରନ୍ତି କି ? ଗାଇଡ୍ କହିଲା - ନାଇ ସେମିତି କିଛି ହୁଏ ନାହିଁ ତ ?

ଭରତପୁରରୁ ଦିନକ ପାଇଁ ମଥୁରା ଓ ବୃନ୍ଦାବନ ମଧ୍ୟ ବୁଲି ଆସିଥିଲି । ଚିରାଚରିତ ଧର୍ମପୀଠର ବାତାବରଣ । ହେଲେ ଭିନ୍ନ ବୋଲି ମନେ ହେଲା, ମଧ୍ୟ ଲୋକଦେଖାଣିଆ, ଯେତେବେଳେ ଦୋକାନୀମାନଙ୍କ ଠାରୁ ଆରମ୍ଭ କରି ଭିକାରୀମାନେ ମଧ୍ୟ, 'ରାଧେ ରାଧେ' କିମ୍ବା 'କୃଷ୍ଣ କୃଷ୍ଣ' ବୋଲି କୁହନ୍ତି ସଉଦା କଲାବେଳେ, ତଥା ଭିକ ମାଗିଲା ବେଳେ । ନାନା କଥା କାହାଣୀ ମଧ୍ୟ ଶୁଣିବାକୁ ପଡ଼ିଲା ସେଠି ଯେ ଏଇ କାରାଗୃହରେ କୃଷ୍ଣ ଜନ୍ମ ହୋଇଥିଲେ ଏମିତି ଯମୁନା ପାରି ହୋଇଥିଲେ, ସେଇଠୁଁ ଟିକିଏ ବଡ଼ ହେଲାରୁ ଏହିପ୍ରକାର ଲୀଳା ରଚିଥିଲେ ଇତ୍ୟାଦି । କିନ୍ତୁ 'ଇଏ ନୁହେଁ ! ଇଏ ନୁହେଁ !' ବୋଲି ପାଟି କରି ଉଠିବାକୁ ଇଚ୍ଛା ହେଲା ଯେତେବେଳେ ମୋତେ କୁହାଗଲା ଯେ ଏଇ ଥିଲା ସେଇ କୁଂଜବନ, ଯେଉଁଠାରେ ରାଧାକୃଷ୍ଣଙ୍କ ପ୍ରେମଲୀଳା ରଚିତ ହୋଇଥିଲା । କାରଣ ସେଇ ନୀରସ, ଧୂସର ଅନାବନା ଗଛମାନଙ୍କ ଗହନରେ ରୋମାନ୍ସ୍‌ର ରଂଗରୂପ ତିଳେ ହେଲେ ଦୃଶ୍ୟ ହେଲା ନାହିଁ ମୋତେ । ହାୟ ! ଧର୍ମ ବ୍ୟବସାୟୀମାନେ କଣ କଷ୍ଟ କରି ଜାଗାଟିକୁ ଆଉ ଟିକିଏ ଉପଯୋଗୀ କରିପାରି ନଥାଆନ୍ତେ ପ୍ରେମ ରୋମାନ୍ସ୍‌ର କଳ୍ପିତ ଅନୁଭବ ପାଇଁ ?

ଜୟପୁରରେ ଥିଲାବେଳେ ମଧ୍ୟ ଛୁଟି ନେଇ ଯାଇଥିଲି ହାଇଦ୍ରାବାଦକୁ, ସାହିତ୍ୟ ଏକାଡ଼େମୀ ଦ୍ୱାରା ଅନୁଷ୍ଠିତ ସଭାରେ ମୋର ପୁରସ୍କାର ଗ୍ରହଣ କରିବା ପାଇଁ, ୧୯୭୭ର ପୁରସ୍କାର ବିଜେତାମାନଙ୍କ ସହ, କାରଣ ପୂର୍ବବର୍ଷ ସ୍ୱାଜିଲାଣ୍ଡରୁ ଆସିବା ସଂଭବ ହୋଇନଥିଲା । ପୁରସ୍କାର ଲାଭର ଏତେଦିନ ପରେ ସେଇ ସ୍ୱୀକୃତିର ସ୍ଥୂଳ ସ୍ୱରୂପ ମୋତେ ବିଶେଷ ଉଲ୍ଲସିତ କରିପାରି ନଥିଲା । ଯାହାକି ସ୍ୱାଭାବିକ । କିନ୍ତୁ ଗୋଟିଏ ଅନୁଭବ ମୋତେ ଦୁଃଖ ଆଣି ଦେଇଥିଲା, ଯାହାକୁ ସ୍ୱାଭାବିକ ବୋଲି ଭାବିବା ଉଚିତ ନୁହେଁ । କାରଣ ମୁଁ ମର୍ମେ ମର୍ମେ ଅନୁଭବ କଲି ଯେ ମୁଁ ପ୍ରାୟ କିଛି ହେଲେ ଜାଣେ ନାହିଁ ସଭାରେ ବସିଥିବା ମୋର ସମବିଜେତାମାନଙ୍କ ସାହିତ୍ୟ ବିଷୟରେ । ଏହା ଗୋଟିଏ ଦୁଃଖଦ ବାସ୍ତବ ସତ୍ୟ, ଯଦିଓ ସାହିତ୍ୟ ଏକାଡ଼େମୀର ନିର୍ଘୋଷିତ ମୂଳମନ୍ତ୍ର ହେଉଛି ଯେ ଅନେକ ଭାଷାରେ ଲେଖା ହୋଇଥିବା ଭାରତୀୟ ସାହିତ୍ୟ ଅନେକ ନୁହେଁ, ଏକ । ମୋର ଲିଖିତ ଭାଷଣରେ ମୁଁ ମଧ୍ୟ ଏଇଆ କହିଥିଲି । ଯେ ଆମେ ସମସ୍ତେ ବନ୍ଦୀ ହୋଇ ରହିଛୁ ଆମ ନିଜ ନିଜ ଭାଷା ସାହିତ୍ୟର ସ୍ୱର୍ଣ୍ଣ ମନ୍ଦିରରେ । ଭାଷଣଟି ପୂର୍ବରୁ ପଠା ହୋଇଥିଲା ସେମାନଙ୍କ ପାଖକୁ । ହେଲେ ତାର ପ୍ରତ୍ୟକ୍ଷ ଅନୁଭବ ବିଶେଷ କଷ୍ଟ ଦେଲା ମୋତେ, ଏଇ ସଭାରେ ଆସି ବସିଲା ପରେ । ଆଉ କେତୋଟି ବର୍ଷ ଉତ୍ତାରୁ ଏହି ଅନୁଭବ କେତେ ଯନ୍ତ୍ରଣାଦାୟକ ହୋଇ ଉଠିଲା ମୋ ପାଇଁ, ଜଣେ ଭାରତୀୟ ଲେଖକ ହିସାବରେ, ଏବଂ କେଉଁ କାରଣରୁ, ସେ ବିଷୟରେ କହିବି ପରେ । ଯଥା ସମୟରେ ।

ହାଇଦ୍ରାବାଦ ପରେ ମୁଁ ସସ୍ତ୍ରୀକ ଯାଇଥିଲି ବ୍ୟାଗାଲୋର୍ ଓ ତାପରେ କଟକ, ମୋର ବ୍ୟକ୍ତିଗତ କାର୍ଯ୍ୟସୂଚୀ ଅନୁଯାୟୀ । ବ୍ୟାଗାଲୋର୍‌ରେ ବିବାହିତା ବଡ଼ଝିଅ ହୀନୁ ଓ ତାର ପରିବାର ସହିତ କିଛିଦିନ ବିତାଇ ଆସିବା ପାଇଁ । ଜ୍ୱାଇଁ ନଗେନ୍ ପଟ୍ଟନାୟକ ସେଇଠି ଅଛନ୍ତି ଏଇକ୍ଷଣି 'ରେକିଟ୍ ଓ କୋଲ୍‌ମ୍ୟାନ' କଂପାନୀର ରିଜନାଲ୍ ମ୍ୟାନେଜର ହୋଇ । କଂପାନୀ ତରଫରୁ ସୁନ୍ଦର ଘରଟିଏ ପାଇଛନ୍ତି । ଝିଅର ଦେହ ବେଶ ଭଲ ଅଛି ଏଇକ୍ଷଣି । ଏବଂ ଆମର ପାଂଚ ଚାରି ବର୍ଷର ଦୁଇ ନାତି ଅନୁରାଗ ଓ ଅଂଶୁମାନ୍ (ଡ଼ାକନାଆଁ ଚୁଟ୍‌କୁନ୍ ଓ ବୁଟ୍‌କୁନ୍) ବଢୁଛନ୍ତି ଯଥାବିଧି ଚଗଲାମି ଓ ବିଦ୍ୟାବୁଦ୍ଧିର ଝଲକ ଦେଖାଇ । ଭଗବାନଙ୍କୁ ଧନ୍ୟବାଦ ଦେଲି ଯେ ଯାହାହେଉ ଏଇ ଝିଅଟି ତାର ନର୍ମାଲ୍ ଜୀବନ ଅତିବାହିତ କରୁଛି, ଅତୀତର ଯାବତୀୟ ଆଶଂକାକୁ ପଛରେ ପକେଇ । ସେଇଠୁଁ କଟକରେ ବାପାବୋଉଙ୍କ ଆଶୀର୍ବାଦ ନେଇ ଫେରି ଆସିଲି ଜୟପୁରକୁ । ସେଠି ମଧ୍ୟ ଆଶ୍ୱସ୍ତ ହେଲି ଦେଖି ଯେ ସେମାନେ ମୋଟାମୋଟି ଭଲ ଅଛନ୍ତି ତାଙ୍କ ବୟସ ଅନୁପାତରେ । ଏବଂ ପୁଣି ଆଶ୍ୱାସନା ଦେଲି ସେମାନଙ୍କୁ ଯେ ମୁଁ ଏଇଠିକି ଫେରି ଆସିବି ରିଟାୟାର୍‌ମେଣ୍ଟ ପରେ ।

ସେପ୍ଟେମ୍ବର ୧୯୭୮ରେ ଜୟପୁରରୁ ବିଦାୟ ନେଇ ପୁଣି ଆସି ପହଞ୍ଚିଲି ମୋର ଅତି ଚିହ୍ନା ଦିଲ୍ଲୀ ନଗରୀରେ । ନିଯୁକ୍ତି 'ଆକାଉଣ୍ଟାଣ୍ଟ ଜେନେରାଲ୍, ସେଣ୍ଟ୍ରାଲ୍ ରେଭିନିଉଜ୍'

ଭାରତ ସରକାରଙ୍କ ଆୟବ୍ୟୟର ସାମଗ୍ରିକ ହିସାବଖାତା ତିଆରି କରିବା ତଥା ସେଥିର ସମୀକ୍ଷା କରିବାର ଦାୟିତ୍ୱ । ସହଜେ ଡିପାର୍ଟମେଣ୍ଟର ମଇଦାନରେ କାମ କରୁଥିବା ଅଧିକାରୀମାନଙ୍କ ମଧ୍ୟରେ ଅଗ୍ରଣୀ ବୋଲି ଧରିନିଆଯାଏ ଏଇ ମହାଲେଖାକାର ଜଣକୁ । ହଉ, ମୁଁ ମୋର ଦାୟିତ୍ୱ ସ୍ୱୀକାର କରି, ସମୁଚିତ ଆତ୍ମବିଶ୍ୱାସ କହେ ।

କହିବା ବାହୁଲ୍ୟ ଯେ ଦିଲ୍ଲୀରେ ଥିବା ପିଲାମାନେ ଆନନ୍ଦରେ ନାଚି ଉଠିଲେ ତାଙ୍କ ବାପାବୋଉଙ୍କୁ ସଶରୀରେ ଫେରିପାଇ । ମୁଁ ମଧ୍ୟ ନିଜକୁ କହିଲି, ଚେତେଇ ଦେଲା ପରି, ଯେ ଆଉ ଠକେଇଲେ ଚଳିବ ନାହିଁ ସେମାନଙ୍କୁ । ତାଙ୍କ ସବୁ ସୁଖଦୁଃଖରେ ଭାଗୀ ହୋଇ ମୋର ଦାୟିତ୍ୱ ନିଭେଇବାକୁ ପଡ଼ିବ । ଏବଂ ଯଥେଷ୍ଟ ବେଳ ହେଲାଣି (କେତେକେ ତିଆରୁଥିଲେ ଆମକୁ ଯେ ବେଳ ଗଡ଼ିଗଲାଣି) ତାଙ୍କୁ ତାଙ୍କ ଭବିଷ୍ୟତ ଜୀବନର ନାଆରେ ବସେଇ ଦେବା ପାଇଁ । ହଉ, ମୁଁ ପାରିବି । ଏଠି ମଧ୍ୟ ମୁଁ ମୋର ଦାୟିତ୍ୱବୋଧକୁ ହଁ ଭରିଲି, ଦୃଢ଼ତାର ସହ ।

୧୯୭୮ ସେପ୍ଟେମ୍ବରରୁ ୧୯୮୨ ମାର୍ଚ୍ଚ । ସାଢ଼େ ତିନିବର୍ଷର ମିଆଦ ଅବସର ଗ୍ରହଣ କରିବା ପୂର୍ବରୁ । ଯାରି ଭିତରେ ଉପରୋକ୍ତ ଦୁଇଟି ଦାୟିତ୍ୱର ପୂର୍ତ୍ତି ତଥା ଅବସାନ । ଧନ୍ୟବାଦ । ବାରବାର ମୁଁ ନିଜକୁ କହିଲି ଯେ ମୁଁ ପାରିବି । ସାହିତ୍ୟ - ଭିନ୍ନ ସଂସାରରେ ମଧ୍ୟ ମୁଁ କରିଯିବି ମୋ ଠାରୁ ଯାହା ଆଶା କରାଯାଏ ।

ପ୍ରଥମେ କହୁଛି କିଛି ମୋ ବୃତ୍ତିଗତ ଜୀବନର ଶେଷ ପର୍ଯ୍ୟାୟ ବିଷୟରେ । ସାମାନ୍ୟ ନାଆଁଟାରେ କଣ ଅଛି ବୋଲି ସେକ୍ସପିୟର୍ କହିଯାଇଛନ୍ତି । ଏବଂ କିଏ ଭଲା କଥାଟା ସତ ନୁହେଁ ବୋଲି କହିବ ? ହେଲେ ସେଇ ତ ପହିଲି ସୂଚନା ବସ୍ତୁଟିର, ତା ଗୁଣ ବିଷୟରେ ବିଶେଷ କିଛି ଜାଣିବା ପୂର୍ବରୁ । ସେହେତୁ ମୋତେ ଟିକିଏ ଅଡୁଆ ଲାଗିଲା ଯେ ଅଳ୍ପଦିନ ଭିତରେ, ମୋ ପଦବୀର ନାଆଁ ବଦଳି ଯିବାକୁ ବସିଛି । ଭାରତ ସରକାର ଆକାଉଣ୍ଟସ୍ କାମଟିକୁ ପୂରାପୂରି ତାଙ୍କ ହାତକୁ ନେଇଯିବେ ଏବଂ କେବଳ ଅଡ଼ିଟ୍ କାମ ହିଁ ଆମ ଡିପାର୍ଟମେଣ୍ଟର ଦାୟିତ୍ୱରେ ରହିବ, ସଂବିଧାନଗତ ଆବଶ୍ୟକତା ଅନୁଯାୟୀ । 'ଲେଖା'ର ଦାୟିତ୍ୱ କାଢ଼ି ନିଆଯିବ ଆମଠାରୁ, ରହିବ କେବଳ 'ଲେଖା ପରୀକ୍ଷା' । ଭଲ କଥା । କିନ୍ତୁ ତା ସାଙ୍ଗକୁ 'ମହା' ପଦଟିକୁ କାଢ଼ି ନିଆଯିବ କାହିଁକି ? ହେଲେ ତାହାହିଁ ହେଲା । କର୍ତ୍ତୃପକ୍ଷମାନେ ସ୍ଥିର କଲେ ଯେ ଏଣିକି 'ଆକାଉଣ୍ଟାଣ୍ଟ୍ ଜେନେରାଲ୍ ସେଣ୍ଟାଲ୍ ରେଭିନିଉଜ୍' ପଦବୀର ନାଆଁ ହେବ, 'ଡାଇରେକ୍ଟର୍ ଅଫ୍ ଅଡ଼ିଟ୍, ସେଣ୍ଟ୍ରାଲ ରେଭିନିଉଜ୍' । ଅର୍ଥାତ୍ 'ମହାଲେଖାକାର' କେବଳ ଜଣେ 'ନିର୍ଦ୍ଦେଶକ' ହୋଇ ରହିବେ । ମୋର କ୍ଷୀଣ ଆପତ୍ତି ଶୁଣା ଗଲା ନାହିଁ ସେତେବେଳେ । କିନ୍ତୁ ଉଲ୍ଲେଖଯୋଗ୍ୟ ଯେ କାଳକ୍ରମେ ସମସ୍ତେ ବୁଝିଲେ ଯେ କଥାଟା ଠିକ୍ ହୋଇନାହିଁ । ସେହେତୁ ସୁଖର ବିଷୟ ଯେ, 'ମହା'ର ସଂଜ୍ଞା ଫେରି ଆସିଛି ଏବେ । ଆଜି

ସେଇ ପଦବୀର ନାଆଁ ହେଉଛି 'ଡାଇରେକ୍ଟର୍ ଜେନେରାଲ୍ ଅଫ୍ ଅଡ଼ିଟ୍, ସେଣ୍ଟ୍ରାଲ୍ ରେଭିନିଉଜ୍' । ଅର୍ଥାତ୍ 'ମହାନିର୍ଦ୍ଦେଶକ, ଲେଖାପରୀକ୍ଷା କେନ୍ଦ୍ର ରାଜସ୍ୱ' । ସେହେତୁ ମନେ ହୁଏ ଯେ ମୁଁ କେସ୍‌ଟା ଜିତି ଯାଇଛି ଯାହାହେଉ । ପଦବୀ ତାର ନ୍ୟାଯ୍ୟ ମର୍ଯ୍ୟାଦା ଫେରିପାଇଛି, ଯଦିଓ ମୋ ନିଜର ସମ୍ବନ୍ଧ କେବେଠୁଁ ତୁଟିଗଲାଣି ତାଠୁଁ ।

'ଆକାଉଣ୍ଟାଣ୍ଟ୍ ଜେନେରାଲ୍, ସେଣ୍ଟ୍ରାଲ୍ ରେଭିନିଉଜ' ପଦବୀରେ ଥାଉଁ ଥାଉଁ ମୋତେ ଆଗ୍ରା ବିଶ୍ୱବିଦ୍ୟାଳୟରୁ ଗୋଟାଏ ନିମନ୍ତ୍ରଣ ମିଳିଥିଲା, ବିଶ୍ୱବିଦ୍ୟାଳୟର ଆନୁକୂଲ୍ୟରେ ଅନୁଷ୍ଠିତ ହେବାକୁ ଯାଉଥିବା ସପ୍ତମ "ସର୍ବଭାରତୀୟ ଆକାଉଣ୍ଟାନ୍‌ସି ଅଧିବେଶନ" (The All India Accountancy Conference) ଉଦ୍‌ଘାଟିତ କରିବା ଲାଗି । "ଡାଇରେକ୍ଟର୍ ଅଫ୍ ଅଡ଼ିଟ୍" ହିସାବରେ ସେଭଳି ନିମନ୍ତ୍ରଣ ମିଳିନଥାଆନ୍ତା, ତା ନୁହେଁ । ଯେତେହେଲେ ଇଏ ହେଉଛି ଅଡ଼ିଟ୍ ଏଣ୍ଡ ଆକାଉଣ୍ଟସ୍ ଡିପାର୍ଟମେଣ୍ଟ ଓ ମୁଁ ହେଉଛି ତାର ଜଣେ ବରିଷ୍ଠ ଅଧିକାରୀ । ହେଲେ ଗୋଟିଏ କାରଣରୁ ମୋତେ ଟିକିଏ ଭୟ ଲାଗୁଥାଏ ମୋର ଭୂମିକାକୁ ନେଇ । ପ୍ରଶାସନିକ ଅଭିଜ୍ଞତା ମୋର ଯଥେଷ୍ଟ ଅଛି ନିଶ୍ଚୟ, ଉଭୟ ଅଡ଼ିଟ୍ ଏବଂ ଆକାଉଣ୍ଟସ୍ ବିଦ୍ୟାର ପ୍ରୟୋଗ ବିଷୟରେ । କିନ୍ତୁ ମୁଁ ଚାଟର୍ଡ୍ ଆକାଉଣ୍ଟାଣ୍ଟ୍ କିମ୍ବା ସେମିତି କିଛି ନୁହେଁ । ମୁଁ ସେଇ ବିଦ୍ୟାର ଡିଗ୍ରୀ ହାସଲ କରିନାହିଁ । ତେଣୁ ମୋର ଉଦ୍‌ଘାଟନୀ ଭାଷଣ ଫମ୍ପା ଆୱାଜ୍ ବୋଲି ମନେ ହେବ ନାହିଁ ତ ଏଇ ବିଦ୍ୱାନ୍ ମଣ୍ଡଳୀରେ, ତୁଚ୍ଛା ପ୍ରଶାସକ କିମ୍ବା ନେତାଙ୍କ ଭାଷଣ ପରି ? ଅର୍ଥାତ୍ ସେଥିରେ ବିଦ୍ୟାର ସ୍ଫୁରଣ ନ ଥିବ, କେଉଁ ନୂଆ ବୁଦ୍ଧିବିଚାରର ଝଲକ, ଯାହା ସେମାନଙ୍କୁ ପ୍ରକୃତରେ ଭଲ ଲାଗିବ ? କିନ୍ତୁ ଯାହାହେଉ ମୁଁ ପାରିଉଠିଲି, ବିଫଳତାବୋଧରୁ ରକ୍ଷା ପାଇଗଲି । କାରଣ ମୁଁ ସ୍ଥିର କଲି ଯେ ମୁଁ ଏଇ ବିଦ୍ୟାର ଏକ ଅତିବିଶିଷ୍ଟ ନୂଆ ଦିଗ ବିଷୟରେ କହିବି, ଯାହା ମୋତେ ଆକୃଷ୍ଟ କରିଛି କେତେ ବର୍ଷ ହେଲା । ତା ହେଉଛି (Social Accountancy) ସମାଜଭିତ୍ତିକ ହିସାବକିତାବ । ଅର୍ଥାତ୍ ଆୟବ୍ୟୟ ଓ ଲାଭକ୍ଷତିର ହିସାବକୁ କେବଳ ଟଙ୍କାପଇସାରେ ଦର୍ଶାଇବା ଯଥେଷ୍ଟ ନୁହେଁ, ଉପଭୋକ୍ତା ସମାଜକୁ ଯେଉଁପ୍ରକାର ଶ୍ରମସ୍ୱୀକାର କରିବାକୁ ପଡ଼ିଲା କାମଟିକୁ କରିବା କରାଇବା ଦିଗରେ ଓ ତାର ଫଳାଫଳ କଣ ହେଲା ଜନସାଧାରଣ ସୁଖସ୍ୱାଚ୍ଛନ୍ଦ୍ୟକୁ ବଢ଼ାଇବା ଦିଗରେ, ସେଥିର ଲାଭ କେତେ ଓ କ୍ଷତି କେତେ, ତାର ଆକଳନ ମଧ୍ୟ କରିବାକୁ ପଡ଼ିବ । ନ ହେଲେ ସେଇ ହିସାବକିତାବର ମୂଲ୍ୟ ସାମାନ୍ୟ । ମଧ୍ୟ ଭ୍ରମାତ୍ମକ ହୋଇପାରେ । ତାର ଜ୍ୱଳନ୍ତ ଉଦାହରଣ ହେଉଛି ଲୋକଙ୍କ କଲ୍ୟାଣ ନିମନ୍ତେ ନିର୍ମାଣ କରାଯାଉଥିବା ସେତୁବଂଧ । କିନ୍ତୁ କେଉଁ ଭାବରେ ତାର ଆକଳନ କରାଯିବ ? ଏ ବିଷୟରେ କିଭଳି ପ୍ରଚେଷ୍ଟା କରାଯାଇଛି ବିଭିନ୍ନ ସମୃଦ୍ଧ ଦେଶରେ, ମୁଁ ତାର ଯତ୍‌କିଂଚିତ୍ ସୂଚନା ଦେଲି, ମୋ ନିଜର ଅଧ୍ୟୟନ ଓ ଗବେଷଣା ଅନୁଯାୟୀ । ଏବଂ ମୋ 'ଉଦ୍‌ବୋଧନ'ର ସାରକଥା ହେଲା ଯେ ଆମକୁ ମଧ୍ୟ

ସେ ଦିଗରେ ଆଗେଇ ଯିବାକୁ ପଡ଼ିବ । ତାହେଲେ ଯାଇ ଏଇ 'ହିସାବକିତାବ'ର ବିଦ୍ୟା ପ୍ରଗତିର ଯଥାର୍ଥ ସହାୟକ ହୋଇପାରିବ, ଆଜିର ଗଣତାନ୍ତ୍ରିକ ଯୁଗରେ । ସଭାସୀନ ଶ୍ରୋତାମାନଙ୍କ ଉଚ୍ଛ୍ୱସିତ ପ୍ରଶଂସା ଛଡ଼ା, ମିଡ଼ିଆର ସାଧୁବାଦ ମଧ୍ୟ ମିଳିଥିଲା ମୋତେ ଏଇ ଭାଷଣ ପାଇଁ । କେବଳ ସ୍ଥାନୀୟ ସଂବାଦପତ୍ରରେ ନୁହେଁ, ମଧ୍ୟ 'ଇକନମିକ୍ସ୍ ଟାଇମସ୍' ପରି ଗୋଟିଏ ବିଶିଷ୍ଟ ବିଜ୍ଞାନୀ ପତ୍ରିକାରେ । କହିଲେ ହେବ ଆଉ କେତୋଟି ସଫଳତା-ବିଫଳତାର କାହାଣୀ, ଏଇ ଚାରିବର୍ଷ ଭିତରେ, ମୋର ବୃତ୍ତିଗତ ଜୀବନକୁ ନେଇ :

ବରିଷ୍ଠ ଅଧିକାରୀଙ୍କର କଣ କିଛି ବିଦ୍ୟାବୁଦ୍ଧି ଦେବା ଉଚିତ ନୁହେଁ ନୂଆ ହୋଇ ଡିପାର୍ଟମେଣ୍ଟରେ ଯୋଗ ଦେଇଥିବା ପ୍ରୋବେସନର୍‌ମାନଙ୍କୁ , ନିଜର ଅଂଗେ ନିଭେଇବା ଅନୁଭୂତିକୁ ନେଇ ? ଅଡ଼ିଟ୍ ଆକାଉଣ୍ଟସ୍ ପାଠ ତ ସେମାନେ ସହଜେ ପଢ଼ିବେ ସିମ୍‌ଲାରେ, ତାଙ୍କ ପାଇଁ ନିର୍ଦ୍ଦିଷ୍ଟ ସ୍କୁଲରେ । କିନ୍ତୁ ଅଫିସ୍ ଚଳେଇବା, ତମ ଅପରପକ୍ଷ ଅର୍ଥାତ୍ ସରକାରଙ୍କ ପ୍ରତି ଟାଣ ହୋଇ ମଧ୍ୟ ସଦ୍‌ଭାବ ରଖିବା, ଇତ୍ୟାଦି ବିଷୟରେ ଅବଶ୍ୟ ଆମେ କିଛି କହିପାରିବୁ ତମକୁ । ଏହି ଭାବରେ ମୁଁ ମୋ କାହାଣୀକୁ ବେଶ୍ ଲମ୍ୱେଇ କରି କହୁଥିଲି ସେମାନଙ୍କୁ, ଯେତେବେଳେ ସେମାନେ ଆସୁଥିଲେ ମୋ ପାଖକୁ । ଏବଂ ମୋତେ ଅବଶ୍ୟ ଭଲ ଲାଗୁଥିଲା ଯେତେବେଳେ ସେମାନେ ମୋର ସାହିତ୍ୟିକ କୃତିତ୍ୱକୁ ଯୋଡ଼ି ଦେଉଥିଲେ ମୋର ପ୍ରଶାସନିକ ସଫଳତା ସାଙ୍ଗରେ । ପ୍ରକୃତରେ ସେଥିରେ କଣ କିଛି ସତ୍ୟତା ନ ଥିବ ? ମୋର ବୃତ୍ତି ଯେମିତି ଅଦ୍ଭୁତ ଖୋରାକ୍ ଯୋଗାଇଛି ମୋର ସାହିତ୍ୟକୁ, ଯାହା ମୁଁ ପୂର୍ବରୁ କହିଛି, ମୋ ସାହିତ୍ୟ କଣ ମୋର ବୃତ୍ତିଗତ ଜୀବନକୁ ବଳ ଦେଇ ନଥିବ ନାନାଦି ଗଡ଼ ଜିତିବାରେ ? ଲେଖକ-ସାହିତ୍ୟିକର ବ୍ୟକ୍ତିତ୍ୱରେ ଯେଉଁ ଉଦାରତା, ସହନଶୀଳତା ଓ ସଂବେଦନଶୀଳତା ଗଢ଼ି ଉଠେ (ଅନ୍ତତଃ ତାହା ଆଶା କରାଯାଏ) ତା'ର କଣ କିଛି ମୂଲ୍ୟ ନାହିଁ ମୋ ରାଜ୍ୟ ଚଳେଇବାରେ ? ଏହି ପରିପ୍ରେକ୍ଷୀରେ ମୁଁ ଦିନେ ଆଶ୍ଚର୍ଯ୍ୟ ହେଲି ଯେ ବଡ଼ କର୍ତ୍ତା ଚାହାଁନ୍ତି ମୁଁ ସିମ୍‌ଲାକୁ ଯାଇ ଗୋଟାଏ ଦି'ଟା ଲେକ୍‌ଚର୍ ଦେବି ଆମ ପ୍ରୋବେସନରମାନଙ୍କୁ । ଅଡ଼ିଟ୍ ଆକାଉଣ୍ଟସ୍ ପାଠ ବିଷୟରେ ନୁହେଁ । ସେଥିପାଇଁ ତ ବଛାବଛା ମାଷ୍ଟର ଆସନ୍ତି ସେଠି । ମୁଁ ତାଙ୍କୁ କିଛି କହିବି ମ୍ୟାନେଜମେଣ୍ଟ୍‌ର କଳା ଓ କାରସାଦି ବିଷୟରେ । ମୁଁ ଆନନ୍ଦର ସହିତ ତାଙ୍କ ଆଦେଶ ପାଳନ କଲି । ସିମ୍‌ଲାକୁ ଯାଇ ଦମ୍ଭର ସହିତ କହିଲି ସେମାନଙ୍କୁ ପ୍ରଶାସନ ତତ୍ତ୍ୱର କଖଗ କେଉଁ ପ୍ରକାର, ବହିପଢ଼ା ବିଭିନ୍ନ ଥିଓରିକୁ ମୋର ନିଜ ଅନୁଭୂତି ସାଙ୍ଗରେ ଯୋଡ଼ି ଦେଇ ।

କିନ୍ତୁ ହାୟ ! ଏଭଳି ଗୋଟିଏ ଘଟଣା ଘଟିଲା ମୁଁ ସେଇ ଅଫିସ୍ ଚଳାଉଥିଲା ବେଳେ, ଯାହାକୁ ଏକ ଅଗ୍ନିପରୀକ୍ଷା ବୋଲି ମନେ ହେଲା ମୋର । ୧୯୭୯ ଜୁଲାଇ ୧୭ ତାରିଖରେ ବଡ଼କର୍ତ୍ତା ଅର୍ଥାତ୍ କଂପ୍‌ଟ୍ରୋଲ୍‌ର ଏଣ୍ଡ୍ ଅଡ଼ିଟର୍ ଜେନେରାଲ୍ ଶ୍ରୀଯୁକ୍ତ ଜ୍ଞାନପ୍ରକାଶ

ଆସିଥିଲେ ମୋ ଅଫିସକୁ, ଗୋଟାଏ ସାଧାରଣ ପରିଦର୍ଶନର କ୍ରମରେ । ଅଫିସ୍‌ର କର୍ମରତ ଚେହେରା ଦେଖିବେ, ତଥା ମୋ ସହିତ ଆଳାପ ଆଲୋଚନା କରିବେ ଆମର ବିଭିନ୍ନ ସମସ୍ୟା ବିଷୟରେ । ମୁଁ ଜାଣିଥିଲି ଯେ ଏଇ ସୁଯୋଗରେ ଆମ କର୍ମଚାରୀ ସଂଘର ମୁଖିଆମାନେ ତାଙ୍କ ସାଙ୍ଗରେ ଦେଖା କରିବାକୁ ଚାହିଁବେ, ସେମାନଙ୍କର ନାନାଦି ପୂରଣ ନ ହୋଇଥିବା ଦାବୀକୁ ନେଇ । ଠିକ୍ ଅଛି । ମୁଁ ମଧ୍ୟ ଅଡ଼ିଟର୍ ଜେନେରାଲ୍‌ଙ୍କୁ ସୂଚନା ଦେଇଥିଲି ସେ ବିଷୟରେ, ଏବଂ ତାଙ୍କର ଆପତ୍ତି ନ ଥିଲା ସେମାନଙ୍କର ଜଣେ ଦି'ଜଣ ପ୍ରତିନିଧିଙ୍କ ସାଙ୍ଗରେ କଥାବାର୍ତ୍ତା କରିବା ଲାଗି । କିନ୍ତୁ କେମିତି କେଜାଣି ହଠାତ୍ ଥୋକେ ନାନାଦି ସ୍ଲୋଗାନ୍ ଦେଇ ମାଡ଼ି ଆସିଲେ ମୋ କମରା ଆଡ଼କୁ, ଯେଉଁଠି ମୁଁ କଥାଭାଷା ହେଉଥିଲି ଅଡ଼ିଟର୍ ଜେନେରାଲ୍‌ଙ୍କ ସାଙ୍ଗରେ । ଏବଂ ଦୁଃଖର ସହିତ କହିବାକୁ ପଡୁଛି ଯେ ମୋର ବ୍ୟକ୍ତିତ୍ୱ ବିଶେଷ କିଛି କାମ ଦେଲା ନାହିଁ ତାଙ୍କୁ ଶାନ୍ତ କରିବା ଦିଗରେ । ଏବଂ ଯେଉଁଭଳି ସ୍ଲୋଗାନ୍ ତାଙ୍କ ପାଟିରୁ ବାହାରୁଥିଲା ଅଡ଼ିଟର୍ ଜେନେରାଲ୍‌ଙ୍କ ସମେତ ତାଙ୍କ ଅଫିସର ବିଭିନ୍ନ ଅଧିକାରୀଙ୍କୁ 'ଡାଉନ୍' 'ଡାଉନ୍' ବୋଲି କହି, ତାହା କଦାପି କ୍ଷମଣୀୟ ନୁହେଁ । କିଛି ସମୟ ପରେ ସେମାନେ ଫେରିଯିବାକୁ ବାଧ୍ୟ ହେଲେ । କିନ୍ତୁ ମୁଁ ଜ୍ଞାନପ୍ରକାଶଜୀଙ୍କ ସହିତ ଏକମତ ହେଲି ଯେ ଏମାନଙ୍କୁ ଶାସ୍ତି ନ ଦେଲେ ଚଳିବ ନାହିଁ । ଏଇ ହେଲା ମୋ ଅଗ୍ନିପରୀକ୍ଷା । ସେମାନଙ୍କୁ ଅବଶ୍ୟ ଶାସ୍ତି ଦେବାକୁ ହେବ, କିନ୍ତୁ ଏଭଳି ଶାସ୍ତି ଯେ ତାଙ୍କୁ ବିଶେଷ ବାଧିବ ନାହିଁ । ଏବଂ ଅଳ୍ପ କେତେଜଣଙ୍କ ଦୁର୍ବ୍ୟବହାର ଯୋଗୁଁ ସେମାନଙ୍କର ସମୂହ ସ୍ୱାର୍ଥର କ୍ଷତି ହେବ ନାହିଁ । ଅନ୍ୟ ଅର୍ଥରେ ମୋତେ ପ୍ରଶାସନର ମର୍ଯ୍ୟାଦା ରକ୍ଷା କରିବାକୁ ପଡ଼ିବ, ହେଲେ ମୁଁ ମୋର 'ପ୍ରଜାବତ୍ସଳ' ଇମେଜ୍‌ରେ ଆଂଚ ଲଗାଇବାକୁ ଚାହେଁ ନାହିଁ । ଏଇ ହେଲା ମୋର ଅଗ୍ନିପରୀକ୍ଷା । ସେଥିରୁ ମୁଁ କେମିତି ଉଧୁରିଲି, ତାର ବାଗ ମୁଁ ବତେଇ ପାରିବି ନାହିଁ । ତେବେ ମୋର ବିଶ୍ୱାସ ଯେ ମୁଁ ସସମ୍ମାନେ ଉଧୁରି ଆସିଛି । ଏବଂ ସେଥିପାଇଁ ମୋତେ ବଡ଼ ଅଫିସର୍ କର୍ତ୍ତାମାନଙ୍କୁ ତଥା ମୋ ପ୍ରଜାମଣ୍ଡଳୀକୁ ମଧ୍ୟ ଧନ୍ୟବାଦ ଦେବାକୁ ପଡ଼ିବ ।

ଯାହାହେଉ ମେ ୧୨ତାରିଖ ୧୯୮୧ରେ ମୁଁ ମଧ୍ୟ ଗଲି ବଡ଼ ଅଫିସକୁ । ପ୍ରଥମେ ସେଇ ପ୍ରଥମ ଶ୍ରେଣୀ ଆକାଉଣ୍ଟାଣ୍ଟ୍ ଜେନେରାଲ୍ ପାହ୍ୟାରେ 'ଡାଇରେକ୍ଟର ଅଫ୍ ଅଡ଼ିଟ୍ ହୋଇ । ସରକାରୀ କଂପାନୀମାନଙ୍କ ଅଡ଼ିଟ୍ କାମର ନିୟନ୍ତ୍ରଣ ଦିଗରେ କିଛି ବିଶେଷ କାମ କରିବା ଲାଗି । ତାପରେ ଅଗଷ୍ଟ ୧୧ ତାରିଖ ୧୯୮୧ରେ ମୁଁ ଆଡ଼ିସନାଲ୍ ଡେପୁଟି କଂପଟ୍ରୋଲର୍ ଏଣ୍ଡ ଅଡ଼ିଟର ଜେନେରାଲ୍ ପଦବୀକୁ ଉନ୍ନୀତ ହେଲି, ବଡ଼କର୍ତ୍ତାଙ୍କ ଅନ୍ୟତମ ସହାୟକ ହୋଇ । ତାହାହିଁ ହେଲା ମୋର ଶେଷ ପ୍ରମୋସନ୍ ।

ଏବଂ ଫେବୃଆରୀ ୨୮ତାରିଖ ୧୯୮୨ ମସିହାରେ ମୁଁ ବିଦାୟ ନେଲି ଅଡ଼ିଟ୍ ଏଣ୍ଡ ଆକାଉଣ୍ଟସ ସର୍ଭିସ୍‌ରୁ । କାରଣ ସେଇଦିନ ମୋତେ ୫୮ ବର୍ଷ ପୂରିଲା । ବିଦାୟ

ସମ୍ବର୍ଦ୍ଧନାରେ ମୋତେ ପ୍ରଭୂତ ପ୍ରଶଂସା ତଥା ଶୁଭେଚ୍ଛା ମିଳିଲା ମୋର ସହାୟକମାନଙ୍କ ଠାରୁ । ତଥା ବଡ଼କର୍ତ୍ତାଙ୍କ ସମେତ ମୋର ସହକର୍ମୀମାନଙ୍କ ଠାରୁ । ଏହି ସଂକ୍ରାନ୍ତରେ ଉଲ୍ଲେଖଯୋଗ୍ୟ ଗୋଟିଏ କୌତୁକପୂର୍ଣ୍ଣ ସଂଳାପ । ଜଣେ ସହକର୍ମୀ ବଂଧୁ କହିଲେ ସଂବର୍ଦ୍ଧନା ସଭାରେ, ଯେ ଯାହାହେଉ ଏଣିକି ମିଷ୍ଟର୍ ଦାସଙ୍କୁ ଯଥେଷ୍ଟ ସମୟ ମିଳିବ ତାଙ୍କ ସାହିତ୍ୟ ପାଇଁ । କୌଣସି ଫାଇଲ୍ କି ମିଟିଂଗ୍ ଇତ୍ୟାଦିର ଦଡ଼ମଡ଼ି ନାହିଁ, ଖାଲି ସୂର୍ଯ୍ୟାସ୍ତକୁ ବସି ଦେଖୁଥିବେ ଏବଂ ଲେଖି ଚାଲିଥିବେ ରାଶି ରାଶି ଗପ, କବିତା, ଆଉ କେତେ କଣ । ମୁଁ ତାର ଉତ୍ତରରେ କହିଥିଲି ଯେ କ୍ଷମା କରିବେ, ମୋର ଭୟ ହେଉଛି ସେଇ ପରିସ୍ଥିତିର କଳ୍ପନା କରି । ମନେ ପଡ଼ି ଯାଉଛି ଟି.ଏସ୍. ଇଲିଅଟ୍ କଣ କହିଲେ ତାଙ୍କ ବଂଧୁଙ୍କୁ ଯେତେବେଳେ ସେ ଏଇ ସୂର୍ଯ୍ୟାସ୍ତର ଅବତାରଣା କଲେ । କବି ସେତେବେଳେ ତାଙ୍କ ବ୍ୟାଂକ୍ ଚାକିରୀରୁ ଅବସର ନେଇ ସାରିଥିଲେ ଏବଂ କହିଲେ - ପ୍ଲିଜ୍, ନୋ ଶପ୍-ଟକ୍ ପ୍ଲିଜ୍ (Please, no shop-talk please) । ଅର୍ଥାତ୍ ଏଇ ସୂର୍ଯ୍ୟାସ୍ତ ଇତ୍ୟାଦି ତ ଏଇକ୍ଷଣି ମୋ ଜୀବନର ଧଂଦା । ତେଣୁ ସେଇ ଧଂଦାକୁ ନେଇ କ'ଣ ଗପିବା କଥା ବଂଧୁମିଳନର ଏଇ କେତୋଟି ମୂହୁର୍ତ୍ତରେ, ଯେତେବେଳେ ମୁଁ ମୋ ମନଟାକୁ ଟିକିଏ ହାଲୁକା କରିଦେବାକୁ ଚାହେଁ ?

ପ୍ରକୃତରେ ଆଜି ମୋର ବି ସେମିତି ମନେ ହୁଏ ବେଳେ ବେଳେ ଚାକିରୀରୁ ଅବସର ନେବାର ଏତେବର୍ଷ ପରେ, ଯେତେବେଳେ କେବେ କେମିତି ମୁଁ ଆମନ୍ତ୍ରିତ ହୁଏ କେଉଁ ଅଡ଼ିଟ୍ ଅଫିସକୁ ତାଙ୍କ ଆନୁଷ୍ଠାନିକ ସଭାସମିତିରେ ଦି'ପଦ କହିବା ପାଇଁ । ବିଶେଷ ଖୁସି ହୋଇ ଉଠେ, ସତେ ମୋ ଧଂଦାରୁ ମୁକୁଳି ଯାଇ ଚିତ୍ତବିନୋଦନ କଲା ପରି । ମୋ ପୁରୁଣା ସଂସାରର ସ୍ୱାଭିମାନୀ ଭାଇଭଉଣୀଙ୍କ ସାଙ୍ଗରେ ମିଳିତ ହୋଇ ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ବିଷୟରେ କିଛି କହିବାର ସୁଯୋଗ ମିଳିଛି ମୋତେ, ଏହି ଭାବରେ ।

ପ୍ରାୟ ଏଇ ସମୟକୁ ମୁଁ ମଧ୍ୟ ମୋର ସାଂସାରିକ ଦାୟିତ୍ୱରୁ ଅବସର ନେଇ ପାରିଥିଲି କି ଯାହା ମୁଁ ଆଶା କରୁଥିଲି ? କହୁଛି କିଛି ସେ ବିଷୟରେ -

ବାହା ହୋଇ ଯାଇଥିବା ବଡ଼ଝିଅ ହୀନୁ ପଛକୁ ଆମର ଦ୍ୱିତୀୟ ଝିଅ ବୀଚିବାଳା, ଡାକନାଆଁ ଚିନୁ । ଜୟପୁରରୁ ଦିଲ୍ଲୀକୁ ବଦଳି ହୋଇ ଆସିଲା ବେଳକୁ ତାକୁ ୨୭ ବର୍ଷ ହେଲାଣି । ଝିଅଟା ଜଣ ବାହା ହେବ ନାହିଁ ? ତମ ବାପାମାଆମାନଙ୍କର କଣ କିଛି ଚିଂତା ନାହିଁ ସେ ବିଷୟରେ ? ଏହିପ୍ରକାର ଭର୍ତ୍ସନା ଶୁଣିବାକୁ ପଡୁଥିଲା ବିଭିନ୍ନ ଦିଗରୁ । କିନ୍ତୁ ଆମର ଦୋଷ ନ ଥିଲା ପ୍ରକୃତରେ । ମନେ ହେଉଥିଲା ମଝିରେ ଯେ ସେ ଜଣକୁ ବାହା ହେବାକୁ ଚାହେଁ । କିନ୍ତୁ ବର୍ତ୍ତମାନ ସେ ନିଶ୍ଚିତ ଭାବରେ କହିସାରିଲାଣି ଯେ ସେ ଆହୁରି ପାଠ ପଢ଼ିବ, ବାହାଘର କଥା ପରେ । ତେଣୁ ତାକୁ ଜୋର୍ କରି ବାହା ଦେବାର ପ୍ରଶ୍ନ ଉଠୁ ନଥିଲା । ତାଛଡ଼ା ଏକଦା ଚଗଲୀ ଚିନୁ ବେଶ୍ ଭଲ ପଢ଼ି ଆସୁଛି ତା କଲେଜ୍ ବେଳଠୁ ।

ଭୂଗୋଳରେ ଫାଷ୍ଟ କ୍ଲାସ୍ ପାଇ ବି.ଏ. ପାସ୍ କଲା କଲିକତାର ଲରେଟୋ କଲେଜରୁ । ତାପରେ ମୋ ସାଙ୍ଗରେ ଲଗେଇଲା ସେ ଦିଲ୍ଲୀକୁ ଯିବ, Delhi School of Economicsରେ Human Geography (ମାନବିକ ଭୂଗୋଳ)ରେ ଏମ୍.ଏ. କରିବ । ସେଇଆ ହେଲା । ଏବଂ ସେ ଗୋଟିଏ ୟୁନିଭର୍ସିଟୀ ହଷ୍ଟେଲରେ ରହି ଫାଷ୍ଟ କ୍ଲାସ୍‌ରେ ଏମ୍.ଏ ପାସ କଲା । ମାନବିକ ଭୂଗୋଳରୁ ଗୋଟାଏ ଖିଅ ବାହାରିଲା ତା ମନକୁ ଧରି ରଖିବା ଦିଗରେ । ନଗରବସତିର ଯୋଜନା ପ୍ରସ୍ତୁତ କରିବାର ବିଦ୍ୟା Town Planning । ସେଇଠୁ ସେ ଦିଲ୍ଲୀର School of Planning and Architectureରେ ପଢ଼ିଲା, ପ୍ଲାନିଂଗ୍ ବିଭାଗରେ । ଏବଂ ସେଠୁ ମଧ୍ୟ ତିନିବର୍ଷିଆ ଡିପ୍ଲୋମା ହାସଲ କଲା, କୃତିତ୍ୱର ସହ । ତାପରେ ? ତାପରେ ତାର ଝୁଂକ ଉଠିଲା ବାହାରକୁ ଯିବା ପାଇଁ । ଏବଂ ଦେଖିଲି ସେ ଦରଖାସ୍ତ ପରେ ଦରଖାସ୍ତ ପଠେଇ ଚାଲିଛି ବିଦେଶର ବିଭିନ୍ନ ୟୁନିଭର୍ସିଟୀକୁ, ଯେଉଁଠି ଉଚ୍ଚ ଶିକ୍ଷା ଦିଆଯାଏ ଏଇ ବିଷୟରେ । ଯାହା କରୁଛି କରୁ, ଏହି ଭାବରେ ମୁଁ ଚୁପ୍ ରହିଲି । କିନ୍ତୁ ମୋର ଧାରଣା ନ ଥିଲା ଏତେ ଶୀଘ୍ର ତାକୁ ଗୋଟାଏ ଡାକରା ମିଳିବ କ୍ୟାନେଡ଼ାର ଭ୍ୟାଂକୋଭର୍‌ରେ ଥିବା ''ୟୁନିଭର୍ସିଟୀ ଅଫ୍ ବ୍ରିଟୀଶ୍ କଲମ୍ବିଆ''ରୁ । ଲେଖିଛନ୍ତି ତମର ଦରଖାସ୍ତ ମଂଜୁର ହୋଇଛି, ଆସିବ ଯଦି ଆସ । ପ୍ରଥମ ବର୍ଷ ତମକୁ ପଢ଼ା ଖର୍ଚ୍ଚ ପଡ଼ିବ ନାହିଁ । କିନ୍ତୁ ତାପରେ ତମ କଥା ତୁମେ ବୁଝିବ । ଚିନୁ କହୁଛି ବାପା, ମୁଁ ଏଇ ସୁଯୋଗ ଛାଡ଼ିବି ନାହିଁ । ଖାଲି ବାଟ ଖର୍ଚ୍ଚଟା ଉଧାର ଦିଅ ମୋତେ । ବର୍ଷକ ପରେ ମୁଁ କୌଣସି ମତେ ନିଜକୁ ଚଳେଇ ନେବି । ସ୍କଲାରଶିପ୍ ମିଳିପାରେ ସେମାନଙ୍କ ଠାରୁ, କିନ୍ତୁ ନ ମିଳିଲେ ବି ମୁଁ କଣ କାହା ଘରେ ପିଲାଙ୍କୁ ଜଗି, କିମ୍ବା ହୋଟେଲ୍‌ରେ ବାସନ ମାଜି ଟଙ୍କା ରୋଜଗାର କରି ପାରିବି ନାହିଁ ? ପିଲାଟାର ଅଦମ୍ୟ ଉତ୍ସାହକୁ ଭାଙ୍ଗିଦେବା ଉଚିତ ନୁହେଁ । କିନ୍ତୁ ବାଟ ଖର୍ଚ୍ଚ, ଆଉ ପ୍ରଥମ ବର୍ଷ ପାଇଁ କିଛି ହେଲେ ରହିବା ଖର୍ଚ୍ଚର ଟଙ୍କା କେଉଁଠୁ ମିଳିବ ମୋତେ ? ମିଳିଲା ନାହିଁ । ସେଇଠୁ ମୁଁ ମୋ ପ୍ରୋଭିଡେଣ୍ଟ୍ ଫଣ୍ଡରୁ ମୋଟା ଟଙ୍କା କାଢ଼ି ଆଣିଲି ତା ପାଇଁ । ଗୋଟାଏ ଚ୍ୟାଲେଂଜ୍‌ର ମୁକାବିଲା କଲା ପରି । ଏବଂ ଯଥାକ୍ରମେ ପାସ୍‌ପୋର୍ଟ, ଭିସା, ରିଜର୍ଭବ୍ୟାଙ୍କ ଅନୁମତି ଆଦି ସମସ୍ତ ପ୍ରସ୍ତୁତି ସରିଗଲା ପରେ ମୁଁ ଆଉ ତା ମାଆ ତାକୁ ଦିଲ୍ଲୀ ଏୟାରପୋର୍ଟରେ ଛାଡ଼ି ଦେଇ ଆସିଲୁ, ଜାପାନ ଏୟାରଲାଇନ୍‌ସ୍ ବିମାନରେ ବସି ଭ୍ୟାଂକୋଭର୍ ଯିବା ପାଇଁ । ସେପ୍ଟେମ୍ବର ୪ ତାରିଖ ୧୯୭୯ର ଅଧରାତି ବେଳକୁ । ଆମର ଅନ୍ତରତମ ପ୍ରାର୍ଥନା ଓ ଶୁଭକାମନା ସହ । ଆଖିରେ ଲୁହକୁ କୌଣସି ମତେ ଅଟକେଇ ରଖି କିମ୍ବା ପୋଛି ଦେଇ । ଏଣିକି ତା ଭବିଷ୍ୟତ କଥା ସେଇ ବୁଝିବ ।

ତା ପଛକୁ ଆମର ତୃତୀୟ ଝିଅ ବିଶ୍ୱଜିତା, ଡାକ ନାଆଁ ବେବି । ପିଲାଟି ଦିନୁ ପାତଳୀ । ଏବଂ ସୁକୁମାରୀ । ହେଲେ ତାର ଯେଉଁ ଇମେଜ୍ ରହି ଆସିଥିଲା ଯେ ସେ

ଅଛବହୁତ ଭୀରୁ ଏବଂ ସହଜେ ପାରି ଉଠେ ନାହିଁ କେଉଁ କାମଟାକୁ ଯଥାଶୀଘ୍ର ଏବଂ ଠିକଣା ଭାବରେ ସାରି ଦେବା ପାଇଁ, ତାକୁ ସେ ଭୁଲ୍ ବୋଲି ପ୍ରମାଣିତ କରି ଦେଇ ପାରିଲା ବଡ଼ ହେଲାରୁ । ଇଂରାଜିରେ ସେକେଣ୍ଡ କ୍ଲାସ୍ ଅନର୍ସ ପାଇ ବିଏ ପାସ କଲା, କଲିକତାର ଗୋଖଲେ କଲେଜରୁ । ତାପରେ ଗୋଟିଏ ଜର୍ଣ୍ଣାଲିଷ୍ଟ ହେବାକୁ ଚାହିଁଲା, ଏବଂ ଦିଲ୍ଲୀର National Institute of Mass Communication and Information Technologyରୁ ଦି ବର୍ଷିଆ ଡିପ୍ଲୋମା ହାସଲ କରି, ବିଭିନ୍ନ ପତ୍ରପତ୍ରିକା ପାଇଁ ଲେଖାଲେଖି କରିବାକୁ ଲାଗିଲା । ଏବଂ କ୍ରମଶଃ ଶିଶୁ ସାହିତ୍ୟ ହିଁ ତାର ମନଲାଖି ସୃଜନାତ୍ମକ ଧାରା ବୋଲି ମନେ ହେଲା । ତେଣୁ ସେଇ କାମ ନେଇ ସେ ବିଭିନ୍ନ ଶିଶୁ ପତ୍ରିକା ସଂସ୍ଥାରେ ଯୋଗ ଦେଇ, ତା ଭବିଷ୍ୟତ ଗଢ଼ିବାକୁ ବସିଲା । ମୁଁ ଦିଲ୍ଲୀକୁ ଆସିବାର ଦି'ବର୍ଷ ଭିତରେ ସେ "India Today"ର ସହଯୋଗୀ ନୂଆ ଶିଶୁପତ୍ରିକା "Target"ର ସହଯୋଗୀ ସଂପାଦିକା ହୋଇ ଯେଉଁ କୃତିତ୍ୱ ଅର୍ଜନ କରିଥିଲା, ତାହା ଅବଶ୍ୟ ଏକ ଗର୍ବ ଏବଂ ଆନନ୍ଦର ବିଷୟ ଥିଲା ଆମପାଇଁ । କିନ୍ତୁ ତା ବାହାଘର ? ଚିନୁ ସିନା ଗୋଟାଏ କାରଣ ବାଢ଼ି ଦେଇଥିଲା ଏଇକ୍ଷଣି ବାହା ହେବ ନାହିଁ ବୋଲି, ଯା ପାଇଁ କଣ ଅସୁବିଧା ଅଛି ? ଅବଶ୍ୟ ଇଏ ବି ମନା କରୁଥିଲା ବାହା ହେବ ବୋଲି । କିନ୍ତୁ ଆମର ମନେ ହେଉଥିଲା ଯେ ଗୋଟାଏ ତିକ୍ତ ମନୋଭାବ ଥିଲା ତା ପଛକୁ । କାରଣ ଗୋଟାଏ ଜାଗାରେ ତା ବାହାଘର ଭାଙ୍ଗିଯାଇଥିଲା, ହେଲେ କାହିଁକି ବୋଲି ବୁଝାପଡ଼ିଲା ନାହିଁ । ଯାହାହେଉ ଆମେ ତାକୁ ମନେଇବାକୁ ଚେଷ୍ଟା କଲୁ ଏବଂ ପ୍ରସ୍ତାବ ପକେଇଲୁ ଗୋଟିଏ ଜାଗାରେ, ଯାହା ଉପଯୁକ୍ତ ବୋଲି ମନେ ହେଲା ଆମର । କିନ୍ତୁ କେମିତି କେଜାଣି ତାହା ଆଗେଇ ପାରୁ ନଥାଏ । ତେଣୁ ମୁଁ ସେ ବିଷୟରେ କିଛି କରିବି ବୋଲି ସ୍ଥିର କଲି, ମୋର ପ୍ରଶାସନିକ ତତ୍‌ପରତା ଦେଖାଇ । ଅଫିସରୁ ସିଧାସଳଖ ଫୋନ୍ କଲି ବମ୍ବେକୁ, ପୁଅ ଯେଉଁଠି କାମ କରେ । ତାର ଦିଲ୍ଲୀକୁ ଆସିବାର ଅଛି ଶୁଣିଥିଲି, ତେଣୁ ପଚାରିଲି ତମେ କେବେ ଆସୁଛ ବୋଲି । ସୂଚନା ସୁସ୍ପଷ୍ଟ । ତାପରେ ଉଦୀୟମାନ ଆର୍କିଟେକ୍ଟ୍ ଶୁଭକାନ୍ତ ଦାସ ଦିଲ୍ଲୀକୁ ଆସି ଦେଖା କଲା ଆମ ସାଙ୍ଗରେ । ପୁଅଝିଅ କଥାବାର୍ତ୍ତା ହେଲେ ପରସ୍ପର ସହିତ, ଏବଂ ତାପରେ ଆମକୁ ଜଣାଇ ଦିଆଗଲା ଯେ ସେମାନେ ରାଜି ଅଛନ୍ତି ବାହା ହେବା ପାଇଁ । ଏହି ଭାବରେ ବିଶ୍ୱଜିତା ଓ ଶୁଭକାନ୍ତଙ୍କ ବାହାଘର ଅନୁଷ୍ଠିତ ହେଲା ଦିଲ୍ଲୀରେ, ସେପ୍ଟେମ୍ବର ୬ ତାରିଖ ୧୯୮୦ ମସିହାରେ । ଆର୍ଯ୍ୟ ସମାଜ ସ୍ୱୀକୃତ ବୈଦିକ ରୀତିରେ । ଶୁଭକାନ୍ତର ବାପା କେଶବାନନ୍ଦ ବାବୁ ଓ ମାଆ ଶୋଭା ଦେବୀ ତଥା ତାଙ୍କ ପରିବାରରୁ କେତେଜଣ ଆସିଥିଲେ ବାହାଘରକୁ । ମଧ୍ୟ ଆମ ପରିବାରରୁ କେତେଜଣ । ବିଶେଷ ଖୁସିର କଥା ଯେ ଚିନୁ ଆସିପାରିଥିଲା କ୍ୟାନେଡ଼ାରୁ । ବାହାଘର ଉତ୍ତାରୁ ଦିହେଁ ବମ୍ବେରେ ରହିଥିଲେ କିଛି ଦିନ । ତାପରେ ଶୁଭକାନ୍ତକୁ ମିଳିଥିବା ବିଭିନ୍ନ କାମ ନେଇ ସେମାନେ ଶ୍ରୀଲଙ୍କା, ପର୍ତ୍ତୁଗାଲ୍

ଏବଂ ହଲାଣ୍ଡକୁ ଯାଇଥିଲେ । ହଲାଣ୍ଡର ରଟର୍‌ଡ଼ାମ୍‌ରେ ଥିବା ଗୋଟିଏ ଅନୁଷ୍ଠାନରେ ବେଶ୍ କିଛି ଦିନ କାମ କରିବାକୁ ପଡ଼ିଥିଲା ଶୁଭକାନ୍ତକୁ । ଏବଂ ରଟର୍‌ଡ଼ାମ୍‌ରେ ୧୯୮୧ ମସିହା ଡିସେମ୍ବର ୨୩ ତାରିଖରେ ମୋର ପ୍ରଥମ ନାତୁଣୀର ଜନ୍ମ । ତା ନାଆଁ ଗୀତି ।

ବେବି ପଛକୁ ମୋର ଚତୁର୍ଥ ଝିଅ ବିଦ୍ୟାବତୀ (ସେ ତାକୁ ଛୋଟ କରି ଦେଇ କେବଳ 'ବିଦ୍ୟା'ରେ ରଖିଛି), ଡାକ ନାଆଁ କୁନ୍‌ବେବି । ଚିନୁର ଉଚ୍ଛୁଳାପଣ ନ ଥିଲା ତା ପାଖରେ, ଅବା ବେବିର ତଥାକଥିତ ଭୀରୁତା । ପିଲାଦିନୁ ଚୁପ୍‌ଚାପିଆ । ଅଳ୍ପ କଥା କୁହେ, ଏବଂ ନିଜକୁ ନିଜ ଭିତରେ ଗୋଟେଇ କରି ରଖିଛି ବୋଲି ମନେ ହୁଏ । ସେହି କାରଣରୁ ଅନେକେ ଥଟ୍ଟା କରି କୁହନ୍ତି ଯେ ସେ ତା ବାପର ଝିଅ । ଇଣ୍ଟ୍ରୋଭର୍ଟ୍‌ଟିଏ । ଯାହାହେଉ ଏଇ ଗୁରୁଗଂଭୀର ବୋଲି ମନେ ହେଉଥିବା ଝିଅ ପାଠପଢ଼ାରେ ବିଶେଷ ଭଲ କରି ଆସିଛି ତା ପିଲାଟି ଦିନୁ । ସିନିୟର୍ କେମ୍ବ୍ରିଜ୍ ଫାଷ୍ଟ୍ ଡିଭିଜନ୍‌ରେ ପାସ କଲା । କିନ୍ତୁ କଲେଜ୍‌ରେ ସେ ସାଇନ୍‌ସ ଛାଡ଼ି ଆର୍ଟସ୍ ପଢ଼ିବାକୁ ଚାହିଁଲା । ଏବଂ ତାକୁ ମଧ୍ୟ ପିତୃତ୍ୱର ଦୋଷଗୁଣ ବୋଲି କୁହ କି ଆଉ ଯାହା, ସାହିତ୍ୟ ପ୍ରତି ଆକୃଷ୍ଟ ହୋଇ ବି.ଏ.ରେ ଇଂରାଜୀ ଅନର୍ସ ନେଲା । ଏବଂ ଫାଷ୍ଟକ୍ଲାସ୍ ପାଇଲା, କଲିକତା ୟୁନିଭର୍ସିଟୀରୁ । ତାପରେ ଦିଲ୍ଲୀ ୟୁନିଭର୍ସିଟୀରୁ ଫାଷ୍ଟକ୍ଲାସ୍‌ରେ ଏମ୍.ଏ. ପାସ କଲା, ଇଂରେଜିରେ । ଏବଂ ଇତିମଧ୍ୟରେ ସେ ଠିକ୍ କରି ସାରିଲାଣି ଯେ ସେ ଶୁଭାକାଙ୍କ୍ଷୀମାନଙ୍କ ପରାମର୍ଶ ମାନି ନେଇ କେଉଁ ସିଭିଲ୍ ସର୍ଭିସ୍ ପରୀକ୍ଷାରେ ବସିବ ନାହିଁ । ସେ ମାଷ୍ଟରଟିଏ ହେବାକୁ ଚାହେଁ । ସେହେତୁ ସେ ଏମ୍. ଫିଲ୍ କଲା ଦିଲ୍ଲୀ ୟୁନିଭର୍ସିଟୀରୁ ଏବଂ ସେଥିରେ ମଧ୍ୟ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେଲା । ଏହି ସମୟରେ ତାର ଜଣେ ସହପାଠୀ ଏବଂ କୃତୀ ଛାତ୍ର ସହିତ ବଂଧୁତା ହେଲା । ତା ନାଆଁ କେୱଲ୍ ଅରୋରା, ଭାରତୀୟ ନୌସେନାର ଜଣେ ବରିଷ୍ଠ ଅଧିକାରୀ କମାଣ୍ଡର୍ କୁନ୍ଦନ୍ ଲାଲ୍‌ଙ୍କର ପୁଅ । ଯଥାକ୍ରମେ ଏଇ ଦୁଇ ପାଠୁଆ ପାଠୋଇ ବାହା ହୋଇ ଏକାଠି ଘର କରିବାକୁ ଚାହିଁଲେ ଏବଂ ଆମର ଆପତ୍ତି କରିବାର କୌଣସି କାରଣ ନ ଥିଲା । ରେଜିଷ୍ଟ୍ରେସନ୍ ଦ୍ୱାରା ତାଙ୍କ ବାହାଘର ସଂପନ୍ନ ହେଲା ୩୦ ଡିସେମ୍ବର ୧୯୮୧ରେ ।

ଶେଷକୁ ସବାସାନ ଏବଂ ଏକମାତ୍ର ପୁତ୍ର ସଂତାନ ଅଂଜନି କୁମାର । ଡାକ ନାଆଁ ଧୀରୁ । ସଦ୍ୟଜାତ ଶିଶୁ ଏଭଳି ଧୀର ସ୍ୱଭାବର ଥିଲା ଯେ ଏଇ ନାଆଁ ସେ ପାଇଥିଲା ତା ମାଆଠାରୁ । ସେ ମଧ୍ୟ ତା ନାମକରଣକୁ ଯଥାର୍ଥ କରିଥିଲା; ପିଲାଟି ଦିନୁ ଶାନ୍ତ, ଶିଷ୍ଟ ଓ ଖୁସିବାସିଆ । ଏବଂ ଏକାଧାରରେ ପଢ଼ା ଓ ଖେଳକୁଦରେ ଭଲ କରୁଥିଲା । କିନ୍ତୁ କଲେଜ୍‌ରେ କଣ ହେଲା କେଜାଣି, ସେ ଭଲ କରି ପାରିଲା ନାହିଁ । ମନେହୁଏ ଯେ ସାଇନ୍ସ ପାଠ ତାକୁ ସୁହାଇଲା ନାହିଁ । ପ୍ରକୃତରେ ହାଏର୍ ସେକେଣ୍ଡାରୀ ପରୀକ୍ଷାରେ ସେ ଇଂରେଜିରେ ହିଁ ସବୁଠାରୁ ଭଲ ମାର୍କ ରଖିଥିଲା ଏବଂ ଅନାୟାସରେ ସେ ଦିଲ୍ଲୀର ଗୋଟିଏ ଭଲ କଲେଜ୍‌ରେ ଆଡ୍‌ମିସନ୍

ପାଇ ପାରିଥାଆନ୍ତା, ଇଂରାଜି ଅନର୍ସ ନେଇ । କିନ୍ତୁ ତା ହେଲା ନାହିଁ । କାହିଁକି ନ ହେଲା ବୋଲି ପଚାରନ୍ତୁ ନାହିଁ । କୁହାଯାଏ ଯେ ସେ ବାପାମାଆଙ୍କ ଅବ୍ୟକ୍ତ ଇଚ୍ଛାକୁ ଭାଙ୍ଗି ଦେଇ ପାରିଲା ନାହିଁ । ଆମେ ସେତିକିବେଳେ ସ୍ୱାଜିଲାଣ୍ଡ ଚାଲିଗଲୁ ଆମର 'ଦ୍ୱିତୀୟ ହନିମୁନ୍' କରିବା ପାଇଁ, ଏବଂ ସେ ଦିଲ୍ଲୀରେ ଏକୁଟିଆ ଗୋଟିଏ ମେସ୍‌ରେ ରହି ବାପାମାଆଙ୍କ ତତ୍ତ୍ୱାବଧାନରୁ ବଂଚିତ ହେଲା, ଏଇ ଆତ୍ମଗ୍ଳାନି ମଧ୍ୟ ଅନେକ ସମୟରେ ମନକୁ ଆସେ । ଯାହାହେଉ ଶେଷକଥା ହେଉଛି ଯେ ସେ ବି.ଏସ୍‌ସିରେ ଫେଲ୍ ହେଲା 'ପ୍ରାକ୍‌ଟିକାଲ୍' ଯୋଗୁଁ ଏବଂ ସେଇ ପରାଭବକୁ ସେ ଅତିକ୍ରମ କରିପାରିଲା ନାହିଁ । ଯଦିଓ ତା'ର ବିଦ୍ୟାବୁଦ୍ଧି, ସାଧାରଣ ଜ୍ଞାନ (ବେଶ୍ କେତୋଟି ପ୍ରାଇଜ୍ ମିଳିଛି ତା'କୁ, ସାଧାରଣ ଜ୍ଞାନ ଉପରେ) ଏବଂ ଇଂରାଜି ଭାଷା ଉପରେ ଦଖଲ ଯଥେଷ୍ଟ ଉଚ୍ଚ ଧରଣର ବୋଲି କହିବାକୁ ହେବ । ଯାହାହେଉ ଏଇ ସମୟକୁ ସେ ଲାଇଫ୍ ଇନ୍‌ସିଓରାନ୍ସ କର୍ପୋରେସନ୍‌ର ଜଣେ "Career agent" ଭାବରେ ଯୋଗ ଦେଇସାରିଲାଣି । ପ୍ରତିଯୋଗିତାମୂଳକ ପରୀକ୍ଷା ଦ୍ୱାରା ସେମାନେ ବଛା ହୁଅନ୍ତି କର୍ପୋରେସନ୍ ଦ୍ୱାରା, ଏବଂ ସେମାନଙ୍କର ଭବିଷ୍ୟତ ସାଧାରଣତଃ ସଫଳ ହୋଇଥାଏ । ଏଣେ ସେ ମେଜର୍ ଜେନେରାଲ୍ ଏସ୍.ପି. ଶର୍ମା ନାମକ ଜଣେ ବରିଷ୍ଠ ଆର୍ମି ଇଂଜିନିଅର୍‌ଙ୍କ ଝିଅ ନିଶାକୁ ବାହା ହେବାକୁ ଚାହେଁ । ପୁଅ ହିସାବରେ ତାର ବାହାହେଲା ବୟସ ଗଡ଼ିଯାଇ ନାହିଁ । କିନ୍ତୁ ଆପତ୍ତି କେଉଁଥିପାଇଁ ? ତେଣୁ ସେମାନଙ୍କ ଇଚ୍ଛା ଅନୁଯାୟୀ ସେମାନଙ୍କ ବାହାଘର ମଧ୍ୟ ସଂପନ୍ନ ହେଲା ବିଦ୍ୟା ବାହାଘରର ପ୍ରାୟ ବର୍ଷକ ପରେ । ୧୯୮୨ ମସିହା ଡିସେମ୍ବର ୨୭ ତାରିଖରେ, ଦିଲ୍ଲୀରେ ଏବଂ ଆର୍ଯ୍ୟ ସମାଜର ବୈଦିକ ରୀତିରେ । ମୁଁ ଚାକିରୀରୁ ଅବସର ନେଇ ସାରିଥିଲି ସେତେବେଳକୁ, ହେଲେ ଗୋଟିଏ ପୁନର୍ନିଯୁକ୍ତି ପାଇ ଆସାମରେ ଥିଲି । ସେଇଠୁଁ ଦିଲ୍ଲୀକୁ ଆସିଥିଲୁ ଆମେ ବାହାଘର କରାଇବା ପାଇଁ ଏବଂ ଯଥାଶୀଘ୍ର ଫେରିଗଲୁ ଆସାମକୁ, ପୁଅବୋହୂଙ୍କୁ ଦିଲ୍ଲୀରେ ଥଇଥାନ କରି ସାରିଲା ପରେ ।

ଏହି ଭାବରେ ୧୯୮୨ ମସିହା ପୂର୍ବରୁ ଗୋଟାଏ ଆତ୍ମସନ୍ତୋଷ ଆସିଥିଲା ମୋ ମନରେ, ଯେ ଯାହାହେଉ ମୁଁ ଯଥାସମୟରେ ମୋ କର୍ତ୍ତବ୍ୟ ସାରି ଦେଇପାରିଛି ମୋ ପିଲାଙ୍କ ଭବିଷ୍ୟତ ପାଇଁ । 'ଭବିଷ୍ୟତ' ସେମାନଙ୍କ ଜୀବନକୁ ନେଇ ଯେଉଁ ଖେଳ ଖେଳିଥାଉ ପଛେ, ଏଇ ଆତ୍ମସନ୍ତୋଷ କଣ ଯଥାର୍ଥ ନ ଥିଲା ? ଏହି ପ୍ରକାର ଆଶ୍ୱାସନା ମୁଁ ନିଜକୁ ଦେଇଆସିଛି ଅନେକ ଥର, ମୋ ପର ଜୀବନରେ । ହୁଏତ ବିନା କାରଣରେ ।

କିନ୍ତୁ ଅବସର ଉତ୍ତାରୁ ଏଇ 'ପୁନଃନିଯୁକ୍ତି'ରେ ମନ ବଳେଇଲି କାହିଁକି ? ପୁଣି କେଉଁଠି, ନା ସୁଦୂର ଆସାମରେ ? ସାହିତ୍ୟ ମୋର ଅସଲ ଧନ୍ଦା ପରା ?

ଉତ୍ତର ସଂକ୍ଷେପରେ ଏଇଆ ଯେ ଜୀବନଚର୍ଯ୍ୟାର କ୍ରମରେ ଗୋଟିଏ ଶୂନ୍ୟସ୍ଥାନ ଅଡୁଆ ଲାଗେ ପ୍ରଥମେ । ହଁ, ସାହିତ୍ୟ ମୋର ଅସଲ ଧନ୍ଦା, କିନ୍ତୁ ଅନ୍ୟ ଧନ୍ଦାର ଫାଙ୍କରେ

ତାକୁ ବରଣ କଲେ, ଯେଉଁଭଳି ଆନନ୍ଦ ଆସେ ସେଥିରୁ ବଂଚିତ ହେବାକୁ ଭଲ ଲାଗିଲା ନାହିଁ । ଏଣେ ତଥାକଥିତ 'ଘରକାମ' ପ୍ରତି ମୋର ଆଦୌ ସ୍ପୃହା ନାହିଁ । ତେଣୁ କିଛି ଦିନ ପାଇଁ ଆରାମରେ ବୃତ୍ତିଗତ, ହେଲେ ଗୋଟାଏ ନୂଆ ଧରଣର କାମ କଲେ ମନ୍ଦ କଅଣ ? ତା'ଛଡ଼ା ଭାରତ ଓ ପୃଥିବୀର ଅନେକ ଜାଗା ବୁଲି ଆସିଥିଲେ ମଧ୍ୟ ଆସାମ ଗୋଟିଏ ନୂଆ ଜାଗା ମୋ ପାଇଁ । ଏହି ଭାବରେ ମୁଁ ହଁ ଭରିଲି ଯେତେବେଳେ ଏଇ ପୁନର୍ନିଯୁକ୍ତି ଯଚା ହେଲା ମୋତେ । ଆସାମ ରାଜ୍ୟ ବିଦ୍ୟୁତ୍ ବୋର୍ଡ଼ର ବିତ୍ତ ସଦସ୍ୟ । ଅବସ୍ଥାନ ଗୌହାଟୀ । ମିଆଦ ଦୁଇବର୍ଷ ।

ନଭେମ୍ବର ୧ ତାରିଖ ୧୯୮୨ରେ ମୁଁ ଏଇ ନୂଆ କାମରେ ଯୋଗ ଦେଲି । ଏବଂ ମୋ କର୍ମସ୍ଥଳୀର ପରିବେଶ କେବଳ ଅଭିନବ ନୁହେଁ, ସୁନ୍ଦର ବୋଲି ମନେ ହେଲା ମୋର । ଯେଉଁଠି ମୋ ସାହିତ୍ୟକୁ ମଧ୍ୟ କିଛି ବିଶେଷ ଖୋରାକ୍ ମିଳିବ ପରା । ଆମ ଅଫିସ୍ ଗୌହାଟୀ ସହର ଭିତରେ ନ ଥିଲା, ଥିଲା ନାରଂଗୀ ବୋଲି ତା'ର ଗୋଟିଏ ଉପକଣ୍ଠରେ । ଏବଂ ପାହାଡ଼ ତଳେ । ପାହାଡ଼ର ସବା ଉପରେ ଥିଲା ଚେୟାରମ୍ୟାନ୍ ସାହେବଙ୍କ କୋଠି । ଆଉ ବିତ୍ତ ସଦସ୍ୟଙ୍କ ପାଇଁ ନିର୍ଦ୍ଦିଷ୍ଟ ଯେଉଁ ବଂଗଳାରେ ଆମକୁ ରହିବାକୁ କୁହାଗଲା ତା' ଥିଲା ପାହାଡ଼ର ପ୍ରାୟ ମଝିଆ ମଝି । ଏବଂ କିଛି ଦୂରରେ ଆଉ ଟିକିଏ ତଳେ ବୋର୍ଡ଼ର ଅନ୍ୟ କେତେକ ବରିଷ୍ଠ ଅଧିକାରୀଙ୍କ କ୍ୱାର୍ଟର୍ସ । ସେହେତୁ ଅଫିସରୁ ବାହାରି ତଳକୁ ଗଡ଼ିଲେ ଏଇସବୁ ସହକର୍ମୀଙ୍କ ଘର ବାଟ ଦେଇ ଅଫିସ୍ । ହେଲେ ଘର ଭିତରେ ଥାଇ ସାମନାକୁ ଅନେଇଲେ ପାହାଡ଼ପର୍ବତର ଦିଗ୍‌ବଳୟ । ଯାହାକୁ ଯେତେ ଦେଖିଲେ ବି ଚିଟା ଲାଗିବ ନାହିଁ ସହଜେ । ଖାଲି ସେତିକି ନୁହେଁ, ମୋତେ କୁହାଗଲା (ତାହା ବାସ୍ତବ ସତ୍ୟ ହେଉ ବା କଳ୍ପନାପ୍ରସୂତ, ବିଦେଶୀର ଉପଭୋଗ ପାଇଁ) ଯେ ଏଇ ଯେଉଁ ଶବ୍ଦ ବେଳେବେଳେ ଶୁଭୁଛି ସେପଟୁ, ତା ହେଉଛି ବାଘର ହେଣ୍ଟାଳ । ଆଜିକାଲି ଆଉ ଆସୁ ନାହାନ୍ତି ଇଆଡ଼େ, କିନ୍ତୁ ଆସୁଥିଲେ ଅମୁକ ଚେୟାରମ୍ୟାନଙ୍କ ବେଳେ । ଧନ୍ୟବାଦ । ଭଗବାନ୍ କରନ୍ତୁ, ଭୁଲ୍‌ରେ କେବେ ଇଆଡ଼େ ଆସିବାର ଦୁର୍ବୁଦ୍ଧି ନ କରନ୍ତୁ ବର୍ତ୍ତମାନର ଚେୟାରମ୍ୟାନଙ୍କ ବେଳେ । ହେଲେ ଭାବିବାକୁ ଭଲ ଲାଗୁଥିଲା ଯେ ପାହାଡ଼ ସେପଟୁ ଶୁଭୁଥିବା ସେଇ ବିଚିତ୍ର ଶବ୍ଦସବୁ ବାଘର ହେଣ୍ଟାଳ ଛଡ଼ା ଆଉ କିଛି ହୋଇ ନପାରେ । କିଛି ଦିନ ପାଇଁ ଆମ ପାଖକୁ ଆସିଥିବା ବୋହୂ ନିଶା ଓ ତାର କୋଳଛୁଆ ପ୍ରଣୟ ମଧ୍ୟ ଏଇ ଦୃଶ୍ୟଦେଖାର ସାଥି ହୋଇ ଆମକୁ ଆପ୍ୟାୟିତ କରିଥିଲେ । ଏବଂ ମୋର ଇଚ୍ଛାଗତ ଆସ୍ଥା ଅନୁଯାୟୀ ମୁଁ ଯେ କେତେ ମହାବଳ ବାଘର ହେଣ୍ଟାଳ ଶୁଣାଇଛି ନାତିକୁ, ତା କହିଲେ ନ ସରେ ।

ଦୃଶ୍ୟଦେଖା ଉପଭୋଗ କେବଳ ନାରଂଗୀକୁ ନେଇ ନଥିଲା । ସାରା ଆସାମ ଏବଂ ପାଖଆଖ ମେଘାଳୟ ଏବଂ ମଣିପୁରର ପ୍ରାକୃତିକ ସୌନ୍ଦର୍ଯ୍ୟ ମଧ୍ୟ ବହୁବିଧ ଉପଭୋଗ

ଆଣିଦେଇଥିଲା ସେଇ ଅଢ଼େଇ ବର୍ଷର ରହଣି ଭିତରେ । ପ୍ରଥମେ କହୁଛି ଶୁଣନ୍ତୁ ପଡ଼ୋଶୀ ରାଜ୍ୟମାନଙ୍କ କଥା ।

ମେଘାଳୟ । ରାଜଧାନୀ ଶିଲଂଗ୍ । ସେଠିକି ବାରମ୍ବାର ଯିବାକୁ ପଡ଼େ ମୋତେ (କୁମକୁ ବି ମୁଁ ଅନେକ ଥର ନେଇଯାଇଛି ମୋ ସାଙ୍ଗରେ), ବିଦ୍ୟୁତ୍ ସରବରାହ ସଂପର୍କୀୟ ନାନାଦି ବିଷୟରେ ସେଠିକାର ନିର୍ଦ୍ଦିଷ୍ଟ ଅଧିକାରୀମାନଙ୍କ ସହିତ ଆଳାପ ଆଲୋଚନା କରିବା ପାଇଁ । ସେଇ ଯାତ୍ରାପଥର ଦୃଶ୍ୟ ହିଁ ଉପଭୋଗର ପହିଲି କଥା । ଏକେ ପାହାଡ଼ ଉପରକୁ ଉଠି ଉଠି ଯିବାର ଜଣାଶୁଣା ଚମକପ୍ରଦ ଅନୁଭବ । ତଳକୁ ଅନେଇଲେ ଅତଳତଳ ବନାନୀର ଭୟାତ୍ମକ ସୌନ୍ଦର୍ଯ୍ୟ । ଏବଂ ଉପରକୁ ଅନେଇଲେ ମହାମେରୁର ଉତ୍ତେଜକ ଆହ୍ୱାନ । ଏବଂ ଉଠାଣି ଯେତେ ଉଚ୍ଚ ହୋଇଥିବ, ଗଛପତରର ଚେହେରା ବି ବଦଳି ଯାଉଥିବ ସେଇ ଅନୁପାତରେ । ସେଇ ପରିବର୍ତ୍ତନର ଦୃଶ୍ୟ ସୁସ୍ପଷ୍ଟ ଏଇ ପାହାଡ଼ ରାସ୍ତାରେ । ଘଞ୍ଚ ସବୁଜରୁ ପାତଳା ସିରିସିରି, କାରଣ ଉପରେ ଅଧିକରୁ ଅଧିକ ପାଇନ୍ ଓ ପାଇନ୍ ଜାତୀୟ ଗଛ । ଖାଲି ସେତିକି ନୁହେଁ । ଅଧେ ବାଟ ନ ଯାଉଣୁ ବିଭିନ୍ନ ଜାଗାରେ ଯେଉଁ ଖାସି ରମଣୀମାନେ ଅଟକି ଯାଇ ଅନାନ୍ତି ତମ କାର୍‌କୁ, ସେମାନେ ମଧ୍ୟ ଏଇ ପରିବର୍ତ୍ତନଶୀଳ ଦୃଶ୍ୟର ଅଂଗ ବୋଲି ମନେ ହୁଅନ୍ତି । ଅନାନ୍ତି ଏବଂ ଅଯଥାରେ ହସନ୍ତି, କାନରେ ଲମ୍ବା ଲମ୍ବା ଦୁଲ୍ ଝୁଲେଇ । ହଁ ବୁଝୁଛି ଯେ ଦୁଲ୍ ହେଉଛି ଖାସି ରମଣୀର ଫେଭରିଟ୍ ଗହଣା, ସିଏ କାଚ ହେଉ କି ସୁନାରୂପା । କିନ୍ତୁ ଏଇ ହସଖଣ୍ଡକ କେଉଁଥିପାଇଁ ? ସଦାବେଳେ ସେଇ ହସ, ସେ ପାହାଡ଼ର ଉପରକୁ ଉଠୁଥାଉ କି ତଳକୁ ଗଡୁଥାଉ । ଏବଂ ମୁଣ୍ଡରେ କେଉଁ କାଠିକୁଟାର ବୋଝ ଥାଉ କି ନ ଥାଉ । କିନ୍ତୁ ସିଲଂଗ୍‌କୁ ଆସିଲା ପରେ ମନେ ହେଲା, ବଜାରଘାଟରେ ସେମାନଙ୍କ ଗହଳି ଦେଖିଲା ପରେ, ଯେ ଏଇ ହସ ସବୁବେଳେ ଯେ କେଉଁ ଆନନ୍ଦର ପରିଚାୟକ ହୋଇଥିବ ତା ନୁହେଁ, ଇଏ ତାଙ୍କ ନାରୀତ୍ୱର ସ୍ଥାୟୀଭାବ । ଏବଂ ସେଇମାନେ ହିଁ କର୍ମରତା ବୋଲି ମନେ ହୁଅନ୍ତି, ବୋଝବୁହା ଓ ହାଟବଜାରର କିଣାବିକା ସମେତ । ପୁରୁଷମାନଙ୍କୁ ପ୍ରାୟଶଃ ପଡ଼ିଆରେ ଫୁଟବଲ୍ ଖେଳିବାର କିମ୍ବା ଗଛତଳେ ବସି ହାଇ ମାରିବାର ଦେଖାଯାଏ । ଯଦିଓ ମାନିବାକୁ ପଡ଼ିବ ଯେ ତାଙ୍କ ଭିତରୁ ଅନେକ ମଧ୍ୟ ନାନା ଗୁରୁତ୍ୱପୂର୍ଣ୍ଣ କାମ କରୁଥିବେ କେଉଁ ଦପ୍ତର କି ଦୋକାନ ଘରେ । ସେଇଠୁଁ ମନେ ପଡ଼େ ସ୍ୱାଜିଲାଣ୍ଡର ବାଣ୍ଟୁ ରମଣୀମାନଙ୍କ କଥା ଏବଂ ଭାବିବାକୁ ହୁଏ ଯେ ନାରୀଭାବର ଏଇ ପ୍ରାଧାନ୍ୟ, ତାଙ୍କର ହାସ୍ୟମୁଖର ଚଂଚଳତା ତଥା କର୍ମକୁଶଳତାକୁ ନେଇ, ଏହାହିଁ କଣ ସମସ୍ତ ଆଦିବାସୀ ସଂସ୍କୃତିର ଅନ୍ୟତମ ଲକ୍ଷଣ ? ଦୃପ୍ତ ପୁରୁଷାୟିତ ଆର୍ଯ୍ୟସଂସ୍କୃତିର ଅପରପାଖ ?

ଶିଲଂଗ୍‌କୁ ଯିବା ବାଟରେ ମେଘାଳୟ ସରକାରଙ୍କର ଗୋଟିଏ ସରକାରୀ ପାନ୍ଥନିବାସ ଅଛି । ଯେଉଁଠି ମୁଁ ବିଶ୍ରାମ ନିଏ ମଝିରେ ମଝିରେ, ତାର ଦୃଶ୍ୟ ଉପଭୋଗ କରିବା ଲାଗି ।

ଅଦୂରବର୍ତ୍ତୀ ନୀଳଶୈଳ, ତା ତଳକୁ ପାଇନ୍ ବଣ ଏବଂ ହାତ ପାହାନ୍ତାରେ ଲେକ୍‌ର କୁନି କୁନି ନୀଳ ଲହରୀ । ଏବଂ ଉଦ୍ୟାନରେ ରାଶି ରାଶି ସତେଜ ଫୁଲ । ହେଲେ ତା ଭିତରେ ବାରି ହୋଇ ଯାଉଛି କେତୋଟି ସୁଦୀପ୍ତ ସୁନ୍ଦର ନାଲି ନାଲି ଫୁଲ । ମୋତେ କୁହାଗଲା ଯେ ତା ନାଆଁ ମାଗ୍‌ନୋଲିଆ । ବିଲାତି ଫୁଲ, ଯାହା କେବଳ ଏଇ ଉଚ୍ଚତାର ଏହି ପ୍ରକାର ଜଳବାୟୁରେ ଉଧେଇ ପାରିବ । ଫୁଲଗୁଡ଼ାକ ଏକାଧାରରେ ନିର୍ଲଜ୍ଜ ଓ ଲୋଭନୀୟ ଦେଖାଗଲେ ମୋତେ ଏବଂ ମୁଁ ପରେ ତାଙ୍କ ଉପରେ ଗୋଟିଏ ଛୋଟିଆ ଇଂରେଜି କବିତା ନ ଲେଖି ରହିପାରିଲି ନାହିଁ ।

ମେଘାଳୟର ଅବିସ୍ମରଣୀୟ ରମଣୀମାନଙ୍କ କଥାଛାଡ଼ । ମୋଟ ଉପରେ ଦେଖିଲି, ଷ୍ଟାଟିସ୍‌ଟିକ୍‌ସ୍ ମଧ୍ୟ ତାହାହିଁ କୁହେ, ଯେ ଖ୍ରୀଷ୍ଟିୟାନ୍ ଧର୍ମାବଲମ୍ବୀ ଏଇ ଖାସିମାନେ ଯଥାଶୀଘ୍ର ନିଜକୁ ଅଧିକରୁ ଅଧିକ ଶିକ୍ଷିତ ଏବଂ ସମୃଦ୍ଧ କରିବାକୁ ଚାହାଁନ୍ତି, ପୂର୍ବାଚଂଳର ଅନ୍ୟାନ୍ୟ ଆଦିବାସୀମାନଙ୍କ ତୁଳନାରେ । ହେଲେ ଦୁଇଟି ଦୁର୍ବଳତା ତାଙ୍କ ପ୍ରଗତିର ଅନ୍ତରାୟ ବୋଲି ମନେ ହୁଏ । ଅତ୍ୟଧିକ ମଦ୍ୟପାନ ଏବଂ ଯୌନ ଉଚ୍ଛୃଂଖଳତାଜନିତ କେତେକ ଦୁଷ୍ଟରୋଗର ପ୍ରାଦୁର୍ଭାବ । ତେବେ ତାକୁ ଆୟତ୍ତ କରିବା ଦିଗରେ ଏଠିକା ସରକାର ବିଶେଷ ସଚେତନ ଏବଂ ଯତ୍ନଶୀଳ ବୋଲି ବୁଝିଲି ।

ପୁରାଣପ୍ରସିଦ୍ଧ ମଣିପୁର । ତାର ରାଜଧାନୀ ଇମ୍‌ଫାଲ୍‌କୁ ଯାଇଥିଲି ଅଳ୍ପ କିଛିଦିନ ପାଇଁ, ପୂର୍ବାଂଚଳର ସାତ ଭଉଣୀ ରାଜ୍ୟମାନଙ୍କର ଗୋଟିଏ ସହଯୋଗମୂଳକ ସରକାରୀ ସମ୍ମିଳନୀରେ ଯୋଗ ଦେବା ପାଇଁ । ସେଇ କାମର ଫାଂକରେ ଏଇ ରାଜ୍ୟର ଶୋଭା ଓ ସଂସ୍କୃତିକୁ ବୁଝିବାକୁ ଏବଂ ଅନୁଭବ କରିବାକୁ ଚାହିଁଲି । ସେଦିଗରେ ମୋତେ ବିଶେଷ ସାହାଯ୍ୟ କରିଥିଲା ମୋର ଜଣେ ପରିବାର ବଂଧୁ, ବିଶିଷ୍ଟ କବି ଏବଂ ମଣିପୁରର ତଦାନୀନ୍ତନ ଆକାଉଣ୍ଟାଣ୍ଟ ଜେନେରାଲ ସ୍ୱର୍ଗୀୟ ବିବେକାନନ୍ଦ ଜେନା । ଜଣେ ଅଧିକାରୀ ହିସାବରେ ତା'ର ଅନୁଭୂତି ହେଉଛି ଯେ ମଣିପୁରୀମାନେ କଷ୍ଟସ୍ୱୀକାରପୂର୍ବକ କେଉଁ କାମ କରିବାର ଆଗ୍ରହୀ ନୁହଁନ୍ତି । ହେଲେ ତାକୁ ଖୁସି ଲାଗେ ଦେଖି ତାଙ୍କର ନାଚି ଉଠିବା ମାତି ଉଠିବା ପଣ । ସେଇ ମୋତେ ନେଇ ଯାଇଥିଲା ଗୋଟିଏ କୃଷ୍ଣ ମନ୍ଦିରକୁ ଯେଉଁଠି ମୁଁ ଦେଖିଲି ତାଙ୍କର ବିଶିଷ୍ଟ ମୃଦଂଗ ନାଚ । ଏଭଳି ଆନନ୍ଦବିହ୍ୱଳ ଏବଂ ଚଂଚଳକରଯୁଗଶାଳୀ ଭକ୍ତଙ୍କର ମୃଦଂଗଚାଳନ ମୁଁ ଦେଖି ନ ଥିଲି ଏଥି ପୂର୍ବରୁ । ଏଇ ଏକଦା ବଣୁଆ ରାଜ୍ୟର ଅଧିବାସୀମାନେ କେମିତି ଏତେ ମାତ୍ରାରେ ବୈଷ୍ଣବ ହୋଇ ଚିତାଚଇତନ କାଟି ଏହିପ୍ରକାର ଆନନ୍ଦର ପୂଜାରୀ ହୋଇଛନ୍ତି, ତାହା ଏକ ବିସ୍ମୟକର ଐତିହାସିକ ତଥ୍ୟ । କିନ୍ତୁ ଏହିପ୍ରକାର ଆନନ୍ଦ ଉତ୍‌ସବର ଝଲକ ସାଙ୍ଗକୁ ମୋତେ ମଧ୍ୟ ଦେଖିବାକୁ ମିଳିଥିଲା, ଏୟାରପୋର୍ଟରୁ ଆରମ୍ଭ କରି ସହରର ବିଭିନ୍ନ ଘାଟିଜାଗାରେ ଭେଳା ଭେଳା ହେଉଥିବା ସୈନ୍ୟବାହିନୀ ତଥା ସି.ଆର୍‌.ପି. ଏଫ୍‌ର

ସଶସ୍ତ୍ର ପ୍ରହରୀମାନଙ୍କୁ । ମୋତେ କୁହାଗଲା ଯେ ଏମାନଙ୍କର ସଦା ସଜାଗ ଦୃଷ୍ଟି ହିଁ ଏଇ ମଣିପୁରୀମାନଙ୍କୁ କିଛିଟା ଆୟତ୍ତରେ ରଖିପାରିଛି, ନ ହେଲେ ଏମାନେ ହଣାକଟା ହୋଇ ନଷ୍ଟ ହୋଇ ଯାଆନ୍ତେଣି କେବେଠୁଁ । କିନ୍ତୁ କାହିଁକି ? କାହିଁକି ନା ଏମାନେ ଘୋର ବିରୋଧୀ 'ବାହାର ଲୋକ' ମାନଙ୍କର । ହେଲେ ଏଇ ବାହାର ଲୋକମାନେ କିଏ ତା ନିର୍ଭର କରେ ଯେଝାର ଯେଝା ଦୃଷ୍ଟିକୋଣ ଉପରେ । ଆଦିମ ଅଧିବାସୀମାନଙ୍କ ପାଇଁ ବାକୀ ସମସ୍ତେ ବାହାରଲୋକ । ସଂଖ୍ୟାଗରିଷ୍ଠ ଏବଂ ମୃଦଂଗବିଳାସୀ 'ମେଇ-ଟେଇ' (Mei-Tei)ମାନେ କୁହନ୍ତି ଆମେ ହିଁ ସଚ୍ଚା ମଣିପୁରୀ । ବାହାର ଲୋକ ହେଉଛନ୍ତି ଆମ ରାଇଜକୁ ଦଖଲ କରିବାକୁ ବସିଥିବା ନାଗା, ଆସାମୀୟ ଓ ବଂଗାଳୀମାନେ । ସୁନ୍ଦର ମଣିପୁରର ଏଇ ଦୁଃଖଦ ପରିସ୍ଥିତି ମୋତେ ଉସ୍‌କେଇ ଥିଲା ଗପଟିଏ ଲେଖିବାକୁ । ତା ନାଆଁ 'ଚିତ୍ରାଂଗଦାର ଚିଟାଉ' ।

ଫେରିଆସେ ଆସାମକୁ । ଆସାମର ସୌନ୍ଦର୍ଯ୍ୟ ଆମେ ରହିଥିବା ନାରଂଗୀର ବ୍ୟାପକ ଏବଂ ପରିବର୍ଦ୍ଧିତ ସଂସ୍କରଣ କହିଲେ ଭୁଲ ହେବ ନାହିଁ । ବିସ୍ତୃତ ବଣଜଂଗଲ ଓ ପାହାଡ଼ ପର୍ବତର ଶୋଭା । ତା ସାଙ୍ଗକୁ ଖାଲି ଯୋଡ଼ି ଦେଲେ ହେବ ବିଶାଳସୁନ୍ଦର ବ୍ରହ୍ମପୁତ୍ର ଏବଂ ପାହାଡ଼ ଢ଼ାଲୁରେ ବିଛେଇ ହୋଇ ଯାଇଥିବା ଚା' ବଗିଚାର ଗାଲିଚା । ହେଲେ ଆସାମ ଏବଂ ଉଣା ଅଧିକେ ପୂର୍ବାଂଚଳର ପ୍ରତ୍ୟେକ ରାଜ୍ୟ, ଉପରୋକ୍ତ ହିଂସାଭାବରୁ ମୁକ୍ତ ହୋଇ ପାରୁନାହିଁ । ଯେ ବାହାର ଲୋକେ ଆମ ସୁନ୍ଦର ଭୂଇଁକୁ ମାଡ଼ି ବସିବାକୁ ବସିଛନ୍ତି କିନ୍ତୁ ଆମେ ତାହା କରେଇ ଦେବୁ ନାହିଁ ।

ଏଇ ହିଂସାଭାବକୁ ନେଇ ରଚିତ ହୋଇଥିଲା ଆସାମର 'ନେଲି'ରେ ସଂଘଟିତ ସେଇ ଲୋମହର୍ଷଣକାରୀ ଗଣହତ୍ୟା । ବାହାର ଲୋକମାନଙ୍କୁ ଘଉଡ଼େଇ ଦେବା ଲାଗି । ଏବଂ ସେଇ ଶତ୍ରୁମାନଙ୍କ ଶିଶୁଙ୍କୁ ନେଇ ଯେଉଁ ଶବସ୍ତୂପର ଛବି ବାହାରିଥିଲା ସର୍ବଭାରତୀୟ ପତ୍ରପତ୍ରିକାରେ, ତାକୁ ଭୁଲି ହେବ ନାହିଁ । ଏହି ସଂପର୍କରେ ମୋର ବି ରହିଛି ଏକ ବ୍ୟକ୍ତିଗତ ଅନୁଭୂତି, ହେଉ ପଛେ ତାହା ଜଣେ ଢୁଳୁଢୁଳୁଆଖି ବଂଧୁଙ୍କର ଧୀର ବଚନରୁ ଉଦ୍‌ଭୁତ ।

ସଂଜ ବୁଡ଼ି ଗଲାଣି କେତେବେଳଠୁଁ । ମୁଁ ଓ ମୋର ସହକର୍ମୀ ବଂଧୁ ବସି ରହିଥିଲୁ ଚନ୍ଦ୍ରପୁର ଥର୍ମାଲ୍ ଷ୍ଟେସନ୍‌ର ଗେଷ୍ଟ ହାଉସ୍‌ରେ । ବର୍ଷା ହେଉଥାଏ । ହେଲେ ଉଚ୍ଚଭୂଇଁରେ ଅବସ୍ଥିତ ଗେଷ୍ଟ ହାଉସ୍‌ରୁ ଆମେ ଦେଖି ନ ଦେଖି ଉପଭୋଗ କରୁଥିଲୁ ସେଇ ବର୍ଷାର ଦୃଶ୍ୟ । ମଧ୍ୟ ଶୁଣୁଥିଲୁ ତାର ସଂଗୀତ, ଯାହା ମିଶି ଯାଉଥିଲା ସମ୍ମୁଖରେ ଥିବା କୋଲଂଗ୍ ନଈର କୁଳୁକୁଳୁ ଧ୍ୱନି ସାଙ୍ଗରେ । ବଂଧୁ ପାନପାତ୍ରରେ ଚୁମୁକି ଦେଇ ଗୋଟିଏ ଦୃଶ୍ୟଦେଖାର ଗପ ଶୁଣାଉଥିଲେ ମୋତେ । ସେଇ କୋଲଂଗ୍ ନଈକୁ ନେଇ, ଯାହା ମିଶିଯିବ, କିଛି ବାଟ ଗଲେ ବିଶାଳ ବ୍ରହ୍ମପୁତ୍ର ସାଙ୍ଗରେ । କହୁଥିଲେ - ବୁଝିଲେ ନା ମିଷ୍ଟର୍ ଦାସ୍, ଗୋଟିକ ପରେ ଗୋଟିଏ ଭାସି ଆସୁଥିଲା ସେଗୁଡ଼ିକ । ହାଣଖିଆ ମଲାଲୋକଙ୍କର ଶବ । ଆଉ ମୁଁ ଗଣୁଥିଲି

ସେମାନଙ୍କୁ । ହେଲେ ମୋ ଗଣିବା ବନ୍ଦ ହୋଇଗଲା, ଆଉ ମୁଁ ଚିହିଁକି ଉଠିଲି ଗୋଟିକୁ ଦେଖି । କୋଉ ଶବ ନୁହେଁ ସାର୍, ଦିବ୍ୟ ନୂଆ ବୋହୂଟିଏ । ଆଉ ଶଳେ କାଉମାନେ ଖୁଂପୁଛନ୍ତି ତା ଆଖିକୁ ମିଛ ! ତମେ କେମିତି ଜାଣିଲ ସେ ନୂଆ ବୋହୂ ବୋଲି ? ଏଭଳି ଗୋଟାଏ ପ୍ରଶ୍ନ ପଚାରିବାକୁ ଇଚ୍ଛା ହେଉଥିଲା ମୋର ବଂଧୁଙ୍କୁ । ହେଲେ ପଚାରି ହେଲା ନାହିଁ । କିନ୍ତୁ ସେଇ ନିଦାରୁଣ ଅପଦୃଶ୍ୟ ଗୋଟାଏ ଗହୀରିଆ ଦାଗ ରଖିଯାଇଥିଲା ମୋ ମନରେ । ଏବଂ ତାହା ଥିଲା ମୋର ଗୋଟିଏ ମୌଳିକ ଇଂରାଜି ଗଳ୍ପର ଆଧାର । ତା ନାଆଁ "Fish Mayonnaise" । ଗଳ୍ପଟି କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଦ୍ୱାରା ପ୍ରକାଶିତ ଗୋଟିଏ ଇଂରାଜୀ ଗଳ୍ପର ଚୟନିକା Contemporary Indian short stories in English"ରେ ସ୍ଥାନିତ ହୋଇଛି (ପ୍ରଥମ ସଂସ୍କରଣ ୧୯୯୧) । ତାର ଓଡ଼ିଆ ରୂପାନ୍ତର ''ସ୍ୱାଦୁ ଅଛି, ଗଂଧ ନାହିଁ'' ମଧ୍ୟ ମୋର 'ତ୍ରୟୋବିଂଶ ମୃତ୍ୟୁ' ସଂକଳନର ଅନ୍ତର୍ଭୁକ୍ତ ।

କେଉଁମାନେ ହେଲେ ଆସାମର 'ବାହାର ଲୋକ' ? ପ୍ରଥମ ବିଚିତ୍ର କଥା ହେଉଛି ଏଇ ତଥ୍ୟ ଇତିହାସର, ଯେ ଯେଉଁ 'ଆହମ' ମାନେ ରାଜତ୍ୱ କରୁଥିଲେ ଏଠି ଏବଂ ସେଇ ସଂଜ୍ଞାରୁ ଆଜିର ଆହାମିୟା (ଆସାମର ଅଧିବାସୀ ନିଜକୁ ଆହାମିୟା ବୋଲାନ୍ତି, 'ସ' ଶବ୍ଦର ଉଚ୍ଚାରଣ 'ହ' ହୁଏ ତାଙ୍କ ଭାଷାରେ) ଶବ୍ଦ ଉଦ୍‌ଭୁତ, ସେଇ ଆହମ୍‌ମାନେ ବର୍ତ୍ତମାନ ଏକ ଦୁଃସ୍ଥ ଏବଂ ସଂଖ୍ୟାଲଘୁ ସଂପ୍ରଦାୟ । ସେହେତୁ ସେମାନେ ବିଶେଷ ସାହାଯ୍ୟ ଲୋଡ଼ନ୍ତି ସରକାରଙ୍କ ଠାରୁ ତାଙ୍କ ସ୍ୱତଂତ୍ର ସତ୍ତାକୁ ବଂଚାଇ ରଖିବା ଲାଗି । ଏବଂ ଆଜିର ଆହାମିୟାମାନଙ୍କ ପୂର୍ବପୁରୁଷ ଆସିଛନ୍ତି ପୂର୍ବ ଏବଂ ଉତ୍ତର ଭାରତରୁ । ଏଇ ସଂଖ୍ୟାଗରିଷ୍ଠ ଆହାମିୟାମାନେ ''ବୋଡ଼ୋ'' ଆଦି ଆଦିମ ଅଧିବାସୀଙ୍କ ଚକ୍ଷୁଶୂଳ, ତେଣୁ ସେମାନେ ୟାଙ୍କଠୁଁ ଅଲଗା ହୋଇ ଯିବାକୁ ଚାହାଁନ୍ତି । ହେଲେ ଆହାମିୟାମାନେ ଚାହାଁନ୍ତି ନାହିଁ ପଶ୍ଚିମବଙ୍ଗର ଲାଖି ରହିଥିବା ସାଂସ୍କୃତିକ ଆଧିପତ୍ୟ, ଅବା ବାଂଗ୍ଲାଦେଶରୁ ଆସିଥିବା ହିନ୍ଦୁ-ମୁସଲମାନ ବଂଗଭାଷୀଙ୍କ (ଯେଉଁମାନେ ଭାରତୀୟ ନାଗରିକ ଭାବରେ ସ୍ୱୀକୃତ ହେଉଛନ୍ତି) ବଢ଼ି ଚାଲିଥିବା ସଂଖ୍ୟା । ତେଣୁ ଉପାୟ ? ଅନେକ ଗଣତାନ୍ତ୍ରିକ ଉପାୟ ଅବଶ୍ୟ ରହିଛି ସମସ୍ୟା ସମୂହର ସମାଧାନ ଲାଗି ଏବଂ ସେଥିର ଚେଷ୍ଟା ତ ଚାଲିଛି । ହେଲେ ତା ସତ୍ତ୍ୱେ ଭୟ ଏବଂ ଅବିଶ୍ୱାସଜନିତ ହିଂସାର ନିଆଁ କୁହୁଳୁଛି ଏଇ ଅଂଚଳରେ, ମଧ୍ୟ ତେଜି ଉଠୁଛି ବେଳେ ବେଳେ । ଆଜି ସୁଦ୍ଧା ।

ଆମେ ସେଠି ଥିଲା ବେଳେ ଆସାମ ଗଣ ପରିଷଦ କ୍ଷମତାକୁ ଆସି ନ ଥାଆନ୍ତି ଏବଂ ଶାସକ କଂଗ୍ରେସ ସରକାରଙ୍କ ସାଙ୍ଗରେ ଲଢ଼େଇ କରୁଥାଆନ୍ତି ପରିଷଦର ପୂର୍ବ ଅବତାରରେ ଥିବା ଛାତ୍ରନେତାମାନେ । ଯେ ବାଂଲାଦେଶରୁ ଆସିଥିବା ଏଇ ମିଛ ନାଗରିକମାନଙ୍କୁ ତଡ଼ ଆମ ରାଜ୍ୟରୁ, ଭୋଟର୍ ତାଲିକା ସଂଶୋଧନ କର । ତା ପୂର୍ବରୁ

କୌଣସି ନିର୍ବାଚନର ପ୍ରଶ୍ନ ଉଠୁନାହିଁ । ହେଲେ ଶାସକ ଦଳର ସରକାର ଏଇ ଦାବୀକୁ ମାନି ନେଇ ପାରୁ ନ ଥାଆନ୍ତି । ସେହେତୁ ସଂଘର୍ଷ । ସେଇ ସଂଘର୍ଷକୁ ନେଇ ଗୋଟିଏ ଧର୍ମଘଟର ଡାକରା ଆସିଥିଲା ଛାତ୍ର ଆନ୍ଦୋଳନ ତରଫରୁ । ଏଇ ବୋର୍ଡ଼ର କେହି ହେଲେ ସେଇ ଡାକରାର ଅମାନ୍ୟ କରି ନଥିଲେ, କେବଳ ମୁଁ ଓ ଚେୟାରମ୍ୟାନଙ୍କ ଛଡ଼ା, ଯେଉଁମାନେ ଏକୁଟିଆ ନିଜ ନିଜ କୋଠରୀରେ ବସି ଆମର ନୌକରଶାହୀ କର୍ତ୍ତବ୍ୟ ପାଳନ କରୁଥିଲୁ ।

କିନ୍ତୁ ପରିଣୀତା କୁମର ସେଭଳି କର୍ତ୍ତବ୍ୟବୋଧ ନ ଥିଲା । ଏଇଠି ଗୋଟିଏ ମଜା କଥା କହୁଛି ଶୁଣନ୍ତୁ, ଯେଉଁ କାରଣରୁ ଆମେ ଦିହେଁ ବିଶେଷ ଆତ୍ମୀୟ ହୋଇ ଉଠିଲୁ ଆମ ପ୍ରତିବେଶୀ ଆହାମିୟାମାନଙ୍କର । କଥାଟା ଏହି ପ୍ରକାର - ସେଦିନ ଆସାମ ବନ୍ଦ । ନାରଂଗୀର ବିଦ୍ୟୁତ୍ ବୋର୍ଡ଼ ପରିସର ପ୍ରାୟ ଶୂନଶାନ୍ । କିନ୍ତୁ କୁମ ଜଣେ ପ୍ରତିବେଶିନୀଙ୍କ ସାଙ୍ଗରେ ଗପ କରୁଥିଲା, ଆମ ଘର ପାଖରେ ଥିବା କଲଭର୍ଟ ଉପରେ ବସି । ସହସା ଜଣେ ଅଣ-ଆସାମୀ ନିଶୁଆ ସି.ଆର୍.ପି.ଏଫ୍. ରକ୍ଷୀର ଆବିର୍ଭାବ । ଏବଂ ସେ କହୁଛି ଏମାନଙ୍କୁ 'ହଟୋ ୟହାଁସେ !' କିନ୍ତୁ କୁମ ଚଂକିଲା ନାହିଁ ସେଠୁ ଏବଂ ସଂଗିନୀର ହାତକୁ ମଧ୍ୟ ମୁଠେଇ ଧରିଲା । ଏବଂ ନିର୍ଭୁଲ୍ ହିନ୍ଦୀରେ କହିଲା ଯେ ଆମେ ଏଠୁ ଉଠିବୁ ନାହିଁ । ତାକୁ କୁହାଗଲା ଯେ ୧୪୪ ଧାରା ଜାରୀ ହୋଇଛି ଏଇକ୍ଷଣି, ଯାହା ତମର ଜାଣିବା ଦରକାର । ତାର ଉତ୍ତରରେ କୁମ କହିଲା ଯେ ଆମେ ଜାଣୁ ସେ କଥା, କିନ୍ତୁ ଦି'ଜଣିଆ ଗପସପ ହେବାକୁ ମନା ନାହିଁ ତମ ଆଇନ୍‌ରେ । ଶେଷକୁ ରକ୍ଷୀ ଲମ୍ବା 'ହୁଁଃ'ଟାଏ କହି ଚାଲିଗଲା ସେଠୁଁ ।

ଏଇ ଘଟଣା ଯେତେବେଳେ ପ୍ରଘଟ ହୋଇଗଲା କଲୋନିରେ ଆମେ ଗୋଟାଏ ସୁନାମର ଅଧିକାରୀ ହୋଇ ଉଠିଲୁ, ଯେ ଆମେ ପ୍ରକୃତରେ ତାଙ୍କ ଦଳରେ ଅଛୁ, ଆସାମ ଜନତାର ସମର୍ଥକ, ଅନ୍ୟାୟୀ ସରକାରର ନୁହେଁ । ବିଚରା ଦାସ ସାହେବଙ୍କୁ ସିନା ବାଧ୍ୟ ହୋଇ ଯିବାକୁ ପଡ଼ିଲା ଅଫିସକୁ, ତାଙ୍କ ମତ ଭିନ୍ନ । ନ ହେଲେ କଣ ମିସେସ୍ ଦାସ ଏମିତି ପାଣି ପିଆଇ ଦେଇପାରିଥାଆନ୍ତେ ସେଇ ଠେଙ୍ଗାଧାରୀ ନିଶୁଆ ଲୋକଟାକୁ ?

ଆମର ଗରଜ ପଡ଼ି ନଥିଲା ଅଯଥାରେ କହିବା ପାଇଁ ଯେ ଆମେ କୋଉ ଦଳରେ ନାହୁଁ ଏବଂ ମିସେସ୍ ଦାସ ଗୋଟିଏ ପୁଲିସ୍‌ସୁଲଭ ଦୁର୍ବ୍ୟବହାର ପ୍ରତିରୋଧ କରିବା ଛଡ଼ା ଆଉ କିଛି କରିନାହାନ୍ତି ।

ଶେଷକୁ କହିଦିଏ ଦି'ପଦ ମୋର ଅଫିସ୍ ଜୀବନ ବିଷୟରେ । ମୋର କାର୍ଯ୍ୟକାଳ ଭିତରେ ଦୁଇଜଣ ଆଇ.ଏ.ଏସ୍. ଅଫିସର ବୋର୍ଡ଼ର ଚେୟାରମ୍ୟାନ୍ ହୋଇଥିଲେ, ଜଣକ ପରେ ଜଣେ । ସେମାନଙ୍କ ସହିତ ତଥା ବୋର୍ଡ଼ର ଅନ୍ୟ ତିନିଜଣ ସଦସ୍ୟଙ୍କ ସହିତ ମୋର ମତଭେଦ ଅବଶ୍ୟ ହୁଏ ବେଳେ ବେଳେ, କିନ୍ତୁ ଯଥାଶୀଘ୍ର ଆମେ କିଛି ଗୋଟାଏ ନିଷ୍ପତ୍ତି ଗ୍ରହଣ କରି ନେଉ, ବୋର୍ଡ଼ର ତଥା ରାଜ୍ୟର ସାମୂହିକ ସ୍ୱାର୍ଥ ଦୃଷ୍ଟିରୁ । ଏହି ପରିପ୍ରେକ୍ଷୀରେ

କହି ରଖେ ଯେ ଆସାମ ବିଦ୍ୟୁତ୍ ବୋର୍ଡ଼ ଭାରତର ଅନ୍ୟାନ୍ୟ ଅନେକ ରାଜ୍ୟ ବିଦ୍ୟୁତ୍ ବୋର୍ଡ଼ ପରି କ୍ଷତିଗ୍ରସ୍ତ ଅବସ୍ଥାରେ ଥିଲା, କିନ୍ତୁ ମୋ ମତରେ (ଯାହା ସମଦୁଃଖୀ ରାଜ୍ୟ ବିଦ୍ୟୁତ୍ ବୋର୍ଡ଼ମାନଙ୍କ ପ୍ରତି ମଧ୍ୟ ପ୍ରଯୁଜ୍ୟ) ତା'ର ମୁଖ୍ୟ କାରଣ ହେଉଛି ଏଇ ଯେ ତାକୁ ଯଥାର୍ଥରେ ଗୋଟିଏ ସ୍ୱାବଲମ୍ବୀ ସଂସ୍ଥାର ଦାୟିତ୍ୱ ତଥା ସ୍ୱାଧିକାର ମିଳିନାହିଁ । ଯଥା ଗାଁଗହଳିର କଲ୍ୟାଣ ସାଧନ ପାଇଁ ଯେଉଁ ଲମ୍ବା ଲମ୍ବା ଲାଇନ୍ ଟାଣି ନେବାକୁ ପଡୁଛି ଆମକୁ, ଯେହେତୁ ତାହା ଲୋକପ୍ରିୟ ସରକାରଙ୍କ ଇଚ୍ଛା ଓ ନିର୍ଦ୍ଦେଶ, ତଦ୍ୱାରା ଘଟୁଥିବା କ୍ଷତିର ଭରଣା ପାଇଁ ଆମକୁ ଯଥୋଚିତ ଅନୁଦାନ ମିଳିବା ଉଚିତ ନୁହେଁ କି ସରକାରଙ୍କ ଠାରୁ ? ତାଛଡ଼ା ଯେଉଁ ଉପଭୋକ୍ତା ସରକାରୀ ତଥା ଅଧା-ସରକାରୀ ସଂସ୍ଥାମାନଙ୍କ ଠାରୁ ଲକ୍ଷ ଲକ୍ଷ ଟଙ୍କାର ଦେୟ ମିଳିବାକୁ ନାହିଁ ବର୍ଷ ବର୍ଷ ଧରି, ସେଦିଗରେ କଣ ସରକାରଙ୍କର କିଛି କରିବାର ନାହିଁ ? ଆସାମ ସରକାରଙ୍କ ଦ୍ୱାରା ପ୍ରତିଷ୍ଠିତ ଏବଂ ତାଙ୍କ ତତ୍ତ୍ୱାବଧାନରେ ଚାଳିତ ଗୋଟିଏ କାଗଜ କଳ ଠାରୁ ପ୍ରଚୁର ଅର୍ଥ ବାକୀ ଗଡ଼ିଥିଲା ଆମର, କିନ୍ତୁ ହଜାରେ ଦାବୀପତ୍ର ଏବଂ ଧମକ ସତ୍ତ୍ୱେ ବିଶେଷ କିଛି ଫଳ ମିଳିଲା ନାହିଁ । ଲୋକପ୍ରିୟ ସରକାର କୌଣସିମତେ ଆମକୁ ବୁଝେଇ ଦେଲେ, ଭବିଷ୍ୟତ ପାଇଁ ନାନାଦି ଆଶ୍ୱାସନା ଦେବା ସହ । ଯାହାହେଉ ବୋର୍ଡ଼ ତରଫରୁ ମୁଁ କରିଥିଲି ମୋର ଯାହା କରିବା କଥା, ବୋର୍ଡ଼କୁ ତାର ବଢ଼ି ଚାଲିଥିବା କ୍ଷତିରୁ ବଂଚାଇବା ଲାଗି, ଏବଂ ସେ ଦିଗରେ ମୋତେ କିଛି ସଫଳତା ମିଳିଥିଲା ବୋଲି ମୋର ବିଶ୍ୱାସ । ହଁ, ମୋର ବୃତ୍ତିଗତ ଜୀବନର ସେଇ ଶେଷ ଅଧ୍ୟାୟଟି ବେଶ୍ ସୁରୁଖୁରୁରେ କଟିଯାଇଥିଲା ଏବଂ ଅନେକ ନୂଆ ଏବଂ ଉପଭୋଗ୍ୟ ଅନୁଭୂତି ଆଣି ଦେଇଥିଲା ବୋଲି ମୁଁ କହିବି । ଏବଂ ଆତ୍ମୀୟତାର ଏକ ଅଭୁଲା ଅନୁଭବ ମିଳିଥିଲା ମୋତେ, ଯେତେବେଳେ ମୋତେ ଡାକିଥିଲେ ସେମାନେ ଜଣେ 'ନିଜଲୋକ' ହିସାବରେ, ତାଙ୍କ 'ବିହୁ' ନାଚରେ ସାମିଲ୍ ହେବା ପାଇଁ । ତାଙ୍କ ସାଙ୍ଗରେ ମିଶି ନାଚି ନ ପାରିଲେ ବି ତାଙ୍କର ଅଗ୍ରଣୀ ହୋଇ ନଗରର ପରିକ୍ରମା କରିବା ପାଇଁ । ଯାଠାରୁ ବଳି ସଫଳତା ଆଉ କଣ ମିଳିଥାଆନ୍ତା ମୋତେ ସେଇ ଚିତ୍ତାକର୍ଷକ, ହେଲେ ବିଦେଶୀ-ବିରୋଧୀ ରାଜ୍ୟରେ ?

୧୯୮୫ ଏପ୍ରିଲ୍ ମାସରେ ମୁଁ ଫେରି ଆସିଲି ଘରକୁ । କଟକରେ ବାପାମାଆଙ୍କ ପାଖକୁ । ସେତେବେଳକୁ ମୋତେ ଏକଷଠି ବର୍ଷ ପୂରି ଗଲାଣି । ଏଣିକି ସଂପୂର୍ଣ୍ଣ ଅବସର ଏବଂ ଏକ ନୂଆ ଜୀବନ । ମନେ ହେଉଛି ଏଣିକି ସାହିତ୍ୟ, କେବଳ ସାହିତ୍ୟ ହିଁ ହେବ ମୋର ଶାନ୍ତି ଓ ମୁକ୍ତିର ପଥ । ତଥାସ୍ତୁ ।

କିନ୍ତୁ ନୂଆ ଜୀବନରେ ମୋ ସାହିତ୍ୟ ସେବା ବଢ଼ିଲା କି ଛିଡ଼ିଲା ଏବଂ କିଭଳି ରୂପ ଧାରଣ କଲା, ସେ ବିଷୟରେ କିଛି କହିବା ପୂର୍ବରୁ, ମୋର ଜଣାଇବା ଉଚିତ ଯେ ଗତ ସାତଆଠ ବର୍ଷ ଭିତରେ ଅର୍ଥାତ୍ ତଥାକଥିତ ସ୍ୱୀକୃତି ପାଇଲା ପରେ ଏଇ ସେବକ କିଭଳି ନିଷ୍ଠା ଦେଖାଇଛି ତାର ସାହିତ୍ୟ ପ୍ରତି । ସ୍ୱୀକୃତି ଯୋଗୁଁ ଅଳ୍ପବହୁତ ଅଳସେଇ ଯାଇ ନାହିଁ ତ ?

ନା । ଜଣେ ସ୍ୱାଭିମାନୀ ଲେଖକ ହିସାବରେ ମୁଁ ଆଦୌ ମାନିବାକୁ ପ୍ରସ୍ତୁତ ନୁହେଁ ଯେ ଅଳସେଇ ଯିବା ଦୂରର କଥା ଏଇ ସ୍ୱୀକୃତି କୌଣସି ଭାବରେ ପ୍ରଭାବିତ କରିପାରିଥାଏ ମୋ ସାହିତ୍ୟକୁ । କିନ୍ତୁ ଏହା ମଧ୍ୟ ସତ ଯେ ଏଇ ଯେଉଁ ଛାପ ମରା ହେଲା ମୋର ପରିଚିତି ଉପରେ ଯେ ମୁଁ ଜଣେ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ଲେଖକ-ସାହିତ୍ୟିକ, ତା'ଯୋଗୁଁ ଲୋକେ ଜାଣିଲେ, ବିଶେଷତଃ ଓଡ଼ିଶା ବାହାରେ, ଯେ ମୋର ସାହିତ୍ୟ-ପ୍ରତିଭା ଉଚ୍ଚଧରଣର, ତେଣୁ ବିଶେଷ ସମ୍ମାନର ଯୋଗ୍ୟ । ସେହେତୁ ମୋତେ ଅଧିକରୁ ଅଧିକ ସୁଯୋଗ ମିଳିଲା ମୋର ସାହିତ୍ୟ, ସାହିତ୍ୟିକ ଆଭିମୁଖ୍ୟ ତଥା ଜୀବନଦର୍ଶନକୁ ସର୍ବଭାରତୀୟ, ମଧ୍ୟ ଯତ୍‌କିଂଚିତ୍ ବିଶ୍ୱଦରବାରରେ ଉପସ୍ଥାପିତ କରିବା ପାଇଁ । ସେହେତୁ ମୁଁ ଏଇ ସ୍ୱୀକୃତି ପାଇଁ କୃତଜ୍ଞ, କର୍ତ୍ତୃପକ୍ଷ ତଥା ମୋର ଅଦୃଷ୍ଟ ପ୍ରତି, ଏହା ମୁଁ ନିଃସଂକୋଚରେ କହିବାକୁ ଚାହେଁ ।

ସୁଯୋଗଗୁଡ଼ିକ ମଧ୍ୟରୁ ନିମ୍ନଲିଖିତ କେତୋଟି ଆଇଟମ୍ ବିଶେଷ ଉଲ୍ଲେଖଯୋଗ୍ୟ -

୧୯୭୯ରେ ମୁଁ ଦିଲ୍ଲୀରେ ଥିଲାବେଳେ ମୋ ପାଖକୁ ଫୋନ୍ ଆସିଥିଲା ହଠାତ୍ ଓଡ଼ିଶାର ପ୍ରାକ୍ତନ ମୁଖ୍ୟମନ୍ତ୍ରୀ ଏବଂ ସୁସାହିତ୍ୟିକା ତଥା ବହୁଚର୍ଚ୍ଚିତା ଶ୍ରୀମତୀ ନନ୍ଦିନୀ ଶତ୍‌ପଥୀଙ୍କ ପାଖରୁ - ''କିଶୋରୀବାବୁ, ଆପଣ ଓଡ଼ିଶାକୁ ଆସିପାରିବେ କି ଆମ 'ଧରିତ୍ରୀ'ର ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ହୋଇ ?'' ମୋର ପ୍ରଥମେ ମନେ ହେଲା ଯେ ଜଣେ କିଏ ଖେଳୁଛି ମୋ ସାଙ୍ଗରେ । କିନ୍ତୁ ଅବିଳମ୍ବେ ବୁଝିଲି ଯେ ସେ ମୋତେ ପ୍ରକୃତରେ ଡାକୁଛନ୍ତି ସେଠିକି, ମୋ ଠାରୁ କିଛି ଶୁଣିବା ପାଇଁ । କେଉଁ ବିଷୟରେ କହିବି ? ମୁଁ ପଚାରିଲି ତାଙ୍କୁ । କହିଲେ, ଯାହା ଇଚ୍ଛା ଆପଣଙ୍କର । ଏହି ଭାବରେ ମୁଁ ନଭେମ୍ବର ୨୪ ତାରିଖ ୧୯୭୯ ରେ ଭୁବନେଶ୍ୱରରେ ଅନୁଷ୍ଠିତ ସେହି ସଭାର ମୁଖ୍ୟ ଅତିଥି ଭାବରେ 'ଲେଖକର ସଂସାର' ନାମକ ଏକ ଲିଖିତ ପ୍ରବଂଧ ପଢ଼ିଥିଲି । ସଭାର ସଭାପତି ଥିଲେ ସ୍ୱନାମଧନ୍ୟ ଲେଖକ କାଳିନ୍ଦୀ ଚରଣ ପାଣିଗ୍ରାହୀ । ଅବଶ୍ୟ ଏଥିପୂର୍ବରୁ ମୁଁ ନାନା ସାହିତ୍ୟ ସଭାରେ ଯୋଗ ଦେଇ ଆସିଛି, କିନ୍ତୁ ଏଭଳି ଏକ ବିରାଟ ସଭାର ଶ୍ରେଷ୍ଠାଂଶରେ ଅବତୀର୍ଣ୍ଣ ହେବାର ସମ୍ମାନ ମିଳି ନଥିଲା ମୋତେ । ହେଲେ ମୁଁ ଯାହା କହିଲି, ଲେଖକର ଭିନ୍ନ, ଅପରୂପ ମଧ୍ୟ ଜୁହାରପୂର୍ବକ ଅବହେଳିତ ସଂସାର ବିଷୟରେ ଏବଂ ଯେପରି ଭାବରେ କହିଲି, ତାହା ଏତେ ଆଦୃତ ହେବ ବୋଲି ମୁଁ ଆଶା କରି ନଥିଲି । ବିଶେଷ ଖୁସି ହେଲି ଯେତେବେଳେ ମୋର ପରମ ଶ୍ରଦ୍ଧେୟ ବଂଧୁ ଏବଂ ସାହିତ୍ୟଗୁରୁ ଗୋପୀନାଥ ମହାନ୍ତି ମୋତେ କୁଣ୍ଢେଇ ପକେଇ କହିଲେ ଯେ ଏଭଳି ଆବେଗଭରା ସାହିତ୍ୟିକ ଭାଷଣ ସେ ଶୁଣି ନ ଥିଲେ ଏଥିପୂର୍ବରୁ । ଏବଂ ଆପ୍ୟାୟିତ ତଥା ଆମୋଦିତ ହେଲି ଯେତେବେଳେ କବି ରାଜେନ୍ଦ୍ର କିଶୋର ପଣ୍ଡାଙ୍କ ଠାରୁ ଗୋଟିଏ ଚିଠି ପାଇଲି ଦିଲ୍ଲୀକୁ ଫେରି ଆସିଲା ପରେ । ତାଙ୍କୁ ମୁଁ ଚିହ୍ନି ନ ଥିଲି ଏଥିପୂର୍ବରୁ ।

ହେଲେ ତାଙ୍କ ଚିଠିରେ ସେ କେବଳ ମୋର ଲେଖାକୁ ପ୍ରଶଂସା କରି ନଥିଲେ, ସେ ମଧ୍ୟ ଶ୍ରୋତାମଣ୍ଡଳୀରେ ତାଙ୍କ ପାଖ ଚଉକିରେ ବସିଥିବା ମୋ ସ୍ତ୍ରୀ କୁମର ଲାବଣ୍ୟ, ସ୍ଥାପତ୍ୟ ଓ ଠାଣିର ପ୍ରଶଂସା କରିଥିଲେ । ମୋ ପରି ଜଣେ ଲେଖକର ଉପଯୁକ୍ତ ସହଧର୍ମିଣୀ ବୋଲି । ରାଜେନ୍ଦ୍ର ବାବୁ ଓ ତାଙ୍କ ସାହିତ୍ୟକୁ ପରେ ଭଲ ଭାବରେ ଜାଣିଲା ପରେ ମୁଁ ବୁଝିଲି ଯେ ନାରୀମୂର୍ତ୍ତିକୁ ଅନନ୍ୟ ସମ୍ମାନ ଦେଇ ପାରୁଥିବା 'ଅନ୍ୟା' କାବ୍ୟର ରଚୟିତାଙ୍କ ଠାରୁ ଏଭଳି ଏକ ମଂତବ୍ୟ ଶୁଣିବାକୁ ପାଇବା ଆଦୌ ବିଚିତ୍ର ନୁହେଁ । ମଧ୍ୟ ନିଜକୁ ବିଶେଷ ଉପକୃତ ମନେ କଲି, ଯେତେବେଳେ ଦେଖିଲି ଯେ ଡକ୍ଟର ହରେକୃଷ୍ଣ ମହତାବ 'ଝଂକାର'ରେ ଗୋଟିଏ ସ୍ୱତନ୍ତ୍ର ସଂପାଦକୀୟ ଲେଖିଛନ୍ତି ମୋ 'ଲେଖକର ସଂସାର' ଉପରେ । ମୋର ଏଇ ଲେଖାଟି ଥିଲା ମୋର ପ୍ରଥମ ପ୍ରବଂଧ ସଂକଳନ 'ଲେଖକର ସଂସାର'ର ଅଗ୍ରଦୂତ ।

ଏହାଛଡ଼ା ମୋତେ ଅନେକ ଛୋଟବଡ଼ ସାହିତ୍ୟିକ ବୈଠକ, ଆସର ଇତ୍ୟାଦିରେ ଯୋଗଦେବାକୁ ପଡ଼ିଥିଲା ସ୍ୱାଜିଲାଣ୍ଡରୁ ଫେରି ଆସି ଦିଲ୍ଲୀରେ ଥିବା ସେଇ ଚାରିପାଞ୍ଚ ବର୍ଷ ଭିତରେ ଯାହାକୁ ପୂର୍ବାପେକ୍ଷା ଯଥେଷ୍ଟ ଅଧିକ ବୋଲି କହିବାକୁ ହେବ । ତନ୍ମଧ୍ୟରୁ ଦୁଇଟିକୁ ମୁଁ ବିଶେଷ ପ୍ରାଧାନ୍ୟ ଦେବାକୁ ଚାହେଁ, ମୋ ନିଜର ଆତ୍ମସନ୍ତୋଷ ଦୃଷ୍ଟିରୁ । ତାହା ଏହିପ୍ରକାର :

କବି ରମାକାନ୍ତ ରଥଙ୍କୁ ୧୯୭୮ର କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ମିଳିଥିଲା । ସେତେବେଳକୁ ସେ ଦିଲ୍ଲୀରେ ଥିଲେ, ତେଣୁ ଦିଲ୍ଲୀର ''ମହାନଦୀ ବୃତ୍ତ'' ଗୋଟିଏ ସଭାର ଆୟୋଜନ କରିଥିଲେ ତାଙ୍କୁ ଅଭିନନ୍ଦନ ଦେବା ସହ ତାଙ୍କ କବିତାର ବୈଶିଷ୍ଟ୍ୟକୁ ଦିଲ୍ଲୀର ସର୍ବଭାରତୀୟ ସାହିତ୍ୟିକ ମହଲରେ ଚିହ୍ନାଇବା ଲାଗି । ଏବଂ ମୋତେ ଅନୁରୋଧ କରାଗଲା ମୁଖ୍ୟ ବକ୍ତାର ଭୂମିକାରେ ତାଙ୍କ ବିଷୟରେ କିଛି କହିବା ଲାଗି । ମୁଁ ମୁଖ୍ୟତଃ ଜଣେ କଥାକାର ହେଲେ ମଧ୍ୟ ଆଗ୍ରହର ସହିତ ଏହି ସଭାରେ ଯୋଗ ଦେଇ କିଛି କହିଥିଲି ତାଙ୍କ ବିଷୟରେ, ଯାହା ବିଶେଷ ଆଦୃତ ହୋଇଥିଲା । କହିଥିଲି ଗୋଟିଏ ସ୍ୱୀକାରୋକ୍ତି ପରି, ଯେ ଆମ ଦି ଜଣଙ୍କ ସାହିତ୍ୟ ଭିତରେ ଗୋଟିଏ ଭାବଗତ ଆତ୍ମୀୟତା ଅଛି, ଯାହାକୁ ବୋଧହୁଏ ଉଚ୍ଚ ଆସନରେ ବସେଇ ହେବ ନାହିଁ । କାରଣ ତାହା ହେଉଛି ତାଙ୍କ ''ନର୍ତ୍ତକୀ'' କବିତାରେ ଥିବା ନର୍ତ୍ତକୀର ନିଦାରୁଣ ଧର୍ମସଂକଟ । ବିଚାରୀକୁ ନାଚିବାକୁ ପଡ଼ିବ, କାରଣ ଦର୍ଶକମାନେ ଅପେକ୍ଷା କରି ରହିଛନ୍ତି ସେଥିପାଇଁ । କିନ୍ତୁ ତାର ମନେ ହେଉଛି ଯେ ସେଇ ନାଚିବାହିଁ ହେଉଛି ତା'ର ଏକାନ୍ତସୁନ୍ଦର ନିଜତ୍ୱର ଅବମାନନା, ସେଥିର ମୃତ୍ୟୁ । ଇତ୍ୟାଦି । ସୁସାହିତ୍ୟିକା ଶ୍ରୀମତୀ ବର୍ଷା ଦାସ ମୋର ଏଇ ଛୋଟ ଲିଖିତ ଭାଷଣକୁ 'ଗ୍ରନ୍ଥ' ନାମକ ଗୁଜରାତୀ ପତ୍ରିକାରେ ଛପାଇଥିଲେ । ଏବଂ ମୁଁ ଖୁସି ହୋଇଥିଲି ଯେ ଯାହାହେଉ ମୋର ଜଣେ ପ୍ରିୟ କବିବଂଧୁଙ୍କୁ ତଥା ଆଧୁନିକ ଓଡ଼ିଆ କବିତାକୁ ବାହାରେ ଚିହ୍ନାଇବାରେ ମୁଁ ଏଭଳି ସଫଳତା ପାଇପାରିଛି ।

ଦ୍ୱିତୀୟଟି ହେଲା ମାର୍ଚ୍ଚ ୨୦ ତାରିଖ ୧୯୭୯ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀଙ୍କ ଦ୍ୱାରା ଆହୂତ ଗୋଟିଏ ସେମିନାର । ସୁପ୍ରସିଦ୍ଧ ଲେଖକ ଟଲଷ୍ଟୟଙ୍କ ଆବିର୍ଭାବର ଦେଢ଼ ଶହ ବର୍ଷ ପୂରିବା ଉପଲକ୍ଷରେ ଆୟୋଜିତ ଗୋଟିଏ ତତ୍ତ୍ୱଦର୍ଶୀ ହେଲେ ବିତର୍କମୂଳକ ବୈଠକ । ନିର୍ଦ୍ଧାରିତ କଥାବସ୍ତୁ ହେଉଛି "Realism and moral values in fiction" ଅର୍ଥାତ୍ କଥା ସାହିତ୍ୟରେ ବାସ୍ତବତା ଏବଂ ନୀତିବୋଧର ଭୂମିକା । ଉହ୍ୟ ରହିଗଲା ଯେ ଆପାତ ବିରୋଧାତ୍ମକ ଏଇ ଦୁଇ ପ୍ରକାର ମାନସିକତାକୁ କଣ ପ୍ରକୃତରେ ସମନ୍ୱିତ କରିହେବ ନା କରାଯାଇଛି ଆମମାନଙ୍କ ସାହିତ୍ୟରେ ? ଟଲଷ୍ଟୟ ସେଦିଗରେ ସଫଳ ହୋଇଥିଲେ ବୋଲି ଅନେକେ କହିଛନ୍ତି, କିନ୍ତୁ ତାହା କେତେଦୂର ଗ୍ରହଣଯୋଗ୍ୟ ? ନିର୍ଦ୍ଦେଶ ଅନୁଯାୟୀ ମୁଁ ଓଡ଼ିଆ ସାହିତ୍ୟର ଉଦାହରଣ ଦେଇ କହିଥିଲି କିଛି ଏ ବିଷୟରେ । ତାର ସାରକଥା ଥିଲା ଏଇ ଯେ ଏଭଳି ସମନ୍ୱୟର ପ୍ରଚେଷ୍ଟା ସୁଦୂର ପରାହତ, (Self-defeating) କାରଣ କ୍ୱଚିତ୍ ଆମେ ନିଜ ନିଜ ଇଗୋର ଆତ୍ମପ୍ରବଂଚନାରୁ ନିଜକୁ ମୁକ୍ତ କରି ପାରିଥାଉ । ପ୍ରଭେଦ ଭିତରେ ଏତିକି ଯେ ସାଧାରଣତଃ ଲେଖକ ଏଇ ଆତ୍ମପ୍ରବଂଚନାକୁ ବେଶି ଭଲ ଭାବରେ ଠଉରେଇ ପାରିଥାଏ ଅନ୍ୟମାନଙ୍କ ଠାରୁ । ଏବଂ ମୁଁ ଟଲଷ୍ଟୟଙ୍କ ଆତ୍ମକଥାମୂଳକ ଲେଖାରୁ ଉଦ୍ଧୃତ କରି କହିଥିଲି ଯେ ଏହାହିଁ ବାସ୍ତବ ସତ୍ୟ । ମୋର ଲିଖିତ ଭାଷଣଟି ଉଚ୍ଚ ପ୍ରଶଂସିତ ହୋଇଥିଲା ସଭାସଦମାନଙ୍କ ଦ୍ୱାରା । ବିଶେଷତଃ ଏକାଡ଼େମୀର ଅଧ୍ୟକ୍ଷ ସୁସାହିତ୍ୟିକ ଉମାଶଙ୍କର ଯୋଷୀ, ଉର୍ଦ୍ଦୂ ଔପନ୍ୟାସିକା କୃଷ୍ଣା ସୋବ୍ତୀ ଓ ତାମିଲନାଡୁର ବିଶିଷ୍ଟ ପତ୍ରକାର ଓ ସାହିତ୍ୟ ସମାଲୋଚକ କ.ନ. ସୁବ୍ରମନିୟମ୍‌ଙ୍କ ଦ୍ୱାରା । ଏଇ ପ୍ରବଂଧଟିକୁ ମୋର ସର୍ବପ୍ରଥମ ସୁଚିନ୍ତିତ ଏବଂ ପ୍ରକାଶନ ଉପଯୋଗୀ ଇଂରାଜି ପ୍ରବଂଧ ବୋଲି କୁହାଯାଇପାରେ ।

କିନ୍ତୁ ଯେଉଁ ଗୋଟିଏ ମହାର୍ଘ ଅନୁଭୂତିର ସୁଯୋଗ ଯଚା ହେଲା ମୋତେ ମୁଁ ଦିଲ୍ଲୀରେ ଥିଲାବେଳେ, ଏବଂ ମୋର ତର ସହିଲା ନାହିଁ ତାକୁ 'ହଁ' ଭରିବାରେ ତା ହେଉଛି ଯେତେବେଳେ ମୋତେ ପଚରାଗଲା - ମିଷ୍ଟର ଦାସ୍, ଆପଣ କିଛିଦିନ ପାଇଁ ଅଷ୍ଟ୍ରେଲିଆ ଯାଇପାରିବେ କି ? ଅଡ଼ିଟର୍ ଜେନେରାଲ୍‌ଙ୍କୁ ଆମେ ପଚାରିସାରିଲୁଣି, ସେ ରାଜି ଅଛନ୍ତି ଆପଣଙ୍କୁ ଛୁଟି ଦେବାଲାଗି । ମୁଁ ବିମୂଢ଼ ହୋଇ ନୀରବ ରହିଲାରୁ କହୁଛନ୍ତି, ଆପଣ ପ୍ରଥମେ ଯିବେ ଆଡ଼ିଲେଡ୍‌କୁ । ସେଠି ଗୋଟିଏ ଆନ୍ତର୍ଜାତିକ ଲେଖକ ସପ୍ତାହ (International Writers' Week) ଅନୁଷ୍ଠିତ ହେଉଛି । ବିଭିନ୍ନ ଦେଶରୁ ଆସିଥିବା ଅନେକ ଲେଖକ ଲେଖିକାଙ୍କର ମେଳା ବସିବ ସେଠି । ଆମେ ଆପଣଙ୍କୁ ବାଛିଛୁ ସେଥିରେ ଯୋଗ ଦେବା ଲାଗି, ଭାରତର ପ୍ରତିନିଧି ହୋଇ । ଏବଂ ଆମର ଇଚ୍ଛା ଯେ ତାପରେ ଆପଣ ଅଷ୍ଟ୍ରେଲିଆର ଆଉ କେତେକ ଜାଗାକୁ ଯିବେ, ସେଠିକାର ବିଶିଷ୍ଟ ଲେଖକ-ସାହିତ୍ୟିକମାନଙ୍କ ସାଙ୍ଗରେ ଆଳାପ ଆଲୋଚନା କରିବା ଲାଗି । ଆମର ଭାରତ ଅଷ୍ଟ୍ରେଲିଆ ସାଂସ୍କୃତିକ ଆଦାନପ୍ରଦାନ

କାର୍ଯ୍ୟକ୍ରମ (Indo-Australian Cultural Exchange Programme)ର ଆନୁକୂଲ୍ୟରେ । ପ୍ରଶ୍ନକର୍ତ୍ତା ଥିଲେ ବିଦେଶ ମଂତ୍ରଣାଳୟର କର୍ତ୍ତୃତ୍ୱରେ ଥିବା "Indian Council of Cultural Relations"ର ଜଣେ ମୁଖପାତ୍ର । କହିଲେ ''ଫେରୁ ଫେରୁ ପ୍ରାୟ ମାସେ ଲାଗିବ । କଣ ରାଜି ଅଛନ୍ତି ?'' ମୋତେ ସମୟ ଲାଗିଲା ନାହିଁ କହିବା ପାଇଁ ହଉ, ଧନ୍ୟବାଦ । ମୋର ବିପୁଳ ବିସ୍ମୟାନନ୍ଦକୁ କୌଣସିମତେ ଆୟତ୍ତରେ ରଖି ।

ଏହି ବିସ୍ମୟାନନ୍ଦର କାରଣ କଣ ବୋଲି କହିବା ଅନାବଶ୍ୟକ । ଭାରତର ପ୍ରତିନିଧି ହୋଇ ଯାଉଛି ଗୋଟିଏ ଆନ୍ତର୍ଜାତିକ ଲେଖକ ସମ୍ମେଳନୀରେ ଯୋଗ ଦେବା ଲାଗି, ସେଇଠୁଁ ଘୁରି ବୁଲିବି ସେଇ ମହାଦେଶରେ ତାଙ୍କ ଲେଖକ-ସାହିତ୍ୟିକମାନଙ୍କ ସହିତ କଥାଭାଷା ହେବା ପାଇଁ, ଏଥିରେ କିଏ ଭଲା ଖୁସି ହୋଇ ଉଠିବ ନାହିଁ ? ତା'ଛଡ଼ା ଆଉ ଗୋଟିଏ ବିଶେଷ କାରଣ ଥିଲା ମୋ ପାଇଁ । ଅନେକ ଦେଶବିଦେଶ ବୁଲି ଆସିଲିଣି ମୋ ଚାକିରୀ ଜୀବନରେ, ଭାରତ ସରକାରଙ୍କ ଅନ୍ୟତମ ଅଧିକାରୀ ହିସାବରେ । କିନ୍ତୁ ଏଥର ଭାରତ ସରକାର ମୋର ଏକ ଭିନ୍ନଦେଶୀୟ ଏବଂ ଏକାନ୍ତ ନିଜସ୍ୱ ଯୋଗ୍ୟତାକୁ ମଧ୍ୟ ଚିହ୍ନି ନେଇ ମୋତେ ଡାକୁଛନ୍ତି ଗୋଟିଏ ଦେଶ-ମହାଦେଶର ଅତିଥି ହେବା ପାଇଁ । ଅନେକ ଧନ୍ୟବାଦ ।

ଏକାଧିକ ଦିଗରେ ଅନେକ କିଛି କହିହେବ ମୋର ଏଇ ମାସକର ଅନୁଭୂତି ବିଷୟରେ, ଯାହା ସମୟସାପେକ୍ଷ । ତେଣୁ ମୁଁ ସଂକ୍ଷେପରେ କହିବାକୁ ଚେଷ୍ଟା କରିବି ସେ ବିଷୟରେ, ଯେତେଦୂର ସଂଭବ । ମୋତେ 'ନୂଆ' ଲାଗିଥିବା ବସ୍ତୁଗୁଡ଼ିକୁ ବିଶେଷ ଭାବରେ ଚିହ୍ନାଇବା ସହ ।

ପ୍ରଥମେ ଆଡ଼ିଲେଡ୍‌ର ଆନ୍ତର୍ଜାତିକ ଲେଖକ ସପ୍ତାହ । ମାର୍ଚ୍ଚ ୮-୧୫ ତାରିଖ ୧୯୮୦ । ଏଥିରେ ଦେଶବିଦେଶର ଲେଖକମାନଙ୍କୁ ଆମଂତ୍ରିତ କରାଯାଇଥିଲା, "Literature and Cultural Identity" (ସାହିତ୍ୟ ଏବଂ ସାଂସ୍କୃତିକ ନିଜତ୍ୱବୋଧ) ବିଷୟରେ କିଛି କହିବା ପାଇଁ, ଆପଣା ଦେଶ ଓ ଆପଣା ଅନୁଭୂତିକୁ ନେଇ । ଲିଖିତ ଭାଷଣ, ଯାହା ପୂର୍ବରୁ ପଠା ହୋଇଥିଲା ସେମାନଙ୍କ ପାଖକୁ, ଭାରତରେ ଥିବା ତାଙ୍କ ଦୂତାବାସ ଜରିଆରେ । ତା'ର ମୁଖ୍ୟ ସ୍ୱର ଥିଲା ଏକ ମର୍ମଂତୁଦ ସ୍ୱୀକାରୋକ୍ତି । ଯେ କ୍ଷମା କରିବେ, ମୁଁ ଜଣେ ଭାରତୀୟ ଲେଖକ ସତ, କିନ୍ତୁ ମୋତେ ଲାଜ ଲାଗୁଛି କହିବାକୁ ଯେ ମୋ ସାହିତ୍ୟ ମୋ ଭାରତ ଦେଶକୁ ଠିକଣା ଭାବରେ ଚିହ୍ନାଇ ଦେଇ ପାରୁଛି । କାରଣ ବହୁଧା ବିଭକ୍ତ ଏଇ ଦେଶର କେଉଁ ଲୋକମାନଙ୍କୁ ମୁଁ ପ୍ରକୃତରେ ଚିହ୍ନିଛି, ଚିହ୍ନିଲା ପରି ? କେବଳ ମୋରି ଶ୍ରେଣୀର କେତେଜଣ ମୁଷ୍ଟିମେୟ ତଥାକଥିତ ପାଠୁଆମାନଙ୍କୁ ଛାଡ଼ିଦେଇ ? ତଥାପି ମୁଁ ଲେଖୁଛି ଓ ଲେଖି ଚାଲିଥିବି ମୋର ଅନୁଭୂତ ସତ୍ୟର କାହାଣୀ । ଏଇ ବିଚ୍ଛିନ୍ନତାବୋଧକୁ ମର୍ମେ ମର୍ମେ ଅନୁଭବ କରି, ହେଲେ ତା'କୁଇ କ୍ରମଶଃ ପାରି ହୋଇ ପାରୁଛି ବୋଲି ମନେ କରି, ମୋ

ସାହିତ୍ୟ ସାହାଯ୍ୟରେ । ''ଯୁକ୍ତ କରୋ ହେ ସବାର ସଙ୍ଗେ, ମୁକ୍ତ କରୋ ଏ ବଂଧ'' କବିଗୁରୁଙ୍କ ଏଇ ବ୍ୟାକୁଳ ପ୍ରାର୍ଥନାକୁ ସ୍ମରଣ କରି । ମଂଚରୁ ଓହ୍ଲାଇ ଆସିଲା ପରେ ସେମାନେ ଘେରିଗଲେ ମୋତେ, ମୁକ୍ତାଂଗନର ବିରାଟ ଜନତା । ଏବଂ ହାତ ବଢ଼େଇଲେ ମୋ ଆଡ଼କୁ କରମର୍ଦ୍ଦନ କରିବା ଲାଗି, ଉଚ୍ଛ୍ୱସିତ ପ୍ରଶଂସା ସହ । ମଧ୍ୟ ଛଡ଼ାଛଡ଼ି ହେଲେ ମୋ ହାତରୁ ସେଇ ଲେଖାଟିକୁ ନେବା ପାଇଁ । ଶେଷକୁ University of Western Australiaର ଜଣେ ଛାତ୍ରୀ ତାକୁ ହାସଲ କରି ନେଇ ପାରିଲା ମୋଠୁଁ । ଏବଂ ତାହା ତାଙ୍କ ବିଶ୍ୱବିଦ୍ୟାଳୟର ମୁଖପତ୍ର "Westerley"ରେ ପ୍ରଥମେ ପ୍ରକାଶିତ ହୋଇଥିଲା । ମଧ୍ୟ ଉଲ୍ଲେଖଯୋଗ୍ୟ ଯେ ଅଷ୍ଟ୍ରେଲିଆରୁ ଫେରି ଆସିଲା ପରେ ମୋତେ ଖଣ୍ଡେ ଚିଠି ମିଳିଲା, ମୋ ଦିଲ୍ଲୀ ଠିକଣାରେ ଆଡ଼ିଲେଡ୍ ସମାରୋହର ଅଧ୍ୟକ୍ଷ Andrew Taylorଙ୍କଠାରୁ ହାତଲେଖା ଚିଠି । ସେଥିର ପହିଲି ଧାଡ଼ି କେତୋଟି ଏହି ପ୍ରକାର :

"Just a note to thank you for your wonderful contribution to the Writers' Week. I can asure you that the paper you gave was one of the most appreciated and talked-about parts of the whole week, and I certainly appreciate the thoughtfulness and sense of commitment that you put into your talk ..."

(ପଦେ ଲେଖୁଛି 'ଲେଖକ ସପ୍ତାହ'କୁ ଆପଣଙ୍କର ଅତି ଚମତ୍‌କାର ଅବଦାନ ପାଇଁ । ବିଶ୍ୱାସ କରନ୍ତୁ, ଆପଣଙ୍କ ଲେଖାଟି ସମସ୍ତ ସପ୍ତାହର କାର୍ଯ୍ୟକ୍ରମ ଭିତରେ ଗୋଟିଏ ବିଶିଷ୍ଟ ବହୁଚର୍ଚ୍ଚିତ ଏବଂ ଉଚ୍ଚ ପ୍ରଶଂସିତ ଆଇଟେମ୍ ଥିଲା । ଯେଉଁ ପ୍ରକାର ନିଷ୍ଠା ଏବଂ ଚିନ୍ତାଶୀଳତା ପ୍ରକାଶ ପାଇଛି ଆପଣଙ୍କ ଭାଷଣରେ ତାହା ମୋତେ ପ୍ରକୃତରେ ମୁଗ୍ଧ କରିଛି...)

ବିଭିନ୍ନ ଦେଶରୁ ଆସିଥିବା ଅନେକ ବିଶିଷ୍ଟ ଲେଖକ-ସାହିତ୍ୟିକମାନଙ୍କ ସହିତ ମିଳିତ ହେବା ସୁଯୋଗକୁ ଏକ ସୌଭାଗ୍ୟ ବୋଲି କହିବାକୁ ହେବ, ଏଥିରେ ସନ୍ଦେହ ନାହିଁ । ଭାରତରୁ ଆଉ ଜଣେ ଆସିଥିଲେ, ପ୍ରଫେସର୍ ପି.ଲାଲ୍, କଲିକତା ବିଶ୍ୱବିଦ୍ୟାଳୟ ତରଫରୁ । ତାଙ୍କ ସହିତ ପରିଚିତ ହେବା ଛଡ଼ା ଜଣେ ବିଶିଷ୍ଟ ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ଲେଖକଙ୍କର ସାହଚର୍ଯ୍ୟ ମୋତେ ବିଶେଷ ଭଲ ଲାଗିଥିଲା । ସେ ହେଉଛନ୍ତି ଆଫ୍ରିକାର ନାଇଜିରିଆ ଦେଶରୁ ଆସିଥିବା ଚିନୁଆ ଆଚେବେ । ମୋତେ ମୁଗ୍ଧ କରିଥିଲା ତାଙ୍କର ଟାଣୁଆ ଆଲିଙ୍ଗନ, ସିଧାସଳଖ କଥା କହିବାର ଭଙ୍ଗୀ, ସେଇଠୁଁ ହାବୁକାଏ ଖୋଲା ହସ । କହିଲେ - ''କଳାକୁଚୁକୁଚୁ ନିବିଡ଼ ରହସ୍ୟ ହେଉଛି ଆମ ଜୀବନାନୁଭୂତିର ସାରକଥା, କେଉଁ ଫ୍ୟାଣ୍ଟାସି ନୁହେଁ, ତା'କଣ ବୁଝିବେ ଆମର ପାଶ୍ଚାତ୍ୟ ଭାଇମାନେ ? କିନ୍ତୁ ସେଇ ରହସ୍ୟ ଯୋଗୁଁ ଆମ ଦିଅଁ, ଆମ ଭୂତ, ଆମ ପ୍ରେମ, ଆମ ହିଂସା ଇତ୍ୟାଦି, କେତେ ଓଜନିଆ କହୁନାହାନ୍ତି ? ହୋ-ହୋ-

ହୋ ।'' ମୁଁ ତାଙ୍କ ସାଙ୍ଗରେ ତର୍କ କରିବାକୁ ଚାହିଁଲି ନାହିଁ । ତାଙ୍କର ସ୍ପଷ୍ଟବାଦିତା ଏବଂ ଆତ୍ମବିଶ୍ୱାସ ହିଁ ମୋତେ ଚମତ୍କୃତ କରିଥିଲା । ଯଦିଓ ତାହା ସଭ୍ୟଜଗତର ଔପଚାରିକ ଶାଳୀନତାଠାରୁ ଭିନ୍ନ ବୋଲି ମନେ ହେଉଥିଲା ।

କିନ୍ତୁ ଏଇ ଔପଚାରିକ ଶାଳୀନତା ମୋତେ କଷ୍ଟ ଦେଲା ଯେତେବେଳେ ଜଣେ ବିଦେଶୀ ଏବଂ ଏଇ ସମ୍ମେଳନୀକୁ ବହୁବାର ଆସିଥିବା ଲେଖକ ମୋତେ ସ୍ୱାଗତ ଜଣାଇ କହିଲେ - ''ୱେଲ୍‌କମ୍ ! ଯାହାହେଉ ଏଇ ପ୍ରଥମ ଥର ପାଇଁ ଇଣ୍ଡିଆର ଜଣେ ଭର୍ଣ୍ଣାକୁଲାର୍ ଲେଖକ ଆସିଛନ୍ତି ତାର ପ୍ରତିନିଧିତ୍ୱ କରିବା ଲାଗି । ଗୁଡ୍ ।'' ତାର କାରଣ ହେଉଛି ଏଇ ଯେ ସଦସ୍ୟମାନଙ୍କ ପାଖରେ ପହୁଞ୍ଚିଥିବା ମୋର ପରିଚୟ ପତ୍ରରେ ଲେଖାଥିଲା ଯେ ମୁଖ୍ୟତଃ ମୁଁ ଓଡ଼ିଆ ଭାଷାରେ ଲେଖିଛି ମୋର ଗପ କବିତାର ସାହିତ୍ୟ, ହେଲେ ଏଠିକି ଯେଉଁମାନେ ମୋ ପୂର୍ବରୁ ଆସିଛନ୍ତି ଭାରତର ପ୍ରତିନିଧିତ୍ୱ କରିବା ଲାଗି, ସେମାନେ ରାଜଭାଷା ଇଂରେଜିରେ ଲେଖିଛନ୍ତି ତାଙ୍କ ସାହିତ୍ୟ । ମୁଁ ତାଙ୍କ ମଂତବ୍ୟର ଦୃଢ଼ ପ୍ରତିବାଦ କରି କହିଥିଲି ଯେ ଓଡ଼ିଆ ଏକ ସମୃଦ୍ଧ ଏବଂ ପୁରାତନ ଭାଷା ଏବଂ ସଂବିଧାନରେ ଲିପିବଦ୍ଧ ଚଉଦଟି ସ୍ୱୀକୃତ ଭାରତୀୟ ଭାଷା ଭିତରୁ ଗୋଟିଏ, ତେଣୁ ତାକୁ ଭର୍ଣ୍ଣାକୁଲାର୍ ବୋଲି କହିବାର କୌଣସି ଅର୍ଥ ନାହିଁ । ସେଇଠୁଁ ସେ କ୍ଷମା ମାଗିଲା ପରି କହିଥିଲେ, ଯେ ସେ ସେଭଳି ଭାବରେ କଥାଟାକୁ କହିନାହାନ୍ତି । ଏବଂ କୌଣସିମତେ ଆମେ ହସହସ ହୋଇ ଭାଇ-ଭାଇ ଭାବ ଦେଖାଇଲୁ ପରସ୍ପର ପ୍ରତି । କିନ୍ତୁ ତାଙ୍କର ସେଇ ମହାନୁଭବ ବକ୍ରୋକ୍ତି ଆଜିଯାଏଁ ବାଧୁଛି ମୋତେ, ଜଣେ ଭାରତୀୟ ଲେଖକ ହିସାବରେ । ଯେହେତୁ ଆଜି ମଧ୍ୟ ମୁଁ ଦେଖୁଛି, ସେଇ ଘଟଣାର କୋଡ଼ିଏ ଏକୋଇଶ ବର୍ଷ ପରେ, ଯେ ସେହିପ୍ରକାର ଔପନିବେଶିକ ମନୋଭାବ ତଥାପି ରହିଛି ଅନେକଙ୍କ ମନରେ । ବିଦେଶୀଙ୍କ କଥା ଛାଡ଼ିଦିଅ, ନିଜକୁ ଭାରତୀୟ କିମ୍ୱା ଭାରତ ଭିତ୍ତିକ ଲେଖକ ବୋଲାଉଥିବା ଏବଂ ଆନ୍ତର୍ଜାତିକ ଖ୍ୟାତି ଅର୍ଜନ କରିଥିବା ସଲ୍‌ମାନ୍ ରଶଦି, ଖୁଶ୍‌ୱନ୍ତ ସିଂ ଓଗେର କଣ ସେଇଭଳି ମନ୍ତବ୍ୟ ଝାଡ଼ିଦେଇ ନାହାନ୍ତି ଏବେ ? ଯେ ଉତ୍କୃଷ୍ଟ ଭାରତୀୟ ସାହିତ୍ୟ, ବିଶେଷତଃ ଗଦ୍ୟ ସାହିତ୍ୟ ଇଂରାଜୀ ଭାଷାରେ ହିଁ ଲେଖା ହୋଇଛି ସ୍ୱାଧିନତା ପରେ ? ତେଣୁ ଭାବିବାକୁ ପଡ଼େ, ଯେ ଆନ୍ତର୍ଜାତିକ ସ୍ତରରେ ମୁଁ ଜଣେ ଭାରତୀୟ ଲେଖକ ବୋଲାଇଲେ ମଧ୍ୟ 'ସେକେଣ୍ଡ କ୍ଲାସ୍', ସଦରର ମଫସଲ, ଯେହେତୁ ମୁଁ ଓଡ଼ିଆରେ ଲେଖେ । ଏଣେ ମନକୁ ଆସୁଛି, ସାହିତ୍ୟ ଏକାଡ଼େମୀ ପୁରସ୍କାର ହାତକୁ ଆଣିବାର ସେଇ ଦିନଟିକୁ ସ୍ମରଣ କରି, ଯେ ମୁଁ ସ୍ୱଭାବତଃ ଚିହ୍ନିନାହିଁ ମୋର ଭାରତୀୟ ସମଲେଖକମାନଙ୍କ ସାହିତ୍ୟକୁ, ଯଦି ତାହା ଓଡ଼ିଆ କି ଇଂରେଜି ଭାଷାରେ ଲେଖା ହୋଇ ନଥାଏ । ହେ ଭଗବାନ୍ ! ତାହେଲେ ଓଡ଼ିଆ ଲେଖକ କିଶୋରୀଚରଣକୁ ଯଥାର୍ଥରେ ଜଣେ ଭାରତୀୟ ଲେଖକ ବୋଲି କୁହାଯିବ କେମିତି ?

କିନ୍ତୁ ଏଇ ଆବ୍‌ସର୍ଡ୍‌, ହେଲେ ଦୁଃଖଦ ବାସ୍ତବତାର ଅନୁଭବ କଣ କେବଳ ମାତ୍ର ମୋରି କପାଳରେ ଅଛି, ଯେହେତୁ ଓଡ଼ିଆ ଲେଖକଟିଏ ହୋଇ ମଧ୍ୟ ମୁଁ ପ୍ରାୟ ଜୀବନଟାଯାକ ଓଡ଼ିଶାର ବାହାରେ ରହିଛି, ତେଣୁ ମୋର ଅନୁଭୂତି ଭିନ୍ନ । ନା । ମୁଁ କହିବି ଯେ ପ୍ରତ୍ୟେକ ସ୍ୱାଭିମାନୀ ଭାରତୀୟ ଭାଷା (ଭର୍ଣ୍ଣାକୁଲାର୍‌)ର ଲେଖକ ମୋ ଦୁଃଖର ସାଥୀ, ସେ ସେବିଷୟରେ ସଚେତନ ହେଉ ବା ନ ହେଉ । କିନ୍ତୁ ସ୍ୱାଧିନତାକୁ ଆସି ୫୬ ବର୍ଷ ହେଲାଣି, ଆମେ କଣ ଭଲା କରିଛୁ ସେଇ ଦୁଃଖକୁ ଘୁଂଚେଇବା ଦିଗରେ ? ଆମେ, ଅର୍ଥାତ୍‌ ଯେତେକ ଲେଖକ, ସାହିତ୍ୟିକ, ସାହିତ୍ୟ ଅନୁଷ୍ଠାନ, ତଥା ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ସଂସ୍କୃତି ବିଭାଗ । ଏ ବିଷୟରେ ମୁଁ ଅନେକ କିଛି କହିଛି ବିଭିନ୍ନ କ୍ଷେତ୍ରରେ, 'ମୁଁ କଣ ଭାରତୀୟ ଲେଖକ ନୁହେଁ ?' ଶୀର୍ଷକ ପ୍ରବଂଧଟିଏ ମଧ୍ୟ ପ୍ରକାଶ କରିଛି, ତେଣୁ ତାକୁ ଦୋହରେଇ ଲାଭ ନାହିଁ । ଖାଲି ଏତିକି କହି ରଖେ ମୋ ଆତ୍ମଜୀବନର ପରିପ୍ରେକ୍ଷୀରେ ଯେ ମୁଁ ଅବଶ୍ୟ ଜଣେ ଭାରତୀୟ ଲେଖକ, ଯଥାର୍ଥରେ ଭାରତୀୟ ଲେଖକ, ବୋଲି ନିଜକୁ ଜଣାଇବାକୁ ଚାହେଁ । କିନ୍ତୁ ସେଇ ସ୍ୱୀକୃତି, ଅବା ସେଥିର ପ୍ରତିଶ୍ରୁତି, ତଥାପି ମୋତେ ମିଳିବାକୁ ନାହିଁ ମୋ ପରିପାର୍ଶ୍ୱରୁ, ମୋ ସମାଜରୁ ତଥା ମୋ ଦେଶରୁ- ବିଦେଶ କଥା ଛାଡ଼ । ଏହାହିଁ ଦୁଃଖ ।

ଲେଖକ ସପ୍ତାହରେ ମୋର ଭୂମିକାକୁ ନେଇ ଗୋଟିଏ କୌତୁକପୂର୍ଣ୍ଣ ଲଘୁକଥାଟିଏ ମଧ୍ୟ କହିବାର ଅଛି । ଆଡ଼ିଲେଡ଼ରୁ ପ୍ରକାଶିତ ଦୈନିକ ସଂବାଦପତ୍ର "The Advertiser" ତରଫରୁ ଜଣେ ପତ୍ରକାର ଆସିଥିଲେ ଆମ ହୋଟେଲ୍‌କୁ, ମୋ ସହିତ ଦେଖା କରିବା ଲାଗି । ଏବଂ ମୋ ଫଟୋ ସହ ସେଇ ସାକ୍ଷାତ୍‌କାରର ସଂକ୍ଷିପ୍ତ ବିବରଣୀ ପ୍ରକାଶିତ ହୋଇଥିଲା ତାଙ୍କ ଖବରକାଗଜରେ ତା'ପରଦିନ । ତାର ବଡ଼ହରଫରେ ଛପା ହୋଇଥିବା ଶିରୋନାମା ଥିଲା "He audits Experiences", ଅର୍ଥାତ୍‌ ସେ ଅନୁଭୂତିଗୁଡ଼ିକର ସମୀକ୍ଷା କରନ୍ତି । ସେଇଠୁଁ କଥାଟାକୁ ବୁଝେଇଲା ପରି କୁହା ହୋଇଥିଲା - କିନ୍ତୁ କରିବେନି କେମିତି ? ଭାରତ ସରକାରଙ୍କ ରାଜସ୍ୱର ସମୀକ୍ଷା କରିବା ତାଙ୍କ ଧନ୍ଦା ପରା ? ସେଇଠୁଁ ସେ ଉଭୟ ଧରଣର ସମୀକ୍ଷକଠାରୁ ଆଶା କରାଯାଉଥିବା ସଚ୍ଚୋଟପଣିଆ ବିଷୟରେ ଦି'ପଦ କହି, ଗୋଟିଏ ନିଜସ୍ୱ ମଂତବ୍ୟ ଛାଡ଼ିଦେଇଥିଲେ ଯେ ଭଦ୍ରଲୋକଙ୍କର ବେଶଭୂଷାରୁ କିନ୍ତୁ ମନେ ହେବ ଯେ ସେ ଲେଖକରୁ ବଳି ଅଡ଼ିଟର୍‌ଟିଏ । କାହିଁକି ଏମିତି ଲେଖିଲେ ବୋଲି ମୁଁ ମୁଣ୍ଡ ଖେଳେଇଲି । ଶେଷକୁ ମନେ ହେଲା ଯେ ବାହାରେ ମୋ ପରି ପ୍ୟାଣ୍ଟସାର୍ଟ ପିନ୍ଧିଥିଲେ ମଧ୍ୟ ସାହିତ୍ୟ ସଭାକୁ ଚୂଡ଼ିଦାର ପାଇଜାମା, ଲମ୍ବାକୁର୍ତ୍ତା ଓ କାନ୍ଧରେ ଜରିଧଡ଼ି ଚାଦରଟିଏ ଝୁଲେଇ ଆସୁଥିବା ଅନ୍ୟତମ ଭାରତୀୟ ଲେଖକ ପ୍ରଫେସର ପି. ଲାଲ୍‌ଙ୍କ ତୁଳନାରେ ମୋର ବେଶଭୂଷା ସର୍ବସାଧାରଣରେ ନୀରସ ଦିଶୁ ନ ଥିବ କେମିତି ?

ସାଂସ୍କୃତିକ ଆଦାନପ୍ରଦାନ କାର୍ଯ୍ୟକ୍ରମରେ ମୋର ଭୂମିକା ପୂର୍ବରୁ ନିର୍ଦ୍ଧାରିତ ହୋଇ ରହିଥିଲା ଅଷ୍ଟ୍ରେଲିଆ ସରକାରଙ୍କ ସାଂସ୍କୃତିକ ବିଭାଗ ଦ୍ୱାରା । ଆଡ଼ିଲେଡ୍‌ ଛଡ଼ା ମେଲ୍‌ବୋର୍ଣ୍ଣ

ସିଡ୍‌ନି ଓ କ୍ୟାନ୍‌ବେରାରେ ବିଭିନ୍ନ ଲେଖକ ସାହିତ୍ୟିକ ତଥା ସାହିତ୍ୟ ଅନୁଷ୍ଠାନ ଓ ବିଶ୍ୱବିଦ୍ୟାଳୟର ସାହିତ୍ୟ ବିଭାଗର କର୍ତ୍ତୃପକ୍ଷଙ୍କ ସହିତ ମିଳିତ ହେବାର କ୍ୟାଲେଣ୍ଡର୍ । ଆଳାପ ଆଲୋଚନା ମୋଟାମୋଟି ସନ୍ତୋଷଜନକ ହୋଇଥିଲା, ଯଦିଓ ମୁଁ ପୁଣି ଦୁଃଖର ସହିତ ଲକ୍ଷ୍ୟ କଲି ଯେ ରବୀନ୍ଦ୍ରନାଥଙ୍କ ପରେ ସେମାନେ ଭାରତୀୟ ସାହିତ୍ୟକୁ ଜାଣନ୍ତି ନାହିଁ ବିଶେଷ, କାଁ ଭାଁ ମୁଲ୍‌କ୍ ରାଜ ଆନନ୍ଦ ଓ ଆର୍.କେ. ନାରାୟଣ ଇତ୍ୟାଦିଙ୍କ ଇଂରେଜିରେ ଲେଖା ସାହିତ୍ୟ ଛଡ଼ା । ଯାହାହେଉ ମୁଁ ଏଠି କହିବାକୁ ଚାହେଁ ଏଇ ସାହିତ୍ୟଚର୍ଚ୍ଚାଜନିତ ଗୋଟିଏ ଆମୋଦଜନକ ଉପଭୋଗର ଅନୁଭୂତି ବିଷୟରେ ।

ପ୍ରାୟ ପ୍ରତ୍ୟେକ ଆସରରେ ଆମ ପାଖରେ ଆସି ପହୁଞ୍ଚିଯାଉଥାଏ ସରୁ ସରୁ ହୋଇ କଟା ହୋଇଥିବା 'ଚିଜ୍' ଟୁକୁଡ଼ାର ସଂଭାର ଏବଂ ୱାଇନ୍ ଗ୍ଲାସ୍‌ରେ ଢ଼ଳ ଢ଼ଳ ହେଉଥିବା ପାନୀୟ । ମନେ ରଖନ୍ତୁ, ଉଗ୍ର ଏବଂ ଉତ୍ତେଜକ ହୁଇସ୍କି ଆଦି ନୁହେଁ । ୱାଇନ୍, ଅଂଗୁରରସର ଶେଷକଥା । କାବ୍ୟ କବିତା ଉପଯୋଗୀ । ବିଶେଷତଃ ଆଡ଼ିଲେଡ୍ ଓ ସିଡ୍‌ନିରେ । ସେହେତୁ ବେଳେ ବେଳେ କଳ୍ପନା କରିବାକୁ ମନ ହୁଏ ଯେ ଆମେ ଯଥାର୍ଥରେ ଓମର ଖୈୟାମ୍‌ଙ୍କ ଦାୟାଦ । ଯେଉଁ ବାଟ ସେ ବତେଇ ଦେଇ ଯାଇଛନ୍ତି ସାହିତ୍ୟରସର ଉପଭୋଗ ପାଇଁ, ଆମେ ତାକୁଇ ଅନୁସରଣ କରୁଛୁ ।

ଆଚ୍ଛା ? ସାହିତ୍ୟକୁ ଅନୁଭୂତ ସତ୍ୟର ପରିପ୍ରକାଶ ବୋଲି ମଣୁଥିବା ମୋର ଲେଖକୀୟ ଅନ୍ତରାତ୍ମା ମୋତେ ଛିଗୁଲେଇବାକୁ ଭୁଲେ ନାହିଁ ସେତେବେଳେ । ହେଲେ ମୋର ଖେଳିବାକୁ ମନ ହୁଏ ତା ସାଙ୍ଗରେ । କହିବାକୁ ଇଚ୍ଛା ହୁଏ - ଆରେ ମୁଁ ପରା ଅଷ୍ଟ୍ରେଲିଆରେ ଅଛି ଏଇକ୍ଷଣି ? ଯେ ଦେଶ ଯାଇ ସେ ଫଳ ଖାଇ । ଏମାନେ ଯଦି ଇଂଦ୍ରିୟଗତ ଉପଭୋଗକୁ ସାହିତ୍ୟଚର୍ଚ୍ଚା ସାଙ୍ଗରେ ମିଶେଇ ଦେଇ ପାରୁଛନ୍ତି ଏତେ ଚମତ୍କାର ଭାବରେ, ଏବଂ ଚର୍ଚ୍ଚା ତିଳେ ହେଲେ ବ୍ୟାହତ ହେଉ ନାହିଁ ସେଥିଯୋଗୁଁ, ଅତିଥି ହିସାବରେ ମୋର ବି କଣ ଉଚିତ ନୁହେଁ ସେଇ ଅନୁଭବକୁ ନିଜର କରି ନେବା ?

ପ୍ରକୃତରେ ବେଳେବେଳେ ରାଗ ଆସେ ଇତିହାସବିଧାତା ଉପରେ । କାୟାକଳେବର ଦୃଷ୍ଟିରୁ ଇଏ ପ୍ରକୃତରେ ମହାଦେଶଟିଏ । ହେଲେ ଲୋକସଂଖ୍ୟା ପ୍ରାୟ ଓଡ଼ିଶା ସାଙ୍ଗରେ ସମାନ । ଏବଂ ଅଧିକାଂଶ ଲୋକ ଠୁଳ ହୋଇଛନ୍ତି ତାର ଦକ୍ଷିଣ ଓ ଦକ୍ଷିଣପୂର୍ବ ଉପକୂଳରେ, ଯେଉଁଠି ଭୂମଧ୍ୟସାଗରୀୟ ଜଳବାୟୁ ତାଙ୍କୁ ଅନୁମତି ଦିଏ ତାଙ୍କ ଘର କାନ୍ଥରେ ବି ସତ ଅଂଗୁର ଲତାଟିଏ ମଡ଼େଇବା ପାଇଁ । ଇଏ ମୋର ଗୋଟିଏ ଆଖିଦେଖା ଦୃଶ୍ୟ, ଯାହା ମୋତେ ଅପ୍ରତିଭ କରି ଦେଇଥିଲା । ଯେତେବେଳେ ମୁଁ ଆଡ଼ିଲେଡ୍‌ରେ ଜଣେ ଅଷ୍ଟ୍ରେଲିୟାନ୍ ସାହିତ୍ୟପ୍ରେମୀଙ୍କ ଘରକୁ ଯାଇଥିଲି ଡିନର୍ ଖାଇବା ପାଇଁ ଏବଂ କାନ୍ଥଲଗା ଅଂଗୁର କୋଳିଟିଏ ଚିପିବାକୁ ବସିଥିଲି, ତାକୁ ପ୍ଲାଷ୍ଟିକ୍ ବୋଲି ଭାବି । ଆଉ ଟି.ଭି.ରେ ବାରଂବାର କୁହାଯାଏ

ତମକୁ, ତମ ଉପଭୋଗପ୍ରବଣତାକୁ ଆୟତ୍ତରେ ରଖିବା ପାଇଁ, ଯେମିତିକି ଉତ୍ପାଦନର କିଛି ଅଂଶ ବାହାରକୁ ରପ୍ତାନି କରାଯାଇ ପାରିବ । ଖାଲି ବ୍ୟବସାୟର ଲାଭ ପାଇଁ ନୁହେଁ, ମଧ୍ୟ ପୃଥିବୀର ଦରିଦ୍ରମାନଙ୍କୁ ଅଳ୍ପବହୁତ ସାହାଯ୍ୟ କରିବା ପାଇଁ । ଇସ୍ ! ଯାକୁ ମହାନୁଭବତା କହିବ, ନା ଅତିପ୍ରାଚୁର୍ଯ୍ୟର ବଡ଼େଇ ? କିନ୍ତୁ କାହିଁକି ଏଇ ପ୍ରାଚୁର୍ଯ୍ୟ ଭୋଗ କରୁଥିବେ ଏମାନେ ଏବଂ ଯାଙ୍କ ସାହିତ୍ୟ ବି ତାଳ ଦେଉଥିବ ତା ସାଙ୍ଗରେ, ଆଉ ଆମେ ସେଠି ଆମ ଅନୁଭୂତ ସତ୍ୟ ଅର୍ଥାତ୍ ଦୁଃଖଦୈନ୍ୟର ସାହିତ୍ୟ ଲେଖୁଥିବୁ ? ହେଲେ ଅବିଳମ୍ବେ ବୁଝିବାକୁ ପଡ଼େ ଯେ ଇତିହାସବିଧାତାକୁ ଦୋଷ ଦେଇ ଲାଭ ନାହିଁ । ନହି ସୁପ୍ତସ୍ୟ ସିଂହସ୍ୟ ପ୍ରବିଶନ୍ତି ମୁଖେ ମୃଗାଃ । ଆମେ ସିଂହମାନେ ଶୋଇ ରହିଥିଲୁ, ଯେତେବେଳେ ଏମାନଙ୍କ ଦୁର୍ଦ୍ଧର୍ଷ ଓ ଦୁଃସାହସୀ ପିତାମହମାନେ ନୂତନ ପୃଥିବୀର ଏଇ ଦେଶମାନଙ୍କୁ, କ୍ୟାନେଡ଼ା, ଅଷ୍ଟ୍ରେଲିଆ, ଯୁକ୍ତରାଷ୍ଟ୍ର ଆଦି, ଦଖଲ କରି ନେଇ ପାରିଥିଲେ । ସେହେତୁ ତାଙ୍କ ଅଣନାତି ପଣନାତିମାନେ ଆଜି ଏହିପ୍ରକାର ଉପଭୋଗ କରିବେ ତାଙ୍କ ସାହିତ୍ୟକୁ, ରାଶି ରାଶି ଚିକ୍ ଓ ସୁରା ସହକାରେ, ଏଥିରେ ରାଗିବାର କି ଆଶ୍ଚର୍ଯ୍ୟ ହେବାର କଣ ଅଛି ? ତାଛଡ଼ା ଇତିହାସ ଯାହା କରିଥାଉ ନ କରିଥାଉ ଆଜିକା ଅଷ୍ଟ୍ରେଲିଆବାସୀର ଖୋଲୁଆଡ଼ପଣ, ସ୍ୱତଃସ୍ଫୂର୍ତ୍ତ ବଂଧୁଭାବ ଏବଂ ସରଳତା କଣ ଛୁଇଁବାକୁ ନାହିଁ ମୋର ବୁଦ୍ଧିବାଦୀ ଭାରତୀୟ ମନକୁ ?

ହେଲେ ତାଙ୍କରି ଭିତରୁ ଜଣେ ଅଧେ ବାମପଂଥୀ ଏବଂ ଆଦର୍ଶବାଦୀ ତରୁଣମାନଙ୍କୁ ମଧ୍ୟ ରାଗିବାର ଦେଖିଛି ତାଙ୍କ ଇତିହାସକୁ ନେଇ । କେଉଁ ସଭାସମିତିରେ ନୁହେଁ, ମୋ ହୋଟେଲ୍ ଲବିରେ, ମୋ ସାଙ୍ଗରେ ଆଳାପ କଲାବେଳେ କୁହନ୍ତି ''ଜାଣିଛନ୍ତି ମିଷ୍ଟର ଦାସ ? ଆମେରିକାରେ ସିନା ସେଠିକାର ଇଣ୍ଡିଆନ୍‌ମାନଙ୍କୁ ଠେଲି ଦିଆଗଲା ଭିତରକୁ, ଆମେ ପରା ଏଠିକାର ହତଭାଗାମାନଙ୍କୁ ଗୁଳି କରି ମାରି ଦେଲୁ ଗୋଟି ଗୋଟି କରି, ଠିକଣା ଜାଗାସବୁ ମାଡ଼ି ବସିବା ପାଇଁ ?'' ମୁଁ ହସିଦିଏ । ଆଉ କୁହେ ମନେ ମନେ - କଣ ମିଳିବ ଏ ବିଳମ୍ବିତ ବିବେକଦଂଶନରୁ । ବରଂ ମୋତେ ଶୁଣାଅ ତମର ଆଉ ଗୋଟିଏ କବିତା, ଆଉ ଶୁଣ ମୁଁ କଣ ଲେଖିଛି .... ।

ଆଳାପ ଆଲୋଚନାର କାର୍ଯ୍ୟକ୍ରମ ଭିତରେ କେତୋଟି କଲେଜ୍‌ର କ୍ୟାଂପସ୍‌ରେ ଛାତ୍ରଛାତ୍ରୀମାନଙ୍କୁ ଭାରତୀୟ ସାହିତ୍ୟ ବିଷୟରେ ଦି'ପଦ କହିବାର ବ୍ୟବସ୍ଥା ମଧ୍ୟ କରାଯାଇଥିଲା ମୋ ପାଇଁ । ଏଇଠି ଗୋଟିଏ ବ୍ୟୁରୋକ୍ରାଟ୍-ସୁଲଭ ଆଖିମିଟିକା ମନେ ପଡୁଛି । ଏକାଧିକ କ୍ୟାଂପସ୍‌ରେ ଆଖିଦୁରୁଶିଆ ଗହଳି ନ ଥିଲା ମୋର ସାହିତ୍ୟକଥନ ଶୁଣିବା ଲାଗି । ଗୋଟିଏ ଜାଗାରେ ଶ୍ରୋତାଙ୍କ ସଂଖ୍ୟା ମୁଷ୍ଟିମେୟ ବୋଲି କହିବାକୁ ହେବ । ହେଲେ ଏପରି ଭାବରେ ଫଟୋ ନିଆଗଲା ଯେ ମନେହେବ ଅନେକ ଲୋକ ଅଛନ୍ତି । କିନ୍ତୁ ମୁଁ ଯେତେବେଳେ ମୋ ସରକାରୀ ଗାଇଡ୍‌କୁ କହିଲି ଯେ ଏଇ କ୍ୟାଂପସ୍‌ର କାର୍ଯ୍ୟକ୍ରମଗୁଡ଼ିକୁ

ବୋଧହୁଏ ବାଦ୍ ଦେଲେ ହେବ, ସେ ଚମକି ଉଠିଲା ପରି ହେଲେ । ଏବଂ କହିଲେ - ''ଆ ହା ହା, ତା କେମିତି ହେବ ? କୋଉ ଆଇଟେମ୍‌କୁ ଛାଡ଼ି ହେବ ନାହିଁ । ଏବଂ ଆର୍ଥିକ ବର୍ଷର ଶେଷ ତାରିଖ ମାର୍ଚ୍ଚ ୩୧ ତାରିଖ ଭିତରେ ସବୁ କାମ ଯଥାବିଧି ସଂପନ୍ନ ହୋଇଛି ବୋଲି ରିପୋର୍ଟ ଦେବାକୁ ହେବ । ନହେଲେ ଆମ ଟଙ୍କା ବୁଡ଼ିଯିବ ଯେ ! ବୁଝୁନାହାନ୍ତି ?'' ବୁଝିଲି । କେମିତି ବୁଝିବି ନାହିଁ ? ମାର୍ଚ୍ଚ ମାସରେ ଯେଉଁ ସରକାରୀ ଖର୍ଚ୍ଚର ସୁଅ ବଢ଼ିଚାଲେ ଆମ ଦେଶରେ, ସିଏ ପରା "Rush of expenditure during March" (ମାର୍ଚ୍ଚ ମାସରେ ସରକାରୀ ଖର୍ଚ୍ଚର ସୁଅ) ନାମକ ଗୋଟିଏ ଧରାବଂଧା ଆଇଟେମ୍ ଆମର ବାର୍ଷିକ ଅଡ଼ିଟ୍ ରିପୋର୍ଟରେ ?

ମେଲବୋର୍ଣ୍ଣ ଅଷ୍ଟ୍ରେଲିଆର ବ୍ୟବସାୟାତ୍ମକ ରାଜଧାନୀ । ତାର ଉଂଚ ଉଂଚ କୋଠା ଯାନବାହନର ଗହଳି ଆଦି ନିଉୟର୍କ ତଥା ବମ୍ବେକୁ ମନେ ପକାଇ ଦିଏ । ସେଠିକାର ରେଡ଼ିଓ ଷ୍ଟେସନ୍‌ରେ ଜଣେ ଭାରତୀୟ ବରିଷ୍ଠ ଅଧିକାରୀଙ୍କ ସହିତ ଭେଟ ହୋଇଥିଲା । ତାଙ୍କରି ସୌଜନ୍ୟରୁ ମୋର ଗୋଟିଏ ଇଂରାଜୀ ଗଳ୍ପ "A Million Birds" ('ଲକ୍ଷବିହଂଗ'ର ଅନୁବାଦ) ଅଷ୍ଟ୍ରେଲିଆ ବ୍ରଡ଼୍‌କାଷ୍ଟିଂଗ୍ କର୍ପୋରେସନ୍ ଦ୍ୱାରା ବେତାର ଯୋଗେ ପ୍ରସାରିତ ହୋଇଥିଲା । କ୍ୟାନ୍‌ବେରା ଛୋଟିଆ ସୁନ୍ଦର ସହରଟିଏ । ସେଠିକାର ଅନୁଭୂତି ବିଷୟରେ ବିଶେଷ କିଛି କହିବାର ନାହିଁ । ହେଲେ ପୋତାଶ୍ରୟ ସିଡ୍‌ନି ସହରଟିକୁ ଏକାଧାରରେ ବିପୁଳ ଓ ବିଚିତ୍ରସୁନ୍ଦର ବୋଲି କହିବାକୁ ହେବ । ତାର ଅନ୍ତର୍ବର୍ତ୍ତୀ ସମୁଦ୍ରର ଷ୍ଟିମର ଯୋଗେ ଘୁରିବୁଲିବା ଏକ ବିଶିଷ୍ଟ ନୌବିହାରର ଉପଭୋଗ, କାରଣ ଏଥିରେ ତମେ ମଝିରେ ମଝିରେ ଓହ୍ଲେଇ ଯାଇ କେତେ ଭଳି ପାର୍କ, ସଂଗ୍ରହାଳୟ ଓ ଐତିହାସିକ (ତାଙ୍କ ଇତିହାସ ପ୍ରାଚୀନ ନ ହେଉ ପଛେ) ସ୍ଥଳ ଦେଖି ଆସିପାରିବ । ସେଥି ମଧ୍ୟରୁ ସବୁଠାରୁ ଉଲ୍ଲେଖଯୋଗ୍ୟ ହେଉଛି ସିଡ୍‌ନିର ଅପେରା ହାଉସ୍ । ଖୋଲି ହୋଇ ଆସୁଥିବା ଫୁଲପାଖୁଡ଼ାର ଠାଣିରେ ନିର୍ମିତ ଏଇ ସୌଧଟି ଆଧୁନିକ ସ୍ଥାପତ୍ୟର ଏକ ଅନୁପମ କୃତି, ଏଥିରେ ସନ୍ଦେହ ନାହିଁ । ଏଇ ସହରରେ ମଧ୍ୟ ଯେଉଁ ଯୌନଚିତ୍ରର ବଜାରବିପଣୀ ଦେଖିବାକୁ ପାଇଲି, ବହି ମ୍ୟାଗାଜିନ୍, ଭିଡ଼ିଓ ଦୋକାନ, ସିନେମାଘରଠାରୁ ଆରମ୍ଭ କରି ନାଇଟ୍ କ୍ଲବର ସଜୀବ ଶୋ', ସେଭଳି ନିଃସଂକୋଚ ପ୍ରଦର୍ଶନ ଏବଂ ଗରାଖଙ୍କ ଗହଳି ଆଉ କେଉଁଠି ଥିବ ବୋଲି ମୁଁ ଭାବିପାରିଲି ନାହିଁ । ହେଲେ ଏଇ ସହରରେ ମଧ୍ୟ ISKCONର ଗୋଟିଏ ହରେକୃଷ୍ଣ ମନ୍ଦିର ଅଛି । ତାର ସଂଧାନ ପାଇ ମୁଁ ଯାଇଥିଲି ସେଠିକି । ଏବଂ ସେମାନେ ଯେଉଁ ଗଦ୍‌ଗଦ ଭାବ ଦେଖାଇଲେ ଯେତେବେଳେ ଜାଣିଲେ ଯେ ମୁଁ କେବଳ ଜଣେ ଭାରତୀୟ ନୁହେଁ, ମୁଁ ଜଗନ୍ନାଥଙ୍କ ସ୍ୱଦେଶ ଓଡ଼ିଶାରୁ ଆସିଛି, ସେଥିରେ କିଭଳି ଗର୍ବ ଆସିଥିବ ମୋ ମନରେ, ତା ସହଜେ ଅନୁମେୟ ।

ସରକାରୀ କାର୍ଯ୍ୟକ୍ରମ ଅନୁଯାୟୀ ଏହି ସମସ୍ତ ସହରର ପରିକ୍ରମା କରିବା ଛଡ଼ା ମୁଁ ମଧ୍ୟ ସମୁଦ୍ରକୂଳବର୍ତ୍ତୀ ଆଉ ଗୋଟିଏ ଦର୍ଶନୀୟ ସହରକୁ ଯାଇଥିଲି, ବ୍ୟକ୍ତିଗତ ସ୍ତରରେ,

ଜଣେ ନବଲବ୍ଧ ବଂଧୁଙ୍କ ଅନୁରୋଧ କ୍ରମେ । ତାଙ୍କ ନାଆଁ ପ୍ରଫେସର୍ ଡ୍ୟାଭିଡ୍ ଏଲ୍ ଫ୍ରୋଷ୍ଟ । ୟୁନିଭର୍ସିଟୀ ଅଫ୍ ନିଉକାସଲ୍‌ର୍ ଇଂରେଜି ଡିପାର୍ଟମେଣ୍ଟର ଅନ୍ୟତମ ଅଧ୍ୟାପକ । ସେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାକ୍ତନ କୁଳପତି ପ୍ରଫେସର୍ ଗୌରକୃଷ୍ଣ ଦାସଙ୍କ ସହପାଠୀ ଥିଲେ, ବିଲାତରେ । ତାଙ୍କରି ସୁପାରିଶ କ୍ରମେ ସେ ମୋ ସହିତ ଦେଖା କରିଥିଲେ ସିଡ୍‌ନିରେ । ଏବଂ ମୋତେ ନିଉକାସ୍‌ଲ୍ ସହରକୁ ଡାକିଥିଲେ, ତାଙ୍କ ୟୁନିଭର୍ସିଟୀର ଲେକ୍‌ଚର୍ ହଲ୍‌ରେ ମୋର ଗୋଟିଏ ଲେଖାଏ ଗଳ୍ପ ଓ କବିତା ପଢ଼ିବା ସହ ଭାରତୀୟ ସାହିତ୍ୟ ବିଷୟରେ କିଛି କହିବା ପାଇଁ । ଅନୁଷ୍ଠାନଟି ସବୁଦିଗରୁ ସଫଳ ହୋଇଥିଲା । ଏବଂ ଶ୍ରୋତାମାନଙ୍କ କେତୋଟି ସୁଚିନ୍ତିତ ପ୍ରଶ୍ନର ଉତ୍ତର ଦେବାର ସୁଯୋଗ ପାଇ ମୁଁ ବିଶେଷ ଖୁସି ହୋଇଥିଲି । ମୁଁ ମଧ୍ୟ ପ୍ରଫେସର୍ ଫ୍ରୋଷ୍ଟ ଓ ତାଙ୍କ ଭାରତୀୟ ପତ୍ନୀଙ୍କର ଘରୋଇ ଅତିଥି ହୋଇଥିଲି ଦି'ଦିନ ପାଇଁ ଏବଂ ସେମାନେ ମୋତେ ତାଙ୍କ କାର୍‌ରେ ବସେଇ କେତେ ପାହାଡ଼ପର୍ବତ, ବଣଜଙ୍ଗଲ ଓ ଜଳପ୍ରପାତର ଟୁରିଷ୍ଟ ଉପଯୋଗ୍ୟ ଦୃଶ୍ୟ ଦେଖାଇଥିଲେ । କିନ୍ତୁ ତାଛଡ଼ା ମୁଁ ଗୋଟିଏ ଏକାନ୍ତ ବ୍ୟକ୍ତିଗତ ଏବଂ ମହାର୍ଘ ଅନୁଭବର ଅଧିକାରୀ ହୋଇପାରିଥିଲି ଏଇ ଦୃଶ୍ୟଦେଖାର ଫାଙ୍କରେ । ଫ୍ରୋଷ୍ଟ୍ ଦଂପତିଙ୍କ ବାରଣ ନ ମାନି ମୁଁ ରାସ୍ତାକଡ଼ରେ ଆମ ଆଡ଼କୁ ଅନେଇଥିବା ଗୋଟିଏ କଂଗାରୁ ପାଖକୁ ଯାଇ ତା ଦେହରେ ହାତ ବୁଲେଇବାର ବାହାଦୂରୀ ଦେଖାଇଥିଲି, ସେ ତତ୍‌କ୍ଷଣାତ୍ କୁଦାମାରି ପଳେଇ ଯିବା ପୂର୍ବରୁ । ଘରକୁ ଫେରିଗଲା ପରେ ମୋର ଏଇ ବାହାଦୂରୀ ବଖାଣିବି ବୋଲି ମନେ ରଖିଲି । ଖାଲି ଦୁଃଖ ରହିଗଲା ଯେ କଂଗାରୁର ପେଟମୁଣିରୁ କଂଗାରୁ ଛୁଆଟିଏ ମୁଣ୍ଡ ବାହାର କରି ଅନେଇ ନ ଥିଲା ମୋ ଆଡ଼କୁ ଜୁଳୁଜୁଳୁ ହୋଇ ।

୧୯୮୧ରେ ମୋତେ ମଧ୍ୟ ଆଉ ଗୋଟିଏ ନୂଆ କାମ କରିବାର ସୁଯୋଗ ମିଳିଥିଲା, ସାହିତ୍ୟିକ ହିସାବରେ । ସର୍ବଭାରତୀୟ କ୍ଷେତ୍ରରେ ଗୋଟିଏ ବିଶିଷ୍ଟ ସଂକଳନ ଓ ସଂପାଦନାର ଦାୟିତ୍ୱ । Indian Council of Cultural Relations ତରଫରୁ ଗୋଟିଏ ଆଧୁନିକ ଭାରତୀୟ ଗଳ୍ପ ସଂକଳନ "Modern Indian short stories – Vol. IV" ପ୍ରସ୍ତୁତ କରିବାକୁ ହେବ । ସେଥିରେ ରହିବ ଭାରତର ପୂର୍ବାଂଚଳର କେତୋଟି ଉଲ୍ଲେଖଯୋଗ୍ୟ ଗଳ୍ପର ଇଂରାଜି ଅନୁବାଦ ଏବଂ ସେହି ଅଂଚଳର ଗଦ୍ୟ ସାହିତ୍ୟକୁ ଉତ୍ତମ ରୂପେ ଚିହ୍ନାଇ ପାରୁଥିବା ଗୋଟିଏ ମୁଖବଂଧ । ମୁଁ ଆଗ୍ରହର ସହିତ ଏଇ କାମଟିକୁ ହାତକୁ ନେଇଥିଲି । ଛଅଟି ଲେଖାଏଁ ଓଡ଼ିଆ, ବଂଗଳା ଓ ଆସାମୀୟ ଗଳ୍ପର ଇଂରାଜୀ ଅନୁବାଦକୁ ନେଇ ଅଠରଟି ଗଳ୍ପ ଏଇ ସଂକଳନରେ ରହିଛି, ମୋର ସୁଦୀର୍ଘ ମୁଖବଂଧ ସହ । ଏଇ କାମଟିକୁ ତୁଲେଇବାର କ୍ରମରେ ମୋତେ ଯେଉଁ ସୁଯୋଗ ମିଳିଥିଲା ବଂଗ ଓ ଆସାମୀୟ ଆଧୁନିକ କଥାସାହିତ୍ୟକୁ ଭଲ ଭାବରେ ଜାଣିବା ପାଇଁ ତଥା ସେଠିକାର କେତେଜଣ ବିଶିଷ୍ଟ ଲେଖକ ଲେଖିକା (ମଧ୍ୟ କେତେକ କ୍ଷେତ୍ରରେ ତାଙ୍କ ପରିବାର)ଙ୍କୁ ବ୍ୟକ୍ତିଗତ ଭାବରେ ଚିହ୍ନିବା ପାଇଁ, ତାହା

ମଧ୍ୟ ଥିଲା ଏକ ପ୍ରୀତିକର ଏବଂ ମହାର୍ଘ ଅନୁଭୂତି । ଏହି ପରିପ୍ରେକ୍ଷୀରେ ସ୍ୱର୍ଗୀୟ ମାଣିକ ବନ୍ଦ୍ୟୋପାଧ୍ୟାୟଙ୍କ ପରିବାର ଏବଂ ଆସାମର ସୁଲେଖିକା ଇନ୍ଦିରା ଗୋସ୍ୱାମୀଙ୍କ ସହିତ ଯେଉଁ ବଂଧୁତା ଗଢ଼ି ଉଠିଥିଲା ତାହା ବିଶେଷ ଉଲ୍ଲେଖଯୋଗ୍ୟ ।

ମୋର ସାହିତ୍ୟରଚନା ଯେଉଁ ଗୋଟିଏ ଧିମେଇ ଯାଇଥିବା ସରାଗକୁ ବିଶେଷ ଭାବରେ ଉତ୍ତେଜିତ କରିଥିଲା, ପୁଣି ସେଇ ସରାଗକୁ ଗୋଟାଏ ନୂଆ ବେଶ ପିଂଧେଇ ତାକୁଇ ନେଇ ମାତି ଯାଇଥିଲା ବେଶ୍ କିଛି ଦିନ ଏଇ ଦଶବର୍ଷ ଭିତରେ, ତା ହେଉଛି କବିତା । ତେଜି ଉଠିଥିବା ସଳିତାଟି ହେଲା ମୋ ଓଡ଼ିଆ କବିତା, ଯାହାକି ମୋ ଲେଖକ ଜୀବନର ପହିଲି ପ୍ରେମ ପଂଚମଜର୍ଜଙ୍କ ବିୟୋଗରେ ଲୁହ ଗଡ଼େଇବା ଦିନଠୁଁ । ଏବଂ ତାର ଯେଉଁ ନୂଆ ରଂଗ ରୂପକୁ ଦେଖେଇ ହେଲି ଆଉ ଗୋଟିଏ ଭାଷାର ଶବ୍ଦ ଓ ଧ୍ୱନିକୁ ନେଇ, ତା ହେଲା ଇଂରାଜି କବିତା ।

ପ୍ରଥମେ ମୋର କବିତ୍ୱ ବିଷୟରେ କିଛି କହିବାକୁ ପଡ଼ିବ । ଏତେ ଦିନ ହେଲା ମୋର ପହିଲି ପ୍ରେମରୁ ଦୂରେଇ ଆସି ଦୁନିଆଟା ଉପରେ ଏକ ବ୍ୟାପକ 'ବୌଦ୍ଧିକ' ଜାଲ ବିଛେଇ ସାରିଲା ପରେ, ପୁଣି କାହିଁକି କେଉଁ ଭାବାବେଗ, ଯେଉଁଥିକୁ କାବ୍ୟକବିତା ହିଁ ବିଶେଷ ଭାବରେ ଲୋଡ଼ା ବୋଲି ମନେ ହୁଏ ? ତାର ଉତ୍ତର ସେଇ ପ୍ରଶ୍ନରୁ ହିଁ ମିଳିବ । ଭାବାବେଗ । କିଶୋରୀଚରଣ ନାମକ ମଣିଷଟିଏ ବେଳେବେଳେ ଥକିଯାଏ ଖାଲି ସେମାନଙ୍କ ବିଷୟରେ ଲେଖି । କାରଣ ସେମାନେ ତାର ଯେତେ ଚିହ୍ନା ହୁଅନ୍ତୁ ପଛେ, ସେ ନିଜେ ଆଉ ଜଣେ ଲୋକ । କେଉଁ ସର୍ବଜାଣ ବିଧାତାଙ୍କ ଦୂତ ନୁହେଁ । ଯେ ଖାଲି ତା ଚରିତ୍ରମାନଙ୍କ ପ୍ରେମ-ଅପ୍ରେମ ଅବା ଆତ୍ମଶଠତାକୁ ନେଇ ମୃଦୁମୃଦୁ ହସିବ ଅବା ରାଗିବ, କି ତାଙ୍କ ପ୍ରତି ଦୟା ଦେଖେଇବ । ଯେତେ ଆତ୍ମସମୀକ୍ଷାର ବଡ଼େଇ କଲେ ମଧ୍ୟ ତା'ର ବି କଣ ବେଳେବେଳେ ମନ ହେବ ନାହିଁ ହସିବା ପାଇଁ, କାନ୍ଦିବା ପାଇଁ, ପ୍ରେମ ଅପ୍ରେମର ବିଭିନ୍ନ ହୁଂଦର ଦେଖାଇବା ପାଇଁ, ତା ନିଜର କେଉଁ ଅନୁଭବକୁ ନେଇ ? ଏବଂ ସେଇ ଆଶୁ ପ୍ରତିକ୍ରିୟା ସୁନ୍ଦର ନୁହେଁ ବୋଲି କିଏ କହିଲା ? ନା, ମଝିରେ ମଝିରେ ତାକୁଇ ପ୍ରକାଶ କରିବି, ତାର ଚେନାଏ ଚିରୁଡ଼ାଏକୁ । କେଉଁ ଚରିତ୍ରର ବୁଲାଣିଆ ବାଟ ଦେଇ ନୁହେଁ, ଗୋଟିପଣେ । ପ୍ରକାଶ କରିବି, ନିଜକୁ ଖଲାସ କରିବି । ସେଥିରେ ଦୁଃଖ ଥାଉ କି ଗ୍ଲାନି, ଉଲ୍ଲାସ ଅବା ମହାକ୍ରୋଧ । ହେଲେ ଏଇ ପ୍ରତିକ୍ରିୟାର କାରଣ ଜାଣିବା ଦରକାର ନାହିଁ ତମର, ସବୁବେଳେ । ତା' ମୋର କେଉଁ ଏକାନ୍ତ ଗୋପନ ଅନୁଭବରୁ ଉଦ୍‌ଭୁତ ହୋଇ ପାରିଥାଏ, ଯାହାକୁ ତମେ ବୁଝିପାରିବ ନାହିଁ । ଅବା ଭୁଲ୍ ବୁଝିବ ଏବଂ ମୋର ବଳ ନାହିଁ ତମକୁ ବୁଝେଇବା ଲାଗି । ତଥାପି ସେଇ ପ୍ରତିକ୍ରିୟା, ଭାବାବେଗରେ ଜୁଡୁବୁଡୁ, ସିଏ ତମକୁ ଭଲ ଲାଗିବ ମୋର ବିଶ୍ୱାସ । ଏଇ ହେଲା ମୋ କବିତ୍ୱର ମର୍ମକଥା । ଏବଂ ସହଜେ ତାହା

ଆଧୁନିକ ଓ ବୌଦ୍ଧିକ ବୋଲାଉଥିବା କବିତା ତୁଳନାରେ ଅଧିକ ଲିରିକ୍‌ଧର୍ମୀ ଓ ସୁବୋଧ ବୋଲି କହିଲେ ଭୁଲ୍ ହେବ ନାହିଁ । ଏବଂ ମୋର ଜଣେ ଲେଖକ ବଂଧୁ କହିଲା ପରି, ଅନ୍ତତଃ ମୋର ଗଳ୍ପ ତୁଳନାରେ ଅନେକ ଅଧିକ ସୁବୋଧ ।

କିନ୍ତୁ ପ୍ରଶ୍ନ ଉଠେ ଯେ ହଠାତ୍ ଏଇ ଝୁଂକ ଉଠିଲା କାହିଁକି ମୋର, ଇଂରାଜିରେ କବିତା ଲେଖିବା ପାଇଁ ? ଏବଂ ଆଶ୍ଚର୍ଯ୍ୟର କଥା ନୁହେଁ କି, ଯେ ମୋ ଇଂରାଜି କବିତାର ସଂଖ୍ୟା ଓଡ଼ିଆ ଠାରୁ ବେଶି ? ଅଥଚ ମୌଳିକ ଇଂରାଜି ଗଳ୍ପ ମାତ୍ର ଚାରୋଟି, ଅନେକ ଓଡ଼ିଆ ଗଳ୍ପର ଇଂରାଜି ଅନୁବାଦ ଛଡ଼ା ? ଏହି ପ୍ରଶ୍ନର ଉତ୍ତର ମୋ ପାଖରେ ନାହିଁ । କିନ୍ତୁ, ସତ କଥା ଯେ ସତୁରି ଓ ଅଶୀ ଦଶକରେ ମୁଁ ମାତି ଉଠିଲି ଇଂରାଜିରେ କବିତା ଲେଖିବା ପାଇଁ, ସତେକି ସେଇ ଭାଷା ବେଶି ସୁହାଉଛି ମୋତେ ମୋର ଭାବାବେଗକୁ ପ୍ରକାଶ କରିବା ପାଇଁ । ହେଲେ ଉଲ୍ଲେଖଯୋଗ୍ୟ ଯେ ଏଇ ଉଚ୍ଛଳ ଫେନିଳ ଧାରା ଶୁଖି ଗଲାଣି କ୍ରମଶଃ, ନବେ ଦଶକରୁ । ଆଜିକାଲି ଯେତେବେଳେ କବିତା ଲେଖିବାକୁ ମନ ହୁଏ, ମୁଁ ତାକୁ ଓଡ଼ିଆରେ ଲେଖି ବସେ । ଅନ୍ତତଃ ଗୋଟିଏ ଓଡ଼ିଆ କବିତା ମୁଁ ତ ଲେଖି ଆସିଛି ଅନେକ ଅନେକ ବର୍ଷ ହେଲା, କୁମାରପୂର୍ଣ୍ଣିମାରେ ଜନ୍ମ ହୋଇଥିବା ପରିଣୀତା କୁମକୁ ଭେଟି ଦେବା ପାଇଁ । ଏକାନ୍ତ ବୈକ୍ତିକ ହେଲେ ମଧ୍ୟ ସେଥିରେ ଗଭୀର ଜୀବନଜିଜ୍ଞାସା ରହିଥାଏ ଅନେକ ସମୟରେ । ସେହେତୁ ସେଥିରୁ କେତୋଟିରୁ ମଧ୍ୟ ମୁଁ ଛପାଇଛି ବିଭିନ୍ନ ପତ୍ରପତ୍ରିକାରେ ।

ଯାହାହେଉ ମୁଁ ଗୋଟିକ ପରେ ଗୋଟିଏ ଇଂରାଜି କବିତା ଲେଖି ଚାଲିଲି ଜୀବନର ଏହି ପର୍ଯ୍ୟାୟରେ । ମୋର ପ୍ରଥମ ପ୍ରକାଶଯୋଗ୍ୟ ତିନୋଟି କବିତାର ଗୁଚ୍ଛ ହେଲା, କଲିକତାକୁ ଛାଡ଼ି ଆସିଲା ବେଳକୁ । କଲିକତା ରହଣି ମୋତେ ଅନେକ ଦୁଃଖକଷ୍ଟ ଦେଇଛି ପାରିବାରିକ କ୍ଷେତ୍ରରେ, ମଧ୍ୟ ଅନେକ ଜଂଜାଳ ମୋର କର୍ମକ୍ଷେତ୍ରରେ । ହେଲେ ଏକ ବିଶେଷ ଆତ୍ମୀୟତା ଗଢ଼ି ଉଠିଥିଲା ଏଇ ସହର ସାଙ୍ଗରେ, ଯାହାକୁ ମୁଁ ପ୍ରକାଶ କରିବାକୁ ଚାହିଁଲି, "On leaving Calcutta" " Mercifully", ଏବଂ "Unto the Day" ନାମକ ତିନୋଟି କବିତାରେ । ରଚନାକାଳ ୨୯, ୩୦ ଏବଂ ୩୧ ଅଗଷ୍ଟ ୧୯୭୪ । ସେଇଦିନଠୁଁ ଅନେକ ଇଂରେଜ କବିତା । ସବୁ ସେଇ ନିଜର ତତ୍‌କାଳ ଭାବାବେଗକୁ ନେଇ । କେତେବେଳେ କାନ୍ଦିଛି ତ କେତେବେଳେ ନାଚି ଉଠିଛି, ଅବା କେତେବେଳେ ଲୋଡ଼ିଛି, ମାଗିଛି, ବିକଳ ହୋଇଛି, ରାଗିମାଗି କିଛି ଗୋଟାଏ କରିବି ବୋଲି ନିଶ୍ଚୟ କରିଛି, ମଧ୍ୟ କେତେବେଳେ ମିଛୁଟାରେ ଟେକାଟାକୁ ଜୋତାରେ କିକ୍ କରିଛି, ନିଜର ମନୋଭାବକୁ ଠଉରେଇ ନ ପାରି ବିରକ୍ତ ହେଲା ପରି । ଯଥା ଭୁଟ୍‌ଟୋଙ୍କୁ ଯେଉଁଦିନ ଫାଶି ଦିଆଗଲା, ତାର ପ୍ରତିକ୍ରିୟା ଯେଉଁଭଳି ପଦାଘାତ କରିବାକୁ ଉସ୍‌କେଇ ଥିଲା ମୋତେ, ବର୍ଷା ହେଉଥିଲା ବେଳେ ଗୋଟାଏ ଗଛମୂଳେ ଆଶ୍ରୟ ନେଇଥିବା ସମୟରେ ।

ମୋର ଅନେକ ଇଂରାଜି କବିତା JIWE (Journal of Indian writing in English), Poetry Times, Minimax, Commonwealth Quarterly ଆଦି ପତ୍ରିକାରେ ପ୍ରକାଶିତ ହୋଇଛି ଏବଂ ସାତଗୋଟି ଇଂରାଜି କବିତାସଂକଳନରେ ସ୍ଥାନିତ ହୋଇଛି । ସେଥିମଧ୍ୟରୁ ବିଶେଷ ଉଲ୍ଲେଖଯୋଗ୍ୟ କୋରିଆରୁ ପ୍ରକାଶିତ "World Poetry 1993" ନାମକ ସଂକଳନ । ଏହି ସଂକ୍ରାନ୍ତରେ ମୋର ଇଂରେଜି କବିତାକୁ ଭଲ ପାଇ ତାକୁ ବିଭିନ୍ନ ପତ୍ରପତ୍ରିକା ଓ ସଂକଳନରେ ଯେଉଁମାନେ ମୋତେ ବିଶେଷ ସାହାଯ୍ୟ କରିଛନ୍ତି, ସେମାନଙ୍କୁ ମୁଁ କୃତଜ୍ଞତାର ସହ ସ୍ମରଣ କରୁଛି । ଶ୍ରେଷ୍ଠାଂଶରେ ଜଣେ ତରୁଣ ଅଧ୍ୟାପକ ଏବଂ ସାହିତ୍ୟପ୍ରେମୀ ଦୁର୍ଗାଦାସ ମୁଖୋପାଧ୍ୟାୟ, ରାଜସ୍ଥାନର ଜନୈକ ଅଧ୍ୟାପକ ଇନ୍ଦ୍ରକୁମାର ଶର୍ମା, କବି ଓ ପତ୍ରକାର କେଶବ ମଲିକ୍ ଏବଂ "Commonwealth Quarterly" ପତ୍ରିକାର ସଂପାଦକ ଜି.ଏସ୍. ବଳରାମ ଗୁପ୍ତା । ମୋର ପ୍ରଥମ ଇଂରାଜି କବିତା ସଂକଳନ "Faces in the Dark", ୧୯୭୯ରେ କଲିକତାର United Writers"ଙ୍କ ଦ୍ୱାରା ଏବଂ ପ୍ରଣବ ବନ୍ଦ୍ୟୋପାଧ୍ୟାୟଙ୍କ ସଂପାଦନାରେ ପ୍ରକାଶିତ ହୋଇଛି । ଏବଂ ଏବେ ସେପ୍ଟେମ୍ବର ୨୦୦୩ ମସିହାରେ ମୋର ଦ୍ୱିତୀୟ ଇଂରାଜୀ କବିତା ସଂକଳନ "The evening that never was" ପ୍ରକାଶ ପାଇଛି ।

ଏବଂ ୧୯୮୩ରେ 'ମିନିକାମନା' ନାମକ ମୋର ପ୍ରଥମ ଓଡ଼ିଆ କବିତା ସଂକଳନ ପ୍ରକାଶିତ ହୋଇଛି । ପ୍ରକାଶକ 'ଲାର୍କ ବୁକ୍ସ୍'ର ଶ୍ରୀଯୁକ୍ତ ମହେନ୍ଦ୍ର ମିଶ୍ର ଯେ ମୋର ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୋଇଥିବା ଚତୁର୍ଥ ଗଳ୍ପ ସଂକଳନ ''ମଣିହରା'' ଛପାଇଛନ୍ତି । ହେଲେ ମାର୍କାମରା ଗାଳ୍ପିକର ଭିନ୍ନଦେଶୀୟ ପ୍ରବଂଧ ଅବା କବିତା ବହି ଛପାଇବାରେ କେବେହେଲେ କୁଣ୍ଠିତ ହୋଇନାହାନ୍ତି । ଏବଂ ତାଙ୍କରି ସୌଜନ୍ୟରୁ ମୋର ଦ୍ୱିତୀୟ ଓଡ଼ିଆ କବିତା ସଂକଳନ 'ସଂଜବତୀ' ମଧ୍ୟ ପ୍ରକାଶ ପାଇଛି ୨୦୦୧ ମସିହାରେ । ଏହି ଅବସରରେ ମୁଁ ତାଙ୍କୁ ମଧ୍ୟ ମୋର ସକୃତଜ୍ଞ ଧନ୍ୟବାଦ ଜ୍ଞାପନ କରୁଛି ।

ଶେଷକୁ ମୋ ଲେଖାର ମୁଖ୍ୟସ୍ରୋତ । କ୍ଷୁଦ୍ରଗଳ୍ପ । ବେଶ୍ କିଛି ଗଳ୍ପ ଲେଖିଛି ଏଇ ନଅଦଶ ବର୍ଷ ମଧ୍ୟରେ । କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଥିବା ପଂଚମ ଗଳ୍ପ ସଂକଳନ 'ଠାକୁର ଘର' ପରେ ଯେଉଁ ସଂକଳନ ଗୁଡ଼ିକ ପ୍ରକାଶ ପାଇଛି, ୧୯୮୫ରେ ଘରକୁ ଫେରି ଆସିଲା ପୂର୍ବରୁ, ତାହା ଏହି ପ୍ରକାର :

| | |
|---|---|
| ନାଲି ଗୁଲୁ ଗୁଲୁ ସାଧବ ବୋହୂ | ୧୯୭୮ |
| ଗମନ | ୧୯୮୦ |
| ଖେଳର ନାଆଁ ରଂଗ | ୧୯୮୨ |
| ଭିନ୍ନ ପାଉଁଶ | ୧୯୮୪ |

ମନ୍ଦ ନୁହେଁ । କିନ୍ତୁ କଥାବସ୍ତୁ, ଭାବଭାବନା, ଶୈଳୀ ଏବଂ ଜୀବନଦର୍ଶନକୁ ନେଇ କିଛି ପରିବର୍ତ୍ତନ ହୋଇଛି କି ଏଥିମଧ୍ୟରେ ? ଏବଂ ଯଦି ହୋଇଥାଏ ତାକୁ ଉନ୍ନତି ବୋଲି କୁହାଯାଇପାରିବ କି ? ସେ ବିଷୟରେ ମୋର କିଛି କହିବା ଉଚିତ ହେବ ନାହିଁ । କେବଳ ଏତିକି ଯେ ମୋ ଗଳ୍ପଗୁଡ଼ିକ ଚାରିତ୍ରିକ ତଥା ଚେତନ-ଅବଚେତନର ଛାଇଆଲୁଅକୁ ନେଇ ଅଧିକରୁ ଅଧିକ ଜଟିଳ ହୋଇ ଆସିଛି । ଯାହା ମୋର ଅଧିକ ଅଭିଜ୍ଞତା ଏବଂ ପରିପକ୍ୱ ସତ୍ୟଦର୍ଶନର ପରିଚାୟକ ବୋଲି ମୁଁ ମନେ କରୁଥିଲି । କିନ୍ତୁ ଦିନେ ମୁଁ ହଠାତ୍ ଚମକି ଉଠିଲି । ବଂଧୁ ଏବଂ ସାହିତ୍ୟ ସମାଲୋଚକ ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ଲେଖାଟିଏ ପଢ଼ି । ୧୯୮୦ରେ ପ୍ରକାଶ ପାଇଥିବା ସଂକଳନ 'ଗମନ'ର ଶୀର୍ଷକ ଗଳ୍ପ ଏବଂ ସେଥିରେ ଥିବା ଅନ୍ୟାନ୍ୟ କେତୋଟି ଗଳ୍ପର ଦୁର୍ବୋଧ୍ୟତାରେ ଦୁଃଖିତ ହୋଇ ଲେଖିଛନ୍ତି ଯେ ଯେତେହେଲେ ମୁଁ ଜଣେ ଗାଳ୍ପିକ , କବି ନୁହେଁ, ଏବଂ ଯେହେତୁ ଗଳ୍ପଲେଖା ଏକ ଗଣତାନ୍ତ୍ରିକ ପଦ୍ଧତି ମୋର ଏତେ ଦୁର୍ବୋଧ୍ୟ ହେବା ଉଚିତ ହୋଇନାହିଁ । ମୁଁ ତାଙ୍କର ଏଇ ସମାଲୋଚନା ଗ୍ରହଣ କରି ନେଇ ପାରିଲି ନାହିଁ, ଯାହାକି ସ୍ୱାଭାବିକ । କିନ୍ତୁ ସେହି ପରିପ୍ରେକ୍ଷୀରେ ମୁଁ ଗୋଟାଏ ତାତ୍ତ୍ୱିକ ପ୍ରଶ୍ନ ଉଠାଇବାକୁ ଚାହିଁଲି । ଧର ଏଇ 'ଗମନ' ଗଳ୍ପଟି । ବୁଢ଼ା ବୟସରେ ବୁଦ୍ଧିବାଦୀ ନାୟକ ଜଣକ କାହିଁକି ପର୍ବତ ଶିଖରିରେ ଥିବା ମନ୍ଦିରକୁ ଯିବାକୁ ବସିଛି, ହେଲେ ବିଚରା ମାଙ୍କଡ଼ଙ୍କୁ ଡରୁଛି, ତା ପିଲାଦିନୁ ଡରିଆସିଛି, ଏବଂ ଶେଷକୁ ସେ ଏଇ ଭୟକୁ ଜିଣିପାରିଲା କି ନାହିଁ, ଏଇ ହେଲା ଗଳ୍ପର କଥାବସ୍ତୁ । ଏହାକୁ ବର୍ଣ୍ଣନାତ୍ମକ ନ କହି ପ୍ରତୀକାତ୍ମକ କହିଲେ ଭୁଲ୍ ହେବ ନାହିଁ । ସେହେତୁ ଏହାର ବକ୍ତବ୍ୟ ସହଜେ ଧରା ପଡ଼ିବ ନାହିଁ, ଟିକିଏ ଭାବିବାକୁ ପଡ଼ିବ ସେ ବିଷୟରେ । କିନ୍ତୁ ତା ବୋଲି ଯାକୁ ଦୁର୍ବୋଧ୍ୟ ବୋଲି କହିବ ? ପୁଣି କହୁଛ କଣ ନା ଏଇ ଦୁର୍ବୋଧ୍ୟତା କବିତାକୁ ସୁହାଏ, ଗଣତାନ୍ତ୍ରିକ ଗଳ୍ପକୁ ନୁହେଁ ? ବାବୁ, କାହିଁକି ? କେଉଁ ଅଧିକାରରେ କେବଳ କବି ହିଁ ଘନ, ଘନିଷ୍ଠ ଏବଂ ରହସ୍ୟଧର୍ମୀ, ତେଣୁ ଦୁର୍ବୋଧ୍ୟ ହୋଇପାରିବ, କଥାକାର ନୁହେଁ ? ଏହି ମର୍ମରେ ମୁଁ 'ଗଳ୍ପ ଓ ଗଣତନ୍ତ୍ର' ନାମକ ପ୍ରବଂଧରେ ତାଙ୍କ ସମାଲୋଚନାର ଦୃଢ଼ ପ୍ରତିବାଦ ଜଣାଇଥିଲି । ନିଜେ ନିତ୍ୟାନନ୍ଦ ବାବୁଙ୍କ ସମେତ ଅନେକ ବଂଧୁ ମୋର ଏହି ପ୍ରବଂଧର ପ୍ରଶଂସା କରିଥିଲେ । ଏଇଠି ମୁଁ ମଧ୍ୟ କହିବାକୁ ଚାହେଁ ଯେ ଡ. ଶତପଥୀ, ତାଙ୍କ ପତ୍ନୀ କବି ପ୍ରତିଭା ଶତପଥୀ, ମଧ୍ୟ ତାଙ୍କ ଝିଅ ପାରମିତା ଯେ ମୋ ସାହିତ୍ୟକୁ ବିଶେଷ ଭଲପାଏ ବୋଲି କୁହେ, ସେହି ସମସ୍ତ ପରିବାରଙ୍କ ସହିତ ମୋର ବଂଧୁତା ଅଦ୍ୟାବଧି ଅକ୍ଷୁର୍ଣ୍ଣ ହୋଇରହିଛି । ଏବଂ ଏହି ପ୍ରକାର ତାତ୍ତ୍ୱିକ ବାଦପ୍ରତିବାଦ ଲାଭଜନକ ନୁହେଁ କି ଆମ ସାହିତ୍ୟର ଅଭିବୃଦ୍ଧି ପାଇଁ ? ଏହି ସଂକ୍ରାନ୍ତରେ ମଧ୍ୟ ଗୋଟିଏ କୌତୂହଳଜନକ କଥା କହିବାର ଅଛି । ନିକଟରେ ସଂସ୍କୃତବିଶାରଦ ତଥା ଓଡ଼ିଆ ଜାଣିଥିବା ଜଣେ କ୍ୟାନେଡ଼ିଆନ୍ ଅଧ୍ୟାପକ ଡକ୍ଟର ଫିଲିସ୍ ଗ୍ରାନଫ୍ ମୋର ନଅଟି

ଗଳ୍ପର ଇଂରାଜି ଅନୁବାଦ କରି ତାକୁ ଗୋଟିଏ ବହି ଆକାରରେ ଯୁକ୍ତରାଷ୍ଟ୍ରର ମିସିଗାନ୍ ୟୁନିର୍ଭର୍ସିଟୀ ପ୍ରେସଙ୍କ ଦ୍ୱାରା ଛପାଇଛନ୍ତି । ଏଇ ବହିଟିର ନାଆଁ ହେଉଛି "The Journey : Stories by K.C. Das" । ଶୀର୍ଷକ ଗଳ୍ପ "The Journey" ହେଉଛି 'ଗମନ'ର ଅନୁବାଦ, ଯାହାକୁ ପଢ଼ି ସେ ମୁଗ୍ଧ ହୋଇଥିଲେ । ମନେ ହେବ ଗଳ୍ପର ରହସ୍ୟ ହିଁ ତାଙ୍କୁ ମୁଗ୍ଧ କରିଥିଲା, ସେଥିର ଦୁର୍ବୋଧ୍ୟତା ସମେତ ।

କୌଣସି ଗଳ୍ପ ସହିତ କ୍ୱଚିତ କେଉଁ ନିର୍ଦ୍ଦିଷ୍ଟ ଚରିତ୍ର, ଘଟଣା ଅବା ପରିସ୍ଥିତିର ପ୍ରତ୍ୟକ୍ଷ ସଂପର୍କ ଥାଏ ବୋଲି ମୁଁ ପୂର୍ବରୁ କହିଛି, ଉପକ୍ରମଣିକାରେ । ହେଲେ ଯେଉଁଠି ସେଥିର ବ୍ୟତିକ୍ରମ ଜଳଜଳ ହୋଇ ଦିଶିଯାଇଛି ମୋତେ ମୁଁ ସେଥିର ସୂଚନା ଦେବାକୁ ଚେଷ୍ଟା କରିଛି । ସେହି ହିସାବରେ ଯେଉଁ ଦେଶବିଦେଶ ବୁଲି ଆସିଲି ଏଇ ଦଶ ବର୍ଷ ଭିତରେ, ସେଇ ସ୍ଥାନ ବିଶେଷକୁ ନେଇ କୌଣସି ସ୍ୱତନ୍ତ୍ର ଅନୁଭୂତି ମୋର ଗଳ୍ପକୁ ପ୍ରଭାବିତ କରିଛି କି ? କରିଛି ବୋଲି ମନେ ହୁଏ । କେତୋଟିର ସୂଚନା ମୁଁ ତ ପୂର୍ବରୁ ଦେଇଛି । ତାଛଡ଼ା ଏଇ କେତୋଟି (୧) ଗୁରୁଦକ୍ଷିଣା । ଉପରୋକ୍ତ ''ନାଲି ଗୁଲୁଗୁଲୁ ସାଧବବୋହୂ'' ସଂକଳନରେ ସ୍ଥାନିତ ହୋଇଥିବା ଏଇ ଗଳ୍ପଟି ସ୍ୱାଜିଲାଣ୍ଡକୁ ଆସିଥିବା ଜଣେ ଭାରତୀୟ ବିଶେଷଜ୍ଞର ଅନୁଭୂତି ଉପରେ ଆଧାରିତ । ବିଚରା ବ୍ୟସ୍ତ ହୋଇ ଉଠିଲାଣି ଭାରତୀୟ ଯୌନ ଓ ଦାଂପତ୍ୟ ଆଦର୍ଶର ସାରତତ୍ତ୍ୱକୁ ବୁଝାଇବା ପାଇଁ, ଯାହା ଏମାନେ ସହଜେ ବୁଝିପାରୁନାହାନ୍ତି । (୨) ''ଚିତ୍ରାଂଗଦାର ଚିଟାଉ'' ଉପରୋକ୍ତ ''ଭିନ୍ନ ପାଉଁଶ''ରେ ସ୍ଥାନିତ । ଏଇ ଗଳ୍ପଟିରେ ମଣିପୁରର ରାଜଧାନୀ ଇମ୍ଫାଲ୍‌ରୁ ଜଣେ ସ୍ୱାମୀ ଚିଠି ଲେଖିଛି, ତା ସ୍ତ୍ରୀ ପାଖକୁ, ଚିତ୍ରାଂଗଦାର ନାଆଁରେ । ବିଚିତ୍ର ନୁହେଁ କି ? କହୁଛି କଣ ନା ଚିତ୍ରାଂଗଦାର ଜଂଗଲ, ଜଂଗଲରେ ବର୍ଷା, ବର୍ଷାଧୁଆ ବାଘ, ସମସ୍ତେ ତା ଭିତରକୁ ଆସିଗଲେଣି, ସେଇଥିପାଇଁ ଏମିତିକା ଚିଠି, (୩) ସୁଡ଼ଂଗ । ଦଶମ ଗଳ୍ପ ସଂକଳନ ''ଶୀତ ଲହରୀ''ର ଅନ୍ତର୍ଭୁକ୍ତ । ନାୟକ ହେଉଛି ଆସାମର କେଉଁ ପାହାଡ଼ ଜଂଗଲରେ କାମ କରୁଥିବା ଓଡ଼ିଆ ଲେବର୍‌ଙ୍କ ତଥାକଥିତ ମଉସା । ତାରି ଯୋଗୁଁ ଓଡ଼ିଆ ଇଂଜିନିୟର୍ ଜୟନ୍ତ ରଥ ବିଫଳ ହେଲା, ସୁଲଭ ବୋଲି ମନେ ହେଉଥିବା ଓଡ଼ିଆ ଲେବର୍‌କୁ ଗୋଟାଏ ଜରୁରୀ ସୁଡ଼ଂଗଖୋଳା କାମରେ ଲଗେଇବା ପାଇଁ । କାରଣ ସେ କହୁଛି, ହାଲ୍ ଛାଡ଼ି ଦେଲା ପରି, ଯେ ତା'ଲୋକମାନଙ୍କୁ ନେଇ ଏଇ ଅପନ୍ତରୀ ଭୂଇଁରୁ ଚାଲିଯିବ ଆପଣା ଜାଗାକୁ, ସେଣିକି ଯାହା ହେଉ ପଛେ । ହେଲେ ଏଇ ଲୋକଟାର ସ୍ୱାଭିମାନ କୁଆଡ଼େ ଜୟନ୍ତର ମନକୁ ଛୁଇଁଲା । ଏବଂ ସେ ଗୋଟାଏ ବିଚିତ୍ର ପ୍ରତିଶ୍ରୁତି ମନେ ମନେ ଶୁଣାଇଲା ତାକୁ, ଯେ ଦେଶର ଅବସ୍ଥା ବଦଳି ଯିବ । କହିଲା - ''କେବେହେଲେ କଣ ଆମ ଆଖିର ସତଲୁହ ଝରିବ ନାହିଁ ବୋଲି ଭାବୁଛ ?'' ସତ ନା ମିଛ ? ଗଳ୍ପଟିର ସ୍ୱରଚିତ ଇଂରାଜି ରୂପାନ୍ତର "The Tunnel" ଭୁବନେଶ୍ୱରରୁ ପ୍ରକାଶିତ ସଂବାଦପତ୍ର "The Eastern Times"ରେ ମଧ୍ୟ ପ୍ରକାଶ ପାଇଥିଲା ।

ଏହି ସମୟ ବେଳକୁ ମୋର ଅନେକ ଗଳ୍ପ ମଧ୍ୟ ହିନ୍ଦୀ, ଇଂରେଜି, ବିଭିନ୍ନ ଭାରତୀୟ ତଥା କେତେକ ବିଦେଶୀ ଭାଷାରେ ଅନୁଦିତ ଓ ପ୍ରକାଶିତ ହେଲାଣି, ମୋର ସାହିତ୍ୟକୁ ଭଲ ପାଉଥିବା ବିଭିନ୍ନ ପ୍ରକାଶକ ଓ ସଂପାଦକମାନଙ୍କ ସୌଜନ୍ୟରୁ । ବିଦେଶୀ ଭାଷାରେ ପ୍ରକାଶିତ ଗଳ୍ପଗୁଡ଼ିକ ହେଲା - ଫରାସୀ ଭାଷାରେ ଅନୁଦିତ ହୋଇ ପ୍ୟାରିସ୍‌ରୁ ପ୍ରକାଶିତ ସାହିତ୍ୟ ପତ୍ରିକା "Europe"ରେ ସ୍ଥାନିତ ହୋଇଥିବା ଗଳ୍ପ ''ରାତି କୁକୁର'' ଏବଂ Indian Council of Cultural Relationsଙ୍କ ତରଫରୁ ଆରବୀୟ ଏବଂ ସ୍ପାନିଶ୍ ଭାଷାରେ ଅନୁଦିତ ହୋଇ ତାଙ୍କର ମୁଖପତ୍ର "Indian Horizon"ର ଆରବୀୟ ଓ ସ୍ପାନିଶ୍ ସଂସ୍କରଣରେ ସ୍ଥାନିତ ହୋଇଥିବା ଗଳ୍ପ ''ଶହେ ପୁଅ'' ।

ଯାହାହେଉ ଏକଷଠି ବର୍ଷ ବୟସରେ 'ସଂପୂର୍ଣ୍ଣ' ଅବସର ନେଇ ଘରକୁ ଫେରି ଆସିଲା ପରେ ବାରଂବାର କହି ହେଲି ନିଜକୁ ଯେ ଏଣିକି ସାହିତ୍ୟ, କେବଳ ସାହିତ୍ୟ । ଭଲକଥା । ଆହୁରି ଅନେକ କିଛି ଲେଖିବାର ଅଛି ମୋର । କବି ରମାକାନ୍ତ ରଥଙ୍କ ଭାଷାରେ 'ତାରାଙ୍କୁ ଅନେକ କଥା କହିବାର ଅଛି ।' କିନ୍ତୁ ... କିନ୍ତୁ ଆଉ ସମୟ ନାହିଁ । ଏଇ ପ୍ରଶ୍ନବାଚୀ ସହଜେ ଘାରିଦେଲା ମନକୁ । ହେଲେ ସେଇ ବାସ୍ତବତାକୁ ନେଇ ଗୋଟାଏ ବିଚିତ୍ର ତଥ୍ୟ ମଧ୍ୟ ନିଜକୁ ଶୁଣାଇଲି । ଆରେ, 'ସମୟ ନାହିଁ'ର ଅର୍ଥ ହେଉଛି ଯେ ଇଏ ଗୋଟାଏ ଜରୁରୀ ପରିସ୍ଥିତି । ଏହି ପ୍ରକାର ତାଡ଼ନା କେତେ ବଳଶାଳୀ ଓ କାର୍ଯ୍ୟକାରୀ ହୋଇପାରେ, ତା'କଣ ତୁ ଭୁଲିଗଲୁଣି ପ୍ରଶାସନିକ କୁର୍‌ସୀ ଛାଡ଼ି ଦେଲା ପରେ ? ତାଛଡ଼ା ପୁଣି କଣ ତୋତେ ମନେ ପକାଇ ଦେବାକୁ ହେବ ଯେ ତୁ ହେଉଛୁ ଗୋଟିଏ 'late blooming flower', ଯେଉଁ ଫୁଲ ଉଚିତରୁ ଅଧିକ ଡ଼େରିରେ ଫୁଟେ, ହେଲେ ଫୁଲ୍ଲ କୁସୁମିତ ହୋଇ ଫୁଟେ, ତାର ସମସ୍ତ ରଂଗ ଓ ସୁବାସର ପ୍ରତିଶ୍ରୁତିକୁ ଏକା ନହସରେ ପୂରା କରିଦେଲା ପରି ?



# ସଂଧ୍ୟା : ସମୟ ନାହିଁ
## ପ୍ରଥମ ଦଶକ (୧୯୮୫-୧୯୯୪)

ହଁ, ସମୟ ନାହିଁ । ବାଗ୍‌ଦେବୀଙ୍କ ପାଇଁ 'ନିରବିଧି କାକ ବିପୁଳା ଚ'ପୃଥ୍ୱୀ, କିନ୍ତୁ ଗୋଟିଏ ଭକ୍ତର କଳାକୃତି ତାଙ୍କ ପାଦତଳେ ଜମା ହୋଇ ଶୁଖି ଯାଉଥିବା, ସଢ଼ି ଯାଉଥିବା, ହେଲେ ପୁଣି କେବେ ନୂଆ ହୋଇ ଉଠୁଥିବା ଏବଂ କେବେ ହେଲେ ସରି ଯାଉନଥିବା ପୁଷ୍ପାଂଜଳିର ସ୍ତୂପ ଭିତରେ ଥିବା ନଥିବା ଫୁଲଟିଏ ଛଡ଼ା ଆଉ କଅଣ ? କାରଣ ଭକ୍ତ ମଣିଷଟିର ଅବଧି ଅଛି, ଏବଂ ତା' ପୃଥ୍ୱୀର ପରିସର ଅତି ସାମାନ୍ୟ । ହେଲେ ପ୍ରତ୍ୟେକ କଳାକାର ତା ନିଜ ହାତରେ ଚଉଦପା', ତେଣୁ ସେ ଏଭଳି ଗୋଟିଏ ସଫେଇ ବାଢ଼ି ଦିଏ ତା ସଂଜ ବେଳକୁ । କ'ଣ ନା ସମୟ ନାହିଁ ବୋଲି ସିନା, ନ ହେଲେ ଦେଖିଥାଆନ୍ତ ମୋର ଏଇ ପୂଜାଫୁଲଟିର ତେଜ । ଆହୁରି କେତେ ଚହଟି ଉଠିପାରନ୍ତା, ମହକି ଉଠିପାରନ୍ତା । ହଉ, ତା ବୋଲି ମୁଁ କଣ ହାରିଯିବି ବୋଲି ଭାବିଛ ? ନା । ମୋ ସମୟ ସରିବା ଯାଏଁ ମୁଁ ଏମିତି ପୂଜା କରୁଥିବି, ପ୍ରେମ କରୁଥିବି ମୋର ଦେବୀଙ୍କୁ । କିଛି ଆପତ୍ତି ଅଛି ? ବାଗ୍‌ଦେବୀ ମୃଦୁମୃଦୁ ହସନ୍ତି । ଭୋଳା ଭକ୍ତଟାକୁ ଅଭୟ ଦେଲା ପରି ।

ସେଇ ଥିଲା ମୋର ବଳ, ସେଇ ଦିବ୍ୟସୁନ୍ଦର ମଂଦହାସର ମାଧୁରୀ । ତେଣୁ କଳିକଷଠା ଷାଠିଏ ପୂରି ଯାଇଥିଲେ ମଧ୍ୟ ମୁଁ ଏକ ଆତୁରତାଭରା ବିଶ୍ୱାସର ନିର୍ଣ୍ଣୟକୁ ମୁଠେଇ ଧରିଲି ଯେ ମୁଁ ଆହୁରି ଅନେକ କିଛି ଲେଖିବି । ଏବଂ ମୋର ଫୁଲ୍ଲକୁସୁମିତ ପୂଜାଫୁଲଟି ଅବଶ୍ୟ ତାଙ୍କ ଆଖିରେ ପଡ଼ିବ ଓ ସେ ତାକୁ ଗ୍ରହଣ କରିବେ । ଏହି ପରିପ୍ରେକ୍ଷୀରେ ମୁଁ ଆଶାବାଦର ଗୋଟିଏ ନୂଆ ଉପାଦାନ ମଧ୍ୟ ପ୍ରସ୍ତୁତ କରିନେଇ ଥିଲି ନିଜ ପାଇଁ । ଯେ ବୟସ ଅନୁଯାୟୀ ସମୟ ନାହିଁ ବୋଲି କହିବାକୁ ପଡୁଛି, କିନ୍ତୁ ସୁଖର ବିଷୟ ଯେ ଏଣିକି ଯେଉଁ ସମୟ ମିଳିବ ମୋତେ, ମୋ ଜୀବିତ ଜୀବନର ସକାଳୁ ରାତି ଯାଏ, ତାକୁ କେଉଁ ସାଂସାରିକ କାମରେ ଖଟେଇବାକୁ ପଡ଼ିବ ନାହିଁ । ମୋ କର୍ମଜୀବନ ପ୍ରାୟ ସରିଗଲାଣି, ସବୁ ଦୃଷ୍ଟିରୁ । ସଂପୂର୍ଣ୍ଣ ଅବ୍ୟାହତି ମିଳିଗଲାଣି ମୋର ବୃତ୍ତିଗତ ଅଡ଼ିଟ୍ ଆକାଉଣ୍ଟସ୍ ବିତ୍ତୀୟ ପ୍ରଶାସନ ଇତ୍ୟାଦିର କାମରୁ । ମଧ୍ୟ ମୋଟାମୋଟି ମୋ ପାରିବାରିକ ଜୀବନର ଦାୟିତ୍ୱରୁ । ବୁଢ଼ା-ବୁଢ଼ୀ ହୋଇ ଆସୁଥିବା ଆମ ଟୁଆଁଟୁଇଁଙ୍କ ପାରସ୍ପରିକ ସାହଚର୍ଯ୍ୟକୁ କଣ ଗୋଟାଏ ମହାଦାୟିତ୍ୱ ବୋଲି କହିବ ? ଧ୍ୟାତ୍ ! ପ୍ରକୃତରେ ପ୍ରଚୁର ସମୟ ମିଳିବ ଏଣିକି ମୋର

ସାହିତ୍ୟ ଜାତୀୟ 'ଅକାମ' ପାଇଁ (ଅସ୍କାର ୱାଇଲ୍‌ଡ୍‌ଙ୍କ ବ୍ୟଂଗୋକ୍ତି "All Art is useless"କୁ ମନେ ପକାଇ), ବିଶ୍ୱାସ କର । ଆରେ, ମୁଁ ସତରେ ସେଇଥିରୁ ଗୋଟିଏ ପରା, ଡେରିରେ ଫୁଟି ଉଠିବା ଫୁଲ ? ଆଉ କେତେ ଦୋହରେଇ ହେବି ମୋର ସେଇ ସ୍ୱତନ୍ତ୍ର ସ୍ୱଗୁଣ ବିଷୟରେ ?

ଏହି ଭାବରେ ମୁଁ ଅଣ୍ଟା ଭିଡ଼ିଲି ଆହୁରି ଅନେକ କିଛି ଲେଖିବା ପାଇଁ । ବେଶ୍ । କିନ୍ତୁ ଏଇ 'ଅନେକ କିଛି'ର ଅର୍ଥ କଅଣ ? ପୁଣି ଗୁଡ଼ିଏ ଗଳ୍ପ ଏବଂ ମଝିରେ ମଝିରେ କବିତା, ସଂସାର ସୃଷ୍ଟି କରିବାର ଦାୟିତ୍ୱରୁ ଟିକିଏ ଓହରି ଆସିବା ପାଇଁ ? ନା । କୌଣସି ବିଧିବଦ୍ଧ ଯୋଜନା ନ ଥିଲେ ମଧ୍ୟ ମୋର ମନ କହୁଥିଲା ମୋର ସାହିତ୍ୟ ରଚନାକୁ ବିଭିନ୍ନ ନୂଆ ଦିଗରେ ଆଗେଇ ନେଇ ଭିନ୍ନସୁନ୍ଦର ସାର୍ଥକତା ପାଇବା ଲାଗି । ମଧ୍ୟ ମୋର ସାହିତ୍ୟ ପ୍ରେମକୁ ଅଧିକରୁ ଅଧିକ ସମୃଦ୍ଧ କରିବା ଲାଗି, ଯେପରିକି ମୋର ମନେ ହେବ ଯେ ମୁଁ କେବଳ ଜଣେ ଲେଖକ ନୁହେଁ ଯେ ଅସହାୟ ହୋଇ ଲେଖି ଚାଲିଛି, କେଉଁ ତାଡ଼ନାର ବଶବର୍ତ୍ତୀ ହୋଇ, ମୁଁ ମଧ୍ୟ ଜଣେ ସାହିତ୍ୟିକ, ଯେ ତା ସାହିତ୍ୟପ୍ରେମର ସମୁଚିତ ପ୍ରମାଣ ଦେଇପାରୁଛି ନିଜକୁ । ବର୍ତ୍ତମାନ କହୁଛି ଶୁଣନ୍ତୁ, କିଭଳି ଇଚ୍ଛାସବୁ ଗଜୁରି ଉଠୁଥିଲା ସେତେବେଳେ ମୋ ମନରେ ।

ମାର୍କାମରା ଗାଳ୍ପିକର ସହଜେ ସବୁଠାରୁ ବଳବତୀ ଇଚ୍ଛା ଥିଲା ବୃହତ୍‌କାୟ ଗଳ୍ପ, ଅର୍ଥାତ୍ ଉପନ୍ୟାସ ଲେଖିବା ପାଇଁ । ଏତେଦିନ ଯାଏ ହୁଏତ ଗୋଟାଏ ସଫେଇ ବାଢ଼ି ଦେଇ ହେଉଥିଲା ନିଜକୁ, ଏବଂ ଦରକାର ହେଲେ ଅନ୍ୟମାନଙ୍କୁ । ଯେ ବୃତ୍ତିଗତ ଓ ପାରିବାରିକ କାର୍ଯ୍ୟକ୍ରମର ଫାଂକରେ ଯେଉଁ ସାମାନ୍ୟ ସମୟ ମିଳେ, ସେଥିରେ ଉପନ୍ୟାସ ଲେଖି ବସିଲେ ରାତି ପାହିଯିବ । ଆଶୁ ଆନନ୍ଦ ଓ ସଫଳତା ମିଳିବ ନାହିଁ ମୋତେ, ମୋ ସୃଜନର । ସେହେତୁ କ୍ଷମା କରିବେ, ମୁଁ ଖାଲି ଗଳ୍ପ ଓ କବିତା ଲେଖିଚାଲିଛି ଏମିତି, ତାରା ଫୁଟେଇଲା ପରି । କିନ୍ତୁ ଏହି ସଫେଇର ଅବକାଶ ନାହିଁ ବର୍ତ୍ତମାନ । ତା' ମଧ୍ୟ ବିଶେଷ ବଳିଷ୍ଠ ଓ ଗ୍ରହଣଯୋଗ୍ୟ ଥିଲା ବୋଲି କହିହେବ ନାହିଁ । ସରକାରୀ ଚାକିରିଆ ଗୋପୀନାଥ, କାହ୍ନୁଚରଣ ଓଗେରଙ୍କ ଉପନ୍ୟାସ ତାର ଜ୍ୱଳନ୍ତ ପ୍ରମାଣ । ଏ ଦିଗରେ ଗୋଟିଏ ମୃଦୁ ତିରସ୍କାର ମଧ୍ୟ ମିଳିଥିଲା ମୋତେ ବିଶିଷ୍ଟ ଔପନ୍ୟାସିକ ତଥା ଗାଳ୍ପିକ ସୁରେନ୍ଦ୍ର ମହାନ୍ତିଙ୍କ ଠାରୁ । ମୁଁ ଆମନ୍ତ୍ରିତ ହୋଇ ଯାଇଥିଲି ଓଡ଼ିଶା ରାଜ୍ୟ ଏକାଡ଼େମୀଙ୍କ ଦ୍ୱାରା ଆହୂତ ଗୋଟିଏ ସେମିନାର୍‌କୁ, ଯେଉଁଠି ଓଡ଼ିଆ ଉପନ୍ୟାସର ସ୍ଥିତି ଓ ଭବିଷ୍ୟତ ଥିଲା ଆଲୋଚନାର ବିଷୟବସ୍ତୁ । ସେଇଠି ସଭାପତି ଆସନରେ ଥାଇ ସେ କହିଲେ, ଗଭୀର କ୍ଷୋଭ ପ୍ରକାଶ କରି, ଯେ କେତେକ ସଫଳ ଗାଳ୍ପିକ ଉପନ୍ୟାସଟିଏ ଲେଖିବାକୁ ନାହାଁନ୍ତି । କିନ୍ତୁ କାହିଁକି ? କାହିଁକି ? ସେ ଏପରି ଭାବରେ କଥାଟିକୁ କହିଲେ ଯେ ମନେ ହେବ ଯେ ଏହା ଏକ ଆଶ୍ଚର୍ଯ୍ୟଜନକ ବ୍ୟାପାର, ଏବଂ ଅକ୍ଷମଣୀୟ

ଭୀରୁତା ଛଡ଼ା ଆଉ କିଛି ହୋଇ ନପାରେ । ସେଇ ତିରସ୍କାର ମୋର ଲେଖକୀୟ ଆତ୍ମାକୁ ଛୁଇଁ ନ ଥିଲା ନୁହେଁ ।

କେତେକ ଲେଖକ ଅଛନ୍ତି ଯେଉଁମାନେ କେବଳ ତାଙ୍କର ମୌଳିକ ସର୍ଜନା - ଗଳ୍ପ, କବିତା, ଉପନ୍ୟାସ ଆଦି ବାଢ଼ି ଦିଅନ୍ତି ପାଠକପାଠିକାମାନଙ୍କ ଉପଭୋଗ ପାଇଁ । କେଉଁ-ଲେଖାରେ କିଭଳି ସ୍ୱାଦୁର ଅବତାରଣା କରାଯାଇଛି, କିଭଳି କଳାକୌଶଳର ପ୍ରୟୋଗ କରାଯାଇଛି ଏବଂ ସେଥିର ପରିକଳ୍ପିତ ଶେଷକଥା ଅର୍ଥାତ୍ ଉଦ୍ଦେଶ୍ୟ ଅବା ଆଦର୍ଶର ଅଭିବ୍ୟକ୍ତି କଅଣ ସେ ବିଷୟରେ କିଛି କହିବାକୁ ଚାହାଁନ୍ତି ନାହିଁ ତାଙ୍କୁ ନିହାତି ଜେରା କରି ନ ବସିଲେ । କିନ୍ତୁ ଆଉ କେତେକ ଉପରେ ପଡ଼ିଲା ପରି କୁହନ୍ତି ସେସବୁ ବିଷୟରେ, ସତେକି ତାଙ୍କର ଭୟ ହେଉଛି ଯେ ନହେଲେ ତମେ ତାଙ୍କୁ ଭୁଲ୍ ବୁଝିବ । ମୋର ଧାରଣା ଯେ ମୁଁ ବୋଧହୁଏ ଦ୍ୱିତୀୟ ଶ୍ରେଣୀର ଲେଖକମାନଙ୍କ ଭିତରେ ଗଣା ହେବି, କାରଣ ଲେଖକ ହିସାବରେ ମୋର କଥାକୁହା ଟିକିଏ ଉଚିତରୁ ଅଧିକ ବୋଲି ମନେ ହୁଏ । କିନ୍ତୁ ଉପରୋକ୍ତ ଭୟ ଯୋଗୁଁ ନୁହେଁ । ମୁଁ ଭାବିଲି ଯେ ମୋର ସର୍ଜନା ପଛରେ ଥିବା ଜୀବନଦର୍ଶନ ଅର୍ଥାତ୍ ଅନୁଭୂତ ସତ୍ୟ, ତାକୁ ଲୁଚେଇ ରଖିବି କାହିଁକି ମୋ ପାଠକପାଠିକାମାନଙ୍କ ଠାରୁ ? ଯଥାସମୟରେ ଏବଂ ଉପଯୁକ୍ତ କ୍ଷେତ୍ରରେ ସେ ବିଷୟରେ ମଧ୍ୟ କିଛି କହିବି ନାହିଁ କାହିଁକି ? ମୋର ଜଣେ ଲେଖକବଂଧୁଙ୍କ ମତରେ ଆଦିସ୍ରଷ୍ଟାଙ୍କ ସୃଷ୍ଟି ପରି ଲେଖକର ସର୍ଜନା କେଉଁ ଧାତୁରେ ଗଢ଼ା ଏବଂ ତାର ଶେଷକଥା କଅଣ, ସେ ବିଷୟରେ ଅଳ୍ପବହୁତ ରହସ୍ୟ ଅନୁଭୂତ ହେବା ଉଚିତ । କଥାଟା ତର୍କସାପେକ୍ଷ । ତେଣୁ କେବଳ ଏତିକି କହିଦିଏ ଯେ ମୋର ଆହୁରି କୁହାଳିଆ ହେବାକୁ ମନ ହେଲା ସାହିତ୍ୟକୁ ନେଇ, ମୋ ନିଜ ସାହିତ୍ୟ ସମେତ । ତାକୁ ମୋର ଦୁର୍ବଳତା କୁହ କି ଆଉ ଯାହା ।

କିନ୍ତୁ ଲେଖକ-ସାହିତ୍ୟିକର କଥାକୁହା କେବଳ ତା ଲେଖାକୁ ଛପାଇବାରେ ପର୍ଯ୍ୟବସିତ ହୋଇ ରହିପାରିବ ନାହିଁ । ତା ମୁହଁର କଥା ମଧ୍ୟ ସେମାନେ ଶୁଣିବାକୁ ଚାହିଁବେ, ବିଭିନ୍ନ ସେମିନାର, କାର୍ଯ୍ୟଶାଳା, ତଥା ସଭା ସମିତିରେ । ଏକାଧିକ ସେମିନାର୍‌ଜାତୀୟ ଆସରରେ ମୁଁ ଅବଶ୍ୟ ଯୋଗ ଦେଇଛି ଏଥିପୂର୍ବରୁ । ଏବଂ ନିଃସଂକୋଚରେ କହିଛି ମୁଁ ଯାହା କହିବାକୁ ଚାହେଁ । ଏବଂ ଆଡ଼ିଲେଡ୍‌ର ଆନ୍ତର୍ଜାତିକ ସାହିତ୍ୟ ସମ୍ମେଳନୀଠାରୁ ଆରମ୍ଭ କରି ଭାରତରେ ଅନୁଷ୍ଠିତ କେତୋଟି ସଭାସମିତିରେ ମୋର ଲିଖିତ ଭାଷଣ ମଧ୍ୟ ବିଶେଷ ଆଦୃତ ହୋଇଛି । ତାହେଲେ ଆଉ ଚିନ୍ତା କଅଣ ? ଏହି ଭାବରେ ମୁଁ 'ମାଭୈଃ !' ବୋଲି କହିଲି ନିଜକୁ ଯେତେବେଳେ ମୋର ଆଶଙ୍କା ହେଲା ଯେ ଓଡ଼ିଶାକୁ ଫେରି ଆସିଲା ପରେ ମୋ ମୁହଁର କଥାକୁହା ମଧ୍ୟ ଯଥେଷ୍ଟ ବୃଦ୍ଧି ପାଇବ ଏବଂ ସବୁଠି ଯେ ଲିଖିତ ଭାଷଣର ସୁଯୋଗ ମିଳିବ ତା ନୁହେଁ । ଏବଂ ଯେହେତୁ ବିନୀତ ଲେଖକ ବକ୍ତାଟିଏ ନୁହେଁ, ସେ ଟିକିଏ ଅସୁବିଧାରେ ପଡ଼ିପାରେ । ମୋ ଦମ୍ଭର ଶେଷକଥା ହେଲା - ଛାଡ଼, ଦେଖାଯିବ ।

ଏଇ କଥାକୁହାର ପରିପ୍ରେକ୍ଷୀରେ ମୁଁ ମଧ୍ୟ ଚେତାଇ ଦେଲି ନିଜକୁ, ବାବୁ, ଏଣିକି ତୋର କ'ଣ ଚେଷ୍ଟାପୂର୍ବକ ବେଶି ମିଳାମିଶା କରିବା ଉଚିତ ନୁହେଁ ତୋର ଓଡ଼ିଆ ଲେଖକ-ସାହିତ୍ୟିକ ଭାଇ ବିରାଦରିଙ୍କ ସାଙ୍ଗରେ ? ଏ ଦିଗରେ ତୁ ପଛେଇ ଯାଇଛୁ ବୋଲି କହିଲେ କଣ ଭୁଲ୍ ହେବ, ଯଦିଓ ସେଥିପାଇଁ ତୋତେ ପୂରାପୂରି ଦାୟୀ କରାଯାଇପାରିବ ନାହିଁ, ତୋ ବୃତ୍ତିଗତ ଜୀବନର ଆବଶ୍ୟକତା ହେତୁ ?

ଏବଂ ଗୋଟାଏ ବିଶେଷ କର୍ତ୍ତବ୍ୟ ରହିଛି ବୋଲି ମୋର ମନେ ହେଲା, ଜଣେ ଓଡ଼ିଆ ଲେଖକ ହିସାବରେ, ଯେହେତୁ ମୁଁ ଦୀର୍ଘଦିନ ଯାବଦ୍ ଓଡ଼ିଶା ବାହାରେ ରହି ଅନେକ ଅଣଓଡ଼ିଆ ଲେଖକ-ସାହିତ୍ୟିକମାନଙ୍କର ସାହଚର୍ଯ୍ୟ ଲାଭ କରିପାରିଛି । ତା ହେଉଛି ଏଇ ଯେ ଏଣିକି ଯେତେ ସୁବିଧା ମିଳୁଛି ମୋତେ ଏବଂ ଯେଉଁ ଭାବରେ, ଓଡ଼ିଆ ଭାଷା ଓ ସାହିତ୍ୟର ମହତ୍ତ୍ୱକୁ ବାହାରେ ଚିହ୍ନାଇବା ପାଇଁ, ମୁଁ ତାକୁ ବରି ନେବି । ଆଗଭର ହୋଇ । କାରଣ ସେଇ ସାହଚର୍ଯ୍ୟ ମୋତେ ବେଶି କାମ ଦେବ ବୋଲି ଆଶା କରାଯାଏ ।

ହେଲେ 'ସମୟ ନାହିଁ'ର ତାଡ଼ନା, ଏବଂ ଏଣିକି ସାହିତ୍ୟସେବା ପାଇଁ ପ୍ରଚୁର ସମୟ ରହିଛି ମୋ ହାତରେ, ଏଇ ଆତ୍ମବିଶ୍ୱାସକୁ ନେଇ ମୁଁ ଯେଉଁ ସ୍ୱତନ୍ତ୍ର ଏବଂ ବହୁମୁଖୀ ସାର୍ଥକତାର କଳ୍ପନା କରୁଥିଲି ସେତେବେଳେ, ତା'କଣ ସତେ ସାକାର ହୋଇପାରିଛି ? ନା ମୁଁ ଯେତେଦୂରକୁ ଯିବି ବୋଲି ଭାବିଥିଲି, ତା'ହେଲା ନାହିଁ ? 'ଅନେକ କିଛି'ର ପହୁଂଚ ଓ ପରିସର ମନଲାଖି ହେଲା ନାହିଁ ବୋଲି ସ୍ୱୀକାର କରିବାକୁ ପଡୁଛି ମୋର ଏଇ ପ୍ରଲମ୍ବିତ ସଂଧ୍ୟାର (ଏକଷଠି ବର୍ଷରୁ ଆଜି ଅଶୀବର୍ଷ ପାରି ହେବା ଯାଏଁ) ପାଦଦେଶରେ । ସେଥିର ଅନେକ ବାହ୍ୟିକ କାରଣ ରହିଛି । କିନ୍ତୁ ମାନିବାକୁ ପଡ଼ିବ ଯେ ମୁଁ ନିଜେ ବି ପାରିଉଠିଲି ନାହିଁ, ଯେତେଟା ଆଶା କରିଥିଲି । କାରଣ ସଂଧ୍ୟା କେବଳ ସୁଶୀତଳ ନୁହେଁ । ତାହା ମଧ୍ୟ ଘନଘୋର ଅଂଧାରର ପୂର୍ବରାଗ, ତେଣୁ କ୍ଷୟଶୀଳତାର ସୁସ୍ପଷ୍ଟ ପରିଚାୟକ । ଫଳରେ 'ସମୟ' ଆପେ ଆପେ ସଂକୁଚିତ ହୋଇ ଆସେ, ମୋର ଦାମ୍ଭିକତା ସତ୍ତ୍ୱେ । ଏବଂ ଏଇ ସଂଧ୍ୟାରେ ମଧ୍ୟ କାନ୍ଦିବାକୁ ପଡ଼େ । ଅନିବାର୍ଯ୍ୟ ଶୋକ, ତମଠୁଁ ବୟସ୍କ ତଥା ତମ ସମସାମୟିକ ନିଜ ଲୋକମାନଙ୍କୁ ହରାଇବା ଯୋଗୁଁ । ଏବଂ ଏଇ ସ୍ୱାଭାବିକ ଦୁଃଖରେ କଣ କଥାଟା ଛିଣ୍ଡିଯାଏ ? ତମେ ଲେଖକ ହୁଅ କି ଆଉ ଯାହା, ଅଦୃଷ୍ଟ ତମକୁ କେଉଁ ଅକାଳ ଏବଂ ଅପ୍ରତ୍ୟାଶିତ ବିଚ୍ଛେଦର ବୁକୁଫଟା କାନ୍ଦଣା କନ୍ଦେଇ ପାରିବ ନାହିଁ ବୋଲି କିଏ କହିଲା ? ପିଲାପିଲିଙ୍କ ଦାୟିତ୍ୱ ସରିଯାଇଥିଲେ ମଧ୍ୟ ସ୍ନେହର ବଂଧନ କଣ କେବେହେଲେ କୋହଳ ହୋଇଯାଇପାରେ, ତୁଟିଯିବା ଦୂରର କଥା ? ଅଦୃଷ୍ଟର ସେହିପ୍ରକାର ନିଷ୍ଠୁର ଉପହାସ, ସତେ ଉପହାସ ମୋର ଲେଖକୀୟ ବଡ଼େଇ ପ୍ରତି, ତାକୁ ମଧ୍ୟ ମୋତେ ଶୁଣିବାକୁ ପଡ଼ିଛି । ଭୋଗିବାକୁ ପଡ଼ିଛି । କହିବି ସେକଥା ପରେ, ଯଥା ସମୟରେ ।

ତଥାପି କହିଲେ ଭୁଲ୍ ହେବ ନାହିଁ ଯେ ମୁଁ ଯାହା କିଛି କରିଛି ଅବସର ଉତ୍ତାରୁ ମିଳିଥିବା ପ୍ରାୟ କୋଡ଼ିଏ ବର୍ଷ ଭିତରେ, ତାହା ସାମାନ୍ୟ ନୁହେଁ । ଏବଂ ମୁଁ ଏତେ ଅକୃତଜ୍ଞ ନୁହେଁ ଯେ ମୋର ସାହିତ୍ୟକୁ ନେଇ ଯେଉଁ ପ୍ରକାର ପାଠକୀୟ ସ୍ୱୀକୃତି ମିଳିଛି ମୋତେ, ବହୁବିଧ ସଂଳାପ, ସମୀକ୍ଷା, ବିଭିନ୍ନ ଭାଷାରେ ଅନୁଦିତ ହୋଇ ନାନାଦି ଅଣଓଡ଼ିଆ ବିଶିଷ୍ଟ ପତ୍ରପତ୍ରିକା ତଥା ସର୍ବଭାରତୀୟ ସଂକଳନରେ ସ୍ଥାନିତ ହେବାର ମର୍ଯ୍ୟାଦା ଏବଂ ସଂବର୍ଧନା ଜରିଆରେ, ତାକୁ ମୁଁ ନଗଣ୍ୟ ବୋଲି କହିବି । ଅପରଂତୁ ସେଗୁଡ଼ିକ ଖୁନ୍ଦାଖୁନ୍ଦି ହୋଇ ରହିଛି ଏଇ ସଂକବେଳ ସମୟକୁ, ତେଣୁ ତାର ଇସ୍ତାହାର ଦେବା ସମୟସାପେକ୍ଷ । ଏବଂ ତାହା ଏଇ ଆତ୍ମଜୀବନୀକୁ ଭାରାକ୍ରାନ୍ତ କରିବ ବୋଲି ମୋର ମନେ ହୁଏ । ତେବେ ଅନ୍ୟତ୍ର ତାର ସଂପୂର୍ଣ୍ଣ ବିବରଣୀ ମିଳିବ । ମୋର ଆତ୍ମଜୀବନୀ ସହିତ ସଂଲଗ୍ନ ଗ୍ରନ୍ଥରେ, ଯେଉଁଥିରେ ମୋର ସାହିତ୍ୟକୃତିକୁ ବିବିଧ-ବିସ୍ତାରିତ ଭାବରେ ଚିହ୍ନାଇ ଦିଆହୋଇଛି । ଏଠି କେବଳ ଏତିକି କହିଲେ ଭଲ ହେବ ପରା, ସମୟକ୍ରମ ଅନୁଯାୟୀ, ଯେ ମୁଁ ଏଇସବୁ ନୂଆ କାମରେ ହାତ ଦେଲି, ଏହିଭଳି ବାଂକମୋଡ଼ ଦେଇ ମୋର ସାହିତ୍ୟ ଓ ସାହିତ୍ୟସେବା ଗତି କରିବାକୁ ଲାଗିଲା, ଏବଂ ତା' ସାଙ୍ଗକୁ ଏଇ ଥିଲା ମୋର ବ୍ୟକ୍ତିଜୀବନର ଧାରା । ହେଲେ ସ୍ୱୀକୃତିବାଚକ କେଉଁ ଗୋଟିଏ ଘଟଣା ବିଶେଷ ଉଲ୍ଲେଖଯୋଗ୍ୟ ହୋଇଥିଲେ ମୁଁ ତାର ସୂଚନା ଦେବାକୁ ଭୁଲିବି ନାହିଁ ବୋଲି ଆଶା କରୁଛି ।

ଘରକୁ ଫେରି ଆସିବାର ପ୍ରାୟ ମାସକ ପରେ, ମେ ୧୯୮୫ରେ, ମୋତେ ଗୋଟାଏ ବିଶେଷ ସୁଯୋଗ ମିଳିଥିଲା ଓଡ଼ିଆ ସାହିତ୍ୟର ମହତ୍ତ୍ୱକୁ ସର୍ବଭାରତୀୟ କ୍ଷେତ୍ରରେ ଉପସ୍ଥାପିତ କରିବା ପାଇଁ । ମହୀଶୂରର 'ଧ୍ୱନ୍ୟାଲୋକ' ନାମକ ସାହିତ୍ୟ ଅନୁଷ୍ଠାନ ତରଫରୁ ନିମନ୍ତ୍ରଣ ଆସିଥିଲା ତାଙ୍କର ଗୋଟିଏ ସେମିନାର୍‌ରେ ଯୋଗ ଦେଇ "Towards the concept of a national literature" ଅର୍ଥାତ୍ ଜାତୀୟ ସାହିତ୍ୟ ଆଡ଼କୁ ଆମେ କେଉଁ ଭାବରେ ଗତି କରୁଛୁ, ସେ ବିଷୟରେ କିଛି କହିବା ଲାଗି । ଏହି ସଂକ୍ରାନ୍ତରେ ଆମକୁ କୁହାଯାଇଥିଲା ଯେ ତମର ବକ୍ତବ୍ୟ ସାଙ୍ଗକୁ ତମ ନିଜ ଭାଷାରେ ରଚିତ ଗୋଟିଏ ଆଧୁନିକ ସାହିତ୍ୟକୃତି ଉପରେ କିଛି କହିଲେ ଭଲ ହେବ । ସେହେତୁ ମୁଁ ଆଲୋଚନାରେ ଯଥାବିଧି ଅଂଶଗ୍ରହଣ କରିବା ସଙ୍ଗେ ସଙ୍ଗେ, ଗୋଟିଏ ପ୍ରବଂଧ ଗଢ଼ିଥିଲି ଯାହାର ନାଆଁ ଥିଲା "Indianness : some studies in the absurd" (ଭାରତୀୟତା: ଆବସର୍ଡ଼ ତତ୍ତ୍ୱ ଉପରେ କିଛି ଅନୁଧ୍ୟାନ), ଏବଂ ତାର ଫୋକସ୍ ଥିଲା ମହାପାତ୍ର ନୀଳମଣି ସାହୁଙ୍କ ଦ୍ୱାରା ରଚିତ ସଦ୍ୟତମ ଆତ୍ମଜୀବନୀମୂଳକ ଗଳ୍ପମାଳା ''ଅଭିଶପ୍ତ ଗଂଧର୍ବ'' ଉପରେ । ଏବଂ ସେଥିରେ ଥିବା ଏକ ପ୍ରଚ୍ଛନ୍ନ ସଂଦେଶ ମୁଁ ଶୁଣାଇବାକୁ ଚାହିଁଥିଲି ସଭାସଦମାନଙ୍କୁ । ଯେ ଦେଖନ୍ତୁ ଜଣେ ଆଧୁନିକ ଲେଖକ ତାର ସମସାମୟିକ ଆଉ ଜଣେ ଲେଖକ ଉପରେ କଣ

କହୁଛି । କିଭଳି ଶ୍ରଦ୍ଧାରେ ଆପ୍ଳୁତ ତାର ବକ୍ତବ୍ୟ, ଯଦିଓ ଦୁହିଁଙ୍କ ସାହିତ୍ୟ ପୂରାପୂରି ଭିନ୍ନ ବୋଲି ମନେ ହୁଏ ପରସ୍ପରଠାରୁ । ବହିଟିର ପ୍ରତ୍ୟେକ ଗଳ୍ପରେ ଥିବା କଥାବସ୍ତୁ, ଚରିତ୍ରଚିତ୍ରଣ ଏବଂ ପରିବେଶ ଉପରେ ଆଲୋକପାତ କରି କହିଥିଲି ଯେ ଏଗୁଡ଼ିକ ଏକାଧାରରେ ବାସ୍ତବ ଓ ଫ୍ୟାଣ୍ଟାସି ବୋଲି ମନେ ହୁଏ, ଯେହେତୁ ଲେଖକଙ୍କର ସ୍ମୃତି ସାଙ୍ଗରେ ମିଶିଯାଇଛି ତାଙ୍କ ସଂବେଦନଶୀଳ କଳ୍ପନାର କରାମତି । ସେହେତୁ ଏହା ଏକ ଅନବଦ୍ୟ ସୃଷ୍ଟି, ଆଧୁନିକ ଭାରତୀୟ ସାହିତ୍ୟର ଅନ୍ୟତମ ନମୁନା, ଯାହା ଐଶ୍ୱରୀୟ 'ଲୀଳା'ର ବୈଚିତ୍ର୍ୟ ଏବଂ ସ୍ଥିତିବାଦୀ 'ଆବ୍‌ସର୍ଡ଼'ର ତତ୍ତ୍ୱ ଉଭୟକୁ ଆବୁରି ନେଇ ପାରିଛି । ସଭାରେ ଯୋଗ ଦେଇଥିବା ଯେଉଁ ସାହିତ୍ୟିକ ବଂଧୁମାନେ ବିଶେଷ ଭଲ ପାଇଥିଲେ ଏଇ ଲେଖାଟିକୁ, ସେମାନେ ହେଲେ ତାମିଲନାଡୁର ଆଶୋକମିତ୍ରନ୍, କର୍ଣ୍ଣାଟକର ୟୁ.ଆର୍. ଅନନ୍ତମୂର୍ତ୍ତି ଓ ରାମଚନ୍ଦ୍ର ଶର୍ମା ଏବଂ ଆସାମର ଡି.ଏନ୍. ବେଜ୍‌ବରୁଆ । ଏବଂ କେତେକେ କହିଲେ ଯେ ମନେ ହେଉଛି ଆମେ ଦୁହେଁ, ନୀଳମଣି ଓ କିଶୋରୀଚରଣ, ପରସ୍ପରର ପରିପୂରକ, ତେଣୁ ବିଶିଷ୍ଟ ବଂଧୁ ହୋଇଥିବୁ ପରା । ବୁଝିଲି ଯେ ମୋର ସଂଦେଶ ପହୁଞ୍ଚିପାରିଛି ତାଙ୍କ ପାଖରେ । ଧନ୍ୟବାଦ ।

ଲେଖକ ହିସାବରେ ମୁଁ ଓ ମହାପାତ୍ର ନୀଳମଣି ସାହୁ କେଉଁ ଭାବରେ ଭିନ୍ନ ପରସ୍ପର ଠାରୁ ଏବଂ ଆମେ କଣ ସତେ ପରସ୍ପରର ପରିପୂରକ, ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଗତି ଦୃଷ୍ଟିରୁ, ତାର ବିଚାର କରିବେ ଓଡ଼ିଆ ସାହିତ୍ୟର ବିଜ୍ଞ ସମୀକ୍ଷକମାନେ । କିନ୍ତୁ ବୈକ୍ତିକ ସ୍ତରରେ ଆମେ ପ୍ରକୃତରେ ଘନିଷ୍ଠ ବଂଧୁ ହୋଇସାରିଥିଲୁ, ଇତିମଧ୍ୟରେ । ମୁଁ ଆସାମରେ ଥିଲାବେଳେ ସେ ମୋ ପାଖକୁ ଗୋଟିଏ ଚିଠି ଲେଖିଥିଲେ, ସ୍ୱପ୍ନରେ ମୋ ସହିତ ଆଳାପ କରି ସାରିଲା ପରେ ଏବଂ ତା ଉତ୍ତାରୁ ଅନେକ ପତ୍ରାଳାପ ହୋଇଛି ଆମ ଭିତରେ, ଏଇ ବିଚିତ୍ରସୁନ୍ଦର ଜୀବନକୁ ନେଇ । ଅଗ୍ରଜ ଗୋପୀନାଥ ମହାନ୍ତି ଓ ସଚି ରାଉତରାଏଙ୍କ ସ୍ନେହଶ୍ରଦ୍ଧା ଛଡ଼ା ନୀଳମଣି ବାବୁଙ୍କ ସହିତ ଗଢ଼ି ଉଠିଥିବା ବଂଧୁତ୍ୱ ମୋ ସାହିତ୍ୟିକ ଜୀବନର ଏକ ବିଶେଷ ଲାଭ ବୋଲି ମୁଁ ମନେ କରେ ।

ମିତ୍ରଲାଭର ପରିପ୍ରେକ୍ଷୀରେ ମଧ୍ୟ କହି ରଖେ ଆଉ ଜଣଙ୍କ କଥା । 'ଧ୍ୱନ୍ୟାଲୋକ'ର ଆବାହକ ଓ ମୁଖ୍ୟ ପ୍ରଫେସର, ସି.ଡ଼ି. ନରସିମ୍‌ହୈୟା (C.D. Naresimhaiah)ଙ୍କ ସହିତ ମୋର ପ୍ରଥମ ପରିଚୟ ହୁଏ ଆଡ଼ିଲେଡ଼୍‌ରେ । ସେ ସେତେବେଳେ ସେଠି ଥିଲେ ସେଠିକାର ଗୋଟାଏ ୟୁନିଭର୍ସିଟୀର ଭିଜିଟିଂଗ୍ ପ୍ରଫେସର୍ ହିସାବରେ । ଏବଂ ମୋର ଉପସ୍ଥାପନାକୁ ଶୁଣିଲା ପରେ ମୁଗ୍‌ଧ ହୋଇ ଆସିଥିଲେ ମୋ ପାଖକୁ, ମୋତେ ବଧେଇ ଦେବା ଲାଗି । ସେହି ପରିଚୟରୁ ବଢ଼ି ଉଠିଥିବା ବନ୍ଧୁତ୍ୱର କ୍ରମରେ ମୁଁ ବାରମ୍ବାର ଆସିଛି ମହୀଶୂର ଓ ବ୍ୟାଂଗାଲୋରକୁ, ମୋର ଅବସର ପରେ । 'ଧ୍ୱନ୍ୟାଲୋକ' ତରଫରୁ ତଥା ତାଙ୍କ ବ୍ୟକ୍ତିଗତ ନିମନ୍ତ୍ରଣ ସ୍ୱୀକାର କରି । ଏବଂ ସେହି ସୂତ୍ରରେ ପୂର୍ବାଞ୍ଚଳର ଆସାମ ଓ ପଶ୍ଚିମବଙ୍ଗ ଛଡ଼ା,

କର୍ଣ୍ଣାଟକର ଲେଖକ-ସାହିତ୍ୟିକ ତଥା ସେମାନଙ୍କର ସାହିତ୍ୟ ସହିତ ମୁଁ ବିଶେଷ ଭାବରେ ପରିଚିତ ହୋଇପାରିଛି ।

ଭାରତୀୟ ସାହିତ୍ୟର ବିଶିଷ୍ଟ ଅନୁରାଗୀ ହିସାବରେ ମୋତେ ଆହୁରି ଗୋଟିଏ ପ୍ରତିଶ୍ରୁତି ମିଳିଗଲା ସେଇ ବର୍ଷ । ଦିନେ ଅଧ୍ୟାପକ ଡଃ. ନିତ୍ୟାନନ୍ଦ ଶତପଥୀ ଏବଂ ଇଂଜିନିୟର୍-ସାହିତ୍ୟିକ ଅଜିତ୍ ମୁଖାର୍ଜି ହଠାତ୍ ଆସି ପହଞ୍ଚିଗଲେ ମୋ ପାଖରେ ଏବଂ ଗୋଟାଏ ପ୍ରସ୍ତାବ ଶୁଣାଇଲେ । କହିଲେ ଆମେ ଗୋଟିଏ ନୂଆ ସାହିତ୍ୟ ଅନୁଷ୍ଠାନ ଗଢ଼ିବାକୁ ଯାଉଛୁ ଏବଂ ଆମେ ଚାହୁଁ ଆପଣ ତାର ଅଧ୍ୟକ୍ଷ ହେବେ । ପ୍ରକୃତପକ୍ଷେ ନୂଆ ଅନୁଷ୍ଠାନଟିଏ, ଯାହାର ମୁଖ୍ୟ ଉଦ୍ଦେଶ୍ୟ ହେଲା ଓଡ଼ିଆ ସାହିତ୍ୟକୁ ଓଡ଼ିଶା ବାହାରେ ଚିହ୍ନାଇବା ଏବଂ ଅନ୍ୟାନ୍ୟ ଭାରତୀୟ ସାହିତ୍ୟକୁ ଭଲ ଭାବରେ ଚିହ୍ନିବା । ବାଃ ! 'ଏ ମନ ଖୋଜୁଥାଏ ଯାହା, କାଳେ ପ୍ରାପତ ହୁଏ ତାହା' । ମୁଁ ଅବିଳମ୍ବେ 'ହଉ ଧନ୍ୟବାଦ' ବୋଲି କହିଲି । ଅନୁଷ୍ଠାନର ନାଆଁ ରହିଲା ''ସାଂପ୍ରତିକ'' । ମୁଁ ହେଲି ତାର ଅଧ୍ୟକ୍ଷ, ଡଃ. ଶତପଥୀ ସଂପାଦକ ଏବଂ ଅଜିତ୍ ବାବୁ ସହଯୋଗୀ ସଂପାଦକ । ଅର୍ଥ କେଉଁଠୁ ଆସିବ ତା'ର ଚିନ୍ତା ମଧ୍ୟ ରହିଲା ନାହିଁ ମୂଳରୁ, କାରଣ ଜଣେ ସ୍ୱଚ୍ଛଳ ସାହିତ୍ୟପ୍ରେମୀ ନେତା ଶ୍ରୀଯୁକ୍ତ ବସନ୍ତ କୁମାର ବିଶ୍ୱାଳ ଏହାର ପୃଷ୍ଠପୋଷକ ହେବା ପାଇଁ ରାଜି ହୋଇଛନ୍ତି ବୋଲି ବୁଝିଲି । ଅଳ୍ପସମୟ ମଧ୍ୟରେ ଅନେକ ସଦସ୍ୟ ଜୁଟିଗଲେ ଆମକୁ । 'ଝଂକାର' ପତ୍ରିକାରେ ଡଃ. ହରେକୃଷ୍ଣ ମହତାବ ହାର୍ଦ୍ଦିକ ସ୍ୱାଗତ ଜଣାଇଲେ ଆମର ଏଇ ନୂତନ ପ୍ରଚେଷ୍ଟା ପ୍ରତି, କିନ୍ତୁ ସନ୍ଦେହ ପ୍ରକାଶ କଲେ ଯେ ଏଭଳି ଅନୁଷ୍ଠାନକୁ କାର୍ଯ୍ୟକାରୀ କରିବା ଏକ ଦୂରୁହ ବ୍ୟାପାର । ଯାହାହେଉ ଜୁଲାଇ ୧୦ ତାରିଖରେ ଅନୁଷ୍ଠାନଟି ବିଧିବଦ୍ଧ ଭାବରେ ଗଠିତ ହେଲା, ଭୁବନେଶ୍ୱରର 'ନୂପୁର' ନାମକ ହୋଟେଲ୍‌ର ସଭାଗୃହରେ । "Inter-relations in Indian literature", ଭାରତୀୟ ସାହିତ୍ୟ କ୍ଷେତ୍ରରେ ପାରସ୍ପରିକ ଆଦାନ ପ୍ରଦାନ - ଏହି ମୌଳିକ ଉଦ୍ଦେଶ୍ୟ ଲିପିବଦ୍ଧ ହୋଇ ରହିଲା,ତାର ସଂବିଧାନରେ, ଯାହା ସେଦିନ ଉପସ୍ଥିତ ପଚିଶ ଜଣ ସଦସ୍ୟଙ୍କ ସମ୍ମତିକ୍ରମେ ଗୃହୀତ ହେଲା । କାର୍ଯ୍ୟକାରୀ କମିଟିର ପ୍ରଥମ ବୈଠକ ବସିଲା ତା'ପରଦିନ କଟକରେ, ଏବଂ ତାର ଅନ୍ୟତମ ନିର୍ଣ୍ଣୟ ହେଲା ଯେ ଯଥାଶୀଘ୍ର ଗୋଟିଏ ସ୍ମରଣିକା ପ୍ରକାଶିତ ହେବ ଆମର ଏହି ଉଦ୍ୟମକୁ ନେଇ । ଏବଂ ମୁଁ ଗୋଟିଏ ଅଗ୍ରଲିପି ଲେଖିବି ତାର ପ୍ରଥମ ପୃଷ୍ଠାରେ, ଯାହାର ନାଆଁ ହେବ "One in many languages" ଅର୍ଥାତ୍ ଅନେକ ଭାଷାକୁ ନେଇ ଆମର ଏଇ ଗୋଟିଏ ସାହିତ୍ୟ । ଚମତ୍କାର ! ମୋର ଛାତି କୁଣ୍ଢେ ମୋଟ ହୋଇଗଲା ଯେ ଘରବାହୁଡ଼ାର ପହିଲି ବର୍ଷ ମୋତେ ଏଭଳି ଗୋଟିଏ ଇପ୍‌ସିତ ବଡ଼ କାମ କରିବାର ସୁଯୋଗ ମିଳିଛି ।

ବଂଧୁ ମହାପାତ୍ର ନୀଳମଣି ସାହୁଙ୍କ ଛଡ଼ା ଏକାଧିକ ତରୁଣ ଏବଂ ମଧ୍ୟବୟସ୍କ ଓଡ଼ିଆ ଲେଖକ ସାହିତ୍ୟିକମାନଙ୍କ ସହିତ ମଧ୍ୟ ମୋର ପରିଚୟ ହେଲା କଟକକୁ ଆସିଲା

ପରେ । ସେମାନଙ୍କ ମଧ୍ୟରୁ ଯେଉଁମାନେ ମୋର ସାହିତ୍ୟ ଏବଂ ସାହିତ୍ୟିକ ଆଭିମୁଖ୍ୟ ପ୍ରତି ବିଶେଷ ଆକୃଷ୍ଟ ହୋଇ ମୋର ସହଯୋଗୀ ହେଲେ, ମୋର ବିଭିନ୍ନ ଉଦ୍ୟମକୁ ସଫଳ କରିବା ଦିଗରେ, ସେମାନଙ୍କ ବିଷୟରେ କିଛି କହି ରଖେ, ଏଇ ଅବସରରେ ।

ଜଣେ ହେଲେ କମଳାକାନ୍ତ ମହାପାତ୍ର । ବର୍ତ୍ତମାନ ଇନ୍‌କମ୍ ଟ୍ୟାକ୍‌ସ୍ ବିଭାଗର ଜଣେ ବରିଷ୍ଠ ଅଧିକାରୀ । ଜଣେ ନିଛକ୍ ବାସ୍ତବବାଦୀ ଲେଖକ, କିନ୍ତୁ କେଜାଣି କାହିଁକି ସେ ତାଙ୍କ ମୌଳିକ ସୃଜନାତ୍ମକ ଲେଖା ଉପରେ ବିଶେଷ ଗୁରୁତ୍ୱ ଦେଲେ ନାହିଁ । କିନ୍ତୁ ଓଡ଼ିଆ ସାହିତ୍ୟକୁ ଓଡ଼ିଶା ବାହାରେ ଚିହ୍ନାଇବାରେ ତାଙ୍କର ଉଲ୍ଲେଖନୀୟ ଅବଦାନ ରହିଛି । ଏବଂ ସେଥିର ମାଧ୍ୟମ ହେଉଛି ଅନୁବାଦ । ଓଡ଼ିଆ ସାହିତ୍ୟକୁ ଇଂରାଜିରେ ରୂପାନ୍ତରିତ କରିବା ଦିଗରେ ତାଙ୍କର ପାରଦର୍ଶିତା । ଯଦ୍ୱାରା ତାଙ୍କର ଅନୁବାଦ ମୌଳିକ ଲେଖା ଭଳି ମନେ ହୁଏ ଏବଂ ମୂଳ ଲେଖାର ମାଧୁରୀ ତଥା ତାତ୍‌ପର୍ଯ୍ୟ ପହଞ୍ଚି ପାରେ ଅଣଓଡ଼ିଆ ପାଠକପାଠିକାମାନଙ୍କ ପାଖରେ । ସେ ଓ ତାଙ୍କ ପତ୍ନୀ ଏବଂ ସହକର୍ମିଣୀ ଲୀଳାବତୀଙ୍କ ଯୁଗ୍ମ ପ୍ରଚେଷ୍ଟା ଫକୀରମୋହନଙ୍କ ଠାରୁ ଅନେକ ବିଶିଷ୍ଟ ଓଡ଼ିଆ ଲେଖକ ଲେଖିକାମାନଙ୍କ ସାହିତ୍ୟକୁ ଉପସ୍ଥାପିତ କରିପାରିଛି ସର୍ବଭାରତୀୟ ସାହିତ୍ୟ ମହଲରେ । ସେହେତୁ କମଳାକାନ୍ତଙ୍କୁ ମୁଁ ମୋର ଅନେକ ଓଡ଼ିଆ ଗଳ୍ପ ଅନୁବାଦ କରିବାକୁ ଦେଇଛି, ଆଗ୍ରହର ସହିତ । ବିଭିନ୍ନ ଗଳ୍ପର ଇଂରାଜି ଅନୁବାଦ କରି "Indian Literature" ଏବଂ ଅନ୍ୟାନ୍ୟ ବିଶିଷ୍ଟ ଇଂରାଜୀ ପତ୍ରପତ୍ରିକାରେ ପ୍ରକାଶିତ କରିବା ଛଡ଼ା, ସେ ଦୁଇଜଣ ମୋର ଦଶଗୋଟି ଓଡ଼ିଆ ଗଳ୍ପର ଇଂରାଜି ଅନୁବାଦ କରି, ତାକୁ "Wild Peacock and other stories" ନାମକ ଏକ ସଂକଳନରେ ଉପସ୍ଥାପିତ କରିଛନ୍ତି । ତାହା ତାଙ୍କ ଭାଇ କାଳିଦାସ ମହାପାତ୍ରଙ୍କ ଦ୍ୱାରା ପରିଚାଳିତ "Grassroots" ନାମକ ପ୍ରକାଶନ ସଂସ୍ଥା ଦ୍ୱାରା ପ୍ରକାଶିତ ହୋଇଛି । ଏହା ଛଡ଼ା ସେ ମୋତେ ଅନେକ ଉତ୍‌କୃଷ୍ଟ ଅନୁବାଦ ଯୋଗାଇଛନ୍ତି ମୋର ବିଭିନ୍ନ ପ୍ରକଳ୍ପ ପାଇଁ । ଗୋଟିଏ ହେଲା ଆମର 'ସାଂପ୍ରତିକ'' ପାଇଁ । ଦ୍ୱିତୀୟରେ ଏବଂ ଯଥେଷ୍ଟ ପରିଣାମରେ, ଆଉ ଗୋଟିଏ ପ୍ରକଳ୍ପକୁ ସାକାର କରିବା ଲାଗି । ମୁଁ ସେକଥା କହୁଛି ବର୍ତ୍ତମାନ, ମୋର ଆଉ ଜଣେ ସହଯୋଗୀଙ୍କ ବିଷୟରେ କହିବାକୁ ଯାଇ ।

ମୋର ଏହି ବିଶିଷ୍ଟ ସହଯୋଗୀ ହେଉଛନ୍ତି ଦିଲ୍ଲୀରେ ରହୁଥିବା କବି ତଥା ଗାଳ୍ପିକ ଏବଂ ନାଟ୍ୟକାର ଜଗନ୍ନାଥ ପ୍ରସାଦ ଦାସ । ମୁଁ ତାଙ୍କୁ ଆଗରୁ ଜାଣିଥିଲି, କିନ୍ତୁ ଏଇ ବର୍ଷ ସେ ମୋ ସହିତ ହାତ ମିଳାଇଲେ ଏକାଠି ମିଶି ଗୋଟିଏ ନୂଆ କାମ କରିବା ଲାଗି । ଆମେ ଭାବିଲୁ - ଆଚ୍ଛା Penguin Books, UKଙ୍କ ଦ୍ୱାରା ୧୯୭୪ରେ ପ୍ରକାଶିତ "New Indian writing"ର ଢ଼ାଂଚାରେ "Oriya writing Today" ନାମକ ଗୋଟିଏ ଇଂରାଜି ସଂକଳନ ପ୍ରସ୍ତୁତ କଲେ କେମିତି ହୁଅନ୍ତା ? ଏଥିପୂର୍ବରୁ ହୁଏତ କେତୋଟି ଅନୁଦିତ ଓଡ଼ିଆ ଗଳ୍ପ ଓ

କବିତାର ସଂକଳନ ପ୍ରକାଶିତ ହୋଇଛି । କିନ୍ତୁ ପୃଥକ୍ ଭାବରେ । ହେଲେ ଏଥିରେ ସବୁକିଛି ରହିବ, ବିଭିନ୍ନ ସ୍ୱାଦିଷ୍ଟ ବ୍ୟଂଜନର ଥାଳୀଟିଏ ବାଢ଼ି ଦେଲା ପରି, ଠିକ୍ ସେଇ ପେଙ୍ଗୁଇନ୍ ବହିର ଦୃଷ୍ଟାନ୍ତକୁ ଅନୁସରଣ କରି । କେତୋଟି ନିର୍ବାଚିତ ଆଧୁନିକ ଓଡ଼ିଆ ଗଳ୍ପ, କବିତା, ଏକାଙ୍କିକା, ପ୍ରବଂଧ, ରମ୍ୟରଚନା ତଥା ଉପନ୍ୟାସର ଉଦ୍ଧୃତାଂଶକୁ ନେଇ ଏକ ବିଚିତ୍ରସୁନ୍ଦର ସମାହାରର ପରିକଳ୍ପନା । ପାରିବା ତ ? କାହିଁକି ନ ପାରିବା ବୋଲି ଆମେ ତାର ପ୍ରତ୍ୟୁତ୍ତର ଦେଲୁ ପରସ୍ପରକୁ । ଏବଂ ତରୁଣ କମଳାକାନ୍ତ କହିଲେ ସେ ପାରୁପର୍ଯ୍ୟନ୍ତ ସାହାଯ୍ୟ କରିବେ ଆମକୁ । ସେ ତାଙ୍କ କଥା ରଖିଛନ୍ତି ।

ଅନ୍ୟ ଏକ ସହଯୋଗୀ ଏବଂ ପରାମର୍ଶଦାତା ଥିଲେ ଅଧ୍ୟାପକ ଯତୀନ୍ଦ୍ର ମୋହନ ମହାନ୍ତି । ଓଡ଼ିଆ ସାହିତ୍ୟକୁ ବାହାରେ ଚିହ୍ନାଇବାରେ ତାଙ୍କର ଅବଦାନ ଅତୁଳନୀୟ । ସେ ମଧ୍ୟ 'ସାଂପ୍ରତିକ'ର ଜଣେ ସକ୍ରିୟ ସଦସ୍ୟ ଥିଲେ, ଏବଂ ମୋତେ ନାନା ଭାବରେ ସାହାଯ୍ୟ କରିଛନ୍ତି ମୋର ସାହିତ୍ୟିକ ଉଦ୍ୟମଗୁଡ଼ିକୁ ସଫଳ କରିବା ପାଇଁ । ଠିକଣା ବାଟ ବତେଇ ।

ଆଉ ଗୋଟିଏ ସନ୍ତୋଷଜନକ କାମ କରିଥିଲି ଏଇ ବର୍ଷ, ଯାହାକୁ ଏକାଧାରରେ ପାରିବାରିକ, ସାମାଜିକ ଏବଂ ସାହିତ୍ୟିକ ବୋଲି କହିଲେ ଭୁଲ୍ ହେବ ନାହିଁ । ମୋର ପୂଜ୍ୟ ଶ୍ୱଶୁର ସ୍ୱର୍ଗତ ଭୁବନାନନ୍ଦ ଦାସ ଓ ତାଙ୍କର ଯାଆଁଳା ଭାଇ ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କର ଜନ୍ମ ଶତବାର୍ଷିକୀର ଆୟୋଜନ ଏବଂ ସେହି ସଂକ୍ରାନ୍ତରେ ଗୋଟିଏ ସ୍ମରଣିକାର ପ୍ରସ୍ତୁତି । ସ୍ୱାଧିନତା ସଂଗ୍ରାମ ତଥା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଗଠନ ଛଡ଼ା ଭୁବନାନନ୍ଦ ବାବୁ ଓରଫ୍ ବି. ଦାସଙ୍କର ଯେଉଁ ଅବଦାନ ରହିଛି ଶିଳ୍ପ ପ୍ରତିଷ୍ଠା ଦିଗରେ, ତଥା ସାଂସଦୀୟ କ୍ଷେତ୍ରରେ ତା କେତେଜଣଙ୍କୁ ଜଣା ? ନା ସ୍ୱାମୀ ବିଚିତ୍ରାନନ୍ଦଙ୍କର ଅକ୍ଳାନ୍ତ ସମାଜସେବା ? ତେଣୁ ତାକୁ ଜନସାଧାରଣଙ୍କୁ ଅବଗତ କରାଇବା ଦିଗରେ ଏଇ ଉଦ୍ୟମଟିକୁ କେବଳ ପାରିବାରିକ ବୋଲି କହିବି କେମିତି ? ଯାହାହେଉ ମୁଁ ଓ କୁମ ଲାଗି ପଡ଼ିଲୁ ବାପା ଓ ବାବାଙ୍କ ସ୍ମୃତିରେ ଏଇ କାମଟିକୁ କରିବାରେ, ପରିବାରର ଅନ୍ୟମାନଙ୍କ ସହିତ ହାତ ମିଳାଇ । ବିଶେଷତଃ ବି. ଦାସଙ୍କ ବଡ଼ ଜ୍ୱାଇଁ ଇଂଜିନିୟର୍ ସ୍ୱର୍ଗତ ଶ୍ରୀ ହେମନ୍ତ କୁମାର ମହାନ୍ତିଙ୍କ ସାହଚର୍ଯ୍ୟ ଓ ପରାମର୍ଶ ଆମକୁ ଯଥେଷ୍ଟ ବଳ ଦେଇଥିଲା । ଏହି ସଂକ୍ରାନ୍ତରେ ଡଃ. ହରେକୃଷ୍ଣ ମହତାବଙ୍କ ଠାରୁ ଆରମ୍ଭ କରି ବି. ଦାସଙ୍କ ବିଶିଷ୍ଟ ବଂଧୁ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଏବଂ ଦୁଇଭାଇଙ୍କ ସଂସ୍ପର୍ଶରେ ଆସିଥିବା ଅନେକ ଗଣ୍ୟମାନ୍ୟ ବ୍ୟକ୍ତି, ଯଥା ରମା ଦେବୀ, ସତ୍ୟପ୍ରିୟ ମହାନ୍ତି, କାଳିନ୍ଦୀ ଚରଣ ପାଣିଗ୍ରାହୀ, ଡଃ. ରାଧାନାଥ ରଥ, ଡଃ. ଜ୍ୟୋତ୍ସ୍ନା ଦେଈ, ମାଳତୀ ଚୌଧୁରୀଙ୍କ ସହିତ ମିଳିତ ହୋଇ ସ୍ମରଣିକା ପାଇଁ ତାଙ୍କର ଲେଖାଟିଏ ତଥା ଅନ୍ୟାନ୍ୟ ଦିଗରେ ତାଙ୍କର ସାହାଯ୍ୟ ଲୋଡ଼ିବା କାମଟି ମଧ୍ୟ ବିଶେଷ ରୁଚିକର ଥିଲା ମୋ ପାଇଁ । ଏବଂ ମୁଁ ପ୍ରାୟଶଃ ବିଫଳ ହୋଇ ନଥିଲି ବୋଲି କହିଲେ ଭୁଲ୍ ହେବ ନାହିଁ । ତଦାନୀନ୍ତନ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାଏକଙ୍କ ପ୍ରେରଣା

ଓ ପୃଷ୍ଠପୋଷକତା ମଧ୍ୟ ଭୁଲିବାର ନୁହେଁ । ତହୁଁ ଯଥା ସମୟରେ ଡଃ. ରାଧାନାଥ ରଥଙ୍କର ଭାଷଣ, ''ସଂବାଦ'' 'ସମାଜ' ଆଜି ବିଭିନ୍ନ ପତ୍ରପତ୍ରିକାରେ ଶତବାର୍ଷିକୀର ସଚିତ୍ର ବିଜ୍ଞପ୍ତି ଏବଂ ଶେଷକୁ ମେ ୧୪ ତାରିଖରେ ଭୁବନେଶ୍ୱର ସୂଚନା ଭବନରେ ଆୟୋଜିତ ସାଧାରଣ ସଭାରେ ବିଭିନ୍ନ ନେତା ଓ କର୍ମୀମାନଙ୍କ ଭାଷଣ ଛଡ଼ା ପୂଜ୍ୟା ରମାଦେବୀଙ୍କର ପରିବାରଧର୍ମୀ ଏବଂ ହୃଦୟସ୍ପର୍ଶୀ ଦି'ପଦ କଥା, ଏହି ସମସ୍ତ ପ୍ରସାରଣ ଏବଂ ଉଚ୍ଚାରଣକୁ ନେଇ ଆମ ଉଦ୍ୟମ ସବୁଦିଗରୁ ସଫଳ ହୋଇଥିଲା ବୋଲି ମୁଁ ନିଃସନ୍ଦେହରେ କହିପାରେ । ଏବଂ ମୋର ସ୍ମରଣିକା ସଂପାଦନା ଛଡ଼ା ମୁଁ ସେଥିରେ ମୋର ପ୍ରଥମ ନିବେଦନ ଏବଂ ଦୁଇ ଭାଇଙ୍କର ସଂକ୍ଷିପ୍ତ ଜୀବନୀ ଲେଖିଥିଲି । ବହିଟିକୁ ଛପାଇବା ଦିଗରେ 'ସଂବାଦ'ର ସଂପାଦକ ସୌମ୍ୟରଂଜନ ପଟ୍ଟନାୟକ ଆମକୁ ବିଶେଷ ସାହାଯ୍ୟ କରିଥିଲେ । ସ୍ମରଣିକାଟି ପରେ ଛପା ହୋଇଥିଲା ଏବଂ ତାହା ଏକାଧାରରେ ସୁଖପାଠ୍ୟ ଏବଂ ତଥ୍ୟମୂଳକ ହୋଇପାରିଛି ବୋଲି ବଂଧୁମାନେ କହିଛନ୍ତି ମୋତେ ।

ଏହି ଭାବରେ ୧୯୮୫, ଘରକୁ ଫେରି ଆସିବାରେ ପ୍ରଥମ ବର୍ଷ, ମୋତେ ଯଥେଷ୍ଟ ଆଶା ଓ ଉଦ୍ଦୀପନା ଆଣି ଦେଇଥିଲା ମୋର ଲେଖକୀୟ ତଥା ସାହିତ୍ୟିକ ଭବିଷ୍ୟତ ପାଇଁ । ପାରିବାରିକ କ୍ଷେତ୍ରରେ ମଧ୍ୟ ମୋର ବିଶେଷ କିଛି ଭାବିବାକୁ ନ ଥିଲା । କିନ୍ତୁ ସେଇ ସୁଖ ତିଷ୍ଠି ରହିପାରିଲା ନାହିଁ ବର୍ଷ ସରିବା ଯାଏ । ଏକ ଦାରୁଣ ଦୁଃଖ ଭୋଗିବାକୁ ପଡ଼ିଲା ମୋତେ ସେପ୍ଟେମ୍ବର ମାସରେ । ରୁକୁନ୍ ନାମକ ସାନ ମଣିଷଟିଏ ଆସୁ ଆସୁ ଚାଲିଗଲା । ଆବିର୍ଭାବ ସେପ୍ଟେମ୍ବର ୪, ତିରୋଧାନ ସେପ୍ଟେମ୍ବର ୯ ।

ରୁକୁନ୍ ଥିଲା ମୋର ବିଦୂଷୀ ଓ ସ୍ୱଳ୍ପଭାଷୀ ଝିଅ ବିଦ୍ୟା ଓରଫ କୁନ୍‌ବେବିର ପହିଲି ସନ୍ତାନ । ତା ନାଆଁ ଦିଆ ସରିଥିଲା ତାର ଜନ୍ମ ହେବା ପୂର୍ବରୁ । ଶୁଣିଲି ତା ବାପା କେଓ୍ୱଲ୍ କାନ ଦେଇ ଶୁଣୁଥିଲା ତା ଛାତିର ଦୁକୁଦୁକୁ, ସେ ଗର୍ଭରେ ଥିଲା ବେଳେ । ପରମ ଉତ୍‌କଣ୍ଠାର ସହ ସେମାନେ ଚାହିଁ ବସିଥିଲେ ତା'ର ଆସିବାକୁ । ବେଶ୍ ହୃଷ୍ଟପୁଷ୍ଟ ହୋଇ ଜନ୍ମ ହୋଇଥିଲା ପିଲାଟି, ସିଜରିଆନ୍ ଅପରେସନ୍ ଦ୍ୱାରା । ଆମେ ଦିଲ୍ଲୀରେ ଥିଲୁ ସେତେବେଳେ, ଏବଂ ବାପାମାଆଙ୍କ ମହାନନ୍ଦରେ ଭାଗୀ ହୋଇପାରିଥିଲୁ । କିନ୍ତୁ ଦିନୁଟାଏ ନ ଯାଉଣୁ ଡାକ୍ତର କହିଲେ ଯେ ଟିକିଏ ଉଦ୍‌ବେଗର କାରଣ ଅଛି ପିଲାର ଜୀବନକୁ ନେଇ, ତେଣୁ ତାକୁ ଅକ୍ସିଜେନ୍ ଦେବାକୁ ପଡ଼ିବ । କିନ୍ତୁ ଉଦ୍‌ବେଗ ଊଣା ହେଲା ନାହିଁ, ଏବଂ ରୁକୁନ୍ ଚାଲିଗଲା ହପ୍ତାଏ ପୂରା ନ ହେଉଣୁ । ବାପାମାଆଙ୍କ ଲୁହର ଝର ଶୁଖିଲା ନାହିଁ ସହଜେ । ଅଜାଆଇଙ୍କ ଆଖିରୁ ମଧ୍ୟ ଲୁହ ଝରିଥିଲା । ତଥାପି ମୋତ ମନେ ହେଲା କିଛି ଦିନ ଉତାରୁ, ଦିଲ୍ଲୀରୁ ଫେରି ଆସିଲା ପରେ, ଯେ ମୁଁ ଯଥେଷ୍ଟ କାନ୍ଦି ପାରି ନାହିଁ, କି ରାଗି ପାରିନାହିଁ ବିଧାତା ଉପରେ, ଯାହା ବୋଧହୁଏ ମୋର ଚୋପାଛଡ଼ା ବୁଦ୍ଧିଜୀବୀ ଲେଖକପଣିଆର ଦୋଷ ।

ସେହେତୁ ମୁଁ ଗୋଟିଏ ଚିଠି ଲେଖିଥିଲି ମୋର ଲେଖକ ବଂଧୁ ମହାପାତ୍ର ନୀଳମଣି ସାହୁଙ୍କ ପାଖକୁ - କହିଲେ ଦେଖି, ମୁଁ କାହିଁକି ଆପଣଙ୍କ ପରି କାନ୍ଦି ପାରୁନାହିଁ ସହଜେ, ଏବଂ ସେଇଲାଗି କଷ୍ଟ ପାଉଛି ଏମିତି ? ତାଙ୍କଠୁଁ ସହାନୁଭୂତି ଲୋଡୁଥିଲି ସତ, କିନ୍ତୁ ପରେ ମୋର ମନେ ହେଲା ଯେ ଇଏ ବି ଗୋଟାଏ ଦୟନୀୟ ବଢ଼େଇ ଥିଲା ଅଧମ ଲେଖକର, ଯେ ସେ ସେମାନଙ୍କ ପରି ସେଣ୍ଟିମେଣ୍ଟାଲ୍ ନୁହେଁ ।

ହଁ, ଅବିଳମ୍ବେ ମୁଁ ପୁଣି ମଜ୍ଜି ଯାଇ ପାରିଲି ମୋ ସାହିତ୍ୟକୁ ନେଇ । ଡିସେମ୍ବର ମାସରେ ମୁଁ ପୁଣି ଥରେ ବାଂଗାଲୋର୍ ଓ ମହୀଶୂର ଯାଇଥିଲି 'ସାଂପ୍ରତିକ' ତରଫରୁ, ଡଃ. ନିତ୍ୟାନନ୍ଦ ଶତପଥୀଙ୍କୁ ସାଙ୍ଗରେ ଧରି । କାରଣ ଆମେ ସ୍ଥିର କରିଥିଲୁ ଯେ ଯଥାଶୀଘ୍ର ସେଇଠି ଅନୁଷ୍ଠିତ ହେବ ଆମର ଦ୍ୱିପାକ୍ଷିକ ଆଳାପ-ଆଲୋଚନାର ସମାରୋହ, ଓଡ଼ିଶା-କନ୍ନଡ଼ ସାହିତ୍ୟ ଉପରେ । ତେଣୁ ଆମେ ଦୁଇଜଣ ଆଗରୁ ଯାଇଥିଲୁ ସେଠିକି, ନାନାଦି ପ୍ରାଥମିକ ବ୍ୟବସ୍ଥା କରି ଆସିବା ପାଇଁ । ସେଠି ପୂର୍ବ ପରିଚିତ ପ୍ରଫେସର୍ ନରସିମ୍ହୈୟା, ପ୍ରଫେସର୍ ଅନନ୍ତମୂର୍ତ୍ତି ଓଗେରଙ୍କ ଛଡ଼ା ମୋର ଦେଖା ହୋଇଥିଲା ସୁପ୍ରସିଦ୍ଧ ଭାରତୀୟ ଇଂରାଜି ଔପନ୍ୟାସିକ ଏସ୍. ରାଜାରାଓଙ୍କ ସାଙ୍ଗରେ । ତାଙ୍କର ଶୁଭାଶୀର୍ବାଦ ମଧ୍ୟ ମିଳିଥିଲା ମୋତେ ଆମ ସାଂପ୍ରତିକର ସଫଳତା ପାଇଁ ।

ସେଇଠୁଁ ୧୯୮୬ । ଯେଉଁ ସବୁ ଉଦ୍ୟମର ମୂଳଦୁଆ ପଡ଼ିଥିଲା ଗତବର୍ଷ, ତା କେତେଦୂର ଆଗେଇ ଯାଇପାରିଲା, ସେ ବିଷୟରେ ପ୍ରଥମେ କିଛି କହିଲେ ଭଲ ହେବ ।

ସର୍ବାଦୌ ସାଂପ୍ରତିକ । ସାଂପ୍ରତିକର ପ୍ରଥମ ସଂଖ୍ୟା ଉନ୍ମୋଚିତ ହେଲା ଜାନୁଆରୀ ୧୯ ତାରିଖରେ । ପୂର୍ବ ନିଷ୍ପତ୍ତି ଅନୁଯାୟୀ ମୁଁ ଗୋଟିଏ ଅଗ୍ରଲେଖା ପ୍ରକାଶ କରିଥିଲି ସେଥିରେ, ଯାହାର ନାଆଁ ଥିଲା "One is many languages" । ଏବଂ ସେଥିରେ ମୁଁ ଆସ୍ଫାଳନ କରିଥିଲି ଯେ ଦେଖିବ, ଇଏ ଦିନେ ଗୋଟିଏ ସର୍ବଭାରତୀୟ ଆନ୍ଦୋଳନର ରୂପ ଧାରଣ କରିବ । କାରଣ ତାହାହିଁ ଭାରତୀୟ ସାହିତ୍ୟର ଚାହିଦା ଏବଂ ତାକୁ ଆଉ ଟାଳି ଦେଇ ହେବ ନାହିଁ ।

ସେଇଠୁଁ ଓଡ଼ିଆ କନ୍ନଡ଼ ସାହିତ୍ୟକୁ ନେଇ ଦ୍ୱିପାକ୍ଷିକ ଆଳାପ-ଆଲୋଚନା । ମୋତେ ଓ ଡଃ. ଶତପଥୀଙ୍କୁ ଯେଉଁ ପ୍ରତିଶ୍ରୁତି ମିଳିଥିଲା ଗତ ଡିସେମ୍ବର ମାସରେ ଯେ ଆମେ ଟମକୁ ସବୁମତେ ସାହାଯ୍ୟ କରିବୁ, ସେଇ ସାହାଯ୍ୟ ଏତେ ବ୍ୟାପକ ଏବଂ ଆଖିଝଲସା ହୋଇ ଉଠିବ ବୋଲି ଭାବି ନ ଥିଲୁ । ହେଲେ ଦେଖିଲୁ ଯେ ତାଙ୍କର 'ଆମେ' ପଦଟି କେବଳ କେତେକ ଅଧ୍ୟାପକ ଓ ସାହିତ୍ୟିକମାନଙ୍କୁ ବୁଝାଉନଥିଲା, ସେଥିରେ ସାମିଲ୍ ହୋଇଯାଇଥିଲେ କର୍ଣ୍ଣାଟକ ସାହିତ୍ୟ ଏକାଡ଼େମୀ, ବେସରକାରୀ କନ୍ନଡ଼ ସାହିତ୍ୟ ପରିଷଦ, ମଧ୍ୟ ଖୋଦ୍ ସରକାର ଅର୍ଥାତ୍ ତାଙ୍କ କନ୍ନଡ଼ ଏବଂ ସଂସ୍କୃତି ବିଭାଗର କର୍ମକର୍ତ୍ତାଗଣ । ପହିଲି ଦିନ ଏପ୍ରିଲ୍

୧୭ ତାରିଖରେ ଅନୁଷ୍ଠିତ ଅଧିବେଶନର ସଭାପତି ଥିଲେ ତାଙ୍କ ସାହିତ୍ୟ ପିତାମହ ଭି.କେ. ଗୋକକ୍ ଏବଂ ଉଦ୍‌ଘାଟନୀ ଭାଷଣ ଦେବାକୁ ଆସିଥିଲେ ମନ୍ତ୍ରୀ ଡକ୍ଟର ଜୀବରାଜ ମେହେତା । ତା'ପରଦିନ ଅନେକ ବିଶିଷ୍ଟ ଲେଖକ ଓ ସାହିତ୍ୟିକ କହିଲେ ଓଡ଼ିଆ ଓ କନ୍ନଡ଼ ସାହିତ୍ୟର ବିଭିନ୍ନ ଦିଗ ଉପରେ - ମୁଁ ମଧ୍ୟ କହିଥିଲି କିଛି ଆମ କଥା ସାହିତ୍ୟ ଉପରେ - ଯେଉଁଥିରୁ ମନେ ହେଲା ଯେ ଯଥାର୍ଥରେ ଆମ ସାହିତ୍ୟ ଓ ସେଥିର ଧାରାପ୍ରବାହ ଭିନ୍ନ ନୁହେଁ ପରସ୍ପର ଠାରୁ ଏବଂ ଏଇ ଦିଆନିଆର କ୍ରମ ଯେତିକି ବଢ଼େଇ ପାରିବା ପରସ୍ପର ଭିତରେ ସେତିକି ଲାଭ ହେବ ଆମ ଦିହିଁଙ୍କର, ତଥା ଭାରତୀୟ ସାହିତ୍ୟର । ବିଦାୟୀ ଭାଷଣ ଦେଇଥିଲେ ତାଙ୍କର ସୁପ୍ରସିଦ୍ଧ ନାଟ୍ୟକାର ଡଃ. ଶିବରାମ କରନ୍ଥ ଏବଂ ତାଙ୍କ ପଛକୁ ଆମ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ । ଶେଷକୁ ମୋର ଧନ୍ୟବାଦ ଜ୍ଞାପନ ତଥା ପ୍ରତିଶ୍ରୁତି ଭବିଷ୍ୟତ ପାଇଁ । ଅୟମାରମ୍ଭ ଶୁଭାୟ ଭବତୁ । ଅଧିବେଶନର ବିବରଣୀ ବଡ଼ ବଡ଼ ଶିରୋନାମା ସହ ବାହାରି ଥିଲା ଇଣ୍ଡିଆନ୍ ଏକ୍ସପ୍ରେସ୍ ସମେତ ବାଂଗାଲୋର୍‌ରୁ ପ୍ରକାଶିତ ବିଭିନ୍ନ ଦୈନିକ ଖବରକାଗଜ ମାନଙ୍କରେ । ମୋ ପ୍ରତିଶ୍ରୁତିରେ ଗୋଟିଏ ମଜାକଥା ମଧ୍ୟ ଥିଲା ଯାହା ଖବରକାଗଜମାନଙ୍କରେ ଉଦ୍ଧୃତ ହୋଇଥିଲା । ମୁଁ କହିଥିଲି, ଇତିହାସରୁ ମିଳିଥିବା ଗୋଟିଏ ତଥ୍ୟକୁ ମନେ ପକାଇ, ଯେ ଆମର ଜଣେ ରାଜା ତାଙ୍କ ଝିଅକୁ ବାହା ଦେଇଥିଲେ ଏଠି, ଏଠିକାର ଯୁବରାଜଙ୍କ ସାଙ୍ଗରେ ଏବଂ ଆଜି ଯେଉଁ ଆତିଥ୍ୟ ପାଇଛୁ ଝିଅ ଘରକୁ ଆସି, ତା ଆମେ ଭୁଲି ପାରିବୁ ନାହିଁ । ଏବଂ ଆମେ ଅନାଇ ବସିବୁ କେବେ ଆମକୁ ସୁଯୋଗ ମିଳିବ କ୍ୱାଇଁ କୁଣିଆଁକୁ ଯଥାବିଧି ଚର୍ଚ୍ଚା କରିବା ପାଇଁ । ସମାରୋହର ଆଖିଝଲସା ପ୍ରଦର୍ଶନ ଛଡ଼ା ଯେଉଁ ଚିହ୍ନାଚିହ୍ନି ହେଲା ଦୁଇପକ୍ଷର ସାହିତ୍ୟିକ ମାନଙ୍କ ଭିତରେ, ତାହାହିଁ ଏକ ବିରଳ ଅନୁଭୂତି ଥିଲା ଆମ ସମସ୍ତଙ୍କ ପାଇଁ । ଫେରି ଆସିଲା ବେଳକୁ ମୁଁ କହୁଥିଲି ନିଜକୁ - ମୁଁ କଣ ତୁଛାଟାକୁ ବଢ଼େଇ କରୁଥିଲି ସେଦିନ ଯେ ଆମ ସାଂପ୍ରତିକ ଦିନେ ଏକ ସର୍ବଭାରତୀୟ ଆନ୍ଦୋଳନରେ ପରିଣତ ହେବ ?

'କଥାକୁହା'ର କ୍ରମରେ ବେଶ୍ କେତୋଟି ନୂଆ ଅନୁଭୂତି ଥିଲା ମୋ ପାଇଁ ଏ ବର୍ଷ । ଯାହାକୁ ସ୍ୱାଗତଯୋଗ୍ୟ ବୋଲି କୁହାଯିବ । ଏକାଧିକବାର କେତୋଟି ସାହିତ୍ୟିକଙ୍କୁ 'ନିଜ କଥା' କହିବାର ସୁଯୋଗ ମିଳିଥିଲା ଆକାଶବାଣୀ ଜରିଆରେ । ଥରେ ମଧ୍ୟ ମୋର ଗୋଟିଏ ଗପ 'ଛକତିର ଶ୍ରୀକୃଷ୍ଣ' ପଢ଼ି ଶୁଣାଇଥିଲି ଶ୍ରୋତାମାନଙ୍କୁ । ଏବଂ ଏଇ ବର୍ଷ ପ୍ରଥମେ ମୁଁ ଗୋଟିଏ ସାକ୍ଷାତ୍‌କାର ଦେଇଥିଲି ଦୂରଦର୍ଶନ ପରଦାରେ । ମୋତେ ପ୍ରଶ୍ନ ପଚାରୁଥିଲେ ଅଧ୍ୟାପିକା ମାଳବିକା ରାୟ । ହେଲେ ଏଇ କଥାକୁହାପଣକୁ ଏଭଳି ଗୋଟିଏ ଅନୁଭୂତି ମଧ୍ୟ ମିଳିଥିଲା ମୋତେ, ଯାହାକୁ ସୁଖକର ବୋଲି କୁହାଯିବ ନାହିଁ । ଲେଖକସାମ୍ମୁଖ୍ୟ ଦ୍ୱାରା ଆମନ୍ତ୍ରିତ ହୋଇ ମୋତେ ଗୋଟିଏ ଭାଷଣ ଦେବାକୁ ପଡ଼ିଥିଲା ପାରଳାଖେମୁଣ୍ଡିରେ

ଅନୁଷ୍ଠିତ ଏକ ସାହିତ୍ୟ ସଭାରେ । କିନ୍ତୁ ବସ୍ତୁତଃ ତାହା ଥିଲା ଗୋଟିଏ ମେଳା । ଏବଂ ମୁଁ ଭୁଲିଗଲି ଯେ ଏଇ ମେଳାକୁ ଆସିଥିବା ଲୋକେ ଯାହା ଶୁଣିବାକୁ ଚାହାନ୍ତି ତମଠୁଁ, ତାହା କେବଳ ଜଣେ ନେତାଜାତୀୟ ବାଗ୍ମୀ ଶୁଣାଇ ପାରିବ, କେଉଁ ସାହିତ୍ୟିକ ନୁହେଁ । ତେଣୁ ମୁଁ ଯେତେବେଳେ କହି ଚାଲିଛି ଓଡ଼ିଆ ତଥା ଭାରତୀୟ ସାହିତ୍ୟର ପରିସ୍ଥିତି ଓ ଭବିଷ୍ୟତ ବିଷୟରେ, ମୋତେ ଅବିଳମ୍ବେ ଜନତାର ବିଦ୍ରୂପାତ୍ମକ 'ଥୀରି ତାଳି', Slow clapping ଶୁଣିବାକୁ ପଡ଼ିଲା । ଅର୍ଥାତ୍ ଦୟାକରି ଶୀଘ୍ର ଶେଷ କରି ଦିଅନ୍ତୁ ଆପଣଙ୍କର ଏଇ ସାରଗର୍ଭକ ଭାଷଣ । ଆମର ଧୈର୍ଯ୍ୟ ତୁଟିଗଲାଣି । ସେଇଦିନଠୁଁ ଯେଉଁ ଶିକ୍ଷା ମିଳିଲା ମୋତେ ତାହା ହେଉଛି ଏଇ ଯେ ମନେ ରଖିବାକୁ ହେବ ମୁଁ ବାଗ୍ମୀ ନୁହେଁ କି ସେଦିଗରେ ମୋର କୌଣସି ଉଚ୍ଚାଭିଳାଷର ଅବକାଶ ନାହିଁ ଏଇ ବୟସରେ । ତେଣୁ ସେମିନାର୍ ଓ ବୈଠକ କଥା ଭିନ୍ନ, ସାହିତ୍ୟ ନାଆଁରେ ଅନୁଷ୍ଠିତ ଯେକୌଣସି ସଭାରେ, ମୁଁ ବିଶେଷ କିଛି ଚିନ୍ତାଶୀଳ କଥା କହିବାର ଦୁଃସାହସ କରିବି ନାହିଁ ଏବଂ ଯାହା କିଛି କହିବି, ତାହା ଲିଖିତ ଭାଷଣ ନ ହେଲେ ମଧ୍ୟ ଗୋଟିଏ ଲିଖିତ ଚିଠାକୁ ଆଶ୍ରୟ କରିବା ଉଚିତ । ମୋର ବିଶ୍ୱାସ ମୁଁ ଏଇ ପାଠ ଭୁଲି ନାହିଁ ଆଜିଯାଏଁ ।

ତେବେ ସଭାସମିତିରେ ବକ୍ତବ୍ୟ ବାଢ଼ିବା ଦିଗରେ କେତୋଟି ଉଲ୍ଲେଖନୀୟ ଓ ସନ୍ତୋଷଜନକ ଅନୁଭୂତି ମଧ୍ୟ ଥିଲା ଏଇ ବର୍ଷ । ଭୁବନେଶ୍ୱରରେ ଅଗଷ୍ଟ ୧୩ ତାରିଖରେ "National Institute of Culture" ନାମକ ଏକ ସଂସ୍ଥାର ଆନୁକୂଲ୍ୟରେ ଗୋଟିଏ ସେମିନାର୍ ଆୟୋଜିତ ହୋଇଥିଲା, ଯେଉଁଠି ମୁଁ "Cultural cross-currents in the present society" ନାମକ ବିଷୟବସ୍ତୁ ଉପରେ ଗୋଟିଏ ଇଂରାଜି ପ୍ରବଂଧ ପଢ଼ିଥିଲି । ଏବଂ ସେପ୍ଟେମ୍ବର ୨୦ ତାରିଖରେ କଲିକତାରେ ଭାରତୀୟ ଭାଷା ପରିଷଦ ଦ୍ୱାରା ଆୟୋଜିତ ଗୋଟିଏ ସେମିନାର୍‌ରେ "Indian short story today" ଉପରେ ଗୋଟିଏ ପ୍ରବଂଧ ପଢ଼ିଥିଲି । ଓଡ଼ିଶାରୁ ଆଉ ଜଣେ ଆମନ୍ତ୍ରିତ ଅତିଥି ଆସିଥିଲେ ଏଇ ସଭାକୁ । ବିଶିଷ୍ଟ ପ୍ରାବଂଧିକ ଓ କଥାକାର ଚନ୍ଦ୍ରଶେଖର ରଥ । ଏଇଠି ମୁଁ ତାଙ୍କୁ ପ୍ରଥମେ ଚିହ୍ନିଲି ଚିହ୍ନିଲା ଭଳି ଏବଂ ତାହା ଥିଲା ଏକ ବିଶେଷ ବ୍ୟକ୍ତିଗତ ତଥା ସାହିତ୍ୟଉପଯୋଗୀ ଲାଭ ମୋ ପାଇଁ ।

ଭାରତୀୟ ସାହିତ୍ୟର ସେବାର୍ଥେ ମୋତେ ଗୋଟିଏ ବିଶେଷ ଉଦ୍ୟମର ଆନନ୍ଦ ମିଳିଲା ଏ ବର୍ଷର ଶେଷ ବେଳକୁ । ଯାହା ପୂର୍ବରୁ କହିଛି, ମୁଁ ସାଂପ୍ରତିକ ତଥା "Oriya writing Today"ର ସଫଳତା ଦିଗରେ ଉପଯୋଗୀ ଅନୁବାଦ ପ୍ରସ୍ତୁତ କରିବାରେ ଲାଗି ପଡ଼ିଥିଲି, କମଳାକାନ୍ତ ମହାପାତ୍ର ଆଦି ଅଳ୍ପ କେତେକ ଅନୁବାଦକମାନଙ୍କ ସହଯୋଗକ୍ରମେ । ଏବଂ କିଛି ବାଟ ଆଗେଇ ଯାଇଥିଲି ଇତି ମଧ୍ୟରେ । ମୋର ବେଶ୍ କିଛି ଓଡ଼ିଆ ଗଳ୍ପର ସ୍ୱରଚିତ ଇଂରାଜି ଅନୁବାଦ ଏବଂ ମୌଳିକ ଇଂରାଜି ପ୍ରବଂଧ ମଧ୍ୟ ପ୍ରକାଶ ପାଇଲାଣି

"Indian Literature" ଆଦି ବିଭିନ୍ନ ପତ୍ରପତ୍ରିକାରେ । ତେଣୁ ଏ ଦିଗରେ ମୋର ବିଶେଷ ଆଗ୍ରହ ଏବଂ ଅଭିଜ୍ଞତା ଅଜଣା ନ ଥିଲା ସାହିତ୍ୟିକ ମହଲରେ । ଯାହାହେତୁ ମୋର ଅନୁବାଦପ୍ରବଣତାକୁ ଗୋଟାଏ ବଡ଼ ଖୋରାକ୍ ମିଳିଲା ଯେତେବେଳେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ମୋତେ ଆମନ୍ତ୍ରିତ କଲେ ଦିଲ୍ଲୀରେ ଆୟୋଜିତ "National Literary Translation Workshop" ନାମକ ଏକ ପ୍ରଲମ୍ବିତ କର୍ମଶାଳାର Resource person (ଉପଦେଷ୍ଟା) ଭାବରେ ଯୋଗ ଦେବା ପାଇଁ । ଓଡ଼ିଆ ସାହିତ୍ୟର ଇଂରାଜି ଅନୁବାଦ ତଥା ଇଂରାଜି ସାହିତ୍ୟର ଓଡ଼ିଆ ଅନୁବାଦ ପ୍ରତି ଆଗ୍ରହ ଦେଖାଇଥିବା କେତେକ ଲେଖକ ସାହିତ୍ୟିକ ମାନଙ୍କୁ ନେଇ ଆମର ଗୋଟିଏ ସ୍ୱତନ୍ତ୍ର ଗ୍ରୁପ୍ ଗଢ଼ା ହୋଇଥିଲା ଏବଂ ମୁଁ ଥିଲି ତାର ମୁଖ୍ୟ । ସେହି ଭାବରେ ଅନ୍ୟାନ୍ୟ ଭାରତୀୟ ଭାଷାକୁ ନେଇ ବିଭିନ୍ନ ଗ୍ରୁପ୍ । ପ୍ରାୟ ଦୁଇ ସପ୍ତାହ ବ୍ୟାପୀ ଏଇ କର୍ମଶାଳା ବିଶେଷ ଲାଭଜନକ ଥିଲା ମୋ ପାଇଁ, ଠିକଣା ଅନୁବାଦକମାନଙ୍କୁ ଚିହ୍ନି, ସେମାନଙ୍କୁ ଯଥାକ୍ରମେ ମୋର ନିଜ ଅନୁବାଦ ଉଦ୍ୟମରେ ସାମିଲ୍ କରିବା ଲାଗି । କହିବା ବାହୁଲ୍ୟ ଯେ ଅନୁବାଦ ସାହିତ୍ୟକୁ ନେଇ ଏଇ ଆଦାନ ପ୍ରଦାନ, ବ୍ୟକ୍ତିଗତ ଚିହ୍ନାଚିହ୍ନି ସମେତ, ଏହାର ମୂଲ୍ୟ କିଛି କମ୍ ନ ଥିଲା ଆମ ସମସ୍ତଙ୍କ ପାଇଁ ।

ବ୍ୟାପକ 'ସାହିତ୍ୟିକ' ଦିଆନିଆ, ହେଲମେଲ ଓ କଥାକୁହା ସତ୍ତ୍ୱେ ମୋର କଲମ ମଧ୍ୟ ଯଥେଷ୍ଟ ସକ୍ରିୟ ଥିଲା ଏଇ ଦୁଇବର୍ଷ ଯାକ । ଅନେକ ଗଳ୍ପ, କବିତା ଓ ପ୍ରବଂଧ ଲେଖିଛି, କେତୋଟି ଇଂରେଜି କବିତା ସମେତ । କିନ୍ତୁ ଲେଖାଲେଖି ଦିଗରେ ଗୋଟିଏ ବିଶେଷ କାମ ଆରମ୍ଭ କରିଥିଲି ୧୯୮୬ ମସିହାରେ, ଯାହାକୁ ଅଭିନବ ବୋଲି କୁହାଯିବ । ''ତିରିଶ ବର୍ଷର ଗଳ୍ପ ଓ ଆଳାପ ।'' ପ୍ରକାଶକ ବଂଧୁ ଯେତେବେଳେ କହିଲେ ଯେ କେତୋଟି ଗ୍ରନ୍ଥାବଳୀ ଛପେଇଲେ ହେବ ଆପଣଙ୍କର ଗଳ୍ପଗ୍ରନ୍ଥମାନଙ୍କୁ ନେଇ, ଗୋଟିଏ ଅପୂର୍ବ ଇଚ୍ଛା ଛୁଇଁଲା ମୋ ମନକୁ । ଭାବିଲି ମୁଁ ସେଇ ଗଳ୍ପଗୁଡ଼ିକୁ ପଢ଼ିବି ଏବଂ ଅନୁଭବ କରିବି, ଏତେଦିନ ହେଲା ତାଙ୍କଠୁଁ ଦୂରେଇ ଆସିଲା ପରେ । ଏବଂ ତାକୁ ମଧ୍ୟ ପ୍ରକାଶ କରିବି, ସେଇ ଅନୁଭବ ବିଚିତ୍ରା । କ୍ଷତି କଅଣ ? ପ୍ରକାଶକ ଟିକିଏ ବିସ୍ମିତ ହେଲେ ସତ, କିନ୍ତୁ ସସ୍ମିତ ହଁ ଭରିଲେ । ଧନ୍ୟବାଦ । ସେଇଠୁଁ ମୁଁ ଲେଖିଗଲି ମୋର ପ୍ରବଂଧଜାତୀୟ ଟୀପ୍‌ପଣୀ ମୋର ପ୍ରତ୍ୟେକ ପ୍ରକାଶିତ ଗଳ୍ପ ଉପରେ । ଏବଂ ଡିସେମ୍ବର ମାସରେ ମୁଁ ଏଇ ଅତିବିଶିଷ୍ଟ ଗ୍ରନ୍ଥାବଳୀର ପ୍ରଥମ ଭାଗ ପାଇଁ ମୋର ପ୍ରଥମ ଚାରିଗୋଟି ଗଳ୍ପ ସଂକଳନ ''ଭଂଗା ଖେଳଣା'', ''ଘର ବାହୁଡ଼ା'', ''ଲକ୍ଷ ବିହଂଗ'' ଓ ''ମଣିହରା''ରେ ଥିବା ୪୧ ଗୋଟି ଗଳ୍ପ ଉପରେ ମୋର ଆଳାପ ପ୍ରସ୍ତୁତ କରି ଦେଇ ଆସିଲି ଫ୍ରେଣ୍ଡସ୍ ପବ୍‌ଲିସର୍ସ୍‌ର କର୍ତ୍ତା ସହଦେବ ପ୍ରଧାନଙ୍କ ହାତରେ । ଏବଂ କଥା ଦେଇ ଆସିଲି ଯେ ଯେତେଦିନ ଯାଏ ମୋର ଗପଲେଖା ଚାଲିଥିବ, ସେତେଦିନ ଯାଏଁ ଚାଲିଥିବ ମୋର ଏଇ ଆଳାପର କ୍ରମ ଏବଂ ମୁଁ ତାର ଚିଠା ପହଞ୍ଚେଇ ଦେବି ତାଙ୍କ ପାଖରେ, ତାଙ୍କ ଗ୍ରନ୍ଥାବଳୀ ପାଇଁ ।

୧୯୮୫ ମସିହାରେ ମୋର କୌଣସି ନୂଆ ବହି ପ୍ରକାଶ ପାଇ ନ ଥିଲା, ଅନୁଦିତ ଗଳ୍ପର ସମାହାର "Wild Peacock and Other Stories" ଛଡ଼ା । କିନ୍ତୁ ୧୯୮୬ରେ ପ୍ରକାଶ ପାଇଲା ମୋର ଦଶମ ଗଳ୍ପ ସଂକଳନ 'ଶୀତ ଲହରୀ' ଏବଂ ମୋର ପ୍ରଥମ ଓଡ଼ିଆ ପ୍ରବଂଧ ସଂକଳନ ''ଲେଖକର ସଂସାର'' ।

ଏବଂ ୧୯୮୬ ପୁଣି ଗୋଟିଏ ଅନୁଷ୍ଠାନଭିତ୍ତିକ ସ୍ୱୀକୃତି ଆଣି ଦେଇଥିଲା ମୋତେ । IMFAA ଶିଳ୍ପସଂସ୍ଥା ଦ୍ୱାରା ଅନୁଷ୍ଠିତ ସପ୍ତମ 'ଶାରଳା ପୁରସ୍କାର', ମୋର ଗଳ୍ପସଂକଳନ 'ଭିନ୍ନ ପାଉଁଶ' ପାଇଁ । ସବୁ ବର୍ଷ ପରି ରଜ ସଂକ୍ରାନ୍ତି ୧୪ ଜୁନ୍‌ରେ ଏହି ଉତ୍ସବ ଅନୁଷ୍ଠିତ ହୋଇଥିଲା । କେରଳର ବିଶିଷ୍ଟ ଔପନ୍ୟାସିକ ଓ ଜ୍ଞାନପୀଠ ପୁରସ୍କାର ବିଜେତା ଥାକାଜି ଶିବଶଙ୍କର ପିଲାଇ ଥିଲେ ଏଇ ସଭାର ମୁଖ୍ୟ ଅତିଥି ଏବଂ ଡକ୍ଟର ରାଧାନାଥ ରଥ ସେଥିର ସଭାପତି । ମୋର ଧନ୍ୟବାଦ ଜ୍ଞାପନ ଭାଷଣର ସାରକଥା ଥିଲା ଏଇ ଯେ ଗଳ୍ପବିଶେଷ ସାହିତ୍ୟ ହୋଇପାରେ କିନ୍ତୁ ସାହିତ୍ୟ ଗଳ୍ପ ନୁହେଁ । ଏବଂ ସାହିତ୍ୟରଚନା ଏକ ଉଲ୍ଲାସ ତଥା ଯନ୍ତ୍ରଣାଦାୟକ ପ୍ରଜ୍ୱଳନ ଯେଉଁଥିରେ ଏକାଧାରରେ ଚଡ଼ଚଡ଼ ହୋଇ ଜଳିବା ଏବଂ ଝଲି ଉଠିବା ହେଉଛି ଲେଖକର ଦଶା । ଏବଂ ଆମର ଆଶା ସୁଧୀ ସମାଜ ସେଥିର ସମ୍ମାନ ଦେବ, ସହାନୁଭୂତି ସହ ।

ସୁଖର ବିଷୟ ଯେ ମୋ ଲେଖକୀୟ ସାହିତ୍ୟିକ ଜୀବନର ଏହି ପ୍ରକାର ଉଜ୍ୱଳନ-ପ୍ରଜ୍ୱଳନ ସାଙ୍ଗକୁ ବିଶେଷ କିଛି ଦୁଃଖ ନ ଥିଲା ପରିବାରଙ୍କ ତରଫରୁ । ଅପରଂତୁ ମୋତେ ଯଥେଷ୍ଟ ଆନନ୍ଦ ଓ ଗର୍ବ ଆଣି ଦେଇଥିଲା ଆମର କ୍ୟାନେଡ଼ାକୁ ଯାଇଥିବା ଦ୍ୱିତୀୟ ଝିଅ ଚିନୁ । ସେ ୟୁନିଭର୍ସିଟୀ ଅଫ୍ ବ୍ରିଟୀଶ୍ କଲମ୍ବିଆରୁ "Town and country planning" ବିଷୟରେ ଡକ୍ଟରେଟ୍ ହାସଲ କଲା । ସେ ମଧ୍ୟ ଏଇ ବର୍ଷ ସ୍କଟ୍ ରେନିଆର୍ଡ଼ ନାମକ ଜଣେ କ୍ୟାନେଡ଼ିଆନ୍ ଯୁବକକୁ ବାହାହୋଇ ଘରସଂସାର କଲା । ସେ ଯେତେବେଳେ ଆମକୁ ପ୍ରଥମେ ଲେଖିଲା ଏ ବିଷୟରେ ଆମର ଅନୁମତି ପାଇବା ପାଇଁ, ଆମକୁ ଟିକିଏ ଅଡୁଆ ଲାଗିଥିଲା ନିଶ୍ଚୟ, ଯେ ସେ ଗୋଟିଏ ବିଦେଶୀକୁ ବାହା ହେବାକୁ ଯାଉଛି, ଯେଉଁମାନଙ୍କ ସଂସ୍କୃତି ଆମ ଦେଶର ସଂସ୍କୃତିଠାରୁ ପୂରାପୂରି ଭିନ୍ନ ବୋଲି ମନେ ହୁଏ । ହେଲେ ଆମେ ତାକୁ ଆମର ଶୁଭେଚ୍ଛା ଓ ଶୁଭାଶୀର୍ବାଦ ଜଣାଇବାରେ ଡେରି କରି ନଥିଲୁ । ଏବଂ ଆଜି କହିବାରେ ଆପତ୍ତି ନାହିଁ ଯେ ଆମର ଏଇ 'ବିଦେଶୀ', ହେଲେ ବିନୟୀ ଓ ମିଷ୍ଟଭାଷୀ ଜ୍ୱାଇଁଟି ଆମର ସମସ୍ତ ଦ୍ୱିଧାକୁ ଅକାରଣ ବୋଲି ପ୍ରମାଣ କରି ଦେଇପାରିଛି ।

ଏହି ବର୍ଷ ପୂରା ନ ହେଉଣୁ ଆମର ତୃତୀୟ ଝିଅ ବିଶ୍ୱଜିତା ଓରଫ୍ ବେବି ତାର ଦ୍ୱିତୀୟ ସନ୍ତାନର ମାଆ ହେବାକୁ ବସିଲା । ଏବଂ ଛାତିଟା ଥରି ଉଠିଲା ଆନନ୍ଦମିଶା ଉଦ୍‌ବିଗ୍ନରେ ଯେତେବେଳେ ସବାସାନ ଝିଅ ବିଦ୍ୟା ଓରଫ୍ କୁନ୍‌ବେବି ଆମକୁ ଜଣାଇଲା ଯେ ସେ ମଧ୍ୟ

ଅନ୍ତଃସତ୍ୱା ହୋଇଛି । ସେତେବେଳେ ବିନୀତ ଲେଖକ ମନେ ମନେ ପ୍ରାର୍ଥନା କଲା, ବ୍ୟାକୁଳତାର ସହ - ଏଥର ତା ପିଲାଟି ବଞ୍ଚି ରହୁ ଭଗବାନ୍ ! ଖାଲି ସେତିକି ନୁହେଁ, ମୁଁ ମଧ୍ୟ ଗୋଟିଏ 'ମାନସିକ' କଲି । ଯେ ଯେଉଁ ଜଣେ ସନ୍ନ୍ୟାସୀଙ୍କ ପ୍ରତି ମୋର ଗଭୀର ଭକ୍ତି ଓ ଶ୍ରଦ୍ଧା ରହିଛି, କନ୍ୟାକୁମାରୀରେ ଥିବା ସେହି ମହାପୁରୁଷ ସ୍ୱାମୀ ବିବେକାନନ୍ଦଙ୍କ ସ୍ମୃତିପୀଠକୁ ମୁଁ ଅବଶ୍ୟ ଯିବି, ଯଥାଶୀଘ୍ର ଯିବି ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଆସିବା ପାଇଁ । କୁନ୍‌ବେବିର ସୁସ୍ଥସବଳ ପିଲାଟିଏ ଜନ୍ମ ହେଲା ଉତ୍ତାରୁ ।

ନିଜକୁ ବୁଦ୍ଧିବାଦୀ ତଥା ବାସ୍ତବବାଦୀ ଲେଖକ ବୋଲାଉଛି ବୋଲି ମୋର କଣ ନିହାତି ଗୋଟାଏ ସଫେଇ ଦେବା ଦରକାର ଏଇ ସର୍ବସାଧାରଣ ଦୁର୍ବଳତା ପାଇଁ ? ମୁଁ କଣ ପୂର୍ବରୁ କହିନାହିଁ, କେମିତି ପନ୍ଦର ବର୍ଷ ତଳେ ମୋ ବଡ଼ଝିଅ ହୀନୁର ଜୀବନ ଯେତେବେଳେ ସଂକଟାପନ୍ନ ହୋଇ ଉଠିଲା ପୋଷ୍ଟ ଅପରେସନ୍ ଗଣ୍ଡଗୋଳ ହେତୁ, ମୁଁ ଜ୍ୟୋତିଷ ପୁରୋହିତ ମାନଙ୍କର ଏଣୁତେଣୁ ପରାମର୍ଶ ମାନି ନେଇ ଯାବତୀୟ ନିରର୍ଥକ କାମ କରୁଥିଲି ଦୁଷ୍ଟ ଗ୍ରହମାନଙ୍କୁ ଶାନ୍ତ କରିବା ଲାଗି ? ମନେ ମନେ ନିଜକୁ ଯେତେ ଛିଗୁଲେଇଲେ ମଧ୍ୟ ? ହଁ, ମୁଁ ମାନୁଛି ଯେ ରକ୍ତମାଂସଧାରୀ ମଣିଷ ହିସାବରେ ମୁଁ ମଧ୍ୟ ଦୁର୍ବଳ ହୋଇ ପଡ଼େ ବେଳେ ବେଳେ, କେଉଁ ବିପତ୍ତିରୁ ଖସି ଆସିବା ଲାଗି । କିନ୍ତୁ ଏହା ମଧ୍ୟ ସତ ଯେ ମୁଁ ନାସ୍ତିକ ନୁହେଁ କି ହୋଇପାରିବି ନାହିଁ । କାରଣ ମୋର ବିଶ୍ୱାସ ଯେ ଜନ୍ମଗତ ବୁଦ୍ଧିବିଚାରକୁ ଶୁଆଇ ନ ପକେଇ ଯେତେ ଖଟେଇଲେ ମଧ୍ୟ ତାହା ଏଇ ଜନ୍ମମୃତ୍ୟୁର ରହସ୍ୟକୁ ଉନ୍ମୋଚିତ କରିପାରିବ ନାହିଁ । ଏବଂ ସେଇ ରହସ୍ୟର ଅଧିପତି ହେଉଛନ୍ତି ଭଗବାନ୍ ନାମକ ନିରାକାର ଶକ୍ତି ଅଥବା କଳ୍ପନାରେ ଗଢ଼ା ବାପା କି ମାଆଟିଏ । ସେହେତୁ ମୁଁ ବେଦାନ୍ତର ଆଗ୍ରହୀ ଏବଂ ସ୍ୱାମୀ ବିବେକାନନ୍ଦଙ୍କର ଅନୁଗତ । କାରଣ ସ୍ୱାମୀଜିଙ୍କ ଦର୍ଶନରେ ବୁଦ୍ଧିଜ୍ଞାନର ଉତ୍‌କର୍ଷ ରହିଛି, ହେଲେ ସେ କହିଛନ୍ତି ସେତିକିରେ ଚଳିବ ନାହିଁ । ଯଥାର୍ଥରେ ଉପଲବ୍‌ଧି ପାଇବାକୁ ହେଲେ ତମକୁ ନିଜଠାରୁ ମୁକ୍ତ ହେବାକୁ ପଡ଼ିବ, ଏବଂ ତାର ସାଧନ ପୂଜାପାଠ ନୁହେଁ । ସେସବୁ ହୁଏତ ଗୋଟାଏ ଅନୁକୂଳ ବାତାବରଣ ଆଣି ଦେଇପାରେ, କିନ୍ତୁ ତାଠୁ ଅଧିକ ନୁହେଁ । ଏବଂ ଅଧିକାଂଶରେ ସେଇ ସବୁ ଉପଚାର ତମକୁ ପ୍ରବର୍ତ୍ତାଏ ନିଜକୁ ଠକେଇବା ପାଇଁ । ଏହି ମୁମୁକ୍ଷା ସଂକ୍ରାନ୍ତରେ ସେ କହିଥିଲେ ଗୋଟିଏ କଥା । କହିଲେ "Stop creating and you will know the truth" । ସର୍ଜନା ବନ୍ଦ କର, ତାହେଲେ ଯାଇ ତମେ ସତ୍ୟକୁ ଜାଣିପାରିବ । ଏଇ ସର୍ଜନା ଶବ୍ଦଟିକୁ ସେ ସମସ୍ତ ଅର୍ଥରେ ବ୍ୟବହାର କରିଛନ୍ତି, ଦୈହିକ ତଥା ମାନସିକ, ଯାହା ଅହଂଭାବର ପରିଚାୟକ । ଯେ ମୁଁ ଅଛି ଏବଂ ମୁଁ କରିଛି, ମୁଁ ୟା'କୁ ସୃଷ୍ଟି କରିଛି । କିନ୍ତୁ ହାୟ । ମୁଁ ପରା ସୃଜନଲୋଭୀ କଳାକାରଟିଏ ? ବୁଢ଼ା ହେଲିଣି ଆସି, ହେଲେ ମୁଁ ସେଇ ଲୋଭଟିକ ଛାଡ଼ି ପାରୁଛି କେଉଁଠୁ ? ଯାହାହେଉ ମୋର, ସେଇ ମାନସିକଟିକୁ ଭଗବାନ୍ କିମ୍ବା ବିବେକାନନ୍ଦଙ୍କ ସାଙ୍ଗରେ ଗୋଟାଏ

କଷ୍ଟାକୁ ବୋଲି ଭାବନ୍ତୁ ନାହିଁ । ତାହା ଏକ ବ୍ୟାକୁଳ ଏବଂ ଅନ୍ତରତମ ପ୍ରାର୍ଥନାର ଉଚ୍ଚାରଣ ଛଡ଼ା ଆଉ କିଛି ନ ଥିଲା । ଯେ ଏଥର କୁନ୍‌ବେବିର ସୁସ୍ଥସବଳ ପିଲାଟିଏ ହେଉ, ବଞ୍ଚି ରହିବାର ନିଶ୍ଚିତ ପ୍ରତିଶ୍ରୁତି ନେଇ । ତାହେଲେ ସିନା ମୁଁ ସକୃତଜ୍ଞ ହୋଇ ଏବଂ ଷୋଳଅଣା ସରାଗରେ ଧାଇଁ ଯାଇ ପାରିବି ଆପଣଙ୍କ ପାଖକୁ ଏବଂ ମୋର ଶ୍ରଦ୍ଧାଞ୍ଜଳି ଦେଇ ଆସିବି ଆପଣଙ୍କୁ, ଯାହା ମୁଁ ଅନେକ ଦିନୁ ଭାବିଛି ?

ଏବର୍ଷ ଆଉ ଗୋଟାଏ ସାମାନ୍ୟ ଘଟଣା ଘଟିଥିଲା ଯେଉଁଥିରେ କେବଳ ଈଷତ୍ ହସି ଦେଇ ନିଜକୁ ସାବାସ୍ ଦେଲେ ଚଳିଥାଆନ୍ତା । କିନ୍ତୁ ମୁଁ ମୋ ନିଜକୁ ନିରେଖି ଦେଖିବା ବଦ୍‌ଗୁଣକୁ ଛାଡ଼ି ପାରିଲି ନାହିଁ । ତେଣୁ ମୋତେ ଟିକିଏ ଲାଜ ଲାଗିଲା ମୋର ପ୍ରଶାସକ ଇମେଜ୍‌ର ସତମିଛକୁ ନେଇ । କଣ ହେଲା କି, ଦିନେ ଜଣେ ଭଦ୍ରଲୋକ ଆସି ପହଞ୍ଚିଗଲେ ଆମ କଟକ ଘରେ । ନମସ୍କାର ପୂର୍ବକ କହିଲେ ଯେ ତାଙ୍କ ନାଆଁ ଅମର ଦତ୍ତ । ସେ କୁଆଡ଼େ ଦିଲ୍ଲୀର ଏ.ଜି.ସି. ଆର୍. ଅଫିସ୍‌ରେ କାମ କରୁଥିଲେ, ଜଣେ ଅଡ଼ିଟର୍ ଭାବରେ, ମୁଁ ଯେତେବେଳେ ତାର ବଡ଼କର୍ତ୍ତା ହୋଇଥିଲି । ସେ ପୁରୀକୁ ଆସିଥିଲେ ଜଗନ୍ନାଥ ଦର୍ଶନ ପାଇଁ । ତାପରେ କଟକକୁ ଆସିଛନ୍ତି କେବଳ ମୋ ସାଙ୍ଗରେ ଦେଖା କରିବେ ବୋଲି । ଖୋଜି ଖୋଜି ଆସିଛନ୍ତି ମୋ ପାଖକୁ । ଧନ୍ୟବାଦ । ସେଇଠୁ ଦି'ପଦ କଥାଭାଷା ହେଲୁ ଆମେ ଅତୀତର ସ୍ମୃତିଚାରଣ କରି, ଏବଂ ଯତ୍‌ସାମାନ୍ୟ ଚା' ଜଳଖିଆ ମୁଁ ଆଣି ଦେଇଥିଲି ତାଙ୍କ ପାଇଁ, ଯାହାକୁ ମାମୁଲି ଅତିଥିସତ୍‌କାର ଛଡ଼ା ଆଉ କିଛି କୁହାଯାଇ ନପାରେ । କିନ୍ତୁ ଏ କଣ ? ମୋଠୁଁ ବିଦାୟ ନେଲା ବେଳକୁ ତାଙ୍କ ଆଖିରେ ଲୁହ । ଏଇ ଲୋକଟିକୁ ମୁଁ ବ୍ୟକ୍ତିଗତ ଭାବରେ ଚିହ୍ନି ନ ଥିଲି, ସେ ଏଠିକି ଆସି ମୋ ସାଙ୍ଗରେ ଦେଖା କଲା ପୂର୍ବରୁ । ତା'ର ମୁଁ କୌଣସି ବିଶେଷ ଉପକାର କରିଛି ବୋଲି ମୋର ମନେ ପଡୁନାହିଁ, ଏବଂ ସେ ମଧ୍ୟ ସେହି ମର୍ମରେ କିଛି କହିନାହିଁ ମୋତେ । ତଥାପି ଏଇ ଲୁହ ତା ଆଖିରେ । ଏତେ ସ୍ନେହଶ୍ରଦ୍ଧା ସେ କେମିତି ପାଇଲା ମୋଠୁଁ, ଯେଉଁଥିରେ ସେ ବାଂଧି ହୋଇଯାଇଛି କେଉଁ ନିଜ ଲୋକଟିଏ ପରି ? ଛାଡ଼, ନିହାତି ସେଣ୍ଟିମେଣ୍ଟାଲ୍ ପ୍ରାଣୀଟିଏ । ଏହି ଭାବରେ ମୁଁ ତାକୁ ଯଥାଶୀଘ୍ର ଆଡ଼େଇ ଦେଇ ପାରିଲି ମୋ ମନରୁ । ହେଲେ ମୋତେ ଟିକିଏ ଛୋଟ ଲାଗିଲା ନିଜକୁ ତା ତୁଳନାରେ ।

୧୯୮୭ର ଆରମ୍ଭ ହୁଏ ଏକ ଅପୂର୍ବ ପାରିବାରିକ ମିଳନର ଆନନ୍ଦକୁ ନେଇ । ଚିନୁ ଦିଲ୍ଲୀରେ ଆସି ପହଞ୍ଚିଲା ଜାନୁଆରୀ ୩ ତାରିଖରେ ତାର ନବ ବିବାହିତ ସ୍ୱାମୀ ସ୍କଟ୍‌କୁ ନେଇ । ଏବଂ ତାଙ୍କ ବାହାଘର ପୁଣି ଥରେ ଅନୁଷ୍ଠିତ ହେଲା ଦିଲ୍ଲୀର ଜଗନ୍ନାଥ ମନ୍ଦିରରେ । ତାପରେ ମୁଁ ଗୋଟିଏ ରିସେପ୍‌ସନ୍ ଦେଇଥିଲି ତାଙ୍କ ପାଇଁ ପଂଚଶୀଲ୍ କ୍ଲବ୍‌ରେ । ମୁଁ ଚିନୁକୁ କଟକ ବୁଲେଇ ନେଇଥିଲି କିଛି ଦିନ ପାଇଁ, ମୋ ବାପାବୋଉଙ୍କ ସାଙ୍ଗରେ ଦେଖା କରି ଆସିବା ଲାଗି । କିନ୍ତୁ ଦୁଃଖର ବିଷୟ ସ୍କଟ୍ ଯାଇପାରିଲା ନାହିଁ ନାନାଦି କାରଣରୁ, ତାର

ବିଶେଷ ଆଗ୍ରହ ସତ୍ତ୍ୱେ । ଯାହାହେଉ ମୁଁ ସ୍କଟ୍‌କୁ ନୂଆଦିଲ୍ଲୀ-ପୁରୁଣା ଦିଲ୍ଲୀ ବିଷୟରେ ଅନେକ ଇତିହାସ ଶୁଣେଇଛି ଏବଂ ଦେଖାଇଛି ସେଥିର ଆଧୁନିକ ବୈଚିତ୍ର୍ୟ । କେତେକାଂଶରେ ଚକିତ, ହେଲେ ଅଧିକାଂଶରେ ମୁଗ୍‌ଧ ହୋଇ ସ୍କଟ୍ ଶେଷକୁ କହିଛି ମୋତେ - ବାପା, ଇଣ୍ଡିଆ ପ୍ରକୃତରେ ଗୋଟିଏ ୱାଣ୍ଡର୍‌ଫୁଲ୍ ଦେଶ । ପୁରୁଣା ସାଙ୍ଗରେ ନୂଆକୁ ଏତେ ଚମତ୍କାର ଭାବରେ ମିଶେଇ ଦେଇପାରିଛନ୍ତି ଆପଣମାନେ, ଯେମିତିକି କାହାରି ଓଜନ କମ୍ ବୋଲି ମନେ ହେବ ନାହିଁ, ଯେ ଭାବି ଅବାକ୍ ହେବାକୁ ହୁଏ । ମୁଁ ତାର ପ୍ରଶଂସାକୁ ସିଧାସଳଖ ଗ୍ରହଣ କରି ନେଲି । ଏବଂ ଆଶା କଲି ଯେ ଭାରତରେ ବେଶି ଦିନ ରହି ଆହୁରି ଅନେକ ଜାଗାକୁ ଯାଇଥିଲେ ମଧ୍ୟ ତାର ଏଇ ଧାରଣା ବଦଳି ନ ଥାଆନ୍ତା । ଫେବୃଆରୀ ୧୨ ତାରିଖରେ କ୍ୟାନେଡ଼ାକୁ ଫେରିଗଲେ ସେମାନେ । ତା ପୂର୍ବଦିନ ଆମ ସମଗ୍ର ପରିବାର, ଆମ ସ୍ୱାମୀସ୍ତ୍ରୀଙ୍କ ଛଡ଼ା ଚାରି ଝିଅ, ପୁଅ, ସେମାନଙ୍କ ସ୍ୱାମୀ ଓ ପତ୍ନୀ, ତଥା ସେତେବେଳକୁ ଜନ୍ମ ହୋଇ ସାରିଥିବା ସବୁ ନାତିନାତୁଣୀଙ୍କୁ ନେଇ ଗୋଟାଏ ଫଟୋ ନିଆଯାଇଥିଲା, ଯାହା ଏକ ଅମୂଲ୍ୟ ହେଲେ ଅଶ୍ଳୀଳ ସ୍ମୃତିର ପାଥେୟ ହୋଇ ରହିଛି ଆମ ପାଇଁ । କାରଣ ଏଭଳି ଆଉ ଗୋଟାଏ ଫଟୋ ଉଠାଇବା ସଂଭବ ନୁହେଁ ଆଉ, ତା'ପୂରା ହୋଇପାରିବ ନାହିଁ ।

ସେବର୍ଷ ଆମେ ଅନେକ ଦିନ ରହିଗଲୁ ଦିଲ୍ଲୀରେ, ଅଗଷ୍ଟ ମାସ ଯାଏଁ । ତାର ମୁଖ୍ୟ କାରଣ ହେଉଛି ଅନ୍ତଃସତ୍ତ୍ୱା ଝିଅ ଦି'ଜଣଙ୍କୁ ନେଇ କୁମର କର୍ତ୍ତବ୍ୟବୋଧ ।

ଯଥା ସମୟରେ କୁନ୍‌ବେବିର ପିଲାଟିଏ ହେଲା ଏପ୍ରିଲ୍ ୧୬ ତାରିଖରେ, ସିଜରିଆନ୍ ଅପରେସନ୍ ଦ୍ୱାରା । ସୁସ୍ଥସବଳ ପୁତ୍ରସନ୍ତାନ । ଏବଂ ମୁଁ ନିଶ୍ଚୟ କଲି, ସ୍ୱାମୀଜିଙ୍କୁ କଥା ଦେଲି ବୋଲି କହିଲେ ହେବ, ଯେ ମୁଁ ଯଥାଶୀଘ୍ର ଯିବି କନ୍ୟାକୁମାରୀକୁ, ତାଙ୍କୁ ମୋର ପ୍ରଣତି ଜଣାଇବା ଲାଗି । ଦଗାଦିଆ ରୁକୁନ୍ ପରେ କେଓ୍ୱଲ୍ କୁନ୍‌ବେବି କୌଣସି ନାଆଁ ବାଛି ନ' ଥିଲେ ଯା ପାଇଁ । ମୋତେ ଅନୁରୋଧ କରାଗଲା । ଏବଂ କେମିତି କେଜାଣି ମୋ ମନକୁ ଆସିଲା ଯେ ଯେଉଁ ଧୀର ସମୀରଣ ବହେ ବେଳେବେଳେ ମଳୟ ପର୍ବତରୁ ତମର ଯାବତୀୟ ଦୁଃଖକଷ୍ଟକୁ ହରି ନେବାର ପ୍ରତିଶ୍ରୁତି ନେଇ, ଏଇ ପିଲାଟି କଣ ସେହି ଭାବରେ ଆସିନାହିଁ ତା ବାପାମାଆଙ୍କ ଜୀବନରେ ? ୱେଲ୍, ତା ନାଆଁ ମଳୟ ଦେଲେ କେମିତି ହୁଅନ୍ତା ? ସେଇ ନାଆଁ ଦିଆଗଲା ତାକୁ । ଷୋଳ ବର୍ଷ ପୂରିଲା ତାକୁ ଏବେ । ଭଲ ପଢ଼େ, ସୁନ୍ଦର ସ୍ୱାସ୍ଥ୍ୟ ପାଇଛି ଏବଂ ବିଶେଷ ଉଲ୍ଲେଖଯୋଗ୍ୟ ଯେ ସେ ମଧ୍ୟ ଗଳ୍ପ ଓ କବିତା ଲେଖେ, ଯାହା ଯଥାକ୍ରମେ ସାହିତ୍ୟ ବୋଲାଇପାରେ । ଆଉ କଣ ବାକୀ ରହିଛି ଅଜାର ମନୋବାଂଛା ପୂରଣ କରିବା ଲାଗି ?

ବେବିର ମଧ୍ୟ ପୁଅଟିଏ ହେଲା ଜୁନ୍ ୧୬ ତାରିଖରେ । ଅଳ୍ପବହୁତ ଚିନ୍ତା ଥିଲା ତା ପାଇଁ । କାରଣ ଡାକ୍ତର କହୁଥିଲେ ଯେ ପ୍ଲାସେଣ୍ଟା ଦୁର୍ବଳ, ପିଲାଟା ଗର୍ଭରେ ବଢୁ ନାହିଁ ଠିକ୍ ଭାବରେ । କିନ୍ତୁ ସେମିତି କିଛି ଜଣା ପଡ଼ିଲା ନାହିଁ ତା ଜନ୍ମ ହେଲା ପରେ ।

ଏବଂ ଚିନୁର ମଧ୍ୟ ପୁଅଟିଏ ଜନ୍ମ ହେଲା ଅକ୍ଟୋବର ୧୩ ତାରିଖରେ । ମୋର କ୍ୟାନେଡ଼ିଆନ୍ ସମୁଦୁଣୀ ତାଙ୍କ ଚିଠିରେ ଲେଖିଥିଲେ ଯେ ସେ ହେଉଛି ପୃଥିବୀର ସବୁଠାରୁ ସୁନ୍ଦର ନାତି । ତଥାସ୍ତୁ । ମୁଁ କିଏ କହିବାକୁ ଯେ ତାଠାରୁ ଆହୁରି ସୁନ୍ଦର ନାତି ଥାଇପାରନ୍ତି ହୁଏତ ? ସେମାନେ ମଧ୍ୟ ମୋତେ ଅନୁରୋଧ କଲେ ତାର ନାମକରଣ ପାଇଁ । ଏବଂ ଶରତ ଋତୁରେ ଜନ୍ମ ହୋଇଥିବା ହେତୁ, ତା ନାଆଁ ରହିଲା, ଶାରଦ, ମୋର ସୁପାରିଶ ଅନୁଯାୟୀ ।

ଏଣେ ବଡ଼ଝିଅ ଓ କ୍ୱାଇଁ ଦିଲ୍ଲୀରୁ ଯାଇ କଲିକତାରେ ଅଛନ୍ତି ଏଇକ୍ଷଣି । ମୁଁ ସେମାନଙ୍କୁ ଯାଇ ଦେଖିଆସିଛି କଲିକତାରେ । ବାର ତେର ବର୍ଷର ପୁଅ ଦି'ଜଣ ଅନୁରାଗ ଓ ଅଂଶୁମାନ୍ ଭଲ ପଢ଼ୁଛନ୍ତି । ସାନଟା ଟିକିଏ ବେଶି ଚଗଲା ହୋଇଛି ବୋଲି ମନେ ହୁଏ, ହେଲେ ସେଥିରେ ଭାବିବାର କିଛି ନାହିଁ । ପୁଅବୋହୂ ଦିଲ୍ଲୀରେ । ତାଙ୍କ ଚାରିବର୍ଷର ପୁଅ ପ୍ରଣୟ ବେଶ୍ ଗୁଲୁଗୁଲିଆ ଓ କଥାକୁହା ହୋଇଛି । ବେବିର ଝିଅ ଗୀତି ଓ ଧୀରୁର ଏଇ ପୁଅଙ୍କ ଭିତରେ ଚାଲିଥିବା ଖେଳକୁଦ, ହସଖୁସି ତଥା ଖୁଂପାଖୁଂପିର ଆତ୍ମୀୟତା ବିଶେଷ ଉପଭୋଗ୍ୟ ହୋଇଥାଏ ପରିବାର ପାଇଁ । ବିଶେଷତଃ ସେମାନଙ୍କ ଅଜା ଆଇ ଜେଜେବାପା-ଜେଜେମାଆଙ୍କ ପାଇଁ । ଏହି ଭାବରେ ମୋର ନାତିନାତୁଣୀ ନବରତ୍ନଙ୍କ ମଧ୍ୟରୁ ସାତଜଣ ଧରାପୃଷ୍ଠରେ ଅବତୀର୍ଣ୍ଣ ହୋଇ ତାଙ୍କର ଲୀଳାଖେଳ ଆରମ୍ଭ କରି ସାରିଥିଲେ, ୧୯୮୬ ମସିହା ସରିଲା ବେଳକୁ ।

ହେଲେ ମୋ ନିଜ କାମ କେଉଁଆଡେ ଗଲା ? କଣ କଲି ମୁଁ ଏତେ ଦିନ ଯାଏ ଦିଲ୍ଲୀରେ ବସି ? କହୁଛି ଶୁଣନ୍ତୁ ।

ମୋର ନିୟମିତ ଲେଖାଲେଖିରେ କୌଣସି ପରିବର୍ତ୍ତନ ଘଟି ନଥିଲା । ଆଗ ଭଳି ଓଡ଼ିଆ ଗଳ୍ପ, କବିତା ଓ ପ୍ରବଂଧ ଲେଖି ଚାଲିଥିଲି । ମଧ୍ୟ ଇଂରାଜିରେ ପ୍ରବଂଧ ଏବଂ ଓଡ଼ିଆ ଗଳ୍ପର ଇଂରାଜି ଅନୁବାଦ । ହେଲେ କେମିତି କେଜାଣି ଇଂରାଜିରେ ଗୋଟିଏ ହେଲେ କବିତା ଲେଖିନାହିଁ ଏ ବର୍ଷ । ଏବଂ କହିଲେ ଭୁଲ୍ ହେବ ନାହିଁ ଯେ ଇଂରାଜି କବିତାର ଧାରା ଏଇ ବର୍ଷ ଠାରୁ କ୍ରମଶଃ କ୍ଷୀଣ ହୋଇଗଲା ଏବଂ ପୂରାପୂରି ହଜି ଗଲା କେଉଁ ମରୁପଥରେ । ଆପେ ଆପେ । ମୁଁ ତାର କାରଣ ଯୋଗାଇବାକୁ ଅସମର୍ଥ ।

କିନ୍ତୁ ମୋର ପ୍ରବଂଧ ଲେଖାରେ ଗୋଟିଏ ବିଶେଷ ନୂଆ ଦିଗର ଅଗ୍ରାଧିକାର ଛୁଇଁଲା ମୋ ମନକୁ । ଭାବିଲି ଯେ ବୈକ୍ତିକ ପ୍ରବଂଧ (Personal essay)ତ ଅନେକ ଲେଖି ସାରିଲିଣି ନିଜର ଲେଖକୀୟ ତଥା ମାନବିକ ଅନୁଭୂତି ଏବଂ ବିଚାରଧାରାକୁ ନେଇ । କିନ୍ତୁ ମାନିବାକୁ ପଡ଼ିବ ଯେ ମୁଖ୍ୟତଃ ମୁଁ ଜଣେ କଥାକାର । ତାହାହିଁ ମୋର vocation, ଅର୍ଥାତ୍ ଆହ୍ୱାନମୂଳକ ପେଷା ଏବଂ ମୁଁ ଯଦି ତାର ତତ୍ତ୍ୱ ବିଷୟରେ କିଛି ଲମ୍ବା କଥା ନ

କୁହେ, ତାହେଲେ ଆଉ କହିବ କିଏ ? କିନ୍ତୁ ଏଇ ତତ୍ତ୍ୱକଥା ମୁଁ ଶୁଣେଇ ପାରିବି ନାହିଁ ଜଣେ ଅଧ୍ୟାପକ ଗବେଷକ ଶ୍ରେଣୀର ସାହିତ୍ୟିକ ପରି । କାରଣ ମୁଁ ତା ଭିତରକୁ ଆଣିବା ପାଇଁ ବାଧ୍ୟ, ମୋ ନିଜ ଅନୁଭୂତିରେ ଗଢ଼ା ମତାମତ । ନହେଲେ ମୋତେ ମିଛ କହିଲା ପରି ଲାଗିବ । କିନ୍ତୁ ସାପେକ୍ଷତା ଗ୍ରହଣୀୟ ହେବ ତ ତତ୍ତ୍ୱଦର୍ଶୀ ପଣ୍ଡିତ ସଭାରେ ? ଯାହାହେଉ ଦିଲ୍ଲୀରେ ଥିଲାବେଳେ ମୋତେ ଗୋଟାଏ ସୁଯୋଗ ଓ ଚ୍ୟାଲେଂଜ୍ ମିଳିଲା ଏଇ କଥାତତ୍ତ୍ୱ ବିଷୟରେ କିଛି ଲେଖିବା ଲାଗି । ଇନ୍ଦିରାଗାନ୍ଧି ଓପନ୍ ୟୁନିଭର୍ସିଟୀ' (IGNOU) "Creative writing" ଅର୍ଥାତ୍ ସୃଜନାତ୍ମକ ଲେଖା ଉପରେ ଗୋଟିଏ ଡିପ୍ଲୋମା ଦେବାର ବ୍ୟବସ୍ଥା କଲେ । ଏବଂ ଯେଉଁମାନଙ୍କୁ ଆମନ୍ତ୍ରିତ କରାଗଲା ସେଥିରେ ଭିତ୍ତିପ୍ରବଂଧମୂଳକ ପାଠ୍ୟକ୍ରମ ତିଆରି କରିବା ପାଇଁ, ତାଙ୍କ ଭିତରେ ମୋତେ ବି ସ୍ମରଣ କଲେ ସେମାନେ, କଥାସାହିତ୍ୟ ବିଭାଗକୁ ନେଇ । ମୁଁ ହଁ ଭରିଲି, ହେଲେ ପଚାରିଲି ପାଠ୍ୟକ୍ରମର ମୁଖ୍ୟ ନିର୍ଦ୍ଦେଶକ ଡଃ. ଏସ୍. ଶିବ୍‌କୁମାରଙ୍କୁ -''କିନ୍ତୁ ମୁଁ ତ ଜଣେ ଗାଳ୍ପିକ, ମୁଁ ମୋର ନିଜ ଅନୁଭବ ଓ ଅଭିରୁଚି ଜରିଆରେ ଲେଖିବି ତ, ମୋର ଯାହା ମନକୁ ଆସୁଛି ? ତାକୁ ପଢ଼ି ଡ଼ିପ୍ଲୋମାଧାରୀ ଲେଖକମାନେ ଏକବାଗିଆ ହୋଇଯିବେ ନାହିଁ ତ ?'' ସେ ହସିକରି କହିଲେ - ''ୱେଲ୍, ଆପଣଙ୍କ ପରି କେତେଜଣ ଏକବାଗିଆ ଲେଖକ ସୃଷ୍ଟି କରି ପାରିଲେ କିଛି କ୍ଷତି ହେବ ନାହିଁ ଆମର ।'' ସେଇଠୁ ମୁଁ ମାତିଗଲି ଏବଂ ଇଂରେଜିରେ ପ୍ରସ୍ତୁତ କଲି ମୋ ବକ୍ତବ୍ୟ, 'କଥା' ବିଷୟଟିର ଜନ୍ମ, ମୃତ୍ୟୁ, ଲୟବିଲୟ, ଭଲମନ୍ଦ, ଇତ୍ୟାଦିକୁ ନେଇ । ଏବଂ ତାହା IGNOUର "Creative writing" ପାଠ୍ୟକ୍ରମର ଅନ୍ୟତମ ଖସଡ଼ା ଭାବରେ ଗୃହୀତ ହେଲା ।

ଏଇ ଅଭିଜ୍ଞତାରୁ ମିଳିଥିବା ଆତ୍ମବିଶ୍ୱାସକୁ ନେଇ ମୁଁ ଲେଖି ବସିଲି, କଟକକୁ ଫେରି ଆସିଲା ପରେ, ଏକ ପ୍ରବଂଧ ମାଳା - ''କଥା ସାହିତ୍ୟର କଳା ଓ କାରିଗରି ।'' ଇଷ୍ଟର୍ଣ୍ଣ ମିଡ଼ିଆ ଭୁବନେଶ୍ୱରଙ୍କ ଦ୍ୱାରା ପ୍ରକାଶିତ ମାସିକ ସାହିତ୍ୟ ପତ୍ରିକା ''କଥା'' ପାଇଁ । ଗୋଟିଏ କ୍ରମଶୀଳ ସିରିଆଲ୍ ଭାବରେ । ମୋର ଏଇ ତାତ୍ତ୍ୱିକ ବୈକ୍ତିକ ପ୍ରବଂଧମାଳାର ସ୍ୱର କେଉଁ ପ୍ରକାର ହୋଇଥିବ ତା ବୁଝିବେ ଏଇ ଗୋଟିଏ ଉଦାହରଣରୁ । "Our sweetest songs are those made of the saddest thought" ବୋଲି କହିଥିଲେ ଜଣେ ଇଂରେଜ ରୋମାଣ୍ଟିକ୍ କବି । ଶ୍ରୁତିକଟୁ ହେଲେ ମଧ୍ୟ ଖାରା କଥା କହିଲା ଭଳି କହିଥିଲେ ଆମ ବେଳର ଜଣେ ବିଶିଷ୍ଟ କଥାକାର ଅର୍ଣ୍ଣେଷ୍ଟ ଲେମିଂଗୱେ । କହିଲେ ଆମେ ତ ହ୍ୟାପ୍ ମୂଳରୁ ଅଭିଶପ୍ତ "We are bitched from the very heginning", କିନ୍ତୁ ସେଇ ଅନୁଭବକୁ ହିଁ ପ୍ରୟୋଗ କର ତମ ସର୍ଜନାରେ, ସେଇଥିରେ ଶାନ୍ତି । କିନ୍ତୁ କଥା ହେଉଛି, କେତେବେଳେ ? ଏଇଠି ମତଭେଦ ରହିଛି । କେତେକ କୁହନ୍ତି ଯେତେଶୀଘ୍ର ପାର, ନ ହେଲେ ତାତି ଚାଲିଯିବ ତମ ଅନୁଭବର, ତାର କାର୍ଯ୍ୟକାରିତା ଉଣା ହୋଇଯିବ । କିନ୍ତୁ ଆଉ

କେତେକ କୁହନ୍ତି, ଯଥା କଥାକାର ଟ୍ରୁମାନ୍ କ୍ୟାପୋଟ୍, ଯେ ତମ ଆଖିର ଲୁହ ଶୁଖିଯାଇଥିଲେ ହିଁ ତମେ ଆଉ କାହାକୁ କନ୍ଦେଇ ପାରିବ । ମୁଁ ଦ୍ୱିତୀୟ ମତଟିକୁ ସାରସତ୍ୟ ବୋଲି ବାଛି ଦେଇଛି ମୋ ପାଠକପାଠିକାମାନଙ୍କ ଆଗରେ । କାରଣ ତାହାହିଁ ଥିଲା ମୋ ନିଜର ଅନୁଭବ । ମୋର 'ମଣିହରା' ଗପଟିକୁ ମୁଁ ଲେଖିପାରିଲି ମୋ ଆଠ ମାସର ପୁଅ ଚାଲିଯିବାର ଅନେକ ଦିନ ପରେ । ସେହିପରି ମୋର 'ଧବଳ ଆକାଶ' ନାମକ ଗଳ୍ପ । କହିବି ସେକଥା ପରେ । ଯାହାହେଉ ଏଇ ପ୍ରବଂଧମାଳା ବିଶେଷ ଆଦୃତ ହୋଇଛି ମୋର ସୁଧୀ ପାଠକ ସମୀକ୍ଷକମାନଙ୍କ ଦ୍ୱାରା । ଏହା ମଧ୍ୟ ବହି ଆକାରରେ ପ୍ରକାଶିତ ହୋଇଛି ଇଷ୍ଟର୍ଣ୍ଣ ମିଡ଼ିଆ ଦ୍ୱାରା, ୧୯୯୦ ମସିହାରେ ।

ଏଇ ବର୍ଷ ମୋର ଏକାଦଶ ଗଳ୍ପ ସଂକଳନ 'ତ୍ରୟୋବିଂଶ ମୃତ୍ୟୁ' ପ୍ରକାଶିତ ହୁଏ । ସଂକଳନର ଶୀର୍ଷକ ଗଳ୍ପଟି ବିଶେଷ ଉଲ୍ଲେଖଯୋଗ୍ୟ, କାରଣ ଏଇ ପ୍ରଥମ ଥର ମୁଁ ଗୋଟିଏ ପୌରାଣିକ ଚରିତ୍ରକୁ ଆବାହନ କଲି, ଏକ ସାମାଜିକ ତଥା ଆଧୁନିକ ବିଚାରକୁ ରୂପାୟିତ କରିବା ଲାଗି । ଯେ ଭାରତୀୟା ନାରୀ ଯୁଗ ଯୁଗ ଧରି ଅଭିଶପ୍ତା ହୋଇ ରହିଛି ବହୁଳ ଏବଂ ନାନାବିଧ ମୃତ୍ୟୁର ଅଧୀଶ୍ୱରୀ ହୋଇ । ଗାନ୍ଧାରୀ ହେଉଛନ୍ତି ସେଇ ଐତିହ୍ୟର ପ୍ରତୀକ । ତାଙ୍କ ସ୍ୱାମୀ ହେବାକୁ ଚାହୁଁଥିବା ତେଇଶ ଜଣ ହୁଅନ୍ତୁ, କିମ୍ବା ତାଙ୍କର ଶହେ ପୁଅ, ସେ ସମସ୍ତଙ୍କ ନିଧନ । କିଏ ଭଲା ଏଇ 'ମର୍ଯ୍ୟାଦା' ଛଡ଼ାଇ ନେଇ ପାରିଥାଆନ୍ତା ତାଙ୍କଠୁ ? ଶାରଳା ସାହିତ୍ୟ ସଂସଦଙ୍କ ଅନୁରୋଧ କ୍ରମେ ତାଙ୍କର ଗୋଟିଏ ସଂକଳନରେ ପ୍ରଥମେ ପ୍ରକାଶିତ ହୋଇଥିବା ଏଇ ଗଳ୍ପଟି ଇଂରାଜି ଛଡ଼ା ଏକାଧିକ ଭାରତୀୟ ଭାଷାରେ ଅନୂଦିତ ଏବଂ ପ୍ରକାଶିତ ହୋଇଛି ।

ବର୍ଷ ଶେଷକୁ କନ୍ୟାକୁମାରୀ, ମୋର ମାନସିକକୁ ପୂରା କରିବା ଲାଗି । ସେଠି ଏକ ଅବର୍ଣ୍ଣନୀୟ ପ୍ରଶାନ୍ତିର ଅନୁଭବ । ସ୍ୱାମୀ ବିବେକାନନ୍ଦଙ୍କ ପ୍ରତିମୂର୍ତ୍ତିକୁ ଅନେକ ସମୟ ଅନେଇ ରହେ । ମଧ୍ୟ ଧ୍ୟାନ କରେ ତାଙ୍କ ଧ୍ୟାନ ମଣ୍ଡପରେ । ଏବଂ କେତେଥର ମନେ ହୋଇଛି ଯେ ପ୍ରକୃତରେ ଯଥେଷ୍ଟ ହେଲାଣି ଏଇ ସୃଷ୍ଟି କରିପାରିବାର ନିରର୍ଥକ ବଡ଼େଇ । ଏଣିକି ସ୍ରଷ୍ଟାଙ୍କର ମୌଳିକ ହେଲେ ଦୁର୍ବୋଧ୍ୟ ସୃଷ୍ଟିକୁ ନକଲ କରିବାର ଚେଷ୍ଟା ନ କରି ସେଇଥିରେ ହଜିଯିବା ଉଚିତ । ସେଇଥିରେ ହିଁ ଜନ୍ମ ଜୀବନର ସାର୍ଥକତା, ଯାହା ସ୍ୱାମୀଜି କହିଛନ୍ତି । କିନ୍ତୁ କହିବା ବାହୁଲ୍ୟ ଯେ ଯଦିଓ ସେଇ ଆଧ୍ୟାତ୍ମିକ ଉନ୍ମେଷ ସେତିକିରେ ସରି ଯାଇନାହିଁ, ମୁଁ ଛାଡ଼ି ଦେଇପାରି ନାହିଁ ଏଇ ଅଧମତାରଣ ସର୍ଜନାର ଲୋଭ । ପୁଣି କହିଛି କଣ ନା ତଳ ପାହାଚ ହେଉ ପଛେ, ଇଏ ବି ହେଉଛି ମୁମୁକ୍ଷାର ଅନ୍ୟତମ ସାଧନ ।

୧୯୮୮ ମସିହାରେ ମୋ ଲେଖାର ସ୍ୱରୂପ ଏବଂ କ୍ରମରେ କୌଣସି ପରିବର୍ତ୍ତନ ହୋଇନାହିଁ । ଓଡ଼ିଆରେ ଗଳ୍ପ ଓ ପ୍ରବଂଧ, କାଁ ଭାଁ କବିତା, ଇଂରାଜିରେ ପ୍ରବଂଧ ଏବଂ

ଓଡ଼ିଆରୁ ଇଂରାଜି ତଥା ଇଂରାଜିରୁ ଓଡ଼ିଆ ଅନୁବାଦ । ଗତ ତିନିବର୍ଷ ଭିତରେ ଯେଉଁସବୁ କାମ ହାତକୁ ନେଇଥିଲି, ତାର କ୍ରମିକ ସଂପ୍ରସାରଣ । ଯଥା 'ତିରିଶ ବର୍ଷର ଗଳ୍ପ ଓ ଆଳାପ'ର ପ୍ରଥମ ଭାଗ ପାଇଁ ସମସ୍ତ 'ଆଳାପ' ଲେଖିସାରି ପ୍ରକାଶକଙ୍କ ହାତରେ ଦେଇ ଆସିଲା ପରେ ତାର ଦ୍ୱିତୀୟ ଭାଗ ପାଇଁ ଲେଖି ଚାଲିଥିବା ଆଳାପ । ଦି'ବର୍ଷ ତଳେ ଅରୁଣ ଯୋଶୀଙ୍କର ଏକାଡ଼େମୀ ପୁରସ୍କାର ପ୍ରାପ୍ତ ଇଂରାଜି ଉପନ୍ୟାସ "The Last Labyrinth"ର ଓଡ଼ିଆ ଅନୁବାଦ ହାତକୁ ନେଇଥିଲି, କେନ୍ଦ୍ର ସାହିତ୍ୟ ଏକାଡ଼େମୀଙ୍କ ତରଫରୁ । ସେ କାମଟିକୁ ମଧ୍ୟ ସାରିବାକୁ ପଡ଼ିବ ଯଥାଶୀଘ୍ର । ଇତ୍ୟାଦି । କୌଣସି ନୂଆ ଧରଣର କାମ ଆରମ୍ଭ କରି ନଥିଲି ଏବର୍ଷ । କୌଣସି ନୂଆ ବହି ମଧ୍ୟ ପ୍ରକାଶିତ ହୋଇ ନଥିଲା । ତେବେ ଯୋଡ଼ିଏ ଅନୂଦିତ ଗଳ୍ପର ପ୍ରକାଶନ ଉଲ୍ଲେଖଯୋଗ୍ୟ । ମୋର 'ଆମରି ଭିତରୁ ଜଣେ'ର ସ୍ୱରଚିତ ଇଂରାଜି ଅନୁବାଦ "Death of an Indian", ସାହିତ୍ୟ ଏକାଡ଼େମୀଙ୍କ ଦ୍ୱାରା ପ୍ରକାଶିତ "Contemporary Indian short stories, Vol. III"ରେ ସ୍ଥାନିତ ହୋଇଥିଲା । ଏବଂ ଡଃ. ରାଜେନ୍ଦ୍ର ପ୍ରସାଦ ମିଶ୍ରଙ୍କ ଦ୍ୱାରା ରଚିତ 'ଚଳନ୍ତା ଗାଡ଼ି'ର ହିନ୍ଦୀ ଅନୁବାଦ 'ଚଲ୍‌ତି ଗାଡ଼ୀ' ଦିଲ୍ଲୀର 'ପୁଷ୍ପ ପ୍ରକାଶନୀ' ଦ୍ୱାରା ପ୍ରକାଶିତ ''ଉଡ଼ିଷ୍ୟାକୀ ଶ୍ରେଷ୍ଠ କହାନୀୟାଁ''ରେ ସ୍ଥାନ ପାଇଥିଲା ।

୧୯୮୮ର ସବୁଠାରୁ ବଡ଼ ଘଟଣା ଥିଲା ମୋ ପାଇଁ ଏକ ଅଣଲେଉଟା ବିଚ୍ଛେଦର ଅନୁଭବ । ମୃତ୍ୟୁ । ମୋର ବାପା ଚାଲିଗଲେ । ୯୪ ବର୍ଷ ବୟସରେ ତାଙ୍କର ବିୟୋଗକୁ ଅପ୍ରତ୍ୟାଶିତ ବୋଲି କହି ହେବ ନାହିଁ । ହେଲେ ସେ ହଠାତ୍ ଚାଲିଗଲେ ପୂର୍ବରୁ କୌଣସି ସୂଚନା ନ ଦେଇ, ମସ୍ତିଷ୍କର ରକ୍ତସ୍ରାବ ହେତୁ । ଏବଂ ତାଙ୍କ ବୁଢ଼ା ପୁଅକୁ ଏକୁଟିଆ ପକେଇ ଦେଇଗଲେ । ଭୂତପୂର୍ବ ଜିଲ୍ଲାଜଜ୍, ଅବସର ପରେ ହାଇକୋର୍ଟ ଜଜ୍ ପାହ୍ୟାରେ ଅନେକ ଦିନ ଏବଂ ପ୍ରାୟ ଅଶୀବର୍ଷ ହେବା ଯାଏ ବିଭିନ୍ନ ଦାୟିତ୍ୱପୂର୍ଣ୍ଣ କାମରେ ନିଜକୁ ନିୟୋଜିତ କରିପାରିଥିବା ଶ୍ରୀଯୁକ୍ତ ବିପ୍ରଚରଣ ଦାସ । ମୋର ତେଜୀୟାନ୍, ହେଲେ ପରମସ୍ନେହୀ ବାପା । ଯାହାଙ୍କ ଆଖିରେ ଲୁହ ଆସିଥିଲା ଯେତେବେଳେ ସେ ତାଙ୍କର ଚଉଦବର୍ଷର ପୁଅକୁ ଟ୍ରେନ୍‌ରେ ବସେଇ ଦେଇ ଆସିଲେ, ସେ କଟକକୁ ଯାଇ କଲେଜ ପାଠ ପଢ଼ିବ ବୋଲି । ଯେ ତାଙ୍କ ବଡ଼ପୁଅର ବିଦ୍ୟାବୁଦ୍ଧି ପାଇଁ ଗର୍ବ କରନ୍ତି, ଏବଂ କେବଳ ତାରି ସାଙ୍ଗରେ ନାନାଦି ରାଜନୈତିକ ତର୍କ କରିବାକୁ ଭଲ ପାଆନ୍ତି ବୋଲି ତାଙ୍କ ହିନ୍ଦୁତ୍ୱର ଲଢ଼େଇ ହୁଏ ମୋର ନେହେରୁବାଦୀ ଜାତୀୟତାବୋଧ ସାଙ୍ଗରେ । ଯେଉଁ ବାପାଙ୍କୁ ଗୋଟାଏ ଅପୂର୍ବ ଜନ୍ମଦିନର ଉପହାର ମିଳିଲା ପରି ଲାଗିଲା ଯେତେବେଳେ ସେ ରେଡ଼ିଓରୁ ଶୁଣିଲେ ଯେ ମୋତେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ମିଳିଛି । ଦେଖିଲି ସେଇ ତେଜସ୍ୱୀ ବାପାଙ୍କ ଅଚେତ ଅସହାୟ ଦେହ କେମିତି କଟକ ହସପିଟାଲ୍‌ର ଗୋଟିଏ ଲିଫ୍‌ଟ୍‌ର ପାଦଦେଶରେ ପଡ଼ିରହିଥିଲା, କେଜାଣି କେତେ

ସମୟ ଯାଏଁ । ଲିଫ୍‌ଟ୍ କେତେବେଳେ ଚାଲିବ, ସେଥିକୁ ଅପେକ୍ଷା କରି । ଦୁନିଆଁ ଲୋକେ ଚାଲି ଯାଉଥିଲେ ସେ ବାଟେ, ଅନ୍ୟତମ ମଲା କି ମରମର ହେଉଥିବା ମଣିଷର ଦେହଟାକୁ ଭ୍ରୂକ୍ଷେପ ନ କରି । ସେଇ ଦୃଶ୍ୟ ଭୁଲିବାର ନୁହେଁ । ତାଙ୍କର ଇଚ୍ଛା ଅନୁଯାୟୀ ତାଙ୍କ ମରଶରୀରକୁ ଆମ ବଂଶର ଆଦିଭୂମି ତଥା ତାଙ୍କର ଜନ୍ମସ୍ଥାନ ଶୁକ୍ଳେଶ୍ୱର ଗାଆଁରେ ଦାହ କରାଗଲା । ହେଲେ ମୁଁ ଅବିଳମ୍ବେ କଟକ ଘରକୁ ଫେରି ଆସିଲି । ବୋଉ ଏଠି ରହିଛି ପରା ? ମଧ୍ୟ ମୋ ସାହିତ୍ୟ ଅପେକ୍ଷା କରି ରହିଥିଲା ମୋ ପାଇଁ ।

୧୯୮୯ର ଆରମ୍ଭରେ ମୁଁ ଦିଲ୍ଲୀରେ ଥିଲି । ସାହିତ୍ୟ ଏକାଡ଼େମୀ ଦ୍ୱାରା ଆହୂତ ପୁଣି ଏକ ଅନୁବାଦ କର୍ମଶାଳାର ସଦସ୍ୟ ହୋଇ । ହେଲେ ଏଥର ମୁଁ ସେଇଠି ରହିଲି ଦିନରାତି, ଚାଣକ୍ୟପୁରୀରେ ଥିବା 'ବିଶ୍ୱଯୁବକ କେନ୍ଦ୍ର'ରେ ଅନ୍ୟ ଲେଖକ ଓ ସାହିତ୍ୟିକ ବନ୍ଧୁମାନଙ୍କ ସହିତ ଏକାଠି ହୋଇ । ଆମ ରହିବା ଓ ଖାଇବା ପିଇବାର ସମସ୍ତ ବ୍ୟବସ୍ଥା କରାଯାଇଥିଲା ସେଠି, କର୍ମଶାଳାର ନାନାଦି କାର୍ଯ୍ୟକ୍ରମ ସମେତ ।

ମୋର ଗୋଟିଏ ଅନୁଭୂତି ବିଷୟରେ କହିବାର ଅଛି, ଏଇଠି ରହିଥିବା ସମୟରେ । ଜାନୁଆରୀ ୪ ତାରିଖରେ ମୋର ଗୋଟିଏ ବଚନିକା ବାଢ଼ିବାର ଥିଲା । ତା ନାଆଁ ହେଉଛି "Confessions of an Indian writer" ଅର୍ଥାତ୍ ଗୋଟିଏ ଲେଖକର ସ୍ୱୀକାରୋକ୍ତି । ସ୍ୱୀକାରୋକ୍ତି ? ଅଧମ ଲେଖକ କିଭଳି ପାପ କରିଥିଲା ଯେ ତାକୁ ଆଜି ଗୋଟିଏ ସ୍ୱୀକାରୋକ୍ତି ଦେବାକୁ ପଡୁଛି ? କଣ ନା ମୁଁ କାହିଁକି କେବଳ ମୋର ବିଭିନ୍ନ ଓଡ଼ିଆ ଗଳ୍ପକୁ ଅନୁବାଦ କରି ଚାଲିଛି, ମଧ୍ୟ କେତୋଟି ଇଂରେଜି ଗଳ୍ପକୁ ଓଡ଼ିଆରେ, କିନ୍ତୁ ଉଭୟ ଭାଷାରେ ଲେଖିବାର କବିତାର ଅନୁବାଦ କରି ନାହିଁ କିମ୍ବା କରିବାକୁ ଚାହେଁ ନାହିଁ । ସତେକି ମୋର ସେଇ ଭାବଗତ ଉଚ୍ଚାରଣଗୁଡ଼ିକ ଏତେ ନିଥର ନିବିଡ଼ ଯେ ତାର ଅନୁବାଦ କରାଯାଇ ନ ପାରେ । ଏମିତି ଭାବିବା କେତେଦୂର ଯଥାର୍ଥ ଥିଲା ମୋ ପକ୍ଷରେ ? ଇତ୍ୟାଦି ।

ତାର ଦି'ଦିନ ପରେ ଜାନୁଆରୀ ୬ ତାରିଖ ସକାଳ ଆଠଟା ବେଳେ ଇନ୍ଦିରା ଗାନ୍ଧୀଙ୍କ ହତ୍ୟାକାରୀ ସତ୍‌ଓ୍ୱନ୍ତ ସିଂ ଏବଂ କେହାର ସିଂକୁ ଫାଶି ଦିଆଗଲା । ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା, ଯାହାକୁ ନେଇ ବିଭିନ୍ନ ମତାମତ ପ୍ରକାଶ ପାଉଥିଲା ଖବରକାଗଜମାନଙ୍କରେ । ସକାଳୁ ସକାଳୁ ମୋ ରୁମ୍‌ର ଝରକା ପାଖରେ ଠିଆ ହୋଇ ମୋତେ ଶୁଣିଲା ପରି ଲାଗିଲା କେଉଁ ସୁଦୂର ଘଣ୍ଟାଧ୍ୱନି ଏବଂ ସ୍ତବଧତା । ଏବଂ ତୁଚ୍ଛା କଳ୍ପନା ବୋଲି ମୁଁ ସେଇ ଅନୁଭବକୁ ସହଜେ ଘଉଡ଼େଇ ଦେଇ ପାରିଲି ନାହିଁ । କାରଣ ମୋର ମନେ ପଡ଼ିଲା ସେଇ ମହାଗୁରୁତ୍ୱପୂର୍ଣ୍ଣ ଘଟଣା, ଜାତିର ଇତିହାସରେ, ଯାହାକୁ ମୁଁ ପ୍ରତ୍ୟକ୍ଷ ଭାବରେ 'ଅନୁଭବ' କରିଥିଲି ବୋଲି କହିଲେ ଚଳେ । ମୁଁ ସେଦିନ, ଅକ୍ଟୋବର ୩୧ ତାରିଖ ୧୯୮୪ରେ ଗୌହାଟୀରୁ ପ୍ଲେନ୍‌ରେ ଆସୁଥିଲି ଦିଲ୍ଲୀକୁ, ଗୋଟାଏ ମିଟିଂଗ୍‌ରେ ଯୋଗ ଦେବା ଲାଗି । ଏବଂ ଆମେ କେଉଁ କ୍ରିକେଟ୍

ମ୍ୟାଚ୍‌ର ଧାରାବିବରଣୀ ଶୁଣୁଥିଲୁ ରେଡ଼ିଓରୁ । କିନ୍ତୁ ହଠାତ୍ ରେଡ଼ିଓ ବନ୍ଦ ହୋଇଗଲା । ଏବଂ ବିମାନଚାଳକ ଆମକୁ ଗୋଟାଏ ଦୁଃସମ୍ବାଦ ଶୁଣାଇଲେ, ଯାହାକୁ ବିଶ୍ୱାସ କରିହେବ ନାହିଁ । ଯେ ଇନ୍ଦିରା ଗାନ୍ଧୀଙ୍କୁ ତାଙ୍କ ରକ୍ଷୀମାନେ ଗୁଳି କରିଛନ୍ତି ଏବଂ ତାଙ୍କୁ ହସପିଟାଲ୍‌କୁ ନିଆଯାଇଛି ଅତି ସଂକଟାପନ୍ନ ଅବସ୍ଥାରେ । ତାର କିଛି ସମୟ ପରେ ଖବର ଆସିଲା ଯେ ଇନ୍ଦିରାଜୀ ଆଉ ନାହାନ୍ତି । ଏବଂ ଦିଲ୍ଲୀରେ ପହଞ୍ଚିଲା ପରେ ଯେଉଁ ପ୍ରତ୍ୟକ୍ଷ ଅନୁଭବ ମିଳିଲା ମୋତେ, ନିଧନର ପରବର୍ତ୍ତୀ ଘଟଣା ହିସାବରେ, ତା'ଭିତରେ ଥିଲା - କେମିତି ସେମାନେ ମୋ ଘରମୁହାଁ କାର୍‌କୁ ଘେରାଉ କରିଥିଲେ । ମୁଁ 'ସର୍ଦାର୍' ହୋଇଥିଲେ ମୋତେ ସେଇଠି ମାରି ମାରି ଖତମ୍ କରି ଦେଇଥାଆନ୍ତେ, ଏଥିରେ ସନ୍ଦେହ ନାହିଁ । ମଧ୍ୟ ମୁଁ ଦେଖିଲି କେମିତି ତା ପରଦିନ ସକାଳେ ସେମାନେ ବସ୍ ଅଟକେଇ ଶିଖ୍‌ମାନଙ୍କୁ ତଳକୁ ଘୋଷାରି ଆଣୁଥିଲେ ପିଲାବୁଢ଼ା ସ୍ତ୍ରୀଲୋକ ସମେତ ଏବଂ ନିର୍ଧୂମ ମାଡ଼ ମାରୁଥିଲେ । ପାଖରେ ଠିଆ ହୋଇଥିବା ପୁଲିସ ଦାନ୍ତ ନିକୁଟି ଦେଖୁଥାଏ ସେଇ ଦୃଶ୍ୟ । ଏଇ ଜଘନ୍ୟ ହିଂସାର କାହାଣୀ ମଧ୍ୟ ରୂପାୟିତ ହୋଇଛି ମୋର ''ଇଂଦିରା'' ନାମକ ଗଳ୍ପରେ, ଇଂଦିରା ନାମ୍ନୀ ନାୟିକାର ମନକଥାକୁ ଆଶ୍ରୟ କରି । ଆଜି ସେଇ ଇଂଦିରାଙ୍କ ହତ୍ୟାକାରୀମାନଙ୍କୁ ଫାଶି ଦିଆଗଲା । ଅଂକ ମିଳିଗଲା । ଏବଂ ଇଏ ହେଉଛି ନ୍ୟାଯ୍ୟ ଆଇନ୍‌ଗତ ପ୍ରତିହିଂସା - ନା କଅଣ ? ଭାବ ଭାବନା ଆନ୍ଦୋଳିତ ହେଲା, ବେଶ୍ କିଛି ସମୟ ପାଇଁ ।

ସେଇଠୁ ମୁଁ ସ୍ମରଣ କଲି କେମିତି ସ୍ୱାଧିନତାର ଆରମ୍ଭରେ ମୋର ତରୁଣିମା କଥା ସାହିତ୍ୟର ପ୍ରଥମ ପଦକ୍ଷେପକୁ କେତେ ବଳ ମିଳିଥିଲା, ତଥା ସ୍ୱପ୍ନ ଦର୍ଶନର ମହାନଂଦ । ହଁ, ସେଇ ଉଦ୍ଦୀପ୍ତ ମାନସିକତା ସ୍ୱଭାବତଃ ତିଷ୍ଠି ରହିପାରି ନ ଥାଆନ୍ତା । ଉଭୟ ଜାତି ଏବଂ ଏଇ ଲେଖକ- ବ୍ୟୁରୋକ୍ରାଟ୍ ମଣିଷଟିକୁ ଯଥାକ୍ରମେ କଣ୍ଟକିତ ଏବଂ ଉଠାପକା ବାସ୍ତବତାର ସମ୍ମୁଖୀନ ହେବାକୁ ପଡ଼ିଲା । କିନ୍ତୁ ମୁଁ ଯେଉଁ ଉପକାର ପାଇଛି ସେଇ ପହିଲି ସୂର୍ଯ୍ୟର ଆଲୁଅରୁ, ତାର ବିନିମୟରେ ମୁଁ କଣ କିଛି ଦେଇ ପାରିଛି ମୋର ଏଇ ଦେଶକୁ, ଜାତିକୁ, ତା ଦୁଃଖକଷ୍ଟକୁ ଟିକିଏ ହାଲୁକା କରିବା ପାଇଁ ? ସକ୍ରିୟ ରାଜନୀତି ନ ହେଲା ନାହିଁ, ଅନ୍ୟ କେଉଁ ଉପାୟ ନଥିଲା ନିଜର ବିଦ୍ୟାବୁଦ୍ଧିକୁ ଖଟେଇବା ଲାଗି ଏ ଦିଗରେ ? ହେଲା, ବ୍ୟୁରୋକ୍ରାଟ୍‌ର ସୁଯୋଗ ସୀମିତ ଏଦିଗରେ । କିନ୍ତୁ ଅନ୍ତତଃ ଅବସର ଉତ୍ତାରୁ କଣ କିଛି କରିହୋଇ ନଥାଆନ୍ତା ? ସେଇଠୁ ଗୋଟାଏ ଆବସର୍ଡ଼ ପରିସ୍ଥିତିର ଅନୁଭବ ଆସିଲା ମୋ ମନକୁ, ଆଜିକାର ଏଇ ଫାଶିଦିଆ ଘଟଣାକୁ ନେଇ । କେତେ କଣ ଚର୍ଚ୍ଚା ହେଉଥିବ ଆଜି ଏ ବିଷୟରେ । ଦେଶରେ ଚାଲିଥିବା ଏଇ ହିଂସା ପ୍ରତିହିଂସାର ବାତାବରଣ, ଗାନ୍ଧିଜୀଙ୍କୁ ପୋଡ଼ି ଜାଳି ଦେବାର ଏକଚାଳିଶ ବର୍ଷ ପରେ ମଧ୍ୟ । ହେଲେ ମୁଁ ସେସବୁଥିରେ ନାହିଁ । ପଦ୍ମଭୁକ୍ ଲେଖକ ଗୋଟାଏ ବିରାଟ ସ୍ୱୀକାରୋକ୍ତି ବାଢ଼ି ଦେଲା ଏବେ, ତାରି ପରି ଥୋକେ ମଣିଷଙ୍କ ଉପଭୋଗ ପାଇଁ । କଣ ନା

ଶୁଣ, ମୁଁ କାହିଁକି ଗଳ୍ପର ଅନୁବାଦ କରି ଚାଲିଛି, ହେଲେ କବିତାର ପାଖ ମାଡୁ ନାହିଁ। କାହାକୁ କଣ ମିଳିବ ସେଥିରୁ ? ରୋମ୍ ଜଳୁଥିଲା ବେଳେ ନିରୋଙ୍କ ବୀଣାବାଦନ କଣ ଅଧିକ ଆବ୍‌ସର୍ଡ୍ ଥିଲା ?

ହେଲେ ଟିକିଏ ସମୟ ଲାଗୁ ପଛେ, ମୁଁ ମୋର ଆତ୍ମଗ୍ଲାନି ଠାରୁ ବିଦାୟ ନେଲି ଆଜିର କାର୍ଯ୍ୟକ୍ରମ ପାଇଁ ନିଜକୁ ପ୍ରସ୍ତୁତ କରିବା ଲାଗି । କହିଲି ଯେ ମୋତେ ଭୀରୁ ବୋଲି ଭାବିପାର କିନ୍ତୁ ମୁଁ ଉପଯୁକ୍ତ 'ପବ୍‌ଲିକ୍ ମ୍ୟାନ୍'ଟିଏ ହୋଇ ପାରିନଥାଆନ୍ତି । ମୁଁ ତାର ଦଡ଼ମଡ଼ି ତୁଲେଇ ପାରିନଥାଆନ୍ତି । ମଧ୍ୟ ନିଜକୁ ବଂଚେଇ ରଖିପାରି ନ ଥାଆନ୍ତି ତାର ପଂକିଳ ପରିବେଶରୁ । ତା'ଛଡ଼ା ସାହିତ୍ୟ କଣ କିଛି ଉପକାର କରୁନାହିଁ ସମାଜର ? କରୁଛି ମ କରୁଛି । ହେଲେ ଶେଷକୁ 'ଆବ୍‌ସର୍ଡ୍' ତତ୍ତ୍ୱର ପୁରୋଧା ନାଟ୍ୟକାର ସାମୁଏଲ ବେକେଟ୍‌ଙ୍କୁ ମନେ ନ ପକେଇ ରହିପାରିଲି ନାହିଁ । ଯେ କହିଥିଲେ ହତାଶ ହେଲା ପରି ଯେ "Words are all we have" ! ଶବ୍‌ଦ ଛଡ଼ା ଆଉ କଣ ଅଛି ଆମ ପାଖରେ, ଯାହାକୁ ଆମେ ଖେଳେଇବୁ ନଚେଇବୁ ତମ ଆଗରେ, ଅବା ଅସ୍ତ୍ର ପରି ବ୍ୟବହାର କରିବୁ ? ତେଣୁ ଖାଲି ଏଇ ଶୁଭେଚ୍ଛା ଲୋଡୁଛୁ ଆମେ କୁରୁକ୍ଷେତ୍ରର ବୀରମାନଙ୍କ ଠାରୁ ଯେ ଆମେ ଆମ କାମରେ ହେଳା ନ କରୁ ଏବଂ ଆପଣମାନଙ୍କୁ ଠକେଇବାର ଚେଷ୍ଟା ନ କରୁ । ସେଇଠୁ ଦେଖିଲି ଆଜିକା କାର୍ଯ୍ୟକ୍ରମର ସୂଚୀରୁ ଯେ ଆଜି ଭାରତୀୟ ଇଂରାଜୀ କବିତାଟିଏ ପଢ଼ିବାର ଅଛି । ତେଣୁ ଲାଗିଗଲି ମୋ କବିତା ବହିରୁ ଠିକଣା କବିତାଟିଏ ବାଛିବା ପାଇଁ ।

୧୯୮୯ର ସାହିତ୍ୟ ରଚନା ଭିନ୍ନ ଥିଲା ଗତ କେତେବର୍ଷ ଠାରୁ ସେଥିର ଭାଗମାପ ଅନୁଯାୟୀ । କବିତା ସେଇ ଗୋଟିକ, ଯାହାକୁ ପ୍ରତି ବର୍ଷ କୁମାର ପୂର୍ଣ୍ଣମୀରେ ଲେଖି ଆସିଛି । ଗଦ୍ୟରେ ମଧ୍ୟ ଆଳାପ ଆଲୋଚନା ଅନେକ ଭାରୀ ହୋଇ ଉଠିଥିଲା ଗଳ୍ପ ତୁଳନାରେ । "Last Labyrinth"ର ଓଡ଼ିଆ ରୂପାନ୍ତର ''ଶେଷ ଗୋଲକଧଂଦା'' ସାରି ଦେଇଥିଲି ଏଇ ବର୍ଷ । ଏବଂ ଅନେକ 'ଆଳାପ' ପ୍ରସ୍ତୁତ କରିଥିଲି ''ତିରିଶ ବର୍ଷର ଗଳ୍ପ ଓ ଆଳାପ''ର ଦ୍ୱିତୀୟ ଭାଗ ପାଇଁ । ଭାଷଣର ଧାରା ଅବ୍ୟାହତ ଥିଲା । ଉଲ୍ଲେଖଯୋଗ୍ୟ ଉତ୍କଳ ବିଶ୍ୱବିଦ୍ୟାଳୟ ଇଂରାଜୀ ଡିପାର୍ଟମେଣ୍ଟରେ ପଢ଼ିଥିବା ପ୍ରବଂଧ "Who's afraid of the 21st century ?", 'କଥା'ର ବାର୍ଷିକ ଉତ୍ସବରେ ଉପସ୍ଥାପିତ ''ଓଡ଼ିଆ କ୍ଷୁଦ୍ରଗଳ୍ପ : ସୂଚନା ଓ ସଂଭାବନା'', ଶୈଳବାଳା ମହିଳା କଲେଜରେ ''ଗୋଟିଏ ପ୍ରେମପତ୍ରର ପ୍ରଶ୍ନ'' ଯେଉଁଥିରେ ମୁଁ କହିଥିଲି ଯେ ସାହିତ୍ୟ ସାଧାରଣତଃ ଆରମ୍ଭ ହୁଏ ନିଜକୁ ପ୍ରେମପତ୍ରଟିଏ ଲେଖିଲା ପରି ଏବଂ ସେଇ ହେଉଛି ଅସୁବିଧା, ଏବଂ ଶେଷକୁ University of British Columbiaର "Dept of Asiatic Studies"ରେ ଉପସ୍ଥାପିତ ପ୍ରବଂଧ "My Exercises in Freedom" । ପରେ ଦେବି ତାର ବିସ୍ତୃତ ସୂଚନା ।

ମୋର ନୂଆ ବହି ଥିଲା ମୋର ଦ୍ୱାଦଶ ଗଳ୍ପ ସଂକଳନ ''ଲେଉଟାଣି'', ଏବଂ ''ତିରିଶ ବର୍ଷର ଗଳ୍ପ ଓ ଆଳାପ''ର ପ୍ରଥମ ଭାଗ ।

ମୋର ପ୍ରବଂଧ ରଚନା ମଧ୍ୟ ଗୋଟିଏ ନୂଆ ମୋଡ଼ ନେଇଥିଲା ଏଇ ବର୍ଷ । ମୁଁ ଲେଖିବସିଲି ମୋର ବିଦେଶ ଭ୍ରମଣ ଓ ବିଦେଶ ରହଣିରୁ ଉଦ୍‌ଭୂତ ଭାବଭାବନା, ଏବଂ ସେଇ ପ୍ରବଂଧମାଳାକୁ ସଜେଇଲି ଗୋଟିଏ ବହି ପାଇଁ, ଯାହାର ନାଆଁ ହେବ ''ଚେନାଏ ପୃଥିବୀ, ଚିରୁଡ଼ାଏ ଘର'' । ସହଜେ ଚେନାଏ ଚେନାଏ ପୃଥିବୀର କଥା ହେଲେ ମଧ୍ୟ ଚିରୁଡ଼ାଏ ଘର ଏଇ କାରଣରୁ, ଯେ ସେଥିରେ ଅଛି ଏଭଳି ଏକ ଭୂଖଣ୍ଡର କଥା ଯାହାକୁ ମୋ ଘରର ଅଂଶବିଶେଷ ବୋଲି କୁହାଯିବ । ଯେହେତୁ ସେଇଠି ଘର କରି ଅଛି ମୋର ଦ୍ୱିତୀୟ ଝିଅ ଚିନୁ ଏବଂ ତାର କ୍ୟାନେଡ଼ିଆନ୍ ବୋଲାଉଥିବା ପିଲାଟିଏ, ଯାହାକୁ ସମୁଦୁଣୀ 'ପୃଥିବୀର ସବୁଠାରୁ ସୁନ୍ଦର ନାତି' ବୋଲି ଲେଖିଥିଲେ । କିଓ, ସେ ମଧ୍ୟ ମୋର ନାତି ନୁହେଁ କି ?

ଚିନୁ ତା ବାପାବୋଉଙ୍କୁ ଡାକିଥିଲା ତା' ପାଖକୁ ଯିବା ପାଇଁ । ସେହେତୁ ଆମେ କ୍ୟାନେଡ଼ା ଅଭିମୁଖେ ଯାତ୍ରା କଲୁ ସେବର୍ଷ । ସିଏ ଥିଲା ମୋର ପଂଚମ ବିଦେଶ ଯାତ୍ରା, ୧୯୫୮ର ସାଏଗନ୍ ଯାତ୍ରା ଠାରୁ ଆରମ୍ଭ କରି । ଯାତ୍ରାର ଆରମ୍ଭ ହେଲା ମେ ୨୪ ତାରିଖରେ ଏବଂ ଫେରି ଆସିଲୁ ଅକ୍ଟୋବର ୧୩ ତାରିଖରେ ।

ସିଂଗାପୁର ଏୟାରଲାଇନ୍‌ସ୍‌ର ଜେଟ୍ ବିମାନରେ ଆମେ ପ୍ରଥମେ ଗଲୁ ସିଂଗାପୁର, ସେଇଠୁ ପ୍ରଶାନ୍ତ ମହାସାଗର ପାରିହୋଇ ଭ୍ୟାଂକୋଭର୍ । ସିଂଗାପୁରରେ ଦୁଇଦିନ ରହିବାକୁ ପଡ଼ିଲା ଗୋଟିଏ ହୋଟେଲ୍‌ରେ । ତେଣୁ ବେଶ୍ କିଛି ସମୟ ମିଳିଲା ସହରର ବିଭିନ୍ନ ଦର୍ଶନୀୟ ସ୍ଥାନ ଦେଖି ଆସିବା ପାଇଁ । ସିଂଗାପୁରରେ ରହୁଥିବା ଚିନୁର ଜଣେ ଭାରତୀୟ ସହପାଠିନୀ ଥିଲା ଆମର ବିଶ୍ୱସନୀୟ ଗାଇଡ୍ ।

ବ୍ୟାଂଗ୍‌କକର ଝଲକଟିଏ ମିଳିଥିଲା ଏଥିପୂର୍ବରୁ ଏବଂ ସାଏଗନ୍‌ରେ ଥିଲି ତିନିମାସ । ଅନେକ ବର୍ଷ ତଳେ । ଏବଂ ସେଥିର ଅନୁଭୂତି ତଥା ସାହିତ୍ୟକୁ ମିଳିଥିବା ଖୋରାକ୍ ବିଷୟରେ ମଧ୍ୟ କହିଛି ଅଳ୍ପ ବହୁତ । କିନ୍ତୁ ଦକ୍ଷିଣପୂର୍ବ ଏସିଆର ଏଇ ସହରଟି ପୂରାପୂରି ଭିନ୍ନ ଲାଗିଲା ସେମାନଙ୍କ ଠାରୁ, ଅନ୍ତତଃ ତା'ର ଚେହେରାକୁ ନେଇ । କାରଣ ଏଥିରେ 'ଓରିଏଣ୍ଟାଲ୍' ବୋଲାଉଥିବା ବିଶୃଂଖଳ ଏବଂ ବର୍ଣ୍ଣବହୁଳ ବଜାରର ବାତାବରଣ ନାହିଁ । ଅପରନ୍ତୁ ଅଛି ପାଶ୍ଚାତ୍ୟ ପୃଥିବୀର ସୌଖୀନ, ପରିଚ୍ଛନ୍ନ ଏବଂ ଶୃଂଖଳାବଦ୍ଧ ନାଗରିକତା । କିନ୍ତୁ ବୁଝିଲି ଯେ ସାଧୁବାଦ ଦେବାକୁ ହେଲେ ଏଠିକାର ସାଧାରଣ ନାଗରିକମାନଙ୍କୁ (ଅଧିକାଂଶରେ ଚାଇନିଜ୍) ନୁହେଁ, ପ୍ରଶାସକମାନଙ୍କୁ ହିଁ ଦେବା ଉଚିତ । କାରଣ ସେମାନେ କଠୋର ନିୟମାବଳୀକୁ ନିୟମିତ ଭାବରେ ଲାଗୁ କରନ୍ତି ଏବଂ ଅପରାଧୀମାନଙ୍କୁ ଯଥାବିଧି ଦଣ୍ଡ ଦେବାରେ ହେଳା

କରନ୍ତି ନାହିଁ । ତଥାପି ଏଇ ସ୍ୱଚ୍ଛସୁନ୍ଦର ପରିବେଶରେ ଏକ ପ୍ରକାର କୃତ୍ରିମତା ଅଛି ବୋଲି ମନେ ହେଲା ମୋର । ହେଲେ ମୁଁ ସ୍ୱୀକାର କଲି ଯେ 'ଓରିଏଣ୍ଟାଲ୍ ବଜାର'ର ବିଚିତ୍ରସୁନ୍ଦର ଏବଂ ପାଶ୍ଚାତ୍ୟ ମାର୍କେଟ୍ ପ୍ଲେସ୍‌ର ସ୍ୱଚ୍ଛସୁନ୍ଦର, ଉଭୟର ସମନ୍ୱୟ ହୋଇପାରିବ, ଯଦି ଆନ୍ତରିକ ଉଦ୍ୟମ ହୁଏ ସେଦିଗରେ, ଆମ ସମସ୍ତଙ୍କ ଦ୍ୱାରା । କିନ୍ତୁ ସେତିକି ହୋଇପାରୁନାହିଁ କାହିଁକି ଆମ ଭାରତ ଦେଶରେ ?

ସେଇଠୁ ଭ୍ୟାଂକୋଭର୍ । ପ୍ରଶାନ୍ତ ମହାସାଗରକୁ ପାରିହେବାର ଏକ କ୍ଲାନ୍ତିକର ଯାତ୍ରାର ଅବସାନ । ଏବଂ ଅନେକ ଦିନୁ ଦେଖିନଥିବା ଝିଅ, ତାର ଟୋକାଳିଆ ଖୁସିବାସିଆ ସ୍ୱାମୀ ସ୍କଟ୍, ଏବଂ ପୃଥିବୀର ସବୁଠାରୁ ସୁନ୍ଦର ନାତି । ସେମାନେ ଥାଆନ୍ତି ଭ୍ୟାଂକୋଭର୍‌ର ଉପକଣ୍ଠରେ ଥିବା ନିଉ ୱେଷ୍ଟମିନ୍‌ଷ୍ଟର୍ ନାମକ ସହରରେ । ଏଇ ସହରରେ ଆମେ ବିତାଇଲୁ ପ୍ରାୟ ପାଞ୍ଚମାସ ଏବଂ ମୁଁ ଲେଖିଥିଲି ମୋର ପରିକଳ୍ପିତ 'ଚେନାଏ ପୃଥିବୀ, ଚିରୁଡ଼ାଏ ଘର'ର ବିଭିନ୍ନ ଅଧ୍ୟାୟ ।

ନିଉ ୱେଷ୍ଟମିନ୍‌ଷ୍ଟରରୁ ବାହାରି ଆମେ ଭ୍ୟାଂକୋଭର୍ ତଥା 'ବିଉଟିଫୁଲ ବ୍ରିଟିଶ କଲମ୍ବିଆ'ର (ଏଇ ପଦଟି ପ୍ରାଦେଶିକ ସରକାରଙ୍କ ଠାରୁ ଲାଇସେନ୍‌ସ ପାଇଥିବା ପ୍ରତ୍ୟେକ କାର୍‌ର ନେମ୍‌ପ୍ଲେଟ୍‌ରେ ଲେଖାଯାଏ) ଅନେକ ପାହାଡ଼ ପର୍ବତ, ବଣଜଂଗଲ, ନଈ, ହ୍ରଦ, ଉପସାଗର ଏବଂ ସମୁଦ୍ରକୂଳ ବୁଲିଆସିଥିଲୁ । ସଂଦେହ ନାହିଁ ଯେ ଖୁଂଦାଖୁଂଦି ହେଲା ପରି ଏଭଳି ବିଚିତ୍ରବହୁଳ ପ୍ରାକୃତିକ ଦୃଶ୍ୟ କ୍ୱଚିତ୍ ଅନ୍ୟ କେଉଁଠି ଦେଖିବାକୁ ମିଳିବ । କିନ୍ତୁ ଏଇ ଦୃଶ୍ୟଦେଖା ତଥା ଆରାମପ୍ରଦ ପାରିବାରିକ ସୁଖବାସ ବିଷୟରେ କହି ବସିଲେ ରାତି ପାହିଯିବ । ଏବଂ ସେଥିରୁ ଯେଉଁ ଭାବଭାବନା ଉତୁରି ଆସିଲା ମୋ ମନରେ, 'ଚେନାଏ ପୃଥିବୀ...'ର ପୃଷ୍ଠା ମଣ୍ଡନ କରିବା ପାଇଁ, ତାର ବିସ୍ତାରିତ ବର୍ଣ୍ଣନା ମଧ୍ୟ ଅନାବଶ୍ୟକ । କାରଣ ପୂରା ବହିଟିଏ ଲେଖିଛି ସେ ବିଷୟରେ । ତେବେ ସେଥିର କେତୋଟି ଅଧ୍ୟାୟର ଶିରୋନାମାକୁ ନେଇ ସେଥିର ମୁଖ୍ୟସ୍ୱର ବିଷୟରେ କିଛି କହିଲେ ଭଲ ହେବ ପରା । ସେଇଥିରୁ ବୁଝିବେ ମୋ ଭାବଭାବନାର ଦ୍ୱନ୍ଦ୍ୱ, ଯାହାକୁ ମୁଁ ବାଢ଼ି ଦେବାକୁ ଚାହୁଁଥିଲି ମୋ ଦେଶର ବିଶେଷତଃ ଓଡ଼ିଶାର ପାଠକପାଠିକାମାନଙ୍କ ଆଗରେ । ହେଲେ ତା ପୂର୍ବରୁ ଯୋଡ଼ିଏ କଥା କହି ରଖେ ଏଇ ବହି ବିଷୟରେ । ପ୍ରଥମ କଥା ଏଥିରେ କେବଳ ଏଇ ପାଂଚମାସର ଅନୁଭୂତି କଥା କହୁ ନଥିଲି । ମୁଁ ମଧ୍ୟ ମଝିରେ ମଝିରେ ମନେ ପକାଉଥିଲି ମୋର ବିଗତ ବିଦେଶ ଅନୁଭୂତି, ଅନ୍ୟାନ୍ୟ ବିଦେଶରେ ରହିଥିଲା ବେଳେ । ଏବଂ କେତେ କଣ ବଦଳିଛି କି ନାହିଁ ବୋଲି ଦେଖୁଥିଲି । ସେଇଠୁ ଅଂକ ମିଳାଉଥିଲି ବିବର୍ତ୍ତମାନ ସ୍ୱଦେଶ ସାଙ୍ଗରେ । ଦ୍ୱିତୀୟରେ ପାଶ୍ଚାତ୍ୟ ପୃଥିବୀ, ବିଶେଷତଃ କ୍ୟାନେଡ଼ା ଏଥିର ଫୋକସ୍ ହୋଇଥିଲେ ମଧ୍ୟ ଏଥିର ଶେଷ ପୂର୍ବ ଅଧ୍ୟାୟର ନାଆଁ ଥିଲା ''ରାମଙ୍କ ରାଜ୍ୟ'', କାରଣ ତାହା ଥାଏଲାଣ୍ଡ ଉପରେ ଆଧାରିତ

ହୋଇଥିଲା । ଥାଏଲାଣ୍ଡର ରାଜା ଜଣେ 'ରାମ' ନୁହଁନ୍ତି କି ? ଆମେ ତାର ରାଜଧାନୀ ବ୍ୟାଂଗ୍‌କକ୍‌ରେ ମଧ୍ୟ ଥିଲୁ ମାସେ ଖଣ୍ଡେ ତା ପରବର୍ଷ, ବଡ଼ଝିଅ ହୀନୁ ସାଙ୍ଗରେ କିଛି ଦିନ ବିତାଇବା ପାଇଁ । କ୍ୱାଇଁ ନଗେନ୍ ସେଠି ଥିଲେ ସେତେବେଳେ ଆଉ ଗୋଟାଏ କଂପାନୀ ତରଫରୁ । ବର୍ତ୍ତମାନ ମୁଁ ଯତ୍‌ସାମାନ୍ୟ ସୂଚନା ଦିଏ ମୁଁ କଣ କହିବାକୁ ଚାହୁଁଥିଲି କ୍ୟାନେଡ଼ାଗତ ରହଣିର କେତୋଟି ଅଧ୍ୟାୟରେ :

''ବରିଷ୍ଠ ନାଗରିକ'' । ଅନେକ ବର୍ଷ ଯାଏଁ ବଂଚିବାକୁ ପଡୁଥିବା ଏଠିକା ବୁଢ଼ାବୁଢ଼ୀମାନଙ୍କ ଏକୁଟିଆ ଜୀବନରେ ସୁଖ କେତେ, ଦୁଃଖ କେତେ ? ପିଲାପିଲିଙ୍କ ଠାରୁ ପ୍ରାୟ ବିଚ୍ଛିନ୍ନ ହୋଇଯାଇଥିଲେ ମଧ୍ୟ କିଭଳି ସାହାଯ୍ୟ ଓ ସହାନୁଭୂତି ମିଳେ ସେମାନଙ୍କୁ ସମାଜ ଓ ପ୍ରତିବେଶୀମାନଙ୍କ ଠାରୁ ? ଏବଂ ଆତ୍ମସମ୍ମାନର ଉପାଦାନ କଅଣ ଅଛି ଏଇ ସୁଖ ଦୁଃଖର ଭାଗମାପରେ ଆମ ବୁଢ଼ାବୁଢ଼ୀଙ୍କ ଜୀବନ ସାଙ୍ଗରେ ତୁଳନା କରି ଦେଖିଲେ ?

''ପୃଥିବୀର ସବୁଠାରୁ ସୁନ୍ଦର ନାତି ।'' ସୁନ୍ଦର ହୁଅନ୍ତୁ ବା ନ ହୁଅନ୍ତୁ ଏଠିକାର ପିଲାମାନଙ୍କୁ ଯେଉଁ ସୁବିଧାସୁଯୋଗ ମିଳେ ଆନନ୍ଦ କରିବା ପାଇଁ ତାର ତୁଳନା ନାହିଁ । ମୂଳରୁ ସରକାର ମଧ୍ୟ ଚେକ୍‌ଟିଏ ପଠେଇ ଦିଏ ସନ୍ତାନବତୀ ପାଖକୁ ଏବଂ ପଠଉଥାଏ ପିଲା ସାବାଳକ ହେବା ପର୍ଯ୍ୟନ୍ତ । ଅର୍ଥାତ୍ ଆମେ ପିଲା ଚାହୁଁ ଅଧିକରୁ ଅଧିକ, ଯେମିତିକି ଆମ ଲୋକସଂଖ୍ୟା ବଢ଼ିବ । କିନ୍ତୁ ଅତ୍ୟଧିକ ଆନନ୍ଦ ଏବଂ ସ୍ୱାଧିନତା ପିଲାମାନଙ୍କୁ ବିଗାଡ଼ି ଦିଏ ନାହିଁ ତ ? ନ ହେଲେ ସେଇ ସହର ପାଖରେ ଥିବା ଗୋଟିଏ ସ୍କୁଲ ଘରକୁ ଥୋକେ ପିଲା ଲୁଣ୍ଠନ କରିଥାଆନ୍ତେ କାହିଁକି, ଛୁଟିଦିନ ଦେଖି, ନିର୍ମଳ ଆନନ୍ଦର ପରାକାଷ୍ଠା ଦେଖାଇ ?

''ବାରିଆଡ଼େ କାନ୍ଦଣା'' । ଏଭଳି ଏକ ସଭ୍ୟ ସମୃଦ୍ଧ ଦେଶ, ଏତେ ସଂପଦର ସମ୍ଭାର ଓ ପ୍ରତିଶ୍ରୁତି ଏତେ କମ୍ ଲୋକଙ୍କ ପାଇଁ (ଲୋକସଂଖ୍ୟା ଆମ ଓଡ଼ିଶାରୁ କମ୍) କିନ୍ତୁ ୟାଙ୍କ ବାରିଆଡ଼େ ଯେଉଁ କାନ୍ଦଣା ଶୁଭୁଛି, ତାକୁ କଣ ଶୁଣିବାର ନୁହେଁ ? ଯଥାବିଧି ନ୍ୟାୟ କଣ ମିଳିଛି ଏଠିକାର ଆଦିମ ଅଧିକାରୀ 'ରେଡ୍ ଇଣ୍ଡିଆନ୍' ମାନଙ୍କୁ ?

''ପ୍ରୀତି ଓ ପରିବାର'' । ତୁଳନାତ୍ମକ ବିଚାର ବେଶି ଜରୁରୀ ହୋଇ ଉଠେ, ଏଇ ବିଷୟବସ୍ତୁକୁ ନେଇ । ଯତ୍ରତତ୍ର ଦୃଶ୍ୟମାନ ଅବାଧ ପ୍ରୀତି ଏମାନଙ୍କ ସଂସାରରେ, ହେଲେ ପରିବାରବଂଧନ ସାଧାରଣତଃ ଏତେ ହୁଗୁଳା ଏବଂ କ୍ଷଣସ୍ଥାୟୀ ଯେ ଏତେଗୁଡ଼ାଏ ଏବଂ ଏଭଳି ସହଜିଆ ପ୍ରୀତି ଭଲ ନୁହେଁ ବୋଲି ମନେ ହୁଏ । କିନ୍ତୁ ଶେଷକୁ ପ୍ରଶ୍ନ ଉଠେ ଯେ ପ୍ରାପ୍ତବୟସ୍କର ବ୍ୟକ୍ତିସ୍ୱାଧିନତା ସାଙ୍ଗରେ କେଉଁ ବଂଧନର 'କ୍ଲେଶ'କୁ କଣ ସତେ ସମନ୍ୱିତ କରି ହେବ ? ଏବଂ ଯଦି ତା ସଂଭବ ନୁହେଁ ତା ହେଲେ କେଉଁଟି ଅଧିକ ବରଣୀୟ, ବ୍ୟକ୍ତି ଓ ସମାଜର ପ୍ରଗତି ଦୃଷ୍ଟିରୁ ?

ଇତ୍ୟାଦି । ଇତ୍ୟାଦି ।

ଫେରିଆସିବାର କିଛିଦିନ ପୂର୍ବରୁ 'ୟୁନିଭର୍ସିଟୀ ଅଫ୍ ବ୍ରିଟୀଶ କଲମ୍ବିଆ'ରେ ଯେଉଁ ଲିଖିତ ପ୍ରବଂଧଟିଏ ଶୁଣାଇଥିଲି "Department of Asian Studies"ର ଆନୁକୂଲ୍ୟରେ ସେ ବିଷୟରେ ମଧ୍ୟ କିଛି କହିବା ଉଚିତ ହେବ ବୋଲି ଭାବୁଛି । ପ୍ରବଂଧର ନାଆଁ ଥିଲା "My Exercises in Freedom" । ଲେଖକ-ସାହିତ୍ୟିକ ସାର୍ତ୍ରେ ଯଥାର୍ଥରେ କହିଥିଲେ ଯେ ସଂପୂର୍ଣ୍ଣ ଲେଖକୀୟ ସ୍ୱାଧିନତା ଯେତେବେଳେ ମିଳିତ ହୁଏ ସଂପୂର୍ଣ୍ଣ ପାଠକୀୟ ସ୍ୱାଧିନତା ସାଙ୍ଗରେ, ତାହାହିଁ ହୁଏ କାଳଜୟୀ ସାହିତ୍ୟ, ଯାହାର ରଂଗରୂପ ଓ ତାତ୍‌ପର୍ଯ୍ୟ ବଦଳୁଥାଏ, ସମୟର ଗତି ସାଙ୍ଗରେ ହାତ ମିଳାଇଲା ପରି । କଥାଟା ପାଇଯାଇଥିଲା ମୋ ମନକୁ । ଏବଂ ସେଇ ପରିପ୍ରେକ୍ଷୀରେ ମୁଁ କେତେଦୂର 'ସ୍ୱାଧିନ', ଜଣେ ଭାରତୀୟ ଲେଖକ ହିସାବରେ ସେ ବିଷୟରେ ମୁଁ ଦି'ପଦ ଶୁଣାଇଥିଲି ମୋର ଶ୍ରୋତାମାନଙ୍କୁ । ତାର ଶେଷକଥା ହେଉଛି ଏଇ ଯେ ଉକ୍ତ ସଂପୂର୍ଣ୍ଣ ସ୍ୱାଧିନତାର ଆଦର୍ଶ ଅପହୁଂଚ ନ ହେଲେ ମଧ୍ୟ ଆପାତତଃ ମୋ ହାତ ପାହାନ୍ତାରେ ନାହିଁ । ଅନେକ ଚାପ ମୋତେ ମାନିନେବାକୁ ପଡୁଛି, ଯଦିଓ ମୁଁ ନିଜକୁ ଭୁଲାଇବାକୁ ଚେଷ୍ଟା କରେ ଯେ ମୁଁ ସ୍ୱାଧିନ । ମୋର ଶ୍ରୋତାମାନଙ୍କୁ ମଧ୍ୟ ଚେତାଇ ଦେଇଥିଲି ଯେ ଆପଣମାନେ ମଧ୍ୟ ଦୟାକରି ଭାବନ୍ତୁ ଆପଣମାନେ କେତେଦୂର ସ୍ୱାଧିନ । ତେବେ ମୁଁ ଆଶାକରେ ଯେ ଆମେ ଲେଖକ ପାଠକମାନେ ଅଧିକରୁ ଅଧିକ ସ୍ୱାଧିନ ହୋଇପାରିବା ଆସନ୍ତା ଦିନଗୁଡ଼ିକରେ, ଯେହେତୁ ସୃଷ୍ଟି ଓ ସମାଜ ପ୍ରଗତିମୂଳକ ବୋଲି ଆମ ସମସ୍ତଙ୍କର ବିଶ୍ୱାସ ।

ବର୍ଷ ଶେଷବେଳକୁ ଗୋଟାଏ ନୂଆ କାମ ମିଳିଲା ମୋତେ ଓଡ଼ିଶାକୁ ଫେରିଆସିଲା ପରେ । ପ୍ରଦ୍ୟୁମ୍ନ ବଳଙ୍କ 'ପ୍ରଗତିବାଦୀ' ପତ୍ରିକା ପାଇଁ ଗୋଟିଏ ଧାରାବାହିକ ସ୍ତମ୍ଭ । ମୁଁ ତାର ନାଆଁ ଦେଲି ''ଲେଖକର ଦୁଃଖ'' । ଏବଂ ତାକୁ ଦଶଗୋଟି କିସ୍ତିରେ ସମାପ୍ତ କଲି । ଭୂମିକା, ଭୋକ, ଶବ୍ଦ, ରୋମାନ୍ସ, ବାସ୍ତବ, ସ୍ୱାକ୍ଷର, ଚରିତ୍ର, ସମାଜ, ସ୍ୱୀକୃତି ଏବଂ ଶେଷକୁ ସନ୍ନ୍ୟାସର ଅବତାରଣା କରି । ଲେଖକ ନାମକ ପ୍ରାଣୀ କେଉଁ ଧାତୁରେ ଗଢ଼ା, ସେ କଣ ଚାହେଁ ତାର ସଂସାର ଠାରୁ ଏବଂ କାହିଁକି ସେ ସନ୍ନ୍ୟାସ ଲୋଡ଼ିଲେ ମଧ୍ୟ ତାକୁ ଧରି ରଖିପାରେ ନାହିଁ, ତାରି ଏକ ପ୍ରକଳ୍ପିତ ଆବେଦନ । ମଣିମା ଶୁଣିମା ହେଉ ବୋଲି କହିଲା ପରି । ଏଇ ଲେଖାଟିକୁ ଯଥାର୍ଥରେ ମୋ ''ଲେଖକର ସଂସାର'ର କ୍ରମଶଃ ବୋଲି କୁହାଯାଇପାରେ, ଯଦିଓ ଲେଖାଟି ବହି ଆକାରରେ ଛପା ହୋଇଛି ଅନେକ ପରେ । ଯାହାହେଉ ପ୍ରଦ୍ୟୁମ୍ନ ବାବୁ କହିଲେ ଯେ ପାଠକପାଠିକାମାନଙ୍କୁ ଭଲ ଲାଗିଛି ମୋର ଏଇ ଭାବଗଦ୍‌ଗଦ ଦୁଃଖର କାହାଣୀ । ଧନ୍ୟବାଦ ।

୧୯୯୦ରେ ମୋର ଓଡ଼ିଆ ଗଳ୍ପଲେଖାର ହାର ସନ୍ତୋଷଜନକ ଥିଲା । ଏବଂ ବଛାବଛା କେତୋଟିର ଇଂରାଜୀ ଅନୁବାଦ ମଧ୍ୟ କରି ଛପାଇ ପାରିଥିଲି । ସଭାସମିତିରେ କଥାକୁହା ଭିତରେ ବିଶେଷ ଉଲ୍ଲେଖଯୋଗ୍ୟ ଥିଲା କବିବର ରାଧାନାଥଙ୍କ ଉପରେ ଯାହା

କହିଲି ତାଙ୍କ ପାଇଁ ଅନୁଷ୍ଠିତ ହୋଇଥିବା ଏକ ସଭାରେ । ଯେ ଜଣେ ଆଧୁନିକ ଲେଖକ ହିସାବରେ ମୁଁ କେଉଁ ଭାବରେ ଋଣୀ ତାଙ୍କ ପ୍ରତି । ବାସ୍ତବ ମନକଥା ଶୁଣାଇବାରେ, ତଥା ଆକାଶ ପୃଥିବୀର ବାସ୍ତବ ଦୃଶ୍ୟ ଦର୍ଶାଇବାରେ ।

ତେବେ 'ଲେଖକର ଦୁଃଖ'କୁ ପ୍ରକାଶିତ କରିବା ପରେ ସବୁଠାରୁ ଆନନ୍ଦର ବିଷୟ ଥିଲା ଏଇ ବର୍ଷ ଯେ ଏତେଦିନକେ ମୁଁ ଦମ୍ଭର ସହିତ ଗୋଟିଏ ଉପନ୍ୟାସ ଲେଖି ବସିଲି । ଏଭଳି ଏକ ଉପନ୍ୟାସ ଗୋଟିଏ 'ଚିହ୍ନା' ନାୟିକାର ସାତୋଟି ଦିନକୁ ନେଇ ଯେ ମୋର ପୂର୍ଣ୍ଣ ବିଶ୍ୱାସ ଥିଲା, ଲେଖାଟିର ଗର୍ଭପାତ ହେବ ନାହିଁ । ଏଥର ମୁଁ ତାକୁ ଅବଶ୍ୟ ସାରି ଦେଇପାରିବି ।

ନୂଆ ବହି ଛପା ହେବା ଦିଗରେ ଆଶାନୁରୂପ ସଫଳତା ମିଳି ନଥିଲା ଏବର୍ଷ । ହେଲେ ଖୁସି ହେଲି ଯେ 'କଥା ସାହିତ୍ୟର କଳା ଓ କାରିଗରି' ଏତେଦିନକେ ଛପା ହୋଇପାରିଛି । ଏବଂ ଯୋଡ଼ିଏ ନୂଆ କଥା ମୋର ସାହିତ୍ୟକୃତିକୁ ନେଇ । ମୋର 'ଠାକୁରଘର'ଗପଟି ନାଟିକାରେ ରୂପାନ୍ତରିତ ହୋଇ ପ୍ରସାରିତ ହେଲା କଟକ 'ଦୂରଦର୍ଶନ' ଦ୍ୱାରା । ଇଏ ମୋର ଦ୍ୱିତୀୟ ଗଳ୍ପ ଯାହା ନାଟିକାରେ ରୂପାନ୍ତରିତ ହୋଇଛି । ପ୍ରଫୁଲ୍ଲ ରଥଙ୍କ ଦ୍ୱାରା ମୋର 'ରାତିକୁକୁର' ଗପଟି ମଧ୍ୟ ନାଟିକାରେ ରୂପାନ୍ତରିତ ହୋଇ ୧୯୮୪ରେ ମଂଚସ୍ଥ ହୋଇଛି ବୋଲି ମୁଁ ଜାଣିଲି ଅନେକ ଦିନ ପରେ । ଏବଂ ବିଜୟ ଚୌଧୁରୀ ନାମକ ଜଣେ ଅଧ୍ୟାପକ ମୋର ଲେଖା ଉପରେ ଥିସିସ୍ ଲେଖିବାରେ ଲାଗି ପଡ଼ିଥିଲେ ଏବର୍ଷ । ମୋ ପାଖକୁ ଆସୁଥିଲେ ବାରଂବାର ଏବଂ ମୋ ଗପରେ କଣ ଅଛି ନ ଅଛି ବୋଲି ମୋତେ ଚିହ୍ନାଇ ଦେଉଥିଲେ । 'କଥା' ସାହିତ୍ୟ ପତ୍ରିକା ମଧ୍ୟ ନାନାଦି ପ୍ରଶ୍ନର ଉତ୍ତର ଲୋଡ଼ିଛି ଏବର୍ଷ ତାର ପାଠକପାଠିକାମାନଙ୍କଠାରୁ, କିଶୋରୀ ଚରଣଙ୍କ ସାହିତ୍ୟକୃତି ଉପରେ । ତାଙ୍କର ଗୋଟିଏ କୁଇଜ୍ ପ୍ରୋଗ୍ରାମ୍ ଜରିଆରେ । ମୋଟ ଉପରେ ମୋର ଯଥେଷ୍ଟ କାରଣ ଥିଲା ଭାବିବା ପାଇଁ, ନବମ ଦଶକର ପହିଲି ବର୍ଷ ଶେଷ ହେଲା ପୂର୍ବରୁ ଯେ ମୁଁ ଜଣେ କୃତକାର୍ଯ୍ୟ ଲେଖକ । କିନ୍ତୁ ମୋର ବର୍ଷ ପ୍ରକୃତରେ ଶେଷ ହୋଇନଥିଲା ସେତେବେଳକୁ । ଶେଷ ହେଲା ପରି ଲାଗିଲା, ଯେତେବେଳେ ଗୋଟାଏ ବଜ୍ରାଘାତ ଧରାଶାୟୀ କରିଦେଲା ମୋତେ, ମୋର ସମସ୍ତ ସାହିତ୍ୟ କୃତିକୁ ଉପହାସ କରି । ନଭେମ୍ବର ୧୧ ତାରିଖ ୧୯୯୦ ।

ସେଇଦିନ ମୋର ୩୮ ବର୍ଷ ବୟସର ଝିଅ ବିଶ୍ୱଜିତା ଓରଫ୍ ବେବି ଛାଡ଼ି ଚାଲିଗଲା ଆମକୁ ସବୁଦିନ ପାଇଁ । ତନୁପାତଳୀ, ସୁଶୀଳା, ସୁକୁମାରୀ ଝିଅ । ମଧ୍ୟ ଲେଖିକାଟିଏ । ଇଂରାଜି ଅନର୍ସ ନେଇ ବିଏ ପାସ୍ କଲା ପରେ ସେ ଦିଲ୍ଲୀର ''ଇନ୍ଷ୍ଟିଚିଉଟ୍ ଅଫ୍ ମାସ୍ କମ୍ୟୁନିକେଶନ୍ସ''ରୁ ଡିପ୍ଲୋମା ହାସଲ କରିଥିଲା ଜର୍ଣ୍ଣାଲିଷ୍ଟ ହେବ ବୋଲି । କିନ୍ତୁ କେଉଁ ଧରଣର ଜର୍ଣ୍ଣାଲିଷ୍ଟ ? ଯାହା ପୂର୍ବରୁ କହିଛି, ସେ ଶିଶୁ ସାହିତ୍ୟରେ ଭୋଳ ହୋଇଗଲା ଅଳ୍ପ

କେଇ ବର୍ଷ ଭିତରେ । ହେବନି କେମିତି ? ହାତୀ ଭାଇର କାନ ଦିଟା କାହିଁକି କୁଲା ପରି ଦେଖିବାକୁ, ଫୁଲେଇ ଠେକୁଆ ଝିଅର ପାଉଡ଼ର୍ ପଫକୁ କେମିତି ତା ଲାଂଜରେ ଖଂଜି ଦିଆଗଲା, ଯେମିତିକି ତା ହାତ ପାଇବ ନାହିଁ ସେଠିକି ଥରକୁ ଥର ତା ମୁହଁରେ ପାଉଡ଼ର୍ ମାଖି ହେବା ପାଇଁ, ଟାଉନ ବସ୍ କେମିତି ତାର ସବୁଦିନିଆ ଡିଉଟିରେ ବୋର ହୋଇ ଦୌଡ଼ି ପଳେଇଲା କୁଆଡ଼େ ବୋଲି କୁଆଡ଼େ, ଏଇ ଯାବତୀୟ ବିଚିତ୍ର କଥାର ଭେଦ ତାକୁ ଜଣାଥିଲା ପରା ? ଏହିଭଳି ଅନେକ ଗଳ୍ପ ଲେଖି ଛପେଇଥିଲା ସେ ଶଂକରଙ୍କର "Childrens' world" ଅରୁଣପୂରୀଙ୍କର "Target" ଏବଂ ଅନ୍ୟାନ୍ୟ ଶିଶୁ ପତ୍ରିକାରେ । ଆମ 'ଟୁଆଁଟୁଇଁକୁ ମଧ୍ୟ ପହଂଚେଇଥିଲା ସର୍ବଭାରତୀୟ ଇଂରେଜି ପଢୁଆ ଦରବାରରେ । ମୃତ୍ୟୁବେଳକୁ ସେ ଥିଲା "Target"ର ପ୍ରଥମ ସହଯୋଗୀ ସଂପାଦିକା ।

ସେଇ ଚାଲିଗଲା ହଠାତ୍, ଗୋଟିଏ ସଡ଼କ ଦୁର୍ଘଟଣାରେ । ହଲାଣ୍ଡରୁ ଆସିଥିବା ଶୁଭକାନ୍ତର ଗୋଟିଏ ସାଙ୍ଗକୁ ନେଇ ସେମାନେ ସମସ୍ତେ ଯାଉଥିଲେ ଆଗ୍ରାରୁ ଭରତପୁର, ବଂଧୁଙ୍କୁ ତାଜମହଲ ଉତ୍ତାରୁ ପକ୍ଷୀ ରାଇଜର ଚମତ୍କାର ଦେଖାଇବା ଲାଗି । ବାଟରେ ଏଇ ଦୁର୍ଘଟଣା । ତାଙ୍କ ଗାଡ଼ି ଖସି ପଡ଼ିଲା ତଳକୁ, ସାମନାରୁ ଆସୁଥିବା ଗୋଟିଏ ମଟରସାଇକେଲକୁ ଏଡ଼ାଇବାକୁ ଯାଇ । ସ୍ୱାମୀ ଶୁଭକାନ୍ତ ଓ ପିଲା ଦିଜଣଙ୍କର ବିଶେଷ କ୍ଷତି ହୋଇ ନଥିଲା, ବିଦେଶୀ ବଂଧୁ ଖଣ୍ଡିଆ ଖାବରା ହୋଇଯାଇଥିଲେ, ହେଲେ ସାନପୁଅକୁ କୋଳରେ ବସେଇଥିବା ଏଇ ସୁକୁମାରୀ ଝିଅ ସେଇ ସଂଘାତକୁ ସହି ପାରିଲା ନାହିଁ । ଅନ୍ତରୀଣ ରକ୍ତସ୍ରାବ (Internal haemorrhage) ହେଲା ବୋଲି ଜଣାପଡ଼ିଲା ପୋଷ୍ଟ ମର୍ଟେମ୍ ରିପୋର୍ଟରୁ । ଦୁର୍ଘଟଣାର ଖବର ପାଇ ଆମେ ଯାଇଥିଲୁ ଆଗ୍ରାକୁ । ଆମେ ଦିଲ୍ଲୀରେ ଥିଲୁ ସେତେବେଳେ । କିନ୍ତୁ ସେଠି ପହଂଚିଲା ବେଳକୁ ତାର ସବୁ ଶେଷ । ମୃତ ଦେହକୁ ନେଇ ଦିଲ୍ଲୀକୁ ଫେରିଲୁ ତାର ଦାହକ୍ରିୟା ପାଇଁ ।

ତା ମାଆକୁ ହିଁ ଶଂଖାସିନ୍ଦୁର ପିଂଧେଇବାକୁ ପଡ଼ିଲା ସେଇ ନିର୍ଜୀବ ଦେହକୁ, ତାକୁ ସଧବାର ସମ୍ମାନ ଆଣି ଦେବା ପାଇଁ । ଏବଂ ସେ କହୁଛି କାନ୍ଦି କାନ୍ଦି - ''ଏଇ ଝିଅକୁ ମୁଁ କନିଆଁ ବେଶରେ ସଜେଇ ଥିଲି ନା ଏଇ କେଇଟା ବର୍ଷ ତଳେ ?''

ୟା'ପରେ ଯେଉଁ ରାଗ ଆସିଲା ମୋ ମନରେ ଅଂଧ ଅଗୁଆଁର ଅଦୃଷ୍ଟ ଉପରେ ସେଥିରେ ମୁଁ ପାଟି କରି ଉଠିଲି ନିଜକୁ ନିଜେ - ଚୁଲିକୁ ଯାଉ ଏଇ ମୋର ସାହିତ୍ୟ ! ମୁଁ ଆଉ କିଛି ହେଲେ କିଛି କରିବି ନାହିଁ ଏଣିକି । କିନ୍ତୁ ତା କେଉଁଠୁ ହେଲାଣି ? ଆଉ କଣଟା ଅଛି ଏଇ ହତଭାଗା ଜୀବନରେ ? ସେଇ ସାମୁଏଲ ବେତକଟ୍‌ଙ୍କ କଥା ଗୁଂଜରି ଉଠୁଥାଏ ମୋତେ ଛିଗୁଲେଇଲା ପରି "Words are all we have !" ସେଇ ହତାଶିଆ ଶବ୍ଦ କେଇଟା ହିଁ ଆମର ପରମ ସାନ୍ତ୍ୱନା ଏବଂ ଆତ୍ମପ୍ରବଂଚନା । ତା'ଛଡ଼ା ଆଉ କ'ଣଟା ଅଛି ଆମର ?

ମଧ୍ୟ ମନେ ପଡୁଛି ସମବେଦନା ଜଣାଇବାକୁ ଆସିଥିବା ବଂଧୁ କବି ରମାକାନ୍ତ ରଥ ଯାହା କହିଲେ ମୋତେ, ଅନୁଭୂତ ସତ୍ୟଟିଏ ଶୁଣାଇଲା ପରି 'ବୁଝୁନାହାନ୍ତି କିଶୋରୀ ବାବୁ, କେବଳ ଆମକୁ ହିଁ ଏଭଳି ଶାସ୍ତି ଭୋଗିବାକୁ ହୁଏ ।' ଉହ୍ୟ ରହିଗଲା ଯେ ବିଧାତା ସହିପାରେ ନାହିଁ ଆମର ସୃଷ୍ଟି କରିବାର ଆସ୍ପର୍ଦ୍ଧାକୁ ।

ଯାହାହେଉ ଡିସେମ୍ବର ମାସ ସରିଲା ବେଳକୁ ମୁଁ ପହୁଂଚିଲିଣି ବ୍ୟାଂଗ୍‌କକ୍‌ରେ, କୁମକୁ ନେଇ । ଯୋଜନାରେ ଅଛି ଯେ ଆମେ ସେଠି ରହିବୁ କିଛି ଦିନ ଝିଅକ୍ୱାଇଁଙ୍କ ପାଖରେ । ତାପରେ ମୁଁ ଫେରିଆସିବି ଦିଲ୍ଲୀକୁ, କିନ୍ତୁ କୁମ ଯିବ କ୍ୟାନେଡ଼ା, ଚିନୁ ପାଖକୁ । କାରଣ ତାର ଆଉ ଗୋଟିଏ ପିଲା ହେବାର ଅଛି, ଏବଂ ସେ ତା ବୋଉକୁ ଡାକିଛି ତା ପାଖରେ ରହିବା ପାଇଁ, ତାର ଦ୍ୱିତୀୟ ପିଲା ବେଳକୁ । ମୁଁ ପ୍ରାୟ ମାସେ ରହିଥିଲି ସେଠି, ଏବଂ ପ୍ରସ୍ତୁତ କଲି ମୋ 'ରାମଙ୍କ ରାଜ୍ୟ' । ଏକ ବିଚିତ୍ର ସୁନ୍ଦର ରାଜ୍ୟ, ଯାହାର ସ୍ୱଭାବଚରିତ୍ର ବିଷୟରେ କିଛି ନ କହିଲେ ମୋ 'ଚେନାଏ ପୃଥିବୀ ...'ର କାହାଣୀ ଅସଂପୂର୍ଣ୍ଣ ହୋଇ ରହିଯିବ ।

ରାଜ୍ୟର ନାଆଁ ଥାଏଲାଣ୍ଡ, ଅଧିକାଂଶ ଲୋକ ବୌଦ୍ଧଧର୍ମାବଲମ୍ବୀ, ରାଜଧାନୀ ବ୍ୟାଂଗକକ୍ ତଥା ସମୁଦ୍ର କୂଳବର୍ତ୍ତୀ ପଟ୍ଟାୟା ସହରର ଯୌନ ବିପଣୀ ବିଶ୍ୱବିଖ୍ୟାତ, କିନ୍ତୁ ଏହା ମଧ୍ୟ ରାମଙ୍କ ରାଜ୍ୟ ଆକ୍ଷରିକ ଅର୍ଥରେ । କାରଣ ଏହାର ବୌଦ୍ଧଧର୍ମାବଲମ୍ବୀ ରାଜା ହେଉଛନ୍ତି ନବମ ରାମ । ଖାଲି ସେତିକି ନୁହେଁ, ଏଇ ରାଜାମାନଙ୍କ ଅଭିଷେକ ହୋଇଆସିଛି ହିନ୍ଦୁ ମତରେ, ଶାସ୍ତ୍ରୀୟ ଉପଚାର ସହ ଏବଂ ସେଥିପାଇଁ ଜଣେ ହିନ୍ଦୁ ପୁରୋହିତଙ୍କ ବଂଶ ପୋଷି ହେଉଛନ୍ତି ପୁରୁଷାନୁକ୍ରମେ । ଏଠିକା ବୁଦ୍ଧ ମୂର୍ତ୍ତିମାନଙ୍କୁ ଦେଖିଲେ ଆଖି ଠାକିଯିବ, ହେଲେ ଏକାଧିକ ବୁଦ୍ଧ ମନ୍ଦିରର ଦ୍ୱାରଦେଶରେ ରହିଛନ୍ତି ବିଘ୍ନରାଜ ଗଣେଶ । ଏବଂ ଆମେ ଯେଉଁଠି ଥିଲୁ ତାର ଖଣ୍ଡେ ଦୂରରେ, ଛକମୁଣ୍ଡରେ ରାଜତ୍ୱ କରୁଥିଲେ ସୃଷ୍ଟିକର୍ତ୍ତା ବ୍ରହ୍ମା । ଯାହାଙ୍କ ପାଦଦେଶରେ ମଧ୍ୟ ଧୂପର ଧୂଆଁ ଏବଂ ରାଶି ରାଶି ଫୁଲର ଅର୍ଘ୍ୟ ଦେଖିବାକୁ ମିଳିବ, ଯେକୌଣସି ବୁଦ୍ଧଙ୍କ ସାଙ୍ଗରେ ସମାନ ହେଲାପରି ।

କଥା କଣ ? କଣ ଏଇ ଅଦ୍‌ଭୁତ ମିଶ୍ର ସଂସ୍କୃତିର ଅର୍ଥ ? ଅର୍ଥ କେବଳ ଗୋଟିଏ ବୋଲି ମୋ ମନକୁ ଆସିଲା । ଯାହାକିଛି ତମକୁ ସୁଖଶାନ୍ତି ଅବା ସାନ୍ତ୍ୱନାର ପ୍ରତିଶ୍ରୁତି ଦେବ ତାକୁଇ ଆଦରିବା ବୁଦ୍ଧିମାନର କାର୍ଯ୍ୟ । ଏବଂ ସେହେତୁ ସାଲିସ୍ ହେଉଛି ବଂଚି ରହିବାର ମୂଳମନ୍ତ୍ର । ହେଲେ ତାର ବାଗ ଜାଣିବା ଦରକାର, ଯେମିତିକି ତମକୁ ହାରିଗଲା ପରି ଲାଗିବ ନାହିଁ । ସେହି କାରଣରୁ ସେମାନେ ବୁଦ୍ଧଙ୍କ ଉପାସକ ହୋଇଥିଲେ ମଧ୍ୟ ଗଣେଶ ଅବା ବ୍ରହ୍ମାଙ୍କ କୃପାକୁ ହରାଇବେ କାହିଁକି, ଯଦି ସେମାନଙ୍କ ଭାବମୂର୍ତ୍ତି କିଛି ରହିଯାଇଥାଏ ତାଙ୍କ ସାଂସ୍କୃତିକ ଐତିହ୍ୟରେ ? ସେହିପରି ପରିବାରବହିର୍ଭୂତ ନାରୀସଂଗ ଅବା ଯୌନ ସଂଭୋଗ ଥାଉ ତା ଜାଗାରେ, ତା ବୋଲି ଛାଡ଼ପତ୍ର ଇତ୍ୟାଦିର ଜଂଜାଳରେ ପଡ଼ି ପରିବାର ସୁଖ

ହରାଇବ କାହିଁକି ? ଏବଂ ଜାତୀୟ ସ୍ତରରେ ଆକ୍ରମଣ କରିବାକୁ ଆସୁଥିବା କେଉଁ ବଳବାନ୍ ରାଜ୍ୟ ସାଙ୍ଗରେ ଲଢ଼ିବ କାହିଁକି, ତହୁଁ ପରାଧିନ ହୋଇ ଯାବତୀୟ ଦୁଃଖକଷ୍ଟ ଭୋଗିବ, ଯଦି ଠିକଣା ସମୟରେ ତାର ମିତ୍ର ବୋଲାଇ ତାର ଅନୁଗତ ହୋଇପାରିବ ? କେବେହେଲେ ପରାଧିନ ହୋଇ ନଥିବା ଥାଇଲ୍ୟାଣ୍ଡର ରାଜନୈତିକ ଇତିହାସରେ ଏହା ମଧ୍ୟ ଏକ ବିସ୍ମୟକର ଏବଂ ଶିକ୍ଷଣୀୟ ତଥ୍ୟ ।

ଅପରାଧର ମାତ୍ରା ଊଣା ନୁହେଁ ଏ ଦେଶରେ ଏବଂ ତାର ଶାସ୍ତିବିଧାନ ମଧ୍ୟ କରାଯାଏ ଆଇନ୍ ଅନୁଯାୟୀ । କିନ୍ତୁ ତମକୁ ଶାସ୍ତି ମିଳୁ ବା ନମିଳୁ, ଏମାନଙ୍କ ଆଖିରେ ସବୁଠାରୁ ଘୃଣ୍ୟ ଅପରାଧ ହେଉଛି ରାଗି ଉଠିବା, ନାଲି ଆଖି ଦେଖାଇବା । ଏଠିକାର ଗୋଟିଏ ଅଫିସରେ ମୁଖ୍ୟ ହୋଇ କାମ କରୁଥିବା ମୋର କ୍ୱାଇଁ ନଗେନ୍ ମଧ୍ୟ ସେଇଆ କୁହନ୍ତି, ତାଙ୍କ ନିଜ ଅନୁଭୂତିର ଉଦାହରଣ ଦେଇ ।

ଦି'ପଦ କହିଦିଏ ମୋ ବ୍ୟାଂଗ୍‌କକ୍ ପରିବାର ବିଷୟରେ, ଭାରତକୁ ଫେରିବା ପୂର୍ବରୁ । କ୍ୱାଇଁ ଏଇକ୍ଷଣି ର୍‌ୟାନ୍‌ବାକ୍ସି କଂପାନୀର ବ୍ୟାଂଗ୍‌କକ୍‌ରେ ଥିବା ଗୋଟିଏ ଶାଖା କଂପାନୀର ମୁଖ୍ୟ । ତାଙ୍କର ତଳିଉପର ଦୁଇପୁଅ ଅନୁରାଗ ଏବଂ ଅଂଶୁମାନ ତାଙ୍କ ପିଲାଦିନର ପ୍ରତିଶ୍ରୁତିକୁ ଅକ୍ଷୁର୍ଣ୍ଣ ରଖିଛନ୍ତି । ଦି'ଜଣଯାକ ଖୁବ୍ ଭଲ କରୁଛନ୍ତି ତାଙ୍କ ପଢ଼ାପଢ଼ିରେ । ଏବଂ ମୁଁ ବିଶେଷ ଖୁସି ହେଲି ଯେତେବେଳେ ଦେଖିଲି ଯେ ଅଠରବର୍ଷ ବୟସର ବଡ଼ନାତି ଅନୁରାଗ ମଧ୍ୟ କବିତା ଲେଖୁଛି, ଇଂରାଜୀରେ । ଭାବଗର୍ଭକ କବିତା । ଯଥା ଗୋଟିଏ କବିତାର ସାରତତ୍ତ୍ୱ ହେଲା ଏଇ ଯେ ମଣିଷ ପିଲାଟି ଉଡ଼ି ପଳେଇବାକୁ ଚାହେଁ ନୀଳ ଆକାଶରେ ଘୁରି ବୁଲିବା ପାଇଁ, କିନ୍ତୁ ପାରୁ ନାହିଁ । ହେଲେ ସେଇ ହତାଶା ତାକୁ ବାଧ୍ୟ କରୁଛି ଦି'ଧାଡ଼ି ଗାରେଇବାକୁ । ସେଇ ଗାରେଇବା, କୌଣସି ମତେ ଗୁରୁଣ୍ଡି ଗୁରୁଣ୍ଡି ଆଗେଇ ଯିବା ହେଉଛି ତାର କବିତା । ହେଲେ ସେ ଏଇଠି ପଡ଼ି ରହିଛି 'bound only by the dead desperation to crawl' । ମୁଁ ମିଛିମିଛିକା ରାଗିଲି ତା ଉପରେ । କେଉଁ ଅଧିକାରରେ ତୁ ଏମିତିକା କବିତା ଲେଖିବୁ ଏଇ ବୟସରେ ? ଯଦିଓ ଏହିପ୍ରକାର ନିରାଶା ଭାବ ମଧ୍ୟ ଏଇ ବୟସର ଗୋଟିଏ ମାନସିକ ବିଳାସ ଭାବରେ ଦେଖା ଦେବା ବିଚିତ୍ର ନୁହେଁ । ଯାହାହେଉ ଏଇଠି ଥିଲା ବେଳେ ଦେଖିଲି ସେ କେମିତି ବ୍ୟତିବ୍ୟସ୍ତ ହେଉଛି 'ଉଡ଼ି ପଳେଇବା ପାଇଁ' । ଏବଂ ଭଗବାନଙ୍କୁ ଧନ୍ୟବାଦ ଦେଲି ଯେତେବେଳେ ମୁଁ ଜାଣିଲି ଅଳ୍ପ କେତେ ମାସ ପରେ ଯେ ଆମେରିକାର ବୋଷ୍ଟନ୍‌ରେ ଥିବା Wentworth University ତାର ଆବେଦନ ପତ୍ର ମଂଜୁର କରିଛି ଏବଂ ତାକୁ ଡାକରା ଆସିଛି ସେଠିକି ଯାଇ ତାର ଇଂଜିନିୟରିଂଗ୍ ଡିଗ୍ରୀ(Industrial Engineering) ହାସଲ କରିବା ପାଇଁ । ମୁଁ ତାକୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଜଣାଇଥିଲି ଏବଂ ଆଶା କଲି ଯେ ସେ ଆଉ ସେମିତିକା ଦୁଃଖଭରା ଗୀତ ଗାଇବ ନାହିଁ ।

୧୯୯୧ରେ ମୋର ସାହିତ୍ୟ କେଉଁ ଯାଏଁ ଗଲା ରାମଙ୍କ ରାଜ୍ୟ ବିଷୟରେ ଦିପଦ ଲେଖିବା ଛଡ଼ା ?

ପ୍ରଥମେ ମୋର ଉପନ୍ୟାସ 'ସାତୋଟି ଦିନର ସତୀ' । ଦୁଃଖର ବିଷୟ ମୁଁ ତାକୁ ସାରି ଦେଇ ପାରିଲି ନାହିଁ ଏ ବର୍ଷ, ଯାହା ଆଶା କରିଥିଲି । ହେଲେ ତାକୁ ଲେଖି ଚାଲିଥିଲି । କିନ୍ତୁ ତା'ଛଡ଼ା ଏବଂ ମୋର ମୁଖ୍ୟସ୍ରୋତ ବୋଲାଉଥିବା ଓଡ଼ିଆ ଗଳ୍ପ ଲେଖିବାରେ ବିଶେଷ ଧୀମେଇ ନ ଯାଇ ମୁଁ ଯେଉଁ ସନ୍ତୋଷଜନକ କାମ କେତୋଟିକୁ ତୁଲେଇ ପାରିଥିଲି ତା ଏହିପ୍ରକାର :

— କେନ୍ଦ୍ର ସାହିତ୍ୟ ଏକାଡ଼େମୀଙ୍କର ଗୋଟିଏ ଯୋଜନା ଥିଲା ଯେ ସେମାନେ ପ୍ରତ୍ୟେକ ପୁରସ୍କାର ପ୍ରାପ୍ତ ବହିକୁ ଇଂରାଜୀ ତଥା ବିଭିନ୍ନ ଭାରତୀୟ ଭାଷାରେ ଅନୁବାଦ କରି ପ୍ରକାଶ କରିବେ । ଉତ୍ତମ । ମୁଁ ମୋ 'ଠାକୁର ଘର'ର ଇଂରାଜୀ ଅନୁବାଦ ନିଜେ କରିବାକୁ ଚାହିଁଲି ଏବଂ ସେମାନେ ରାଜି ହେଲେ । ସେଇଠୁ ସେଇ ସଂକଳନରେ ଥିବା କୋଡ଼ିଏଟି ଗଳ୍ପର ଇଂରାଜୀ ଅନୁବାଦ କରି ଦେଇ ଆସିଥିଲି ସେମାନଙ୍କୁ ।

— ''ତିରିଶ ବର୍ଷର ଗଳ୍ପ ଓ ଆଳାପ''ର ଦ୍ୱିତୀୟ ଭାଗ ପ୍ରକାଶିତ ହେଲା ଏ ବର୍ଷ । ତେଣୁ ଅବିଳମ୍ବେ ତୃତୀୟ ଭାଗର 'ଆଳାପ' ପାଇଁ କଲମ ଧରିବାକୁ ପଡ଼ିଲା ଏବଂ ତାକୁ ମଧ୍ୟ ମୁଁ ଏଇବର୍ଷ ସାରି ଦେଇ ପ୍ରକାଶକଙ୍କ ପାଖରେ ପହୁଂଚେଇ ଦେଇଥିଲି ।

— କବିତା ଲେଖାର ସାଧ ପୁଣି ଜାଗି ଉଠିଲା । କିନ୍ତୁ ଗୋଟିଏ ନୂଆ ଭାବରେ । ମୁଁ ସେତେବେଳକୁ ପୁଣି ଯାଇଥିଲି କ୍ୟାନେଡ଼ାରେ ଝିଅ ଚିନୁ ପାଖକୁ । ମାର୍ଚ୍ଚ ୨୦ ତାରିଖରେ ତାର ଝିଅଟିଏ ହେଲା । ତା ନାଆଁ ଦିଆଗଲା 'ଆୟେଷା' । ସେଇଠୁ ଠିକ୍ ହେଲା ଯେ ମୁଁ ପୁଣି ସେଠିକି ଯିବି, ଏବଂ କୁମ ଓ ମୁଁ ଏକାଠି ଫେରି ଆସିବୁ ପିଲା ଟିକିଏ ବଡ଼ ହେଲା ପରେ । ସେହେତୁ ମୁଁ ପୁଣି ଗଲି କ୍ୟାନେଡ଼ାକୁ ଜୁନ୍ ମାସରେ, ଏବଂ ଡିସେମ୍ବର ମାସରେ ଆମେ ଏକାଠି ଫେରି ଆସିଲୁ ଭାରତକୁ । ଏଇ ଦ୍ୱିତୀୟ କ୍ୟାନେଡ଼ା ରହଣି ସମୟରେ ଅନ୍ୟାନ୍ୟ ଲେଖକୀୟ ସାହିତ୍ୟିକ କାମ କରିବା ସାଙ୍ଗକୁ ମୋର ଝୁଂକ ଉଠିଲା ଗୋଟାଏ ନୂଆ ଧାରଣର କବିତା ଲେଖିବା ପାଇଁ । କଣ ହେଲା କି ମୁଁ ସେଠିକାର ଗୋଟିଏ ପବ୍ଲିକ୍ ଲାଇବ୍ରେରୀରେ ବସି ଯେଉଁ ନୂଆ ନୂଆ ବହି ପଢ଼ିବାର ସୁଯୋଗ ପାଇଥିଲି, ତା'ଭିତରେ ଥିଲା ବୌଦ୍ଧ ଧର୍ମରୁ ଉଦ୍‌ଭୁତ 'ଜେନ୍' ତତ୍ତ୍ୱ ବିଷୟରେ ଅନେକ ବହି । ତାକୁଇ ପଢୁ ପଢୁ ଦେଖିଲି ଯେ ସେଇ ତତ୍ତ୍ୱକୁ ଆଶ୍ରା କରି ଗୋଟାଏ ନୂଆ ଧରଣର କବିତା ଲେଖା ହୋଇଛି ଏବଂ ତାକୁ ଏକ ବିଶିଷ୍ଟ ସ୍ୱତନ୍ତ୍ର ସମ୍ମାନ ମିଳିଛି ବିଶ୍ୱ ସାହିତ୍ୟର ଦରବାରରେ । ତା ନାଆଁ 'ହାଏକୁ' (haiku) କବିତା, ତାର ଆରମ୍ଭ ଜାପାନରୁ । ମାତ୍ର ଦି ଧାଡ଼ିଆ କବିତା, କେବଳ ଗୋଟାଏ ଆଖିଦେଖା ଦୃଶ୍ୟର ଛବି ଆଂକି ଦେଲା ପରି । ଯେହେତୁ ଜେନ୍ ତତ୍ତ୍ୱର ମୂଳକଥା

ହେଲା ସଂସାରର ଚଳଚିତ୍ରକୁ ଅନେଇ ରହିବା, ସେଥିରେ ପୂରାପୂରି ମିଶିଯାଇ । ସତେକି ତମେ ବି ରହିଛ ସେଇ ଚଳନ୍ତା ଦୃଶ୍ୟ ଭିତରେ । ସେଇଠୁ ମୋର ବି ଇଚ୍ଛା ହେଲା ସେମିତି କିଛି ଲେଖିବା ପାଇଁ, ସେହିପ୍ରକାର ଦିଧାଡ଼ିଆ ଓଜନିଆ କବିତା । ଏବଂ ମୁଁ ଲେଖିଗଲି କେତୋଟି ଓଡ଼ିଆ କବିତା 'ହାଏକୁ'ର ଶୈଳୀରେ । ଦିଧାଡ଼ିଆ କବିତା ତ' ସେଥିରୁ ଗୋଟିଏ ଉଦ୍ଧାର କଲେ ମନ୍ଦ ହେବ ନାହିଁ । ଝିଅ ଘର ବାରିପଟେ ଦେଖିବାକୁ ମିଳିଥିବା ଦୃଶ୍ୟର ପରିପ୍ରେକ୍ଷୀରେ । ସମୟ ଶୀତଋତୁ । କବିତାର ନାଆଁ 'ଦୁଃସ୍ୱପ୍ନ' । ଏବଂ ତାର ଧାଡ଼ି କେତୋଟି ଏହି ପ୍ରକାର :

ପତରଟେ ନାଚି ନାଚି ଆସିଲା ତଳକୁ
ତାକୁ ଧରି ହେଲା ନାହିଁ ।
ରାତିରେ ନିଦ ଭାଙ୍ଗିଗଲା
ତାକୁ କିଏ ଖୁଂପୁଛି ଯେମିତି ।।

ମୋର ସୁଲେଖିକା ଝିଅର ଅକାଳ ବିୟୋଗ ପରେ ମୁଁ ସ୍ୱେଚ୍ଛାରେ ଏବଂ ଆଗ୍ରହର ସହିତ ଗୋଟିଏ କାମ ହାତକୁ ନେଲି । ତା'ର ଲେଖକ ବାପଟିଏ ହୋଇ ମୁଁ ଏତିକି କରିପାରିବି ନାହିଁ ତା ପାଇଁ ? ମୁଁ ସ୍ଥିର କଲି ଯେ ତାର କେତୋଟି ଇଂରେଜି କବିତା ଓ ଗପଗୁଡ଼ିକୁ ମୁଁ ଓଡ଼ିଆରେ ଅନୁବାଦ କରି ଛପେଇବି ଓଡ଼ିଆ ଶିଶୁ ପତ୍ରିକାରେ । ଏବଂ ତାକୁ ଚିହ୍ନାଇବି ଆମ ସାହିତ୍ୟିକ ମହଲରେ । ସେହି କ୍ରମରେ ମୁଁ ''ସରଗଶଶୀର ହସ'' (କବିତା) ''ଟିକେ ଓଦାଳିଆ, ଟିକେ ଚିକିଚିକି'' (ଗଳ୍ପ), ''ହାତୀ ଭାଇର କୁଲାକାନ'' (ଗଳ୍ପ) ଆଦି ବେଶ୍ କେତୋଟି ବିଶ୍ୱଜିତା ସାହିତ୍ୟ ପ୍ରକାଶ କରିଥିଲି ''ଶିଶୁଲେଖା'' ଆଦି ଓଡ଼ିଆ ଶିଶୁ ପତ୍ରିକାରେ ।

ଏବର୍ଷର ନୂଆ ବହି ଭିତରେ କେବଳ ଉପରୋକ୍ତ ''ତିରିଶ ବର୍ଷର ଗଳ୍ପ ଓ ଆଳାପ''ର ଦ୍ୱିତୀୟ ଭାଗ । ଏବଂ ଗୋଟିଏ ନୂଆ ଇଂରେଜୀ ବହିର ପ୍ରସ୍ତୁତି ହେଲା ଏଇବର୍ଷ, ଯେତେବେଳେ ମୁଁ "Midnight Moon and other stories" ନାମକ ଗୋଟିଏ ନୂଆ ଏବଂ ତୃତୀୟ ଇଂରାଜୀ ସଂକଳନ (ମୌଳିକ ଏବଂ ଅନୁଦିତ ଗଳ୍ପର ସମାହାର) ପାଇଁ ୧୬ଟି ଗଳ୍ପର ପାଣ୍ଡୁଲିପି ଦେଇ ଆସିଲି ଦିଲ୍ଲୀର ଗୋଟିଏ ବିଶିଷ୍ଟ ପ୍ରକାଶନ ସଂସ୍ଥା "B.R. Publishers"ର ନିର୍ଦ୍ଦେଶକ ପ୍ରବୀନ ମିତ୍ତଲ୍‌ଙ୍କୁ ।

ହେଲେ ପୁଣି ଆଉ ଗୋଟିଏ ଭୟାବହ ଚିତାନଳ ଜଳିବାକୁ ଥିଲା ଏବର୍ଷ । ଜଣେ ଆତ୍ମଘାତୀ ବୋମାଧାରିଣୀ ହାତରେ ରାଜୀବ ଗାନ୍ଧୀଙ୍କ ନିଧନ, ମେ ୨୧ ତାରିଖରେ । ସେ ଯେତେବେଳେ ଆସିଥିଲେ ଗୋଟିଏ ଇଲେକ୍‌ସନ୍ ମିଟିଂଗ୍‌କୁ । ମୁଁ ରାଗିଲି, କାହା ଉପରେ ମୁଁ ଜାଣେ ନାହିଁ, କିନ୍ତୁ ପୁଣି ଭାବି ବସିଲି ନାହିଁ ଯେ ଆମେ ଯାହା ସବୁ କରୁଛୁ, ଲେଖକ-କଳାକାରମାନେ, ତାହା ଅବାନ୍ତର । ବରଂ ମନକୁ ଆସିଲା ଯେ କେବଳ ଆମରିମାନଙ୍କ ମୁଣ୍ଡ ଠିକ୍ ଅଛି ଏ ଦେଶରେ, ଅନ୍ୟମାନେ ସମସ୍ତେ ପାଗଳ ।

୧୯୯୨ ମସିହାରେ ମୁଁ ଗୋଟିଏ ବଡ଼ ଏବଂ ଅନେକ ଦିନୁ ମୋତେ ହଇରାଣ କରି ଆସୁଥିବା ଦାୟିତ୍ୱକୁ 'ଦେଖ୍, ତୋତେ ବି ପୂରା କରି ଦେଲି' ବୋଲି କହି ପାରିଲି । ମୋର ପ୍ରଥମ ଉପନ୍ୟାସ ''ସାତୋଟି ଦିନର ସତୀ'' ସରିଗଲା ଏଇ ବର୍ଷ । ଏବଂ ମୋର ଦ୍ୱିତୀୟ ଉପନ୍ୟାସ 'ନେତା ଓ ନେତ୍ରମଣି' ଆରମ୍ଭ କଲି । ଆତ୍ମାନନ୍ଦରେ ଭରି ଉଠିଲା ମନ । ଅବଶ୍ୟ ମୋତେ ଆସି ୬୮ ବର୍ଷ ହେଲାଣି । କଣ ହେଲା ସେଥୁଁ ? ନିଜକୁ କହିଲି ଯେ ତଥାପି ଅନେକ ସମୟ ଅଛି ମୋ ହାତରେ, ଆହୁରି କେତୋଟି ଉପନ୍ୟାସ ଲେଖିବା ପାଇଁ । ସେଣିକି ଭଗବାନଙ୍କ ଇଚ୍ଛା ।

'ତିରିଶ ବର୍ଷର ଗଳ୍ପ ଓ ଆଳାପ'ରେ ମୁଁ ପ୍ରତ୍ୟେକ ଗଳ୍ପ ଉପରେ ଅନେକ କିଛି କହିଛି । ତେଣୁ ବିଶେଷ କାରଣ ହେତୁ କେତୋଟି ନିର୍ବାଚିତ ଗଳ୍ପ ସଂପର୍କରେ କିଛି କହିବା ଛଡ଼ା ସେସବୁକୁ ଏଠି ଦୋହରେଇବାକୁ ଚାହିଁଲି ନାହିଁ । କିନ୍ତୁ ଏଇ ବୁଢ଼ାଦିନିଆ ସନ୍ତାନମାନଙ୍କ ବିଷୟରେ କିଛି କହିଲେ ଭଲ ହେବ ପରା ବୋଲି ଭାବୁଛି ।

ପହିଲି ଉପନ୍ୟାସ 'ସାତୋଟି ଦିନର ସତୀ'ରେ ମୋର ନାୟିକା ହେଉଛି ଆମ ମଧ୍ୟବିତ୍ତ ସମାଜର ଗୋଟିଏ ସୁଶ୍ରୀ, ଶିକ୍ଷିତା ଏବଂ ସ୍ୱାଭିମାନୀ ଓଡ଼ିଆ ଝିଅ । ଉଣା ନୁହେଁ ସେମାନଙ୍କର ସଂଖ୍ୟା । ହେଲେ ସେମାନଙ୍କ ଯୋଗ୍ୟତାକୁ କଣ ମିଳେ ସେଥିର ପ୍ରାପ୍ୟ ? ଏବଂ ତାଙ୍କ ସ୍ୱାଭିମାନ କଣ ତିଷ୍ଠି ରହିପାରେ ଆମ ସମାଜରେ ? ନୁହେଁ, ସାଧାରଣତଃ । ସଂସ୍କାରର ଚାହିଦା ଭିନ୍ନ । ତା'ବୋଲି ଏଇ ଝିଅମାନେ ଅସୁଖୀ ହୋଇ ରହନ୍ତି ନା କଅଣ ? ପଢ଼ିବା ହୁଅନ୍ତୁ ଏଇ ନବପରିଣୀତା ଝିଅର ସାତଦିନିଆ ବିଦ୍ରୋହର କାହାଣୀ । ଏବଂ ନିଜକୁ ପଚାରନ୍ତୁ ଯେ ଶେଷକୁ ସେ ଜିତିଲା ନା ହାରିଲା । ଏଇଥିପାଇଁ ମୋର ଏଇ ପ୍ରଶ୍ନ, ଯେହେତୁ ଉଚ୍ଚପ୍ରଶଂସିତ ଏଇ ଉପନ୍ୟାସର ପାଠକପାଠିକାମାନେ ପରସ୍ପରବିରୋଧୀ କାରଣରୁ ଯା'କୁ ପ୍ରଶଂସା କରିଛନ୍ତି । କିଏ କୁହେ ଯେ ଝିଅ ଠିକ୍ କରିଛି ଏହାହିଁ ବୁଦ୍ଧିମତୀର କାର୍ଯ୍ୟ । ଏବଂ କିଏ କୁହେଁ ଯେ ଝିଅ ଠିକ୍ କରିଛି, ଏହାହିଁ ଓଡ଼ିଆ ନାରୀର ଆଦର୍ଶ । କେହି କୁହନ୍ତି ନାହିଁ ଯେ ଝିଅ ଭୁଲ୍ କରିଛି, ତା ସତୀତ୍ୱର ବ୍ରତକୁ ଏମିତି ଉଝେଇ ଦେଇ ସାତୁଟା ଦିନ ଭିତରେ । ଉଲ୍ଲେଖଯୋଗ୍ୟ ଯେ ଶ୍ରୀନିବାସ ଉଦ୍‌ଗାତାଙ୍କ ଦ୍ୱାରା ଅନୁଦିତ ହୋଇ ଏହି ଉପନ୍ୟାସର ହିନ୍ଦୀ ରୂପାନ୍ତର ''ସାତ୍ ଦିନ୍‌କୀ ସତୀ'' ୨୦୦୪ ମସିହାରେ ଦିଲ୍ଲୀର ଆଲେଖ ପ୍ରକାଶନଙ୍କ ଦ୍ୱାରା ପ୍ରକାଶିତ ହୋଇଛି ।

ଏବର୍ଷ ମଧ୍ୟ ବେଶ୍ କେତେଗୁଡ଼ିଏ ଗଳ୍ପ ଓ ପ୍ରବଂଧ ଲେଖିଛି । କିନ୍ତୁ କେବଳ ଗୋଟିଏ ଗଳ୍ପ ବିଷୟରେ କିଛି କହିବା ଉଚିତ ମନେ କରୁଛି କାରଣ ସେଥିରେ ଅଛି ମୋ ବ୍ୟକ୍ତି ଜୀବନର ଲୁହଲହୁବୋଳା ସ୍ୱାକ୍ଷର । ମୋ ଝିଅ ବିଶ୍ୱଜିତାକୁ ହରାଇବାର ଦାରୁଣ ଦୁଃଖ । ଏଠି ଲେଖକ ମୃଦୁ ମୃଦୁ ହସିପାରୁ ନାହିଁ, ବିଚିତ୍ର ମଣିଷ ମନର ଦୁର୍ଦ୍ଦଶା ଦେଖି, କେମିତି ସେ ନିଜକୁ ଭୁଲଉଛି କି ଠକଉଛି । କାରଣ ସେ ବୋକା ପାଲଟି ଯାଇଛି । ଏବଂ ତାର ବୁଢ଼ାବୁଢ଼ୀ ନାୟକନାୟିକା କୁଣ୍ଠାକୁଣ୍ଠି ହୋଇ ତାଙ୍କ ଭିତିରି କ୍ରୋଧକାନ୍ଦଣାକୁ ଅଜାଡ଼ି ଦେଉଛନ୍ତି ଭଗବାନଙ୍କ ଉପରେ । କଣ ନା ଆମ ନୂଆ ଘର ଫାଟକର ଧଳା ମାର୍ବଲରେ କିଛି ହେଲେ ଲେଖା ହେବ ନାହିଁ- ବୁଝିଲ ଭଗବାନ ?

''ତମର ଧଳା ଆକାଶରେ ଚଢ଼େଇଟିଏ ବି ଉଡ଼ିବ ନାହିଁ । ଜୀବନର ଦାଗଟିଏ ପଡ଼ିବ ନାହିଁ, କାଆକାଆ କୁଆଁ କୁଆଁ, ପ୍ରାଣର ସାମାନ୍ୟତମ ସ୍ଫୁରଣ । ଧବଳଟା ନିର୍ମଳ ନୁହେଁ ମ, ସିଏ ହେଉଛି ଆଶା ଭରସାର ଅବଶେଷ, ତାର ଲେସି ହୋଇ ଯାଇଥିବା ବୋଳ । ସେଇଥିରେ ଏମିତି ଧଳା ଦିଶୁଛି ତମ ଆକାଶ । ଶୁଭ୍ର, ନିଶ୍ଚିହ୍ନ, ନିଶ୍ଚିନ୍ତ । ତମକୁ ଭାରୀ ଭଲ ଲାଗୁଛି, ନୁହେଁ ?

ତମ ଛାତିଟା ବି' କୋରି ହୋଇଯାଉନାହିଁ, ଭଗବାନ ?

''ଧବଳ ଆକାଶ'' ନାମକ ଏଇ ଗପଟି ମୋର ଚତୁର୍ଦ୍ଦଶ ଗଳ୍ପ ସଂକଳନ ''ଧବଳ ଆକାଶ''ର ଶୀର୍ଷକ । ପ୍ରବଂଧ ଭିତରେ ବିଶେଷ ଉଲ୍ଲେଖଯୋଗ୍ୟ ହେଉଛି ଇଂରାଜୀ "Autonomy of Literature" (ସାହିତ୍ୟର ସ୍ୱାୟତ୍ତତା) ଯାହାକୁ ମୁଁ କଲିକତାରେ Indian Writers' Association ଦ୍ୱାରା ଆହୂତ ଗୋଟିଏ ସେମିନାରରେ ଉପସ୍ଥାପିତ କରିଥିଲି । ମଧ୍ୟ ଇଂରାଜୀରେ ଲେଖା "The Oriya short story" ଯାହାକୁ ମୁଁ ଲେଖିଥିଲି ''ବିଶ୍ୱ ଓଡ଼ିଆ ସମ୍ମେଳନ'' ଦ୍ୱାରା ପ୍ରକାଶିତ ସ୍ମରଣିକା ପାଇଁ ।

ଏବଂ ଏବର୍ଷର ନୂଆ ବହି ହେଉଛି : (୧) ତିରିଶ ବର୍ଷର ଗଳ୍ପ ଓ ଆଳାପ - ତୃତୀୟ ଭାଗ (୨) ''ନିଜ ସଂଜ'', ତ୍ରୟୋଦଶ ଗଳ୍ପ ସଂକଳନ ଏବଂ (୩) ''ଶ୍ରେଷ୍ଠଗଳ୍ପ - କିଶୋରୀ ଚରଣ ଦାସ (ପ୍ରକାଶକ ଚତୁରଂଗ ପ୍ରକାଶନୀ, ଭୁବନେଶ୍ୱର) । ଲେଖକ ବଂଧୁ ବିଭୂତି ପଟ୍ଟନାୟକଙ୍କ ଅନୁରୋଧ ଏଡ଼ି ଦେଇନପାରି ମୁଁ ଏଇ ଗଳ୍ପଗୁଡ଼ିକ ଯୋଗାଇଥିଲି ପ୍ରକାଶକଙ୍କୁ, ହେଲେ ତାର ମୁଖବଂଧରେ ପରିଷ୍କାର ଭାବରେ କହିଛି ଯେ ଏଗୁଡ଼ିକ ମୋର ''ଶ୍ରେଷ୍ଠଗଳ୍ପ'' ନୁହେଁ, କୌଣସିମତେ ବାଛିବାକୁ ପଡ଼ିଲା କେତୋଟିକୁ, ମୋଟାମୋଟି ସେଥିର ଲୋକପ୍ରିୟତା ଦୃଷ୍ଟିରୁ । ପ୍ରକୃତରେ ଲେଖକର କୌଣସି ଅଧିକାର ନାହିଁ କେଉଁଗୁଡ଼ିକ ତାର ଶ୍ରେଷ୍ଠ ଗଳ୍ପ ବୋଲି କହିବ ଇତ୍ୟାଦି । କିନ୍ତୁ ମୁଁ ଜାଣେ ଯେ ଆମ ସହଜିଆ ସମାଜର ଅନେକ ପାଠକପାଠିକା ଖାଲି ଯାକୁ ହିଁ ପଢ଼ି ବସିବେ, କିଶୋରୀ ଚରଣଙ୍କୁ ଜାଣି ନେଲି ବୋଲି ନିଜକୁ କହିଲା ପରି । ଉପାୟ ନାହିଁ । ବ୍ୟବସାୟାତ୍ମକ ଦୃଷ୍ଟିରୁ ଏହି ପ୍ରକାର 'ଚୟନ'କୁ ନାହିଁ କରିହେବ ନାହିଁ, ତାହା ଯଥାର୍ଥ ନହେଲେ ମଧ୍ୟ ।

ନାନାଦି ସାକ୍ଷାତ୍‌କାର ଭିତରେ ଦୁଇଟି ଉଲ୍ଲେଖଯୋଗ୍ୟ ଥିଲା ମୋ ପାଇଁ । ଯାହା ''ଆକାଶବାଣୀ'' କଟକଙ୍କ ଦ୍ୱାରା ପ୍ରସାରିତ ହୋଇଥିଲା । ଗୋଟିକର ନାଆଁ ''ମାନନୀୟେଷୁ'' ଏବଂ ଦ୍ୱିତୀୟଟିର ନାଆଁ ''ଚାଲ ଅଜାଙ୍କୁ ଭେଟିବା ।'' ଭାବିଲି - ଇସ୍ ଏତେ ଶୀଘ୍ର ମୁଁ ମାନନୀୟ ବୁଢ଼ାଟିଏ ହୋଇଗଲିଣି ? ତା'ମାନେ କଣ ପାଠକସମାଜ ଏଣିକି କେଉଁ ବରିଷ୍ଠଧର୍ମୀ ଭିନ୍ନ ଧରଣର ଲେଖା ଆଶା କରେ ମୋଠୁଁ ? ହେଲେ ଅବିଳମ୍ବେ ମୁଁ ନିଜକୁ କହିଲି ଯେ ଯାହା ସେମାନେ ଚାହାନ୍ତୁ ପଛେ ଅଜାଙ୍କ ଠାରୁ, ମୁଁ ନିଜକୁ ବଦଳାଇ ପାରିବି ନାହିଁ । ଧନ୍ୟବାଦ ।

ହଁ, ଏଇବର୍ଷ ମୋତେ ଆଉ ଗୋଟିଏ ଆନୁଷ୍ଠାନିକ ସ୍ୱୀକୃତି ମିଳିଲା । ପ୍ରଜାତନ୍ତ୍ର ପ୍ରଚାର ସମିତି କଟକର ବିଷୁବ ମିଳନ ଉପଲକ୍ଷରେ ପ୍ରଦତ୍ତ 'ବିଷୁବ ପୁରସ୍କାର' । ମୋର ଆଜୀବନ ସାହିତ୍ୟକୃତି ପାଇଁ ।

ସେଇଠୁଁ ୧୯୯୩ । ଏଇ ବର୍ଷ ମୋର ପ୍ରଥମ ଉପନ୍ୟାସ ପ୍ରକାଶ ପାଇଲା । ଏବଂ ମୋ ଲେଖାର ମୁଖ୍ୟ ସ୍ରୋତ ହେଲା ମୋର ଦ୍ୱିତୀୟ ଉପନ୍ୟାସ ''ନେତା ଓ ନେତ୍ରମଣି'' । ଯାର ଫୋକସ୍ କେଉଁ ସାନମଣିଷଟି ଉପରେ ପଡ଼ି ନାହିଁ । (ଯେତେ ଶିକ୍ଷିତା, ସୁନ୍ଦରୀ କି ମନସ୍ୱିନୀ ହେଲେ ମଧ୍ୟ ଓଡ଼ିଆ ଝିଅଟିଏ ସାନ ମଣିଷ ନୁହେଁ ତ ଆଉ କଅଣ ?) ଏଥିରେ ଅଛନ୍ତି ଯୋଡ଼ିଏ 'ବଡ଼ ମଣିଷ' । ଯେହେତୁ ସେମାନେ ନେତା ହେବାକୁ ଚାହାନ୍ତି ବିଭିନ୍ନ ଆବେଗ ଏବଂ ଉଦ୍ଦେଶ୍ୟକୁ ନେଇ । ହେଲେ ମଝିରେ ଆସି ପହୁଂଚିଲା ସରଳା ଏବଂ ସ୍ୱଚ୍ଛବୁଦ୍ଧି ପରି ମନେ ହେଉଥିବା ନେତ୍ରମଣି, ଜଣକର ଝିଅ ଏବଂ ଅନ୍ୟ ଜଣକର ସ୍ତ୍ରୀ । ମୁଖ୍ୟତଃ ଏଇ ତିନିଜଣଙ୍କୁ ନେଇ ଏଇ ଉପନ୍ୟାସ ଯାହାର ସ୍ୱର ରାଜନୈତିକ ବୋଲି କୁହାଯାଇପାରେ ।

ଏଇ ବର୍ଷ ମଧ୍ୟ ମୋର ଦୁଇଟି ନୂଆ ଇଂରେଜୀ ବହି ବାହାରିଲା । ଗୋଟିଏ କେନ୍ଦ୍ର ସାହିତ୍ୟ ଏକାଡ଼େମୀଙ୍କ ଦ୍ୱାରା ପ୍ରକାଶିତ "The Prayer Room and other Stories" ମୋ ''ଠାକୁର ଘର'' ଗଳ୍ପ ସଂକଳନର ସ୍ୱରଚିତ ଇଂରାଜୀ ଅନୁବାଦ । ଏବଂ ଅନ୍ୟଟି ଦିଲ୍ଲୀର B.R. Publisherଙ୍କ ଦ୍ୱାରା ପ୍ରକାଶିତ "Midnight Moon and other Stories" । ଏଇ ଦୁଇଟିକୁ ମିଶେଇ ମୋର ଚାରୋଟି ଇଂରାଜୀ ଗଳ୍ପ ସଂକଳନ ବଜାରକୁ ଆସିଲା, ସର୍ବଭାରତୀୟ ପାଠକପାଠିକାମାନଙ୍କ ପାଇଁ ।

କେମିତି କେଜାଣି ହାତ ଖୁଜୁବୁଜି ହେଲା ଏ ବର୍ଷ ଗୁଡ଼ିଏ ଓଡ଼ିଆ କବିତା ଲେଖିବା ପାଇଁ, ଉପନ୍ୟାସ ଏବଂ ଅଳ୍ପସ୍ୱଳ୍ପ ଗଳ୍ପ, ପ୍ରବଂଧ ଓ ଅନୁବାଦ ଛଡ଼ା । ଯେଉଁ ଭାବାବେଗର ପ୍ରାଧାନ୍ୟ ବିଷୟରେ କହିଥିଲି ମୋର କବିତା ରଚନାକୁ ନେଇ ତା'ର ସ୍ୱରରେ ଫୁଟି ଉଠିଲା ମୋର ସଂଜବେଳିଆ ଦୁଃଖ । ଯେ ଦିନ ଆସି ସରିବାକୁ ବସିଲାଣି, ହେଲେ ମୋ ପସରା ଯେମିତି ପଡ଼ି ରହିଛି ଜାଣ । କାହିଁକିନା ମୁଁ ନିଜକଥା ଠିକ୍ ଭାବରେ କହିପାରିଲି ନାହିଁ ତମକୁ, କି ତମେ ବୁଝିଲ ନାହିଁ ତାକୁ । ଏହି ପ୍ରକାର ଭାବାବେଗ ପ୍ରଚଣ୍ଡ ହୋଇ ଉଠିଛି ଗୋଟିଏ କବିତାରେ । ତା ନାଆଁ ''ଗଦ୍ୟ ନୁହେଁ'' ସତେକି ଯଥାର୍ଥରେ କବିଟିଏ ହୋଇଥିଲେ ଏଭଳି ଦୁଃଖ ଆସିନଥାଆନ୍ତା ମୋ ମନରେ !

ଏବର୍ଷ ଏଠିକି ସେଠିକି ଯାଇ ସାହିତ୍ୟ ବିଷୟରେ କିଛି କହିବାର କାମ ଉଚିତରୁ ଅଧିକ ହୋଇଗଲା ବୋଲି ମୋର ମନେ ହୁଏ । କାରଣ କେତେକ ଜାଗାରେ ସେମାନେ ମୋ କଥା ଶୁଣିଲା ପରି କିମ୍ବା ଶୁଣିବାକୁ ଚାହିଁଲା ପରି ଲାଗିଲା ନାହିଁ । ସତେକି ଜଣେ ସୁବିଦିତ ଏବଂ ପ୍ରବୀଣ ଲେଖକକୁ ମଂଚରେ ଠିଆ କରେଇ କିଛି କୁହାଇବା ଦ୍ୱାରା ତାଙ୍କ

କାମ ପୁରା ହୋଇଗଲା । ତେବେ କେତୋଟି କଥାକୁହା ସନ୍ତୋଷଜନକ ହୋଇନଥିଲା ବୋଲି କହିବି ନାହିଁ । ସେଥିମଧ୍ୟରେ ଉଲ୍ଲେଖଯୋଗ୍ୟ "National Unity and Integrity in Indian Literature" ନାମକ ଯେଉଁ ପ୍ରବଂଧଟି ପଢ଼ିଥିଲି ଭୁବନେଶ୍ୱରର ସୂଚନା ଭବନରେ, ଲେଖକ ସାମ୍ମୁଖ୍ୟଙ୍କ ଦ୍ୱାରା ଆୟୋଜିତ ଗୋଟିଏ ସଭାରେ । ଏବଂ ଯେଉଁ ସାହିତ୍ୟିକ ଆଦାନପ୍ରଦାନ ରଚିତ ହୋଇଥିଲା ''ଶାନ୍ତି ନିକେତନ''ରେ, ''ବିଶ୍ୱଭାରତୀ'' ଓଡ଼ିଆ ବିଭାଗ ଆନୁକୂଲ୍ୟରେ ତାଙ୍କ ବୁଧବାରିଆ ଆସର'ର ସଭ୍ୟମାନଙ୍କ ସହିତ ।

ମୋ ଲେଖକୀୟ ନଉକାକୁ ଏମିତି ଭସେଇ ନେଉଥିଲି ଏବର୍ଷଟା ଯାକ ଏବଂ ନିଜକୁ କହି ହେଉଥିଲା ଯେ ସବୁ ଠିକ୍ ଅଛି । ଅର୍ଥାତ୍ ମୁଁ ମୋ ସ୍ୱଧର୍ମ ପାଳନ କରି ଚାଲିଛି । କିନ୍ତୁ ବ୍ୟକ୍ତିଗତ ଜୀବନରେ ପୁଣି ଗୋଟିଏ ଦାରୁଣ ଆଘାତ ମୋତେ ଚେତାଇ ଦେଲା ଯେ ତୁ ମରଦେହୀ, ତେଣୁ ତୋର ସ୍ୱଧର୍ମ ସାହିତ୍ୟ ନେଇ ତୁ କିଛି ଅଧିକ ଆନନ୍ଦର ଅଧିକାରୀ ହୋଇ ପାରିବୁ, ତା ହୋଇନପାରେ । ଯେହେତୁ ମୋର ବୋଉ ବି ଚାଲିଗଲା ଏବର୍ଷ, ତେଣୁ ମୁଁ ବାପମାଆ ଛେଉଣ୍ଡ ଅର୍ଥାତ୍ ଅନାଥ ହୋଇଗଲି । ବୋଉକୁ ୮୭ ବର୍ଷ ସେତେବେଳେ ଆଉ ମୋତେ ୬୯ ବର୍ଷ । ତା ବୋଲି କଣ ଅନାଥ ହେବାର ଦୁଃଖ ଆସିବନି ମୋ ମନରେ, ଯେ ଏଣିକି ମୁଁ ପୂରାପୂରି ଏକୁଟିଆ ? ବିଶେଷତଃ ଆସିଥିଲା ମୋ ମନରେ ଏଇ ବୋଉ ଜଣକ ପାଇଁ, ଯେ ପିଲାଟି ଦିନୁ ମୋତେ ଘଣ୍ଟ ଘୋଡ଼େଇ ରଖିଛି । ମୋର କୌଣସି ଦୋଷଦୁର୍ବଳତା ଥାଇପାରେ ବୋଲି ସ୍ୱୀକାର କରିନାହିଁ । ଆଉ ମୋ ସାହିତ୍ୟ ? ବାପା ସିନା ମୋ ସାହିତ୍ୟକୁ ବହୁମୂଲ୍ୟ ମନେ କରି ମୋର ପହିଲି ଲେଖାଗୁଡ଼ିକୁ ଏମିତି ସଯତ୍ନରେ ସାଇତି ରଖିଥିଲେ ଯେ ମୁଁ ତାକୁ ଖୋଜି ଖୋଜି ପାଇଲି ନାହିଁ ତାଙ୍କ ଚାଲିଗଲା ପରେ, ବୋଉ ବେଶି ମନ ଦେଇ ପଢୁଥିଲା ମୋ ଗପସବୁ । ଏବଂ ଥରେ ମୋତେ ଅବାକ୍ କରି ଦେଇ କହିଲା - ବୁଝିଲୁ ନା କେଶ, ମୋତେ ବଡ଼ ବିଚିତ୍ର ଲାଗେ ତୋ ଗପ ପଢ଼ିଲେ । ମନେ ହୁଏ ଏଗୁଡ଼ାକ ଗପ ନୁହେଁ, ସତସତିକା କଥା । ନିଜକୁ ବାସ୍ତବବାଦୀ ବୋଲି ମନେ କରୁଥିବା କେଉଁ ଲେଖକର ପେଟ ପୂରି ଉଠିବ ନାହିଁ ଏଭଳି ଗୋଟିଏ ମଂତବ୍ୟ ଶୁଣିଲେ ତାର ଜଣେ ନିଜ ଲୋକଠାରୁ ? ସେଇ ବୋଉ ଚାଲିଗଲା । ଏବଂ ମୋର ବେଶି ଦୁଃଖ ଯେ ମୁଁ ତା ପାଖରେ ନଥିଲି ତାର ଶେଷ ମୂହୂର୍ତ୍ତରେ । ଦିଲ୍ଲୀରେ ଥିଲି ପିଲାଙ୍କ ପାଖରେ, ଆଉ ମୋତେ ଫୋନ୍‌ରେ ଜଣାଇ ଦିଆଗଲା ଯେ ମୁଁ ଆସି ପହୁଂଚିବା ଯାଏଁ ତାର ମୃତ ଦେହକୁ ରଖିହେଲା ନାହିଁ । ତେଣୁ ଶେଷ ନମସ୍କାର ବି କରି ହେଲା ନାହିଁ ତାକୁ, ସେ ନିଶ୍ଚିହ୍ନ ହେବା ପୂର୍ବରୁ ।

ପିଲାପିଲିଙ୍କ ସଂସାରରେ କିଛି ଆନନ୍ଦର ଘଟଣା ଘଟି ନଥିଲା ନୁହେଁ । ଚିନୁର ଆଉ ଗୋଟିଏ ପୁଅ ହୋଇଥିଲା ଏପ୍ରିଲ୍ ୭ ତାରିଖରେ । ତା ନାଆଁ ଦିଆଗଲା ଅସୀମ । ସେଇ ହେଉଛି ନବମ ଓ ସର୍ବଶେଷ ମୋର 'ନବରତ୍ନ' ନାତିନାତୁଣୀଙ୍କ ଭିତରେ । ଏବଂ

ବଡ଼ଝିଅ ହୀନୁର ଦ୍ୱିତୀୟ ପୁଅ ଅଂଶୁମାନ୍, ତାକୁ ଉଣେଇଶ ବର୍ଷ ହେଲାଣି ଆସି, ସେ ବି ଉଡ଼ି ପଳେଇଲା ଆମେରିକାକୁ, ବଡ଼ଭାଇ ପଛେ ପଛେ । State University of Maineରେ କେମିକ୍ୟାଲ୍ ଇଂଜିନିୟରିଂଗ୍ ପଢ଼ିବ, ତାପରେ ମୋର କଥା । ସାନ ନାତିନାତୁଣୀମାନେ ମଧ୍ୟ ମୋଟାମୋଟି ଭଲ କରୁଛନ୍ତି । ହେଲେ ଜଣକ ପାଇଁ ଦୁଃଖ, ମହାଦୁଃଖ, ଯାହା ଏବେ ମଧ୍ୟ ରହିଛି ଏବଂ କେବେ ଘୁଂଚିବ ଭଗବାନ୍ ଜାଣନ୍ତି । ସ୍ୱର୍ଗୀୟା ବେବିର ପୁଅ ଅଭିଷେକ । ମାଆର ମୃତ୍ୟୁ ବେଳକୁ ତାକୁ ତିନି ପୂରି ଚାରି ଚାଲୁଥିଲା । ପିଲାଦିନୁ ତା'ର ଯେଉଁ ମସ୍ତିଷ୍କ ଦୋଷ ଅଛି ବୋଲି ମନେ ହେଉଥିଲା, ତା ଆଉ ବଢ଼ିଲା ପଛେ କମିଲା ନାହିଁ । ବାହାର ସଂସାରଠାରୁ ପୂରାପୂରି ଓହରି ଯାଇଥିବା ଅତି ଆତ୍ମଭୋଳା ପ୍ରାଣୀଟିଏ, ଯେଉଁମାନଙ୍କୁ autist ବୋଲି କୁହାଯାଏ । ଏବଂ ପୁଣି ଗୋଟାଏ ଆଶଂକା ଜାଗି ଉଠିଥିଲା ବଡ଼ଝିଅ ହୀନୁର ହାର୍ଟ ନେଇ । ଯେଉଁ ହାର୍ଟର ଭାଲ୍‌ଭକୁ ସଂପ୍ରସାରିତ କରାଯାଇଥିଲା ୧୯୭୧ ମସିହାରେ, ତା ପୁଣି ସଂକୁଚିତ ହୋଇ ଆସୁଛି ବୋଲି ଡାକ୍ତର କହିଲେ ।

ଆମେ ପୁଣି ଯାଇଥିଲୁ ବ୍ୟାଂଗ୍‌କକ୍, ବର୍ଷ ସରିଲା ବେଳକୁ । ପୁଣି କେତେ ଦୃଶ୍ୟ ଦେଖା, ଅନେକ ବୁଦ୍ଧଙ୍କ ପାଗୋଡ଼ା ସମେତ ଏବଂ ସ୍ୱାଦିଷ୍ଟ 'ଥାଏ' ବ୍ୟଂଜନର ଉପଭୋଗ । ହେଲେ ବର୍ଷର ଶେଷଦିନ ଯୌନ ଉପଭୋଗ ପାଇଁ ପ୍ରସିଦ୍ଧ ଓ ଟୁରିଷ୍ଟମାନଙ୍କ ଅନ୍ୟତମ ସ୍ୱର୍ଗ ହିସାବରେ ଗଣା ପଟ୍ଟାୟାର ବେଳାଭୂମିରେ ବସି ସୂର୍ଯ୍ୟାସ୍ତକୁ ଅନେଇ ରହିଥିଲା ବେଳେ ମୋର ମନେ ହେଲା ଯେ ବିଷାଦ ହିଁ ମଣିଷ ଦଶାର ଶେଷକଥା, ଆନନ୍ଦ ନୁହେଁ । ଅସ୍ତସୂର୍ଯ୍ୟର ରଂଗରେ ଯେତେ ବିଭବ ଥାଉ ନା କାହିଁକି ।

କିନ୍ତୁ 'ବିଷାଦଯୋଗ' ଭଲା କେତେ ସମୟ ତିଷ୍ଠି ରହିପାରିବ ଜଣେ ବୃଦ୍ଧ (ଭାବାର୍ଥ ତଥା ଆକ୍ଷରିକ ଅର୍ଥରେ ବୃଦ୍ଧ) ଲେଖକ ପାଇଁ ? ୧୯୯୪ର ସକାଳ ସୂର୍ଯ୍ୟ ଉଇଁ ଆସିଲା ବେଳକୁ ତାର ଚିହ୍ନବର୍ଣ୍ଣ ନ ଥିଲା । କାରଣ ମନେ ପଡ଼ିଗଲା ଯେ 'ନେତା ଓ ନେତ୍ରମଣି'କୁ ଯେମିତି ହେଲେ ସାରିବାକୁ ପଡ଼ିବ ଏବର୍ଷ । ଅନେକ ଡେରି ହୋଇଗଲାଣି ।

ଏହାହିଁ ଥିଲା ୧୯୯୪ର ସର୍ବପ୍ରଧାନ ଘଟଣା ଓ ସାର୍ଥକତା ମୋ ପାଇଁ । ମୋର ଦ୍ୱିତୀୟ ଉପନ୍ୟାସ "ନେତା ଓ ନେତ୍ରମଣି ।" ୨୭୪ ପୃଷ୍ଠା ବ୍ୟାପୀ ବଡ଼ ଉପନ୍ୟାସଟିଏ, ଶେଷ ହେଲା ମେ ୨୯ ତାରିଖରେ । କିଛି କହିଥିଲି ପୂର୍ବରୁ ଏଇ ଉପନ୍ୟାସ ବିଷୟରେ । କେମିତି ଦିଜଣ ବଡ଼ ମଣିଷ ଆହୁରି ବଡ଼ ହେବାକୁ ଚାହିଁଥିଲେ, ଉପଯୁକ୍ତ କ୍ଷମତାର ଅଧିକାରୀ ହୋଇ । ଆହୁରି କହିଦିଏ ଯେ ଏଇ ଦୁଇ ଦେଶପ୍ରେମୀଙ୍କ ଭିତରୁ ଜଣେ ଥିଲେ ଗାନ୍ଧୀବାଦୀ ନୀତିବାଦୀ ନେତା ଏବଂ ଅନ୍ୟ ଜଣକ ଆଜିକାଲିକାର ପ୍ରାକ୍ଟିକ୍ୟାଲ୍ ନେତା । ହେଲେ ସରଳା ନେତ୍ରମଣି ମଧ୍ୟ ଅଛି ସେମାନଙ୍କ ଭିତରେ ଏବଂ ତାର ଭୂମିକାକୁ ହେଳେଇ ଦେଇ ହେବ ନାହିଁ । ଶେଷକୁ କଣ ହେଲା, କିଏ କେତେଦୂର ସଫଳ ହେଲା ତାର ଆଦର୍ଶ, କାମନା

ବାସନା ଏବଂ ଲକ୍ଷ୍ୟକୁ ନେଇ ଏବଂ ନେତ୍ରମଣିକୁ ପ୍ରକୃତରେ ହୂଣ୍ଡୀ ବୋଲି କହିବ ନା ବୁଦ୍ଧିମତୀଟିଏ, ସେ ବିଷୟରେ ବହିଟିରୁ ଜାଣିବାକୁ ପାଇବେ । ଲେଖାଟି 'ଝଂକାର'ର ୧୯୯୪ ବିଷୁବ ସଂଖ୍ୟାଠାରୁ ଧାରାବାହିକ ଭାବରେ ପ୍ରକାଶିତ ହେଲା । ମଧ୍ୟ 'ପ୍ରଜ୍ଞାତନ୍ତ୍ର ପ୍ରଚାର ସମିତି' ଦ୍ୱାରା ବହି ଆକାରରେ ପ୍ରକାଶିତ ହେଲା ୧୯୯୬ ମସିହାରେ ।

ଏବଂ ଏଇ ଉପନ୍ୟାସ ସରୁ ନ ସରୁଣୁ ମୁଁ ଆରମ୍ଭ କରିଦେଲି ମୋର ତୃତୀୟ ଉପନ୍ୟାସ 'ସକଳ ସଂତାନ ।' ଭାବିଲି ଏଥର କିଛି କହିବି ମୋ ନିଜ ସଂସାର ଉପରେ । ଅର୍ଥାତ୍ ଏଇ ଲେଖକର ସଂସାର ଯାହାକୁ ମୁଁ ସବୁଠାରୁ ଭଲ ଭାବରେ ଜାଣେ ବୋଲି ଦାବୀ କରି ପାରିବି, ତାରି ବିଷୟରେ । ସମସ୍ତେ ତ ବାଗ୍‌ଦେବୀଙ୍କ ସଂତାନ, କିନ୍ତୁ ସବୁ ସଂତାନ କଣ ଏକାଭଳି ହୋଇଥାଆନ୍ତି ? ସେହେତୁ ମାଆ ସରସ୍ୱତୀ ତାଙ୍କ ଭିତରେ ପାତର ଅନ୍ତର କରନ୍ତି କି ନାହିଁ ସେକଥା ଭିନ୍ନ, କିଭଳି ସଂପର୍କ ଗଢ଼ି ଉଠେ ପରସ୍ପର ମଧ୍ୟରେ ଏବଂ କିଭଳି ସଫଳତାର ସୁଖ ଅବା ବିଫଳତାର ଦୁଃଖ ଆସେ ତାଙ୍କ ଜୀବନରେ, ତାହାହିଁ ଥିଲା ଉପନ୍ୟାସର ପରିକଳ୍ପିତ ସାରକଥା ।

ମୋର ଅନୁବାଦ ସାହିତ୍ୟର ଦୁଇଟି ଦିଗ ରହିଛି । ଓଡ଼ିଆରୁ ଇଂରାଜୀ ଏବଂ ଇଂରାଜୀରୁ ଓଡ଼ିଆ । ନିଜ ଓଡ଼ିଆ ଗଳ୍ପକୁ ବାହାରେ ଚିହ୍ନାଇବା ଦିଗରେ ମୁଁ ଅନେକ ଗୁଡ଼ିଏ ଗଳ୍ପର ଇଂରାଜୀ ଅନୁବାଦ ତ କରିସାରିଲିଣି ଇତି ମଧ୍ୟରେ । 'ଠାକୁର ଘର' ସଂକଳନର ଇଂରାଜୀ ଅନୁବାଦ ସାହିତ୍ୟ ଏକାଡ଼େମୀଙ୍କ ତରଫରୁ । ତାଛଡ଼ା ଅନେକ ଅନୁଦିତ ଗଳ୍ପ ସ୍ଥାନିତ ହୋଇଛି ମୋର "Death of an Indian" ଓ "Midnight Moon and other stories" ନାମକ ସଂକଳନରେ । ଏହା ଛଡ଼ା ଅନ୍ୟାନ୍ୟ କେତେକ ଓଡ଼ିଆ ଲେଖକମାନଙ୍କ ଗଳ୍ପ ରମ୍ୟରଚନା ଓ ପ୍ରବଂଧକୁ ମୁଁ ଅନୁବାଦ କରିଛି ଆମର "Oriya writing Today" ପାଇଁ, ଯାହାର ପାଣ୍ଡୁଲିପି ଆହୁରି ଆହୁରି ମୋଟା ହୋଇ ଚାଲିଛି, ଗୋଟିକ ପରେ ଗୋଟିଏ ପ୍ରକାଶକଙ୍କ ପଛଘୁଂଚା ସତ୍ତ୍ୱେ । ବିପରୀତମୁଖୀ ଇଂରାଜୀରୁ ଓଡ଼ିଆ ଅନୁବାଦ ଭିତରେ "The Last Labyrinth" ଉପନ୍ୟାସର ଓଡ଼ିଆ ଅନୁବାଦ ଶେଷ ଗୋଲକଧଂଦା ବିଷୟରେ ମୁଁ କହିଛି ଏଥିପୂର୍ବରୁ । ସେଇ ସାହିତ୍ୟ ଏକାଡ଼େମୀଙ୍କ ତରଫରୁ ମୁଁ ଆଉ ଗୋଟିଏ ଉପନ୍ୟାସର ଅନୁବାଦ ହାତକୁ ନେଇଥିଲି ନୟନତାରା ସାଏଗଲଙ୍କ ଏକାଡ଼େମୀ ପୁରସ୍କାର ପ୍ରାପ୍ତ "Rich like us"ର ଓଡ଼ିଆ ଅନୁବାଦ । ''ଆମରି ପରି ବଡ଼ଲୋକ'' ନାଆଁରେ ସେଇ ଉପନ୍ୟାସଟିକୁ ମଧ୍ୟ ମୁଁ ସାରିଦେଇ ପାରିଲି ଏବର୍ଷ ।

ବେଶ୍ କେତେଗୁଡ଼ିଏ ପ୍ରବଂଧ ଉପସ୍ଥାପିତ କରିବାକୁ ପଡ଼ିଥିଲା ବିଭିନ୍ନ ସଭାସମିତିରେ । ବିଶେଷ ଉଲ୍ଲେଖଯୋଗ୍ୟ :

— ଭୋପାଳର ଭାରତ ଭବନରେ ଉପସ୍ଥାପିତ "Concept of Cultural Autonomy-ideological ramifications" ଉପରେ । ମଧ୍ୟପ୍ରଦେଶର ମୁଖ୍ୟମନ୍ତ୍ରୀ

ଦିଗ୍‌ବିଜୟ ସିଂହଙ୍କର ସ୍ୱାକ୍ଷରରେ ମୋତେ ଆମନ୍ତ୍ରିତ କରାଯାଇଥିଲା ଭାରତ ଭବନର ଭବିଷ୍ୟତ ବିଷୟରେ ଅନୁଷ୍ଠିତ ସର୍ବଭାରତୀୟ ଆଳାପଆଲୋଚନାରେ ଯୋଗ ଦେବା ପାଇଁ ।

— କେରଳର ଆଲ୍‌ୱାଇ (Alwaye) ଠାରେ ଆୟୋଜିତ 'ସୁରଭି ମାନସୋତସବ' ନାମକ ଗୋଟିଏ ସର୍ବଭାରତୀୟ ସମ୍ମିଳନୀରେ ପଠିତ ପ୍ରବଂଧ "My writing, My Times" । ଏହାହିଁ ଥିଲା ନିର୍ଦ୍ଧାରିତ ବିଷୟବସ୍ତୁ ଆମନ୍ତ୍ରିତ ସମସ୍ତ ଲେଖକ ସାହିତ୍ୟିକମାନଙ୍କ ପାଇଁ । ଏଥିରେ ମୁଁ କହିଥିଲି ମୋ ସାହିତ୍ୟ ରଚନାର ବାତାବରଣ ତଥା ମୋ ସାହିତ୍ୟିକ ଆଭିମୁଖ୍ୟ ବିଷୟରେ । ମୁଁ ଏହାର ରୂପାନ୍ତର ମଧ୍ୟ କରିଛି ଓଡ଼ିଆରେ, ''ମୋ ସମୟ, ମୋ ସାହିତ୍ୟ ।'' ଏଇ ଦୁଇଟି ପ୍ରବଂଧ ମଧ୍ୟ ମୋର ଦୁଇଟି ପ୍ରବଂଧ ସଂକଳନର ଶୀର୍ଷକ ।

— କଲିକତାର Asiatic Society ଦ୍ୱାରା ଆହୂତ ସର୍ବଭାରତୀୟ ସମ୍ମିଳନୀରେ "Bankim Chandra's influence on Oriya Literature" ନାମକ ବିଷୟବସ୍ତୁ ଉପରେ ଉପସ୍ଥାପିତ ପ୍ରବଂଧ । ଏହି ପ୍ରବଂଧରେ ମୁଁ କହିଥିଲି ଯେ ପ୍ରତ୍ୟକ୍ଷ ଏବଂ ତତ୍‌କାଳ ପ୍ରଭାବ କିଛି ନଥିଲା ବଂକିମଚନ୍ଦ୍ରଙ୍କର ସମକାଳୀନ ଓଡ଼ିଆ ସାହିତ୍ୟ ଉପରେ । ଫକୀରମୋହନ ତାଙ୍କ ଦ୍ୱାରା ପ୍ରଭାବିତ ହୋଇଛନ୍ତି ବୋଲି କହିଲେ ସତ୍ୟର ଅପଳାପ ହେବ । ହେଲେ ବଂକିମଚନ୍ଦ୍ରଙ୍କର ଆଦର୍ଶବାଦୀ ଆଭିମୁଖ୍ୟ ଯେ 'ମଣିଷ ହେଉଛି ଅମୃତର ପୁତ୍ର' ତାର ପ୍ରଭାବ ପଡ଼ିବ ନାହିଁ କେମିତି ଭାରତୀୟ ସାହିତ୍ୟ ଉପରେ ? ଅବଶ୍ୟ ପଡ଼ିଥିଲା, ଆଧୁନିକ ଯୁଗର ବାସ୍ତବବାଦୀମାନେ ମୁଣ୍ଡ ଟେକିବା ପୂର୍ବରୁ ।

— 'ସାଂପ୍ରତିକ' ତରଫରୁ ଦିଲ୍ଲୀରେ ଆୟୋଜିତ ହିନ୍ଦୀ ଓଡ଼ିଆ ସାହିତ୍ୟର ଦ୍ୱିପାକ୍ଷିକ ଅଳାପ ଆଲୋଚନାରେ ମୋ ପ୍ରବଂଧ "The relevance of form and style in the modern short stories" ।

ଲିଖିତ ପ୍ରବଂଧ ବହିର୍ଭୂତ କଥାକୁହା ତ ଅନେକ ଥିଲା ଏବର୍ଷ । କିନ୍ତୁ ବୈକ୍ତିକ ଓ ଭାବଗତ ଦୃଷ୍ଟିରୁ ବିଶେଷ ମୂଲ୍ୟବାନ୍ ଥିଲା ମୋ ପାଇଁ Mahanga Womens' Collegeରୁ ମିଳିଥିବା ସଂବର୍ଦ୍ଧନା ସଭାରୁ ଏବଂ ସେଠି ଦି'ପଦ କହିପାରିଥିବାର ସୁଯୋଗ । ତା ହେବ ନାହିଁ କେମିତି ? ମାହାଂଗାରେ ଥିବା ଶୁକ୍ଳେଶ୍ୱର ଗାଆଁ ମୋର ଆଦିଭୂମି ପରା ?

ସବୁବର୍ଷ ପରି ଅନେକ ସାକ୍ଷାତକାର ମଧ୍ୟ କରିବାକୁ ପଡ଼ିଥିଲା ବିଭିନ୍ନ ଅନୁଷ୍ଠାନ ଏବଂ ସାହିତ୍ୟ ପତ୍ରିକାର ପ୍ରତିନିଧିମାନଙ୍କ ସହିତ । ତନ୍ମଧ୍ୟରୁ ବିଶେଷ ଉଲ୍ଲେଖଯୋଗ୍ୟ ତାମିଲ୍‌ନାଡୁର ସାହିତ୍ୟିକ ଶ୍ରୀମତୀ ଶିବଶଂକରୀଙ୍କ ଦ୍ୱାରା ଅନୁଷ୍ଠିତ ସାକ୍ଷାତକାର, ତାଙ୍କରି ଦ୍ୱାରା ପ୍ରତିଷ୍ଠିତ "Knit India through literature" (ଭାରତକୁ ବାଂଧିରଖ ସାହିତ୍ୟର ସାହାଯ୍ୟରେ) ନାମକ ଆନ୍ଦୋଳନର ଅନୁକୂଲ୍ୟରେ । କାରଣ ତାହା ଥିଲା ଏକ ସ୍ୱାଗତଯୋଗ୍ୟ ଆନ୍ଦୋଳନ ମୋର ଭାରତୀୟ ସାହିତ୍ୟବାଦୀ ଆଭିମୁଖ୍ୟକୁ ନେଇ । ସେ କଟକରେ ଆମ

ଘରକୁ ଆସି ମୋତେ ଅନେକ ପ୍ରଶ୍ନ ପଚାରିଥିଲେ ମୋର ତଥା ଓଡ଼ିଆ ସାହିତ୍ୟ ବିଷୟରେ । ଏବଂ ମୁଁ ତାର ଯଥାଯଥ ଉତ୍ତର ଦେବାକୁ ଚେଷ୍ଟା କରିଥିଲି ।

ମାତ୍ର ଗୋଟିଏ ନୂଆବହି ବାହାରିଥିଲା ଏବର୍ଷ । ମୋର ଚତୁର୍ଦ୍ଦଶ ଓଡ଼ିଆ ଗଳ୍ପ ସଂକଳନ ''ଧବଳ ଆକାଶ ।''

ଏଇ ବର୍ଷ ମୋତେ ସତୁରି ପୂରିଲା । ସଂପୂର୍ଣ୍ଣ ଅବସର ନେଲା ପରେ ପ୍ରାୟ ଦଶବର୍ଷ ବିତିଗଲାଣି । ପ୍ରାକ୍ତନ ଆକାଉଣ୍ଟାଣ୍ଟ ଜେନେରାଲ୍‌ର ମନକୁ ଆସିଲା ଗୋଟିଏ ବାଲାନ୍ସ ସିଟ୍ ତିଆରି କରିବା ଲାଗି, ବିଭିନ୍ନ ଉଦ୍ୟମର ସଫଳତା ବିଫଳତାକୁ ନେଇ । ଏବଂ ଶେଷକୁ ମୁଁ ନିର୍ଭୟରେ କହିପାରିଲି ନିଜକୁ ଯେ ଇତିହାସ ମୋତେ ସାହିତ୍ୟର ଯେଉଁ କକ୍ଷରେ ବସାଉ ନା କାହିଁକି, ମୁଁ ଅନେକ କିଛି କରିଛି ଏଇ ଦଶବର୍ଷ ଭିତରେ, ଯାହାକୁ ସଫଳ ଉଦ୍ୟମ ବୋଲି କହିବାରେ କାହାରି ଦ୍ୱିଧା ରହିବ ନାହିଁ । କେବଳ ଦୁଇଟି ଉଦ୍ୟମର ଆପାତ ବିଫଳତା ଛଡ଼ା । ଏକ ''ସାଂପ୍ରତିକ''ର ଦିଗ୍‌ବିଜୟ କେଉଁଯାଏ ଗଲା ? କର୍ଣ୍ଣାଟକର ସାହିତି୍ୟକ ମାନଙ୍କୁ କ୍ୱାଇଁ ଡାକରା ଦେବା ସଂଭବ ହୋଇପାରି ନାହିଁ ଆଜିଯାଏ । ଦିଲ୍ଲୀରେ ଯେଉଁ ଦ୍ୱିପାକ୍ଷିକ ଆଲୋଚନା ହୋଇଥିଲା ସେଥିରେ ହିନ୍ଦୀ ସାହିତ୍ୟ ଆଡୁ ମାତ୍ର ଦୁଇଜଣ ଆଲୋଚକ ଥିଲେ । ''ଗ୍ରଂଥ ସମୀକ୍ଷା'' ନାମକ ଯୋଡ଼ିଏ ଛୋଟ ବହି ବାହାରିଛି, ଯୋଡ଼ିଏ ବର୍ଷର ସାହିତ୍ୟ ପ୍ରକାଶନ ଏବଂ କେତୋଟି ଗ୍ରନ୍ଥର ସମୀକ୍ଷାକୁ ନେଇ । ସେତିକି ମାତ୍ର । କାହିଁକି ଏମିତି ହେଲା ? ସଂସ୍ଥାର ସଭାପତି ହିସାବରେ ମୁଁ ମଧ୍ୟ ସେଇ ବିଫଳତା ପାଇଁ ଦାୟୀ ବୋଲି ମାନି ନେବାକୁ ପଡ଼ିବ । ତେଣୁ କେମିତି କାହାକୁ ଦୋଷ ଦେବି ? ତଥ୍ୟ ହିସାବରେ କେବଳ ଏତିକି କୁହାଯାଇପାରେ ଯେ ୧୯୯୪ରେ ଏଇ ସଂସ୍ଥାର ଅବସ୍ଥା ଶୋଚନୀୟ ଥିଲା, ବିଶେଷତଃ ପୃଷ୍ଠପୋଷକତାର ହାନି ଏବଂ ଘୋର ଅର୍ଥାଭାବ ହେତୁ । ତେବେ ଆଶା ଥିଲା ଯେ ଅବସ୍ଥାକୁ ସୁଧାରି ନେଇ ହେବ । କିନ୍ତୁ ଦୁଃଖର ସହିତ କହିବାକୁ ପଡୁଛି ଯେ ସେଇ ଆଶା ମଧ୍ୟ ମଉଳି ଗଲାଣି ବର୍ତ୍ତମାନ । ଦୁଇ- "Oriya Writing Today"ର ପାଣ୍ଡୁଲିପିର କଳେବର ବଢ଼ି ବଢ଼ି ଚାଲିଛି, ହେଲେ ପ୍ରକାଶକମାନେ ତଥାପି ପଛେଇ ଯାଉଛନ୍ତି । ହେଲେ ସେତେବେଳର ଜଣେ ନୂଆ ପ୍ରକାଶକଙ୍କ ଆଗ୍ରହ ଦେଖି ମନେ ହେଉଥିଲା ଯେ ନିରାଶ ହେବାର କାରଣ ନାହିଁ । ଅନେକ ବାଟ ଆଗେଇ ଗଲୁଣି ଆମେ । ତେଣୁ ଏଇ ଛପେଇବା କାମଟା ବଳେଇ ଯିବ ନାହିଁ ଆମକୁ । ଉକ୍ତ ପ୍ରକାଶକ ମଧ୍ୟ ଦୂରେଇ ଗଲେଣି । ଯାହାହେଉ ଏଇ ପ୍ରକଳ୍ପର ଗୋଟିଏ ପ୍ରଶାଖା ହିସାବରେ ଓଡ଼ିଶାର ଲେଖିକାମାନଙ୍କ ଦ୍ୱାରା ପ୍ରକାଶିତ ୨୬ଟି ଗଳ୍ପର ଇଂରାଜୀ ଅନୁବାଦ କରି ତାର ଗୋଟିଏ ସମାହାର ଶୀଘ୍ର (୨୦୦୪ ମସିହାରେ) ପ୍ରକାଶ ପାଇବ ବୋଲି ଆଶା କରାଯାଏ । ଦିଲ୍ଲୀର 'ସୃଷ୍ଟି' ନାମକ ପ୍ରକାଶକ ସଂସ୍ଥା ଏହି ଦାୟିତ୍ୱ ସ୍ୱୀକାର କରିଛନ୍ତି ।

ବ୍ୟକ୍ତିଗତ ଜୀବନର ପରିପ୍ରେକ୍ଷୀରେ ଗୋଟିଏ ବିଶେଷ କାରଣ ଥିଲା ଖୁସି ହେବା ଲାଗି, ଯଦିଓ ସେଇ ସୁଖବୋଧକୁ ସାଂତ୍ୱନାମୂଳକ ସାମାନ୍ୟ କ୍ଷତିପୂରଣ ଛଡ଼ା ଆଉ କିଛି କହି ହେବ ନାହିଁ । ମୋର ସ୍ୱର୍ଗୀୟା ସୁଲେଖିକା ଝିଅକୁ ଯେଉଁ ସ୍ୱୀକୃତି ମିଳିଲା ତାର ସାହିତ୍ୟ ପାଇଁ । "The Moon Beamed : Stories and poems by Viswajita Das" ନାମକ ତାର ଗୋଟିଏ ବହି ଦିଲ୍ଲୀରୁ ଛପା ହେଲା । ଏବଂ ଓଡ଼ିଶା ସରକାର ‘‘ବିଶ୍ୱଜିତା ସ୍ମୃତି ପୁରସ୍କାର’’ ନାମକ ଗୋଟିଏ ରାଜ୍ୟସ୍ତରୀୟ ପୁରସ୍କାରର ଘୋଷଣା କଲେ । ପ୍ରତିବର୍ଷ ପାଂଚ ହଜାର ଟଙ୍କାର ପୁରସ୍କାର ମିଳିବ ସେ ବର୍ଷର ଶ୍ରେଷ୍ଠ ବୋଲି ବିବେଚିତ ହୋଇଥିବା ଶିଶୁ ସାହିତ୍ୟିକକୁ । ମୂଳଧନ ମୋର କ୍ୱାଇଁ ଶୁଭକାନ୍ତ ଯୋଗାଇଥିଲେ ।

ଭଗବାନଙ୍କୁ ଧନ୍ୟବାଦ ଦେବାର ଆଉ ଗୋଟିଏ କାରଣ ଥିଲା ପାରିବାରିକ କ୍ଷେତ୍ରରେ । ବଡ଼ଝିଅ ହୀନୁର ଯେଉଁ ହାର୍ଟର ଗଣ୍ଡଗୋଳ ପୁଣି ଦେଖାଯାଇଥିଲା ତାକୁ ଦୂର କରାଯାଇପାରିଲା । ଏବଂ ସେଥିପାଇଁ ଅସ୍ତ୍ରୋପଚାର କରିବାକୁ ପଡ଼ିଲା ନାହିଁ । ଦିଲ୍ଲୀର ଏସକର୍ଟ ହାର୍ଟ ହସପିଟାଲରେ ତାର ସଂକୁଚିତ ହୋଇ ଆସୁଥିବା ହାର୍ଟର ଭାଲ୍‌ଭକୁ ପୁଣି ସଂପ୍ରସାରିତ କରାଗଲା ‘ବେଲୁନ୍’ ସାହାଯ୍ୟରେ । ଏବଂ ପ୍ରକ୍ରିୟାଟି ସଫଳ ହୋଇଛି ବୋଲି ବିବେଚିତ ହେଲା ।

ଏବଂ ଏଇବର୍ଷ ମୋତେ ଗୋଟିଏ ବିଶେଷ ଦାୟିତ୍ୱପୂର୍ଣ୍ଣ କାମ କରିବାର ଆହ୍ୱାନ ମିଳିଲା ଜଣେ ଲେଖକ-ସାହିତ୍ୟିକ ହିସାବରେ । ତଦାନୀନ୍ତନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ମୋତେ ଆମନ୍ତ୍ରିତ କଲେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ଅଧ୍ୟକ୍ଷ ହେବା ପାଇଁ । ଏବଂ ମୁଁ ହଁ ଭରିଲି, ଧନ୍ୟବାଦ ସହ । ନିଜକୁ କହିଲି ଯେ ସତୁରି ବର୍ଷ ବୟସ ପାରି ହୋଇଯାଇଥିଲେ ମଧ୍ୟ ମୋର ବଳବୟସ ହଟି ଯାଇନାହିଁ ଏଭଳି ଗୋଟିଏ ଆହ୍ୱାନମୂଳକ କାମ ତୁଲେଇବା ଲାଗି । ମୁଁ ପାରିବି ।

ହଁ, ମୋର ଦମ୍ଭ ଏବଂ ଆତ୍ମବିଶ୍ୱାସ ଉତୁରି ଆସୁଥିଲା ମୁଁ ଯେତେବେଳେ ଏଇ କାମରେ ଯୋଗ ଦେଲି । ୧୨ ଜୁଲାଇ ୧୯୯୪ରେ କାର୍ଯ୍ୟକାଳ ଆରମ୍ଭ । ଭାବିଲି ଇଏ ଗୋଟିଏ ଶୁଭଦିନ ନୁହେଁ କି ମୋ ପାଇଁ ? ଏଇଦିନ ମୋର ଏକମାତ୍ର ପୁଅ ଧୀରୁ ଜନ୍ମ ହୋଇଥିଲା ଏବଂ ଏଇଦିନ ଚିନୁ ବାହା ହୋଇଥିଲା । ଏବଂ ଏଇଦିନ ମୋର ପ୍ରଥମ ଉପନ୍ୟାସ ‘ସାତୋଟି ଦିନର ସତୀ’କୁ ପୂରା କରି ଦେଇଥିଲି ପରା ?



## ଦ୍ୱିତୀୟ ଦଶକ (୧୯୯୪ -୨୦୦୩)

ଦ୍ୱିତୀୟ ଦଶକ ମଧ ସରିଯାଇଛି ଏବେ । ମୋତେ ଅଶୀବର୍ଷ ପୂରିଲା, ୨୦୦୪ ମାର୍ଚ୍ଚ ପହିଲାରେ । ଏଣିକି 'କ୍ରମଶଃ' । ଆଉ କେତେଦିନ ବଂଚିବି ତଥା ଲେଖିପାରୁଥିବି, ଭଗବାନ୍ ଜାଣନ୍ତି ।

ଛାଡ଼ନ୍ତୁ । ଅନ୍ୟାନ୍ୟ କାମକୁ ଯଥାବିଧି ଆଗେଇ ନେବା ଛଡ଼ା ଅସୀମ ଆଗ୍ରହ ଆସିଥିଲା ମୋ ମନରେ ସତୁରି ବର୍ଷ ବେଳକୁ, ଯେ ଏଇ ଯେଉଁ ନୂଆ କାମଟି ମିଳିଛି ମୋତେ, ଓଡ଼ିଶା ସାହିତ୍ୟ ଏକାଡ଼େମୀର ଅଧ୍ୟକ୍ଷତା, ମୁଁ ତାକୁ କେବଳ ତୁଲେଇବି ନାହିଁ, ମୁଁ ବିଶେଷ କିଛି କରିବି ଓଡ଼ିଆ ସାହିତ୍ୟ ପାଇଁ । ମୁଁ କେବଳ ଚଉକି ମଣ୍ଡନ କରିବି ନାହିଁ, ମୁଁ ମୋର ନେତୃତ୍ୱ ଦେବି । ଅଧିକ ସମୟ ଦେବି । ହେଲା ଏବେ ସେଥିଯୋଗୁଁ ମୋ ନିଜ ସାହିତ୍ୟ ଟିକିଏ ଧୀମେଇ ଯାଇପାରେ । ମନେ ପଡୁଛି ମୁଖ୍ୟମନ୍ତ୍ରୀ ବିଜୁବାବୁ ମୋତେ ଯାହା କହିଲେ ଏଇ ପରିପ୍ରେକ୍ଷୀରେ, ପରିହାସ ଛଳରେ - 'ଅନେକ ରୋଜଗାର ତ କରିସାରିଲେଣି ଆପଣଙ୍କ ନିଜ ସାହିତ୍ୟରୁ, ଏଣିକି କରିବେ ନାହିଁ କିଛି ଓଡ଼ିଆ ସାହିତ୍ୟ ପାଇଁ ?' ମୁଁ କେମିତି ଭଲା ବୁଝେଇବି ତାଙ୍କୁ, ଯେ ନାନାଦି କାରଣରୁ ଆମର ଓଡ଼ିଆ ସାହିତ୍ୟ କେବେହେଲେ ତାଙ୍କ ଝିଅ ଗୀତା ମେହେତାଙ୍କ ସାହିତ୍ୟ ପରି ଅର୍ଥକରୀ ହୋଇ ନପାରେ ? ହେଲେ ଏହି ସଂକ୍ରାନ୍ତରେ ସ୍ଥିର ହେଲା, ତାଙ୍କ ପ୍ରାଇଭେଟ୍ ସେକ୍ରେଟେରୀ ମଧ୍ୟ ଥିଲେ ସେଠି ଆମ ସାକ୍ଷାତକାର ବେଳେ, ଯେ ଯେହେତୁ ଏକାଡ଼େମୀ ଅଫିସ୍ ଭୁବନେଶ୍ୱରରେ, ମୋତେ ଭୁବନେଶ୍ୱରରେ ରହିବାକୁ ପଡ଼ିବ ସରକାରୀ କ୍ୱାଟର୍ସ୍‌ଟିଏ ନେଇ, ଅଥବା ଘନଘନ ଯିବାଆସିବା କରିବାକୁ ପଡ଼ିବ କଟକରୁ, ଯେଉଁଠି ମୁଁ ରହିଛି । କିନ୍ତୁ ପ୍ରଥମଟି ସଂଭବ ନୁହେଁ ଆପାତତଃ, ସେହେତୁ ଦ୍ୱିତୀୟଟିକୁ କାର୍ଯ୍ୟକାରୀ କରିବାକୁ ହେବ । ଏଣିକି କଟକସ୍ଥିତ ଅଧ୍ୟକ୍ଷ କାଁ ଭାଁ, ଯଥା କୌଣସି ମିଟିଂଗ୍‌ରେ ଯୋଗଦେବାର ଆବଶ୍ୟକତା ହେତୁ ଏକାଡ଼େମୀ ଅଫିସ୍‌କୁ ଆସିବେ ନାହିଁ । ଆସିବେ ତାର ଦୈନଂଦିନ କାମ ତଦାରଖ କରିବା ପାଇଁ ।

ଏହିପ୍ରକାର ନିଷ୍ପତ୍ତି ଅନୁଯାୟୀ ମୁଁ ପ୍ରଥମେ ପ୍ରଥମେ ହପ୍ତାକୁ ତିନିଥର ଲେଖାଏଁ ଆସିଲି ଏକାଡ଼େମୀ ଅଫିସ୍‌କୁ । କିନ୍ତୁ କିଛି ଦିନ ନ ଯାଉଣୁ ହପ୍ତାକୁ ମାତ୍ର ଥରେ ଆସିବା ଉଚିତ ବୋଲି ମନେ କଲି । ସେଇଠୁ ମାସକୁ ଥରେ ହେଲେ ଚଳିବ ବୋଲି ଠିକ୍ କଲି । ଏବଂ

କାଳକ୍ରମେ ଯଥାପୂର୍ବଂ ତଥା ପରଂ । କଥା କଣ ? ଘନଘନ ଯିବାଆସିବା ମୋ ଧାତୁରେ ଗଲା ନାହିଁ ? ପ୍ରାକ୍ତନ ପ୍ରଶାସକ ଯେତେହେଲେ ବୁଢ଼ା ହୋଇ ଗଲେଣି ? ନାଇଁ ଆଜ୍ଞା, ସେମିତି କିଛି ନୁହେଁ । ମୁଁ ନିଜକୁ ତଥା ସରକାରଙ୍କୁ ଅସୁବିଧାରେ ପକେଇବାକୁ ଚାହିଁଲି ନାହିଁ, ଯେତେଟା ସଂଭବ । କାହିଁକି ନା ସରକାରୀ ଅଡ଼ିଟ୍ ଆପତ୍ତି ଉଠେଇଲେ ଯେ ସରକାରୀ ଖର୍ଚ୍ଚରେ ଏଭଳି ଯିବାଆସିବା ନିୟମବିରୁଦ୍ଧ । ମୁଁ ତତ୍‌କାଳୀନ ଆକାଉଣ୍ଟାଣ୍ଟ ଜେନେରାଲଙ୍କ ସହିତ କଥାବାର୍ତ୍ତା କଲା ପରେ ଏଇ ଆପତ୍ତିକୁ ଅବଶ୍ୟ ଉଠାଇ ନିଆଗଲା, କିନ୍ତୁ ସରକାରଙ୍କ ଫାଇନାନ୍ସ ଡିପାର୍ଟମେଣ୍ଟଙ୍କ ତରଫରୁ ଯେଉଁ ଅଧିକାରୀ ଜଣକ ଥିଲେ ଆମ କାର୍ଯ୍ୟକାରୀ କମିଟିରେ, ସେ ତାଙ୍କ ଆପତ୍ତିକୁ ଜାରୀ ରଖିଲେ । କହିଲେ ଯେ ଅନ୍ତତଃ ଗୋଟିଏ ଲିଖିତ ମଂଜୁରିପତ୍ର ଆବଶ୍ୟକ ସରକାରଙ୍କଠାରୁ । ଅନେକ ଲେଖାପଢ଼ା ହେଲା ଏ ବିଷୟରେ । କିନ୍ତୁ ଶେଷକୁ କୌଣସି ଲିଖିତ ମଂଜୁରି ମିଳିଲା ନାହିଁ । ହେଲେ ବିନା ମଂଜୁରିରେ ଯେଉଁ ଖର୍ଚ୍ଚ ହେଲା ଏ ଦିଗରେ, ତାକୁ ଫେରାଇ ଦିଅ ବୋଲି ମୋତେ କୁହାଗଲା ନାହିଁ । ଏମିତି ସମୟ ବିତିଗଲା । ଜୁଲାଇ ୧୯୯୪ରୁ ମେ ୧୯୯୭, ଯେତେବେଳେ ମୁଁ ବିଦାୟ ନେଲି ଏକାଡ଼େମୀରୁ ।

ଯାହାହେଉ ମୁଁ ଯେଉଁ ସ୍ୱପ୍ନ ଦେଖୁଥିଲି ଏବଂ ଅଣ୍ଟା ଭିଡ଼ିଥିଲି ଓଡ଼ିଆ ସାହିତ୍ୟକୁ କାହିଁ କେତେ ଉର୍ଦ୍ଧ୍ୱକୁ ନେଇ ଯିବା ଲାଗି କଣ ହେଲା ସେ ବିଷୟରେ ? ଉତ୍ସାହ କମିଗଲା ଏଇ କିରାଣୀଆ ଆପତ୍ତିର ମୁକାବିଲା କରିବାକୁ ଯାଇ, ଏବଂ ସେହେତୁ ମୋ ସ୍ୱପ୍ନ ସାକାର ହୋଇ ପାରିଲା ନାହିଁ ? ଅର୍ଥାତ୍ ବ୍ୟୁରୋକ୍ରାଟ୍‌ସୁଲଭ ସଫେଇଟିଏ ମିଳିଗଲା ମୋତେ ମୋର ବିଫଳତା ପାଇଁ ?

କ୍ଷମା କରିବେ, ସେଭଳି କୌଣସି ସଫେଇ ଅନାବଶ୍ୟକ । ପ୍ରଥମ କଥା ସ୍ୱପ୍ନ ସାକାର ନ ହେବାର ଦୁଃଖକୁ ବିଫଳତା ବୋଲି କୁହାଯାଇନପାରେ । ଦ୍ୱିତୀୟରେ ଯେଉଁ ସମସ୍ତ କାରଣରୁ ସେହି ଦୁଃଖକୁ ଏଡ଼ାଇ ଦେଇ ହେବ ନାହିଁ ବୋଲି ମୁଁ ବୁଝିଲି ମୋର ଅଭିଜ୍ଞତାକ୍ରମେ, ସେଥିରେ ଏଇ ନିୟମିତ ପ୍ରଶାସନିକ ତତ୍ତ୍ୱାବଧାନର ଅଭାବ ରହିଛି ସିନା, କିନ୍ତୁ ତାର ମୁଖ୍ୟ ଓ ମୌଳିକ କାରଣ ଭିନ୍ନ । ତାହା ବ୍ୟବସ୍ଥାଗତ ଏବଂ କେଉଁ ଏକାଡ଼େମୀର ଅଧ୍ୟକ୍ଷ, ଉପାଧ୍ୟକ୍ଷ ଅବା କାର୍ଯ୍ୟକାରୀ କମିଟିର ଆୟତ୍ତରେ ନାହିଁ ।

ମୁଁ ବିଫଳ ହୋଇନାହିଁ, ଆମେ ବିଫଳ ହୋଇନାହୁଁ, ଏହିପ୍ରକାର ଦାବୀ କରିହେଉଛି ଏଇଥିପାଇଁ ଯେ ସେହି ତିନିବର୍ଷ ଭିତରେ ଆମେ ପୂର୍ବାପେକ୍ଷା ଅଧିକ ବହି ଛପାଇ ପାରିଛୁ । ଆମ ମୁଖପତ୍ର 'କୋଣାର୍କ' ପତ୍ରିକାଟିକୁ ନିୟମିତ ଭାବରେ ପ୍ରକାଶ କରିପାରିଛୁ, ତାର ଗୁଣାତ୍ମକ ମାନକୁ ମଧ୍ୟ ଅଳ୍ପବହୁତ ବଢ଼େଇବା ସହ । ଏ ଦିଗରେ ତାର ସ୍ୱତଂନ୍ତ୍ର ଦାୟିତ୍ୱରେ ଥିବା ଉପାଧ୍ୟକ୍ଷ ଶ୍ରୀନିବାସ ଉଦ୍‌ଗାତା ବିଶେଷେ ଧନ୍ୟବାଦର ପାତ୍ର । ବାର୍ଷିକ ପୁରସ୍କାର

ବ୍ୟବସ୍ଥାର କ୍ରମକୁ ଅନେକ ଆଗେଇ ନେଇ ଆସିଲୁଣି । ଆମର ସ୍ମୃତିଚାରଣ ସଭାଗୁଡ଼ିକ ଅଧିକରୁ ଅଧିକ ଏବଂ ରାଜ୍ୟର ବିଭିନ୍ନ କୋଣରେ ଅନୁଷ୍ଠିତ ହୋଇପାରୁଛି, ଇତ୍ୟାଦି । କିନ୍ତୁ ଯେଉଁଭଳି ସଫଳତାର ଅଧିକାରୀ ହେଲେ ସ୍ୱପ୍ନଟା ସାକାର ହେଲା ପରି ମନେ ହେବ, ମୋ ଅମଳରେ ମୁଁ ଓଡ଼ିଆ ସାହିତ୍ୟର ଅଗ୍ରଗତି ତଥା ତାର ପ୍ରତିଶ୍ରୁତିକୁ ଏତେ ଦୂରକୁ ନେଇ ଆସିପାରିଛି ବୋଲି ଖୁସି ଲାଗିବ, ତା ମୋତେ ମିଳିଲା କେଉଁଠୁ ? ମିଳିନାହିଁ । ଯଥା :

ପୂର୍ବାପେକ୍ଷା ବେଶି ବହି ଛପା ହୋଇଛି ହୁଏତ, କିନ୍ତୁ ଆମେ କଣ ଏହାଠାରୁ ଅନେକ ଅଧିକ ବହି ଛପାଇ ପାରିନଥାଆନ୍ତୁ ଆମର ପରିକଳ୍ପନା ଅନୁଯାୟୀ ? ବିଶେଷତଃ ଓଡ଼ିଆ ସାହିତ୍ୟକୁ ବାହାରେ ଚିହ୍ନାଇବା ଲାଗି ଯେଉଁ ହିନ୍ଦୀ ଅବା ଇଂରାଜୀରେ ଅନୁଦିତ ଗ୍ରନ୍ଥମାନଙ୍କର ପରିକଳ୍ପନା କରାଯାଇଥିଲା, ତାର ଅଗ୍ରଗତିକୁ ଅତ୍ୟନ୍ତ ନିରାଶାଜନକ ବୋଲି କହିଲେ କଣ ଭୁଲ୍ ହେବ ? ଏଇଠି ଗୋଟିଏ ଉଦାହରଣ ଦିଏ । ଆଜିକୁ ଅନ୍ତତଃ ଦଶବର୍ଷ ହୋଇଗଲାଣି ଯେତେବେଳେ କେତେଗୁଡ଼ିଏ ବିଶିଷ୍ଟ ଓଡ଼ିଆ ଗଳ୍ପକୁ ଇଂରାଜୀରେ ଅନୁବାଦ କରି ସଂକଳନଟିଏ ପ୍ରକାଶ କରିବାର ପରିକଳ୍ପନା କରାଯାଇଥିଲା । ସେହି ସଂକ୍ରାନ୍ତରେ ମୋତେ ଭଗବତୀଚରଣ ପାଣିଗ୍ରାହୀଙ୍କର 'ଶିକାର' ଗପଟିକୁ ଇଂରାଜୀରେ ଅନୁବାଦ କରିବା ଲାଗି କୁହାଯାଇଥିଲା । ଏବଂ ଯଥାଶୀଘ୍ର ମୁଁ ଅନୁଦିତ ଗପଟିକୁ ପଠେଇ ଦେଇଥିଲି ଏକାଡ଼େମୀ ଅଫିସକୁ । କିନ୍ତୁ ବହିଟି ଆଜିଯାଏ ଛପା ହୋଇପାରି ନାହିଁ । ଏଇ ଶୋଚନୀୟ କଚ୍ଛପଗତି ହେଉଛି ଅଧିକାଂଶ ପରିକଳ୍ପନାର ଦୁର୍ଦ୍ଦଶା । କେଉଁଟି ପାଣ୍ଡୁଲିପିର ପର୍ଯ୍ୟାୟକୁ ଆସି ନାହିଁ ତ କେଉଁଟି ପାଣ୍ଡୁଲିପି ଅବସ୍ଥାରେ ପଡ଼ିରହିଛି ଅମୁକ ସଦସ୍ୟ ସାହିତ୍ୟିକଙ୍କ ହାତରେ ତାଙ୍କ ଯାଞ୍ଚ ପାଇଁ, ଅଥବା ପ୍ରେସ୍‌ରେ ।

କିଛି ନୂଆ ପରିକଳ୍ପନାର ସଂଧାନ ମିଳିଥିଲା କି ମୋତେ ଏଇ ବହି ଛପାଇବା ଦିଗରେ ? ହଁ, ପରିକଳ୍ପନାରୁ ବଳି ଗୋଟିଏ ବିଧିବଦ୍ଧ ଯୋଜନାର ଚିଠା ଆସିଥିଲା ସରକାରଙ୍କ ତରଫରୁ, ଯାହାକୁ ନୂଆ ଏବଂ ଅତ୍ୟନ୍ତ ଉପଯୋଗୀ ବୋଲି କୁହାଯିବ । ଯେ ଆମେ ନୂଆ ଲେଖକ ଲେଖିକାମାନଙ୍କୁ ଆବିଷ୍କାର କରିବା ଏବଂ ତାଙ୍କ ଲେଖାଗୁଡ଼ିକୁ ଛପାଇବା । ଏଭଳି ଲେଖା, ଯାହାକୁ ଯଥାର୍ଥରେ ସାହିତ୍ୟ ବୋଲି କୁହାଯିବ, ହେଲେ ତାହା ଛପା ହୋଇପାରୁନାହିଁ । ପ୍ରକାଶକମାନଙ୍କ କୁଣ୍ଠାବୋଧ, ଅଥବା ଯେକୌଣସି କାରଣରୁ । ଆମକୁ କୁହାଗଲା ତାକୁ କାର୍ଯ୍ୟକାରୀ କରିବା ଲାଗି । ଏବଂ ଗୋଟିଏ କମିଟି ଗଢ଼ା ହେଲା ଯାହାର ସଦସ୍ୟମାନେ ବିଜ୍ଞାପନ ଦ୍ୱାରା ଆହୂତ ପାଣ୍ଡୁଲିପିଗୁଡ଼ିକୁ ଯାଞ୍ଚ କରିବେ ଏବଂ ଉପଯୁକ୍ତ କେତୋଟିକୁ ବାଛିବେ, ଯାହା ଏକାଡ଼େମୀଙ୍କ ଦ୍ୱାରା ପ୍ରକାଶିତ ହେବ ଯଥାକ୍ରମେ । କାର୍ଯ୍ୟକ୍ରମର ପ୍ରଥମ ପଦକ୍ଷେପ ମଧ୍ୟ ନିଆ ହୋଇ ସାରିଥିଲା ଏବଂ କେତୋଟି ପାଣ୍ଡୁଲିପି ଆସିଯାଇଥିଲା ହାତକୁ । କିନ୍ତୁ ହାୟ ! ସେଇଠୁଁ ଥପ୍‌କିନି କାମଟି ବନ୍ଦ ହୋଇଗଲା । କଣ ନା ଯୋଜନାଟି ସରକାରଙ୍କ

ଫାଇନାନ୍ସ ଡିପାର୍ଟମେଣ୍ଟ ଦ୍ୱାରା ଅନୁମୋଦିତ ହୋଇନାହିଁ ଆଜିଯାଏଁ । ଏବଂ ମୁଁ ଯାହା ଶୁଣୁଛି ସେହି ଅନୁମୋଦନ ତଥାପି ଆସିବାର ଅଛି, ଯଦିବା ଯୋଜନା ବଂଚି ରହିଥାଏ । ଏହାଛଡ଼ା ଆଉ କୌଣସି ନୂଆ ଉଦ୍ୟମ ସୁରୁ କରିବାର ସୌଭାଗ୍ୟ ମିଳିନଥିଲା ମୋତେ ମୋ ଅମଳରେ ।

ଏକାଡ଼େମୀର ଲାଇବ୍ରେରୀରେ ହଜାର ହଜାର ବହି ରହିଛି ଯାହାର ହିସାବ କିତାବ କରାଯାଇନାହିଁ ଅନେକ ବର୍ଷ ହେଲା । ଉଦାସୀନତା ଛଡ଼ା ସେଥିର ଆବଶ୍ୟକତା ଅନୁଭୂତ ହୋଇନାହିଁ । କାରଣ କେତେଜଣ ବାହାରୁ ଆସନ୍ତି ଆମ ଲାଇବ୍ରେରୀର ବହି ପଢ଼ିବା ପାଇଁ ? ଯଦିଓ ଅନେକ ବହି ସାହିତ୍ୟିକ, ଉଚ୍ଚକୋଟୀର ଏବଂ ଅନ୍ୟତ୍ର ଦୁଷ୍ପ୍ରାପ୍ୟ ବୋଲି କୁହାଯାଇପାରେ । ଏକାଡ଼େମୀ ଦ୍ୱାରା ପ୍ରକାଶିତ ବହି ଯାହା ଅଛି ତାର ବିକ୍ରୀ ମଧ୍ୟ ସନ୍ତୋଷଜନକ ବୋଲି କୁହାଯାଇପାରିବ କି ? ତଥା କେତେ ଗ୍ରାହକ ଅଛନ୍ତି ଆମ 'କୋଣାର୍କ' ପତ୍ରିକାର ? ମୋଟ ଉପରେ ଆମ ପାଖରେ ଗଚ୍ଛିତ ଥିବା ବହି ମ୍ୟାଗାଜିନ୍‌ର ପ୍ରସାର ତଥା ବିକ୍ରୟ ଦିଗରେ କଣ ଆହୁରି କିଛି କରାଯାଇପାରନ୍ତା ନାହିଁ ?

ସଭାସମିତି ବେଶ୍ କିଛି ଅନୁଷ୍ଠିତ ହୁଏ ଏକାଡ଼େମୀର ଆନୁକୂଲ୍ୟରେ । କିନ୍ତୁ ସେଥିରେ କେତୋଟିରେ ଏଭଳି କାର୍ଯ୍ୟକ୍ରମ ଥାଏ ଯାହାକୁ ଆଦାନପ୍ରଦାନମୂଳକ ସାହିତ୍ୟଚର୍ଚ୍ଚା ବୋଲି କୁହାଯିବ ? ଏବଂ ବିଶେଷ ଉଲ୍ଲେଖଯୋଗ୍ୟ ଯେ ଅଧିକାଂଶ କେବଳ ସ୍ମୃତିଚାରଣ ପାଇଁ ନିର୍ଦ୍ଦିଷ୍ଟ, ଯାହାର ସାରକଥା ହେଲା କେଉଁ ସାହିତ୍ୟରଥୀ ଏବଂ ତାଙ୍କ ସାହିତ୍ୟର ଗୁଣକୀର୍ତ୍ତନ ।

ଏବଂ ଆମର କିଭଳି ଯୋଗାଯୋଗ ରହିଛି ରାଜ୍ୟର ବିଭିନ୍ନ ବେସରକାରୀ ସାହିତ୍ୟ ସଂସ୍ଥା, ଅନ୍ୟାନ୍ୟ ରାଜ୍ୟରେ ଥିବା ସାହିତ୍ୟ ଏକାଡ଼େମୀ ଏବଂ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଓ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ୍ ସହିତ ? କିଛି ହେଲେ ନାହିଁ ବୋଲି କହିଲେ ସତ୍ୟର ଅପଳାପ ହେବ ନାହିଁ । ତେଣୁ କହିବା ବାହୁଲ୍ୟ ଯେ ଭାରତୀୟ ସାହିତ୍ୟର ପରିପ୍ରେକ୍ଷୀରେ କୌଣସି ସମ୍ମିଳିତ ଉଦ୍ୟମର ପରିକଳ୍ପନା ନାହିଁ । ଆମର ନାହିଁ କି ଆଉ କାହାର ନାହିଁ ।

ବର୍ତ୍ତମାନ କହୁଛି କିଛି ଉପରୋକ୍ତ 'ବ୍ୟବସ୍ଥାଗତ' କାରଣ ବିଷୟରେ, ଯାହା ଏହି ଦୁଃଖଦ ପରିସ୍ଥିତିକୁ ଡାକି ଆଣିଛି ବୋଲି ମୋର ବିଶ୍ୱାସ । ଠିକଣା ତତ୍ତ୍ୱାବଧାନର ଭୂମିକା ତ ଅବଶ୍ୟ ରହିଛି ଏବଂ ମୁଁ ସେବିଷୟରେ କିଛି କହିଛି ଏଥିପୂର୍ବରୁ । କିନ୍ତୁ ଏହି ତତ୍ତ୍ୱାବଧାନ ସହିତ ଗୁନ୍ଥା ହୋଇ ରହିବା ଆବଶ୍ୟକ ଉତ୍ତରଦାୟିତ୍ୱର ସଂହିତା । ଅର୍ଥାତ୍ କିଏ କାହା ପ୍ରତି ଉତ୍ତରଦାୟୀ ତାର କାମକୁ ନେଇ । ବିଶେଷତଃ ଏକାଡ଼େମୀର ଅଧ୍ୟକ୍ଷଙ୍କ ସହିତ ଏକାଡ଼େମୀର ସଚିବଙ୍କର ସେହିପ୍ରକାର ସଂପର୍କ ରହିଛି କି ? ବସ୍ତୁତଃ ନାହିଁ । କାରଣ ସଚିବ ରାଜ୍ୟ ସରକାରଙ୍କ ଦ୍ୱାରା ନିଯୁକ୍ତ ଜଣେ କର୍ମକର୍ତ୍ତା । ସେହେତୁ ତାଙ୍କର ବୃତ୍ତିଗତ ଓ ପ୍ରଶାସନିକ ଯୋଗସୂତ୍ର ରହିଛି ରାଜ୍ୟ ସରକାର, ବିଶେଷତଃ ସଂସ୍କୃତି ବିଭାଗର ସଚିବଙ୍କ ସହିତ । ସମ୍ମାନନୀୟ ଏବଂ ଅସ୍ଥାୟୀ ଅଧ୍ୟକ୍ଷଙ୍କ ସହିତ ନୁହେଁ, ଯେ କେବଳ କିଛି ପାରିଶ୍ରମିକ ପାଆନ୍ତି ସରକାରଙ୍କ

ଠାରୁ । ବେଶ୍, ତାହେଲେ ତତ୍ତ୍ୱାବଧାନର ବ୍ୟବସ୍ଥା କଣ ରହିଛି ସଂସ୍କୃତି ବିଭାଗର ସଚିବ ଏବଂ ଏକାଡ଼େମୀ ସଚିବଙ୍କ ମଧ୍ୟରେ ? ଧ୍ୟାତ୍, ତା କେମିତି ହେବ ? ଓଡ଼ିଶା ସାହିତ୍ୟ ଏକାଡ଼େମୀ ଗୋଟିଏ ସ୍ୱତନ୍ତ୍ର ଏବଂ ସ୍ୱୟଂଚାଳିତ ସଂସ୍ଥା ପରା ? ତେଣୁ ତତ୍ତ୍ୱାବଧାନର ଦାୟିତ୍ୱ ଅଧ୍ୟକ୍ଷ ଉପାଧ୍ୟକ୍ଷଙ୍କର ନୁହେଁ ତ ଆଉ କାହାର ହେବ ? ଏଇ ହେଉଛି ପ୍ରଶାସନିକ ଅବ୍ୟବସ୍ଥାର ଏକ ଜ୍ୱଳନ୍ତ ଉଦାହରଣ । ଯାହାକୁ ''କ୍ଷମତାହୀନ ଦାୟିତ୍ୱ'' ବୋଲି କୁହାଯାଏ ଏବଂ ତାର ଅପରପାଖ ହେଉଛି ''ଦାୟିତ୍ୱହୀନ କ୍ଷମତା'' । ସେହେତୁ ସଂସ୍କୃତି ବିଭାଗର ସଚିବ ଏକାଡ଼େମୀର ଅଧ୍ୟକ୍ଷ ଉପାଧ୍ୟକ୍ଷ, ଏକାଡ଼େମୀର ସଚିବ ତଥା କର୍ମଚାରୀଗଣ, ଏମାନେ ସମସ୍ତେ ଯେତେ କାମିକା ଓ ଭଲ ମଣିଷ ହୁଅନ୍ତୁ ନା କାହିଁକି, ଏହି ଅବ୍ୟବସ୍ଥା ସେମାନଙ୍କୁ ଅଳ୍ପବହୁତ ବେପରୁଆ ଏବଂ ନିଶ୍ଚେଷ୍ଟ ହୋଇ ସମୟ କାଟିବାକୁ ଦେଇଛି ବୋଲି ମୋର ଧାରଣା । ତେଣୁ ଅମୁକ କାମଟା କେମିତି ଏତେଦିନ ଯାଏ ପଡ଼ି ରହିଲା, ସେଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ?

ବର୍ତ୍ତମାନ ପ୍ରଶାସନିକ ସ୍ତରରୁ ଓହରି ଯାଇ କିଛି କହିଲେ ହେବ ଏକାଡ଼େମୀର କାର୍ଯ୍ୟକ୍ରମ ବିଷୟରେ । ତାକୁ ସ୍ଥିର କରିବାରେ ଯେଉଁ ବୁଦ୍ଧିବିଚାର ପ୍ରୟୋଗ କରାଯାଉଛି ତାହା ଉପଯୁକ୍ତ, ଅର୍ଥାତ୍ ଯଥାର୍ଥରେ ଓଡ଼ିଆ ସାହିତ୍ୟକୁ ଉଚିତ ଦିଗରେ ଏବଂ ଯଥାଶୀଘ୍ର ଆଗେଇ ନେଇ ପାରୁଛି ବୋଲି କହି ହେବ ତ ? କି ଆଶ୍ଚର୍ଯ୍ୟ ! ବିଶିଷ୍ଟ ସାହିତ୍ୟିକମାନେ ତାର ଅଧ୍ୟକ୍ଷ ଉପାଧ୍ୟକ୍ଷ ତଥା କାର୍ଯ୍ୟକାରୀ କମିଟିର ସଦସ୍ୟ ପରା ? ତେଣୁ କେମିତି ଭଲା ତମେ ଖୁଣିବ ତାଙ୍କର ବୁଦ୍ଧିବିଚାରକୁ ? ନା, ସେଥିର ପ୍ରଶ୍ନ ଉଠୁ ନାହିଁ । କିନ୍ତୁ କଥା ହେଉଛି ଯେ ସେହି ବୁଦ୍ଧିବିଚାରର କ୍ଷେତ୍ର ଅତ୍ୟନ୍ତ ସୀମିତ । ବଜେଟ୍ ସରକାରଙ୍କର, ଏକାଡ଼େମୀର ନୁହେଁ । ଏକାଡ଼େମୀ କୌଣସି ଅର୍ଥବ୍ୟବସ୍ଥାର ଆକଳନ କରି ପଠାଏ ନାହିଁ ସରକାରଙ୍କ ପାଖକୁ, ଯାହାକୁ ସରକାର ସାମଗ୍ରିକ ଦୃଷ୍ଟିରୁ ବିଚାର କରନ୍ତି ଏବଂ କାଟଛାଟ ଅଦଳବଦଳ କରନ୍ତି ଏକାଡ଼େମୀର କର୍ତ୍ତୃପକ୍ଷମାନଙ୍କ ସାଙ୍ଗରେ ବସି । ସେମିତି କିଛି ନୁହେଁ, ଯାହା ମୁଁ ଭାବିଥିଲି ମୋର ପ୍ରଶାସନିକ ଅଭିଜ୍ଞତା ଅନୁଯାୟୀ । ବଜେଟ୍ ମୂଳରୁ ଶେଷ ଯାଏଁ ସରକାରଙ୍କର ଏବଂ ତମକୁ କୁହାଯାଏ ତାରି ଭିତରେ ଚଳିବା ଲାଗି । ଖାଲି ତା ନୁହେଁ, ସେତିକ ଭିତରେ ତମକୁ କେତୋଟି ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ପ୍ରଥମେ ତୁଲେଇବାକୁ ପଡ଼ିବ । ଏବଂ ସେଇ ପ୍ରାଥମିକତାର ଭିତ୍ତିରେ ଯେଉଁ କାର୍ଯ୍ୟକ୍ରମର ଅଗ୍ରାଧିକାର ରହିଛି, ତା ହେଉଛି ସ୍ମୃତିଚାରଣ ମୂଳକ ସଭା ଓ ସମାରୋହ । ଫଳରେ ସଦସ୍ୟମାନଙ୍କ ସାହିତ୍ୟଧର୍ମୀ ବୁଦ୍ଧିବିଚାରକୁ ଖଟେଇବାକୁ ହୁଏ ଅତ୍ୟନ୍ତ ସୀମିତ ସଂବଳ ଏବଂ ସ୍ୱଳ୍ପ ସମୟର ବଂଧନୀ ଭିତରେ । ତାରି ଭିତରେ ତମେ ଯାହା କରୁଛ କର, ଯେତେ ପାରୁଛ, ତମ ସାହିତ୍ୟପ୍ରକାଶନ, ସାହିତ୍ୟଚର୍ଚ୍ଚା, ଆଦାନପ୍ରଦାନ, ଇତ୍ୟାଦି ଇତ୍ୟାଦି - କିଏ ମନା କରୁଛି ତମକୁ ? ଗଣତାନ୍ତ୍ରିକ ଓ ଲୋକପ୍ରିୟ ସରକାର ଜାଣେ କେଉଁ

ଭଳି କାମ କଲେ ଲୋକେ ଖୁସି ହେବେ (ବିଶେଷତଃ ଆଂଚଳିକ ଚାହିଦାର ପରିପ୍ରେକ୍ଷୀରେ, ଯେ ଏଇ ସାହିତ୍ୟରଥୀ ହେଉଛନ୍ତି ଆମ ଅଂଚଳର ଲୋକ), ମିଡ଼ିଆରେ ତାର ବିଶଦବିବରଣୀ ବାହାରିବ ଏବଂ ଦୁନିଆଁ ଦେଖିବ ସରକାରଙ୍କ ସାଂସ୍କୃତିକ ଚେହେରା କେତେ ଉଜ୍ଜ୍ୱଳ । ଭଲକଥା । ତାହେଲେ ସରକାର ଅର୍ଥାତ୍ ସଂସ୍କୃତି ବିଭାଗ ଏଇ ସ୍ମୃତିଚାରଣ ଆଦି ଲୋକପ୍ରିୟ କାମ ହାତକୁ ନେଉନାହାନ୍ତି କାହିଁକି, ଏକାଡ଼େମୀକୁ ହୁଏତ ସେଥିରୁ ଅଳ୍ପ କେତୋଟି କରିବାକୁ ଛାଡ଼ି ଦେଇ ? ଉହୁଁ, ତା କେମିତି ହେବ ? ସାହିତ୍ୟ ଏକାଡ଼େମୀ ରହିଛି କାହିଁକି ଆମର ? ଏଇଠି ମୁଁ କହି ରଖେ ଯେ ସ୍ମୃତିଚାରଣ ସଭାର ଆବଶ୍ୟକତା ଅନସ୍ୱୀକାର୍ଯ୍ୟ । କିନ୍ତୁ ସାହିତ୍ୟର ପ୍ରଗତି ଦୃଷ୍ଟିରୁ କେଉଁ କାମଟି ଉପରେ ଅଧିକ ଗୁରୁତ୍ୱ ଦେବା ଉଚିତ ? ଆମର କ୍ଷୁଦ୍ରାଦପି କ୍ଷୁଦ୍ର ସଂବଳକୁ ନେଇ, ପୂର୍ବ ପୁରୁଷଙ୍କୁ ସ୍ମରଣ କରିବା କାମ, ନା ପ୍ରକାଶନ, ଚର୍ଚ୍ଚା, ଆଦାନପ୍ରଦାନ ଆଦି ଅନ୍ୟାନ୍ୟ କାମ, ତା ଭାବିବା ବିଷୟ ।

ଯାହାହେଉ ମୁଁ ଏବଂ ମୋର କେତେକ ସହକର୍ମୀ ଭାବିଲୁ ଯେ ସରକାରଙ୍କୁ ଅନ୍ତତଃ ଗୋଟିଏ ଅନୁରୋଧ କରାଯାଉ, ଏକାଡ଼େମୀ ତରଫରୁ । ଯେ ଆମକୁ ଯାହା ଦେଉଛ ଦିଅ ପଛେ ଆମକୁ ଯଥାର୍ଥରେ ସ୍ୱାୟତ୍ତାଧୀନ ହେବାକୁ ଦିଅ । ଅବଶ୍ୟ ଆମେ ତମକୁ ହିସାବ ଦେବାକୁ ବାଧ୍ୟ ଯେ ତମଠାରୁ ମିଳିଥିବା ଅର୍ଥ ଏହି ଭାବରେ ଖର୍ଚ୍ଚ କରାଗଲା, ଯେପରିକି ତମେ ଜାଣିବ ଯେ ତାର ଦୁରୁପଯୋଗ କରାଯାଇନାହିଁ । କିନ୍ତୁ ଆମକୁ ସ୍ଥିର କରିବାକୁ ଦିଅ ଆମର କାର୍ଯ୍ୟକ୍ରମ, ଆମର ସୁଚିନ୍ତିତ ସାହିତ୍ୟଧର୍ମୀ ଅଗ୍ରାଧିକାର ଅନୁଯାୟୀ । ମଧ୍ୟ ଆମକୁ ବାଛିବାକୁ ଦିଅ ଆମ ନିଜର କର୍ମକର୍ତ୍ତାମାନଙ୍କୁ, ଅଧ୍ୟକ୍ଷ-ଉପାଧ୍ୟକ୍ଷ ସମେତ, ଯଦିଓ ଆମକୁ ଅର୍ଥାତ୍ ଏକାଡ଼େମୀର ସାଧାରଣ ସଭାଭୁକ୍ତ ସଦସ୍ୟମାନଙ୍କୁ ତମେହିଁ ମନୋନୀତ କରିବ । ଏହିପ୍ରକାର ବ୍ୟବସ୍ଥା କରାଯାଇଛି କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପାଇଁ ଏବଂ ସେମାନଙ୍କ କାର୍ଯ୍ୟକଳାପ ଯଥେଷ୍ଟ ଅଧିକ ସାହିତ୍ୟଧର୍ମୀ ଏବଂ ଫଳପ୍ରସୂ ହୋଇପାରିଛି ବୋଲି କହିଲେ ଭୁଲ୍ ହେବ ନାହିଁ । ସେଇଠୁ ମୁଁ ଗୋଟିଏ ସବ୍‌କମିଟି ଗଢ଼ିଲି ସାହିତ୍ୟିକ ବଂଧୁ ଚନ୍ଦ୍ରଶେଖର ରଥଙ୍କ ଅଧ୍ୟକ୍ଷତାରେ ଏବଂ ସେମାନେ ଗୋଟିଏ ଚିଠା ପ୍ରସ୍ତୁତ କଲେ ଯେଉଁଥିରେ ଏକାଡ଼େମୀକୁ ସ୍ୱାୟତ୍ତ ଶାସନର ଆତ୍ମସମ୍ମାନ ମିଳିବ, ମଧ୍ୟ ହିତ ହେବ ଓଡ଼ିଆ ସାହିତ୍ୟର । ଚିଠା କାର୍ଯ୍ୟକାରୀ କମିଟି ଦ୍ୱାରା ଅନୁମୋଦିତ ହେଲା । ମଧ୍ୟ ସାଧାରଣ ସଭାରେ ଗୃହୀତ ହେଲା । ତାପରେ ତାକୁ ପଠା ହେଲା ସରକାରଙ୍କ ପାଖକୁ ଏକାଡ଼େମୀର ସଂବିଧାନକୁ ସେହି ଅନୁଯାୟୀ ବଦଳାଇବା ପାଇଁ । କିନ୍ତୁ କୌଣସି ଉତ୍ତର ମିଳିଲା ନାହିଁ ସରକାରଙ୍କ ଠାରୁ । ଏବେ ମଧ୍ୟ ମିଳି ନାହିଁ, ଯାହା ମୁଁ ଜାଣିବାକୁ ପାଇଲି । ଆମେ ମଧ୍ୟ ସରକାରଙ୍କୁ ବିରକ୍ତ କରିନାହୁଁ ଉତ୍ତରଟିଏ ପାଇବା ଲାଗି । ସବ୍‌ସେ ଚୁପ୍ ଭଲା ।

ଶେଷକୁ ପଦୁଟିଏ କହିଦିଏ ମୋର ଭାରତୀୟ ସାହିତ୍ୟ ନାମକ ସ୍ୱପ୍ନର ପରିପ୍ରେକ୍ଷୀରେ । ଓଡ଼ିଶା ସାହିତ୍ୟ ଏକାଡ଼େମୀର ଅଧ୍ୟକ୍ଷ ହିସାବରେ ମୁଁ ମୋର ଅର୍ଜି ନେଇ

ଯାଇଥିଲି କେନ୍ଦ୍ର ସାହିତ୍ୟ ଏକାଡ଼େମୀର ସଚିବଙ୍କ ପାଖକୁ । ତାଙ୍କୁ ମନେଇଲା ପରେ ଅଧ୍ୟକ୍ଷଙ୍କ ପାଖରେ ତାକୁ ପେସ୍ କରିବି ବୋଲି । ଯେ ଚାଲନ୍ତୁ ଆମେ ସମସ୍ତେ ଏକାଠି ହେବା ମଝିରେ ମଝିରେ, ସମସ୍ତ ରାଜ୍ୟ ସାହିତ୍ୟ ଏକାଡ଼େମୀ ଏବଂ କେନ୍ଦ୍ର ସାହିତ୍ୟ ଏକାଡ଼େମୀର ପ୍ରତିନିଧିମାନେ । ଏବଂ ଗୋଟାଏ ଇସ୍ତାହାର, ତହୁଁ ଖସଡ଼ା ତିଆରି କରିବା ଭାରତୀୟ ସାହିତ୍ୟର ସର୍ବାଂଗୀନ ଅଭିବୃଦ୍ଧି ପାଇଁ । ସେଥିରେ ଆମ ସମୟ ଏବଂ ସୀମିତ ସଂବଳର ଠିକଣା ବିନିଯୋଗ ହୋଇପାରିବ । ଏବଂ ଆମେ ସମସ୍ତେ ଲାଭବାନ୍ ହେବା । କଣ କହୁଛନ୍ତି ? କିନ୍ତୁ ଦିବ୍ୟସୁନ୍ଦର ସ୍ମିତହସଟିଏ ଛଡ଼ା ମୁଁ ଆଉ କିଛି ପ୍ରତ୍ୟୁତ୍ତର ପାଇଲି ନାହିଁ ସଚିବଙ୍କଠାରୁ, ବେଶ୍ କିଛି ସମୟ ଯାଏଁ । ସତେକି ମୁଁ ସ୍ୱପ୍ନାଳୁ ପ୍ରାଣୀଟିଏ, ଯେ ଏମିତି ଗୋଟାଏ ସୃଷ୍ଟିଛଡ଼ା ପ୍ରସ୍ତାବ ବାଢ଼ିବାର ସାହସ କରିପାରୁଛି । କେତେବେଳେ ତାଙ୍କ ମୁହଁରୁ ବାହାରିଲା, ''କିନ୍ତୁ ଆପଣଙ୍କ ଓଡ଼ିଆ ଲେଖକ-ସାହିତ୍ୟିକମାନେ କଣ ନାହାନ୍ତି ଆମ ପରାମର୍ଶ ମଣ୍ଡଳୀରେ ? ଆଉ ସେମାନେ କଣ ଆମକୁ ଉଚିତ ପରାମର୍ଶ ଦେଉ ନାହାନ୍ତି, ଯେଉଁଥିରେ ଓଡ଼ିଆ ସାହିତ୍ୟର କିଛି କ୍ଷତି ହେବ ନାହିଁ ?'' ଯା'ପରେ ମୁଁ ଆଉ କଣ କହିଥାଆନ୍ତି ? ମୁଁ ବି ଅନୁରୂପ ହସଟିଏ ହସି ଦେଇ ଯଥାଶୀଘ୍ର ବିଦାୟ ନେଲି ତାଙ୍କଠୁ । ଧନ୍ୟବାଦପୂର୍ବକ ।

ଏଇ ହେଲା ସଂକ୍ଷେପରେ (କ୍ଷମା କରିବେ, ଆହୁରି ବେଶି ସଂକ୍ଷିପ୍ତ କରି ହେଲା ନାହିଁ ମୋର ବକ୍ତବ୍ୟକୁ) ମୋର ପ୍ରାୟ ତିନି ବର୍ଷର ଅନୁଭୂତି, ଓଡ଼ିଶା ସାହିତ୍ୟ ଏକାଡ଼େମୀର ଅଧ୍ୟକ୍ଷ ହିସାବରେ । ଏଇଥିରୁ ବୁଝିବେ ଯେ ବିଫଳତାବୋଧକୁ ସ୍ୱୀକାର ନ କଲେ ମଧ୍ୟ ମୋତେ କାହିଁକି କାନ୍ଦ ଲାଗିଲା ଯେ ମୁଁ କଲାପରି କିଛି କରିପାରିଲି ନାହିଁ ଓଡ଼ିଆ ସାହିତ୍ୟ ପାଇଁ । ଯାହାହେଉ ମୁଁ ଖୁସି ଯେ, ବର୍ତ୍ତମାନ ପଠାଣି ପଟ୍ଟନାୟକଙ୍କ ପରି ଜଣେ ଅଭିଜ୍ଞ ସୁସାହିତ୍ୟିକ ଅଛନ୍ତି ସେଇ ପଦବୀରେ ଏବଂ ମୋର ବିଶ୍ୱାସ ସେ ଅନେକ କିଛି କରିପାରିବେ ଓଡ଼ିଆ ସାହିତ୍ୟ ତଥା ଭାରତୀୟ ସାହିତ୍ୟର ଶ୍ରୀବୃଦ୍ଧି ପାଇଁ, ଯାହା ମୋ ଦ୍ୱାରା ହୋଇପାରିଲା ନାହିଁ ।

ହେଲେ ମୁଁ ସିନା ଦୁଃଖ କରୁଛି ଓଡ଼ିଆ ସାହିତ୍ୟ ପାଇଁ କିନ୍ତୁ ବ୍ୟକ୍ତିଗତ ସ୍ତରରେ ମୋତେ ଯେଉଁ ଅନୁଭବ ମିଳିଛି ଜଣେ ଓଡ଼ିଆ ଏବଂ ଜଣେ ସାହିତ୍ୟିକ ହିସାବରେ, ଓଡ଼ିଶା ସାହିତ୍ୟ ଏକାଡ଼େମୀର ଅଧ୍ୟକ୍ଷ ବୋଲାଇବା ହେତୁ, ତାକୁ ମୁଁ ଅବଶ୍ୟ ମୋ ଜୀବନର ଏକ ବିଶିଷ୍ଟ ଅଭିଜ୍ଞତା ବୋଲି କହିବି, ଯାହାର ସାରକଥା ଥିଲା ଲାଭ । ଆନନ୍ଦବର୍ଦ୍ଧକ ଲାଭ । ଏବଂ ସେଥିପାଇଁ ମୁଁ କର୍ତ୍ତୃପକ୍ଷମାନଙ୍କ ପ୍ରତି କୃତଜ୍ଞ ।

ପ୍ରଥମ କଥା ମୁଁ ଅନେକ ଓଡ଼ିଆ ଲେଖକ-ସାହିତ୍ୟିକମାନଙ୍କୁ ଚିହ୍ନିଲି ଏବଂ ସେମାନେ ମୋତେ ଚିହ୍ନିଲେ । ଯାହା ଅନ୍ୟଥା ସଂଭବ ହୋଇପାରିନଥାଆନ୍ତା, କାରଣ ମୁଁ ଓଡ଼ିଶା ଠାରୁ ବିଚ୍ଛିନ୍ନ ହୋଇ ରହିଥିଲି ଅନେକ ଦିନ ଯାଏଁ । ଅଳ୍ପ କେତେଜଣଙ୍କୁ ଛାଡ଼ିଦେଲେ ଅବସର

ଉତ୍ତାରୁ କଟକକୁ ଆସିଲା ପରେ ଯାଇଁ ଚିହ୍ନାଚିହ୍ନିର ସୁଯୋଗ ମିଳିଥିଲା ଅଳ୍ପବହୁତ । କିନ୍ତୁ ଏଇ ଏକାଡ଼େମୀର ଅଧ୍ୟକ୍ଷ ହେଲା ପରେ ମୁଁ ଯେମିତି ଖେଳେଇ ହୋଇଗଲି ଓଡ଼ିଶାର ପୁରପଲ୍ଲୀରେ, ଛୋଟବଡ଼ ବହୁବିଧ ଲେଖକ ସାହିତ୍ୟିକମାନଙ୍କ ଗହଣରେ, ସେଭଳି ସୌଭାଗ୍ୟ କୋଉଁଠୁ ମିଳିଥାଆନ୍ତା ମୋତେ, ମୋ କଟକ ଘରେ ବସିରହି ନୀରବ ସାହିତ୍ୟ ସାଧନା କରୁଥିଲେ ? ବିଶେଷ ଉଲ୍ଲେଖଯୋଗ୍ୟ ହେଉଛି ଅନେକ ଆଶାୟୀ ଏବଂ ଉଚ୍ଚାଭିଳାଷୀ ଯୁବ ଲେଖକଲେଖିକାମାନଙ୍କ ସହିତ ମୋର ପରିଚୟ । ସେଇଲାଗି ତ ମନରେ ଏତେ ଦୁଃଖ ହେଲା ମୋର, ଯେତେବେଳେ ତାଙ୍କୁ କହିବାକୁ ବାଧ୍ୟ ହେଲି ତାଙ୍କ ଆତୁର ପ୍ରଶ୍ନର ଉତ୍ତର ଦେବାକୁ ଯାଇ 'କ୍ଷମା କରିବ, ତମେ ଯେଉଁ ଉପନ୍ୟାସର ପାଣ୍ଡୁଲିପି ପଠେଇଥିଲ ଆମ ପାଖକୁ, ସିଏ ସେମିତି ପଡ଼ିରହିଛି । ଏବଂ କେବେ ତାର ବିଚାର କରିବୁବୋଲି କହି ହେଉନାହିଁ । କାରଣ ସ୍କିମ୍‌ଟା କାର୍ଯ୍ୟକାରୀ ହୋଇପାରୁନାହିଁ ଏଇକ୍ଷଣି ।' 'ସାର୍‌ କେବେ ହେବ ?' ତାର କୌଣସି ଉତ୍ତର ଦେଇ ହୁଏ ନାହିଁ । ଯାହାହେଉ ସେମାନଙ୍କ ସହିତ ତଥା କିଛିମାତ୍ରାରେ ତାଙ୍କର ସାହିତ୍ୟ ସହିତ ଯେଉଁ ପରିଚୟ ହୋଇପାରିଥିଲା ଏକାଡ଼େମୀର ଅଧ୍ୟକ୍ଷ ହେବା ଯୋଗୁଁ ତାହାହିଁ ଏକ ବିଶେଷ ଲାଭ ଥିଲା ମୋ ପାଇଁ ।

ପୁଣି ଯେଉଁ ଭେଟ ହୋଇଥିଲା ମୋର ପୂର୍ବସୂରୀମାନଙ୍କ ସାଙ୍ଗରେ । ଏକାଡ଼େମୀର ଅଧ୍ୟକ୍ଷ ହୋଇ ନ ଥିଲେ ମୋତେ କଣ କେବେହେଲେ ସେଇ ଅପୂର୍ବ ସୁଯୋଗ ମିଳିଥାଆନ୍ତା ? ବ୍ୟାସକବି ଫକୀରମୋହନଙ୍କୁ କ'ଣ ଭେଟିଥାଆନ୍ତି ବାଲେଶ୍ୱରର 'ଶାନ୍ତି କାନନ'ରେ, ଆଦିକବି ଶାରଳା ଦାସଙ୍କୁ ତେନ୍ତୁଳିଆପଦା ଶାରଳା ଠାକୁରାଣୀଙ୍କ ମନ୍ଦିର ପାଖରେ, କବିବର ରାଧାନାଥଙ୍କୁ ତାଙ୍କ ଜନ୍ମସ୍ଥାନ ସୋରୋ ପାଖରେ ଥିବା କେଦାରପୁର ଗାଆଁରେ, କବି ଅଭିମନ୍ୟୁ ସାମନ୍ତସିଂହାରଙ୍କୁ ତାଙ୍କର ଜନ୍ମସ୍ଥାନ ଯାଜପୁରରେ ଥିବା ଅଭିମନ୍ୟୁ-ବାଲିଆ ଗାଆଁରେ, କଂଧ କବି ଭୀମ ଭୋଇଙ୍କୁ ସୋନପୁର ପାଖରେ ଥିବା ଖଲିଆପାଳ ଗାଆଁରେ, କବି ଗଂଗାଧର ମେହେରଙ୍କୁ ସମ୍ବଲପୁରର ବରପାଲିରେ, ତଥା କବି ନନ୍ଦକିଶୋର ବଳଙ୍କୁ ଓ ସାମନ୍ତ ଚନ୍ଦ୍ରଶେଖରଙ୍କୁ ସେମାନଙ୍କ କର୍ମଭୂମିରେ ? ଏବଂ ମୁଁ ଯେଉଁ ସ୍ୱତନ୍ତ୍ରସୁନ୍ଦର ଏବଂ ଏକାନ୍ତ ବ୍ୟକ୍ତିଗତ ଆନନ୍ଦର ଅଧିକାରୀ ହେଲି ଯେତେବେଳେ ମୋର ଭେଟ ହେଲା ଗଣକବି ବୈଷ୍ଣବ ପାଣିଙ୍କ ସାଙ୍ଗରେ ଯେ ମୋର ଆଦିଭୂମିରେ ଜନ୍ମ ହୋଇଥିଲେ ଏବଂ ଉତ୍କଳ ଭାରତୀ କୁନ୍ତଳା କୁମାରୀଙ୍କ ସାଙ୍ଗରେ ଯେ ପ୍ରଥମେ ମୋତେ ତାଙ୍କ ହାତରେ ଧରିଥିଲେ ମୁଁ ଭୂମିଷ୍ଠ ହେଲା ପରେ ପରେ, ମୁଁ ତାର ମାହାତ୍ମ୍ୟକୁ କେମିତି ଭଲା ଗଣା କରିପାରିବି ?

ସ୍ମୃତିଚାରଣ ସଭା ଛଡ଼ା ଆହୁରି ଅନେକ ସଭାସମିତିରେ ଅଧ୍ୟକ୍ଷ, ମୁଖ୍ୟବକ୍ତା ଅବା ମୁଖ୍ୟ ଅତିଥି ହେବାକୁ ପଡ଼ିଛି । କେତୋଟି ଏକାଡ଼େମୀ ଦ୍ୱାରା ଆହୂତ କିନ୍ତୁ ଅନେକ ଅଧିକ ଅନ୍ୟାନ୍ୟ ସଂସ୍ଥା ଦ୍ୱାରା । ଏବଂ ସେଥିମଧ୍ୟରୁ କେତୋଟିକୁ ସାହିତ୍ୟିକ ବୋଲି କୁହାଯାଇ

ନ ପାରେ । ମଧ୍ୟ କହିବା ବାହୁଲ୍ୟ ଯେ ସେଗୁଡ଼ିକ ବେଶି ଭାଗ ଔପଚାରିକ । ୧୯୯୫-୧୯୯୭ରେ ଅନୁଷ୍ଠିତ ନାନାଦି ସଭାସମିତି ମଧ୍ୟରୁ ଯେଉଁ କେତୋଟିରେ ମୋତେ କିଛି କହିବାକୁ ଭଲ ଲାଗିଥିଲା ଏବଂ ମୁଁ କାର୍ଯ୍ୟକ୍ରମକୁ ମୋଟାମୋଟି ଉପଭୋଗ କରିପାରିଥିଲି ତାହା ଏହିପ୍ରକାର :

— ''ଓଡ଼ିଶା ଦିବସ'' ଉପଲକ୍ଷ୍ୟରେ 'ନାଲକୋ' ଶିଳ୍ପ ପ୍ରତିଷ୍ଠାନ ଦ୍ୱାରା ଆମନ୍ତ୍ରିତ ହୋଇ ଦାମନଯୋଡ଼ୀରେ ଅନୁଷ୍ଠିତ ସଭାରେ ଯେଉଁ ଦି'ପଦ କହିଥିଲି ମୋ ନିଜ ଅନୁଭୂତିରୁ । ଯେ ମୋ ବାରବର୍ଷିଆ ପିଲା ମନରେ କିଭଳି ଉଲ୍ଲାସ ଏବଂ ଉନ୍ମାଦନା ଆସିଥିଲା ସେତେବେଳେ, କେଉଁ ଗ୍ରାମୋଫନ୍ ରେକର୍ଡ଼ର ଗୀତ ସାଙ୍ଗରେ ନାଚି ନାଚି, ଯେ ଆମେ ସବୁ ମନ୍ତ୍ରୀ ହେବା ଦେଶୀ ଲୋକ ଗୋଟା ଗୋଟା ... ଏବଂ ସେଇ ସ୍ରୋତସ୍ୱତୀ ଯେଉଁ ପର୍ଯ୍ୟାୟରେ ପହୁଂଚିଛି ଆଜି ତାକୁ କଣ ସୈକତିନୀ ବୋଲି କୁହାଯିବ ନା ଆଉ କଅଣ । (ଏପ୍ରିଲ ୧ ତାରିଖ ୧୯୯୫)

— ଭୁବନେଶ୍ୱରରେ ଗୋଟିଏ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ରାଜ୍ୟ ସରକାରଙ୍କ ଦ୍ୱାରା ମହାତ୍ମାଗାନ୍ଧୀଙ୍କ ୧୨୫ତମ ଜୟନ୍ତୀ ଉପଲକ୍ଷ୍ୟରେ । ବିଷୟବସ୍ତୁ "Gandhi's vision of Man- Cultural elements in Education" ସେହି ପରିପ୍ରେକ୍ଷୀରେ ଜଣେ ଦାର୍ଶନିକ ଶିକ୍ଷାବିତ୍‌ଙ୍କ ଉକ୍ତିକୁ ଉଦ୍ଧାର କରି ଗୋଟିଏ ପ୍ରଶ୍ନର ଉତ୍‌ଥାପନ କରାଯାଇଥିଲା । ଯେ କଳ୍ପନାଶ୍ରୟୀ କଳାର ମାଧ୍ୟମରେ ଯଦି ତମ ମନକୁ ବିକଶିତ କରାଯାଇପାରେ ପିଲାଟି ଦିନୁ, ତାହେଲେ ସେଇ ଅବାସ୍ତବର ଅବବୋଧ ତମକୁ ଯଥାବିଧି ଶକ୍ତି ଦେବ ପରେ, ବାସ୍ତବସଂସାରର ସମ୍ମୁଖୀନ ହେବା ପାଇଁ । ରାଜ୍ୟ ସରକାର ଏଇ ଜୀବନଦର୍ଶନକୁ ସ୍ୱୀକାର କରି ତାକୁ ପ୍ରତିଷ୍ଠିତ କରିବାକୁ ଚାହାନ୍ତି ସ୍କୁଲମାନଙ୍କରେ, ହେଲେ ତା'ଆଗରୁ ଚାହାଁନ୍ତି କିଛି ଶୁଣିବା ପାଇଁ ସେ ବିଷୟରେ, ଆମମାନଙ୍କ ଠାରୁ । ଲେଖକ, ସାହିତ୍ୟିକ, ସାଂବାଦିକ, ସମାଜସେବୀ, ଅଧ୍ୟାପକ ଆଦି ଅନେକ ଲୋକଙ୍କୁ ଡକା ହୋଇଥିଲା ସେଇ ରାଜ୍ୟସ୍ତରୀୟ ବୋଲାଉଥିବା ସମ୍ମିଳନୀକୁ । ତେଣୁ ପ୍ରତ୍ୟେକଙ୍କୁ ମାତ୍ର ପାଞ୍ଚ ମିନିଟ୍ ପାଇଁ କିଛି କହିବାକୁ ଦିଆଯାଇଥିଲା । ତେବେ ଆମକୁ ଆଶ୍ୱାସନା ଦିଆଗଲା ଯେ ଆମର ଅପଠିତ, ହେଲେ ଲିଖିତ ପ୍ରବଂଧଗୁଡ଼ିକୁ ପରେ ବହି ଆକାରରେ ପ୍ରକାଶ କରାଯିବ । ମୁଁ ମୋ ପ୍ରବଂଧରେ କହିଥିଲି ଯେ ଉକ୍ତିଟି ତତ୍ତ୍ୱଦର୍ଶୀ ଏବଂ ସାରଗର୍ଭକ ଏଥିରେ ସଂଦେହ ନାହିଁ । କିନ୍ତୁ ତାକୁ ପ୍ରୟୋଗ କରିବାକୁ ହେଲେ ସେଥିର ଉପଯୁକ୍ତ ବ୍ୟବସ୍ଥା ଆବଶ୍ୟକ । କେବଳ ଛବିଅଂକା, କବିତା ଲେଖା ଇତ୍ୟାଦି ଉପରେ ଅଧିକ ଗୁରୁତ୍ୱ ଦେଲେ ଯଥେଷ୍ଟ ନୁହେଁ, ସେଥିର ସତମିଛ, ସୁନ୍ଦର ଅସୁନ୍ଦରକୁ ନେଇ ଯେଉଁ ବାଛବିଚାର ଲୋଡ଼ା, ତାର ମଂଜି ମଧ୍ୟ ପୋତିବାକୁ ପଡ଼ିବ ପିଲାଙ୍କ ମନରେ, ଯେମିତିକି କଳାତ୍ମକତା ତୁଚ୍ଛା ମନୋରଂଜନ ହୋଇ ରହି ନ ଯାଏ, ଏବଂ ତାଙ୍କ ମନକୁ ଦୂରେଇ ନ ଦିଏ

ଜ୍ଞାନଅର୍ଜନର କ୍ଳେଶରୁ । ଏହି ସଂକ୍ରାନ୍ତରେ କେତୋଟି ଦେଶର ସ୍କୁଲ ସିଲାବସରେ ଥିବା "Art appreciation course" ବିଷୟରେ କିଛି କହିଥିଲି ଏବଂ ସୁପାରିଶ କରିଥିଲି ଯେ ଆମ ସ୍କୁଲମାନଙ୍କରେ ସେହିଭଳି ବ୍ୟବସ୍ଥା କଲେ ଭଲ ହେବ । ଯାହାହେଉ ମୋର ଏଇ ଅପଠିତ ପ୍ରବଂଧଟି ଯୁଗୋପଯୋଗୀ ବୋଲି ମନେ ହୋଇଥିଲା ମୋର । 'କଳା ମାଧ୍ୟମରେ ଶିକ୍ଷା' ନାମକ ଏଇ ପ୍ରବଂଧଟିକୁ ମଧ୍ୟ ମୁଁ ଅନ୍ୟତ୍ର ପ୍ରକାଶ କରିଛି । ହେଲା ଏବେ ସେଉଟି ଅଦ୍ୟାବିଧି କେଉଁ ସଂକଳନ ସଂଚୟନରେ ସ୍ଥାନିତ ହୋଇ ନାହିଁ ସରକାରଙ୍କ ଦ୍ୱାରା, ମୋର କିମ୍ୱା ସେଦିନର ଅନ୍ୟ କେଉଁ ଅପଠିତ ପ୍ରବଂଧ । ମଧ୍ୟ ଶୁଣି ଆଶ୍ଚର୍ଯ୍ୟ ହେବାକୁ ଚାହୁଁ ନାହିଁ ଯେ ଅଦ୍ୟାବଧି କୌଣସି ବିଶେଷ ପରିବର୍ତ୍ତନ କରାଯାଇ ନାହିଁ ଆମ ସ୍କୁଲ ଶିକ୍ଷାର ପଦ୍ଧତିରେ, ଯାହାକୁ କଳାତ୍ମକ ବୋଲି କୁହାଯିବ । (ସେପ୍ଟେମ୍ବର ୩୦ ତାରିଖ ୧୯୯୫)

— ଓଡ଼ିଶା ସାହିତ୍ୟ ଏକାଡେ଼ମୀ ଦ୍ୱାରା ଆୟୋଜିତ କାବ୍ୟ ବିନୋଦ କବିତା ଉତ୍ସବରେ ଦେଇଥିବା ଉଦ୍‌ଯାପନୀ ଭାଷଣ । ମୁଖ୍ୟତଃ ଜଣେ କଥାକାର ହିସାବରେ ମୁଁ କ୍ଷମା ମାଗିଥିଲି ପୂର୍ବାଂଚଳର ସମସ୍ତ ଆମନ୍ତ୍ରିତ କବିବଂଧୁମାନଙ୍କୁ, ଯେ ଜଣେ ଅଣକବିକୁ ଏହି ଉତ୍ସବର ଶେଷକଥା କହିବାର ଦାୟିତ୍ୱ ଦିଆଯାଇଛି । ହେଲେ ମୁଁ ମୋର ଦୁଃଖ ଜଣାଇଥିଲି ସେମାନଙ୍କୁ ଯେ ଇଏ ତ ହେଲା ଗୋଟାଏ ଉପଚାର ମାତ୍ର, କିନ୍ତୁ ପ୍ରକାଶଭଂଗୀ ଛଡ଼ା ଆମେ ଦୁଇ ଧରଣର ପ୍ରାଣୀ କଣ ସତେ ଭିନ୍ନ ପରସ୍ପରଠାରୁ ଆମର ମୌଳିକ ସ୍ୱଗୁଣକୁ ନେଇ ଯେ ଆଳାପ ଆଲୋଚନାର ମାଧ୍ୟମରେ ଆମେ ଆହୁରି ଅଧିକ ଏକାଠି ହୋଇପାରୁନାହୁଁ ପରସ୍ପରକୁ ଜାଣିବା ପାଇଁ ? ସେଥିରେ ଆମ ସମସ୍ତଙ୍କର ତଥା ଭାରତୀୟ ସାହିତ୍ୟର ଲାଭ ହୁଅନ୍ତା ନାହିଁ କି ? (ଡିସେମ୍ବର ୧୨ ତାରିଖ ୧୯୯୫)

— ମାଲ୍‌କାନଗିରିରେ ଆୟୋଜିତ ଗୋଟିଏ ସେମିନାର୍‌ରେ ଯାହା କହିଥିଲି 'ପୁରାଣକଥା ଏବଂ ଆଧୁନିକ ସାହିତ୍ୟ' ଉପରେ । କେମିତି ଆମେ ଆଧୁନିକ ଲେଖକମାନେ ପୁରାଣ ଚରିତ୍ରମାନଙ୍କୁ ଡାକି ଆଣୁ ଆମ ନିଜନିଜ ଆଭିମୁଖ୍ୟର ଖୋରାକ୍ ଯୋଗାଇବା ପାଇଁ । ଭକ୍ତିରେ ଗଦ୍‌ଗଦ୍ ହୋଇ କେଉଁ 'ଅପ୍ରାକୃତ ପ୍ରେମଲୀଳା' ଦର୍ଶାଇବାର ଉଚ୍ଚାଭିଳାଷ ନୁହେଁ, ଆମର ଉଦ୍ଦେଶ୍ୟମୂଳକ ସାହିତ୍ୟିକ ଆହ୍ୱାନ, ଅର୍ଥାତ୍ ମୁଁ ତାଙ୍କୁ ତାଙ୍କ ସ୍ୱର୍ଗରୁ ଟାଣି ଆଣେ ଆମ ମଂଚକୁ, ଆମରି ପୁତ୍ତଳିକା ହୋଇ । ଏହା କେତେଦୂର ସମୀଚିନ ସେ ବିଷୟରେ କେତୋଟି ପ୍ରଶ୍ନ ଉଠାଇଥିଲି । (ଫେବୃଆରୀ ୨୧ ତାରିଖ ୧୯୯୬)

— ଭୁବନେଶ୍ୱରର ଭଂଜମଣ୍ଡପରେ ଯେଉଁ ମିନତି ଜଣାଇଥିଲି ଯୁବ ଲେଖକ ସାହିତ୍ୟିକମାନଙ୍କୁ, ଆମ ପ୍ରବୀଣମାନଙ୍କ ସାଙ୍ଗରେ ଏକାଠି ବସି ଆଳାପ ଆଲୋଚନା କରିବା ଲାଗି । ଯେମିତିକି ଆମେ ଜାଣିବା ଆମ ସାହିତ୍ୟ କେଉଁ ଆଡ଼କୁ ଯାଉଛି ଓ ତାର ଅଗ୍ରଗତି କେଉଁ ଧାତୁରେ ଗଢ଼ା । ସେଇଠୁ ହୁଏତ କିଛି ଭାବିବାକୁ ପଡ଼ିବ ସେ ବିଷୟରେ ଏବଂ

ତାହାହିଁ ଲୋଡ଼ା ଆମ ସାହିତ୍ୟକୁ ଯଥାର୍ଥରେ ଆଗେଇ ନେବା ପାଇଁ । (ମାର୍ଚ୍ଚ ୨୩ ତାରିଖ ୧୯୯୬)

— କଲିକତାରେ ''ଓଡ଼ିଶା ପ୍ରଗତି ସଂଘ'' ଓ ''ଭାରତୀୟ ଭାଷା ପରିଷଦ''ଙ୍କ ମିଳିତ ଆନୁକୂଲ୍ୟରେ ଆୟୋଜିତ ସଭାରେ ପଢ଼ିଥିବା ପ୍ରବଂଧ ''ଜାତୀୟତା ଓ ଜଗନ୍ନାଥ ସଂସ୍କୃତି'' । ପଚାରିଥିଲି ଯେ ଯେଉଁ ଜଗନ୍ନାଥ ସଂସ୍କୃତିର ଉଦାରସୁନ୍ଦର ମୈତ୍ରୀଭାବ ଭାରତୀୟତାର ପ୍ରତୀକ ବୋଲି ମନେ ହୁଏ, ତାହା ଆମେ କେତେଦୂର ଗ୍ରହଣ କରିପାରିଛୁ ଆମର ବାସ୍ତବ ସାମାଜିକ ଜୀବନରେ ? (ଏପ୍ରିଲ୍ ୬ ତାରିଖ ୧୯୯୬)

— ଲେଖିକା ଭଉଣୀମାନଙ୍କୁ ଯେଉଁ ଉଦ୍‌ବୋଧନ ଦେଇଥିଲି ବାଲେଶ୍ୱରରେ, ଓଡ଼ିଶା ଲେଖିକା ସଂସଦଙ୍କ ଦ୍ୱାରା ଆୟୋଜିତ ଏକ ସଭାରେ, ମୁଣ୍ଡରୁ ଓଢ଼ଣା ଖସେଇ ଦେଇ ତାଙ୍କ ଅନୁଭୂତ ସତ୍ୟକୁ ଆହୁରି ଅଧିକ ନିର୍ଭୟରେ ପ୍ରକାଶ କରିବା ଲାଗି । (ଏପ୍ରିଲ୍ ୧୮ ତାରିଖ ୧୯୯୬)

— ଭୁବନେଶ୍ୱରର Xaviers Institute of Managementଙ୍କ ଦ୍ୱାରା ଆହୂତ ଗୋଟିଏ ସଭାରେ ଯାହା କହିଥିଲି, ନିର୍ଦ୍ଧାରିତ ବିଷୟବସ୍ତୁ "Good Economics, Bad Politics" ଉପରେ, ଅନ୍ୟତମ ଆଲୋଚକ ଭାବରେ । ବିଶିଷ୍ଟ ଏବଂ ବରିଷ୍ଠ ଶିଳ୍ପପତି ରୁସୀ ମୋଦୀ ଥିଲେ ଜଣେ ଆଲୋଚକ । କହିଥିଲି ଯେ ବିତ୍ତୀୟ ପ୍ରଶାସନ ଦିଗରେ ମୋର ଯେଉଁ ଅଭିଜ୍ଞତା ଅଛି, ସେଥିରୁ କହିବି ଯେ ଉତ୍ତମ ଅର୍ଥନୀତି କେବେହେଲେ ଉତ୍ତମ ରାଜନୀତିର ବାଟ ଓଗାଳି ନାହିଁ, ଯେତେବେଳେ ରାଜନୀତିଜ୍ଞ ଆପାତ ଲୋକପ୍ରିୟତାକୁ ପଛରେ ପକାଇ କିଛି ଉଚିତ ଲୋକହିତକାରୀ କାମ କରିବାକୁ ଯାଇଛି । କାରଣ ଯଥାକ୍ରମେ ତାହା ମଧ୍ୟ ଉତ୍ତମ ରାଜନୀତି ବୋଲି ବିବେଚିତ ହୋଇଛି । ଅଧିକାଂଶ କ୍ଷେତ୍ରରେ ତା ନିଜ ଜୀବଦ୍ଦଶାରେ, ନତୁବା ଇତିହାସର ପୃଷ୍ଠାରେ । ଏବଂ ତାର ଲୋକପ୍ରିୟତା ଫେରିଆସିଛି । (ଅକ୍ଟୋବର ୧୨ ତାରିଖ ୧୯୯୬)

କିନ୍ତୁ ସାହିତ୍ୟଏକାଡ଼େମୀଜନିତ ଏଇ ବଢ଼ି ଉଠିଥିବା ହେଲମେଳ, ଦଉଡ଼ଧାପଡ଼ ଓ ବକରବକର ଭିତରେ ମୋ ଲେଖକପଣିଆର ହାନି ହୋଇଥିଲା କି ? ନା, ଅଳ୍ପବହୁତ ଗଳ୍ପ ଓ ପ୍ରବଂଧ ଏବଂ କାଁଭାଁ କବିତା ଛଡ଼ା ମୋର ଉପନ୍ୟାସ ଲେଖା ଅବ୍ୟାହତ ରହିଥିଲା । ୧୯୯୫ ଅକ୍ଟୋବରରେ ସରିଲା ମୋର ତୃତୀୟ ଉପନ୍ୟାସ ''ସକଳ ସଂତାନ'' । ପୂର୍ବରୁ କହିଛି କିଛି ଏଇ ଉପନ୍ୟାସର କଥାବସ୍ତୁ ବିଷୟରେ ଏବଂ ଦାବୀ କରିଛି ଯେ ମୁଁ ମଧ୍ୟ ସେହି ସଂତାନମାନଙ୍କ ଭିତରୁ ଜଣେ । ବର୍ତ୍ତମାନ କେବଳ ଏତିକି କହିଦିଏ ଯେ ଯଦିଓ ମୁଁ ଏହି ଉପନ୍ୟାସରେ ସେମାନଙ୍କର ସୃଜନାତ୍ମକ ଆତ୍ମା ବନାମ ତାଙ୍କର ରକ୍ତମାଂସଧାରୀ ଦେହ ଏବଂ ଇଗୋପ୍ରପୀଡ଼ିତ ମନକୁ ନେଇ ଗୋଟିଏ ସୁଖଦୁଃଖର ନକ୍‌ସା ତିଆରି କରିବାକୁ ଚେଷ୍ଟା

କରିଛି, ମୋର ଶେଷକୁ ମନେ ହୋଇଛି ଯେ ସେମାନେ - ଆମେ କେହି ଦୟନୀୟ ନୋହୁଁ । ଆମ ପାଖରେ କିଛି ଅଧିକବିଶେଷ ରହିଛି, ଯେଉଁଥିପାଇଁ ଆମେ ଦୟା ସହାନୁଭୂତିରୁ ବଳି ଆପଣମାନଙ୍କ ସ୍ନେହଶ୍ରଦ୍ଧା ପାଇବୁ ବୋଲି ଆଶା କରୁ । ହୁଏତ ସେଥିରେ କରୁଣା ଥିବ, କିନ୍ତୁ ଦୟା ନୁହେଁ, ଦୟା ନୁହେଁ । କାହିଁକି ଏମିତି କହୁଛି ତା ବହିଟିକୁ ପଢ଼ିଲେ ଜାଣିବେ ।

ଏବଂ ୧୯୯୬ ଅଗଷ୍ଟ ମାସରେ ମୁଁ ଆରମ୍ଭ କରେ ମୋର ଚତୁର୍ଥ ଉପନ୍ୟାସ ''ସ୍ୱର୍ଗସୀମା'', ମୋ ନିଜର ଆଉ ଗୋଟିଏ ଅବତାରକୁ ମନେ ପକାଇ । ଯେ ମୁଁ ମଧ୍ୟ ଜଣେ ବ୍ୟୁରୋକ୍ରାଟ୍ ଥିଲି ଏବଂ ରାଜସେବାରେ ନିୟୋଜିତ କରିଥିଲି ନିଜକୁ । ତେଣୁ ଏମାନଙ୍କ ଜୀବନକୁ ନେଇ ଗୋଟିଏ ଉପନ୍ୟାସ ଲେଖିଲେ ଭଲ ହୁଅନ୍ତା ନାହିଁ ? ଭାବିଲି ଯେ ମୁଁ ସେମାନଙ୍କୁ ମଧ୍ୟ ଜାଣେ । ଏବଂ ସାହିତ୍ୟ ନାମକ ପଳାୟନପନ୍ଥା ନ ଥିଲେ ମୁଁ ବି ସେଇ ସ୍ୱର୍ଗ-ଅଭିଳାଷୀ ପ୍ରାଣୀମାନଙ୍କ ପରି ହୀନସ୍ତା ହୋଇ ନ ଥାଆନ୍ତି ବୋଲି କିଏ କହିବ ? ଦୁଇଟି ମୁଖ୍ୟ ଚରିତ୍ର ଏଇ ଉପନ୍ୟାସର । ଜଣେ କେବଳ ରାଜସେବାରେ ନିୟୋଜିତ ବୋଲି ମନେ କରେ ନାହିଁ ନିଜକୁ, 'ନିବେଦିତ' ବୋଲି ଦାବୀ କରେ । ସେହେତୁ ସେ ରାଜଦରବାରର ବେଶୀ ନିକଟକୁ ଆସି ପାରି ଥିଲା । ଅନ୍ୟ ଜଣକ ନିଜର ରସଗ୍ରାହୀ ଏବଂ ସଂସ୍କୃତିପ୍ରେମୀ ନିଜତ୍ୱକୁ ଅକ୍ଷୁର୍ଣ୍ଣ ରଖିବାକୁ ଚାହିଁଛି ଏବଂ ସେହେତୁ ଉପରୋକ୍ତ ସହକର୍ମୀଙ୍କ ଗୁରୁବଚନକୁ ମାନି ନେଇ ପାରିନାହିଁ । ଫଳରେ ସେ ତା' ଅଭିଳଷିତ ସ୍ୱର୍ଗକୁ ହରେଇ ବସିଛି ବୋଲି ମନେ ହୁଏ, ଯେଉଁଠି ତା ଗୁରୁ ସ୍ୱର୍ଗର ଶିଖରିରେ ଯାଇ ପହୁଂଚିଲେଣି । ଏବଂ ଏମାନଙ୍କ ସାଙ୍ଗକୁ ଅଛି ଜଣେ ସାନ ବ୍ୟୁରୋକ୍ରାଟ୍ ଯେ ହାକିମ ପଦବାଚ୍ୟ ନୁହେଁ । ଏଇ ତିନିଜଣଙ୍କର ପରିବାର, ପ୍ରିୟାପ୍ରୀତି ଏବଂ ବଂଧୁପରିଜନମାନଙ୍କୁ ନେଇ ବିଭିନ୍ନ ଧରଣର ବଂଧନବୋଧ ମଧ୍ୟ ରହିଛି । ଶେଷକୁ କିଏ କିଭଳି ସ୍ୱର୍ଗସୁଖର ଅଧିକାରୀ ହେଲା ଅବା ସେଥିରୁ ବଂଚିତ ହେଲା, ତାରି କାହାଣୀଟିଏ ଶୁଣାଇବାକୁ ଚାହିଁଛି ଏଇ ଉପନ୍ୟାସରେ । ଲେଖାଟିକୁ ସାରି ଦେଇପାରିଲି ନଭେମ୍ବର ୧୯୯୭ରେ ।

ଓଡ଼ିଶା ସାହିତ୍ୟ ଏକାଡ଼େମୀର ଅଧ୍ୟକ୍ଷ ଥିବା ସମୟରେ ମୁଁ ଆଉ ଗୋଟିଏ ସଂତୋଷଜନକ କାମ ହାତକୁ ନେଇ ସାରି ଦେଇ ପାରିଥିଲି । ଓଡ଼ିଆ ଗଳ୍ପ ସାହିତ୍ୟର ଶତବାର୍ଷିକୀ ଉପଲକ୍ଷ୍ୟରେ ଦିଲ୍ଲୀର ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ଇଂରାଜୀରେ ଅନୁଦିତ ଓଡ଼ିଆ ଗଳ୍ପମାଳାଟିଏ ପ୍ରକାଶ କରିବାକୁ ଚାହିଁଲେ, ସର୍ବଭାରତୀୟ ପାଠକପାଠିକାମାନଙ୍କ ଅବଗତି ପାଇଁ । ଏବଂ ମୋତେ ପଚାରିଲାରୁ ମୁଁ ବିନା ଦ୍ୱିଧାରେ ହଉ ମୁଁ ସେଉଟିକୁ ପ୍ରସ୍ତୁତ କରିବି ବୋଲି କହିଲି । ଓଡ଼ିଆ ସାହିତ୍ୟକୁ ବାହାରେ ଚିହ୍ନାଇବାର ଯେଉଁ ଦାୟିତ୍ୱଟିକୁ ମୁଁ ବରିନେଇଛି ଏତେଦିନ ହେଲା, ଇଏ ତାରି ଆହ୍ୱାନ ନୁହେଁ ତ ଆଉ କଅଣ ? ସଂକଳନଟି ସସଂପୂର୍ଣ୍ଣ ହେବା ଆବଶ୍ୟକ ବୋଲି ସେମାନେ କହିଲେ, ଫକୀରମୋହନଙ୍କ ଠାରୁ ଆଜିଯାଏଁ, କିନ୍ତୁ

ଚେତାଇ ଦେଲେ ଯେ ବହିର କଳେବର ମୋଟାମୋଟି ୩୦୦ ପୃଷ୍ଠାରୁ ବେଶି ହେବା ଉଚିତ ନୁହେଁ । ସେଇ ହେଲା ମୋର ସମସ୍ୟା । କାହାକୁ ରଖିବି ଓ କାହାକୁ ଛାଡ଼ିବି ? ଶେଷକୁ ସ୍ଥିର କଲି ଯେ ଫକୀରମୋହନଙ୍କ ପରେ ସିଧା ଗାରଟିଏ ଟାଣି ଆଣିବି କାଳିନ୍ଦୀଚରଣଙ୍କ ଯାଏ, ସେଇଠୁ ଗୋଟିଗୋଟି କରି ଚିହ୍ନାଇବି ସମସ୍ତଙ୍କୁ । ଏହି ଭାବରେ ମୁଁ ଫକୀରମୋହନଙ୍କୁ ମିଶେଇ ୩୪ଟି ଗାଳ୍ପିକଙ୍କର ଗୋଟିଏ ଲେଖାଏଁ ନିର୍ବାଚିତ ଗଳ୍ପର ଅନୁବାଦ କରାଇ (ମଧ୍ୟ ନିଜେ କେତୋଟିର ଅନୁବାଦ କରି) ସଂକଳନଟିକୁ ପ୍ରସ୍ତୁତ କଲି ଗୋଟିଏ ସୁଦୀର୍ଘ ମୁଖବଂଧ ସହ । ତଥାପି ଦୁଃଖ ରହିଗଲା ଯେ କେତେକ ନୂଆ ଲେଖକମାନଙ୍କୁ ବାଦ୍ ଦେବାକୁ ପଡ଼ିଲା, କଳେବରର ଅଟକଳ ଦୃଷ୍ଟିରୁ । ସେଇ ଦୁଃଖର ଲାଘବ ହୋଇଥାଆନ୍ତା ଯଦି ଓଡ଼ିଶା ସରକାରଙ୍କର ସେହି ନୂଆ ଯୋଜନାଟି କାର୍ଯ୍ୟକାରୀ ହୋଇଥାଆନ୍ତା । କିନ୍ତୁ ତାର ଅକାଳ ମୃତ୍ୟୁ ବିଷୟରେ ମୁଁ ତ କହିଛି ଏଥିପୂର୍ବରୁ । ବାକୀ ରହିଲା ଆମର "Oriya writing Today" ନାମକ ଯୋଜନା । ଆଶା ଅଛି ଅନେକ ନୂଆ ଲେଖକ ଲେଖିକାମାନଙ୍କୁ ଆଣି ହେବ ତା ଭିତରକୁ । ଦେଖାଯାଉ କଣ ହେଉଛି । ଯାହାହେଉ ଏଇ ସଂକଳନର ପାଣ୍ଡୁଲିପିଟିକୁ ମୁଁ ପ୍ରସ୍ତୁତ କରି ଟ୍ରଷ୍ଟଙ୍କ ଅଫିସରେ ଦେଇ ଆସି ପାରିଥିଲି ୧୯୯୬ ମସିହାରେ । ଏବଂ "Beyond the Roots" ନାମକ ସଂକଳନଟିଏ ପ୍ରକାଶିତ ହେଲା ୧୯୯୮ ମସିହାରେ, ଯାହା ପ୍ରଥମ ଥର ପାଇଁ ଓଡ଼ିଆ କଥା ସାହିତ୍ୟର ଏକ ବିସ୍ତାରିତ ପରିଚିତି ଆଣି ଦେଇ ପାରିଛି ସର୍ବଭାରତୀୟ ପାଠକପାଠିକାମାନଙ୍କ ପାଇଁ । ସୁଖର ବିଷୟ ବହିଟି ବେଶ୍ ଆଦୃତ ହୋଇଛି ଏବଂ ଦୁଇବର୍ଷ ନ ପୂରୁଣୁ ତାର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇଛି ।

୧୯୯୫ରୁ ୧୯୯୭ ମଧ୍ୟରେ ମୋର ଯେଉଁ ନୂଆ ବହିଗୁଡ଼ିକ ପ୍ରକାଶ ପାଇଥିଲା, ସେଗୁଡ଼ିକ ହେଲା - ମୋର ଦ୍ୱିତୀୟ ଏବଂ ତୃତୀୟ ଉପନ୍ୟାସ 'ନେତା ଓ ନେତ୍ରମଣି' ଓ 'ସକଳ ସଂତାନ', ପଂଚଦଶ ଗଳ୍ପ ସଂକଳନ 'ଥରୁଟିଏ', ଷୋଡ଼ଶ ଗଳ୍ପ ସଂକଳନ 'ତରଂଗ', ତୃତୀୟ ପ୍ରବଂଧ ସଂକଳନ 'ଚେନାଏ ପୃଥିବୀ, ଚିରୁଡ଼ାଏ ଘର, ଏବଂ ବହୁବିଳମ୍ବିତ ଚତୁର୍ଥ ପ୍ରବଂଧ ସଂକଳନ 'ଲେଖକର ଦୁଃଖ' । ଏଥିମଧ୍ୟରୁ କେତୋଟିଙ୍କ ବିଷୟରେ କିଛି କହିବା ଆବଶ୍ୟକ ବୋଲି ମନେ କରୁଛି । 'ଥରୁଟିଏ'ର ଶୀର୍ଷକ ଗଳ୍ପ ଅନେକ ପୁରୁଣା ଏବଂ ପ୍ରକାଶିତ ହୋଇଥିଲେ ମଧ୍ୟ ତାର କପି ହଜିଯାଇଥିଲା, ତେଣୁ ତାହା କୌଣସି ସଂକଳନକୁ ଆସିପାରି ନଥିଲା । ତାକୁ ଏବଂ ତାରି ପରି ଆଉ କେତୋଟି ଗପକୁ ଡକ୍ଟର ବିଜୟ ଚୌଧୁରୀ (ସେ ଇତି ମଧ୍ୟରେ ଡକ୍ଟରେଟ୍ ହାସଲ କରି ସାରିଲେଣି ମୋର ସାହିତ୍ୟ ଉପରେ ଗବେଷଣା କରି) ଉଦ୍ଧାର କରି ଆଣିଥିଲେ ମୋ ପାଇଁ । ସେଥିପାଇଁ ମୁଁ ତାଙ୍କ ପ୍ରତି କୃତଜ୍ଞ । 'ତରଂଗ' ସଂକଳନର ଶୀର୍ଷକ ଗପଟି ଏକ ଏକାନ୍ତ ବୈକ୍ତିକ ଅନୁଭବ ଉପରେ ଆଧାରିତ । ଆମ କଟକ ଘର ଅଗଣା ଭିତରୁ ମୋ ବାପା ବୋଉଙ୍କ 'ଅସ୍ଥି'କୁ ମଧ୍ୟ ଯେତେବେଳେ କାଢ଼ି ନିଆଗଲା ଏବଂ

ମୁଁ ପ୍ରୟାଗକୁ ଗଲି ତ୍ରିବେଣୀ ସଂଗମରେ ତାର ବିସର୍ଜନ ପାଇଁ ସେଥିରୁ କଣ ମିଳିଲା ମୋତେ ? ଶାନ୍ତି ନା ଶୂନ୍ୟତା ? ଏବଂ ମୁଁ ତାର ମୁକାବିଲା କରିପାରିଲି ତ ? 'ଲେଖକର ଦୁଃଖ'କୁ ନେଇ ମୋତେ ଗୋଟିଏ ଅପ୍ରତ୍ୟାଶିତ ଦୁଃଖର ସମ୍ମୁଖୀନ ହେବାକୁ ପଡ଼ିଲା । କାରଣ ପ୍ରକାଶକ ମହାଶୟ ତାକୁ ଛପେଇ ପାରିଲେ ନାହିଁ । ଶେଷକୁ ମୋତେ କହୁଛନ୍ତି ବହୁବର୍ଷ ପରେ - ବୁଝିଲେ କିଶୋରୀବାବୁ ଏଗୁଡ଼ିକ ସିଧାସଳଖ ପ୍ରବଂଧ ନୁହେଁ ଯାହା ପାଠ୍ୟପୁସ୍ତକ ଉପଯୋଗୀ, ମଧ୍ୟ ନୁହେଁ ରମ୍ୟରଚନା, ତେଣୁ କଥା ହେଉଛି କଣ କି ....' । ମୁଁ ବୁଝିଲି ତାଙ୍କର ଦୁଃଖ ଏବଂ ପାଣ୍ଡୁଲିପିଟିକୁ ଫେରାଇ ଆଣି ଆଉ ଜଣଙ୍କ ହାତକୁ ଦେଲି ଯେ ତାକୁ ଅବିଳମ୍ବେ ଛପାଇଲେ । ବ୍ୟବସାୟୀ ପ୍ରଥମ ଜଣଙ୍କର ନାଆଁ କହି ଲାଭ ନାହିଁ । ତେବେ ସାହିତ୍ୟପ୍ରେମୀ ଦ୍ୱିତୀୟ ଜଣଙ୍କ ପ୍ରତି ମୁଁ କୃତଜ୍ଞ । ତେଣୁ ତାଙ୍କ ନାଆଁ ନ ନେଲେ ଚଳିବ ନାହିଁ । ସେ ହେଉଛନ୍ତି ଫ୍ରେଣ୍ଡସ୍ ପବ୍ଲିସର୍ସର କର୍ତ୍ତା ସହଦେବ ପ୍ରଧାନ । ମନେଥିବ ଯେ ସାହସର ସହିତ ସେ ମଧ୍ୟ ମୋର 'ତିରିଶ ବର୍ଷର ଗଳ୍ପ ଓ ଆଳାପ', ଏକ ଭିନ୍ନ ଧରଣର ଗ୍ରଂଥାବଳୀ ଛପାଇବାକୁ ରାଜି ହୋଇଯାଇଥିଲେ ।

ଅନୁବାଦ ସାହିତ୍ୟ ବିଭାଗରେ ମୋର ପ୍ରଥମ ଇଂରାଜିରୁ ଓଡ଼ିଆରେ ଅନୁଦିତ ଉପନ୍ୟାସ ''ଶେଷ ଗୋଲକଧଂଦା'' କେନ୍ଦ୍ର ସାହିତ୍ୟ ଏକାଡ଼େମୀଙ୍କ ଦ୍ୱାରା ପ୍ରକାଶିତ ହେଲା, ୧୯୯୬ ମସିହାରେ । ଏବଂ ମୋର ପ୍ରଥମ ଇଂରାଜୀ ପ୍ରବଂଧ ସଂକଳନ "My Writing My Times" ୧୯୯୭ ମସିହାରେ ପ୍ରକାଶିତ ହେଲା । ପ୍ରକାଶକ - ଆର୍ଯ୍ୟ ପ୍ରକାଶନୀ, କଟକ ।

ଓଡ଼ିଶା ସାହିତ୍ୟ ଏକାଡ଼େମୀର ଅଧ୍ୟକ୍ଷ ଥିଲାବେଳେ ଯେଉଁ ସମସ୍ତ ସମ୍ମାନ ଓ ସଂବର୍ଦ୍ଧନା ମିଳିଥିଲା ମୋତେ, ତା ଉପରେ ବିଶେଷ ଗୁରୁତ୍ୱ ଦେବାର ନୁହେଁ । କାରଣ ମୋର ମନେ ଥିଲା ଯେ ସେଥିରେ ମୋର ଲେଖକତ୍ୱ ଠାରୁ ବେଶି ସମ୍ମାନ ଦିଆଯାଉଛି ମୋ ପଦବୀର । କିନ୍ତୁ ଏହି ସମୟର ଗୋଟିଏ ସଂବର୍ଦ୍ଧନା ଭିନ୍ନ ବୋଲି ମନେ ହେଲା ମୋର । 'ଉତ୍କଳ ପାଠକ ସଂସଦ' ଯେଉଁ ମାନପତ୍ର ବଢ଼େଇ ଦେଇଥିଲେ ମୋ ହାତକୁ ମାର୍ଚ୍ଚ ୨୪ ତାରିଖ ୧୯୯୬ରେ ବିଭିନ୍ନ କ୍ଷେତ୍ରରେ ସୁନାମ ଅର୍ଜନ କରିଥିବା ଅନ୍ୟ ଛଅଜଣଙ୍କ ସମେତ । ଆମେ ହେଲୁ 'ସପ୍ତ ସିଂଧୁ' ଏବଂ ସେଇ ନାଆଁରେ ବହିଟିଏ ପ୍ରକାଶିତ ହେଲା ଆମର ଉଚ୍ଛଳ ଓ ତରଂଗାୟିତ ଜୀବନର । ମୋର ସଂକ୍ଷିପ୍ତ ଜୀବନୀର ରଚୟିତା ଥିଲେ ଡଃ. ବିଜୟାନନ୍ଦ ସିଂହ । ଏହି ତରୁଣ ଅଧ୍ୟାପକଙ୍କୁ ମୁଁ ଜାଣିଥିଲି ଅନେକ ଦିନୁ । କିନ୍ତୁ ଏଇ ଜୀବନୀ ରଚନାର ପରିପ୍ରେକ୍ଷୀରେ ଆମେ ଆହୁରି ଅଧିକ ପରିଚିତ ହୋଇପାରିଲୁ ପରସ୍ପର ସହିତ । କିଏ ଜାଣିଥିଲା ଭଦ୍ରଲୋକ ଏତିକିରେ ସଂତୁଷ୍ଟ ହେବେ ନାହିଁ ଏବଂ କାଳକ୍ରମେ ମୋ ଠାରୁ ସୁଦୀର୍ଘ ଆତ୍ମଜୀବନୀଟିଏ ମଧ୍ୟ ହାସଲ କରିବାକୁ ଚାହିଁବେ ?

ବିଜୟାନନ୍ଦଙ୍କ ବିଷୟରେ କିଛି କହିବାକୁ ଗଲା ବେଳେ ମନେ ପଡ଼ନ୍ତି ଶେଖ୍ ମତ୍‌ଲୁବ୍ ଅଲ୍ଲୀ, କାରଣ ସେ ମତ୍‌ଲୁବଜୀଙ୍କର ଜଣେ ବିଶିଷ୍ଟ ସହଯୋଗୀ । ଏବଂ କହିବାକୁ ଗଲେ ଆମ ତିନିଜଣଙ୍କ ଭିତରେ ଆତ୍ମୀୟତାର ଗୋଟିଏ ସୂତ୍ର ରହିଛି, ଯାହାର ସାହିତ୍ୟ ସାଙ୍ଗରେ କୌଣସି ସଂପର୍କ ନାହିଁ, ହେଲେ ସେଥିଯୋଗୁଁ ସାହିତ୍ୟରୁ ଉପୁଜିଥିବା ସଂପର୍କ ଆହୁରି ଦୃଢ଼ ହୋଇଯାଇଛି ବୋଲି ମନେ ହୁଏ । କାରଣ ଆମେ ତିନିଜଣଯାକ ମାହାଙ୍ଗା ବ୍ଲକ୍‌ରେ ଥିବା ପାଖାପାଖି ଗାଆଁର ଲୋକ । ମତ୍‌ଲୁବ୍ ଅଲ୍ଲୀ ଜଣେ ବିଶିଷ୍ଟ କଂଗ୍ରେସ ନେତା ଏବଂ ପୂର୍ବତନ ମନ୍ତ୍ରୀ ହିସାବରେ ସୁବିଦିତ ଥିଲେ । ମଧ୍ୟ ମୁଁ ତାଙ୍କୁ ଜାଣିଛି ମୋର ଗ୍ରାମବାସୀ ତଥା ଜଣେ ସାହିତ୍ୟିକ ଭାବରେ । ଏବଂ ମୁଁ ତାଙ୍କ ପ୍ରତି କୃତଜ୍ଞ ଯେ ତାଙ୍କରି ଯୋଗୁଁ ମୁଁ ମୋ ଆଦିଭୂମିର ଅନେକ ପ୍ରାତଃସ୍ମରଣୀୟ ବରପୁତ୍ରମାନଙ୍କ ଜୀବନଚରିତ ବିଷୟରେ କିଛି ଜାଣିବାକୁ ପାଇଛି, ଜାଣିଲା ପରି । ଏବଂ ନିଜକୁ ଧନ୍ୟ ମନେ କରିଛି । ଯଥା - ଗଣକବି ବୈଷ୍ଣବ ପାଣି, ଆଦି ନାଟ୍ୟକାର ଜଗମୋହନ ଲାଲା, ପଲ୍ଲୀକବି ନନ୍ଦକିଶୋର ବଳ, ସମାଜସେବୀ ପ୍ୟାରୀମୋହନ ଆଚାର୍ଯ୍ୟ, ଓଗେର । ତାଙ୍କର ରାଜନୈତିକ ବ୍ୟକ୍ତିତ୍ୱ ପ୍ରତି ମଧ୍ୟ ମୋର ବିଶେଷ ଶ୍ରଦ୍ଧା ରହିଛି, କାରଣ ମୋର ମନେ ହୁଏ ଯେ ସେ ସେହି ସଂସାରର ମୁଷ୍ଟିମେୟ ଲୋକଙ୍କ ଭିତରୁ ଜଣେ, ଯାହାଙ୍କୁ ଦୁର୍ନୀତି ପ୍ରଲୋଭିତ କରିପାରିନାହିଁ ।

ଯାହାହେଉ ମେ ୧୨ ତାରିଖ ୧୯୯୭ରେ ମୁଁ ବିଦାୟ ନେଲି ଓଡ଼ିଶା ସାହିତ୍ୟ ଏକାଡ଼େମୀରୁ, କାର୍ଯ୍ୟକାରୀ କମିଟିର ସଦସ୍ୟମାନଙ୍କ ତରଫରୁ ଗୋଟିଏ ଅଂଗବସ୍ତ୍ର ଏବଂ ଅନେକ ଶୁଭେଚ୍ଛାର ଅଧିକାରୀ ହୋଇ । କାର୍ଯ୍ୟକାଳ ସରିବାର ଦୁଇମାସ ପୂର୍ବରୁ, କାରଣ ପୁଣି ଆମେ କ୍ୟାନେଡ଼ା ଯିବୁ ବୋଲି ସ୍ଥିର ହୋଇଛି । ତାଙ୍କ ଗ୍ରୀଷ୍ମଋତୁ ଅର୍ଥାତ୍ ଜୁନ୍-ଜୁଲାଇ ବେଳକୁ । କିନ୍ତୁ ତା ପୂର୍ବରୁ ଦିଲ୍ଲୀ ଯିବାକୁ ପଡ଼ିବ । ସେହେତୁ ମୁଁ ସରକାରଙ୍କ ଅନୁମତି ଲୋଡ଼ିଥିଲି ଅଳ୍ପ କିଛିଦିନ ଆଗରୁ ମୋ କାମରୁ ଅବ୍ୟାହତି ନେବା ଲାଗି । ଏବଂ ସେହି ଅବସରରେ ସଂସ୍କୃତି ବିଭାଗର ସଚିବଙ୍କ ପାଖକୁ ଗୋଟିଏ ଚିଠି ଲେଖି ପଠାଇଥିଲି ଯେ ମୋ ମତରେ ଏହିସବୁ ଦୋଷଦୁର୍ବଳତା ରହିଛି ଆମର କାର୍ଯ୍ୟବିଧିରେ (ଯାହା ମୁଁ ଉଲ୍ଲେଖ କରିଛି ଏଥିପୂର୍ବରୁ) ଯାହାର ଦୂରୀକରଣ ଆବଶ୍ୟକ, ଓଡ଼ିଆ ସାହିତ୍ୟର ଯଥାର୍ଥ ଅଗ୍ରଗତି ଏବଂ ଅଭିବୃଦ୍ଧି ପାଇଁ । ହେଲେ ଏହି ଅବସରରେ ମୁଁ ଲିପିବଦ୍ଧ କରିବାକୁ ଚାହେଁ ଯେ ମୋର ସମସ୍ତ ସହକର୍ମୀ ମୋତେ ଯଥେଷ୍ଟ ସାହାଯ୍ୟ ଓ ସହଯୋଗ ଯୋଗାଇଛନ୍ତି ମୋର ଦାୟିତ୍ୱ ତୁଲାଇବାରେ ଏବଂ ମୋର କୌଣସି ଅକ୍ଷମତା ବିଫଳତା ପାଇଁ ସେମାନେ ଦାୟୀ ନୁହଁନ୍ତି । ବିଶେଷ ଉଲ୍ଲେଖଯୋଗ୍ୟ ଉପାଧ୍ୟକ୍ଷ ଶ୍ରୀନିବାସ ଉଦ୍‌ଗାତା ଏବଂ କ୍ରମାନ୍ୱୟରେ ତିନିଜଣ ସଚିବ, ଇଂଦୁଭୂଷଣ କର, ରାଜକିଶୋର ମିଶ୍ର ଏବଂ ହରପ୍ରସାଦ ପରିଛା ପଟ୍ଟନାଏକଙ୍କ ଠାରୁ ମିଳିଥିବା ସାହଚର୍ଯ୍ୟ । ଶେଷକୁ ମୁଁ କହିଲି ନିଜକୁ ଯେ ଏକାଡ଼େମୀ ଜରିଆରେ ମୁଁ

ଓଡ଼ିଆ ସାହିତ୍ୟ ପାଇଁ ବିଶେଷ କିଛି କରିପାରିଲି ନାହିଁ ସିନା, କିନ୍ତୁ ଏକାଡ଼େମୀ ଲେଖକ କିଶୋରୀ ଚରଣର ଅନେକ ଉପକାର କରିଛି ଏଥିରେ ସନ୍ଦେହ ନାହିଁ ।

୧୯୯୭ରେ ମୋର ଚତୁର୍ଥ ଉପନ୍ୟାସ 'ସ୍ୱର୍ଗସୀମା'କୁ ପ୍ରସ୍ତୁତ କରିବା ଛଡ଼ା ମୁଁ ଆଉ ଗୋଟିଏ କ୍ରମଶୀଳ କାମ କରି ଚାଲିଥିଲି । 'ତିରିଶ ବର୍ଷର ଗଳ୍ପ ଓ ଆଳାପ'ର ଚତୁର୍ଥ ଭାଗ ପାଇଁ 'ଆଳାପ' ଲେଖିବାକୁ ପଡ଼ିବ । ତାହେଲେ ଯାଇ ଅଦ୍ୟାବଧି ପ୍ରକାଶିତ ଷୋଳ ଗୋଟି ସଂକଳନର ଗ୍ରନ୍ଥାବଳୀକୁ ମୋ ଆତ୍ମ ମିଳିବାକୁ ଥିବା ଖୋରାକ୍ ଯୋଗାଇ ଦେଇଛି ବୋଲି ସ୍ୱସ୍ତିର ନିଃଶ୍ୱାସଟିଏ ମାରିବି । ହେଲେ, କଟକରୁ ବିଦାୟ ନେଇ କ୍ୟାନେଡ଼ା ଅଭିମୁଖରେ ଯାତ୍ରା କଲାବେଳେ ମୁଁ ଦିଲ୍ଲୀରେ ଯେଉଁ କେତେ ମାସ ଥିଲି, ତାରି ଭିତରେ ମୁଁ ଆଉ ଗୋଟିଏ ପୂରାପୂରି ନୂଆ ଧାରଣର କାମରେ ହାତ ଦେଲି, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟର ମୁଖ୍ୟ ସଂପାଦିକା ଶ୍ରୀମତୀ ବର୍ଷା ଦାସଙ୍କର ଅନୁରୋଧ ଏଡ଼ି ଦେଇନପାରି । ଅନେକ ଦିନର ଚିହ୍ନା ଏଇ ଗୁଜରାଟୀ ଭଦ୍ରମହିଳା, ଯେ ମୋର କେତୋଟି ଓଡ଼ିଆ ଗଳ୍ପକୁ ଗୁଜରାଟୀରେ ଅନୁବାଦ କରି ବିଭିନ୍ନ ପତ୍ରପତ୍ରିକାରେ ଛପାଇଛନ୍ତି । ଏବଂ ଏକଦା ଓଡ଼ିଆ ଚିତ୍ରଶିଳ୍ପୀ ଯତୀନ୍ ଦାସଙ୍କ ପତ୍ନୀ ହୋଇଥିବାରୁ ଓଡ଼ିଆ ସାହିତ୍ୟ ସହିତ ତାଙ୍କର ପରିଚୟ ସାମାନ୍ୟ ନୁହେଁ । କହିଲେ - ଆମେ ଗୋଟାଏ ନୂଆ ଯୋଜନାରେ ହାତ ଦେଇଛୁ । ଭାରତ ସ୍ୱାଧିନତାର ସ୍ୱର୍ଣ୍ଣ ଜୟନ୍ତୀ ଉପଲକ୍ଷ୍ୟରେ ଦେଶାତ୍ମବୋଧକ କେତୋଟି ଗ୍ରନ୍ଥକୁ ଯତ୍‌ସାମାନ୍ୟ ସଂକୁଚିତ କରି ସରଳ ଭାଷାରେ ପୁନଃପ୍ରକାଶିତ କରିବା ପାଇଁ । ମୁଖ୍ୟତଃ ନବସାକ୍ଷରମାନଙ୍କ ପାଇଁ । ସେହି କ୍ରମରେ ଆମ ହାତରେ ବର୍ତ୍ତମାନ ରହିଛି ଡ. ହରେକୃଷ୍ଣ ମହତାବଙ୍କ ଉପନ୍ୟାସ 'ପ୍ରତିଭା' । ତାକୁ ଆହୁରି ସରଳ ଓ ସଂକ୍ଷିପ୍ତ କରି ଦେଇପାରିବେ ନାହିଁ ଆମକୁ ? ସେଇଠୁଁ ମୁଁ ତାଙ୍କ ଆଡ଼କୁ ଜଳଜଳ ହୋଇ ଚାହିଁଲା ବେଳକୁ କହୁଛନ୍ତି, ନା, ଆମର ବିଶ୍ୱାସ ଯେ ଜଣେ ଉଚ୍ଚକୋଟୀର ଲେଖକ ହିଁ ଏଇ କାମଟିକୁ କରି ପାରିବ ଭଲ ଭାବରେ । ଯାହାହେଉ ମୁଁ ଏଇ କାମଟିକୁ ମଧ୍ୟ ହାତକୁ ନେଲି ଏବଂ ତାକୁ ବିଶେଷ ଚେଷ୍ଟାପୂର୍ବକ ସାରିଦେଇ ତାଙ୍କୁ ଦେଇ ଆସିଥିଲି ଦିଲ୍ଲୀ ଛାଡ଼ିଲା ପୂର୍ବରୁ । ମୋର ଏଇ ଅସାଧାରଣ ନିଷ୍ଠା ଓ ଅଧ୍ୟବସାୟ ଦେଖି ବଂଧୁ ଡ. ଜେ.ପି. ଦାସ ମୋତେ କହିଲେ ପରିହାସ ଛଳରେ - ''ଦେଖୁଛି ଆପଣ ଅନ୍ୟତମ ପ୍ରେମଚାନ୍ଦଟିଏ । ଯେ ବେଶି ଅଣନିଃଶ୍ୱାସୀ ହୋଇ ଲେଖି ଚାଲିଥିଲେ ବୁଢ଼ା ହେଲା ବେଳକୁ । ସତେକି 'ସବୁତକ' କାମ ସାରିଦେବାକୁ ପଡ଼ିବ ଅଂଧାର ହେଲା ପୂର୍ବରୁ ।'' ମୁଁ ନୀରବ ହସଟିଏ ହସି ଦେଇଥିଲି । କଥାଟା ମୋଟାମୋଟି ସତ ନୁହେଁ ବୋଲି କହିହେବ କି ?

ଜୁଲାଇ ୧୧ ତାରିଖ ୧୯୯୭ରେ ଆମେ ଭ୍ୟାଂକୋଭର୍‌ରେ ପହଂଚିଲୁ । ଏବଂ ପୁଣି ମିଳିତ ହେଲୁ ଆମ କ୍ୟାନେଡ଼ାବାସୀ ପରିବାରଙ୍କ ସହିତ - ଚିନୁ, ସ୍କଟ୍ ଏବଂ ତାଙ୍କର ତିନିପିଲା ଶାରଦ, ଆୟେଷା ଓ ଅସୀମ । ନୂଆ ମୁହଁ ଚଗଲା ଅସୀମର । ଶିଶୁ ଆୟେଷାକୁ

ଛଅ ବର୍ଷ ହେଲାଣି, ସେ ମୋ ସାଙ୍ଗରେ ଯାଉଣୁ ଆସୁଣୁ ଲୁଚୁକାଳି ଖେଳ ଖେଳିବାକୁ ଚାହେଁ । ବିଶେଷତଃ ଜିନିଷପତ୍ରକୁ ଲୁଚେଇ ଦେଇ ତାକୁ ପୁଣି ଖୋଜି ବାହାର କରିବାର ଖେଳ । କିନ୍ତୁ ଶାରଦ ବଡ଼ ପିଲା ହୋଇଗଲାଣି, ସେ ଏସବୁଥିରେ ନ ଥାଏ । ଖାଲି ତା ଇଣ୍ଡିଆନ୍ ଅଜାଙ୍କ ହାତ ଧରି ତାଙ୍କୁ ଦୁନିଆ ବୁଲେଇ ଆଣିବାକୁ ଚାହେଁ । ନ ହେଲେ ସେ ଜାଣିବେ କେମିତି ଏଠିକାର ନାନା ବିଚିତ୍ରସୁନ୍ଦର ବସ୍ତୁ ବିଷୟରେ, ଯାହା ତାଙ୍କ ଆଡ଼େ ନ ଥିବ । ଯଥା ବରଫ ପଡ଼ିଆରେ ହକି ଖେଳ, ରେଡ୍ ଇଣ୍ଡିଆନ୍ ମାନଙ୍କର 'ଟୋଟେମ୍ ପୋଲ୍' ଇତ୍ୟାଦି ।

ଏବଂ ଜାନୁଆରୀ ୯ ତାରିଖ ୧୯୯୮ରେ ଆମେ ଭ୍ୟାଂକୋଭର୍ ଛାଡ଼ିଲୁ ସ୍ୱଦେଶକୁ ଫେରିଆସିବା ଲାଗି । ଛଅମାସର ରହଣି । ସବୁଦିଗରୁ ସ୍ୱଚ୍ଛନ୍ଦ ଏବଂ ପ୍ରୀତିକର । ନିଉଓ୍ୱେଷ୍ଟ୍ ସହରର ପବ୍ଲିକ୍ ଲାଇବ୍ରେରୀରେ ବସି ରହି ମନଇଚ୍ଛା ନୂଆ ନୂଆ ବହି ପଢ଼ିବା ଠାରୁ ଆରମ୍ଭ କରି 'ବିଉଟିଫୁଲ୍ ବ୍ରିଟିଶ କଲମ୍ବିଆ'ର ପୁଣି କେତେ ବେଳାଭୂଇଁ ଏବଂ ପାହାଡ଼ ଜଙ୍ଗଲ ପାର୍କରେ ସପରିବାର ପିକ୍‌ନିକ୍ ମନେଇବାର ସୁଖ ଏବଂ ମୋ କ୍ୟାନେଡ଼ିଆନ୍ ନାତିନାତୁଣୀଙ୍କ ସାଙ୍ଗରେ ରଂଗରସ ହେବାର ଆନନ୍ଦ । ହେଲେ ତା ସାଙ୍ଗକୁ ଯେଉଁ ଯୋଡ଼ିଏ 'ନିଜକାମ' ସାରିଦେଇ ପାରିଥିଲି କ୍ୟାନେଡ଼ାରେ ରହିଥିଲା ବେଳେ ତା ହେଉଛି :

ମୋର ଚତୁର୍ଥ ଉପନ୍ୟାସ 'ସ୍ୱର୍ଗ ସୀମା' ।

'ତିରିଶ ବର୍ଷର ଗଳ୍ପ ଓ ଆଳାପ'ର ଚତୁର୍ଥ ଭାଗ ପାଇଁ ସମସ୍ତ ଆଳାପ ।

୧୯୯୭ରେ ଗୋଟିଏ ଅପ୍ରତ୍ୟାଶିତ ନୂଆ ଅନୁଭୂତି ମିଳିଥିଲା ମୋତେ ଯାହାକୁ ମୁଁ ବିଶେଷ ମୂଲ୍ୟବାନ୍ ମନେ କରେ, ମୋ ସାହିତ୍ୟିକ ଜୀବନର ପରିପ୍ରେକ୍ଷୀରେ । କ୍ୟାନେଡ଼ାର ଜଣେ ଅଧ୍ୟାପିକା ଡ. ଫିଲିସ୍ ଗ୍ରାନଫ୍‌ଙ୍କ ସହିତ ମୋର ପରିଚୟ, ଏବଂ ତାଙ୍କ ଜରିଆରେ ଉତ୍ତର ଆମେରିକାରେ ମୋର ସାହିତ୍ୟ ତଥା ଓଡ଼ିଆ ସାହିତ୍ୟର ଅନୁପ୍ରବେଶ ।

ଡ. ଗ୍ରାନଫ୍‌ଙ୍କ ଅସାଧାରଣ ବ୍ୟକ୍ତିତ୍ୱ ବିଷୟରେ ପ୍ରଥମେ କିଛି କହିବା ଆବଶ୍ୟକ । ସେ ଜଣେ ୟିହୁଦୀ ଧର୍ମାବଲମ୍ବୀ ଆମେରିକାନ୍, ଯେ କ୍ୟାନେଡ଼ାର ଅଣ୍ଟାରିଓ ପ୍ରଦେଶରେ ଥିବା ମ୍ୟାକ୍‌ମାଷ୍ଟର୍ ୟୁନିଭର୍ସିଟିରେ, ଧର୍ମଶିକ୍ଷା ବିଭାଗର ପ୍ରାଧ୍ୟାପିକା । ପୃଥିବୀର ବିଭିନ୍ନ ଧର୍ମର ଇତିହାସ, ତତ୍ତ୍ୱ ଏବଂ ଆଭିମୁଖ୍ୟ ବିଷୟରେ ପାଠ ପଢ଼ାନ୍ତି ୟୁନିଭର୍ସିଟିର ଛାତ୍ରଛାତ୍ରୀମାନଙ୍କୁ । ତାଙ୍କର ସ୍ୱାମୀ ହେଉଛନ୍ତି ଜଣେ ବୌଦ୍ଧଧର୍ମାବଲମ୍ବୀ ଜାପାନିଜ୍ । କିନ୍ତୁ ମଜାକଥା ହେଉଛି ଯେ ସେ ପ୍ରଥମେ ବିଜ୍ଞାନର ଛାତ୍ରୀ ଥିଲେ ଏବଂ କୃତିତ୍ୱର ସହିତ କେମିଷ୍ଟ୍ରୀରେ ଗ୍ରାଜୁଏଟ୍ ହୋଇଥିଲେ । କିନ୍ତୁ ତା'ପରେ ତାଙ୍କର ମନ ବଳିଲା ଧର୍ମ ଓ ଦର୍ଶନ ବିଷୟରେ ଆହୁରି କିଛି ଜାଣିବା ପାଇଁ । ଏବଂ ଯଥାକ୍ରମେ ସେ ସେହି ବିଦ୍ୟାରେ ସ୍ନାତକୋତ୍ତର ଡିଗ୍ରୀ ହାସଲ କରି ଏହିପ୍ରକାର ବିଦ୍ୟାଦାନ କରୁଛନ୍ତି ବର୍ତ୍ତମାନ, କ୍ୟାନେଡ଼ାର ଗୋଟିଏ ବିଶିଷ୍ଟ

ବିଶ୍ୱବିଦ୍ୟାଳୟରେ । ପ୍ରାଚ୍ୟ ଧର୍ମଦର୍ଶନ ପ୍ରତି ତାଙ୍କର ବିଶେଷ ଆଗ୍ରହ, ଏବଂ ଜୈନଧର୍ମ ଓ ବେଦାନ୍ତ ଦର୍ଶନ ଉପରେ ସେ ବେଶ୍ କେତେଗୁଡ଼ିଏ ବହି ଲେଖିଛନ୍ତି । କିନ୍ତୁ ଧର୍ମଦର୍ଶନ ତାଙ୍କ ଗବେଷଣାର କ୍ଷେତ୍ର ସିନା, ସାହିତ୍ୟ ହେଉଛି ତାଙ୍କର ବୌଦ୍ଧିକ ବିଳାସ । ଏବଂ ସେହି ବିଳାସକୁ ଚରିତାର୍ଥ କରିବାକୁ ଯାଇ ସେ ପ୍ରଥମେ ସଂସ୍କୃତ ସାହିତ୍ୟ ଏବଂ ତାପରେ ପୂର୍ବଭାରତର ତିନୋଟି ସାହିତ୍ୟ ବଂଗଳା, ଓଡ଼ିଆ, ଏବଂ ଆସାମୀୟ ରେ ମଜିଯାଇଛନ୍ତି । ଅଧୁନାତନ ପ୍ରେମ ଓଡ଼ିଆ ସାହିତ୍ୟ ପ୍ରତି । ସେହି କ୍ରମରେ ତାଙ୍କ ଆଖିରେ ପଡ଼ିଲା କିଶୋରୀଚରଣଙ୍କ ସାହିତ୍ୟ ଏବଂ ତାଙ୍କୁ ବିଶେଷ ଭଲ ଲାଗିଲା ତାଙ୍କର 'ଠାକୁରଘର' ନାମକ ଗଳ୍ପ । ସେଇଠୁ ସେ ଲେଖକଙ୍କ ବିଷୟରେ କିଛି ଜାଣିବାକୁ ଚାହିଁଲେ ସେହି ବିଶ୍ୱବିଦ୍ୟାଳୟରେ ଷ୍ଟାଟିସ୍‌ଟିକ୍‌ସ୍ ବିଭାଗର ଅଧ୍ୟାପକ ଡ. ଶ୍ରୀଗୋପାଳ ମହାନ୍ତିଙ୍କ ଠାରୁ । ଗୋପାଳ ଆମର ଜଣେ ପରିବାର ବଂଧୁ ଏବଂ ତାଙ୍କୁ ଜଣାଇଲା ଯେ ଆମେ ବର୍ତ୍ତମାନ କ୍ୟାନେଡ଼ାରେ ଅଛୁ । ସେଇଠୁ ସେ ପ୍ରସ୍ତାବ କଲେ ଡ. ଗ୍ରାନ୍‌ଫଙ୍କୁ - ଆରେ' ସେ ପରା ଏଇ ଦେଶରେ ଅଛନ୍ତି ଏଇକ୍ଷଣି ଭ୍ୟାଂକୋଭର୍‌ରେ, ତାଙ୍କ ଝିଅ ଘରେ ? ତାଙ୍କୁ ଡକେଇ ପଠଉନ ଏଠିକି, କିଛି କହିବା ପାଇଁ ? ତାହେଲେ ତାଙ୍କୁ ଜାଣିବ ନାହିଁ ଭଲ ଭାବରେ ?

ଏହି ଭାବରେ ମୁଁ ଏୟାର୍ କ୍ୟାନେଡ଼ାର ବିମାନ ଯୋଗେ ଅଣ୍ଟାରିଓ ପ୍ରଦେଶର ରାଜଧାନୀ ଟରୋଣ୍ଟୋରେ ଯାଇ ପହୁଂଚିଲି ନଭେମ୍ବର ୨୬ ତାରିଖ ୧୯୯୭ରେ । ଡ. ଗ୍ରାନଫ୍‌ଙ୍କ ଆମଂତ୍ରଣ କ୍ରମେ । ଗୋପାଳର ଅତିଥି ହୋଇ ରହିଲି ଆଂକାଷ୍ଟର୍ ସହରରେ । ଏବଂ ତା'ପର ଦିନ ହାମିଲ୍‌ଟନ୍‌ରେ ଥିବା ମ୍ୟାକ୍‌ମାଷ୍ଟର୍ ୟୁନିଭର୍ସିଟିରେ ପଢ଼ିଲି ମୋର ଗୋଟିଏ ସୁଚିନ୍ତିତ ପ୍ରବଂଧ "Being an Indian writer" । ଯେଉଁଥିରେ ମୁଁ ମୋ ନିଜର ଅନୁଭୂତି ଏବଂ ଆଭିମୁଖ୍ୟକୁ ନେଇ କହିଲି ମୋର ଦୁର୍ଦ୍ଦଶା କେଉଁ ପ୍ରକାର, ଯଥାର୍ଥରେ ନିଜକୁ ଜଣେ ଭାରତୀୟ ଲେଖକ ବୋଲାଇବା ଲାଗି । ଏବଂ କଣ କଲେ ଆମର ଏଇ ଦୁଃଖଦୁର୍ଦ୍ଦଶା ଯଥାଶୀଘ୍ର ଦୂର ହୋଇପାରିବ । ଏଇ ପ୍ରବଂଧଟିକୁ ମୁଁ ମଧ୍ୟ ପଢ଼ିଥିଲି ଡିସେମ୍ବର ୧ ତାରିଖରେ ଟରୋଣ୍ଟୋରେ ଥିବା ୟର୍କ ୟୁନିଭର୍ସିଟିରେ, ସେମାନଙ୍କର ଆମଂତ୍ରଣ କ୍ରମେ । ଯାହାହେଉ ମୋଟ କଥା ହେଲା ଡ. ଗ୍ରାନ୍‌ଫଙ୍କ ସହିତ ମୋର ଗଢ଼ି ଉଠିଥିବା ବଂଧୁତା । ଭ୍ୟାଂକୋଭରକୁ ଫେରି ଆସିବା ପୂର୍ବରୁ ସେ ମୋର ଅନୁମତି ମାଗିଲେ ମୋର କେତୋଟି ଓଡ଼ିଆ ଗଳ୍ପର ଇଂରାଜୀ ଅନୁବାଦ କରି ତାଙ୍କୁ ଛପାଇବା ଲାଗି । 'ଅନେକ ଧନ୍ୟବାଦ' ଛଡ଼ା ମୁଁ ଆଉ କିଭଳି ଅନୁମତି ଦେଇପାରିଥାନ୍ତି ତାଙ୍କୁ ?

ଗୋଟିଏ କୌତୁହଳଜନକ ଘଟଣା ଘଟିଥିଲା ମୋ ପାଇଁ ସେଠିଥିଲାବେଳେ । ଗୋପାଳର ସୌଜନ୍ୟରୁ ଟରୋଣ୍ଟୋରେ ଥିବା ଓଡ଼ିଆମାନେ ମୋତେ ଡାକିଥିଲେ ଥରେ ତାଙ୍କର ଗୋଟିଏ ଘରୋଇ ବୈଠକରେ ଯୋଗ ଦେଇ କିଛି କହିବା ପାଇଁ । ବିସ୍ମିତ ଏବଂ

ଆନନ୍ଦିତ ହେଲି ଯେ ଏତେ ଓଡ଼ିଆ ଏଇ ଅଂଚଳରେ ଅଛନ୍ତି, ଏବଂ ସେମାନେ ଏଭଳି ଗୋଟିଏ ବଂଧୁମିଳନର ଆୟୋଜନ କରିପାରିଛନ୍ତି ଏତେ ଅଳ୍ପ ସମୟ ଭିତରେ । ସେଇଠି ଜଣେ କଲେଜପଢୁଆ ଝିଅ ମୋତେ ଅଳି କଲାପରି ହେଲା ଆଧୁନିକ ଓଡ଼ିଆ ସାହିତ୍ୟ ବିଷୟରେ ମୋ ଠାରୁ କିଛି ଜାଣିବା ପାଇଁ । ସେ ସେଇଠି ଜନ୍ମ ହୋଇଛି ଓ ବଡ଼ ହୋଇଛି । ତେଣୁ ଓଡ଼ିଆ ସାହିତ୍ୟ ବିଷୟରେ ସଂପୂର୍ଣ୍ଣ ଅନଭିଜ୍ଞ କହିଲେ ଚଳେ । ତଥାପି (ଅଥବା ସେହେତୁ) ତାର ଏଇ ବ୍ୟାକୁଳତା । ନା, ପରେ ବୁଝିଲି ଯେ ଏହାହିଁ ଆଶା କରାଯାଏ ତାଠୁଁ, କାରଣ ସେ ହେଉଛି ପଣ୍ଡିତ ନୀଳକଣ୍ଠ ଦାଶଙ୍କ ଅଣନାତୁଣୀ ।

ସେଇଠି ଥିଲାବେଳେ ମଧ୍ୟ ଗୋଟିଏ ବିଶେଷ ସୁଖବର ପହଂଚିଥିଲା ମୋ ପାଖରେ । ଅବଶ୍ୟ ପୂର୍ବରୁ ମୁଁ ତାର ସୂଚନା ପାଇଥିଲି । ଯେ ଉତ୍କଳ ବିଶ୍ୱବିଦ୍ୟାଳୟ ନଭେମ୍ବର ୨୭ ତାରିଖରେ ଅନୁଷ୍ଠିତ ଗୋଟିଏ ସ୍ପେଶାଲ୍ କନ୍‌ଭୋକେସନ୍‌ରେ ମୋତେ ସମ୍ମାନ ସୂଚକ ଡି.ଲିଟ୍ (ଡକ୍ଟରେଟ୍) ଡିଗ୍ରୀରେ ସମ୍ମାନିତ କରିଛନ୍ତି । କେନ୍ଦ୍ର ସାହିତ୍ୟ ଏକାଡ଼େମୀର ପୁରସ୍କାର ଉତାରୁ ମୁଁ ଏଇ ସମ୍ମାନଟିକୁ ବିଶେଷ ମୂଲ୍ୟବାନ ମନେ କରେ । ଯଥାର୍ଥରେ ବାଣୀବିହାରର ସ୍ୱୀକୃତି ପାଇଲା ପରି । ଯେଉଁଥିରେ ଅର୍ଥଲାଭ ନାହିଁ, କିନ୍ତୁ ଅଛି ଏକ ସାରସ୍ୱତ ମନ୍ଦିରଠାରୁ ମିଳିଥିବା ମର୍ଯ୍ୟାଦା । ମନେ ଅଛି ଭ୍ୟାଂକୋଭର୍‌କୁ ଫେରିଆସି ଘରେ ପହଂଚିଲା ବେଳେ ମୁଁ ପାଠପଢ଼ାରେ ଡକ୍ଟରେଟ୍ ପାଇଥିବା ଝିଅକୁ କୁଣ୍ଢେଇ ପକେଇ କହିଲି- ବୁଝିଲୁ ଚିନୁ, ଏତେଦିନକେ ଯାହାହେଉ ମୁଁ ତୋର ସମକକ୍ଷ ହୋଇପାରିଲି ! ବାପଝିଅ ଉଭୟେ ଅନୁଭବ କଲୁ ସେଇ ମୁହୂର୍ତ୍ତଟିର ସାର୍ଥକତା ।

ଶୁଭ୍ରସୁନ୍ଦର ତୁଷାରପାତର ଦୃଶ୍ୟ ଦେଖିବାକୁ ମିଳିଥିଲା ଆମକୁ ଭ୍ୟାଂକୋଭର୍ ଛାଡ଼ିଲା ପୂର୍ବରୁ । ଆମେ ଜାନୁଆରୀ ୯ ତାରିଖ ୧୯୯୮ରେ ବିଦାୟ ନେଲୁ ସେମାନଙ୍କ ଠାରୁ ଏବଂ ଦିଲ୍ଲୀରେ ଆସି ପହଂଚିଲୁ ୧୧ ତାରିଖରେ ।

୧୯୯୮ରେ ମୋ ଲେଖକୀୟ କ୍ୟାଲେଣ୍ଡରରେ ଲେଖାଥିଲା ବଡ଼ ହରଫରେ ମୋର ପରିକଳ୍ପିତ ପଂଚମ ଉପନ୍ୟାସ । ତା ନାଆଁ 'ବିଦେଶିନୀ' ।

ହଠାତ୍ ବିଦେଶିନୀଟିଏ କେଉଁଠୁ ଜୁଟିଲା ମୋତେ ମୋ ଉପନ୍ୟାସର ନାୟିକା ହେବା ପାଇଁ ? ମୋ ବିଦେଶ ଯାତ୍ରାରୁ ମିଳିଥିବା ଅନ୍ୟତମ ଚରିତ୍ର ? ନା, ସେ ଆମ ଓଡ଼ିଆ ଝିଅ ଯେ ବିଦେଶକୁ ଯାଇଥିଲା ବିଦ୍ରୋହର ପରାକାଷ୍ଠା ଦେଖାଇ ଏବଂ ସ୍ୱଦେଶକୁ ଆସିଛି ଏବେ କିଛିଦିନ ପାଇଁ, ଗୋଟାଏ ରିସର୍ଚ୍ଚ କାମରେ । ସେଇଠୁ କଣ ହେଲା, କିଭଳି ଅତୀତ ଅବା ଭବିଷ୍ୟତର ମୁକାବିଲା କରିବାକୁ ପଡ଼ିଲା ତାକୁ, ତାହାହିଁ ହେଲା ଏଇ ଉପନ୍ୟାସର କଥାବସ୍ତୁ । ଆଉ ମୁଁ ତାକୁ ପାଇଲି କୋଉଠୁ କହିବି ? ପାଇଛି ମୋରି ପହିଲି ଉପନ୍ୟାସ, 'ସାତୋଟି ଦିନର ସତୀ'ରୁ, କାରଣ ସେ ଥିଲା ସେଇ ଉପନ୍ୟାସର ନାୟିକା ଅନୁପମାର

ସୁନୀ ଅପା, ତାର ଉପର କ୍ଲାସରେ ପଢୁଥିବା କଲେଜ ବେଳର ସାଙ୍ଗ, ଯେ ନେତ୍ରୀଟିଏ ହେବ କି କଅଣ ବୋଲି ମନେ ହେଉଥିଲା ସେତିକି ବେଳୁ । ବେଶ୍ , ମୁଁ ତାକୁ ଠିକଣା ବିଦ୍ରୋହର ଆହ୍ୱାନ ଦେଲି ମୋର ଏଇ ଉପନ୍ୟାସରେ । ତା'ସାଙ୍ଗ ସାତୋଟି ଦିନର ସତୀ ପରି ନୁହେଁ, ଭିତିରିଆ ଅସହଯୋଗ ଆନ୍ଦୋଳନ ନୁହେଁ, ପ୍ରତ୍ୟକ୍ଷ ଉଦ୍ୟମ ତା ନିଜତ୍ୱକୁ ପ୍ରତିଷ୍ଠିତ କରିବା ଲାଗି, ତାକୁ ବିଦ୍ରୋହ କୁହ କିମ୍ବା ପଳାୟନ, ଅଥବା ଆଉ ଯାହା । ସେହେତୁ ଭଲ ହେବ ଯଦି ଆପଣ ଏଇ ଉପନ୍ୟାସଟିକୁ ପଢ଼ିବା ପୂର୍ବରୁ ମୋ ପ୍ରଥମ ଉପନ୍ୟାସଟିକୁ ପଢ଼ି ସାରିଥାଆନ୍ତି । ସେଇଠୁ କାହାପାଇଁ ଆପଣଙ୍କ ଦରଦ ଉତୁରି ଆସିବ ଏବଂ କାହାକୁ ଆପଣ ବେଶି ଭଲ ପାଇବେ, ଅନୁପମା ନା ସୁନୀତିକୁ, ଅବା ଦିହିଁଙ୍କୁ ପରଂପରାଗତ ସମାଜର ପ୍ରତିକୂଳ ତେଣୁ ଅସୁସ୍ଥ ମନେ କରିବେ ତା' ଆପଣ ଜାଣିଥିବେ । ଉପନ୍ୟାସଟିର ପହିଲି ଚିଠା ସରିଗଲା ଡିସେମ୍ବର ମାସରେ ।

ତା'ପଛକୁ ଏଇ ବର୍ଷର ଦ୍ୱିତୀୟ ବଡ଼ କାମ ହେଲା ପୁଣି ଗୋଟିଏ ପ୍ରବଂଧ ପୁସ୍ତକ କଥା ସାହିତ୍ୟର କଳା ଓ କାରିଗରି ଉପରେ । କିନ୍ତୁ ଏଥର ଇଂରେଜୀରେ । ଏବଂ ବର୍ତ୍ତମାନ ସେଥିରେ ଯୋଡ଼ା ହୋଇଛି ତଥାକଥିତ 'ଉଦ୍‌ବେଗ'ର ଭୂମିକା । ବହିର ନାଆଁ "Learn to write a short story - the art, craft, and anxieties" ପାଣ୍ଡୁଲିପିଟିକୁ ବଢ଼େଇ ଦେଇ ଆସିଥିଲି ଦିଲ୍ଲୀ ପ୍ରକାଶକଙ୍କ ହାତରେ, ବର୍ଷ ସରିଲା ପୂର୍ବରୁ ।

ଏହାଛଡ଼ା ଆମ "Oriya writing Today" ପାଇଁ ଆହୁରି ଅଧିକ ଅନୁବାଦ । ଯଦିଓ ଦ୍ୱିତୀୟ ଆଗ୍ରହୀ ପ୍ରକାଶକ ମଧ୍ୟ କାର୍ଯ୍ୟତଃ ତାଙ୍କ ଆଗ୍ରହର ପରିଚୟ ଦେବାକୁ ନାହାଁନ୍ତି । ମଧ୍ୟ କେତୋଟି ଅନୁବାଦ କେବଳ ନିଜକୁ ଖୁସି କରିବା ପାଇଁ । ଯଥା ମୋର ମନେ ହେଲା ଯେ ଗୋପୀନାଥ ମହାନ୍ତିଙ୍କର ଅନେକ ଭଲ ଗଳ୍ପ, ବିଶେଷତଃ ତାଙ୍କ ଉତ୍ତର ଜୀବନର କେତେଗୁଡ଼ିଏ ସ୍ନେହ ତଥା ସହାନୁଭୂତିରେ ସିକ୍ତ ମନସ୍ତାତ୍ତ୍ୱିକ ଗଳ୍ପ ଅନୁଦିତ ହୋଇନାହିଁ ଆଜିଯାଏଁ । ସେଇଠୁ ମୁଁ ତାଙ୍କର ''ଟାଉନ୍ ବସ'', ''ବଗିଚା'', ''କୋକିଳା'' ଆଦି କେତେଗୁଡ଼ିଏ ଗଳ୍ପର ଇଂରାଜୀ ଅନୁବାଦ କରି ଚାଲିଲି ।

୧୯୯୮ର ନୂଆ ବହି ହେଉଛି ନ୍ୟାସନାଲ୍ ବୁକ୍ ଟ୍ରଷ୍ଟଙ୍କ ଦ୍ୱାରା ପ୍ରକାଶିତ ଅନୁଦିତ ଇଂରାଜୀ ଗଳ୍ପ ସଂକଳନ "Beyond the Roots" ତାଙ୍କରି ଦ୍ୱାରା ପ୍ରକାଶିତ ସଂକ୍ଷିପ୍ତ ଉପନ୍ୟାସ 'ପ୍ରତିଭା' ଏବଂ ମୋର ଚତୁର୍ଥ ଓଡ଼ିଆ ଉପନ୍ୟାସ 'ସ୍ୱର୍ଗସୀମା' ।

୧୯୯୯ ଆରମ୍ଭ ହେଲା ବେଳକୁ ଆମେ ମୁମ୍ବାଇରେ । ବଡ଼ ଝିଅ ହାନୁ ପାଖରେ । କ୍ୱାଇଁ ସେତେବେଳକୁ "Ranbaxy Specialities"ରେ ଗୋଟିଏ ସହଯୋଗୀ କଂପାନୀର ଚିଫ୍ ଏକ୍‌ଜିକ୍ୟୁଟିଭ୍ ଅଫିସର୍ । ପୁଅ ଦିଜଣ ଅନୁରାଗ ଓ ଅଂଶୁମାନ୍ ବର୍ତ୍ତମାନ ଆମେରିକାରେ । ଦିଜଣଯାକ ଆମେରିକାର ବିଭିନ୍ନ ୟୁନିଭର୍ସିଟିରୁ ଇଂଜିନିୟରିଂଗ୍ ଡିଗ୍ରୀ ଓ ତାପରେ M.S.

ଡିଗ୍ରୀ ହାସଲ କରି ସାରିଲା ପରେ ଗୋଟିଏ କଂପ୍ୟୁଟର କଂପାନୀରେ କାମ କରୁଛନ୍ତି । ଭଲ ରୋଜଗାର । ଆଉ ଏମାନଙ୍କ ଘର ହେଉଛି ଜୁହୁ ସମୁଦ୍ର କୂଳରେ । ତେଣୁ ସାହିତ୍ୟ ରଚନା ଛଡ଼ା ସମୁଦ୍ର କୂଳରେ ବସି ରହି ଢ଼େଉ ଗଣିବା, କହିଲେ ଜୁହ ଜୀବନର ଅନୁଧ୍ୟାନ କରିବା, ମୋ ଦିନଚର୍ଯ୍ୟାର ଗୋଟିଏ ବିଶେଷ ଅଂଶ ହେବ ନାହିଁ କେମିତି ? ଯାହାହେଉ ସେଇ ଢ଼େଉମାନେ ମୋତେ ଉସ୍‌କେଇଲେ ମୋର 'ଶେଷଗଳ୍ପ' ଲେଖିବା ପାଇଁ, ଯାହାକୁ ପରେ ମୁଁ ମୋର ସପ୍ତଦଶ ଗଳ୍ପ ସଂକଳନର ଶୀର୍ଷକ ଗଳ୍ପର ସମ୍ମାନ ନ ଦେଇ ରହିପାରିଲି ନାହିଁ । କାରଣ ଏଇ ଗଳ୍ପର ନାୟକ ହେଲା ଜଣେ ଗାଳ୍ପିକ, ସତେକି କିଶୋରୀ ଚରଣ । ଆଉ ସେ ଭାବିଲା ଯେ ଏଥର ସେ ତା ଶେଷଗଳ୍ପଟିକୁ ଲେଖିବ, ତା ଜୀବନଦର୍ଶନର ଶେଷକଥା ଶୁଣାଇବା ପାଇଁ । ହେଲେ ସେ କେତେଦୂର ସଫଳ ହେଲା ସେଥିରେ, ତା ଭାବିବା ବିଷୟ ।

ମାର୍ଚ୍ଚ ୧ ତାରିଖ ୧୯୯୯ରେ ମୋତେ ୭୫ ବର୍ଷ ପୂରିଲା । ଏବଂ ସେଇ ଉପଲକ୍ଷ୍ୟରେ ମୋତେ ଗୋଟିଏ ନୂଆ ଅନୁଭୂତିର 'ଶିକାର' ହେବାକୁ ପଡ଼ିଲା । ସେତେବେଳକୁ ମୁଁ କଟକ ଫେରି ଆସିଲିଣି । ଏବଂ ମୋତେ ଭୁବନେଶ୍ୱରକୁ ଆମଂତ୍ରିତ କରାଗଲା, ଭୁବନେଶ୍ୱର ପୁସ୍ତକ ମେଳା ପଡ଼ିଆରେ ଆୟୋଜିତ ଗୋଟିଏ ସଭାରେ ମୋ ପ୍ଲାଟିନମ୍ ଜୟନ୍ତୀ ଉତ୍ସବର ଅତିଥି ହେବା ପାଇଁ । ଅଭିନନ୍ଦନ ସମିତିର ଅଧ୍ୟକ୍ଷ ଥିଲେ ଡ. ଖଗେଶ୍ୱର ମହାପାତ୍ର । ସଭାର ସଭାପତି ହୋଇଥିଲେ ରମାକାନ୍ତ ରଥ ଏବଂ ତାଙ୍କ ଛଡ଼ା ଯେଉଁମାନେ ପଦେ ପଦେ କହିଲେ ମୋ ବିଷୟରେ ସେମାନେ ହେଲେ ଚିତ୍ତରଂଜନ ଦାସ, ଜିତେନ୍ଦ୍ରନାଥ ପଟ୍ଟନାୟକ, ବିଭୂତି ପଟ୍ଟନାୟକ ଏବଂ ଅର୍ଚ୍ଚନା ନାୟକ । ''ଗଦ୍ୟଶିଳ୍ପୀ କିଶୋରୀ ଚରଣ'' ନାମକ ଗୋଟିଏ ବହି ମଧ୍ୟ ଉନ୍ମୋଚିତ ହୋଇଥିଲା ଏଇ ସଭାରେ । ମୋର ପରିବାର, ବିଶେଷତଃ ଝିଅ କ୍ୱାଇଁ ହୀନୁ ଓ ନଗେନ୍ ବିଶେଷ ସହଯୋଗ କରିଥିଲେ ଉତ୍ସବଟିକୁ ସଫଳ କରିବା ପାଇଁ । ସଂବର୍ଦ୍ଧନାର ଉତ୍ତରରେ ମୁଁ କେବଳ ଏତିକି କହିବାକୁ ଚାହିଁଲି ଯେ ମୋର ସମସ୍ତ ଶୁଭାକାଂକ୍ଷୀମାନଙ୍କର ଶୁଭେଚ୍ଛା ମୋତେ ବଳ ଦେଉ ଲେଖିବା ପାଇଁ, ମୋର ଶେଷ ନିଃଶ୍ୱାସ ଯାଏଁ ।

କାହିଁକି କେଜାଣି ମୋର ମନକୁ ଆସିଲା ଏଇ ବର୍ଷ ଯେ ନିଜ ଗଳ୍ପ ସମେତ ଅନେକ ଗଳ୍ପର ଇଂରାଜୀ ଅନୁବାଦ କରିଛି ସିନା, ଏଥର ମୋର ଗୋଟିଏ ଉପନ୍ୟାସର ଅନୁବାଦ କଲେ କେମିତି ହୁଅନ୍ତା । ସେଇଠୁ ମୋର ଚତୁର୍ଥ ଉପନ୍ୟାସ 'ସ୍ୱର୍ଗସୀମା'ର ଇଂରାଜୀ ଅନୁବାଦ କରି ବସିଲି । ବହିର ନାଆଁ ରଖିଲି "Of Heaven and Beyond" । ଅଧିକାଂଶରେ ରାଜଧାନୀ ନୂଆଦିଲ୍ଲୀର ପୃଷ୍ଠଭୂମି ଏବଂ ଉଚ୍ଚପଦସ୍ଥ ବ୍ୟୁରୋକ୍ରାଟ୍‌ମାନଙ୍କର ଜୀବନକୁ ନେଇ ଏଇ କାହାଣୀଟି ସର୍ବଭାରତୀୟ ପାଠକ ପାଠିକାମାନଙ୍କୁ ବେଶି ଭଲ ଲାଗିବ ବୋଲି ଭାବିଲି । ସଂପୂର୍ଣ୍ଣ ପାଣ୍ଡୁଲିପି ପ୍ରସ୍ତୁତ ହେଲା ଫେବୃଆରୀ ୨୦୦୦ ମସିହାରେ । କିନ୍ତୁ ଉପଯୁକ୍ତ ପ୍ରକାଶକଟିଏ ମିଳିନାହିଁ ଆଜିଯାଏଁ ।

ଏହାଛଡ଼ା କିଛି ଗଳ୍ପ, କବିତା ଓ ପ୍ରବଂଧ ସବୁ ବର୍ଷପରି । ହେଲେ ବିଶେଷ ଉଲ୍ଲେଖଯୋଗ୍ୟ ଗୋଟିଏ ଗଳ୍ପ, ତା ନାଆଁ 'ଶାନ୍ତ ଅପରାହ୍ଣ' ଓ ଗୋଟିଏ ପ୍ରବଂଧ ଯାହାର ନାଆଁ 'ଅଦିନ ଝଡ଼' । ଅକ୍ଟୋବର ୨୯ ତାରିଖରେ ଯେଉଁ ମହାବାତ୍ୟା ଓଡ଼ିଶା ଉପକୂଳକୁ ଛାରଖାର କରି ଦେଇ ଗଲା, ହଜାର ହଜାର ନରନାରୀଙ୍କ ପ୍ରାଣହାନୀ ସହ, ଏ ଦୁଇଟିଯାକ ତାରି ଉପରେ ଆଧାରିତ । ଏବଂ ସେଥିରେ ମୋର ପ୍ରତ୍ୟକ୍ଷ ଅନୁଭୂତି ଜଡ଼ିତ ହୋଇ ରହିଛି । କେତେକ ତରୁଣ ବଂଧୁଙ୍କ ଗହଣରେ ଗୋଟିଏ ବାତ୍ୟାବିଧ୍ୱସ୍ତ ଗାଆଁକୁ ଯାଇଥିଲି କିଛି ଧୋତୀ ଶାଢ଼ୀ  କଂବଳ ଇତ୍ୟାଦିର ବିତରଣ କରିବା ଲାଗି । ହେଲେ ଯେଉଁ ଅନୁଭୂତିଟିକ ମିଳିଥିଲା ମୋତେ ଏଇ ନିଦାରୁଣ ମହାବାତ୍ୟାର, ତା'ପାଇଁ ଅଳ୍ପବହୁତ ଶବ୍ଦର କ୍ରୋଧ ଓ କାଂଦଣା ମଧ୍ୟ ବାଢ଼ି ଦେଇ ନ ଥାଆନ୍ତି କେମିତି ? "Words are all we have..."

ଏବଂ ଶତାବ୍ଦୀ ସରିବା ପୂର୍ବରୁ ମଧ୍ୟ ସେଇ ମହାଲଜ୍ଜାର ଅନୁଭବୀ ହେବାକୁ ପଡ଼ିଥିଲା, ଜଣେ ଭାରତୀୟ ହିସାବରେ, ଯେତେବେଳେ ମନ୍ତ୍ରୀ ଯଶୋବନ୍ତ ସିଂହ ଜେଲ୍‌ରୁ କେତେକ ଦୁର୍ଦ୍ଧର୍ଷ ଆତଙ୍କବାଦୀଙ୍କୁ ପାଛୋଟି ନେଇ ଗଲେ ଆଫଗାନିସ୍ଥାନ କାନ୍ଦାହାର ବିମାନଘାଟିକୁ, ଆମର ଗୋଟିଏ ଯାତ୍ରୀବିମାନକୁ ଅପହରଣ କରି ନେଇଥିବା ଦସ୍ୟୁମାନଙ୍କ ଦାବୀକୁ ଟାଳି ଦେଇ ନପାରି । ହୁଏତ ଅନ୍ୟ କୌଣସି ଉପାୟ ନଥିଲା । କିନ୍ତୁ ମନଟା ଦବିଯାଏ ବେଳେବେଳେ । ଆଉ କେତେଦିନ ଯାଏଁ ଏଇ ହିଂସୁକ ବୀରବରମାନେ ଛିଗୁଲେଉଥିବେ ଆମ କଳା ଓ ବିଜ୍ଞାନର ସଭ୍ୟତାକୁ ? ଆଶା ଆଉ ବେଶିଦିନ ନୁହେଁ ।

ପାରିବାରିକ କ୍ଷେତ୍ରରେ ଯେଉଁ ସବୁ ଉଲ୍ଲେଖନୀୟ ଘଟଣା ଘଟିଥିଲା ୧୯୯୯ରେ ଆମେ ବମ୍ବେରୁ ଫେରି ଆସିଲା ପରେ, ସେଥିରୁ ପଦେ ଅଧେ ।

ମେ ୨୨ ତାରିଖରେ ହୀନୁ ନଗେନ୍‌ଙ୍କ କାର୍‌ରେ ଧକ୍‌କା ଲାଗି ଝିଅର ଛାତି ପଂଜରା ହାଡ଼ ସାମାନ୍ୟରେ ତୁଟି ଯାଇଛି ବୋଲି ଖବର ପାଇ ଆମେ ସହଜେ ବିଚଳିତ ହୋଇ ଉଠିଥିଲୁ । ଏବଂ ପୁଣି ବମ୍ବେ ଯାଇଥିଲୁ ତା ପାଖରେ କିଛି ଦିନ ରହିବା ପାଇଁ । ଯାହାହେଉ ସେ କ୍ରମଶଃ ଭଲ ହୋଇ ଉଠିଲା । ଏବଂ ଆମେ ଅଗଷ୍ଟ ମାସରେ ଓଡ଼ିଶାକୁ ଫେରି ଆସିଲୁ ଦିଲ୍ଲୀ ବାଟ ଦେଇ ।

ସ୍ୱର୍ଗୀୟା ବିଶ୍ୱଜିତାର ଝିଅ ଓ ଆମର ବଡ଼ନାତୁଣୀ ଗୀତି ମଧ୍ୟ ଆମେରିକାକୁ ବାହାରିଲା ତାର ଉଚ୍ଚଶିକ୍ଷା ପାଇଁ । ପ୍ରବେଶିକା ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇଥିଲା । ସେ ଗଲା ଫିଲାଡ଼େଲ୍‌ଫିଆରେ ଥିବା Brynmowr Womens' Collegeରେ ପଢ଼ିବା ଲାଗି । ଦିଲ୍ଲୀରେ ଥିଲା ବେଳେ ଆମକୁ ସୁଯୋଗ ମିଳିଲା ତାକୁ ବିଦାୟ ଦେବା ପାଇଁ ଆମର ଶୁଭାଶୀର୍ବାଦ ସହ ଏବଂ ଆଖି ଆଗରେ ଜଳଜଳ ହୋଇ ଦିଶିଗଲା ତା ମାଆର ମୁହଁ । ଥାଆନ୍ତା ନାହିଁ ସେ ଏଇ ସମୟକୁ ତା ଝିଅକୁ କୋଳେଇ ନେଇ ତାର ଶୁଭ ମନାସିବା ପାଇଁ ?

ଯାହାହେଉ ଏହି ଭାବରେ ସରିଗଲା ମୋର ଶତାବ୍ଦୀ । କାଲି ସକାଳେ ଏକ ନୂଆ ଶତାବ୍ଦୀ ତଥା ସହସ୍ରାବ୍ଦର ଆରମ୍ଭ ।

ଭୁଲ୍ ନୁହେଁ । ବିଗତ ଶତାବ୍ଦୀର ଯୌବନରେ ମୋର ଜନ୍ମ । ଏବଂ ମୋର ଯୌବନ ବେଳକୁ ଭାରତର ସ୍ୱାଧିନତା ସୂର୍ଯ୍ୟ ଉଇଁ ଆସୁଛି । ଏବଂ ଉତ୍କଳ ଜନନୀକୁ ମିଳିଛି ଏବେ ତାର ସ୍ୱାଧିକାର ଓ ମର୍ଯ୍ୟାଦା । ଏଇ ସମୟକୁ ଯେ କଲମ ଧରେ ଅବା ଯେକୌଣସି ଉଦ୍ୟମରେ ହାତ ଦିଏ ତା' ଜନ୍ମଜୀବନର ଆହ୍ୱାନ ଶୁଣିଲା ପରି, ସେଥିରେ କିଭଳି ଉତ୍ସାହ ଓ ଉଦ୍ଦୀପନା ରହିଥିବ ତା ସହଜେ ଅନୁମେୟ । କିନ୍ତୁ ଯଥାକ୍ରମେ ଆସିଛି ତା ଅନୁଭବରେ ରକ୍ତରଂଜିତ ଦେଶବିଭାଜନ ଏବଂ ମହାତ୍ମା ଗାନ୍ଧୀଙ୍କ ନିଧନ, ତହୁଁ ଇନ୍ଦିରା ଗାନ୍ଧୀ, ତହୁଁ ରାଜୀବ ଗାନ୍ଧୀଙ୍କର, ଏବଂ କେତେ ଗଣତାନ୍ତ୍ରିକ ଆଶା ଭରସାର । ଶେଷକୁ ରହିଲା କେତେ ଗଲା କେତେ ଶତାବ୍ଦୀ ସରିଲା ବେଳକୁ ? ସବୁ କଣ ଭସ୍ମ ହୋଇଗଲା ସେଇ ଗୋଟିକ ପରେ ଗୋଟିଏ ଜଳି ଉଠିଥିବା ଚିତାନଳରେ ? ସବୁ ମୂଲ୍ୟବୋଧ, ଆଦର୍ଶକୁ ଆଶ୍ରା କରିଥିବା ଭଲମନ୍ଦ ବିଚାର ମଧ୍ୟ ଜଳିପୋଡ଼ି ଭସ୍ମ ହୋଇଗଲାଣି ? ଏହିପ୍ରକାର ଭାବ ଆସିଲା ମୋ ମନକୁ ବର୍ଷ ୨୦୦୦ରେ ପହଂଚିଲା ପରେ । ସେଇଠୁ ମୋର ମନେ ପଡ଼ିଲା ଯେଉଁ ଆତ୍ମଗ୍ଲାନି ଆସିଥିଲା ମୋ ମନରେ ସେଦିନ ନୂଆଦିଲ୍ଲୀରେ, ଇନ୍ଦିରା ଗାନ୍ଧୀଙ୍କର ହତ୍ୟାକାରୀମାନେ ଫାଶି ପାଇବା ଦିନ । ଯେ ମୁଁ ଗୋଟିଏ ପଦ୍ମଭୁକ୍ ଲେଖକ, ଯାହାର ବୌଦ୍ଧିକ ମୋଟା ଚମଡ଼ାକୁ କିଛି ହେଲେ ବାଧିଲା ନାହିଁ, ତେଣୁ ସେ ଖାଲି ଲେଖିଗଲା, ଲେଖିଗଲା ତାର ତଥାକଥିତ ସୃଜନାତ୍ମକ ଆନନ୍ଦରେ ବିଭୋର ହୋଇ । ଏବଂ କେଉଁ ସକ୍ରିୟ ଭୂମିକାର ପାଖ ମାଡ଼ିଲା ନାହିଁ । ତାପରେ ହଠାତ୍ ଗୋଟିଏ ଖିଆଲ୍ ଜୁଟିଲା ମୋ ମନକୁ - ଆରେ ମୁଁ ଯାହା କଲି ନ କଲି, ମୋର ଚରିତ୍ରମାନେ କଣ ଦୋଷ କରିଥିଲେ ? ସେମାନେ ବି ମୋରି ପରି ମଧ୍ୟବିତ୍ତ ବୁଦ୍ଧିଜୀବି ହୁଅନ୍ତୁ ନା କାହିଁକି, ସେମାନଙ୍କୁ କାହିଁକି ସେଇ ନିଆଁର ତାତି ଛୁଇଁବ ନାହିଁ, ଯେଉଁଥିରେ ସେମାନେ କଣ ବୋଲି କଣ କରିବେ କିମ୍ବା କରିବାକୁ ଚାହିଁବେ ? ଏହି ଭାବରେ, ଇଂରାଜୀ ଉପନ୍ୟାସଟିକୁ ସାରିଦେଲା ପରେ ମୁଁ ଲେଖିବାକୁ ଆରମ୍ଭ କଲି ମୋର ଉଚ୍ଚାଭିଲାଷୀ ତଥା ଆତ୍ମଗ୍ଲାନି ବିନାଶକ ଷଷ୍ଠ ଉପନ୍ୟାସ 'ତୁମ ଆମ ଶତାବ୍ଦୀ' ଯାହା ଜାନୁଆରୀ ୨୦୦୧ରେ ସଂପୂର୍ଣ୍ଣ ହେଲା ଏବଂ ୨୦୦୨ ଅକ୍ଟୋବର ମାସରେ ପ୍ରକାଶିତ ହୋଇଛି । ତିନି ପୀଢ଼ିର ନାୟକ, ଜଣେ ଗାନ୍ଧୀଭକ୍ତ ସ୍କୁଲ ମାଷ୍ଟର୍ ତଥା ଶହୀଦ୍ ଠାରୁ ଆରମ୍ଭ କରି ଆଜିର ପ୍ରାକ୍ଟିକ୍ୟାଲ୍ ପ୍ରଣୟୀ ଯୁଗଳ, ଯେଉଁମାନେ ଆମେରିକାକୁ ପଳେଇ ଆସିଛନ୍ତି ତାଙ୍କ ପୁରୁଣା ଦେଶ ଓ ପୁରୁଣା ଶତାବ୍ଦୀର ଚାପରୁ ମୁକୁଳି ଆସିବା ପାଇଁ । ଆଉ ମଝି ପୀଢ଼ିରେ କିଏ ଅଛି ଜାଣନ୍ତି ? ଅଛି ଜଣେ ଆକାଉଣ୍ଟସ୍ ଅଫିସର୍ ! ନା, ନା, ଉପନ୍ୟାସଟି ଆତ୍ମଜୀବନୀମୂଳକ ବୋଲି ଭାବନ୍ତୁ ନାହିଁ । ହେଲେ ଏଇ ଜଣକ ମୋର ଅତି ଅନ୍ତରଂଗ ନୁହେଁ ବୋଲି କହିବି କେମିତି ?

ଏଇ ଉପନ୍ୟାସ ଛଡ଼ା ଅଳ୍ପ କେତୋଟି ଗଳ୍ପ ଓ ପ୍ରବଂଧରେ ଭେଟି ମଧ୍ୟ ଦେଇ ପାରିଛି ନୂଆ ଶତାବ୍ଦୀର ପହିଲି ବର୍ଷ (ଅବା କେତେକଙ୍କ ମତରେ ବିଗତ ଶତାବ୍ଦୀର ଶେଷ ବର୍ଷ) ଖ୍ରୀଷ୍ଟାବ୍ଦ ୨୦୦୦ ମସିହାରେ ।

ନୂଆ ବହିଟିଏ ହାତକୁ ଆସିବା ଦିଗରେ ଗୋଟିଏ ଅତି ବିଶିଷ୍ଟ ସଫଳତାର ଆନନ୍ଦ ମିଳିଛି ମୋତେ ଏଇ ବର୍ଷ । ଡ. ଫିଲିସ୍ ଗ୍ରାନ୍‌ଫଙ୍କ ଦ୍ୱାରା ଅନୁଦିତ ନଅଟି ଗଳ୍ପର ସଂକଳନ "The Journey : Stories by K.C. Das" ପ୍ରକାଶିତ ହୋଇଛି ଆମେରିକାର ମିସିଗାନ୍ ୟୁନିଭର୍ସିଟି ପ୍ରେସ୍ ଦ୍ୱାରା । ବହିଟି ଉତ୍ସର୍ଗୀକୃତ ହୋଇଛି ଗତବର୍ଷର ମହାବାତ୍ୟା ଦ୍ୱାରା ପ୍ରପୀଡ଼ିତ ଓଡ଼ିଶାବାସୀଙ୍କ ପ୍ରତି । ଏବଂ ସମସ୍ତ ରଏଲ୍‌ଟି ବାତ୍ୟା ରିଲିଫ୍ ପାଣ୍ଠିକୁ ଯିବ ବୋଲି କୁହାଯାଇଛି । ବହିର ଆଉ ଗୋଟିଏ ବିଶେଷତ୍ୱ ହେଲା ଏଇ ଯେ ଡଂ.ଫିଲିସ୍ କେବଳ ମୋରି କେତେକ ଗଳ୍ପର ଅନୁବାଦ କରି ମୋତେ ଚିହ୍ନାଇ ନାହାନ୍ତି ତାଙ୍କ ମୁଖବଂଧରେ, ସେ ଓଡ଼ିଆ ଭାଷା ଓ ସାହିତ୍ୟର ଉତ୍‌କର୍ଷକୁ ଚିହ୍ନାଇଛନ୍ତି ଉତ୍ତର ଆମେରିକାର ପାଠକପାଠିକାମାନଙ୍କ ଅବଗତି ପାଇଁ । ଆଦିକବି ସାରଳା ଦାସଙ୍କ ଠାରୁ ଆରମ୍ଭ କରି ଆଜିଯାଏଁ । ତେଣୁ ଏଇ ଅବସରରେ ମୁଁ ପୁଣି ତାଙ୍କୁ ମୋର କୃତଜ୍ଞତା ଜଣାଉଛି ଆମ ସମସ୍ତଙ୍କ ତରଫରୁ । ଏବଂ ଯାହା କହିଛି ଏଥିପୂର୍ବରୁ, ତାଙ୍କର ଅଧୁନାତନ ପ୍ରେମ ଓଡ଼ିଆ ସାହିତ୍ୟ ପ୍ରତି । ତାଙ୍କର ଅନୁରୋଧକ୍ରମେ ମୁଁ ତାଙ୍କ ପାଖକୁ ମାଦଳା ପାଂଜି, ପଂଚସଖା (ମାଳିକା ସମେତ), ଜଗନ୍ନାଥ ଜଣାଣ, ଜଗନ୍ନାଥ ତତ୍ତ୍ୱ ଇତ୍ୟାଦି ପ୍ରାଚୀନ ଓଡ଼ିଆ ସାହିତ୍ୟକୁ ନେଇ ଅନେକ ବହି, ତଥା ବିଶିଷ୍ଟ ଆଧୁନିକ କଥାକାରମାନଙ୍କ ଗଳ୍ପ ସଂଗ୍ରହ ଏବଂ ଉପନ୍ୟାସ (ଭକ୍ତିଯୁଗର କବିତା ଛଡ଼ା ସେ କାବ୍ୟକବିତାର ବିଶେଷ ଆଗ୍ରହୀ ନୁହଁନ୍ତି) ପଠାଇ ସାରିଛି । ଏବଂ ସେ ଆଶା କରନ୍ତି ଯେ ନିକଟ ଭବିଷ୍ୟତରେ ସେ ଆଉ କେତୋଟି ବହି ଛପାଇବେ ଓଡ଼ିଆ ସାହିତ୍ୟକୁ ଚିହ୍ନାଇବା ପାଇଁ । ଧନ୍ୟବାଦ ।

ଏହାଛଡ଼ା ମୋର ବେଶ୍ କେତୋଟି ନୂଆ ବହି ବାହାରିଛି ୨୦୦୦ ମସିହାରେ । 'ବିଦେଶିନୀ' ଉପନ୍ୟାସ, ପ୍ରବଂଧ ସଂକଳନ 'ମୋ ସମୟ, ମୋ ସାହିତ୍ୟ', ଏବଂ ଗ୍ରନ୍ଥାବଳୀ 'ତିରିଶ ବର୍ଷର ଗଳ୍ପ ଓ ଆଳାପ'ର ଚତୁର୍ଥ ଭାଗ । ମଧ୍ୟ କଥାସାହିତ୍ୟ ସଂପର୍କରେ ଉପରୋକ୍ତ ଇଂରାଜୀ ବହି "Learn to write a short story..." ।

ମୋର ଯେଉଁ ଅନୁଦିତ ଗଳ୍ପଗୁଡ଼ିକ ସ୍ଥାନିତ ହୋଇଛି ବିଭିନ୍ନ ସର୍ବଭାରତୀୟ ଇଂରାଜୀ ଏବଂ ଅନ୍ୟାନ୍ୟ ଭାଷାରେ ପ୍ରକାଶିତ ସଂକଳନରେ, ମୁଁ ତାର ବିସ୍ତୃତ ସୂଚନା ଦେଇନାହିଁ ଏହି ଆତ୍ମଜୀବନୀରେ । ତାର ସଂପୂର୍ଣ୍ଣ ବିବରଣୀ ମିଳିବ ଏଥିସହିତ ସଂଲଗ୍ନ ହୋଇଥିବା ମୋର ସାହିତ୍ୟକୃତି ସଂପର୍କୀୟ ଗ୍ରନ୍ଥ (bibliography)ରେ । ଏଠି ମାତ୍ର କେତୋଟିର ଉଲ୍ଲେଖ କରିଛି ସେଥିର କିଛି ବିଶେଷତ୍ୱ ଅଛି ବୋଲି ମନେ କଲେ । ସେହି ହିସାବରେ ୨୦୦୦ ମସିହାରେ ପ୍ରକାଶିତ ତିନୋଟି ସଂକଳନ ବିଷୟରେ କିଛି କହିଲେ ଭଲ ହେବ ବୋଲି ଭାବୁଛି । ସେଗୁଡ଼ିକ ହେଲା -

"Knit India through Literature- Vol. II" ପ୍ରକାଶକ - "East-West Books, Chennai" । ଏଥିରେ କମଳାକାନ୍ତ ମହାପାତ୍ରଙ୍କ ଦ୍ୱାରା ଅନୁଦିତ ମୋ 'ଅତିଥି' ଗଳ୍ପର ଇଂରାଜୀ ରୂପାନ୍ତର "The Visitor" ସ୍ଥାନିତ ହୋଇଛି । କିନ୍ତୁ ଏହାର ବିଶେଷତ୍ୱ ଭିନ୍ନ । ଏଇ ଆନ୍ଦୋଳନ ଭାରତୀୟ ସାହିତ୍ୟକୁ ନେଇ, ଏବଂ ସୁଶ୍ରୀ ଶିବଶଙ୍କରୀଙ୍କର ଅକ୍ଲାନ୍ତ ଉଦ୍ୟମ, ତାକୁ ଅର୍ଥାନ୍ୱିତ କରିବା ଲାଗି । ଭାରତକୁ ସତେ ଗୁନ୍ଥିବା ପାଇଁ ସାହିତ୍ୟର ବିବିଧ ବର୍ଣ୍ଣା ଫୁଲହାରଟିଏ ତିଆରି କରି । ବହିଟି କଲିକତାରେ ଉନ୍ମୋଚିତ ହୋଇଥିଲା, ପଶ୍ଚିମବଙ୍ଗର ରାଜ୍ୟପାଳଙ୍କ ଦ୍ୱାରା । ମୁଁ ସେଇ ସମାରୋହରେ ଯୋଗ ଦେବାକୁ ଯାଇଥିଲି ତାଙ୍କ ଆମନ୍ତ୍ରଣ କ୍ରମେ ଏବଂ ପୂର୍ବାଞ୍ଚଳର କେତେକ ବିଶିଷ୍ଟ ଲେଖକ-ସାହିତ୍ୟିକମାନଙ୍କ ସହିତ ମିଳିତ ହେବାର ସୁଯୋଗ ପାଇଥିଲି । ଏଇ ସଂକଳନରେ ମଧ୍ୟ ରହିଥିଲା ମୋ କଟକ ଘରେ ତାଙ୍କ ସହିତ ରଚିତ ସାକ୍ଷାତ୍କାରର ବିବରଣୀ, ମୁଁ ଯେଉଁ ବିଷୟରେ କହିଛି କିଛି ଏଥିପୂର୍ବରୁ ।

"Same Sex love in India", ପ୍ରକାଶକ St. Martin's Press, Newyork ! ମୁଖ୍ୟତଃ ଆନ୍ତର୍ଜାତିକ ପାଠକପାଠିକାମାନଙ୍କ ପାଇଁ ଉଦ୍ଦିଷ୍ଟ ଗୋଟିଏ ବିରାଟ ପୁସ୍ତକ । ସଂପାଦନା କରିଛନ୍ତି ସର୍ବଶ୍ରୀ ରୁଥ୍ ବନିତା ଓ ସଲୀମ୍ କିଦ୍‌ୱାଇ । ଦିଲ୍ଲୀ ୟୁନିଭର୍ସିଟିର ଇଂରାଜୀ ଅଧ୍ୟାପକ ସୁମନ୍ୟୁ ଶତପଥୀ ସଂପାଦନାର ସହଯୋଗୀ ହେବାରୁ ତାଙ୍କର ମନେ ପଡ଼ିଲା ମୋର ଗୋଟିଏ ପୁରୁଣା ଗଳ୍ପ 'ସରମାର ରୋମାନ୍‌ସ୍' ଏବଂ ସେ ତାର ଇଂରାଜୀ ଅନୁବାଦ କଲେ, ମୋର ଅନୁମତି କ୍ରମେ । ତାରି ଗୋଟିଏ ଉଦ୍ଧୃତାଂଶ ରହିଛି ଏଇ ବହିରେ । ମୁଁ ସୁମନ୍ୟୁ ବାବୁଙ୍କୁ କହିଥିଲି ଯେ ଶୁଣନ୍ତୁ, ଇଏ ତଥାକଥିତ ସମଲିଂଗୀୟ ପ୍ରେମ ନୁହେଁ । ଇଏ ଗୋଟିଏ ଅତି ରୋମାଣ୍ଟିକ୍ ନବପରିଣୀତା ଝିଅର ସାମୟିକ ପ୍ରତିକ୍ରିୟା, ତାର କୁମାରୀ ଜୀବନକୁ ମନେ ପକାଇ, ଯେତେବେଳେ ସେ ତାର ଗୋଟିଏ ସହପାଠିନୀଠାରୁ ଚୁମ୍ବନଟିଏ ପାଇଥିଲା । କିନ୍ତୁ ସେ କହିଲେ ଠିକ୍ ଅଛି ଇଏ ମଧ୍ୟ ପ୍ରେମ, ସେଥିରେ ସେକ୍‌ସର ନାଆଁଗନ୍ଧ ନଥିଲେ ନାହିଁ । ସେଇଠୁ ମୁଁ ଆଉ କିଭଳି ତର୍କ କରିପାରିଥାଆନ୍ତି ତାଙ୍କ ସାଙ୍ଗରେ ?

"Great writers" ସିରିଆଲ୍ ଶୀର୍ଷକରେ "Oriya Stories" ନାମକ ସଂକଳନ । ପ୍ରକାଶକ Srishti Publishers and Distributors, Delhi । ମୁଁ ଯାହା ବୁଝିଲି, ପ୍ରକାଶକମାନେ ଏହି ଭାବରେ ବିଭିନ୍ନ ଭାରତୀୟ ଭାଷାରେ ରଚିତ ଆଧୁନିକ ସାହିତ୍ୟକୁ ଉପସ୍ଥାପିତ କରିବାକୁ ଚାହାଁନ୍ତି, ସର୍ବଭାରତୀୟ ତଥା ଆନ୍ତର୍ଜାତିକ ସାହିତ୍ୟ ଦରବାରରେ । କେଉଁ ସଂପୂର୍ଣ୍ଣ ସଂକଳନ ନୁହେଁ, କେବଳ ସେଥିର ପ୍ରବାହଧର୍ମୀ ଝଲକଟିଏ ଦେଖାଇ । ତାମିଲ୍ ଏବଂ ବଂଗଳା କଥା ସାହିତ୍ୟ ପରେ ସେମାନେ ମନ ବଳାଇଲେ ଓଡ଼ିଆ କଥା ସାହିତ୍ୟ ପ୍ରତି । ତେଣୁ ଏଇ ବହିରେ କେବଳ ଚାରିଜଣ କଥାକାର, ଫକୀରମୋହନ ସେନାପତି, ଗୋପୀନାଥ ମହାନ୍ତି, କିଶୋରୀ ଚରଣ ଦାସ ଏବଂ ମନୋଜ ଦାସଙ୍କର ତିନୋଟି ଲେଖାଏଁ

ଗଳ୍ପ ରହିଛି । ମୋର ଗଳ୍ପ ତିନୋଟି ହେଲା ''ବିଧର୍ମୀ'' ''ଶହେ ପୁଅ'' ଏବଂ ''ସରମାର ରୋମାନ୍ସ''ର ଇଂରାଜୀ ରୂପାନ୍ତର । ପ୍ରଥମ ଦୁଇଟି ସ୍ୱରଚିତ ଅନୁବାଦ ଏବଂ ତୃତୀୟଟି ସୁମନ୍ୟୁ ଶତପଥୀଙ୍କ ଦ୍ୱାରା ରଚିତ ଅନୁବାଦ । ସଂପାଦନାର ଦାୟିତ୍ୱ ନେଇଥିଲା ମୋର ଝିଅ ଏବଂ ଦିଲ୍ଲୀ ୟୁନିଭର୍ସିଟିର ଗାର୍ଗୀ କଲେଜର ଇଂରାଜୀ ଅଧ୍ୟାପିକା (ରିଡ଼ର୍) ବିଦ୍ୟା ଦାସ ।

ସେଇଠୁଁ ଗତ ଦୁଇବର୍ଷ ୨୦୦୧ ଓ ୨୦୦୨ର କାଲିକା କଥା । ଏଇ ଦୁଇଟି ବର୍ଷର ସାହିତ୍ୟସଂବାଦ ସଂକ୍ଷେପରେ ଏହିପ୍ରକାର :-

୨୦୦୧ ମସିହାରେ ମୋର ଷଷ୍ଠ ଉପନ୍ୟାସ ''ତୁମ ଆମ ଶତାବ୍ଦୀ'' ସଂପୂର୍ଣ୍ଣ ହେଲା, ଏବଂ ମୁଁ ମୋର ଏହି ଆତ୍ମଜୀବନୀ 'ସମୟ ନାହିଁ'କୁ ଆରମ୍ଭ କଲି । ତା'ଛଡ଼ା ଅବଶ୍ୟ କେତୋଟି ଗଳ୍ପ ଓ ପ୍ରବଂଧ, ସବୁବର୍ଷ ପରି । ଏବଂ ଯେଉଁ ନୂଆ ବହି କେତୋଟି ମୋ ହାତକୁ ଆସିଲା, ସେଗୁଡ଼ିକ ହେଲା - (୧) ''ଶେଷଗଳ୍ପ'', ମୋର ସପ୍ତଦଶ ଗଳ୍ପସଂକଳନ (୨) ''ସଂଜବତୀ'', ମୋର ଦ୍ୱିତୀୟ ଓଡ଼ିଆ କବିତା ସଂକଳନ, ଏବଂ (୩) ''ଆମରି ପରି ବଡ଼ଲୋକ'', ମୋର ଦ୍ୱିତୀୟ ଇଂରାଜିରୁ ଓଡ଼ିଆରେ ରୂପାନ୍ତରିତ ହୋଇଥିବା ଅନୁବାଦ ଗ୍ରଂଥ । ନୟନ୍‌ତାରା ସାଏଗଲ୍‌ଙ୍କର ସାହିତ୍ୟଏକାଡ଼େମୀ ପୁରସ୍କାରପ୍ରାପ୍ତ "Rich Like Us"ର ଓଡ଼ିଆ ରୂପାନ୍ତର । ପ୍ରକାଶକ- କେନ୍ଦ୍ର ସାହିତ୍ୟ ଏକାଡ଼େମୀ ।

ମୋର ଯେଉଁ କେତୋଟି ଅନୂଦିତ ଗଳ୍ପ ବିଭିନ୍ନ ପତ୍ରପତ୍ରିକାରେ ସ୍ଥାନ ପାଇଛି ଏବର୍ଷ, ସେଥିମଧ୍ୟରେ ସବୁଠାରୁ ଉଲ୍ଲେଖଯୋଗ୍ୟ ହେଉଛି (୧) "Beyond Chastity" (ସତୀଚରିତାମୃତ), "Apel" (ଆପେଲ୍), ଏବଂ "A wife's love" (ପତ୍ନୀଙ୍କ ପ୍ରେମ), ଯାହା ଦିଲ୍ଲୀରୁ ପ୍ରକାଶିତ ଦୈନିକ ସଂବାଦପତ୍ର "The Pioneer"ର ସାହିତ୍ୟପୃଷ୍ଠାରେ ପ୍ରକାଶିତ ହୋଇଥିଲା, ଏବଂ (୨) "Death of an Indian" (ଆମରି ଭିତରୁ ଜଣେ), ଯାହା ମୁମ୍ବାଇର ସୁଧା ଯୋଶୀ ନାମକ ଜଣେ ଅଧ୍ୟାପିକାଙ୍କ ଦ୍ୱାରା ମରାଠୀରେ ଅନୁଦିତ ହୋଇ ମରାଠୀ ସାହିତ୍ୟ ପତ୍ରିକା ''ସଂକ୍ରମଣ''ର ଦୀପାବଳୀ ବିଶେଷ ସଂଖ୍ୟାରେ ପ୍ରକାଶିତ ହୋଇଥିଲା ।

୨୦୦୨ ଫେବୃଆରୀ ମାସରେ ମୁଁ ଏହି ଆତ୍ମଜୀବନୀଟିକୁ ସାରି ଦେଇପାରିଲି, ଗତ ଦୁଇବର୍ଷର ଇସ୍ତାହାରକୁ ବାଦ୍ ଦେଇ । ଏବଂ ମେ ମାସ ପୂରା ନ ହେଉଣୁ ମୁଁ ମୋର ସପ୍ତମ ଉପନ୍ୟାସ ''ଶେଷ ଅଂକ, ପ୍ରଥମ ଦୃଶ୍ୟ''କୁ ସାରି ଦେଲି । ଛୋଟିଆ ଉପନ୍ୟାସଟିଏ । ଜୀବନର ସଂଧ୍ୟାରେ ପହୁଂଚିଥିବା କେତୋଟି ବୁଢ଼ାବୁଢ଼ୀଙ୍କ କାହାଣୀ । 'ପ୍ରଦୋଷ ବିଳାସ' ନାମକ ଜରାନିବାସ ଗୋଟିଏ ରୁମ୍‌ରେ ବୁଢ଼ାଟିଏ ଗୋଟିଏ ବୁଢ଼ୀର ହାତକୁ ଅତି ସରାଗରେ ଆଉଁସୁଥିବାର ଦେଖାଗଲା । ସେମାନେ ସ୍ୱାମୀ-ସ୍ତ୍ରୀ ନୁହଁନ୍ତି । ବୁଢ଼ା ଜଣକ ବିପତ୍ନୀକ, ଏବଂ ବୁଢ଼ୀ ନିକଟରେ ତା'ର ସ୍ୱାମୀକୁ ହରାଇଛି । ଏଇ ହେଉଛି 'ଦୃଶ୍ୟ' । ଏବଂ ସେହି ଦୃଶ୍ୟ

ଯେଉଁ ପ୍ରତିକ୍ରିୟା ସୃଷ୍ଟି କଲା, ସାମ୍ନା କରିବ଼ର୍ ବାଟେ ଯାଉଥିବା ତିନିଜଣ ଅନ୍ତେବାସୀଙ୍କ ମନରେ, ତାଙ୍କ ନିଜ ନିଜ ଜୀବନାନୁଭୂତିକୁ ନେଇ, ତଥା ଦୃଶ୍ୟଟିର ସତମିଛ, ଏଇ ହେଉଛି ଉପନ୍ୟାସର କଥାବସ୍ତୁ ।

ଯେଉଁ ନୂଆ ବହି କେତୋଟି ମୋ ହାତକୁ ଆସିଲା ଏବର୍ଷ, ତା' ହେଉଛି :- (୧) ମୋର ଅଷ୍ଟାଦଶ ଗଳ୍ପ ସଂକଳନ ''ପରଦାତଳେ ଏବଂ ଅନ୍ୟାନ୍ୟ ଗଳ୍ପ'' । ଏହି ସଂକଳନର ବିଶେଷତ୍ୱ ହେଉଛି ଏଇ ଯେ ମୋର ପ୍ରଥମ ପ୍ରକାଶିତ ଗଳ୍ପ ''ପରଦାତଳେ'' (୧୯୪୨) ଏବଂ ପରବର୍ତ୍ତୀ ବିଭିନ୍ନ ଦଶକରେ ଲିଖିତ କେତୋଟି ଗଳ୍ପ, ଯାହା ନାନାଦି କାରଣରୁ ପ୍ରକାଶିତ ଅଥବା କୌଣସି ସଂକଳନର ଅନ୍ତର୍ଭୁକ୍ତ ହୋଇନଥିଲା, ସେଥିର ଏକ ଅଭିନବ ସମାହାର । ଏବଂ (୨) ମୋର ଊନବିଂଶ ଗଳ୍ପସଂକଳନ ''ଶାନ୍ତ ଅପରାହ୍ନ'' । ତା'ବିଷୟରେ ମୁଁ ତ କହିଛି କିଛି ଏଥିପୂର୍ବରୁ ।

ଏବଂ ଏବର୍ଷ ଯେଉଁ ସମସ୍ତ ସର୍ବଭାରତୀୟ ଗଳ୍ପସଂକଳନରେ ମୋର ଅନୂଦିତ ଗଳ୍ପ ସ୍ଥାନିତ ହୋଇଛି, ସେଥିମଧ୍ୟରେ ସବୁଠାରୁ ଉଲ୍ଲେଖଯୋଗ୍ୟ ହେଉଛି "Our Favourite Indian stories - edited and compiled by Khuswant Singh and Neelam Kumar" । ଏଥିରେ ମୋର "Death of an Indian" ଗଳ୍ପଟି ସ୍ଥାନିତ ହୋଇଛି ।

ମାର୍ଚ୍ଚ ୨୦୦୩ ମସିହାରେ ମୋର ସପ୍ତମ ଉପନ୍ୟାସ ''ଶେଷ ଅଂକ, ପ୍ରଥମ ଦୃଶ୍ୟ'' ପ୍ରକାଶ ପାଇଛି । ଏବଂ ଏହିବର୍ଷ ମୁଁ ମୋର ବିଂଶତମ ଗଳ୍ପ ସଂକଳନ ''ନିଆଁ''ର ପାଣ୍ଡୁଲିପି ନେଇଆସିଛି ପ୍ରକାଶକଙ୍କୁ । ବହିଟି ଅତିଶୀଘ୍ର ପ୍ରକଶିତ ହେବ ବୋଲି ଆଶା କରୁଛି ।

ମୋର ଲେଖନୀ ମୋତେ ଥକି ଯିବାକୁ ରାଜି ନୁହେଁ, ଆଖିକୁ ଯେତେ ନିଦ ଲାଗିଲେ ମଧ୍ୟ । ସତେକି ଏଇଥିରେ ହିଁ ମୋର ଅକ୍ଷମ ଏବଂ ଅସମାହିତ ଜୀବନର ମୋକ୍ଷ !

ପଦେ ଅଧେ କୁହେ ବର୍ତ୍ତମାନ ମୋର ପାରିବାରିକ ସ୍ଥିତି ବିଷୟରେ । ତା'ପରେ କହିବି କିଛି ମୋର ଏଇ ଲେଖକୀୟ ଟାଣକୁ ନେଇ ।

ପିଲାମାନଙ୍କ କଥା -

ବଡ଼ଝିଅ ଓ ଜ୍ୱାଇଁ ହୀନୁ ନଗେନ୍ ବର୍ତ୍ତମାନ ଦିଲ୍ଲୀରେ ଅଛନ୍ତି । ଅର୍ଥାତ୍ ଦିଲ୍ଲୀର ଉପକଣ୍ଠରେ ଥିବା ହରିୟାନାର ଗୁଡ଼୍‌ଗାଓଁ ସହରରେ । ସେଇଠି ଡି.ଏଲ୍.ଏଫ୍ କଲୋନୀରେ ଭଲ ଘରଟିଏ ତୋଳିଛନ୍ତି, ଅବସର ଉତାରୁ ତାଙ୍କ ଭିନ୍ନ ଜୀବନ ବିତାଇବା ଲାଗି । ପୁଅ ଦି'ଜଣ ଅନୁରାଗ ଓ ଅଂଶୁମାନ୍ ତ ଆମେରିକାରେ । ସେଠିକା ୟୁନିଭର୍ସିଟିମାନଙ୍କରୁ ଇଂଜିନିୟରିଂଗ୍ ଏବଂ ଏମ୍.ଏସ୍. ଡିଗ୍ରୀ ହାସଲ କରି ସାରିଲା ପରେ ବିଭିନ୍ନ କଂପ୍ୟୁଟର କଂପାନୀରେ କାମ କରୁଛନ୍ତି । ଅନୁରାଗ ସିକାଗୋରେ ଅଛି ଏବଂ ଅଂଶୁମାନ୍ ସାନ୍‌ଫ୍ରାନ୍‌ସିସ୍‌କୋରେ ଘରକୁ ଫେରିବେ କି ସେଇଠି ରହିଯିବେ ଭଗବାନ ଜାଣନ୍ତି । ଯାହାହେଉ

ଆଜିର ସୁଖବର ହେଉଛି ଯେ, ସାନ ଅଂଶୁମାନ୍ ମନୀଷା କୋଠାରୀ ନାମକ ଆମେରିକାରେ କାମ କରୁଥିବା ଗୋଟିଏ ଉଚ୍ଚଶିକ୍ଷିତା ରାଜସ୍ଥାନୀ ଝିଅକୁ ବାହା ହୋଇଛି, ମାର୍ଚ୍ଚ ୨୭ ତାରିଖ ୨୦୦୨ ମସିହାରେ । ବଡ଼ ଅନୁରାଗ ବର୍ତ୍ତମାନ ପାଇଁ ବାହା ହେବାକୁ ଚାହେଁ ନାହିଁ । ହେଲେ ଉଲ୍ଲେଖଯୋଗ୍ୟ ଯେ ସେ ଆଉ କବିତା ଲେଖୁଛି କି ନାହିଁ ଜାଣେ ନାହିଁ, କିନ୍ତୁ ସେ ତବଲା ବଜାଇବାରେ ଧୁରଂଧର ହୋଇଗଲାଣି । ଭାରତୀୟମାନଙ୍କ ସାଂସ୍କୃତିକ କାର୍ଯ୍ୟକ୍ରମରେ ତା'ର ଯୋଗଦାନ ଅନିବାର୍ଯ୍ୟ । କେବଳ ଗୋଟିଏ ଦୁଃଖ ଏଇ ପରିବାରକୁ ନେଇ । ପୁଣି କିଛି ଗଣ୍ଡଗୋଳ ଦେଖାଦେଲାଣି ହୀନୁର ହାର୍ଟରେ । ତେବେ ତାହା ଆୟତ୍ତରେ ଅଛି ।

କ୍ୟାନେଡ଼ାରେ ଘର କରିଥିବା ଚିନୁ, ତାର ସ୍ୱାମୀ ସ୍କଟ୍ ଓ ତାର ତିନି ପିଲା ଭଲରେ ଅଛନ୍ତି । ପିଲାଏ ଟିକିଏ ବଡ଼ ହୋଇଗଲେଣି, ତେଣୁ ଉଚ୍ଚଶିକ୍ଷିତା ଚିନୁକୁ ବେଶ୍ କିଛି ସମୟ ମିଳୁଛି କିଛି ମନଲାଖି ବାହାର କାମ କରିବା ପାଇଁ । ସେ ବର୍ତ୍ତମାନ ସେଠିକା ସ୍କୁଲ ଶିକ୍ଷା ବିଭାଗର ଜଣେ ଉଚ୍ଚପଦସ୍ଥ ଅଧିକାରୀ । ମଧ୍ୟ ବ୍ରିଟିଶ କଲମ୍ବିଆ ପ୍ରଦେଶର ସାଂସ୍କୃତିକ ଆଦାନପ୍ରଦାନ କ୍ଷେତ୍ରରେ ମୁଖ୍ୟ ଭୂମିକା ଗ୍ରହଣ କରିଛି । ସ୍ୱାମୀ ସ୍କଟ୍ ସେଠିକାର ଫିଲ୍ମ ଉଦ୍ୟୋଗରେ କାମ କରି ଆସୁଛି ସେଥିର ପରିଚାଳନା ବିଭାଗରେ । ଏଣେ ଟେଲିଭିଜନ୍ ସିରିଆଲ୍ ପାଇଁ ସ୍କ୍ରିପ୍ଟ୍ ଲେଖି ସେଦିଗରେ ବେଶ୍ କିଛି ସଫଳତା ମିଳିଗଲାଣି ତାଙ୍କୁ । ପିଲା ତିନିଜଣ ଯାକ ଭଲ ପଢୁଛନ୍ତି । ହେଲେ ଝିଅ ଆୟେଶାର କୃତିତ୍ୱ ବିଶେଷ ଉଲ୍ଲେଖନୀୟ । କେବଳ ପଢ଼ାପଢ଼ି ନୁହେଁ, ମଧ୍ୟ ଛବିଅଂକା ଏବଂ ପିଆନୋ ବଜାଇବାରେ । ସେମାନେ ଦିଲ୍ଲୀକୁ ଆସିଥିଲେ ୨୦୦୨ ଡିସେମ୍ବର ମାସରେ, ଏବଂ ଆମେ ସେଠିକି ଯାଇଥିଲୁ ତାଙ୍କ ସହିତ ମିଳିତ ହେବା ପାଇଁ ।

ସ୍ୱର୍ଗୀୟା ବିଶ୍ୱଜିତାର ଝିଅ ଗୀତି ଫିଲାଡ଼େଲଫିଆରେ ଥିବା Porynmoor Collegeରୁ Philosphy Major ନେଇ ବି.ଏ. ପାସ୍ କଲା ପରେ ବର୍ତ୍ତମାନ ବାପା ପାଖରେ ଗୁର୍‌ଗାଓଁରେ ଅଛି । କହୁଛି ପୁଣି ଆମେରିକାକୁ ଯିବ, ଯଥାଶୀଘ୍ର, ତା' ପୋଷ୍ଟଗ୍ରାଜୁଏଟ୍ ପଢ଼ା ପାଇଁ । ହେଲେ ଗୋଟିଏ ସବୁଦିନିଆ ଦାରୁଣ ଦୁଃଖ ରହିଗଲା ଏଇ ପରିବାରକୁ ନେଇ । ଗୀତିର ସାନଭାଇ ଅଭିଷେକ ଖୁସିବାସିଆ ପିଲାଟିଏ, କିନ୍ତୁ ରହିଯାଇଛି ସେମିତି ପଛୁଆ ହୋଇ, କେଉଁ ଜନ୍ମଗତ ଦୋଷ ହେତୁ । ସାଧାରଣ ସ୍କୁଲ ଶିକ୍ଷାର ଯୋଗ୍ୟ ହୋଇପାରି ନାହିଁ ଆଜିଯାଏଁ । କ୍ୱାଇଁ ଆର୍କଟେକ୍ଟ ଶୁଭକାନ୍ତ ମଧ୍ୟ ଗୁରଗାଓଁରେ ଡି.ଏଲ.ଏଫ. କଲୋନିରେ ଭଲ ଘରଟିଏ ତୋଳିଛନ୍ତି ଏବଂ ବେଶ୍ ଖ୍ୟାତି ଅର୍ଜନ କରିପାରିଛନ୍ତି ତାଙ୍କ ବ୍ୟବସାୟରେ ।

ଚତୁର୍ଥ ଝିଅ ବିଦ୍ୟା ବର୍ତ୍ତମାନ ଦିଲ୍ଲୀ ୟୁନିଭର୍ସିଟିର ଅଧିନରେ ଥିବା ଗାର୍ଗୀ ମହିଳା କଲେଜ୍‌ରେ ଇଂରେଜୀ ବିଭାଗରେ ଅଛି, ରିଡ୍‌ର ପାହ୍ୟାରେ । ତାର ସ୍ୱାମୀ କେଓ୍ୱଲ୍ ମଧ୍ୟ କେ.ଏମ୍. କଲେଜ୍ ଇଂରେଜି ବିଭାଗରେ ରିଡର୍ । ଦିହେଁ ଫ୍ଲାଟ୍‌ଟିଏ କିଣିଛନ୍ତି ଦିଲ୍ଲୀ ଉପକଣ୍ଠରେ ଥିବା ଉତ୍ତର ପ୍ରଦେଶର ନଏଡ଼ା ସହରରେ । ପୁଅ ମଳୟ ପଢ଼ାପଢ଼ିରେ ବେଶ୍ ଭଲ କରୁଛି ।

ଏବଂ ଉଲ୍ଲେଖଯୋଗ୍ୟ ଯେ ସେ ଚମତ୍କାର କବିତା ଲେଖୁଛି ଇଂରାଜୀରେ । ତାର ଗୋଟିଏ କବିତା ପ୍ରକାଶିତ ହୋଇଛି ଏବେ କଟକରୁ ବାହାରୁଥିବା "Replica" ନାମକ ଇଂରାଜୀ ସାହିତ୍ୟ ପତ୍ରିକାରେ ।

ଏବଂ ମୋର ପଂଚମ ସଂତାନ ଓ ଏକମାତ୍ର ପୁଅ ଅଂଜନି କୁମାର ଓରଫ୍ ଧୀରୁ ଦିଲ୍ଲୀରେ ଅଛି । ସ୍ତ୍ରୀ ନିଶା ଗୋଟିଏ ଟେକ୍ସଟାଇଲ୍ ଏକ୍ସପୋର୍ଟ କଂପାନୀରେ କାମ କରେ । ପୁଅ ବର୍ତ୍ତମାନ ବେଶି ଭାଗ 'ଯୋଗାଯୋଗ' (Liaison) କାମ କରୁଛି, ବିଭିନ୍ନ ଶିକ୍ଷପ୍ରତିଷ୍ଠାନ ତରଫରୁ । ତାଙ୍କର ପୁଅ ପ୍ରଣୟ ବର୍ତ୍ତମାନ Delhi College of Arts and Commerceରେ ଜର୍ଣ୍ଣାଲିଜ୍‌ମ୍ ଅନର୍ସ ନେଇ ବିଏ ପଢୁଛି । ସେ ମଧ୍ୟ ଛବିଅଂକାରେ ପାରଦର୍ଶିତା ଲାଭ କରି ଅନେକ ପୁରସ୍କାର ପାଇଛି । ହେଲେ ବର୍ତ୍ତମାନ ଗିଟାର୍ ବଜାଇବାରେ ଭୋଳ । ତା'ଛଡ଼ା ସେ ଗୋଟିଏ ଆନ୍ତର୍ଜାତିକ ବିଶ୍ୱବିଦ୍ୟାଳୟ ଭିତ୍ତିକ ଯୁବସଂସ୍ଥା AISECର ସଦସ୍ୟ ହୋଇ ପାରସ୍ପରିକ ସଂପର୍କ ଗଢ଼ିବା କାମରେ ମଜ୍ଜି ଯାଉଛି । ବର୍ତ୍ତମାନ ସେ ସେହି ସଂସ୍ଥାର ଦିଲ୍ଲୀ ଶାଖାର ଅଧ୍ୟକ୍ଷ ରୂପେ ମନୋନୀତ ହୋଇଛି ।

ହେଲେ ଆମେ ସ୍ୱାମୀସ୍ତ୍ରୀ ଅଛୁ ଖଟବିନ୍‌ସାହିର ଗୋଟିଏ ଗଳିରେ ଥିବା ପୈତୃକ ଓ ପୁରାତନ ଘରେ । ଜରାଜୀର୍ଣ୍ଣ ହେଲେ ମଧ୍ୟ ବେଶ୍ ବଡ଼ ଦେଖିବାକୁ । ନହେଲେ କି ସୁଶ୍ରୀ ଶିବଶଙ୍କରୀ ଏଇ ଘରକୁ ସତ୍ୟଜିତ୍ ରାୟଙ୍କ ଛବିରେ ଥିବା ସେଯୁଗର ପ୍ରାସାଦମାନଙ୍କ ସାଙ୍ଗରେ ତୁଳନା କରିଥାଆନ୍ତେ ତାଙ୍କ "Knit India through Literature" ବହିରେ ପ୍ରକାଶିତ ସାକ୍ଷାତ୍‌କାରରେ ? ଘରର ନାଆଁ 'ବିପ୍ରଚରଣ ଭବନ', ସ୍ୱର୍ଗୀୟ ବାପାଙ୍କ ସ୍ମୃତିରେ । ଏବଂ ଆଶା କରୁଛି ଯେ ଅଦୂର ଭବିଷ୍ୟତରେ ମୋ ପାଖରେ ଗଚ୍ଛିତ ବହି ତଥା ମୋ ନିଜ ସାହିତ୍ୟ ସଂପତ୍ତିକୁ ନେଇ ମୁଁ ଗୋଟିଏ ପାଠାଗାର ପ୍ରତିଷ୍ଠା କରିବି, ଯାହାର ନାଆଁ ହେବ ''ସୀତାମଣି ପାଠାଗାର'', ମୋ ବୋଉର ସ୍ମୃତିରେ । କେବେଦିନେ ମୁଁ ଏଇ ଗଳିଘର ଉପରେ ରୁଷି ଯାଇ କବିତାଟିଏ ଲେଖିଥିଲି ୧୯୬୮ ମସିହାରେ । ତା ନାଆଁ ''ପ୍ରବାସୀ'' । ଲେଖିଥିଲି ''ଯିବି ନାହିଁ ଯିବି ନାହିଁ ସେ ଗଳିକୁ ଯେଉଁଠି ମୋ ଘର ଅଛି । ସେଠି ଜଣାଶୁଣା ମଣିଷଙ୍କ ଛାଇ ଥିଲେ କଣ ହେବ, ବାରିଆଡ଼େ ଭୂତ ଅଛି .. ।'' କିନ୍ତୁ ପ୍ରବାସୀ ଆଜି ଫେରିଆସିଛି ତା ଗଳି ଘରକୁ, ସେଇ ଭୂତ ସାଙ୍ଗରେ ମିତ ହୋଇ ତା ଶେଷ ଜୀବନର ସାହିତ୍ୟ ଲେଖିବା ପାଇଁ । ମଝିରେ ମଝିରେ ଅବଶ୍ୟ ପିଲାଙ୍କ ପାଖକୁ ଯିବି, କିନ୍ତୁ ଏଇଠିକି ଫେରି ଆସିବି । ସ୍ୱାସ୍ଥ୍ୟ ଅବା ପରିସ୍ଥିତି ହୁଏତ ମୋତେ ବାଧ୍ୟ କରିପାରେ ପରେ କେଉଁ ପିଲା ପାଖରେ ଯାଇ ରହିବା ପାଇଁ । ହେଲେ ଆପାତତଃ ଏଇଠି ଅଛି, ଏବଂ ଚାହେଁ ଏଠି ରହିବି ବୋଲି । ଦାରୁଣ ଆଘାତ ଦେଇ ମୋର ସାନଭାଇ ବୁଲୁ ହଠାତ୍ ଚାଲିଗଲା ଦି'ବର୍ଷ ତଳେ । କିନ୍ତୁ କେବଳ ସବା ସାନ ଭାଇ ରେବତୀ ଭୁବନେଶ୍ୱରରେ ଅଛି, ବାକୀ ସବୁ ଭାଇଭଉଣୀ ପାଖଆଖରେ ଅଛନ୍ତି । ମଧ୍ୟ ଅନେକ ଜ୍ଞାତିକୁଟୁମ୍ବ । ଏବଂ ଆମେ ସ୍ୱାମୀସ୍ତ୍ରୀ ମୋଟାମୋଟି ଭଲ ଅଛୁ, ଆମ ବୟସକୁ ଚାହିଁ ।

ଏବଂ ମୁଁ ଅଡ଼ି ବସିଛି ଯେ ମୁଁ ଲେଖୁଥିବି ଏମିତି । ସତେକି ଏହା ଛଡ଼ା ମୋର ଅନ୍ୟ ଗତି ନାହିଁ ।

ହଁ, ବେଳେବେଳେ ମନେ ହୁଏ ଯେ ଏଇଆକୁ କୁହନ୍ତି ବୌଦ୍ଧିକତାର ହତାଶା । ହତାଶାରୁ ଉଦ୍‌ଭୁତ ଗଉଁ, ଯେ ଏଇ ହେଉଛି ମୋର ସ୍ୱଧର୍ମ, ତେଣୁ ସେ ବିଷୟରେ ଆଉ କାହାର କିଛି କହିବାର ନାହିଁ । ହେଲା ଏବେ କେଉଁ ଉପଲବ୍‌ଧିର ଆଲୁଅ ଦିଶିବାକୁ ନାହିଁ ଆଜିଯାଏଁ । କହୁଛି କଣ ନା ସାହିତ୍ୟ ନାମକ ଏଇ ଜିଜ୍ଞାସା, ଏଇ ସଂଧାନ, ଏଇ ହେଉଛି ମୋ ମୁମୁକ୍ଷାର ଅନ୍ୟତମ ସାଧନ, ହେଲେ ମୁକ୍ତିର ଅନୁଭବ କେଉଁ ଧାତୁରେ ଗଢ଼ା ତା ଜାଣିଲି ନାହିଁ । ସେଇଲାଗି ରାଗ ଆସେ ନିଜ ଉପରେ । ଏଇ ରାଗକୁ ଝେଡ଼େଇଥିଲି କେତେ ବର୍ଷ ତଳେ, ମୋ କଥାସାହିତ୍ୟ ଉପରେ । ଏବଂ ମୋ ସଂଜବେଳିଆ ଦୁଃଖକୁ 'ଗଦ୍ୟ ନୁହେଁ' ବୋଲି ଗୋଟିଏ କବିତା ମାଧ୍ୟମରେ ପ୍ରକାଶ କରିଥିଲି । ମୁଁ ସେକଥା କହିଛି ଏଥିପୂର୍ବରୁ । ହେଲେ ମୋର ମନ ହେଲା ଏବେ ସେଇ କବିତାର ନାଆଁ ବଦଳେଇ ଦେବାକୁ । ତାର ନୂଆ ନାଆଁ 'ସଂଜବତୀ' ଏବଂ ସେଇ ଶୀର୍ଷକରେ ମୋର ଦ୍ୱିତୀୟ ଓଡ଼ିଆ କବିତା ସଂକଳନଟିଏ ବାହାରିଛି ୨୦୦୧ ମସିହାରେ । ସେଥିର କେତୋଟି ଧାଡ଼ି ଉଦ୍ଧୃତ ନ କରି ରହିପାରୁ ନାହିଁ । ଲେଖିଥିଲି -

ଏତେଦିନେ ସାହସ ପାଇଛି
ମୁହଁ ଲାଜ ଛାଡ଼ିଦେଇ କହିବାର ପାଇଁ
ଗଦ୍ୟ ନୁହେଁ, ଗଦ୍ୟ ନୁହେଁ
ଗଦ୍ୟ ମୋର କେହି ନୁହେଁ ।
ମଣିଷ ମଣିଷର ସ୍ଥୂଳ ଓ କୁତ୍‌ସିତ
ସଂପର୍କର ଏଣୁତେଣୁ ଅସରନ୍ତି କଥା
ରଂଗ ବିଲିବିଲି .... କିଛି ଅର୍ଥ ନାହିଁ ତାର
ମୂର୍ଖ ! ଏବେ ମଧ୍ୟ ସେତୁଟିଏ ବାଂଧି ପାରିଲାନି
ତୁମର ସେ ମହାନିଶା ମଧୁଶାଳାଟିକୁ
ତଥା ମୋର ଚିରସ୍ଥାୟୀ ଶୋଇବା ଘରକୁ ।
ଦୟାକରି ଭୁଲିଯାଅ କେବେ ମୁହିଁ ଗଳ୍ପ ରଚୁଥିଲି
ପୃଥ୍ୱୀକୁ ଆବୁରି ଏବଂ ଆକାଶକୁ ହାବେଳି ଛୁଟାଇ
ସତେକି ମୁଁ ତ୍ରିଲୋକର ସାଇଁ
ସବୁକିଛି ଜଣାଅଛି ମୋତେ
ରହସ୍ୟର ଅଂଦିକଂଦି, ଅନନ୍ତର ଅନ୍ତ

ଗୋପନୀୟ ବାର୍ତ୍ତା, ଯାହା ଶୁଣାଇଛ ମୋତେ
ସ୍ୱପ୍ନଲଭ୍ୟ ମଂଦହାସ ବଂଶୀବାଦନରେ
କେବଳ ମୋଅରି ପାଇଁ
ବିଶିଷ୍ଟ ଓ ମିଷ୍ଟ ତୁମ ଭଲ ପାଇବାରେ ।
ସବୁ ମିଛ କଥା ।
ଆତ୍ମଶଠ ଅହମିକା ମୋର
ନିଉଛୁଣା ସ୍ରଷ୍ଟାପଣିଆର ।
ସେହେତୁ ମୋ ଆକୁଳ ପ୍ରାର୍ଥନା
ଅଂଧାରଟା ଘୋଟିବା ଆଗରୁ
ଜଳେଇବି ସୁନାମୁହାଁ, ସଂଜବତୀଟିଏ ...
ଗଦ୍ୟ ନୁହେଁ, ଗଦ୍ୟ ନୁହେଁ,
ତାକୁଇ କବିତା ମୋର କୁହ ବା ନ କୁହ ।

ତେବେ ମୂଳ କବିତାଟିକୁ ଲେଖିଥିଲି ୧୯୯୩ ମସିହାରେ ଆଜିକୁ ଦଶ ବର୍ଷ ତଳେ । ଏବଂ କହିବା ବାହୁଲ୍ୟ ଯେ ଏହି ଭାବରେ ନିଜକୁ ଖଲାସ କରି ଦେଲା ପରେ ମୁଁ ଫେରିଆସିଛି ମୋର ଗଦ୍ୟପ୍ରଧାନ ସାହିତ୍ୟକୁ, ମୋ ସ୍ୱଧର୍ମ ପାଳନ କଲାପରି । ଅନ୍ୟ ଉପାୟ ନାହିଁ । ନିଜକୁ ବୋଧ ଦେଇଛି ଯେ ଯେପର୍ଯ୍ୟନ୍ତ ଏଇ ଅପୂର୍ଣ୍ଣତାର ଅବବୋଧ ଆସୁଥିବ ମୋ ମନରେ, ଯେ କାନ୍ଦଣା ପ୍ରାର୍ଥନାରେ ଜୁଡୁବୁଡୁ ସଂଜବତୀଟିଏ ଜୀବନର ଈପ୍ସିତ ଶେଷକଥା, ସେତିକି ଯଥେଷ୍ଟ । ତାହାହିଁ ପ୍ରତିଶ୍ରୁତି ଯେ ମୁଁ ଦିନେ ପହୁଂଚିବି ସେଠି । ଆଜି ନ ହେଲେ ବି' କେଉଁ ଜନ୍ମଜନ୍ମାନ୍ତରରେ, ସଂପୂର୍ଣ୍ଣ ଏବଂ ସମର୍ପିତ ହୋଇ । କିନ୍ତୁ ତା ପୂର୍ବରୁ ମୁଁ ମୋର ଏଇ ଅନୁଭୂତ ସତ୍ୟଗୁଡ଼ିକୁ ଜାଣିଶୁଣି ଫିଙ୍ଗି ଦେବି କେମିତି କହୁନାହାନ୍ତି ? ସେ ବିଷୟରେ କିଛି କହିବି ନାହିଁ ଆପଣଙ୍କୁ ?



# ସଂକ୍ଷେପରେ କିଶୋରୀ ଚରଣ

*ଡକ୍ଟର ବିଜୟାନନ୍ଦ ସିଂହ*

**ଜୀବନୀ ଓ ପାରିବାରିକ ଚିତ୍ର :**

ଜନ୍ମ - ମାର୍ଚ୍ଚ ୧, ୧୯୨୪ । ଶିବରାତ୍ରି ପୂର୍ବର 'ବଡ଼ଏକାଦଶୀ' ।

ଆଦିଭୂମି ଗ୍ରାମ - ଶୁକ୍ଳେଶ୍ୱର, ମାହାଂଗା, କଟକ ।

ଜନ୍ମସ୍ଥାନ - କଟକ ସହର, ଖଟ୍‌ବିନ୍ ସାହି

ସ୍ଥାୟୀ ନିବାସ - କଟକର ଖଟ୍‌ବିନ୍ ସାହିରେ ଥିବା 'ବିପ୍ରଚରଣ ଭବନ' ।

ଫୋନ୍ - ୨୬୦୯୩୬୦

କିଶୋରୀଚରଣ ଭୂତପୂର୍ବ ଜିଲ୍ଲାଜଜ୍ ବିପ୍ରଚରଣ ଦାସ ଓ ସୀତାମଣି ଦେବୀଙ୍କର ଜ୍ୟେଷ୍ଠ ସନ୍ତାନ । ଜନ୍ମସ୍ଥାନ କଟକରେ ହୋଇଥିଲେ ମଧ୍ୟ ବାପାଙ୍କର ବୃତ୍ତିଗତ ନିଯୁକ୍ତି ଯୋଗୁଁ ସେ ଓଡ଼ିଶାର ବିଭିନ୍ନ ସ୍ଥାନରେ ତାଙ୍କ ବାଲ୍ୟ ଓ କୈଶୋର ବିତାଇଥିଲେ ଏବଂ ଶିକ୍ଷା ଲାଭ କରିଥିଲେ, କଲେଜ୍‌ରେ ପଢ଼ିବା ପର୍ଯ୍ୟନ୍ତ । ଯଥାକ୍ରମେ ପୁରୀ, ଭଦ୍ରକ, ବାଲେଶ୍ୱର ଏବଂ କେନ୍ଦ୍ରାପଡ଼ାରେ । ୧୪ ବର୍ଷ ବୟସରେ ସେ କେନ୍ଦ୍ରାପଡ଼ା ହାଇସ୍କୁଲରୁ ପ୍ରଥମ ଶ୍ରେଣୀରେ ମାଟ୍ରିକୁଲେସନ୍ ପାସ୍ କରି, କଟକର ରେଭେନ୍‌ସା କଲେଜ୍‌ରେ ନାଆଁ ଲେଖାଇଲେ । ୧୯୪୨ ମସିହାରେ ସେ ରେଭେନ୍‌ସା କଲେଜରୁ ଇତିହାସରେ ଫାଷ୍ଟ୍ କ୍ଲାସ୍ ଅନର୍ସ୍ ଏବଂ ଇଂରାଜୀ ଓ ସଂସ୍କୃତରେ ଡିଷ୍ଟିଂକ୍‌ସନ୍ ସହ ବି.ଏ. ପାସ୍ କଲେ । ସେ ମଧ୍ୟ ସେହି ବର୍ଷ ରେଭେନ୍‌ସା କଲେଜ୍‌ର 'ବେଷ୍ଟ ଗ୍ରାଜୁଏଟ୍' ବୋଲି ଘୋଷିତ ହୋଇଥିଲେ । ମଧ୍ୟ ପାଟଣା ୟୁନିଭର୍ସିଟୀରୁ ବି.ଏ. ଓ ବି.ଏସ୍.ସି. ପାସ କରିଥିବା ସମସ୍ତ ଗ୍ରାଜୁଏଟ୍‌ଙ୍କ ମଧ୍ୟରେ ସେମାନଙ୍କ ଏଗ୍ରିଗେଟ୍ ମାର୍କ ଅନୁଯାୟୀ ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ସର୍ବୋଚ୍ଚ ସ୍ଥାନ ଅଧିକାରୀ ହୋଇଛନ୍ତି ବୋଲି ବିଶ୍ୱବିଦ୍ୟାଳୟ ତରଫରୁ ସୂଚିତ ହୋଇଥିଲା । ୧୯୪୨ ମସିହାରେ ସେ ପାଟଣାରେ ଥିବା ପାଟଣା କଲେଜ୍‌ରେ ଏମ୍.ଏ. ପଢ଼ିବାକୁ ଗଲେ । ଏବଂ ୧୯୪୪ରେ ସେ ସେଠାରୁ ଇତିହାସରେ ପ୍ରଥମ ଶ୍ରେଣୀରେ ଏମ୍.ଏ. ପାସ୍ କରି ଓଡ଼ିଶାକୁ ଫେରି ଆସିଲେ । ୧୯୪୭ରେ ସେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ନବଗଠିତ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା କଟକର ଆଇନ୍ କଲେଜରୁ ବି.ଏଲ୍. ପାସ୍ କଲେ । ସେହି ବର୍ଷ ତାଙ୍କ ଛାତ୍ରଜୀବନ ଶେଷ ହେଲା

ଏବଂ ସେ ଜୀବିକାନିର୍ବାହ ନିମନ୍ତେ ତାଙ୍କର ବୃତ୍ତିଗତ ଜୀବନ, ତଥା ଗାର୍ହସ୍ଥ୍ୟ ଜୀବନର ପଥୁକି ହେଲେ ।

**ବୃତ୍ତିଗତ ଜୀବନ :**

ଏପ୍ରିଲ୍ ୨ତାରିଖ ୧୯୪୭ରେ ସେ ଓଡ଼ିଶା ଆଡ୍‌ମିନିଷ୍ଟ୍ରେଟିଭ୍ ସର୍ଭିସ୍‌ରେ ଯୋଗ ଦେଲେ, ସିଧାସଳଖ ଡ଼େପୁଟି ମାଜିଷ୍ଟ୍ରେଟ୍ ଓ କଲେକ୍ଟର୍ ଭାବରେ ମନୋନୀତ ହୋଇ । କିନ୍ତୁ ତିନିବର୍ଷ ନ ପୂରୁଣୁ ସେ ମାର୍ଚ୍ଚ ୧୫ତାରିଖ ୧୯୫୦ ମସିହାରେ "ଇଣ୍ଡିଆନ୍ ଅଡ଼ିଟ୍ ଏଣ୍ଡ ଏକାଉଣ୍ଟସ୍ ସର୍ଭିସ୍"ରେ ଯୋଗ ଦେଲେ, ସର୍ବଭାରତୀୟ ପ୍ରତିଯୋଗିତାମୂଳକ ପରୀକ୍ଷା ଜରିଆରେ । ତା'ପରେ ବୃତ୍ତିଗତ ଆବଶ୍ୟକତା ଅନୁଯାୟୀ ତାଙ୍କୁ ଭାରତର ବିଭିନ୍ନ ସହରରେ ରହିବାକୁ ପଡ଼ିଥିଲା । ନିଜ ଅଡ଼ିଟ୍ ଡିପାର୍ଟମେଣ୍ଟର ବିଭିନ୍ନ ପୋଷ୍ଟ ତଥା ଡ଼େପୁଟେସନ୍ ସୂତ୍ରରେ ଡିପାର୍ଟ୍‌ମେଣ୍ଟ୍‌ର ବାହାରେ ଥିବା ନାନାଦି ସରକାରୀ ଏବଂ ସ୍ୱୟଂଚାଳିତ ଅର୍ଦ୍ଧସରକାରୀ ପୋଷ୍ଟ୍‌ରେ । ତେବେ କଲିକତା ଓ ଦିଲ୍ଲୀ, ଏହି ଦୁଇଟି ମହାନଗରୀରେ ସେ ତାଙ୍କ ଚାକିରୀ ଜୀବନର ବେଶି ଭାଗ, ପ୍ରାୟ କୋଡ଼ିଏ ବର୍ଷ କଟାଇଛନ୍ତି । ଭାରତ ବାହାରେ ମଧ୍ୟ ତାଙ୍କୁ କେତୋଟି ବିଶିଷ୍ଟ ଏବଂ ମର୍ଯ୍ୟାଦାସଂପନ୍ନ କାର୍ଯ୍ୟଭାର ଗ୍ରହଣ କରିବାକୁ ପଡ଼ିଥିଲା । ସେଗୁଡ଼ିକ ଏହିପ୍ରକାର :-

(୧) ୧୯୫୮ । ତତ୍‌କାଳୀନ ଦକ୍ଷିଣ ଭିଏତ୍‌ନାମର ରାଜଧାନୀ ସାଏଗନ୍‌ରେ ତିନିମାସ । 'କଲମ୍ବୋ ପ୍ଲାନ୍'ର ଆନୁକୂଲ୍ୟରେ ଜଣେ ବିଶେଷଜ୍ଞ ହିସାବରେ ସେଠିକାର ସରକାରଙ୍କୁ ସ୍ୱଳ୍ପସଂଚୟ ଯୋଜନା ବିଷୟରେ ପରାମର୍ଶ ଦେବା ପାଇଁ ।

(୨) ୧୯୬୧-୧୯୬୪ । ଯୁକ୍ତରାଷ୍ଟ୍ରର ରାଜଧାନୀ ୱାଶିଂଗ୍‌ଟନ୍ ଡିସିରେ 'ଡାଇରେକ୍ଟର୍ ଅଫ୍ ଅଡ଼ିଟ୍, ଇଣ୍ଡିଆନ୍ ଆକାଉଣ୍ଟସ୍' ପଦବୀରେ ଥାଇ, ସମଗ୍ର ଯୁକ୍ତରାଷ୍ଟ୍ର, କ୍ୟାନେଡ଼ା ଏବଂ ଦକ୍ଷିଣ ଆମେରିକାର ବିଭିନ୍ନ ଦେଶରେ ଭାରତ ସରକାରଙ୍କ ସମସ୍ତ ଆୟବ୍ୟୟର ହିସାବ ଯାଂଚ କରିବା କାମରେ ।

(୩) ୧୯୭୫-୧୯୭୭ । ଆନ୍ତର୍ଜାତିକ "କମନ୍‌ୱେଲ୍‌ଥ୍ ଫଣ୍ଡ୍ ଫର୍ ଟେକ୍‌ନିକାଲ୍ କୋପରେସନ୍" (Commonwealth Fund for Technical Co-operation)କୁ 'ଫରେନ୍ ସର୍ଭିସ୍ ଡ଼େପୁଟେସନ୍' ସୂତ୍ରରେ ଯାଇ ଦକ୍ଷିଣ ଆଫ୍ରିକାରେ ଥିବା ସ୍ୱାଜିଲ୍ୟାଣ୍ଡର ରାଜଧାନୀ ଆମ୍ବାବେନ୍ (Ababane)ରେ ଥିଲେ, ସେହି ରାଜ୍ୟରେ ଜଣେ ବିତ୍ତୀୟ ପରାମର୍ଶଦାତା ଭାବରେ ।

୧୯୮୨ ମସିହାରେ ସେ ଇଣ୍ଡିଆନ୍ ଅଡ଼ିଟ୍ ଏବଂ ଏକାଉଣ୍ଟସ୍ ସର୍ଭିସ୍‌ରୁ ଅବସର ଗ୍ରହଣ କଲେ । ସେତେବେଳେ ସେ ଏକାଉଣ୍ଟାଣ୍ଟ୍ ଜେନେରାଲ୍ ପଦବୀର ଉର୍ଦ୍ଧ୍ୱରେ ଥିବା ଭାରତର ଆଡ଼ିସନାଲ୍ ଡ଼େପୁଟି କଂପ୍‌ଟ୍ରୋଲର୍ ଏଣ୍ଡ ଅଡ଼ିଟର୍ ଜେନେରାଲ୍ (Additional

Deputy Comptroller and Auditor General of India) ଭାବରେ କାମ କରୁଥିଲେ ଏବଂ ଦିଲ୍ଲୀରେ ଥିଲେ । କିନ୍ତୁ ତା'ପରେ ମଧ୍ୟ ସେ ଦୁଇବର୍ଷ ପାଇଁ ଆସାମର ରାଜଧାନୀ ଗୌହାଟୀ ନିକଟସ୍ଥ ଯରଂଗୀରେ 'ଆସାମ ରାଜ୍ୟ ବିଦ୍ୟୁତ୍ ବୋର୍ଡ଼'ର ବିତ୍ତୀୟ ସଦସ୍ୟ ଭାବରେ କାମ କରିଥିଲେ ।

୧୯୮୫ ଏପ୍ରିଲ୍ ମାସରେ ସେ ବୃତ୍ତିଗତ ଜୀବନରୁ ସଂପୂର୍ଣ୍ଣ ଭାବରେ ଅବସର ନେଇ 'ଘର'କୁ ଫେରିଲେ । ତାଙ୍କର ଖଟ୍‌ବିନ୍ ସାହି କଟକରେ ଥିବା ପୈତୃକ ବାସଭବନକୁ । ଏବଂ ଅଦ୍ୟାବଧି ଏଇଠି ଅଛନ୍ତି, ମଝିରେ ମଝିରେ ଦେଶବିଦେଶରେ ଥିବା ପିଲାମାନଙ୍କୁ ପାଖକୁ ଯିବା ଛଡ଼ା ।

**ପାରିବାରିକ ଚିତ୍ର :**

ପତ୍ନୀ : ମେ ୬ତାରିଖ ୧୯୪୭ରେ ସେ ତୁଂଗ କଂଗ୍ରେସ ନେତା ଓ ପାର୍ଲିଆମେଣ୍ଟର ସଦସ୍ୟ ଭୁବନାନଂଦ ଦାସ ଓ ରୁକ୍ମିଣୀ ଦେବୀଙ୍କର ତୃତୀୟ ସଂତାନ କୁମାରୀ ଦେବୀଙ୍କୁ ବିବାହ କରିଥିଲେ । କୁମାରୀ ନିଜେ ଜଣେ ସୁଲେଖିକା ଏବଂ ତାଙ୍କର ଅନେକ ଗଳ୍ପ 'ଝଂକାର' ପ୍ରମୁଖ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଛି । ସେ ମଧ୍ୟ ଜଣେ ଉତ୍ସାହୀ ସମାଜସେବିକା । ଆମେରିକାରେ ଥିଲା ବେଳେ ସେ ଆମେରିକାର ରେଡ୍‌କ୍ରସ୍ ସୋସାଇଟି ତରଫରୁ ବିଭିନ୍ନ ହସପିଟାଲ୍‌ରେ ଜଣେ ଅବୈତନିକ ସହକାରୀ ନର୍ସ (Nurses Aide) ଭାବରେ କାମ କରିଥିଲେ । ସେଥିର ଅଂଗୀକାର ସ୍ୱରୂପ ସେ ସୋସାଇଟି ଠାରୁ ଗୋଟିଏ ସାର୍ଟିଫିକେଟ୍ ପାଇଛନ୍ତି । ନିକଟରେ ସେ କଟକର ଡ଼ଗରପଡ଼ାରେ ଥିବା ''ସ୍ୱାମୀ ବିଚିତ୍ରାନନ୍ଦ କଲ୍ୟାଣ ଆଶ୍ରମ''ର ଅଧ୍ୟକ୍ଷା ପଦରୁ ଅବ୍ୟାହତ ନେଇଛନ୍ତି । ତେବେ ସେହି ସଂସ୍ଥାର କାର୍ଯ୍ୟକାରିଣୀ କମିଟିର ସଦସ୍ୟ ହୋଇ ସେଥିର କାର୍ଯ୍ୟକ୍ରମ ସହିତ ଘନିଷ୍ଠ ଭାବରେ ସଂପୃକ୍ତ ହୋଇ ରହିଛନ୍ତି । ଉଲ୍ଲେଖଯୋଗ୍ୟ ଯେ ସେ ମଧ ଦିଲ୍ଲୀରେ ଥିବା ଓଡ଼ିଆ ମହିଳାମାନଙ୍କର ସାମାଜିକ ଓ କଲ୍ୟାଣମୂଳକ ସଂସ୍ଥା 'ଉତ୍କଳିନୀ'ର ଜଣେ ପ୍ରତିଷ୍ଠାତା ସଦସ୍ୟା (Founder-member) ।

**ପୁଅଝିଅ ଓ ନାତିନାତୁଣୀ :**

ଜନ୍ମ ହେବାର ଆଠମାସ ପରେ ତାଙ୍କୁ ଛାଡ଼ି ଚାଲି ଯାଇଥିବା ଗୋଟିଏ ଶିଶୁପୁତ୍ର ଛଡ଼ା ତାଙ୍କର ପାଞ୍ଚୋଟି ପୁଅଝିଅଙ୍କ ସଂସାର । ସଂକ୍ଷେପରେ ତାହା ଏହିପ୍ରକାର :

(୧) ଝିଅ ବିଦ୍ୟୁତ୍ ପଟ୍ଟନାୟକ । 'ବିଦ୍ୟୁତ୍' ନାଆଁଟିକୁ ସେ ପରେ ନିଜ ଇଚ୍ଛାରେ ଡାକ ନାଆଁ ଅନୁଯାୟୀ 'ହୀନୁ'କୁ ବଦଳାଇ ଦେଇଥିଲେ । ଜନ୍ମ ୧୯୪୮ । ସ୍ୱାମୀ କେଉଁଝରର ଗୋପାଳ ପ୍ରସାଦ ପଟନାଏକଙ୍କ ପୁଅ ନଗେନଚନ୍ଦ୍ର ପଟନାଏକ । ହୀନୁ ଇଂରାଜୀରେ ଡ଼ିଷ୍ଟିଂକ୍ସନ୍ ସହ ବି.ଏ. ପାସ୍ କଲା ପରେ ଗୋଟିଏ ଗୃହବିଜ୍ଞାନମୂଳକ ଚାରୁକଳା ଅନୁଷ୍ଠାନରୁ ଡିପ୍ଲୋମା ଲାଭ କରିଥିଲେ । ସେ ଭଲ ଛବି ଆଂକନ୍ତି ଏବଂ ଚିତ୍ରକଳା ପ୍ରତି ତାଙ୍କର ବିଶେଷ ଆଗ୍ରହ ।

ନଗେନ୍ ପଟନାଏକ, ଜଣେ କୃତୀ ଇଂଜିନିୟର୍ ଏବଂ ଏମ୍.ବି.ଏ., ଦେଶବିଦେଶରେ ବିଭିନ୍ନ ମଲ୍‌ଟି ନ୍ୟାସନାଲ୍ କଂପାନୀର ଚିଫ୍ ଏକ୍‌ଜିକିଉଟିଭ୍ ଅଫିସର୍ (CEO) ହୋଇଥିଲେ । ବର୍ତ୍ତମାନ ସକ୍ରିୟ କଂପାନୀ ଚାକିରୀରୁ ଅବସର ନେଇ ଦିଲ୍ଲୀରେ ଥିବା All India Management Association Centre for Management Educationର ଡାଇରେକ୍ଟର ଭାବରେ ନିଯୁକ୍ତ । ହରିୟାନାର ଗୁଡ୍‌ଗାଓଁରେ ନିଜ ଘରଟିଏ ତୋଳି ସେଇଠି ଅଛନ୍ତି ।

ସେମାନଙ୍କ ଦୁଇଟି ପୁତ୍ର ସନ୍ତାନ, ଅନୁରାଗ ଓ ଅଂଶୁମାନ୍ । ଅନୁରାଗ ଆମେରିକାର ବିଭିନ୍ନ ୟୁନିଭର୍ସିଟିରୁ Industrial Engineering and M.S (Master of Science) ଡିଗ୍ରୀ ଲାଭ କରି ବର୍ତ୍ତମାନ ସିକାଗୋରେ ଅଛି ଗୋଟିଏ କଂପ୍ୟୁଟର ସଫ୍‌ଟ୍‌ୱାର୍ କଂପାନୀର "Manager Business Development" ପଦବୀରେ । ଅନୁରାଗ ତବଲା ବଜାଇବାରେ ଧୁରଂଧର ଏବଂ ପ୍ରବାସୀ ଭାରତୀୟମାନଙ୍କର ସାଂସ୍କୃତିକ କାର୍ଯ୍ୟକ୍ରମରେ ମୁଖ୍ୟ ଭୂମିକା ଗ୍ରହଣ କରିଆସିଛି । ସାନଭାଇ ଅଂଶୁମାନ ମଧ୍ୟ ଆମେରିକାରୁ Chemical Engeneering ଏବଂ MS Degree ଲାଭ କରି ସାରିଲା ପରେ ଗୋଟିଏ ସଫ୍‌ଟ୍‌ୱାର୍ କଂପାନୀର Senior sales consultant ଭାବରେ କାମ କରୁଛି । ଗତବର୍ଷ ସେ ମନୀଷା କୋଠାରୀ ନାମକ ଜଣେ ସୁଶିକ୍ଷିତା ରାଜସ୍ଥାନୀ ଝିଅକୁ ବିବାହ କରିଛି । ଦିହେଁ ବର୍ତ୍ତମାନ ଆମେରିକାର ସାନ୍‌ଫ୍ରାନ୍‌ସିସ୍କୋରେ ଅବସ୍ଥିତ ।

(୨) ଝିଅ ଡ଼ଃ. ବୀଚିବାଳା ଦାସ । ଡ଼ାକ ନାଆଁ ଚିନୁ । ଜନ୍ମ ୧୯୫୧ । ଚିନୁ Delhi School of Economics ରୁ Human Geographyରେ ପ୍ରଥମ ଶ୍ରେଣୀରେ ଏମ୍.ଏ., ତାପରେ Delhi School of Planning and Architectureରୁ କୃତିତ୍ୱର ସହ Town Planningରେ ଡିପ୍ଲୋମା ଲାଭ କରିସାରିଲା ପରେ, କ୍ୟାନେଡ଼ାର ଭ୍ୟାଂକୋଭର୍‌ରେ ଥିବା University of British Columbiaରୁ ଡକ୍ଟରେଟ୍ ଡିଗ୍ରୀ ପାଇଛନ୍ତି । Scott Renyard ନାମକ ଜଣେ କ୍ୟାନେଡ଼ିଆନ୍‌କୁ ବିବାହ କରିଛନ୍ତି । ତିନୋଟି ପୁଅଝିଅ - ଶାରଦ, ଆୟେଷା ଏବଂ ଅସୀମ ସେଠିକା ସ୍କୁଲରେ ପଢ଼ନ୍ତି । ସ୍କଟ୍ ଜଣେ Film Producer । ଏବଂ ଚିନୁ ବର୍ତ୍ତମାନ ନିଜକୁ ନାନାଦି ଶିକ୍ଷାସଂସ୍କୃତିଗତ ସାମାଜିକ କାମରେ ନିୟୋଜିତ କରୁଛନ୍ତି । ଦିହେଁ ସପରିବାର କ୍ୟାନେଡ଼ାର ଭ୍ୟାଂକୋଭର୍‌ର ଉପକଣ୍ଠରେ ଥିବା ନିଉୱେଷ୍ଟମିନ୍‌ଷ୍ଟର୍ ସହରରେ ଅବସ୍ଥିତ ।

(୩) ଝିଅ ସ୍ୱର୍ଗୀୟା ବିଶ୍ୱଜିତା ଦାସ । ଜନ୍ମ ୧୯୫୩ । ବିଶ୍ୱଜିତା କଲିକତା ବିଶ୍ୱବିଦ୍ୟାଳୟରୁ ଇଂରାଜୀ ଅନର୍ସ ନେଇ ବି.ଏ. ପାସ କରିସାରିଲା ପରେ ଦିଲ୍ଲୀରେ ଥିବା Institute of Man communication and Information Technologyରୁ

ଜର୍ଣ୍ଣାଲିଜ୍‌ମ୍‌ରେ ଡିପ୍ଲୋମା ହାସଲ କରିଥିଲେ । ତାପରେ ଶିଶୁସାହିତ୍ୟ ପ୍ରତି ଆଗ୍ରହାନ୍ୱିତ ହୋଇ ପ୍ରଥମେ ଶଂକରଙ୍କର "Childrens World" ଏବଂ ପରେ "India Today"ର ସହଯୋଗୀ ପତ୍ରିକା "Target"ର ସଂପାଦନା ମଣ୍ଡଳୀରେ କାମ କଲେ । ସେ ଥିଲେ ନବ ପ୍ରତିଷ୍ଠିତ "Target" ପତ୍ରିକାର ପ୍ରଥମ ଆସିଷ୍ଟାଣ୍ଟ୍ ଏଡ଼ିଟ୍‌ର୍ । ବିଶ୍ୱଜିତା ଶିଶୁମାନଙ୍କ ପାଇଁ ଅନେକ ଗଳ୍ପ ଓ କବିତା ଲେଖି ସୁନାମ ଅର୍ଜନ କରିଥିଲେ । କିନ୍ତୁ ଗଭୀର ଦୁଃଖର ବିଷୟ, ସେ ୧୯୯୦ ମସିହାରେ ୩୭ ବର୍ଷ ବୟସରେ ଆଗ୍ରା ନିକଟରେ ଗୋଟିଏ ସଡ଼କ ଦୁର୍ଘଟଣାରେ ପ୍ରାଣ ହରାଇଲେ । ସ୍ୱାମୀ ଭୁବନେଶ୍ୱରର କେଶବାନନ୍ଦ ଦାସଙ୍କ ପୁଅ ଶୁଭ୍ରକାନ୍ତ ଦାସ, ଆର୍କିଟେକଟ୍ । ଗୋଟିଏ ଝିଅ ଗୀତି ଏବଂ ଗୋଟିଏ ପୁଅ ଅଭିଷେକଙ୍କୁ ଛାଡ଼ି ଯାଇଛନ୍ତି । ଗୀତି ବର୍ତ୍ତମାନ ଆମେରିକାର ଫିଲାଡ଼େଲ୍‌ଫିଆରେ ଥିବା Brynmoor collegeରୁ Philosophy Major ନେଇ ବି.ଏ. ପାସ କରି ସାରିଲା ପରେ ବର୍ତ୍ତମାନ ନିଉୟର୍କରେ ଥିବା New School Universityର "Faculty of Social and Political Science"ରେ ପୋଷ୍ଟଗ୍ରାଜୁଏଟ୍ ପଢ଼ା ସାରିବା ପାଇଁ ବାହାରିଛି, ୟୁନିର୍ଭସିଟୀରୁ ମିଳିଥିବା ସ୍କଲାର୍‌ଶିପ୍ ସହକାରେ । ପୁଅ ଅଭିଷେକ ଦିଲ୍ଲୀରେ ପଢୁଛି । ଶୁଭକାନ୍ତ ଗୁଡ଼୍‌ଗାଓଁରେ ଘରଟିଏ ତୋଳି ସେଇଠି ଅଛନ୍ତି ।

୧୯୯୪ ମସିହାରେ ଓଡ଼ିଶା ସରକାର 'ବିଶ୍ୱଜିତା ସ୍ମୃତି ପୁରସ୍କାର' ନାମରେ ଗୋଟିଏ ବାର୍ଷିକ ପୁରସ୍କାର ଦେବାର ଘୋଷଣା କରିଥିଲେ, ଗେଜେଟ୍ ନୋଟିଫିକେସନ୍ ଦ୍ୱାରା । ସ୍ୱାମୀ ଶୁଭ୍ରକାନ୍ତଙ୍କ ଠାରୁ ମିଳିଥିବା ପଚାଶ ହଜାର ଟଙ୍କାର ମୂଳଧନ ସାହାଯ୍ୟରେ । ପ୍ରତିବର୍ଷ ଓଡ଼ିଶାର ଜଣେ ଶ୍ରେଷ୍ଠ ବୋଲି ବିବେଚିତ ହୋଇଥିବା ଶିଶୁସାହିତ୍ୟିକଙ୍କୁ ପାଞ୍ଚହଜାର ଟଙ୍କାର ଗୋଟିଏ ପୁରସ୍କାର ଦିଆଯାଏ, ''ଶିଶୁ ସାହିତ୍ୟ ସମିତି'' ଜରିଆରେ । ସମିତିର ଦୁରବସ୍ଥା ହେତୁ ପୁରସ୍କାରଟି ମଝିରେ କେତୋଟି ବର୍ଷ ଦିଆଯାଇ ପାରିନଥିଲା । କିନ୍ତୁ ଏହିବର୍ଷ ଠାରୁ ତାକୁ ପୁଣି ଚାଲୁ କରିବାର ବ୍ୟବସ୍ଥା କରାଯାଇଛି ।

(୪) ଝିଅ ବିଦ୍ୟା ଦାସ । ଜନ୍ମ ୧୯୫୫ । ବିଦ୍ୟା ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ଇଂରାଜୀରେ ଏମ୍.ଏ. ଓ ତାପରେ କୃତିତ୍ୱର ସହ ଏମ୍.ଫିଲ୍ ପାସ୍ କଲା ପରେ ଦିଲ୍ଲୀରେ ଥିବା Gargi Womens' Collegeରେ ଜଣେ ଅଧ୍ୟାପିକା ହୋଇଅଛନ୍ତି । ବର୍ତ୍ତମାନ ସେ କଲେଜ୍‌ର ଇଂରାଜୀ ଡ଼ିପାର୍ଟମେଣ୍ଟ୍‌ର ରିଡ଼ର୍ ପାହ୍ୟାରେ ଅଛନ୍ତି । ସ୍ୱାମୀ କେଓ୍ୱଲ୍ ଅରୋରା ମଧ୍ୟ ଜଣେ ଅଧ୍ୟାପକ । ଦିଲ୍ଲୀର କେ.ଏମ୍. କଲେଜର ଇଂରାଜୀ ଡିପାର୍ଟ୍‌ମେଣ୍ଟର ରିଡ଼ର୍ ପାହ୍ୟାରେ ଅଛନ୍ତି । ବିଦ୍ୟା ନିକଟରେ ଦିଲ୍ଲୀର ''ସୃଷ୍ଟି'' ପ୍ରକାଶନ ସଂସ୍ଥା ତରଫରୁ "Great writer's Oriya stories" ନାମରେ ପ୍ରକାଶିତ ସଂକଳନର ସଂପାଦନା କରିଥିଲେ । ମଳୟ

ନାମକ ଗୋଟିଏ ପୁଅ । ସେ ବର୍ତ୍ତମାନ 'ପ୍ଲସ୍-ଟୁ' ପଢୁଛି । ସେମାନେ ଦିଲ୍ଲୀ ଉପକଣ୍ଠରେ ଥିବା ନଏଡ଼ା (Noida)ରେ ଘରଟିଏ ତୋଳି ସେଇଠି ଅଛନ୍ତି ।

(୫) ପୁଅ ଅଂଜନି କୁମାର ଦାସ । ଡ଼ାକନାଆଁ ଧୀରୁ । ଜନ୍ମ ୧୯୫୭ । କେତୋଟି ବର୍ଷ ଲାଇଫ୍ ଇନ୍‌ସିଓରାନ୍‌ସ୍ କର୍ପୋରେସନ୍‌ର Career Agent ଭାବରେ କାମ କଲା ପରେ ସେ ନାନାଦି ଶିକ୍ଷସଂସ୍ଥା ତରଫରୁ ଲୋକସଂପର୍କ ଓ ମାର୍କେଟିଂଗ୍ କାମରେ ଅଛନ୍ତି । ପତ୍ନୀ ମେଜର୍ ଜେନେରାଲ୍ ଜେ.ପି. ଶର୍ମାଙ୍କ ଝିଅ ନିଶା । ନିଶା ମଧ୍ୟ ଗୋଟିଏ ପୋଷାକପତ୍ର ଏକ୍‌ସ୍‌ପୋର୍ଟ୍ କଂପାନୀରେ କାମ କରନ୍ତି । ସେମାନେ ବର୍ତ୍ତମାନ ନଏଡ଼ାରେ ଅଛନ୍ତି । ଗୋଟିଏ ପୁଅ ପ୍ରଣୟ । ସେ ବର୍ତ୍ତମାନ Delhi College of Arts and Commerceରେ ଜର୍ଣ୍ଣାଲିଜ୍‌ମ୍‌ରେ ଅନର୍ସ୍ ନେଇ ବି.ଏ. ପଢୁଛି । ଛବିଅଂକାରେ ବିଶେଷ ସଉକ୍ ଏବଂ ସେ ଦିଗରେ କେତେକ ପୁରସ୍କାର ମଧ୍ୟ ମିଳିଛି ତାକୁ । ମଧ୍ୟ ଗିଟାର ବଜାଇବାରେ ହଜେଇ ଦିଏ ନିଜକୁ । ବର୍ତ୍ତମାନ ସେ ଦିଲ୍ଲୀର "Thaumahope" ନାମକ ଗୋଟିଏ 'ପପ୍' ଗାନବଜଣା ଗ୍ରୁପ୍‌ର ମୁଖ୍ୟର ମୁଖ୍ୟ ଗିଟାର୍ ବାଦକ । ସେ ମଧ୍ୟ AIESEC (International Intership programme) ନାମକ ଗୋଟିଏ ଆନ୍ତର୍ଜାତିକ ଯୁବସଂସ୍ଥାର ସଭ୍ୟ ଓ ବର୍ତ୍ତମାନ ତା'ର ଦିଲ୍ଲୀ ଶାଖାର ଅଧ୍ୟକ୍ଷ ଭାବରେ ମନୋନୀତ ହୋଇଛି ।

କିଶୋରୀ ଚରଣଙ୍କ ଉପରୋକ୍ତ ବ୍ୟକ୍ତିଗତ ଜୀବନ କେଉଁ ଭାବରେ ତାଙ୍କ ଆଜୀବନ ସାହିତ୍ୟ ସାଧନା ସହିତ ସଂଶ୍ଳିଷ୍ଟ ତାର ବିଶଦ ବିବରଣୀ ସେ ତ ବାଢ଼ି ଦେଇଛନ୍ତି ତାଙ୍କ ଆତ୍ମଜୀବନୀ 'ସମୟ ନାହିଁ'ରେ । ଏଠି ସଂକ୍ଷେପରେ କେବଳ ଏତିକି କହିଲେ ହେବ ଯେ ସେ ବର୍ତ୍ତମାନ ସୁଦ୍ଧା ଓଡ଼ିଆରେ ସାତଗୋଟି ଉପନ୍ୟାସ, କୋଡ଼ିଏଟି ଗଳ୍ପ ସଂକଳନ, ସାତୋଟି ପ୍ରବଂଧ ସଂକଳନ, ଦୁଇଟି କବିତା ସଂକଳନ ଏବଂ ଦୁଇଟି ଅନୁବାଦ ପ୍ରବନ୍ଧ ପ୍ରକାଶ କରିଛନ୍ତି । ତାଙ୍କର ଅନେକ ଗଳ୍ପ ମଧ୍ୟ ଇଂରାଜୀ, ବିଭିନ୍ନ ଭାରତୀୟ ଭାଷା ଏବଂ କେତୋଟି ରୁଷୀୟ, ସ୍ପାନିଶ୍, ଫରାସୀ ଓ ଆରବୀୟ ଭାଷାରେ ଅନୁଦିତ ହୋଇ ପ୍ରକାଶ ପାଇଛି । ଇଂରାଜୀରେ ମଧ୍ୟ ଅନେକ କିଛି ଲେଖିଛନ୍ତି, ବିଶେଷତଃ କବିତା, ଯାହା ବିଭିନ୍ନ ସର୍ବଭାରତୀୟ ପତ୍ରପତ୍ରିକାରେ ପ୍ରକାଶ ପାଇଛି । ଦେଶବିଦେଶର ବିଭିନ୍ନ ସ୍ଥାନରେ ରହି ସେ ନାନାଦି ସାହିତ୍ୟିକ କାର୍ଯ୍ୟକ୍ରମରେ ନିଜକୁ ବ୍ୟାପୃତ କରି ଆସିଛନ୍ତି । ୧୯୯୪ରୁ ୧୯୯୭ ପର୍ଯ୍ୟନ୍ତ ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି ଥିଲେ । ତାଙ୍କ ଲେଖନୀ ଅଦ୍ୟାବଧି ସକ୍ରିୟ ।



# ବିବିଧ କୃତି

## ଉପନ୍ୟାସ

| | | | |
|---|---|---|---|
| ୧. | ସାତୋଟି ଦିନର ସତୀ | ବିଦ୍ୟାପୁରୀ, କଟକ | ୧୯୯୩ |
| ୨. | ନେତା ଓ ନେତ୍ରମଣି | ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକ | ୧୯୯୬ |
| ୩. | ସକଳ ସଂତାନ | ବିଦ୍ୟାପୁରୀ, କଟକ | ୧୯୯୫ |
| ୪. | ସ୍ୱର୍ଗସୀମା | ଫ୍ରେଣ୍ଡସ୍ ପବ୍ଲିସର୍ସ, କଟକ | ୧୯୯୮ |
| ୫. | ବିଦେଶିନୀ | ବିଦ୍ୟାପୁରୀ, କଟକ | ୨୦୦୦ |
| ୬. | ତୁମ ଆମ ଶତାବ୍ଦୀ | ଫ୍ରେଣ୍ଡସ୍ ପବ୍ଲିସର୍ସ, କଟକ | ୨୦୦୨ |
| ୭. | ଶେଷ ଅଂକ, ପ୍ରଥମ ଦୃଶ୍ୟ | ବିଦ୍ୟାପୁରୀ, କଟକ | ୨୦୦୩ |

## ଗଳ୍ପ

**ପ୍ରକାଶିତ ଗଳ୍ପ ସଂକଳନ :**

| | | | |
|---|---|---|---|
| ୧. | ଭଂଗା ଖେଳଣା | ବିକାଶ ପ୍ରତିଷ୍ଠାନ, ଜୟପୁର (କୋରାପୁଟ) | ୧୯୬୧ |
| ୨. | ଲକ୍ଷବିହଂଗ | ଜଗନ୍ନାଥ ରଥ, କଟକ | ୧୯୬୮ |
| ୩. | ଘରବାହୁଡ଼ା | କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍, କଟକ | ୧୯୬୮ |
| ୪. | ମଣିହରା | ଲାର୍କ୍ ବୁକ୍ସ୍, କଟକ | ୧୯୭୦ |
| ୫. | ଠାକୁର ଘର | କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍ସ, କଟକ | ୧୯୭୫ |
| ୬. | ନାଲି ଗୁଲୁଗୁଲୁ ସାଧବବୋହୂ | ଗ୍ରନ୍ଥ ମନ୍ଦିର, କଟକ | ୧୯୭୮ |
| ୭. | ଗମନ | ଫ୍ରେଣ୍ଡସ୍ ପବ୍ଲିସର୍ସ, କଟକ | ୧୯୮୦ |
| ୮. | ଖେଳର ନାଆଁ ରଂଗ | ଗ୍ରନ୍ଥ ମନ୍ଦିର, କଟକ | ୧୯୮୨ |
| ୯. | ଭିନ୍ନ ପାଉଁଶ | ଓଡ଼ିଶା ବୁକ୍ ଷ୍ଟୋର୍, କଟକ | ୧୯୮୪ |
| ୧୦. | ଶୀତ ଲହରୀ | ଫ୍ରେଣ୍ଡସ୍ ପବ୍ଲିସର୍ସ, କଟକ | ୧୯୮୬ |
| ୧୧. | ତ୍ରୟୋବିଂଶ ମୃତ୍ୟୁ | ଓଡ଼ିଶା ବୁକ୍ ଷ୍ଟୋର୍, କଟକ | ୧୯୮୭ |
| ୧୨. | ଲେଉଟାଣି | ଫ୍ରେଣ୍ଡସ୍ ପବ୍ଲିସର୍ସ, କଟକ | ୧୯୮୯ |
| ୧୩. | ନିଜ ସଂଜ | ବିଦ୍ୟାପୁରୀ, କଟକ | ୧୯୯୨ |
| ୧୪. | ଧବଳ ଆକାଶ | ଓଡ଼ିଶା ଲେଖକ ସମବାୟ ସମିତି ଭୁବନେଶ୍ୱର | ୧୯୯୪ |

| | | | |
|---|---|---|---|
| ୧୫. | ଥରୁଟିଏ | ଦିବ୍ୟଦୂତ ପ୍ରକାଶନୀ, କଟକ | ୧୯୯୭ |
| ୧୬. | ତରଂଗ | ଆର୍ଯ୍ୟ ପ୍ରକାଶନୀ, କଟକ | ୧୯୯୭ |
| ୧୭. | ଶେଷଗଳ୍ପ | ଫ୍ରେଣ୍ଡ୍ସ୍ ପବ୍ଲିସର୍ସ୍, କଟକ | ୨୦୦୦ |
| ୧୮. | ପରଦା ତଳେ ଏବଂ ଅନ୍ୟାନ୍ୟ ଗଳ୍ପ | ଓଡ଼ିଶା ବୁକ୍ ଷ୍ଟୋର୍, କଟକ | ୨୦୦୨ |
| ୧୯. | ଶାନ୍ତ ଅପରାହ୍ନ | ବିଦ୍ୟାପୁରୀ, କଟକ | ୨୦୦୨ |
| ୨୦. | ନିଆଁ | ଲାର୍କ ବୁକ୍ସ୍, ଭୁବନେଶ୍ୱର | ୨୦୦୪ |

ଲେଖକଙ୍କର ଅଦ୍ୟାବଧି ପ୍ରକାଶିତ ଗଳ୍ପର ସର୍ବମୋଟ ସଂଖ୍ୟା - ୨୧୯

ସେଥିମଧ୍ୟରୁ ଗଳ୍ପ ସଂକଳନରେ ସଂଗୃହୀତ ଗଳ୍ପର ସର୍ବମୋଟ ସଂଖ୍ୟା - ୨୧୪

**ବିଭିନ୍ନ ସଂକଳନରେ ସ୍ଥାନିତ ହୋଇଥିବା ଗଳ୍ପ :**

| | ସଂଗୃହୀତ ଗଳ୍ପ | ସଂକଳନ | ପ୍ରକାଶକ ଓ ପ୍ରକାଶ କାଳ |
|---|---|---|---|
| ୧. | ବିଧର୍ମୀ | ଗଳ୍ପ ବିଚିତ୍ରା (ସଂପାଦନା - ମହାପାତ୍ର ନୀଳମଣି ସାହୁ) | କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍, କଟକ, ୧୯୬୮ |
| ୨. | ବିଧର୍ମୀ | ଆଜିର ଗଳ୍ପ (ସଂପାଦନା - ଡଃ. ରତ୍ନାକର ଚଇନି) | ସାହିତ୍ୟ ସଂଗ୍ରହ ପ୍ରକାଶନ, କଟକ, ୧୯୭୨ |
| ୩. | ଭଂଗା ଖେଳଣା | ଓଡ଼ିଆ ଗଳ୍ପମାଳା (ସଂପାଦନା - ପଠାଣି ପଟ୍ଟନାଏକ) | ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ଇଣ୍ଡିଆ, ନୂଆଦିଲ୍ଲୀ, ୧୯୭୩ |
| ୪. | ପରିଚୟ | ଗଳ୍ପ : ଆଜି ଓ କାଲିର (ସଂପାଦନା - ବଂଶୀଧର ଷଡ଼ଙ୍ଗୀ) | ବିଦ୍ୟାମନ୍ଦିର, କଟକ ୧୯୭୬ |
| ୫. | ଠାକୁରଘର | ସାଂପ୍ରତିକ କାହାଣୀ (ସଂପାଦନା - ନିମାଇଁ ପଟ୍ଟନାୟକ) | ପ୍ରତିଭା ପ୍ରକାଶନୀ, କଟକ ୧୯୭୮ |
| ୬. | ଘରବାହୁଡ଼ା | କାହାଣୀ, ଆଜି ଓ କାଲିର | ଫ୍ରେଣ୍ଡ୍ସ୍ ପବ୍ଲିସର୍ସ୍, କଟକ, ୧୯୭୯ |
| ୭. | ଭିନ୍ନ ପାଉଁଶ | ଗଳ୍ପ କୋଣାର୍କ : ଦ୍ୱିତୀୟ ପାହାଚ (ସଂପାଦନା - ସୁବୋଧ ଦାସ) | ଓଡ଼ିଶା ବୁକ୍ ଷ୍ଟୋର୍, କଟକ ୧୯୮୨ |
| ୮. | ଚଳନ୍ତା ଗାଡ଼ି | ଗଳ୍ପ - ଏକାଙ୍କିକା ମାଳା | ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଭୁବନେଶ୍ୱର, ୧୯୮୩ |
| ୯. | ସଂଗୀତାର ବାପା | ଶ୍ରେଷ୍ଠ ଓଡ଼ିଆ ସଂକଳନ (ସଂପାଦନା ମହାପାତ୍ର ନୀଳମଣି ସାହୁ) | ଓଡ଼ିଶା ସାହିତ୍ୟ ଏକାଡ଼େମୀ ଭୁବନେଶ୍ୱର, ୧୯୮୫ |

| | | | |
|---|---|---|---|
| ୧୦. | ସୁଡ଼ଂଗ | ଅଣୁରେ ଅଣୁରେ କୋଳାହଳ | ସମାସ ପ୍ରକାଶନୀ, ସମ୍ବଲପୁର, ୧୯୮୭ |
| ୧୧. | ତ୍ରୟୋବିଂଶ ମୃତ୍ୟୁ | ସାରୋଳ କଥାଚରିତ (ସଂପାଦନା : ସାରଳା ସାହିତ୍ୟ ସଂସଦ) | ଓଡ଼ିଶା ବୁକ୍ ଷ୍ଟୋର, କଟକ, ୧୯୮୭ |
| ୧୨. | ମଣିହରା | ସାଂପ୍ରତିକ ଓଡ଼ିଆ କ୍ଷୁଦ୍ରଗଳ୍ପ (ସଂପାଦନା - ଶରତ ଚନ୍ଦ୍ର କର) | ବିଜୟ ବୁକ୍ ଷ୍ଟୋର୍, ବ୍ରହ୍ମପୁର(ଗଞ୍ଜାମ) ୧୯୮୭ |
| ୧୩. | କଳା କୋଇଲି | ଆମ ସମୟର କାହାଣୀ (ସଂପାଦନା - ଡଃ. ବୈଷ୍ଣବ ଚରଣ ସାମଲ) | ଫ୍ରେଣ୍ଡସ୍ ପବ୍ଲିସର୍ସ୍, କଟକ, ୧୯୮୯ |
| ୧୪. | ନିଃସଂଗର ସ୍ୱର୍ଗ | ସାରୋଳ କଥାକଲ୍ଲୋଳ (ସଂପାଦନା - ସାରଳା ସାହିତ୍ୟ ସଂସଦ) | ଓଡ଼ିଶା ବୁକ୍ ଷ୍ଟୋର୍, କଟକ, ୧୯୯୦ |
| ୧୫. | ବିଧର୍ମୀ | କଥାକଦମ୍ବ (ସଂପାଦନା ଡଃ. ଆଶୁତୋଷ ପଟ୍ଟନାଏକ ଓ ଡଃ. ଦୁର୍ଗାମାଧବ ନନ୍ଦ) | ତାରାତାରିଣୀ ପୁସ୍ତକାଳୟ ବ୍ରହ୍ମପୁର (ଗଞ୍ଜାମ) ୧୯୯୨ |
| ୧୬. | କାଠଘୋଡ଼ା | ଜୀବନକଥା | ଜୀବନରଂଗ ସଂପାଦନା ପରିଷଦ, କଟକ,୧୯୯୨ |
| ୧୭. | କୋକୁଆ ଭୟର ଶେଷକଥା | ଅଚ୍ୟୁତାନନ୍ଦ କଥାସରିତ (ସଂପାଦନା - ସାରଳା ସାହିତ୍ୟ ସଂସଦ) | ଓଡ଼ିଶା ବୁକ୍ ଷ୍ଟୋର୍, କଟକ, ୧୯୯୩ |
| ୧୮. | କଳା କୋଇଲି | ଗଳ୍ପ : ସେଯୁଗ ଓ ଏଯୁଗ (ସଂପାଦନା - ଡଃ. ନାରାୟଣ ସାହୁ) | ଆଲୋଚନାସାହିତ୍ୟ ସଂଗ୍ରହ ପ୍ରକାଶନ କଟକ, ୧୯୯୪ |
| ୧୯. | ଜାଳେଣି | ନିର୍ବାଚିତ ଓଡ଼ିଆ ଗଳ୍ପ (ସଂପାଦନା - ଅନ୍ନଦା ପ୍ରସାଦ ରକ୍ଷିତ ଓ ରଘୁନାଥ ମହାପାତ୍ର) | ଓଡ଼ିଶା ଲେଖକ ସମବାୟ ସମିତି, ଭୁବନେଶ୍ୱର, ୧୯୯୬ |
| ୨୦. | ସତୀଦାହ | ଶିବ କଥା କଳ୍ପନା (ସଂପାଦନା - ସାରଳା ସାହିତ୍ୟ ସଂସଦ) | ଓଡ଼ିଶା ବୁକ୍ ଷ୍ଟୋର୍, କଟକ, ୧୯୯୭ |
| ୨୧. | ଠାକୁରଘର | ଶତାବ୍ଦୀର ଗଳ୍ପଶତକ (ସଂପାଦନା - ଡଃ. ବିଜୟାନନ୍ଦ ସିଂହ ଓ ନିରଂଜନ ସାହୁ) | ଓଡ଼ିଶା ବୁକ୍ ଷ୍ଟୋର୍, କଟକ, ୧୯୯୯ |
| ୨୨. | ଭଂଗା ଖେଳଣା | ଆମ ସମୟର ସ୍ୱନିର୍ବାଚିତ ଶ୍ରେଷ୍ଠକଥା (ସଂପାଦନା - ଦେବବ୍ରତ ମଦନରାୟ) | ନବଲିପି ପ୍ରକାଶଧାରା, ଭୁବନେଶ୍ୱର, ୨୦୦୦ |
| ୨୩. | ଶାନ୍ତ ଅପରାହ୍ନ | କଥା କାହାଣୀ (ସଂପାଦନା - ସାରଳା ସାହିତ୍ୟ ସଂସଦ) | ଓଡ଼ିଶା ବୁକ୍ ଷ୍ଟୋର୍, କଟକ, ୨୦୦୦ |

## ଅନୂଦିତ ଗଳ୍ପ

### (କ) ଲେଖକଙ୍କର ଯେଉଁ ସମସ୍ତ ଗଳ୍ପ ଅନ୍ୟାନ୍ୟ ଭାଷାରେ ଅନୂଦିତ ହୋଇ ବିଭିନ୍ନ ପତ୍ରପତ୍ରିକା ଏବଂ ଗଳ୍ପ ସଂକଳନରେ ପ୍ରକାଶିତ ହୋଇଛି, ତା'ର କ୍ରମିକସୂଚୀ

### (i) ଇଂରାଜୀ (ସଂକଳନ)

| ଗଳ୍ପ | ସଂକଳନ | ପ୍ରକାଶନ ସୂଚୀ |
|---|---|---|
| ୧. Red Evening (ଗୋଟିଏ ଲାଲ୍ ସଂଧ୍ୟା) | New writing in India (Edited by Adil Jussawallah) Translated by the author | Penguin Books, U.K. 1974 |
| ୨. A Crimson Evening (ଗୋଟିଏ ଲାଲ୍ ସଂଧ୍ୟା) | Modern Short Stories (Edited by Ganeswar Mishra) Translated by Ms. Prajna Paramita | Cuttack Student's Store, Cuttack 1974 |
| ୩. Godless (ବିଧର୍ମୀ) | Modern Indian short stories Vol. IV Edited by Kishori charan Das Translated by the author | Indian Council of Cultural Relations New Delhi, 1983 |
| ୪. The Hundred sons (ଶହେପୁଅ) | Oriya short stories (Edited by J.P. Das) Translated by the author | Vikas Publishing House, New Delhi, 1983 |
| ୫. Death of an Indian (ଆମରି ଭିତରୁ ଜଣେ) | Contemporary Indian Short Stories, Series III Translated by the author | Sahitya Akademi, New Delhi, 1988 |
| ୬. The Twentythird Death (ତ୍ରୟୋବିଂଶ ମୃତ୍ୟୁ) | Stories from Sarala's Mahabharat Edited & Translated by Prafulla Kr. Mohanty | Vikas Publishing House, New Delhi, 1989 |
| ୭. The Twentythird Death (ତ୍ରୟୋବିଂଶ ମୃତ୍ୟୁ) | Prachi (A Literary Digest of Eastern Indian Languages Translated by the author | Sahitya Akademi, New Delhi, 1992 |
| ୮. The Visitor (ଅତିଥି) | Modern Indian Literature Vol. II - Fiction Chief Editor - K.M. George Translated by K.K. Mohapatra & Leelawati Mohapatra | Sahitya Akademi, New Delhi, 1988 |

| | | |
|---|---|---|
| ୯. The Midnight Moon (ଜହ୍ନଲେଣି) | Beyond the Roots (Anthology of Oriya Short Stories - Compiled and edited by Kishori Charan Das) Translated by the author | National Book Trust India,New Delhi, 1996 |
| ୧୦. The Dark Mist (କଳା କୁହୁଡ଼ି) | Prachi (A Literary Digest of Eastern Indian Languages 88-89 Translated by the author | Sahitya Akademi, New Delhi, 1997 |
| ୧୧. Dispossessed (ମଣିହରା) | The Harper Collins Book of Short Stories (Edited by K.K. Mohapatra, Leelawati Mohapatra & Sudhansu Mohanty Translated by K.K. Mohapatra & Leelawati Mohapatra | Harper Collins Publishers India Private Ltd. New Delhi, 1998 |
| ୧୨. Visitor (ଅତିଥି) | "Knit India Through Literature Vol-II (East) (Edited by Ms. Sivasankari) Translated by K.K. Mohapatra & Leelawati Mohapatra | East West Books Pvt. Ltd., Chennai 2000 |
| ୧୩. Sarama's Romance (ସରମାର ରୋମାନ୍ସ) | Same sex love in India (Edited by Ruth Vanita and Saleem Kidwai) Translated by Sumanya Satpathy | St. Martin's press New york, 2000 |
| ୧୪. Godless (ବିଧର୍ମୀ) ୧୫. Hundred Sons (ଶହେପୁଅ) ୧୬. Sarama's Romance (ସରମାର ରୋମାନ୍ସ) | Great writers : Oriya Stories Edited by Vidya Das Sls. 14 and 15 translated by the author and 16 by Sumanya Satpathy | Srushti Publishers and Distributors New Delhi, 2000 |
| ୧୭. Love, Fear and Marigold flowers (ଭୟ, ପ୍ରେମ, ଗେଣ୍ଡୁଫୁଲ ଇତ୍ୟାଦି) | Quiet flows the Mahanandi (Anthology of stories by award wining authors in English) Translated by author | Orissa Sahitya Akademi, 2000 |

| | | |
|---|---|---|
| ୧୮. Death of an Indian (ଆମରି ଭିତରୁ ଜଣେ) | Our Favourite Indian stories by Khuswant Singh and Neelam Kumar Translated by author | Jaico Publishing House, Mumbai, 2001 |
| ୧୯. The Train (ଡ଼ାକଗାଡ଼ି) | Anatomy of Madness and Other Stories Translated by Subash Khuntia | Prafulla Pathagar Publication, Jagatshingpur (Orissa) 2003 |
| ୨୦. I Can (ମୁଁ ପାରିବି) | A Bunch of short stories by Prof. Netranand Pujari Translated by Netranand Pujari | Pujari Publications Bargarh (Orissa) 2003 |
| ୨୧. Night Dogs (ରାତି କୁକୁର) | Ants, Ghosts and Whispering Trees (An Anthology of Oriya Short Stories) Edited & Translated by Paul St. Piene, Leelawati Mohapatra K.K. Mohapatra | Harper Collins 2003 |
| ୨୨. The Visitor (ଅତିଥି) | Indian writers series Kishori Charan Das Stories Translated by Paul St. Piene, Leelawati Mohapatra K.K. Mohapatra Published by Gross Roots, Bhubaneswar, 2004 | |
| ୨୩. Dispossessed (ମଣିହରା) | Indian writers series Kishori Charan Das Stories Translated by Paul St. Piene, Leelawati Mohapatra K.K. Mohapatra Published by Gross Roots, Bhubaneswar, 2004 | |

| | | |
|---|---|---|
| ୨୪. Night Dogs (ରାତି କୁକୁର) | Indian writers series<br>Kishori Charan Das Stories<br>Translated by<br>Paul St. Piene,<br>Leelawati Mohapatra<br>K.K. Mohapatra<br>Published by Gross Roots, Bhubaneswar, 2004 | |

## ii) ଇଂରାଜୀ (ପତ୍ରପତ୍ରିକା)

| ଗଳ୍ପ | ପତ୍ରପତ୍ରିକା | ପ୍ରକାଶନ ସୂଚୀ |
|---|---|---|
| ୧. Million Birds (ଲକ୍ଷ ବିହଂଗ) | Bhubaneswar Review<br>(Edited by Sitakanta Mohapatra<br>& Jitendra Mohan Mohanty | Winter 1968-69 |
| ୨. A Million Birds (ଲକ୍ଷ ବିହଂଗ) | Times of India Weekly<br>Short Story Special<br>Translated by the Author<br>(Edited : Sham Lal) | Bennet Colman & Co<br>May 6 1973 |
| ୩. Death of an Indian (ଆମରି ଭିତରୁ ଜଣେ) | Debonair<br>(Edited by Vinod Mehta)<br>Translated by the author | September 1975 |
| ୪. The Egg (ଅଣ୍ଡା) | Minimax<br>(Edited & Published by<br>Durgadas Mukhopadhaya)<br>Translated by the author | July 1978 |
| ୫. Bombing (ବୋମା ପଡ଼ିବ) | Expression India, Cuttack<br>(Edited by Creations, Cuttack)<br>Translated by Bijay Ku. Sahu | 1979 |
| ୬. Hundred Sons (ଶହେ ପୁଅ) | Indian Horizons<br>Vol. XXX Nov. 3, 1981<br>Translated by the author | Indian Council of<br>Cultural Affairs,<br>Delhi, Nov. 1981 |
| ୭. Dogs of the Night (ରାତିକୁକୁର) | Keynote, Bombay<br>(Edited by Mohan Shetty)<br>Translated by the author | Issue No. 2<br>Apirl 1982 |
| ୮. I can make it (ମୁଁ ପାରିବି) | Indian literature<br>Translated by Ashok Ku. Das | Sahitya Akademy<br>New Delhi<br>March-April 1983 |

| | | | |
|---|---|---|---|
| ୯. | A present for Mummy (ଲକ୍ଷ ବିହଂଗ) | India Literature Translated by K.K. Mohapatra & Leelawati Mohapatra | Sahitya Akademy New Delhi March-April 1985 |
| ୧୦. | Revenge (ଜିଘାଂସା) | Point-Counterpoint Translated by K.K. Mohapatra & Leelawati Mohapatra | Published by Pratikshan Pvt. Ltd. Calcutta Sept.-Oct. 1985 |
| ୧୧. | Waiting for Bombing (ବୋମା ପଡ଼ିବ) | Setu Vol.I. No.3 1985 Translated by K.K. Mohapatra & Leelawati Mohapatra | Dept. of English M.S. University Baroda, 1985 |
| ୧୨. | Godless (ବିଧର୍ମୀ) | Sentinel, Gauhati Edited by D.N. Bezbaruah Translated by the author | 15th June 1986 |
| ୧୩. | The Atheist (ବିଧର୍ମୀ) | The Heritage, Madras Edited by Manoj Das Translated by K.K. Mohapatra & Leelawati Mohapatra | March 1987 |
| ୧୪. | The Midnight Moon (ଜାଲେଣି) | The Indian Literary Review Edited by Devendra Kohli & Surendra Kohli Translated by the author | Oct. 1987 |
| ୧୫. | Cold Waves (ଶୀତ ଲହରୀ) | Indian Literature Translated by the author | Sahitya Akademy May-June 1988 |
| ୧୬. | The Tunnel (ସୁଡ଼ଂଗ) | Sun Times, Bhubaneswar Edited by Soumya Ranjan Patnaik Translated by the author | Dec. 4, 1988 |
| ୧୭. | The Bombing (ବୋମା ପଡ଼ିବ) | Sun Times, Bhubaneswar Edited by Soumya Ranjan Patnaik Translated by Bijay Ku. Sahu | Jan 28, 1990 |
| ୧୮. | The Atheist (ବିଧର୍ମୀ) | Eastern Times, Cuttack Translated by K.K. Mohapatra & Leelawati Mohapatra Edited by Soumya Ranjan Patnaik | Jan 31-Feb 6, 1993 |
| ୧୯. | The Hundred sons (ଶହେ ପୁଅ) | Orissa Reference Annual Translated by the author Edited by Sushil kr. Patnaik | 1993 |

| | | |
|---|---|---|
| ୨୦. I can | Eastern Times, Cuttack | Sept 11-17, 1994 |
| (ମୁଁ ପାରିବି) | Translated by Netrananda Pujari | |
| ୨୧. A story for Munu | Revoluations, Cuttack | 1995 |
| (ମୁନୁ ପାଇଁ ଗପଟିଏ) | Trans- by the author | |
| | Edited by Arun Mohanty | |
| ୨୨. Beyond Chastity | Translated by the author | |
| (ସତୀ ଚରିତା ମୃତ) | Published in "Pioneer" | |
| | Daily Published from Delhi | 21 May 2001 |
| ୨୩. A Wife's Love | Translated by the author | |
| (ପତ୍ନୀଙ୍କ ପ୍ରେମ) | Published in "Pioneer" | |
| | Daily Published from Delhi | 27 May 2001 |

ବି.ଦ୍ର. - ଲେଖକଙ୍କର ସମସ୍ତ ଇଂରାଜୀ ଗଳ୍ପର ସଂଖ୍ୟା ଏହି ପ୍ରକାର :

ମୌଳିକ ଇଂରାଜୀ ଗଳ୍ପ - ୪

ଅନୂଦିତ ଇଂରାଜୀ ଗଳ୍ପ - ୭୭

ଏଥିମଧ୍ୟରୁ ୭୦ ଗୋଟି ଗଳ୍ପ ଉପରଲିଖିତ ସଂକଳନ, ପତ୍ରପତ୍ରିକା ଏବଂ ୫ଗୋଟି ଇଂରାଜୀ ଗଳ୍ପ ସଂଗ୍ରହରେ ପ୍ରକାଶ ପାଇଛି । ଅବଶିଷ୍ଟ କେତୋଟି ପ୍ରକାଶ ଅପେକ୍ଷାରେ ।

**iii) ହିନ୍ଦୀ (ଉପନ୍ୟାସ)**

Saat Din ki Sati - Alekh Prakashan, Delhi (ଶ୍ରୀନିବାସ ଉଦ୍‌ଗାତାଙ୍କ ଦ୍ୱାରା ରଚିତ ଲେଖକଙ୍କର 'ସାତୋଟି ଦିନର ସତୀ' ଉପନ୍ୟାସର ହିନ୍ଦୀ ରୂପାନ୍ତର) । ୨୦୦୪

**iv) ହିନ୍ଦୀ (ସଂକଳନ)**

| | | |
|---|---|---|
| ୧. Toote Khilaune | Katha - Bharati | National Book Trust |
| (ଭଂଗା ଖେଳଣା) | Oriya Kahaniyan | India, New Delhi |
| | Edited by Palhani Pattanaik | 1975 |
| ୨. Tewisvin Mrityu | Sarala Das | National Publishing |
| (ତ୍ରୟୋବିଂଶ ମୃତ୍ୟୁ) | Katha Sagar | House, New Delhi |
| | Edited by Shankarlal Purohit 1988 | |
| ୩. Chalti Gadi | Oriya ki Sresth Kahaniyan | Edited & Compiled |
| (ଚଳନ୍ତା ଗାଡ଼ି) | Trans- Rajendra Prasad Mishra | by Rajendra Prasad Mishra |
| ୪. Thakur Ghar ki | Bharatiya Kahaniyan | Bharatiya Jnanpith |
| Sesh Katha | 1987-88 | Prakashan, 1990 |
| (ଠାକୁର ଘରର ଶେଷକଥା) | Trans- Rajendra Prasad Mishra | |

| | | |
|---|---|---|
| ୫. Aadim Akash (ପୁଅ କାଂଦୁଛି) | Bharatiya Sikhar Katha Oriya Kahaniya Trans. by Prabhat kr. Tripathy | Compiled & edited by Kamaleswar Published by Vyaij Kumar, 1994 |

v) ହିନ୍ଦୀ (ପତ୍ରପତ୍ରିକା)

| | | |
|---|---|---|
| ୧. Aadim Akash (ପୁଅ କାଂଦୁଛି) | Sarika Trans. Pravat kr. Tripathy | May 1969 |
| ୨. Sau Bete (ଶହେପୁଅ) | Aaj-Kal Trans. Keshab Ch. Samal | May 1976 |
| ୩. Lakhon Pakshi (ଲକ୍ଷ ବିହଂଗ) | Aaj-Kal Trans. Ramakant Agnihotri | Feb 1979 |
| ୪. Raat ke Kutte (ରାତି କୁକୁର) | Sarika Trans. Mrs. Varsha Das | 1-15, Nov. 1981 |
| ୫. Anand ka Beta (ଆନନ୍ଦର ପୁଅ) | Samakaleen Bharatiya Sahitya Akademi, New Delhi Trans. Rajendra Prasad Mishra | July-Dec. 1988 |
| ୬. Teishvin Mrityu (ତ୍ରୟୋବିଂଶ ମୃତ୍ୟୁ) | Indraprastha Bharati Hindi Akademi, New Delhi Trans. Rajendra Prasad Mishra | Jan-Mar 1993 |
| ୭. Bidharmi (ବିଧର୍ମୀ) | "Bhasha", Central Hindi Directorate Translated by | May-June 1997 |

v) ଇଂରାଜୀ ଓ ହିନ୍ଦୀ ଛଡ଼ା ଅନ୍ୟାନ୍ୟ ଭାଷାରେ ପ୍ରକାଶିତ ଗଳ୍ପ :

ବଂଗଳା : -

| | | |
|---|---|---|
| ୧. ଶତପୁତ୍ର (ଶହେପୁଅ) | ଅବସର | ଟ୍ରେଜେରୀ ବିଲ୍ ଡ଼ିଂଗ୍ସ୍ ଇନ୍‌ଷ୍ଟିଚିଉଟ୍, କଲିକତାର ମୁଖପତ୍ର, ପ୍ରଥମ ସଂଖ୍ୟା ୧୯୭୨ |
| ୨. ଘେରାଉ (ଘେରାଉ) | ଅବସର | ଟ୍ରେଜେରୀ ବିଲ୍ ଡ଼ିଂଗ୍ସ୍ ଇନ୍‌ଷ୍ଟିଚିଉଟ୍, କଲିକତାର ମୁଖପତ୍ର, ପ୍ରଥମ ସଂଖ୍ୟା ୧୯୭୪ |

୩. ଭାଂଗା ଖେଲ୍‌ନା (ଭଂଗା ଖେଳଣା) ଓଡ଼ିଆ ଛୋଟ ଗଳ୍ପ ସଂକଳନନ୍ୟାସନାଲ୍ ବୁକ୍ ଟ୍ରଷ୍ଟ
ସଂପାଦକ - ପଠାଣି ପଟ୍ଟନାୟକ
ଅନୁବାଦ - ଜ୍ୟୋତିରୀନ୍ଦ୍ର ମୋହନ ଦୋଆରଦାର

୪. ବିଷ (ବିଷ) — ଶ୍ରେଷ୍ଠ ଓଡ଼ିଆ ଗଳ୍ପ ସଂକଳନ — ୧୯୮୨
ସଂପାଦକ - ଠାକୁର ଚଂଦ୍ର ନଂଦୀ

୫. ଜନୈକ ଭାରତୀୟେର୍ ମୃତ୍ୟୁ ଅବସର — ଟ୍ରେଜେରୀ ବିଲ୍ ଡ଼ିଂଗ୍ସ୍ ଇନ୍‌ଷ୍ଟିଚିଉଟ୍, କଲିକତା ଗୌପ୍ୟ ଜୟନ୍ତୀ ସଂଖ୍ୟା ୨୦୦୦

୬. ଭାଂଗା ଖେଲନା (ଭଂଗା ଖେଳଣା) ଏକ ଗୁଚ୍ଛ ଓଡ଼ିଆ ଗଳ୍ପ — ''ଆଜ୍‌କାଲ୍'' କଲିକତା ୨୦୦୨

**ଗୁଜରାଟୀ :-**

୧. ବିଧର୍ମୀ (ବିଧର୍ମୀ) — ଅଭିନବ ଭାରତୀ — ଜୁନ୍ ୧୯୬୯
ଅନୁବାଦ - ବର୍ଷା ଦାସ

୨. ରାତ୍‌ନା କୁଡ଼୍‌ରା (ରାତି କୁକୁର) — ଏପ୍ରିଲ୍ ୧୯୭୩

**ଆସାମୀୟ :-**

୧. ''ଭଂଗା ଖେଳଣା''ର ଆସାମୀୟ ଅନୁବାଦ — ଉଡ଼ିଷ୍ୟାର୍ ଗଳ୍ପମାଲା — ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ଇଣ୍ଡିଆ, ୧୯୭୯

**ଉର୍ଦ୍ଦୁ :-**

୧. ଶହେପୁଅର ଉର୍ଦ୍ଦୁ ଅନୁବାଦ — ଆଜ୍‌କାଲ୍ — ଅଗଷ୍ଟ ୧୯୭୦

୨. 'ଭଂଗା ଖେଳଣା'ର ଉର୍ଦ୍ଦୁ ଅନୁବାଦ — ଓଡ଼ିଆ ଗଳ୍ପମାଳାର ଉର୍ଦ୍ଦୁ ସଂସ୍କରଣ — ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ଇଣ୍ଡିଆ ୧୯୮୦

**ମାଲୟାଲମ୍ :-**

୧. ଶହେପୁଅର ମାଲୟାଳୀ ଅନୁବାଦ — ମାତୃଭୂମି (Illustrated weekly) — Freedom no. 24 ୧୯୭୧

**କନ୍ନଡ଼ :-**

୧. ''ଶହେପୁଅ''ର କନ୍ନଡ଼ ଅନୁବାଦ — କର୍ମବୀର — ଜୁଲାଇ ୪, ୧୯୭୧

**ତେଲୁଗୁ :-**

୧. ''ବିଧର୍ମୀ''ର ତେଲୁଗୁ ଅନୁବାଦ — ଆନ୍ଧ୍ରଜ୍ୟୋତି — ଡିସେମ୍ବର ୨୭, ୧୯୮୫

**ତାମିଲ୍ :-**

| | | |
|---|---|---|
| ଇଂରାଜୀରେ ଅନୂଦିତ "ଆମରି ଭିତରୁ ଜଣେ" (Death of an Indian) ର ତାମିଲ୍ ଅନୁବାଦ | "Contemporary Indian Short Stories Vol- III" ର ତାମିଲ୍ ସଂସ୍କରଣ | ସାହିତ୍ୟ ଏକାଡ଼େମୀ, ନୂଆଦିଲ୍ଲୀ |

**ମରାଠୀ :-**

| | |
|---|---|
| ଇଂରାଜୀରେ ଅନୂଦିତ "ଆମରି ଭିତରୁ ଜଣେ" (Death of an Indian) ର ମରାଠୀ ଅନୁବାଦ<br>ଅନୁବାଦିକା - ସୁଧା ଯୋଶୀ | "ସଂକ୍ରମଣ", ମୁମ୍ବାଇ ଦୀପାବଳୀ ସଂଖ୍ୟା, ୨୦୦୧ |

**ଫରାସୀ :-**

| | | |
|---|---|---|
| "ରାତିକୁକୁର"ର ଫରାସୀ ଅନୁବାଦ | "Europe" Literature De l'inde Paris (Published from Paris) | Jan-Feb 1982 |

**ସ୍ପାନିଶ୍ :-**

| | | |
|---|---|---|
| "ଶହେପୁଅ"ର ସ୍ପାନିଶ୍ ଅନୁବାଦ | Papeles de la India Indian Council of Cultural Relations, New Delhi | 1981 |

**ରୁଷୀୟ :-**

| | | |
|---|---|---|
| "ପରିଚୟ"ଗଳ୍ପର ରୁଷୀୟ ଅନୁବାଦ | Lemji Jemili (ସଂକଳନ) Published from Moscow USSR | 1987 |

**ଆରବୀୟ :-**

| | |
|---|---|
| "ଶହେପୁଅ"ର ଆରବୀୟ ଅନୁବାଦ | Indian Council of Cultural Relations, New Delhi ମୁଖପତ୍ର 'Indian Horizons"ର ଆରବୀୟ ସଂସ୍କରଣ |

**i) (ଖ) ଲେଖକଙ୍କର ଅନୂଦିତ ହୋଇଥିବା ବିଭିନ୍ନ ନିର୍ବାଚିତ ଗଳ୍ପର ସଂକଳନ**

**ଇଂରାଜୀ :-**

୧. **Death of an Indian**

୧୨ଟି ଇଂରାଜୀ ଗଳ୍ପ ଏଥିରେ ସ୍ଥାନ ପାଇଛି । ସେଥିମଧ୍ୟରୁ ୯ଟି ଲେଖକଙ୍କ ଦ୍ୱାରା ଅନୂଦିତ ଗଳ୍ପ ଏବଂ ଦୁଇଟି ଲେଖକଙ୍କର ମୌଳିକ ଇଂରାଜୀ ରଚନା ।

ପ୍ରକାଶକ : ପ୍ରାଚୀ ପ୍ରକାଶନ, ନୂଆଦିଲ୍ଲୀ, ୧୯୮୪

୨. **Wild Peacock and other stories**

୧୦ଟି ଅନୁଦିତ ଗଳ୍ପର ସମାହାର । କମଳାକାନ୍ତ ମହାପାତ୍ର ଓ ଲୀଳାବତୀ ମହାପାତ୍ରଙ୍କ ଦ୍ୱାରା ଅନୂଦିତ ।

ପ୍ରକାଶକ : Grassroots, Rasulgarh, Bhubaneswar, 1985

୩. **Prayer Room and Other stories**

ଲେଖକଙ୍କର ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ୨୦ଟି ଗଳ୍ପ ବିଶିଷ୍ଟ ''ଠାକୁରଘର'' ଗଳ୍ପ ସଂକଳନର ଅନୁବାଦ । ଲେଖକଙ୍କ ଦ୍ୱାରା ଅନୂଦିତ ।

ପ୍ରକାଶକ : ସାହିତ୍ୟ ଏକାଡ଼େମୀ, ନୂଆଦିଲ୍ଲୀ, ୧୯୯୩

୪. **The Midnight Moon and other stories**

୧୬ଟି ଗଳ୍ପର ସମାହାର । ସେଥିରୁ ତିନୋଟି ଗଳ୍ପ ଲେଖକଙ୍କର ମୌଳିକ ଇଂରାଜୀ ରଚନା, ଅବଶିଷ୍ଟ ତେରଟି ଗଳ୍ପ ଅନୂଦିତ । ଅନୂଦିତ ଗଳ୍ପମାନଙ୍କ ମଧ୍ୟରୁ ଯୋଡ଼ିଏ ଗଳ୍ପ କମଳାକାନ୍ତ ମହାପାତ୍ର ଓ ଲୀଳାବତୀ ମହାପାତ୍ରଙ୍କ ଦ୍ୱାରା ଏବଂ ଅବଶିଷ୍ଟ ଲେଖକଙ୍କ ଦ୍ୱାରା ରଚିତ ।

ପ୍ରକାଶକ : BR Publishing Corporation, Delhi, 1993

(The World Literature series : 64)

୫. **The Journey : Stories by K.C. Das**

୯ଟି ଅନୂଦିତ ଗଳ୍ପର ସମାହାର । ଗଳ୍ପଗୁଡ଼ିକ Dr. Phyllis Granoff, Proffssor, Dept. of Religious Studies, MC Master University, Hamilton, Ontario (Canada)ଙ୍କ ଦ୍ୱାରା ଅନୂଦିତ । ଓଡ଼ିଆ ଭାଷା ଏବଂ ସାହିତ୍ୟ ଉପରେ ଏକ ସୁଦୀର୍ଘ ମୁଖବଂଧ ମଧ୍ୟ ଏଥିରେ ପ୍ରକାଶ ପାଇଛି ।

ପ୍ରକାଶକ : The University of Michigan

(Centre for South and Southeast Asian Studies)

Ann Arbar, Michigan, (USA) 2000

Inner Voices : Stories Kishori Charan Das ଉପରୋକ୍ତ ଆମେରିକାରେ ପ୍ରକାଶିତ "The Journey Stories by K.C. Das"ର Indian Edition Penguin Books India, 2004.

**ii) ହିଂଦୀ :**

**ଠାକୁର ଘର**

ଲେଖକଙ୍କର ସାହିତ୍ୟ ଏକାଡ଼େମୀ ପୁରସ୍କାରପ୍ରାପ୍ତ ୨୦ଟି ଗଳ୍ପ ବିଶିଷ୍ଟ 'ଠାକୁରଘର' ଗଳ୍ପ ସଂକଳନର ଅନୁବାଦ ।

ଅନୁବାଦକ : ସିଦ୍ଧାର୍ଥ ମାନସିଂହ ମହାପାତ୍ର

ପ୍ରକାଶକ : ସାହିତ୍ୟ ଏକାଡ଼େମୀ, ନୂଆଦିଲ୍ଲୀ, ୧୯୯୬

**ବଂଗଳା :**

ଠାକୁର ଘର

ଲେଖକଙ୍କର ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ୨୦ଟି ଗଳ୍ପ ବିଶିଷ୍ଟ 'ଠାକୁରଘର' ଗଳ୍ପ ସଂକଳନର ଅନୁବାଦ ।

ଅନୁବାଦକ : ଜ୍ୟୋତିରୀନ୍ଦ୍ର ମୋହନ ଜୋଆର୍‌ଦାର୍

ପ୍ରକାଶକ : ସାହିତ୍ୟ ଏକାଡ଼େମୀ, ନୂଆଦିଲ୍ଲୀ, ୧୯୯୬

**ନାଟକରେ ରୂପାନ୍ତରିତ ଗଳ୍ପ**

**୧. ଠାକୁର ଘର :-** ଟେଲିଫିଲ୍ମ ଭାବରେ ରୂପାନ୍ତରିତ ହୋଇ କଟକ ଦୂରଦର୍ଶନ କେନ୍ଦ୍ର ଦ୍ୱାରା ପ୍ରସାରିତ ।

**୨. ରାତି କୁକୁର :-** ପ୍ରଫୁଲ୍ଲ ରଥଙ୍କ ଦ୍ୱାରା ରୂପାନ୍ତରିତ ହୋଇ ଭବାନୀପାଟଣାର 'ସ୍ମାରକୀ' ନାଟ୍ୟ ସଂସ୍ଥା ଏବଂ ଷ୍ଟେଟ୍ ବ୍ୟାଙ୍କ ଅଫ୍ ଇଣ୍ଡିଆ ବଲାଙ୍ଗୀରର ନାଟ୍ୟସଂସ୍ଥାଙ୍କ ଦ୍ୱାରା ୧୯୮୪ରେ ମଂଚସ୍ଥ ଏବଂ ସଂଗୀତ ନାଟକ ଏକାଡ଼େମୀ ଦ୍ୱାରା ପୁରସ୍କୃତ ।

**୩. କଳା କୋଇଲି :-** ୧. ନାଟିକାରେ ରୂପାନ୍ତରିତ ଏବଂ ଗୋକର୍ଣ୍ଣିକା (ସଂଖ୍ୟା ୧୯୯୬) ସଂଖ୍ୟାରେ ପ୍ରକାଶିତ ଡ଼ଂ. ବିଜୟ କୁମାର ଶତପଥୀ । ୨. ଟେଲିଫିଲ୍ମରେ ରୂପାନ୍ତରିତ ଏବଂ ଦୂରଦର୍ଶନ ଭୁବନେଶ୍ୱର ଦ୍ୱାରା ପ୍ରସାରିତ - ଅନନ୍ତ ମହାପାତ୍ର ।

**''ଶ୍ରେଷ୍ଠ ଗଳ୍ପ''**

| | | |
|---|---|---|
| କିଶୋରୀ ଚରଣଙ୍କ ଶ୍ରେଷ୍ଠ ଗଳ୍ପ | ଚତୁରଂଗ ପ୍ରକାଶନୀ<br>ଭୁବନେଶ୍ୱର | ୧୯୯୨ |

(କିନ୍ତୁ ଲେଖକଙ୍କର ଦୃଷ୍ଟିରେ ଏଗୁଡ଼ିକୁ ତାଙ୍କର ଶ୍ରେଷ୍ଠଗଳ୍ପ ବୋଲି କୁହାଯାଇ ନପାରେ । କେବଳ କେତୋଟି ଅପେକ୍ଷାକୃତ ଲୋକପ୍ରିୟ ଏବଂ କେତୋଟି ନିର୍ବାଚିତ ଗଳ୍ପର ସମାହାର ।)

**ଗଳ୍ପ ଗ୍ରନ୍ଥାବଳୀ :-**

ତିରିଶ ବର୍ଷର ଗଳ୍ପ ଓ ଆଳାପ :

| | |
|---|---|
| ପ୍ରଥମ ଭାଗ | ଫ୍ରେଣ୍ଡ୍ସ୍ ପବ୍ଲିସର୍ସ୍, କଟକ ୧୯୮୮ |
| ଦ୍ୱିତୀୟ ଭାଗ | ଫ୍ରେଣ୍ଡ୍ସ୍ ପବ୍ଲିସର୍ସ୍, କଟକ ୧୯୯୧ |
| ତୃତୀୟ ଭାଗ | ଫ୍ରେଣ୍ଡ୍ସ୍ ପବ୍ଲିସର୍ସ୍, କଟକ ୧୯୯୨ |
| ଚତୁର୍ଥ ଭାଗ | ଫ୍ରେଣ୍ଡ୍ସ୍ ପବ୍ଲିସର୍ସ୍, କଟକ ୨୦୦୦ |

ଏହି ଗ୍ରନ୍ଥାବଳୀରେ ଲେଖକଙ୍କର ପ୍ରଥମ ୧୬ ଗୋଟି ସଂକଳନରେ ପ୍ରକାଶିତ ଗଳ୍ପ ତଥା କୌଣସି ସଂକଳନରେ ପ୍ରକାଶ ପାଇ ନ ଥିବା ଅଥଚ ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିବା କେତୋଟି ଗଳ୍ପକୁ ନେଇ ସର୍ବମୋଟ ୧୭୫ଟି ଗଳ୍ପ ସନ୍ନିବେଶିତ ହୋଇଛି ଏବଂ ବିଶେଷ ଉଲ୍ଲେଖଯୋଗ୍ୟ ଯେ ପ୍ରତ୍ୟେକ ଗଳ୍ପ ପରେ ଲେଖକ ତାଙ୍କ ଦୀର୍ଘ ସୃଜନାତ୍ମକ ଜୀବନର ସିଂହାବଲୋକନ କରି ସେହି ଗଳ୍ପ ଉପରେ କିଛି 'ଆଳାପ' କରିବାକୁ ଚାହିଁଛନ୍ତି ପାଠକପାଠିକାମାନଙ୍କ ସହିତ, ଯାହାକୁ ତାଙ୍କ ବର୍ତ୍ତମାନର ବୈଦ୍ଧିକ ତଥା ସାହିତ୍ୟଧର୍ମୀ ପ୍ରତିକ୍ରିୟା ବୋଲି କୁହାଯାଇପାରେ । ଯଥାଶୀଘ୍ର ଏଥିର ପଞ୍ଚମ ଭାଗ ପ୍ରକାଶ ଅପେକ୍ଷାରେ ।

**କବିତା :-**

ଲେଖକଙ୍କର ସାହିତ୍ୟକୃତିର ଶୁଭାରମ୍ଭ ହୋଇଥିଲା କବିତାଟିଏ ଲେଖି । ହେଲେ ସେ କ୍ରମଶଃ ଅଧିକରୁ ଅଧିକ 'କଥା' କହିବାକୁ ଚାହିଁଲେ ମଣିଷ ଦଶାର ବୈଚିତ୍ର୍ୟକୁ ଚିହ୍ନାଇବା ଲାଗି । ତଥାପି ସେ ଅଦ୍ୟାବଧି କବିତା ଲେଖନ୍ତି । କୁହନ୍ତି ''ବେଳେବେଳେ ଛଟପଟ ଲାଗେ ।

ମନେ ହୁଏ ଗଳ୍ପ ଲେଖି ଲେଖି ହାଲିଆ ହୋଇଗଲିଣି । ମୋର ମୁହୂର୍ତ୍ତମାନଙ୍କୁ, ମୁହୂର୍ତ୍ତରେ ମୁଣ୍ଡ ଟେକି ବୁଡି ଯାଉଥିବା ମୋର ଉଚ୍ଛ୍ୱାସମାନଙ୍କୁ, ଯଥୋଚିତ ସମ୍ମାନ ଦେଇପାରୁ ନାହିଁ । ସେମାନଙ୍କୁ ଗଳ୍ପର ଗୋଲେଇରେ ଚରିତ୍ରମାନଙ୍କ ମାଧ୍ୟମରେ ପ୍ରକାଶ କରିବା ନିହାତି ବୁଲାଣିଆ ଦୁଷ୍କର ବ୍ୟାପାର । ସେଇଠୁଁ ମୁଁ ଦି'ଧାଡ଼ି କବିତା ଲେଖିବାର ଲୋଭ ସଂଭାଳି ପାରେନାହିଁ ।''

ପ୍ରକାଶିତ ଦୁଇଟି କବିତା ସଂକଳନ :

୧. ''ମିନିକାମନା'' - ପ୍ରକାଶକ, ଲାର୍କ ବୁକ୍ସ, କଟକ, ୧୯୮୨

୨. ''ସଂଜବତୀ'' - ପ୍ରକାଶକ, ଲାର୍କ ବୁକ୍ସ, ଭୁବନେଶ୍ୱର, ୨୦୦୧

**ଆଳାପ ଆଲୋଚନା**

''ମୋର ପ୍ରବନ୍ଧ ଲେଖିବାର ଯୋଗ୍ୟତା ନାହିଁ'' - ସେ ଥରେ କହିଥିଲେ ମୋତେ, ଏବଂ ସେଇଠୁଁ ସେ ତା'ର ବ୍ୟାଖ୍ୟା କଲେ, ମୋର ବିମୂଢ଼ତାକୁ ବୋଧ ଦେଲା ପରି । କହିଲେ, ''ଏଥିପାଇଁ ଯେ ମୁଁ ସର୍ବାଦୌ ନିଜକୁ ଜଣେ ସୃଜନାତ୍ମକ ଲେଖକ ବୋଲି ମନେ କରେ ଯାହାର ସାହିତ୍ୟବିଚାର ତଥା ଜୀବନଦର୍ଶନରେ ନାନାଦି ସାପେକ୍ଷତା(bias)ର 'ପ୍ରଦୂଷଣ' ରହିବା ଅନିବାର୍ଯ୍ୟ ଏବଂ ଯଦି ସେ ଜାଣିଶୁଣି ନିଜକୁ ସଂପୂର୍ଣ୍ଣ ନିରପେକ୍ଷ ବୋଲି ଦର୍ଶାଇବାକୁ ବସେ, ତା'ହେଲେ ବୁଝିବାକୁ ହେବ ଯେ ସେ ଆତ୍ମଘାତୀ, ଅଥବା ନିଜକୁ ଠକଉଛି । ସେହେତୁ ସେ କୁହନ୍ତି ଯେ ମୁଁ କୌଣସି ପ୍ରବନ୍ଧ ଲେଖି ନାହିଁ, ଯାହାକୁ ଏକ ନିରପେକ୍ଷ, ତଥ୍ୟମୂଳକ ଏବଂ ଜ୍ଞାନଗର୍ଭ, ତେଣୁ ବିଦ୍ୟାର୍ଥୀମାନଙ୍କ ପାଇଁ ଉଦ୍ଦିଷ୍ଟ ରଚନା ବୋଲି କୁହାଯିବ । ଅଥଚ କହିଲେ ଭୁଲ୍ ହେବ ଯେ ସେଗୁଡ଼ିକ ତଥାକଥିତ ରମ୍ୟରଚନା, ଅର୍ଥାତ୍ ଗୁରୁତ୍ୱପୂର୍ଣ୍ଣ ତଥ୍ୟମାନଙ୍କ ଉପରେ ଟିକିଏ ରସିକତା କରିବା ଛଡ଼ା ଆଉ କିଛି ନୁହେଁ । ନା, ମୁଁ ନାନା ଗୁରୁତ୍ୱପୂର୍ଣ୍ଣ ତଥ୍ୟମାନଙ୍କ ଉପରେ ଟିକିଏ ଆଳାପ ଆଲୋଚନା କରିବାକୁ ଚାହେଁ ମୋର ପାଠକ ପାଠିକାମାନଙ୍କ ସାଙ୍ଗରେ, କାରଣ ମୁଁ ସେ ସବୁଥିରେ ସଂପୃକ୍ତ । ତାକୁ ଅଂଗେ ନିଭେଇଲା ପରି .... ।''

ଲେଖକଙ୍କୁ ତାଙ୍କର ସାହିତ୍ୟିକ ଏବଂ ବୃତ୍ତିଗତ ଜୀବନର କ୍ରମରେ ନାନାଦି 'ଭାଷଣ', 'ଉପସ୍ଥାପନା' ଇତ୍ୟାଦି ବାଢ଼ି ଦେବାକୁ ପଡ଼ିଛି, ଦେଶବିଦେଶରେ ଆୟୋଜିତ ସଭାସମିତିରେ । ଓଡ଼ିଆରେ ତଥା ଇଂରାଜୀରେ । ଇଂରାଜୀରେ ପଠିତ ଅଧିକାଂଶ ବକ୍ତବ୍ୟଗୁଡ଼ିକ ସେ ଓଡ଼ିଆରେ ରୂପାନ୍ତରିତ କରିଛନ୍ତି । ସେସମସ୍ତକୁ ସେ ବିଭିନ୍ନ ପତ୍ରପତ୍ରିକାରେ ଏବଂ ଯଥାକ୍ରମେ ବହି ଆକାରରେ ପ୍ରକାଶ କରିଛନ୍ତି ଏବଂ ସବୁଥିରେ ରହିଛି ତାଙ୍କ ନିଜ ଅନୁଭୂତିର ନିଶ୍ଚିତ ସ୍ୱାକ୍ଷର ।

**ଅଦ୍ୟାବଧି ପ୍ରକାଶିତ ହୋଇଥିବା ପୁସ୍ତକ ଗୁଡ଼ିକ ଏହିପ୍ରକାର :**

**୧. ଲେଖକର ସଂସାର :-** କଟକ ଷ୍ଟୁଡେ଼ଣ୍ଟସ୍ ଷ୍ଟୋର୍ସ, କଟକ, ୧୯୮୬ । ଉଲ୍ଲେଖଯୋଗ୍ୟ ଯେ ଏଥିରେ ଥିବା ଲେଖା ''ମୋ ଦେଶ, ମୋ ସାହିତ୍ୟ'' ମାର୍ଚ୍ଚ ୧୯୮୦

ମସିହାରେ ଅଷ୍ଟ୍ରେଲିଆର ଆଡ଼ିଲେଡ୍ ଠାରେ ଅନୁଷ୍ଠିତ "International Writers Week"ରେ ଉପସ୍ଥାପିତ ନିବଂଧ "Literature and Cultural Identity"ର ଓଡ଼ିଆ ରୂପାନ୍ତର । ଲେଖକ ଏହି ସମ୍ମେଳନୀରେ "Indian Council of Cultural Relation, New Delhi"ଙ୍କ ଆନୁକୂଲ୍ୟରେ ଭାରତର ପ୍ରତିନିଧିତ୍ୱ କରିଥିଲେ ।

**୨. କଥା ସାହିତ୍ୟର କଳା ଓ କାରିଗରି :-** ଇଷ୍ଟର୍ଣ୍ଣ ମିଡ଼ିଆ, ଭୁବନେଶ୍ୱର, ୧୯୯୦ । ଏଥିରେ ପ୍ରକାଶ ପାଇଥିବା ଆଳାପ ଆଲୋଚନା ପ୍ରଥମେ ଧାରାବାହିକ ଭାବରେ ‘‘କଥା’’ ପତ୍ରିକାରେ ପ୍ରକାଶିତ ହୋଇଥିଲା ।

**୩. ଚେନାଏ ପୃଥିବୀ, ଚିରୁଡ଼ାଏ ଘର :-** ବିଦ୍ୟାପୁରୀ, କଟକ, ୧୯୯୫ । ଏହା ଲେଖକଙ୍କର ବିଦେଶ ଯାତ୍ରା ଏବଂ ବିଦେଶ ରହଣି ଉପରେ ଆଧାରିତ ବିଭିନ୍ନ ଭାବଭାବନାରେ ସମାହାର ।

**୪. ଲେଖକର ଦୁଃଖ :-** ଫ୍ରେଣ୍ଡସ୍ ପବ୍ଲିସର୍ସ୍, କଟକ, ୧୯୯୫ । ଶୀର୍ଷକ ଲେଖାଟି ପ୍ରଥମେ ଧାରାବାହିକ ଭାବରେ ‘ପ୍ରଗତିବାଦୀ’ ସଂବାଦପତ୍ରର ରବିବାର ସଂଖ୍ୟାରେ ପ୍ରକାଶିତ ହୋଇଥିଲା ।

**୫. ମୋର ତୁମେ :-** ଲାର୍କ ବୁକ୍ସ, ଭୁବନେଶ୍ୱର, ୧୯୯୭ । ଏଥିରେ ଥିବା ତାତ୍ତ୍ୱିକ ଆଳାପଆଲୋଚନା ଗଳ୍ପ ଛଳରେ ଲିଖିତ । ସେହେତୁ ସେଥିରୁ କେତୋଟି ଲେଖା ପ୍ରଥମେ ବିଭିନ୍ନ ପତ୍ରପତ୍ରିକାର ଗଳ୍ପ ବିଭାଗରେ ପ୍ରକାଶିତ ହୋଇଥିଲା ।

**୬. ମୋ ସମୟ, ମୋ ସାହିତ୍ୟ :-** ଓଡ଼ିଶା ବୁକ୍ ଷ୍ଟୋର୍, କଟକ, ୨୦୦୦ । ଏଥିରେ ଶୀର୍ଷକ ଲେଖା ‘‘ମୋ ସମୟ, ମୋ ସାହିତ୍ୟ’’ ଲେଖକଙ୍କର ଇଂରାଜୀ ଲେଖା "My Writing, My Times"ର ଓଡ଼ିଆ ରୂପାନ୍ତର । ତାହା ୧୯୯୫ ମସିହାରେ କେରଳର କୋଚୀ (କୋଚିନ୍) ଠାରେ ଅନୁଷ୍ଠିତ ଏକ ସର୍ବଭାରତୀୟ ସମ୍ମେଳନୀରେ ଉପସ୍ଥାପିତ ହୋଇଥିଲା ।

**୭. ସାହିତ୍ୟ ପ୍ରେମର ଶେଷକଥା :-** ଓଡ଼ିଶା ଲେଖକ ସମବାୟ ସମିତି, ଭୁବନେଶ୍ୱର, ୨୦୦୪, ସାହିତ୍ୟଭିତ୍ତିକ ବିଭିନ୍ନ ଭାଷଣ ଓ ଉପସ୍ଥାପନାର ସମାହାର ।

ପ୍ରକାଶକଙ୍କ ପାଖରେ ପ୍ରକାଶ ଅପେକ୍ଷାରେ ଅଛି :

ଆମ କଥା ସାହିତ୍ୟ : ତତ୍ତ୍ୱ ଏବଂ ଅନୁଭବ (ବିଦ୍ୟାପୁରୀ, କଟକ)

**ଇଂରାଜୀ ରଚନା**

ଲେଖକଙ୍କର ଇଂରାଜୀ ରଚନା ସୀମିତ ନୁହେଁ । ସେ ମଧ୍ୟ କେତେକ ସ୍ଥାନରେ ନିଜକୁ ଜଣେ ଦ୍ୱିଭାଷୀ ଲେଖକ ବୋଲି ପରିଚିତ କରିଛନ୍ତି । କାହିଁକି ତାଙ୍କର ମନ ବଳିଲା ଇଂରାଜୀରେ ଲେଖିବା ପାଇଁ ? ସହଜେ ତା’ର ଗୋଟାଏ କାରଣ ମନକୁ ଆସେ ଯେ ସେ ତାଙ୍କର ଦୀର୍ଘ

ବୃତ୍ତିଗତ ଜୀବନ ଓଡ଼ିଶାର ବାହାରେ ବିତାଇଥିବାରୁ ସେ ଏଇ 'ବିଦେଶୀ', ହେଲେ ଆନ୍ତର୍ଜାତିକ ଏବଂ ସର୍ବଭାରତୀୟ ଭାଷାର ମାଧ୍ୟମରେ ନିଜର ସାହିତ୍ୟକୁ ଚିହ୍ନାଇବାକୁ ଚାହିଁଲେ, ଅଣଓଡ଼ିଆ ପରିପାର୍ଶ୍ୱର ଅବଗତି ପାଇଁ ଏବଂ ସେ ଏହି କାରଣଟିକୁ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । କିନ୍ତୁ ତା'ଛଡ଼ା ସେ ମୋତେ କହିଲେ ଯେ ଯଥାକ୍ରମେ ସେ ଅଧିକରୁ ଅଧିକ ଏହି ଭାଷାରେ ଲେଖିବାକୁ ଚାହିଁଲେ ନିଜକୁ ଜଣେ 'ଭାରତୀୟ ଲେଖକ' ବୋଲି ପରିଚିତ କରିବା ଲାଗି । ଏହି ବିଷୟରେ ସେ ନିଜର ବ୍ୟାକୁଳତା ବାଢ଼ି ଦେଇଛନ୍ତି ଆମ ଆଗରେ, ତାଙ୍କର "ମୁଁ କଣ ଭାରତୀୟ ଲେଖକ ନୁହେଁ ?" ନାମକ ଲେଖାରେ, ଯାହା "ନବଲିପି"ର ଶାରଦୀୟ ସଂଖ୍ୟା ୧୯୯୮ରେ ପ୍ରକାଶିତ ହୋଇଥିଲା, ଏବଂ "ସାହିତ୍ୟ ପ୍ରେମର ଶେଷକଥା" ନାମକ ସଂକଳନର ଅନ୍ତର୍ଭୁକ୍ତ । ମଧ୍ୟ ଅନେକ କିଛି କହିଛନ୍ତି ତାଙ୍କ ସ୍ମୃତିକଥା "ସମୟ ନାହିଁ"ରେ ।

ଯାହାହେଉ ତାଙ୍କ ଇଂରାଜୀ ଲେଖାଗୁଡ଼ିକ ବେଶ୍ ଆଖିଦୁରୁଶିଆ, ତା' ପଛରେ ଥିବା ତାଡ଼ନା ଯାହା ହେଉ ପଛେ । କିନ୍ତୁ ଏହି ପରିପ୍ରେକ୍ଷୀରେ ଉଲ୍ଲେଖଯୋଗ୍ୟ ଯେ ଗଳ୍ପ ତୁଳନାରେ ସେ ଅନେକ ଅଧିକ କବିତା ଲେଖିଛନ୍ତି ଇଂରାଜୀ ଭାଷାରେ, ଯାହା ମଧ୍ୟ ଓଡ଼ିଆ କବିତାର ପୁଂଜିଠାରୁ ଅଧିକ । ଏଥିରେ ସେ ନିଜେ ଆଶ୍ଚର୍ଯ୍ୟ ପ୍ରକାଶ କରିଛନ୍ତି । ତେବେ ମୋର ମନେ ହୁଏ ଯେ ଯେହେତୁ ସେ ଓଡ଼ିଆ ଭାଷାରେ ଏତେ ବେଶି ଗଳ୍ପ ଲେଖିଛନ୍ତି, ସେ ତାକୁଇ ପ୍ରଥମେ ଇଂରାଜୀରେ ରୂପାନ୍ତରିତ କରିବାକୁ ଚାହିଁଲେ ଜଣେ କଥାକାର ହିସାବରେ । ତା ଉତ୍ତାରୁ ତାଙ୍କୁ ଫୁରୁସତ୍ କାହିଁ ମୌଳିକ ଇଂରାଜୀ ଗଳ୍ପ ଲେଖିବା ପାଇଁ ? କିନ୍ତୁ ସେହି ପ୍ରକାର ତାଡ଼ନାର ଅବକାଶ ନ ଥିଲା ଓଡ଼ିଆ କବିତାକୁ ଇଂରାଜୀରେ ରୂପାନ୍ତରିତ କରିବା ଦିଗରେ । ତେଣୁ ସେ ଲେଖୁ ଲେଖୁ ଲେଖିଗଲେ ବେଶ୍ କେତୋଟି ଇଂରାଜୀ କବିତା । ତେବେ କହିବାକୁ ହେବ ଯେ ଇଂରେଜୀ କବିତା ଲେଖା ଗୋଟାଏ ଜୁଆର ପରି ଆସିଥିଲା ତାଙ୍କ ସାହିତ୍ୟିକ ଜୀବନରେ, ମୋଟାମୋଟି ଅଷ୍ଟମ ଦଶକରେ । ହେଲେ ଓଡ଼ିଆ କବିତା ସେ ଏବେ ମଧ ଲେଖନ୍ତି ମଝିରେ ମଝିରେ । ବାକୀ ରହିଲା ଇଂରାଜୀ ଆଳାପଆଲୋଚନା । ଏହା ଅଧିକାଂଶରେ ତାଙ୍କର ସର୍ବଭାରତୀୟ ତଥା ଆନ୍ତର୍ଜାତିକ କାର୍ଯ୍ୟକଳାପରୁ ଉଦ୍‌ଭୁତ ।

କିଶୋରୀ ଚରଣଙ୍କ ଇଂରାଜୀ ରଚନାର ସ୍ୱରୂପ ଏହିପ୍ରକାର :-

**୧. ଗଳ୍ପ ଉପନ୍ୟାସ :**

ସେ ମାତ୍ର ଚାରୋଟି ମୌଳିକ ଇଂରାଜୀ ଗଳ୍ପ ଲେଖିଛନ୍ତି । ସବୁଗୁଡ଼ିକୁ ଓଡ଼ିଆରେ ରୂପାନ୍ତରିତ କରିଛନ୍ତି । କିନ୍ତୁ ତାଙ୍କର ଅନେକ ଇଂରାଜୀ ଗଳ୍ପ ରହିଛି, ଯାହା ଓଡ଼ିଆରୁ ରୂପାନ୍ତରିତ ହୋଇଛି, ତେଣୁ ତାକୁ ଅନୁଦିତ ବୋଲି କହିବାକୁ ହେବ । ସେଥିର ବିସ୍ତୃତ ବିବରଣୀ ଗଳ୍ପ ବିଭାଗରେ ଦିଆଯାଇଛି । ସେହେତୁ ତା'ର ଦ୍ୱିରୁକ୍ତି ଅନାବଶ୍ୟକ । ମୌଳିକ ଇଂରାଜୀ ଗଳ୍ପଗୁଡ଼ିକ ଏହିପ୍ରକାର :-

**(i) A Saucer of Milk**

ଏହା ପ୍ରଥମେ ଜୟନ୍ତ ମହାପାତ୍ରଙ୍କ ଦ୍ୱାରା ସଂପାଦିତ ଇଂରାଜୀ ସାହିତ୍ୟ ପତ୍ରିକା "Chandrabhaga"ର ପ୍ରଥମ ସଂଖ୍ୟା (୧୯୭୯)ରେ ପ୍ରକାଶିତ ହୋଇଥିଲା । ତାପରେ ଏହା ୧୯୮୪ ମସିହାରେ ପ୍ରକାଶିତ ଇଂରାଜୀ ଗଳ୍ପ ସଂକଳନ "Death of an Indian"ରେ ସ୍ଥାନିତ ହୋଇଥିଲା । ଏହା ମଧ୍ୟ ୧୯୯୩ରେ ପ୍ରକାଶିତ ଗଳ୍ପ ସଂକଳନ "The Midnight Moon and other stories"ର ଅନ୍ତର୍ଭୁକ୍ତ ।

ଲେଖକଙ୍କ ଦ୍ୱାରା ଏହାର ଅବଲମ୍ବନରେ ଲିଖିତ ଓଡ଼ିଆ ଗଳ୍ପ ''ତନୟା'' ''ସହକାର'' ପତ୍ରିକାର ପୂଜା ସଂଖ୍ୟା ୨୦୦୦ରେ ପ୍ରକାଶିତ ହୋଇଥିଲା ।

**(ii) Fish Mayonnaise**

ଏହି ଗଳ୍ପଟି ପ୍ରଥମେ ଲେଖକଙ୍କର ଇଂରାଜୀ ଗଳ୍ପ ସଂକଳନ "Death of an Indian" ଏବଂ ପରେ ତାଙ୍କର ଇଂରାଜୀ ଗଳ୍ପ ସଂକଳନ "The Midnight Moon and Other Stories" ରେ ସ୍ଥାନିତ ହୋଇଛି । ଏବଂ ଲେଖକଙ୍କର ଦ୍ୱାରା ରଚିତ ଏହାର ଓଡ଼ିଆ ଅନୁବାଦ ''ସ୍ୱାଦୁ ଅଛି, ଗଂଧ ନାହିଁ'' ତାଙ୍କର ଓଡ଼ିଆ ଗଳ୍ପ ସଂକଳନ ''ତ୍ରୟୋବିଂଶ ମୃତ୍ୟୁ''ରେ ସ୍ଥାନିତ ହୋଇଛି ।

ଉଲ୍ଲେଖଯୋଗ୍ୟ ଯେ ଏହି ଗଳ୍ପଟି ଭାରତୀୟ ଲେଖକମାନଙ୍କ ଦ୍ୱାରା ଲିଖିତ ମୌଳିକ ଇଂରାଜୀ ଗଳ୍ପମାନଙ୍କ ମଧ୍ୟରୁ ନିର୍ବାଚିତ ହୋଇଥିବା କେତୋଟି ଗଳ୍ପର ସଂକଳନ "Cantemporary Indian short stories in English"ରେ ସ୍ଥାନିତ ହୋଇଛି । ସଂଗ୍ରାହକ ଏବଂ ସଂପାଦକ Dr. Shiv K. Kumar । ପ୍ରକାଶକ - ସାହିତ୍ୟ ଏକାଡେ଼ମୀ, ନୂଆଦିଲ୍ଲୀ । ପ୍ରଥମ ସଂସ୍କରଣ - ୧୯୯୧ ।

**(iii) The Meeting**

ଏହି ଗଳ୍ପଟି ହରପ୍ରସାଦ ପରିଛା ପଟନାଏକଙ୍କ ଦ୍ୱାରା ସଂପାଦିତ ବ୍ରହ୍ମପୁର(ଗଂଜାମ)ରୁ ପାଉଥିବା ସାହିତ୍ୟ ପତ୍ରିକା "Vortex"ର ଅକ୍ଟୋବର ୧୯୭୯ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ଏହି ଗଳ୍ପର ଅବଲମ୍ବନରେ ଲିଖିତ ଓଡ଼ିଆ ଗଳ୍ପ ''ସହଯାତ୍ରୀ'' ପୂଜାସଂଖ୍ୟା ''ଝଙ୍କାର'' ୨୦୦୨ରେ ପ୍ରକାଶିତ ।

**(iv) The Meaning of Monsoon**

ଏହି ଗଳ୍ପଟି "Indian Literature"ର ସଂପାଦକଙ୍କ ଅନୁରୋଧ କ୍ରମେ ଗୋଟିଏ "Short Short Stories" (ମିନିଗଳ୍ପ) ଭାବରେ ସେହି ପତ୍ରିକାର Jan-Feb 1988 ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ଏହା ମଧ୍ୟ ଲେଖକଙ୍କର ଇଂରାଜୀ ଗଳ୍ପ ସଂକଳନ "The Midnight Moon and other stories"ରେ ସ୍ଥାନିତ ହୋଇଛି । ଏହାର

ସ୍ୱାଧିନ ଓଡ଼ିଆ ଅନୁବାଦ ''ମନ ଓ ମୌସୁମୀ'' ଲେଖକଙ୍କର ଓଡ଼ିଆ ଗଳ୍ପ ସଂକଳନ ''ଲେଉଟାଣି''ରେ ସନ୍ନିବେଶିତ ହୋଇଛି ।

ଲେଖକ ଇଂରାଜୀରେ କୌଣସି ମୌଳିକ ଉପନ୍ୟାସ ଲେଖି ନାହାନ୍ତି । କିନ୍ତୁ ସେ ତାଙ୍କର ଚତୁର୍ଥ ଓଡ଼ିଆ ଉପନ୍ୟାସ ''ସ୍ୱର୍ଗସୀମା''କୁ ଇଂରାଜୀରେ ରୂପାନ୍ତରିତ କରିଛନ୍ତି । "Of Heaven and Beyond" ନାମକ ଏହି ଉପନ୍ୟାସ ପ୍ରକାଶ ଅପେକ୍ଷାରେ ।

## ୨. କବିତା

ଲେଖକଙ୍କର ୨୦ଟି କବିତାକୁ ନେଇ ଗୋଟିଏ ଇଂରାଜୀ କବିତା ସଂକଳନ "Faces in the Dark" ପ୍ରଣବ ବନ୍ଦ୍ୟୋପାଧ୍ୟାୟଙ୍କ ଦ୍ୱାରା ସଂପାଦିତ ହୋଇ "United Writers, Calcutta"ଙ୍କ ଦ୍ୱାରା ୧୯୭୯ରେ ପ୍ରକାଶିତ ହୋଇଛି । ଏବଂ ତାଙ୍କର ଦ୍ୱିତୀୟ କବିତା ସଂକଳନ "The Evening that never was" ତାଙ୍କ ନିଜ ଦ୍ୱାରା ୨୦୦୩ ମସିହାରେ ପ୍ରକାଶିତ ହୋଇଛି ।

ଅନେକ କବିତା ବିଭିନ୍ନ ଇଂରାଜୀ ପତ୍ରପତ୍ରିକା ଏବଂ ସଂକଳନରେ ସ୍ଥାନିତ ହୋଇଛି । ସେଥିରୁ ଗୋଟିଏ କୋରିଆରୁ ପ୍ରକାଶିତ ଆନ୍ତର୍ଜାତିକ ସଂକଳନ । ବିସ୍ତୃତ ବିବରଣୀ :-

| | ସଂକଳନ/ପତ୍ରିକା | କବିତାର ଶୀର୍ଷକ | ପ୍ରକାଶନ କାଳ |
|---|---|---|---|
| 1. | Jounal of Indian Writing in India, Madras | On leaving Calcutta | 1978 |
| 2. | New Dimensions in Indo-European Poetry (Anthology) - Commonwealth Quarterly, Special Indo-European Poetry Number Edited by SN Bikram Rajurs Mysore | Mercifally, Bones Sunshine, It's cold outside, Thoughts, Snow This one day, Two pigeons All the sun, Last summer | 1980 |
| 3. | Indian Verse by Young poets (Anthology) Ed- Pranab Bandyopadhyaya Culcutta | Marcifully | 1980 |
| 4. | New Voices in Indo-English poetry (Anthology) Ed- Syed Ameeruddin Madras | Men in the Aflermoon Bones | 1981 |

| | | | |
|---|---|---|---|
| 5. | East-West Worlds<br>(Anthology)<br>Ed- G.R. Krishna<br>Hyma Books<br>Mangalore | It's Cold outside<br>My poems<br>Two Pigeons<br>Faces in the Dark | 1982 |
| 6. | World Poetry 1983<br>(Anthology)<br>World Poetry Research<br>Institute<br>Ed- Kemi young Sam<br>Changju, 310, Korea | These lights | 1983 |
| 7. | Indo-Australian Flowers<br>(Anthology)<br>Ed- V.S. Skanda Prased<br>Mangalore | Bones | 1984 |
| 8. | Centre and Circumfernce<br>(Anthology)<br>Authors Guild of India<br>Delhi Chapter<br>Ed- Keshav Malik | Bones<br>The Valley<br>of Brahmaputra | 1984 |
| 9. | Poetry Time<br>(Journal)<br>Poetry Time Publication<br>Ed- Laxminarayan Mohapatra<br>Bhubaneswar, Orissa | The Valley of<br>Brahmaputra | 1986 |

୩ । ଆଳାପ ଆଲୋଚନା :

ଏହି ବିଭାଗରେ ଲେଖକଙ୍କର ଯୋଡ଼ିଏ ଇଂରାଜୀ ପୁସ୍ତକ ପ୍ରକାଶିତ ହୋଇଛି -

My Writing, My Times First Edition

ପ୍ରକାଶକ - ଆର୍ଯ୍ୟ ପ୍ରକାଶନ, କଟକ ୧୯୯୭

ଯେଉଁ ଲେଖାଗୁଡ଼ିକ ଏଥିରେ ସ୍ଥାନିତ ହୋଇଛି, ତାହା ଏହିପ୍ରକାର :-

1. Literature and Cultural Identity

ଏହା ପ୍ରଥମେ ମାର୍ଚ୍ଚ ୧୯୮୦ ମସିହାରେ ଅଷ୍ଟ୍ରେଲିଆର ଆଡ଼ିଲେଡ଼ରେ ଅନୁଷ୍ଠିତ "International Writers Week"ରେ ଉପସ୍ଥାପିତ ହୋଇଥିଲା । ପରେ "University of Western Australia"ର ମୁଖପତ୍ର "Westerley" ଏବଂ ମହୀଶୂରରୁ ପ୍ରକାଶିତ "The Literary Criterion"ର Vol XVI, No.1, 1981 ସଂଖ୍ୟାରେ ପ୍ରକାଶିତ ହୋଇଥିଲା ।

2. My Exercises in Freedom

ଏହା କ୍ୟାନେଡ଼ାର University of British Columbia, Vancouver BC, Dept. of Asiatic Studies ଦ୍ୱାରା ଅକ୍ଟୋବର ୨, ୧୯୮୯ରେ ଆୟୋଜିତ ଏକ ସଭାରେ ଉପସ୍ଥାପିତ ହୋଇଥିଲା ।

3. National Unity and Integrity in Indian Lituature

ଏହା ଭୁବନେଶ୍ୱରରେ ୧୫ ଜୁନ ୧୯୮୩ରେ ଆୟୋଜିତ ଏକ ରାଜ୍ୟସ୍ତରୀୟ ସାହିତ୍ୟ ସମ୍ମେଳନୀରେ ଉପସ୍ଥାପିତ ହୋଇଥିଲା ।

4. The Inside Story : An Introduction

ଏହା ଲେଖକଙ୍କର ଆଳାପ-ଆଲୋଚନା ତାଙ୍କ ନିଜ ଗଳ୍ପମାନଙ୍କ ଉପରେ । ସେଥିରେ କଥାବସ୍ତୁ କେମିତି କେଉଁଠୁ ଆସିଲା, ସେ ବିଷୟରେ ତାଙ୍କ ନିଜର ଅନୁମାନ । ଏହା ସାହିତ୍ୟ ଏକାଡ଼େମୀ (ନୂଆଦିଲ୍ଲୀ)ଙ୍କ ମୁଖପତ୍ର "Indian Literature" (Vol XXX No. 4, July-August 1986)ରେ ପ୍ରକାଶିତ ହୋଇଥିଲା ।

5. The Oriya Short Story

ଏହି ଲେଖାଟି ପ୍ରଥମ ବିଶ୍ୱ ଓଡ଼ିଆ ସମ୍ମେଳନୀ ୧୯୯୨ର ସ୍ମରଣିକା ପୁସ୍ତକର "Orissa, Past and Present" ବିଭାଗରେ ସନ୍ନିବେଶିତ ହୋଇଥିଲା ।

6. Autonomy of Literature

ଏହା ମାର୍ଚ୍ଚ ୧, ୧୯୯୨ରେ Indian writers Associationଙ୍କ ଦ୍ୱାରା କଲିକତାରେ ଆୟୋଜିତ ଏକ ସାହିତ୍ୟ ସମ୍ମେଳନୀରେ ଉପସ୍ଥାପିତ ହୋଇଥିଲା ।

7. The Melevance of form and style in the modern short story

ଏହା ‘‘ସାଂପ୍ରତିକ’’ ଅନୁଷ୍ଠାନ ଦ୍ୱାରା ଡିସେମ୍ବର ୧୦, ୧୯୯୪ରେ ଦିଲ୍ଲୀରେ ଆୟୋଜିତ ଏକ ହିନ୍ଦୀ ଓଡ଼ିଆ ଦ୍ୱିପାକ୍ଷିକ ସାହିତ୍ୟ ସଭାରେ ଉପସ୍ଥାପିତ ହୋଇଥିଲା ।

8. Who's afraid of the 21st century ?

ଏହା ପ୍ରଥମେ ୧୯୮୬ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ (ଭୁବନେଶ୍ୱର)ଙ୍କ ଇଂରାଜୀ ବିଭାଗ ଦ୍ୱାରା ଆୟୋଜିତ ଏକ ସାହିତ୍ୟ ସଭାରେ ଉପସ୍ଥାପିତ ହୋଇଥିଲା । ପରେ ସେମାନଙ୍କର ମୁଖପତ୍ର "Journal of Literary Studies (Vol 10, No. 2 1987)ରେ ପ୍ରକାଶିତ ହୋଇଥିଲା ।

9. Bankim Chandra's Influance on Oriya Literature

ଏହା କଲିକତାର Asiatic Societyଙ୍କ ଦ୍ୱାରା ଆୟୋଜିତ ଏକ ସର୍ବଭାରତୀୟ ସାହିତ୍ୟ ସମ୍ମେଳନୀରେ ଡିସେମ୍ବର ୮, ୧୯୯୪ରେ ଉପସ୍ଥାପିତ ହୋଇଥିଲା । ପରେ

ଭୁବନେଶ୍ୱରରୁ ପ୍ରକାଶିତ ସାହିତ୍ୟ ପତ୍ରିକା "Revaluation" (Vol I Writer 1995)ରେ ପ୍ରକାଶିତ ହୋଇଥିଲା । ଉଲ୍ଲେଖଯୋଗ୍ୟ ଯେ ଏହାର ଓଡ଼ିଆ ରୂପାନ୍ତର 'ବଂକିମଚନ୍ଦ୍ର ଏବଂ ଓଡ଼ିଆ ସାହିତ୍ୟ' କଟକରୁ ପ୍ରକାଶିତ ଦ୍ୱିଭାଷିକ ସାହିତ୍ୟ ପତ୍ରିକା ''ଦ୍ୱିଧାରା''ରେ ପ୍ରକାଶିତ ହୋଇଛି । (୩ୟ ବାର୍ଷିକ ସଂଖ୍ୟା ୨୦୦୩) ।

10. Towards Perceptions of an Unreal world

ଏହା ୩୦ ସେପ୍ଟେମ୍ବର ୧୯୯୫ରେ ମହାତ୍ମାଗାନ୍ଧୀଙ୍କର ୧୨୫ତମ ଜୟନ୍ତୀ ଉପଲକ୍ଷ୍ୟରେ ଭୁବନେଶ୍ୱରରେ ଆୟୋଜିତ ଏକ ରାଜ୍ୟ ସ୍ତରୀୟ ସମ୍ମେଳନୀରେ "Gandhi's Version of Man - Cultural elements in Education" ଶୀର୍ଷକ ଆଲୋଚନା ଚକ୍ରରେ ଉପସ୍ଥାପିତ ହୋଇଥିଲା ।

11. My Writing, My Times

ଏହା କେରଳର ଆଲୱାଏ, କୋଚିନ୍ ଠାରେ ଅନୁଷ୍ଠିତ ଏକ ସର୍ବଭାରତୀୟ ସମ୍ମେଳନୀରେ ସେପ୍ଟେମ୍ବର ୧୭, ୧୯୯୪ରେ ଉପସ୍ଥାପିତ ହୋଇଥିଲା ।

II. "Learn to write a short story - the art, craft and ankichis

ପ୍ରକାଶକ :- B.R. Publishers, Delhi, 2000 AD

ଓଡ଼ିଆରେ ପ୍ରକାଶିତ 'କଥା ସାହିତ୍ୟର କଳା ଓ କାରିଗରୀ' ପରି ଏଥିରେ ଲେଖକ ନିଜର ଲେଖକୀୟ ଅନୁଭୂତି ମାଧ୍ୟମରେ ଗଳ୍ପଲେଖାର କଳା, କାରିଗରୀ ଏବଂ ମୁଣ୍ଡବଥା ବିଷୟରେ କିଛି ଆଳାପ-ଆଲୋଚନା କରିବାକୁ ଚାହିଁଛନ୍ତି ଦେଶର ନୂଆ କଥାକାରମାନଙ୍କ ସହିତ ।

ଏହା ବ୍ୟତୀତ ଯେଉଁ କେତୋଟି ଇଂରେଜୀ ଲେଖା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ, ଅବା ସଭାସମିତିରେ ଉପସ୍ଥାପିତ ହୋଇଛି ଏବଂ ଯଥାଶୀଘ୍ର ଗୋଟିଏ ନୂଆ ସଂକଳନର ଅନ୍ତର୍ଭୁକ୍ତ ହେବ ବୋଲି ଆଶା କରାଯାଏ, ତାହା ଏହିପ୍ରକାର :-

1. Thoughts on Indo-English Poetry

ଏହା ଚେନାଇରୁ ପ୍ରକାଶିତ "Indian Literary Endeavoer"ର ଏପ୍ରିଲ ୧୯୮୦ ସଂଖ୍ୟାରେ ପ୍ରକାଶିତ ହୋଇଥିଲା ।

2. Indianness : Some Studies in the Abswrd

ଏହା ପ୍ରଥମେ ମହୀଶୂରର ''ଧ୍ୱନ୍ୟାଲୋକ'' ସାହିତ୍ୟ ଅନୁଷ୍ଠାନର ଆନୁକୂଲ୍ୟରେ ଆୟୋଜିତ ଗୋଟିଏ ସେମିନାର୍‌ରେ ୧୯୮୫ ମସିହାରେ ଉପସ୍ଥାପିତ ହୋଇଥିଲା । ପରେ ''ଧ୍ୱନ୍ୟାଲୋକ''ର ମୁଖପତ୍ର "Indian Literary Criterion" (Vol XXI, No. 1 and 2, 1986)ରେ ପ୍ରକାଶିତ ହୋଇଥିଲା ।

3. The story of Modern Oriya fiction

ଏହା ଦିଲ୍ଲୀରୁ ପ୍ରକାଶିତ "Financial Express" ସଂବାଦପତ୍ରର ଜାନୁୟାରୀ ୨, ୧୯୮୩ ରବିବାର ସଂଖ୍ୟାରେ "Books" ବିଭାଗରେ ପ୍ରକାଶିତ ହୋଇଥିଲା ।

4. One in Many Languges

ଏହା ''ସାଂପ୍ରତିକ'' ଅନୁଷ୍ଠାନର ମୁଖପତ୍ର "The Sampratik"ର ପ୍ରଥମ ସଂଖ୍ୟା (January 1986)ରେ ପ୍ରକାଶିତ ହୋଇଥିଲା ।

5. Autonomy for an Arts institution

ଏହା ଭୋପାଳରେ ଅବସ୍ଥିତ 'ଭାରତଭବନ'ର ଭବିଷ୍ୟତକୁ ନିର୍ଣ୍ଣୟ କରିବା ଦିଗରେ ମଧ୍ୟପ୍ରଦେଶ ସରକାରଙ୍କ ଦ୍ୱାରା ଏପ୍ରିଲ ୧୯୯୪ରେ ଭୋପାଳଠାରେ ଆୟୋଜିତ ଏକ ସର୍ବଭାରତୀୟ ସମ୍ମେଳନୀରେ ଉପସ୍ଥାପିତ ହୋଇଥିଲା ।

6. Beyond a Million Mutinies

ଏହା କଟକର "The Universe" ନାମକ ସାହିତ୍ୟ ଅନୁଷ୍ଠାନ ଦ୍ୱାରା ଆୟୋଜିତ ଏକ ସାହିତ୍ୟ ସଭାରେ ଉପସ୍ଥାପିତ ହୋଇଥିଲା । (୧୯୯୬)

7. Being an Indian Writer

ଏହା କ୍ୟାନେଡ଼ାର ଅଣ୍ଟାରିଓ ପ୍ରଦେଶରେ ଥିବା McMaster Universityର Dept. of Religious studies ଦ୍ୱାରା ଆୟୋଜିତ ଏକ ସାହିତ୍ୟ ସଭାରେ ଉପସ୍ଥାପିତ ହୋଇଥିଲା । (ନଭେମ୍ବର ୧୯୯୭) । ପରେ ସେହି ପ୍ରଦେଶର ଟରୋଣ୍ଟୋ ସହରରେ ଥିବା York University ଦ୍ୱାରା ଆୟୋଜିତ ଏକ ସାହିତ୍ୟ ସଭାରେ ମଧ ଉପସ୍ଥାପିତ ହୋଇଥିଲା ।

## ଅନୁବାଦ

କିଶୋରୀ ଚରଣ ଅନୁବାଦ ଉପରେ ବିଶେଷ ଗୁରୁତ୍ୱ ଦେଇ ଆସିଛନ୍ତି । କାରଣ, ସେ କୁହନ୍ତି, ଯେ ଅନୂଦିତ ସାହିତ୍ୟ ମାଧ୍ୟମରେ ହିଁ ଏକ ଯଥାର୍ଥ 'ଭାରତୀୟ ସାହିତ୍ୟ'କୁ ଗଢ଼ିତୋଳି ହେବ, ଆମର ବିଭିନ୍ନ ଭାଷାରେ ରଚିତ ସାହିତ୍ୟକୁ ପରସ୍ପର ମଧରେ ଚିହ୍ନିବା ପାଇଁ, ତଥା ଭାରତ ବାହାରେ ଚିହ୍ନାଇବା ପାଇଁ । ଏହେତୁ ସେ ସାହିତ୍ୟ ଏକାଡ଼େମୀଙ୍କ ଦ୍ୱାରା ଆୟୋଜିତ ବିଭିନ୍ନ ଅନୁବାଦ ସମ୍ବନ୍ଧୀୟ ଆଲୋଚନାଚକ୍ର ଏବଂ କର୍ମଶାଳାରେ ବିଶିଷ୍ଟ ଭୂମିକା ଗ୍ରହଣ କରିବା ସହ ନିଜେ ନିଜର ତଥା ଅନେକ ଅନ୍ୟମାନଙ୍କ ଓଡ଼ିଆ ଗଳ୍ପକୁ ଇଂରାଜୀରେ ଅନୁବାଦ କରିଛନ୍ତି । ନିଜ ଗଳ୍ପର ସ୍ୱରଚିତ ଓଡ଼ିଆ ଅନୁବାଦ ବିଷୟରେ ସମସ୍ତ ତଥ୍ୟ ଏହି ସଂକଳନରେ ଥିବା ଗଳ୍ପ ବିଭାଗର 'ଅନୂଦିତ ଗଳ୍ପ' ଅନୁଭାଗରେ ଦେଖିବାକୁ ମିଳିବ । ତାଙ୍କର ବିଭିନ୍ନ ଓଡ଼ିଆ ପ୍ରବଂଧକୁ ଇଂରାଜୀରେ ଏବଂ ଇଂରାଜୀ ପ୍ରବଂଧକୁ ଓଡ଼ିଆରେ ରୂପାନ୍ତରିତ କରିବା ମଧ୍ୟ ତାଙ୍କର ଅଭ୍ୟାସ । ଏହାଛଡ଼ା ସେ ସାହିତ୍ୟ ଏକାଡ଼େମୀ (ନୂଆଦିଲ୍ଲୀ)ଙ୍କ ତରଫରୁ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ଦୁଇଟି ଇଂରାଜୀ ଉପନ୍ୟାସର ଓଡ଼ିଆ ଅନୁବାଦ କରିଛନ୍ତି । ତାହା ଏହିପ୍ରକାର :-

୧. ଅରୁଣ ଯୋଶୀଙ୍କ ଉପନ୍ୟାସ "The Last Labyrinth"ର ଅନୁବାଦ - ''ଶେଷ ଗୋଲକଧଂଦା'' । ଏହା ସାହିତ୍ୟ ଏକାଡ଼େମୀଙ୍କ ଦ୍ୱାରା ୧୯୯୬ରେ ପ୍ରକାଶିତ ହୋଇଛି ।

୨. ନୟନତାରା ସାଏଗଲ୍‌ଙ୍କର ଉପନ୍ୟାସ "Rich like us"ର ଅନୁବାଦ - ''ଆମରି ପରି ବଡ଼ଲୋକ'' । ଏହା ସାହିତ୍ୟ ଏକାଡ଼େମୀଙ୍କ ଦ୍ୱାରା ୨୦୦୧ରେ ପ୍ରକାଶିତ ହୋଇଛ ।

## ସଂକଳନ ଓ ସଂପାଦନା

ସର୍ବଭାରତୀୟ ସାହିତ୍ୟକ୍ଷେତ୍ରରେ ପରିଚିତ ହେଲା ପରେ ଏବଂ 'ଭାରତୀୟ ସାହିତ୍ୟ'କୁ ଗଢ଼ି ତୋଳିବା ଦିଗରେ ନିଜର ବିଶେଷ ଆଗ୍ରହ ହେତୁ, କିଶୋରୀ ଚରଣ ଏହିପ୍ରକାର ଦାୟିତ୍ୱ ମଧ୍ୟ ବରଣ କରିଛନ୍ତି, ତାଙ୍କର ମୌଳିକ ସାହିତ୍ୟ ରଚନା ଏବଂ ବିଭିନ୍ନ ସାହିତ୍ୟିକ କାମର ଫାଙ୍କରେ । ଅଦ୍ୟାବଧି ସଂପନ୍ନ ହୋଇଥିବା ଦାୟିତ୍ୱ ଏହିପ୍ରକାର :

୧. "Modern Indian short stories Vol IV"

(ଆସାମୀୟ, ବଂଗଳା ଏବଂ ଓଡ଼ିଆ ଭାଷାରେ ଲିଖିତ ଓ ପ୍ରକାଶିତ ଛଅଟି ଲେଖାଏଁ ଗଳ୍ପର ନିର୍ବାଚନ ଏବଂ ଇଂରାଜୀ ଅନୁବାଦ କ୍ରମେ ସଂକଳନଟିର ସଂପାଦନା, ସୁଦୀର୍ଘ ମୁଖବଂଧ ସହ)

ପ୍ରକାଶକ - ଇଣ୍ଡିଆନ୍ କାଉନ୍‌ସିଲ ଅଫ୍ କଲ୍‌ଚରାଲ୍ ରିଲେସନ୍‌ସ୍

ନୂଆଦିଲ୍ଲୀ, ପ୍ରଥମ ସଂସ୍କରଣ - ୧୯୮୩

୨. ''ମଶାଣିର ଫୁଲ ଏବଂ ଅନ୍ୟାନ୍ୟ ଗଳ୍ପ''

(ସଚି ରାଉତରାଏଙ୍କ ଦ୍ୱାରା ଲିଖିତ ୩୧ ଗୋଟି ଗଳ୍ପର ସଂକଳନ ଓ ସଂପାଦନା, ସୁଦୀର୍ଘ ମୁଖବଂଧ ସହ)

ପ୍ରକାଶକ - ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ନୂଆଦିଲ୍ଲୀ, ପ୍ରଥମ ସଂସ୍କରଣ - ୧୯୯୨

୩. "Beyond the Roots"

(ଫକୀରମୋହନଙ୍କ ଠାରୁ ଆରମ୍ଭ କରି ୩୪ ଗୋଟି ଓଡ଼ିଆ ଗଳ୍ପର ଇଂରାଜୀ ଅନୁବାଦକ୍ରମେ ସେଥିର ସଂପାଦନା, ମୁଖବଂଧ ସହ)

ପ୍ରକାଶକ - ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ନୂଆଦିଲ୍ଲୀ, ପ୍ରଥମ ସଂସ୍କରଣ - ୧୯୯୮, ଦ୍ୱିତୀୟ ସଂସ୍କରଣ ୨୦୦୦

## ସଂକ୍ଷେପୀକରଣ

୧୯୯୭ ମସିହାରେ କିଶୋରୀ ଚରଣଙ୍କ ବିଦେଶ ଯାତ୍ରାର ଅବ୍ୟବହିତ ପୂର୍ବରୁ ଦିଲ୍ଲୀରେ ଥିଲାବେଳେ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆର ମୁଖ୍ୟ ସଂପାଦକ ଶ୍ରୀମତୀ ବର୍ଷା ଦାସ ଲେଖକଙ୍କୁ ଏକ ଅଭିନବ ଦାୟିତ୍ୱ ଗ୍ରହଣ କରିବାକୁ ଅନୁରୋଧ କଲେ । କହିଲେ ସ୍ୱାଧୀନତାର ସୁବର୍ଣ୍ଣ

ଜୟନ୍ତୀ ଉପଲକ୍ଷ୍ୟରେ ସେମାନେ କେତୋଟି ବହି ଛାପିବାକୁ ଚାହାଁନ୍ତି ଯାହା ବିଶେଷତଃ ଗ୍ରାମାଞ୍ଚଳର ପୌଢ଼ ନବ ସାକ୍ଷରମାନଙ୍କ ପାଇଁ ଉଦ୍ଦିଷ୍ଟ । ସେହି ପର୍ଯ୍ୟାୟରେ ରହିଛି ଡଃ. ହରେକୃଷ୍ଣ ମହତାବଙ୍କର ସ୍ୱାଧିନତା ସଂଗ୍ରାମ ଭିତ୍ତିକ ଉପନ୍ୟାସ 'ପ୍ରତିଭା'ର ସଂକ୍ଷେପୀକରଣ । ଏବଂ ସେହି କାମଟି ଜଣେ ବିଶିଷ୍ଟ ଲେଖକଙ୍କ ଦ୍ୱାରା କରାହେଲେ ଭଲ ହେବ । ଏହି ଅନୁରୋଧକୁ ଏଡ଼ି ଦେଇ ନ ପାରି ଲେଖକ ଏଇ ନୂଆ କାମଟି ହାତକୁ ନେଲେ, ଏବଂ ବିଦେଶ ଯାତ୍ରା ପୂର୍ବରୁ ପାଣ୍ଡୁଲିପିଟିକୁ ତାଙ୍କ ହାତରେ ଦେଇ ଆସିଥିଲେ ।

ସରଳ ଭାଷାରେ ସଂକ୍ଷେପୀକୃତ ''ପ୍ରତିଭା'' ୧୯୯୭ରେ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ୍ ଇଣ୍ଡିଆଙ୍କ ଦ୍ୱାରା ପ୍ରକାଶିତ ହୋଇଛି ।



# ବିଭିନ୍ନ ସାରସ୍ୱତ ପୁରସ୍କାର ଓ ସମ୍ମାନ

(୧) ପ୍ରଜାତନ୍ତ୍ର ପ୍ରଚାର ସମିତି 'କଟକ ଦ୍ୱାରା ପ୍ରଦତ୍ତ' ବିଷୁବ ମିଳନ ରୌପ୍ୟ ଜୟନ୍ତୀ ପୁରସ୍କାର' - ୧୯୭୨ ।

(୨) "ଜୀବନ ରଂଗ" ସାହିତ୍ୟପତ୍ରିକା ଦ୍ୱାରା ପ୍ରଦତ୍ତ ମାନପତ୍ର - ୧୯୭୪ ।

(୩) "ମଣିହରା" ଗଳ୍ପସଂକଳନ ପାଇଁ ପ୍ରଦତ୍ତ ଓଡ଼ିଆ ସାହିତ୍ୟ ଏକାଡେମୀ ପୁରସ୍କାର - ୧୯୭୬ ।

(୪) "ଠାକୁର ଘର"ଗଳ୍ପସଂକଳନ ପାଇ ପ୍ରଦତ୍ତ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର - ୧୯୭୬ ।

(୬) "ଧରିତ୍ରୀ" ସଂବାଦପତ୍ର ଦ୍ୱାରା ପ୍ରଦତ୍ତ ସଂବର୍ଦ୍ଧନା ଓ ଉପହାର - ୧୯୭୯ ।

(୭) "ଭିନ୍ନ ପାଉଁଶ" ଗଳ୍ପସଂକଳନ ପାଇଁ ପ୍ରଦତ୍ତ" ସାରଳା ପୁରସ୍କାର - ୧୯୮୫ ।

(୮) ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକ ଦ୍ୱାରା ଆଜୀବନ ସାହିତ୍ୟକୃତି ପାଇଁ ପ୍ରଦତ୍ତ 'ବିଷୁବ ପୁରସ୍କାର' - ୧୯୯୨ ।

(୯) "ବୁଧବାରିଆ ସାହିତ୍ୟ ଆସର" ବିଶ୍ୱଭାରତୀ ଶାନ୍ତିନିକେତନ ଦ୍ୱାରା ପ୍ରଦତ୍ତ ସଂବର୍ଦ୍ଧନା ଓ ମାନପତ୍ର - ୧୯୯୩ ।

(୧୦) ମାହାଂଗା ମହିଳା ମହାବିଦ୍ୟାଳୟରେ ମାହାଂଗା ବ୍ଲକ୍ ଏବଂ ଆଖପାଖ ଅଞ୍ଚଳରେ ଥିବା ୧୨ଗୋଟି ସାହିତ୍ୟ ଅନୁଷ୍ଠାନ ଦ୍ୱାରା ପ୍ରଦତ୍ତ ସଂବର୍ଦ୍ଧନା ଓ ମାନପତ୍ର ।

(୧୧) ଉତ୍କଳ ପାଠକ ସଂସଦଙ୍କ ଦ୍ୱାରା ପ୍ରଦତ୍ତ ସଂବର୍ଦ୍ଧନା ଓ ମାନ ପତ୍ର - ୧୯୯୬ ।

(୧୨) "ଭୁବନେଶ୍ୱର ପୁସ୍ତକ ମେଳା କମିଟି" ଦ୍ୱାରା ପ୍ରଦତ୍ତ ସଂବର୍ଦ୍ଧନା ଓ ମାନପତ୍ର - ୧୯୯୭ ।

(୧୩) ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱରଙ୍କ ଦ୍ୱାରା ପ୍ରଦତ୍ତ ସମ୍ମାନସୂଚକ ଡି.ଲିଟ୍ (D. Litt. honoris causa)/ ''କଳା ପରମ ଭୂଷଣ'' ଉପାଧି ଏବଂ ମାନପତ୍ର - ୧୯୯୭ ।

(୧୪) ଖରସ୍ରୋତା ସାଂସ୍କୃତିକ ପରିଷଦର ଦଶମ ସୀମାବର୍ତ୍ତନ ଉତ୍ସବରେ ପ୍ରଦତ୍ତ ସଂବର୍ଦ୍ଧନା ଓ ମାନପତ୍ର ୧୯୯୮ ।

(୧୫) ଲେଖକଙ୍କ 'ପ୍ଲାଟିନମ୍ ଜୁବ୍‌ଲି' ଉପକ୍ଷରେ କିଶୋରୀଚରଣ ଅଭିନନ୍ଦ ସମିତିଙ୍କ ଦ୍ୱାରା ପ୍ରଦତ୍ତ ସଂବର୍ଦ୍ଧନା ଓ ମାନପତ୍ର - ୧୯୯୯ । ଏହି ଉପଲକ୍ଷ୍ୟରେ, ''ଗଦ୍ୟ ଶିଳ୍ପୀ କିଶୋରୀଚରଣ'' ନାମକ ଗୋଟିଏ ପୁସ୍ତକ ମଧ୍ୟ ସମିତିଙ୍କ ଦ୍ୱାରା ପ୍ରକାଶିତ ହୋଇଛି ।

(୧୬) "ସହକାର ମକର ମିଳନ" ଉତ୍ସବରେ ପ୍ରଦତ୍ତ ସଂବର୍ଦ୍ଧନା ଓ ମାନପତ୍ର - ୨୦୦୦ ।

(୧୭) "ଉତ୍କଳ ସାହିତ୍ୟକଳା ପରିଷଦ" ଦ୍ୱାରା ପ୍ରଦତ୍ତ ଉପାଧି " ଉତ୍କଳ ସାହିତ୍ୟ ଶ୍ରୀ" ଏବଂ ମାନପତ୍ର - ୨୦୦୩ ।



## ସଂଳାପ

# ସାକ୍ଷାତ୍‌କାର ତଥା ଲେଖକୀୟ ଉପସ୍ଥାପନା

କିଶୋରୀ ଚରଣ ଯାହା ଲେଖିଯାଇଛନ୍ତି ତା ପଛରେ ଥିବା ତାଙ୍କ ନିଜସ୍ୱ ଅନୁଭୂତି, ଦୃଷ୍ଟିକୋଣ ଏବଂ ଆଭିମୁଖ୍ୟ ବିଷୟରେ କିଛି ଜାଣିବାର କୌତୂହଳକୁ ଏକ ଅଳସ ବିଳାସ ବୋଲି କହିହେବ କି ? ଏବଂ ଲେଖକ ନିଜେ ମଧ କ'ଣ ଚାହିଁବେ ନାହିଁ ଯେ ପାଠକ-ପାଠିକା ମାନେ ମୋ ଲେଖାଟିକୁ, ଭୁଲ୍ ବୁଝନ୍ତୁ ନାହିଁ, ଅର୍ଥାତ୍ ଏହି ଭାବରେ ବୁଝନ୍ତୁ ? ଯାହାହେଉ କିଶୋରୀଚରଣ ଜଣେ, 'କଥାକୁହା' ଲେଖକ ଏବଂ ସେ ତାଙ୍କର ଏହି ତଥାକଥିତ ଦୁର୍ବଳାତର ସଫେଇ ବାଡ଼ି ଦେଇଛନ୍ତି ତାଙ୍କ ଆତ୍ମଜୀବନୀରେ । ସେଇଠୁଁ ମୁଁ ଭାବିଲି ଯେ ତାଙ୍କର ଏଇ କଥାକୁହାକୁ ମଧ ଯଥାବିଧି ସମ୍ମାନ ଦେବା ଉଚିତ୍, ତାଙ୍କ ସାହିତ୍ୟକୁ ଚିହ୍ନିବା ପାଇଁ । ସେହେତୁ ଏହି ସ୍ୱତନ୍ତ୍ର ବିଭାଗର ଆବଶ୍ୟକତା ରହିଛି ବୋଲି ଆମେ ସ୍ଥିର କଲୁ । ଏହା ଦୁଇଟି ଭାଗରେ ବିଭକ୍ତ :

(୧) ପ୍ରଶ୍ନୋତ୍ତର ମାଧମରେ ଲେଖକଙ୍କ ସହିତ ଅନୁଷ୍ଠିତ ବିଭିନ୍ନ ସାକ୍ଷାତ୍‌କାରର ସୂଚୀ ।

(୨) ପ୍ରଶ୍ନୋତ୍ତର ବହିର୍ଭୂତ କେଉଁ ଲିଖିତ ଅବା ପଠିତ ଆଳାପ ଆଲୋଚନା ମାଧମରେ ଲେଖକ ଯାହା କହିଛନ୍ତି ବେଳେବେଳେ, ତାଙ୍କ ନିଜ ସାହିତ୍ୟ ବିଷୟରେ, ସେହି ଉପସ୍ଥାପନାର ସୂଚୀ :

**୧. ସାକ୍ଷାତ୍‌କାରର ସୂଚୀ-**

୧. 'ଗଳ୍ପ'ସାହିତ୍ୟପତ୍ରିକାର ସଂପାଦକ ବିଭୂତି ପଟ୍ଟନାୟକଙ୍କ ସହିତ ସାକ୍ଷାତ୍‌କାର - 'ଗଳ୍ପ' ଅକ୍ଟୋବର - ଡିସେମ୍ବର ୧୯୭୨ ।

୨. ଅଭୟ ସିଂହଙ୍କ ସହିତ ସାକ୍ଷାତ୍‌କାର ''ଅଧୁନା, ସେପ୍ଟେମ୍ବର-ଅକ୍ଟୋବର, ୧୯୮୦'' ।

୩. ''କିଶୋରୀଚରଣ ଦାସଙ୍କ ସହିତ ଅନ୍ତରଂଗ ମୂହୁର୍ତ୍ତ କେତୋଟି''- ସାକ୍ଷାତ୍‌କାର । 'ଅନିଷା' 'ସାହିତ୍ୟପତ୍ର', ପୂଜା ସ୍ପେଶାଲ୍ ୧୯୮୭ ।

୪. ''ଛାଇ ଆଲୁଅର ଖେଳ ଦେଖିଦେଖି ଆପଣାକୁ ଝୁଣୁଥାରେ ମନୁଆ''- ବିଜୟ ମଲ୍ଲଙ୍କ ସହିତ ସାକ୍ଷାତ୍‌କାର । 'ଆମରି ଗପ' ଜାନୁୟାରୀ-ମାର୍ଚ୍ଚ ୧୯୮୮ ।

୫. ''ମୋ ଦୃଷ୍ଟିରେ ନାରୀ''- ଜ୍ୟୋତ୍ସ୍ନା ରାଉତରାୟଙ୍କ ସହିତ ସାକ୍ଷାତକାର୍ । ରବିବାର 'ସଂବାଦ' ୨୩ ଅକ୍ଟୋବର ୧୯୮୮ ।

୬. ''ଗୋଧୂଳି ବେଳାର ହସ''- ଗୁରୁ ରାଉତଙ୍କ ସହିତ ସାକ୍ଷାତକାର ରେଭେନ୍ସା ମହାବିଦ୍ୟାଳୟ ନୂତନ ସ୍ନାତକୋତ୍ତର ମୁଖପତ୍ର, ସୃଷ୍ଟି, ୧୯୮୮-୧୯୯୦ ।

୭. ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱରଙ୍କ ଦ୍ୱାରା ଅନୁଷ୍ଠିତ ଏକ ପ୍ରଶ୍ନମଂଚରେ ସର୍ବଶ୍ରୀ ଡଃ ବିଜୟକୁମାର ଶତପଥୀ, ଡଃ ଜିତେନ୍ଦ୍ର ନାରାୟଣ ଦାଶ, ଏବଂ ଡଃ ଅପର୍ଣ୍ଣା ମହାନ୍ତିଙ୍କ ପ୍ରଶ୍ନାବଳୀର ଉତ୍ତର -୨୯.୮.୧୯୯୦ ।

୮. 'ଛାଇ ଆଲୁଅର ଅସପତ୍ନ ରୂପକାର : କିଶୋରୀ ଚରଣ ଦାସ, - ବିଜୟମଲ୍ଲଙ୍କ ସହିତ ସାକ୍ଷାତ୍‌କାର । "କ୍ରାନ୍ତିଧାରା" ପୂଜା ସ୍ପେଶାଲ୍ ୧୯୯୦ ।

୯. କଥୋପକଥନ : ଜୀବନର ବୈଚିତ୍ର୍ୟହିଁ ମୋତେ ଗାଳ୍ପିକ କରାଇଛି । ସର୍ବଶ୍ରୀ ବିଭୂତିଭୂଷଣ ଶତପଥୀ ଏବଂ ମୀନାକ୍ଷୀ ଦାସ ମହାପାତ୍ରଙ୍କ ସହିତ ସାକ୍ଷାତ୍‌କାର । "ନବଧ୍ୱନି" ତୃତୀୟ ବର୍ଷ, ତୃତୀୟ ଏବଂ ଚତୁର୍ଥ ସଂଖ୍ୟା ୧୯୯୦ ।

୧୦. "ସାକ୍ଷାତ୍‌କାର ଗାଳ୍ପିକ କିଶୋରୀଚରଣ ଦାସଙ୍କ ସହ"- "ପ୍ରଜାତନ୍ତ୍ର ସାପ୍ତାହିକୀ"୨୧-୨୭ ଏପ୍ରିଲ୍ ୧୯୯୧ ।

୧୧. "ଭଂଗା ଖେଳଣାରେ ବିଭୋର ନିଜସଂଜ : କଥାକାର କିଶୋରୀଚରଣ" - ସଂପାଦନା ମଣ୍ଡଳୀଙ୍କ ସହିତ ସାକ୍ଷାତକାର । ଅକ୍ଟୋବର-ନଭେମ୍ବର-ଡିସେମ୍ବର ଶାରଦୀୟ "ଶବ୍ଦସୌଧ" ୧୯୯୨ ।

୧୨. "କିଶୋରୀଚରଣଙ୍କ ସହିତ କେତୋଟି ଅନ୍ତରଂଗ ମୁହୂର୍ତ୍ତ "- ଶ୍ରୀମତୀ ହେମାଙ୍ଗିନୀ ରାୟଙ୍କ ସହିତ ସାକ୍ଷାତ୍‌କାର । "ଜୀବନ ରଂଗ" ଏପ୍ରିଲ୍-ମେ ୧୯୯୩ ।

୧୩. "ମାନନୀୟେଷୁ : କିଶୋରୀଚରଣ ଦାସଙ୍କ ସହିତ ଏକ ଅନ୍ତରଂଗ ମୁହୂର୍ତ୍ତ - ଶ୍ରୀମତୀ ଅନୁରାଧା ମହାନ୍ତିଙ୍କ ସହିତ ସାକ୍ଷାତ୍‌କାର । "ନବଦିଗନ୍ତ" ତୃତୀୟ ବର୍ଷ, ତୃତୀୟ ସଂଖ୍ୟା ୧୯୯୪ ।

୧୪. ''ସ୍ୱନାମଧନ୍ୟ କଥାକାର ତଥା ଓଡ଼ିଶା ସାହିତ୍ୟ ଏକାଡେମୀଙ୍କର ସଭାପତି ଶ୍ରୀଯୁକ୍ତ କିଶୋରୀଚରଣ ଦାସଙ୍କ ସହ ଏକ ଅନ୍ତରଙ୍ଗ ଆଳାପ ଆଲୋଚନା'' - ଶ୍ରୀମତୀ ମୀନାକ୍ଷୀ ଦେବୀଙ୍କ ସହିତ ସାକ୍ଷାତ୍‌କାର । ''ବର୍ତ୍ତିକା'' ଦଶହରା ବିଶେଷାଂକ ୧୯୯୪ ।

୧୫. "ସାରସ୍ୱତ ବନରେ ସୂର୍ଯ୍ୟାସ୍ତ"- ଅଭୟ ସିଂହଙ୍କ ସହିତ ସାକ୍ଷାତ୍‌କାର । "ସଚିତ୍ର ବିଜୟା" ନଭେମ୍ବର ୧୯୯୫ ।

୧୬. "ଶ୍ରୀଯୁକ୍ତ କିଶୋରୀଚରଣ ଦାସଙ୍କ ସହିତ କେତୋଟି ମୁହୂର୍ତ୍ତ"- ସାକ୍ଷାତ୍‌କାର ରେଭେନ୍ସା ମହାବିଦ୍ୟାଳୟ ଛାତ୍ରୀନିବାସର ମୁଖପତ୍ର "ଅୟସକାନ୍ତ" ଏକତ୍ରିଂଶ ସଂସ୍କରଣ ୧୯୯୬ ।

୧୭. "ଅପୂର୍ବା" ର ସଂପାଦକ କ୍ଷୀରୋଦ ଚନ୍ଦ୍ର ପତିଙ୍କ ସହିତ ସାକ୍ଷାତ୍‌କାର -୨୭ ସେପ୍ଟେମ୍ବର ୧୯୯୯ । "ଅପୂର୍ବା" ପ୍ରଥମ ବର୍ଷ, ପ୍ରଥମ ସଂଖ୍ୟା, ୧୯୯୯ ।

୧୮. "ପ୍ରଖ୍ୟାତ କଥାଶିଳ୍ପୀ ସ୍ରଷ୍ଟା କିଶୋରୀଚରଣ ଦାସ"- ଡକ୍ଟର ବିଜୟାନନ୍ଦ ସିଂହଙ୍କ ସହିତ ସାକ୍ଷାତ୍‌କାର । "ଆଗାମୀ ଶତାବ୍ଦୀ"ନଭେମ୍ବର -ଡିସେମ୍ବର ୧୯୯୯

୧୯. ଡକ୍ଟର ହୃଷୀକେଶ ପଣ୍ଡାଙ୍କ ସହିତ ସାକ୍ଷାତ୍‌କାର । ଆକାଶବାଣୀ କଟକ ଦ୍ୱାରା ପ୍ରସାରିତ - ୧୪ ଜାନୁୟାରୀ ୨୦୦୦ ଏବଂ ଆକାଶବାଣୀ, କଟକର ମୁଖପତ୍ର 'ତରଙ୍ଗ' ରେ ପ୍ରକାଶିତ - ଫେବୃୟାରୀ ୨୦୦୦ ।

୨୦. "Knit India Though Literature" (East), Vol -IIର ସଂପାଦିକା ସୁଶ୍ରୀ ଶିବଶଙ୍କରୀଙ୍କ ସହିତ ସାକ୍ଷାତ୍‌କାର । ସେପ୍ଟେମ୍ବର ୧୬/ ୨୦୦୦ରେ ବହିଟି କଲିକତାରେ ପଶ୍ଚିମବଙ୍ଗର ରାଜ୍ୟପାଳ ଶ୍ରୀ ବୀରେନ୍ଦ୍ର ସାହାଙ୍କ ଦ୍ୱାରା ଉନ୍ମୋଚିତ । ପ୍ରକାଶକ - East West Books Pvt. Ltd. Chennai. 2000 ।

୨୧. "ନବଲିପି"ର ସଂପାଦକଙ୍କ ସହିତ ଅନୁଷ୍ଠିତ ସାକ୍ଷାତ୍‌କାର । "ନବଲିପି" ପୂଜା ସଂଖ୍ୟା, ୨୦୦୦ ।

୨୨. କେନ୍ଦୁଝର ମହାବିଦ୍ୟାଳୟର "ସବୁଜିମା ସାହିତ୍ୟ ସଂସଦ" ସହିତ ରଚିତ ସାକ୍ଷାତ୍‌କାର । ସଂସଦର ମୁଖପତ୍ର "ଜୀବନ"ର ବାର୍ଷିକ ବିଶେଷାଂକ ୨୦୦୦ରେ ପ୍ରକାଶିତ ।

୨୩. "ଶୋଭନାର"ର ସଂପାଦିକାଙ୍କ ପ୍ରଶ୍ନାବଳୀର ଉତ୍ତର । "ଶୋଭନା" ପୂଜାସଂଖ୍ୟା ୨୦୦୧ରେ ପ୍ରକାଶିତ ।

୨୪. ଉତ୍କଳ ସାହିତ୍ୟ ସମାଜ କଟକ ଙ୍କ ଦ୍ୱାରା ଶ୍ରୀରାମଚନ୍ଦ୍ର ଭବନରେ ଅନୁଷ୍ଠିତ "କିଶୋରୀଚରଣ ସାରସ୍ୱତ ସଂଧ୍ୟା" ୨୩ . ୨.୨୦୦୨

୨୫. ଇ.ଟି.ଭି (ଓଡ଼ିଆ)ଙ୍କ ଦ୍ୱାରା ଅନୁଷ୍ଠିତ ଡଃ ହରପ୍ରସନ୍ନ ଦାସଙ୍କ ଦ୍ୱାରା ରଚିତ ସାକ୍ଷାତ୍‌କାର । ଫେବୃୟାରୀ ୮, ୨୦୦୩ରେ ଇ.ଟି.ଭି. ଚ୍ୟାନେଲ୍ ଦ୍ୱାରା ପ୍ରସାରିତ ।

୨୬. ଡକ୍ଟର ବିଜୟାନନ୍ଦ ସିଂହଙ୍କ ଦ୍ୱାରା ରଚିତ ସାକ୍ଷାତ୍‌କାର । ''ନବଲିପି'' ନବ ବର୍ଷ ସଂଖ୍ୟା ୨୦୦୩ରେ ପ୍ରକାଶିତ ।

୨୭. ଦୂରଦର୍ଶନ, ଭୁବନେଶ୍ୱର କେନ୍ଦ୍ରର ''ଅକ୍ଷର କାରିଗର'' ପ୍ରୋଗ୍ରାମ୍‌ରେ, ବିଜୟ ମଲ୍ଲଙ୍କ ସହିତ ସାକ୍ଷାତ୍‌କାର - ୧୦.୬.୨୦୦୩ ।

୨୮. OTV ଭୁବନେଶ୍ୱରର "Heart to Heart" ପ୍ରୋଗ୍ରାମ୍‌ରେ ଲେଖକ ଓ ତାଙ୍କ ପତ୍ନୀ କୁମାରୀ ଦାସଙ୍କ ସହିତ ବିଜୟ ମଲ୍ଲଙ୍କ ଦ୍ୱାରା ରଚିତ ସାକ୍ଷାତ୍‌କାର । ୨୮.୮.୨୦୦୩ ।

୨୯. ''ଅବୋଲକରା ଜିଜ୍ଞାସା : ବରିଷ୍ଠ ଗାଳ୍ପିକଙ୍କୁ ପ୍ରଶ୍ନ'' ପର୍ଯ୍ୟାୟରେ ''କାଦମ୍ବିନୀ'' ଗଳ୍ପବିଶେଷାଙ୍କ ଜାନୁଆରୀ ୨୦୦୪ରେ ପ୍ରକାଶିତ ପ୍ରଶ୍ନୋତ୍ତର ।

**୨. ଉପସ୍ଥାପନାର ସୂଚୀ**

(i) ଶାନ୍ତିନିକେତନ ବିଶ୍ୱଭାରତୀର ଓଡ଼ିଶା ବିଭାଗ ଦ୍ୱାରା ଆୟୋଜିତ , ଏକ ସାହିତ୍ୟ ଆସରରେ ଅନୁଷ୍ଠିତ ବାର୍ତ୍ତାଳପ - (i) ମୁଁ କାହିଁକି ଲେଖେ ? (ii) ମୁଁ କାହିଁକି ଏମିତି ଲେଖେ ? ୨୯ ମାର୍ଚ୍ଚ ୧୯୭୦ ।

(ii) "ଅକୁହା କାହାଣୀ" - ଲେଖକଙ୍କର କାହାଣୀ ସବୁ କେଉଁଠି ଆସିଛି, ଏବଂ ସେଥିରେ ସତମିଛ କେଉଁ ପ୍ରକାର, ସେ ବିଷୟରେ ତାଙ୍କର 'ସତ୍ୟପାଠ'। 'କବିଲିପି' ଅକ୍ଟୋବର ୧୯୮୬ରେ ପ୍ରକାଶିତ ଏବଂ 'ଲେଖକର ଦୁଃଖ' ସଂକଳନରେ ସଂଗୃହୀତ । (ଏହା ଲେଖକଙ୍କର ମୌଳିକ ରଚନା "The Untold Story" ର ଓଡ଼ିଆ ରୂପାନ୍ତର । "The Inside Story : an Introduction" ନାମରେ ଏହା ମଧ୍ୟ "Indian Literature" ରେ ପ୍ରକାଶିତ ହୋଇଥିଲା ।

(iii) "ଏକବିଂଶ ଶତାବ୍ଦୀର ଭୂତ"- ୧୯୮୬ରେ ଉତ୍କଳ ବିଶ୍ୱବିଦ୍ୟାଳୟ ଭୁବନେଶ୍ୱର, ଇଂରାଜୀ ବିଭାଗ ଆନୁକୂଲ୍ୟରେ ପ୍ରଦତ୍ତ ଇଂରାଜୀ ଭାଷଣ "Who's afraid of the 21st century ?"ର ଓଡ଼ିଆ ରୂପାନ୍ତର । "ଲେଖକର ଦୁଃଖ"ସଂକଳନରେ ସଂଗୃହୀତ । (୧୯୯୫) ।

(iv) ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଶା ବିଭାଗର ଆନୁକୂଲ୍ୟରେ ପ୍ରଦତ୍ତ ଭାଷଣ 'ନିଜକଥା'। "ଝଙ୍କାର"ଅଗଷ୍ଟ ୧୯୯୩ରେ ପ୍ରକାଶିତ ହୋଇଥିଲା ।

(v) "ମୋ ସମୟ, ମୋ ସାହିତ୍ୟ" । ୧୯୯୪ରେ କେରଳର କୋଚିନ୍ ରେ ଅନୁଷ୍ଠିତ ସର୍ବଭାରତୀୟ ସମ୍ମେଳନୀରେ ଉପସ୍ଥାପିତ ଇଂରାଜୀ ପ୍ରବଂଧ "My Writing, My Times"ର ଓଡ଼ିଆ ରୂପାନ୍ତର । ''ଲେଖକର ଦୁଃଖ'' ସଂକଳନ (୧୯୯୫)ରେ ସଂଗୃହୀତ ।

(vi) "ମୁଁ କ'ଣ ଭାରତୀୟ ଲେଖକ ନୁହେଁ ?" ୧୯୯୭ରେ କ୍ୟାନେଡାର "Methastor University"ରେ ପ୍ରଦତ୍ତ ଭାଷଣ "Being an Indian writer" ର ଓଡ଼ିଆ ରୂପାନ୍ତର । "ନବଲିପି" ଶାରଦୀୟ ବିଶେଷାଙ୍କ ୧୯୯୮ରେ ପ୍ରକାଶିତ ।

ପ୍ରକାଶ ଥାଉ କି ଲେଖକ ଅନ୍ୟାନ୍ୟ ଅନେକ ଲିଖିତ ଏବଂ ପଠିତ ପ୍ରବଂଧରେ ନିଜ ଲେଖା ବିଷୟରେ ଅଳ୍ପ ବହୁତ କହିଥିଲେହେଁ, ଉପରୋକ୍ତ ଲେଖାଗୁଡ଼ିକରେ ସେ ମୁଖ୍ୟତଃ ନିଜ ଲେଖା ବିଷୟରେ କହିଛନ୍ତି, ଏବଂ ସେହେତୁ ଏଗୁଡ଼ିକୁ ଏହି ବିଭାଗରେ ଅନ୍ତର୍ଭୁକ୍ତ କରାଯାଉଛି । ଏହା ମଧ୍ୟ କହି ରଖିଛୁ ଯେ ଏହାଛଡ଼ା ଦୂରଦର୍ଶନ ଏବଂ ଆକାଶବାଣୀ ମାଧ୍ୟମରେ ଲେଖକଙ୍କ ସହିତ ଏକାଧିକ ସାକ୍ଷାତ୍‌କାର ରଚିତ ହୋଇଛି । କିନ୍ତୁ ସେଥିରେ ପ୍ରତିଲିପି ଆମର ହସ୍ତଗତ ହୋଇ ନଥିବାରୁ ସେଥିରେ ସୂଚୀ ଦିଆ ଯାଇପାରିନାହିଁ । ତେବେ ଉଲ୍ଲେଖଯୋଗ୍ୟ ଯେ ୩୧.୧.୨୦୦୩ ରେ ଲେଖକଙ୍କ ଗାଳ୍ପିକ ଗୌରହରି ଦାସଙ୍କ ସହିତ ଉଚିତ ଏକ ସାହିତ୍ୟ ମୂଳକ କଥାଭାଷା, ଆକାଶବାଣୀ କଟକ କେନ୍ଦ୍ରରେ 'ବାର୍ତ୍ତାଳାପ' କାର୍ଯ୍ୟଲିପି ଜରିଆରେ ପ୍ରସାରିତ ହୋଇଛି ।

ପ୍ରତ୍ୟେକ ସାକ୍ଷାତ୍‌କାର ଏବଂ ଉପସ୍ଥାପନାର ସ୍ୱାତନ୍ତ୍ର୍ୟ ରହିଛି । ହେଲେ ଲେଖକଙ୍କର ସୁଦୀର୍ଘ ସାହିତ୍ୟକାଳର ପୃଷ୍ଠଭୂମିରେ କେତେଗୁଡ଼ିଏ ଲେଖା ଏକାଧାରରେ ତତ୍‌କାଳୀନ ତଥା ଅଧୁନାତନ ବୋଲି ମନେ ହୁଏ । ମଧ୍ୟ କେତୋଟି ଅପେକ୍ଷାକୃତ ଗଭୀର ଏବଂ ବ୍ୟାପକ ବୋଲି ଆମର ଧାରଣା । ଏହି ଦୃଷ୍ଟିରୁ ଲେଖକଙ୍କ ସହିତ ପରାମର୍ଶପୂର୍ବକ ନିମ୍ନଲିଖିତ କେତୋଟି ଲେଖାର ସଂପୂର୍ଣ୍ଣ ପ୍ରତିଲିପି ନିମ୍ନରେ ଉଦ୍ଧୃତ କରିବାକୁ ଚାହୁଁଛୁ । ଅନ୍ୟଗୁଡ଼ିକର ପ୍ରତିଲିପି ମଧ୍ୟ ସଂପାଦକ ଏବଂ ଲେଖକଙ୍କ ପାଖରେ ସଂରକ୍ଷିତ ହୋଇ ରହିଛି, ଏବଂ ଅନାୟାସରେ ତାଙ୍କଠାରୁ ମିଳିପାରିବ ।

**ସାକ୍ଷାତ୍‌କାର**

(କ) ବିଭୂତି ପଟ୍ଟନାୟକଙ୍କ ସହିତ ସାକ୍ଷାତ୍ କାର । ୧୯୭୨ ।

(ଖ) ଓଡ଼ିଆ ସାହିତ୍ୟ ଏକାଡେମୀ, ଭୁବନେଶ୍ୱରଙ୍କ ଦ୍ୱାରା ଅନୁଷ୍ଠିତ ସାକ୍ଷାତ୍‌କାର । ୨୯.୮.୧୯୯୦ ।

(ଗ) ସଦା କିଶୋର କିଶୋରୀଚରଣ - ଡକ୍ଟର ବିଜୟାନନ୍ଦ ସିଂହଙ୍କ ସହିତ ସାକ୍ଷାତ୍‌କାର ୨୦୦୨ (ନବଲିପି ନବବର୍ଷ ସଂଖ୍ୟା ୨୦୦୩ରେ ପ୍ରକାଶିତ) ।

**ଉପସ୍ଥାପନା -**

(କ) ''ମୁଁ କାହିଁକି ଲେଖେ'' ବିଶ୍ୱଭାରତୀର ଓଡ଼ିଆ ବିଭାଗ ଦ୍ୱାରା ରଚିତ ବାର୍ତ୍ତାଳପ । ୨୯ ମାର୍ଚ୍ଚ ୧୯୭୦ ।

(ଖ) ''ଏକବିଂଶ ଶତାବ୍ଦୀର ଭୂତ'' (ନିର୍ବାଚିତ ଅଂଶ) । ୧୯୮୬/୧୯୯୫ ।

(ଗ) ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ଆନୁକୂଲ୍ୟରେ ପଠିତ ପ୍ରବନ୍ଧ "ନିଜକଥା" ୧୯୯୩ ।



କେତୋଟି ସାକ୍ଷାତ୍‌କାର

# କିଶୋରୀ ଚରଣ ଦାସ : ଏକ ସାକ୍ଷାତକାର

*ଡକ୍ଟର ବିଭୂତି ପଟ୍ଟନାୟକ*

ଆଧୁନିକ ଓଡ଼ିଆ କଥା ସାହିତ୍ୟରେ କିଶୋରୀ ଚରଣ ଦାସ ହୀରାର ଦୀପ୍ତିରେ ଝଲମଲ କରୁଥିବା ଏକ ଉଜ୍ଜଳ, ଅବିସ୍ମରଣୀୟ ନାମ । ବିଶେଷ କରି ଗତ ଷଷ୍ଠ ଦଶକର ଓଡ଼ିଆ ଗଳ୍ପ-ସାହିତ୍ୟ କ୍ରମଶଃ ଯେତେବେଳେ ନିର୍ଜ୍ଜନ ହୋଇ ଆସୁଥିଲା, ରାଜକିଶୋର ରାୟ, ନିତ୍ୟାନନ୍ଦ ମହାପାତ୍ର ପ୍ରମୁଖ ଅଭିଜ୍ଞ, ପ୍ରବୀଣ କଥା ଶିଳ୍ପୀଗଣ ଯୁଦ୍ଧ-କ୍ଲାନ୍ତ ସେନାପତିଙ୍କ ଭଳି କାନ୍ଧରୁ ତୂଣୀର, ହାତରୁ ଧନୁତୀର ଓହ୍ଲାଇ ଦେଇ ବିଶ୍ରାମକକ୍ଷରୁ ପ୍ରସ୍ଥାନ କରି ଯାଉଥିଲେ, ସେତିକିବେଳେ କଥା-ସାହିତ୍ୟର ରଙ୍ଗମଞ୍ଚ ଭିତରୁ ଧୀର ଅଥଚ ନିଶ୍ଚିତ ପଦକ୍ଷେପରେ ପ୍ରବେଶ କରିଥିଲେ ଏହି ଧୀରୋଦାତ୍ତ ନାୟକ, ଯାହାଙ୍କ କ୍ଷୁଦ୍ରଗଳ୍ପରେ ପ୍ରବୀଣର ଅଭିଜ୍ଞତା ଓ ନବୀନର ଉଦ୍ଦାମତା ପାଠକ ଓ ସମାଲୋଚକଙ୍କ ହୃଦୟରେ ଆଶା ଓ ଆନନ୍ଦର ତରଙ୍ଗ ସୃଷ୍ଟି କରିଥିଲା । ହୋଇପାରେ, ଏଭଳି ଲୋକପ୍ରିୟତା ଓ ପ୍ରତିଷ୍ଠା ଅର୍ଜ୍ଜନ ପାଇଁ କିଶୋରୀଚରଣଙ୍କର ପୂର୍ବ-ପ୍ରସ୍ତୁତି ଥିଲା । ଓଡ଼ିଆ କଥା ସାହିତ୍ୟରେ ଏହା ତାଙ୍କର ଆକସ୍ମିକ, ଅନାହୂତ ଅନୁପ୍ରବେଶ ନୁହେଁ, କିନ୍ତୁ ଯେପରି ଆଶ୍ଚର୍ଯ୍ୟ ଦକ୍ଷତାର ସହ କାଳର ଦନ୍ତାଘାତରେ ବିକ୍ଷତ ସମାଜ ଜୀବନର ଭାବମୂର୍ତ୍ତିକୁ ସେ ଅବିକଳ ନିଜ ଗଳ୍ପ ଭିତରେ ଫୁଟାଇ ଦେଇ ପାରିଲେ, ତାହା ଶବ୍ଦଭେଦୀ ତୀର ଭଳି ପାଠକର ହୃଦୟ-ଭେଦ କରିଗଲା । ଅଭିଜ୍ଞତାରେ ଉଜ୍ଜଳ ଏବଂ ଗଭୀର, ଶୈଳ୍ପିକ ସାର୍ଥକତାରେ ନିଖୁଣ ତାଙ୍କର ଗଳ୍ପଗୁଡିକ ପାଇଁ ପାଠକର ପିପାସା ଆଜି ପ୍ରବଳ । ଏ ଦୃଷ୍ଟିରୁ କିଶୋରୀଚରଙ୍କ ନାମ ସହିତ ସୁରେନ୍ଦ୍ର ମହାନ୍ତିଙ୍କ ନାମ ହିଁ  ଉଚ୍ଚାରଣ କରାଯାଇପାରେ ।

୧୯୨୪ ମସିହା ମାର୍ଚ୍ଚ ପହିଲାରେ କଟକ ସହରରେ ଜନ୍ମଲାଭ କରିଥିବା ଏହି ଲୋକପ୍ରିୟ କଥାଶିଳ୍ପୀ କୃତିତ୍ୱର ସହ ଏମ.ଏ.ଓ ବି. ଏଲ.ପାଶ କରି ଭାରତ ସରକାରଙ୍କ ଅଧୀନରେ ସମସ୍ୟା-ସଂକୁଳ ପଶ୍ଚିମବଙ୍ଗ ଆକାଉଣ୍ଟାଟ୍ ଜେନେରାଲ୍  ଭାବରେ ବର୍ତ୍ତମାନ କଲିକତାରେ ଅବସ୍ଥାପିତ । ଓଡ଼ିଶା ଠାରୁ କାର୍ଯ୍ୟୋପଲକ୍ଷେ ପ୍ରାୟ ଦୂରରେ ରହୁଥିଲେ ସୁଦ୍ଧା ଓଡ଼ିଆ ସାହିତ୍ୟ ସେବାରେ ସେ ସାଧନା-ରତ । ନିଜର କାର୍ଯ୍ୟବ୍ୟସ୍ତ ଜୀବନଜଞ୍ଜାଳ ମଧ୍ୟରେ 'ଗଳ୍ପ' ଶାରଦୀୟ ସଂକଳନର 'ସାକ୍ଷାତ୍‌କାର' ବିଭାଗ ପାଇଁ ଆମେ ତାଙ୍କ ସମ୍ମୁଖରେ ଉପସ୍ଥାପିତ କରିଥିବା ପ୍ରଶ୍ନମାଳାର ସେ ଯେଉଁ ଉତ୍ତର ଦେଇଛନ୍ତି, ତାହା ତାଙ୍କ ଗଳ୍ପ ରଚନା

ରହସ୍ୟ ସଂପର୍କରେ ପାଠକମାନଙ୍କ ଚିନ୍ତାଧାରାକୁ ଉତ୍ତେଜିତ କରିବ ବୋଲି ଆଶା କରାଯାଇପାରେ ।

ଆମର ପ୍ରଥମ ପ୍ରଶ୍ନ : ଆପଣଙ୍କ ଗଳ୍ପ ଲେଖାର ଗଳ୍ପ କଥା କୁହନ୍ତୁ । ଆପଣଙ୍କ ପ୍ରଥମ ଗଳ୍ପ କେବେ, କେଉଁଠି ପ୍ରକାଶ ପାଇଥିଲା ? ଆପଣଙ୍କ କେଉଁ ଗଳ୍ପ ପାଠକମାନଙ୍କ ମନରେ ବିଶେଷ ଆଲୋଡ଼ନ ସୃଷ୍ଟି କରିଥିଲା ?

ଉ : ମୁଁ ପ୍ରଥମେ କବିତା ଲେଖୁଥିଲି । ମୋର ମନେ ପଡୁଛି ସ୍କୁଲରେ ପଢ଼ିବାବେଳେ ବସନ୍ତ ଋତୁଠାରୁ ଆରମ୍ଭ କରି ରାଣୀ ମେରୀଙ୍କର ବୈଧବ୍ୟଶୋକ ପର୍ଯ୍ୟନ୍ତ ବିଭିନ୍ନ ଉପଲକ୍ଷର ସୁଯୋଗ ନେଇ ଦୁଇ ଧାଡ଼ି କବିତା ଲେଖିବାରେ ଆନନ୍ଦ ପାଉଥିଲି । କଲେଜ ଜୀବନରେ କବିତା ସହ ଗଳ୍ପ ଲେଖିବାକୁ ଆରମ୍ଭ କଲି । ବ୍ରହ୍ମପୁରରୁ ପ୍ରକାଶିତ ହେଉଥିବା 'ନବୀନ' ପତ୍ରିକାରେ ମୋର ପ୍ରଥମ ଗଳ୍ପର ଆବିର୍ଭାବ । ବୋଧହୁଏ 'ପରଦା ତଳେ' ମୋର ପ୍ରଥମ ପ୍ରକାଶିତ ଗଳ୍ପ । ସେଥିରେ ମୁଁ ଜଣାଇବାକୁ ଚାହିଁଥିଲି ଯେ ଆମେ ସିନେମା-ପରଦାରେ ଫୁଟି ଉଠୁଥିବା ଦରିଦ୍ର ତାରକାର ଦୁଃଖରେ ବ୍ୟଥିତ ହେଉ, ଲୁହ ଗଡ଼ାଉ, କିନ୍ତୁ ସିନେମା ହଲରୁ ଫେରିଆସି ରୋମାଣ୍ଟିକ୍ ଦରିଦ୍ର ପ୍ରାଣୀମାନଙ୍କୁ ବାଟଘାଟର ଦୃଶ୍ୟ ବୋଲି ମନେକରୁ । ସେତେବେଳେର ଆଉ ଗୋଟିଏ ଗଳ୍ପ 'ପୂର୍ବାପର' । ସେଥିରେ ମୁଁ କହିଲି ଯେ ପ୍ରିୟା-ପରିଣୀତାକୁ ପାଇଲା ପରେ ପ୍ରକୃତରେ ମୁଁ ମୋର ମାଆକୁ ଭଲ ପାଇ ପାରିବି ନାହିଁ, ଯେହେତୁ ମୁଁ ତା'ଠାରୁ ଭିନ୍ନ ହୋଇ ଯାଇ ଅଭିନ୍ନ ଅତୀତକୁ ଭଲ ପାଇବି, ମୋର ମାଆକୁ ମୁଁ ଭୁଲି ନାହିଁ, ଭୁଲିବି ନାହିଁ, ମୁଁ ସେମିତିକା ମରଦ ନୁହେଁ ବୋଲି ପ୍ରତ୍ୟକ୍ଷ ପ୍ରମାଣ ଯୋଗାଇବି, ତାକୁ ଆମ ଦୁଇ ଜଣଙ୍କ ସାଙ୍ଗରେ ସାନ୍ଧ୍ୟଭ୍ରମଣରେ ଯିବାକୁ ବାଧ କରିବି, ଇତ୍ୟାଦି । ଭିତିରି ମନ ଓ ଉପୁରି ଆଚରଣର ଲୁଚୁକାଳିକୁ ମୂଳ କରି ମୋର ପ୍ରଥମ ଗଳ୍ପଗୁଡ଼ିକ ଗଢ଼ିଥିଲି । ଆଜି ମନେ ହେଉଛି ଯେ ଗତ ତିରିଶ ବର୍ଷ ମଧରେ ସେଇ ଲୁଚୁକାଳି ଖେଳର ମଉଜ ଅଧିକତର ସୂକ୍ଷ୍ମ, ଶାଣିତ ହୋଇଛି ମାତ୍ର, ଖେଳ ଭୁଲିଯାଇ ରୋକ୍‌ଠୋକ୍ ନୀତିବାକ୍ୟ (ମନେ ରଖ, ଏଇ ହେଉଛି ସତ କଥା) କହିବାକୁ ଭରସି ପାରୁନାହିଁ । କେତେକ ପାଠକଙ୍କ ମତରେ ମୁଁ ପରୋକ୍ଷରେ ଏଉଟି ସତକଥା ବୋଲି କହି ଦେଇଛି । ହୋଇଥିବ, କିନ୍ତୁ ମୋର ଚଳନ୍ତି ଜୀବନରେ ସେହି ସତ୍ୟକୁ ସାରଥୀ କରି ବନ୍ଧୁ-ନିଧନ କରିପାରି ନାହିଁ । ମୁଁ ହିରୋ ନୁହେଁ । ହିରୋମାନ୍‌ଙ୍କୁ ଚିହ୍ନିପାରି ନାହିଁ । ଦୁର୍ଭାଗ୍ୟ !

ମୋର କେଉଁ ଗଳ୍ପ ପାଠକମାନଙ୍କ ମନରେ ଆଲୋଡନ ସୃଷ୍ଟି କରିଥିଲା, ତା'ର ଉତ୍ତର ଦେବା କଷ୍ଟକର । କାରଣ ସାଧାରଣତଃ ଲୋକପ୍ରିୟ ଗଳ୍ପଗୁଡିକ ଅଶାନ୍ତଧର୍ମୀ ନୁହେଁ । ଜଣେ ଅଧେ ପାଠକ ଅଶାନ୍ତ ହୋଇ ମଝି ନଈରେ ଉବୁଟୁବୁ ହେବାକୁ ଭଲପାଆନ୍ତି । କିନ୍ତୁ ଅଧିକାଂଶ ଭାବନ୍ତି ଯେ କୂଳକିନାରା ନ ଦିଶିଲେ, ନୂତନ ମୂଲ୍ୟବୋଧର ଶ୍ୟାମରୂପ

ଆଖିରେ ନ ପଡ଼ିଲେ ଲେଖକ ଧନ୍ୟବାଦର ପାତ୍ର ନୁହେଁ । ତେଣୁ ମୁଁ ଚାଞ୍ଚଲ୍ୟକାରୀ ଗଳ୍ପଗୁଡ଼ିକର ସନ୍ଧାନ ଦେଇପାରିବି ନାହିଁ । କେବଳ ଲୋକପ୍ରିୟତାର ମାପକାଠି ଦ୍ୱାରା ଦେଖିଲେ 'ଭଂଗାଖେଳଣା', 'ବିଧର୍ମୀ', 'ମଣିହରା', 'ପୁଅ କାନ୍ଦୁଛି', 'ଶହେ ପୁଅ', 'ଗୋଟିଏ ଲାଲ୍ ସନ୍ଧ୍ୟା', 'ରାତି କୁକୁର', ଏହିପରି କେତେଗୁଡ଼ିଏ ଗଳ୍ପ ପାଠକମାନଙ୍କ ମନରେ ବିଶେଷ ରେଖାପାତ କରିଛି ବୋଲି ମୋର ବିଶ୍ୱାସ । ମୋର ନିଜ ମତରେ ଭଙ୍ଗା ଖେଳଣା ମୋର ସବୁଠାରୁ ସାର୍ଥକ ସୃଷ୍ଟି । ପ୍ରଥମତଃ, ଏଥିରେ ବୋଧହୁଏ ଅଛି ଚେତନା-ପ୍ରବାହର ଏକ ସାମାନ୍ୟ ଅଥଚ ସଫଳ ଉଦ୍ୟମ । ଦ୍ୱିତୀୟରେ ଏହି ଗଳ୍ପଟି ନିରପେକ୍ଷ ଭାବେ ସୁନ୍ଦର ଛବି, ଯେଉଁଥିରେ ଲେଖକର ଅହମିକା, ଉଦ୍ଦେଶ୍ୟର ଉତ୍ତାପ ପ୍ରାୟ ନାହିଁ କହିଲେ ଚଳେ । ଗୋଟିଏ କିଶୋରୀ-କନ୍ୟା ଗଳ୍ପର ନାୟିକା ହୋଇଥିବାରୁ ଏହା ସମ୍ଭବ ହୋଇଛି, ନା ଏଥିରେ ଲେଖକର କୃତିତ୍ୱ ଅଛି, ତା'ର ବିଚାର ଆପଣମାନେ କରିବେ ।

ପ୍ର : କାର୍ଯ୍ୟ ଉପଲକ୍ଷେ ଆପଣ ଓଡ଼ିଶା ଠାରୁ ପ୍ରାୟ ଦୂରରେ ରହୁଛନ୍ତି । ଏ ଦୂରତ୍ୱ ଆପଣଙ୍କ ଗଳ୍ପ ଲେଖା ଉପରେ କିଛି ପ୍ରଭାବ ପକାଇଛି ?

ଉ : ମୋର ଦୁଃଖ ଯେ ଓଡ଼ିଶାଠାରୁ ପ୍ରାୟ ଦୂରରେ ରହୁଥିବାରୁ ମୁଁ ଓଡ଼ିଆ ସାହିତ୍ୟ ସଂପର୍କରେ ଆଳାପ ଆଲୋଚନା କରିପାରୁ ନାହିଁ, ବାଦବିବାଦର ଖଣ୍ଡାଯୁଦ୍ଧ ଖେଳିପାରୁ ନାହିଁ । କିନ୍ତୁ ଏହି ଦୂରତ୍ୱ ମୋର ସାହିତ୍ୟ ସୃଷ୍ଟିରେ ଅନ୍ତରାୟ ହୋଇ ନାହିଁ ବୋଲି ମୋର ଧାରଣା । କାରଣ ମୁଁ ଯାହାକୁ ଜାଣେ, ସେହି ମଧ୍ୟବିତ୍ତ ବ୍ୟକ୍ତି ସର୍ବଭାରତୀୟ ସମାନ ଧାତୁରେ ଗଢ଼ା । ଏପରିକି ମୁଁ ତା'ର ସ୍ୱରୂପକୁ ଆମେରିକାର ସଂପୂର୍ଣ୍ଣ ଭିନ୍ନ ବେଶଭୂଷ ତଳେ ଜୁକୁଜୁକୁ ହେବାର ଦେଖିଛି, ଏବଂ ଇଉରେକାର ହର୍ଷଧ୍ୱନି କରିଛି । ଉଦାହରଣସ୍ୱରୂପ ମୋର ଭଗବାନଙ୍କ ଛବି''ରେ ଥିବା ମିଷ୍ଟର ସିମ୍ପସନ୍ । ଆତ୍ମଗୁଣଗ୍ରାହୀ ଅହିଂସାବାଦୀ ଯୀଶୁଖ୍ରୀଷ୍ଟଙ୍କର ନିଜ ଲୋକ, ଯାହାଙ୍କର ସ୍ୱାର୍ଥସୁନ୍ଦର ଛବି ଭାରତଭୂଇଁରେ ଯେତେ ଇଚ୍ଛା ସେତେ ।

ଯେଉଁ ଦୂରତ୍ୱ ମୋତେ ବାଧୁଛି, ମୋର ସୃଜନକୁ ବ୍ୟାକୁଳ କରିଛି, ତାହା ଭୌଗୋଳିକ ନୁହେଁ, ତାହା ମୋର ଜନ୍ମଗତ, ବଂଶଗତ, ଜୀବିକାଗତ ସଂସ୍କାର । ସ୍ୱଚ୍ଛଳ ଅଭିଜାତ କୁଳରେ ଜନ୍ମ ହୋଇ, ଉତ୍ତମ ଛାତ୍ର ହୋଇଥିବାରୁ ଅନାୟାସରେ ଉତ୍ତମ ରାଜସେବାରେ ନିଯୁକ୍ତ ହୋଇ ମୁଁ ଜୀବନର ଅନେକ ତରଙ୍ଗରୁ ଦୂରେଇ ଯାଇଛି । ଅନେକ ଜୀବିକାର ଗଳିକନ୍ଦି ଦେଖିପାରି ନାହିଁ । ବିଶେଷତଃ ନିମ୍ନଶ୍ରେଣୀର ଲୋକମାନଙ୍କ ରଙ୍ଗରସ ସୁଖଦୁଃଖ ନିକଟରେ ପହୁଞ୍ଚିପାରି ନାହିଁ, ସେମାନଙ୍କ ବିଷୟରେ କିଛି ଲେଖିବାର ସାହସ କରି ନାହିଁ, କାଳେ ମୁଁ ସେମାନଙ୍କୁ ରୋମାଣ୍ଟିକ୍ ଅଥବା ଉଦାର ଦୃଷ୍ଟିରେ ଦେଖିବି, ମୋର ମଧ୍ୟବିତ୍ତ ଦୋଷରେ ଦୂଷିତ କରି କିମ୍ଭୂତକିମାକାର କରି ଥୋଇବି ! ଆପଣ ବୋଧହୁଏ କହିବେ, ମୁଁ ଭୁଲ କରିଛି । କହିବେ - ଆଜ୍ଞା, ଲେଖକର ଅର୍ନ୍ତଦୃଷ୍ଟି ନାହିଁ ? ଶ୍ୱେନଦୃଷ୍ଟି ନାହିଁ ? ମୁଁ ତା'ର ଉତ୍ତର ଦେବାକୁ ଅକ୍ଷମ ।

ପ୍ର : ଆପଣ ଯେତେବେଳେ ପ୍ରଥମେ ଗଳ୍ପ ଲେଖା ଆରମ୍ଭ କଲେ, ସେତେବେଳେ ଓଡ଼ିଆ ଭାଷାରେ ଗଳ୍ପସାହିତ୍ୟର ପରିବେଶ କିପରି ଥିଲା ?

ଉ : ମୁଁ ଯେତେବେଳେ ଲେଖାଲେଖି ଆରମ୍ଭ କଲି, କାଳିନ୍ଦୀବାବୁ ପ୍ରବୀଣ ହୋଇ ସାରିଥିଲେ, 'ମାଟିର ମଣିଷ' ମୋ ବହିଥାକରେ ଗୋଟିଏ ଗୁରୁଜନ ଅନୁମୋଦିତ ପୁସ୍ତକ ରୂପେ ସମ୍ମାନିତ ହେଉଥିଲା । ଅଥଚ ନଭେଲ୍ ପଢ଼ିଲେ ପିଲାମାନେ ବିଗିଡ଼ିଯିବେ ବୋଲି କୁହାହେଉଥିଲା । କଲେଜରେ ପଢ଼ିଲାବେଳକୁ କାହ୍ନୁ ବାବୁଙ୍କ ଉପନ୍ୟାସ ଦେଖିବାକୁ ମିଳିଲା, ବିଗିଡ଼ିଯିବାର ଗୋପନ ଉପାଦାନ ଖୋଜିଲି, କିନ୍ତୁ ପାଇଲି ନାହିଁ । କ୍ରମଶଃ ମୋର ମନେ ହେଲା (ସେତେବେଳକୁ 'ଶାସ୍ତି' ଅନେକ ଦୂରରେ) ଯେ ପଢ଼ିବାକୁ ମଜା ଲାଗୁଛି, ହେଲେ ଥିଏଟର୍ ଦେଖିଲା ପରି ଲାଗୁଛି । ପ୍ରେମିକ-ପ୍ରେମିକା କଅଣ ଏମିତି କଥାବାର୍ତ୍ତା ହୁଅନ୍ତି, ସାହିତ୍ୟିକ ଭାଷାରେ ଆତ୍ମନିବେଦନ ଆତ୍ମଉତ୍ସର୍ଗ ଇତ୍ୟାଦି ସ୍ୱର୍ଗୀୟ ଆଦର୍ଶର କମ୍ପିଟିସନ୍ କରନ୍ତି ? ପରେ ଉଦୀୟମାନ କବି ସଚି ରାଉତରାଏଙ୍କର 'ମଶାଣି ଫୁଲ', 'ମାଟିର ତାଜ୍' ପ୍ରଭୃତି କେତୋଟି ଗଳ୍ପ ଏବଂ ଉଦୀୟମାନ ଲେଖକ ରାଜକିଶୋର ପଟ୍ଟନାୟକଙ୍କର 'ସିନ୍ଦୁର ଗାର' ସମେତ କେତେଗୁଡ଼ିଏ ଗଳ୍ପ-ଉପନ୍ୟାସ ମୋତେ ବିଶେଷ ଆକୃଷ୍ଟ କରିଥିଲା । ରାଜକିଶୋର ପଟ୍ଟନାୟକ ବିଶେଷ ଲୋକପ୍ରିୟ ନ ଥିଲେ, କିନ୍ତୁ ତାଙ୍କ ଲେଖାର ଗଦ୍ୟମୟତା, ରଙ୍ଗହୀନତା ଏବଂ ତାଙ୍କ ଚରିତ୍ରଚିତ୍ରଣର ନିଷ୍ଠୁର ପାର୍ଥିବତା ମୋତେ ଭଲ ଲାଗିଥିଲା, ମିଠାରେ ପାଟି ବାନ୍ଧି ହୋଇଗଲା ପରେ କଟୁକଷାୟର ଉପଭୋଗ ଆଣି ଦେଇଥିଲା । ତା'ପରେ ମୋତେ ଚମତ୍କୃତ କରିଥିଲେ ଗୋପୀନାଥ ମହାନ୍ତି । ତାଙ୍କ ଲେଖାର ସରଳ ସାବଲୀଳ ଭଙ୍ଗୀ (ସତେ କି ସେ କଥା କହୁ ନାହାନ୍ତି, ରୂପରସଗନ୍ଧ ସ୍ପର୍ଶରେ ଜୁଡ଼ବୁଡୁ ପୃଥିବୀକୁ ନିଜ ମତରେ ନିଜ କଥା କହିବାକୁ ଛାଡ଼ି ଦେଇଛନ୍ତି) ଏବଂ ତାଙ୍କର ସହଜ ମାନବିକତା । ମୋର ଲେଖକ ଜୀବନରେ ମୁଁ ଅଭ୍ୟନ୍ତର ଅନୁସନ୍ଧାନରେ ଖଣତି ନେଇ କେତେ ତଥାକଥିତ ଆଦର୍ଶକୁ ସୁନା ନୁହେଁ, ମାଟି ମାଟି ମାଟି ବୋଲି କହିଛି, କିନ୍ତୁ ସମସ୍ତ ସତମିଛକୁ ଆଦରି ଯେଉଁ ମଣିଷଟି ବଞ୍ଚିଛି, ସେ ମୋରି ଭାଇ, ମୋରି ପରି ମରିବ ନାହିଁ ବୋଲି କେତେ ଉପାୟ ଖୋଜୁଛି, ଏହି ପରମାର୍ଥକୁ କେବେହେଲେ ଭୁଲି ନାହିଁ । ଏହି ଆଦର୍ଶଟିକ ମୁଁ ଗୋପୀବାବୁଙ୍କଠାରୁ ଶିଖି ନାହିଁ, କିନ୍ତୁ ତାଙ୍କ ସାହିତ୍ୟ ଓ ସାହଚର୍ଯ୍ୟ ମୋତେ ସେ ବିଷୟରେ ବାରମ୍ବାର ଚେତାଇ ଦେଇଛି । ଏବଂ ମୁଁ ତାଙ୍କଠାରୁ ପାଇଛି ଯାହା ମୁଁ 'ମଣିହରା'ର ଉତ୍ସର୍ଗପତ୍ରରେ କହିଛି - ସାହିତ୍ୟର ଅନ୍ତରଙ୍ଗ ଭାଷା ଓ 'ବାସ୍ନା' ।

ଗୋପୀବାବୁଙ୍କ ପରେ ଆଉ କୌଣସି ଓଡ଼ିଆ ଲେଖକ ମୋ ଉପରେ ବିଶେଷ ପ୍ରଭାବ ପ୍ରକାଇ ପାରି ନାହାନ୍ତି । ଧୀରେ ଧୀରେ କ୍ରମବର୍ଦ୍ଧମାନ ଜ୍ଞାନବିଜ୍ଞାନ, ଫ୍ରଏଡ୍, ମାର୍କସ୍, ସାର୍କ୍ରେ, କାମ୍ୟୁ ଓଗେରଙ୍କ କାନକୁହା ଏବଂ ଅଙ୍ଗେନିଭାଇବା କଷଣର ଚାପରେ ମୁଁ 'ଆଧୁନିକତା'ର ସ୍ରୋତରେ ମିଶିଗଲି । ଅକାଳେ ସକାଳେ ନିଜକୁ ନିରେଖି ଦେଖିଲି, ମୋର ନିଜସ୍ୱ ଅକ୍ଷୁର୍ଣ୍ଣ ଅଛି ତ ?

ପ୍ର : ସାହିତ୍ୟର ବିଭିନ୍ନ ବିଭାଗ ମଧ୍ୟରୁ ଆପଣ ଗଳ୍ପକୁ ନିଜ ଭାବପ୍ରକାଶର ଏକମାତ୍ର ମାଧ୍ୟମ ଭାବରେ ବାଛି ନେଇଛନ୍ତି କାହିଁକି ? ଉପନ୍ୟାସ, କବିତା, ନାଟକ କିମ୍ବା ପ୍ରବନ୍ଧ - ଏଥିପ୍ରତି ଆପଣଙ୍କର ବିତୃଷ୍ଣାର କାରଣ କଅଣ ?

ଉ : ମୁଁ ଜନ୍ମଦୁଷ୍ଟ ଗାଳ୍ପିକ ନୁହେଁ । ଯୌବନାବସ୍ଥାରେ କବିତା ଲେଖୁଥିଲି । ଏବେ ମଧ୍ୟ ଲୁଚେଇ ଲୁଚେଇ କବିତା ଲେଖେ । ମୋର ପ୍ରଥମ କବିତା କେତୋଟି 'ନବୀନ' 'ସହକାର' ଏବଂ 'ଚତୁରଙ୍ଗ'ରେ ପ୍ରକାଶିତ ହୋଇଛି । ନିକଟରେ କେତୋଟି କବିତା 'ଘାସଫୁଲ' ଛଦ୍ମନାମରେ 'ଝଙ୍କାର' ଓ 'ଜୀବନରଙ୍ଗରେ' ପ୍ରକାଶିତ ହୋଇଛି । ଚାରିପାଞ୍ଚଟି ଉପନ୍ୟାସର ଶୁଭାରମ୍ଭ ହୋଇଛି କିନ୍ତୁ କେବେ ଶେଷ ହେବ, ଭଗବାନ ଜାଣନ୍ତି । ନିଜକୁ ସାନ୍ତ୍ୱନା ଦିଏ ଯେ ଅବସର ଗ୍ରହଣ କଲା ପରେ ଯଥେଷ୍ଟ ସମୟ ମିଳିବ, ସେତିକିବେଳେ ଉପନ୍ୟାସ ଲେଖିବି । ବର୍ତ୍ତମାନ କର୍ମଜଞ୍ଜାଳର ସନ୍ଧିରେ ମାସେ ଦୁଇ ମାସରେ ଗଳ୍ପଟିଏ ଲେଖିଲେ ପେଟ ପୂରିବ, ପ୍ରକାଶକମାନେ ଖୁସି ହେବେ । ବାକି ରହିଲା ନାଟକ । ଲେଖିବି ଲେଖିବି ବୋଲି ଆରମ୍ଭ କରିପାରି ନାହିଁ । ଭୟ ଲାଗେ ଦୃଶ୍ୟକାବ୍ୟ ଲେଖିବା ପାଇଁ ମୋର ଦକ୍ଷତା ଅଛି ତ ?

ତଥାପି ମାନିବାକୁ ପଡ଼ିବ ଯେ ମୋ ଲେଖନୀ କବିତାଠାରୁ ଗଦ୍ୟସାହିତ୍ୟକୁ ଅଧିକ ଆପଣାର କରିନେଇଛି । ଏହାର କାରଣ କଅଣ ଭାବିବାକୁ ଗଲେ ମୋର ମନେହୁଏ ଯେ ମୁଁ କାହିଁକି ଲେଖିଲି - ଏହି ମୌଳିକ ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିବ । କେବଳ ଲେଖିବାକୁ ଇଚ୍ଛା ହେଲା, ନ ଲେଖିଲେ ଶାନ୍ତି ଲାଗିବ ନାହିଁ, ଏ କଥା କହିଲେ ଚଳିବ ନାହିଁ । ତାହାହେଲେ କ'ଣ କହିବି ? ନିଜର ଚରିତ୍ର ବିଶ୍ଳେଷଣ କରିପାରିବି ? କହିବାକୁ ହେବ ଯେ ମୁଁ ପିଲାଦିନରୁ ଲାଜକୁଳା, ମୁହଁଚୋରା, ତେଣୁ 'ସେମାନଙ୍କର' ମିଛ କଥାର ଚାତୁରୀକୁ ସହି ନ ପାରି କାଗଜ କଲମରେ ସତ କଥାର ଉତ୍ତର ଦେବାକୁ ବସିଥିଲି । ତେବେ Adlerଙ୍କ ଥିଓରିକୁ କ'ଣ ମାନିବାକୁ ପଡ଼ିବ ଯେ ପ୍ରତ୍ୟେକ କୃତିତ୍ୱ ଏକ କ୍ଷତିପୂରଣ ମାତ୍ର, କୌଣସି ଏକ ହୀନମନ୍ୟତାର ଉତ୍ତରଣ ? ବେଶ୍, ତାହା ହିଁ ଯଦି ହୋଇଥାଏ, ତାହାହେଲେ ମୋ କପାଳରେ ଗଳ୍ପଲେଖା ହିଁ ଲେଖା ହୋଇଥିଲା । କାରଣ କଳ୍ପନାର ଆବିଷ୍କାରରେ ଉଲ୍ଲସିତ ହେବାଠାରୁ ଚିନ୍ତାର ଆବିଷ୍କାରରେ ଉଲ୍ଲସିତ ତଥା 'ଉଦ୍‌ଥିତ' ହେବା ଅଧିକ ଆବଶ୍ୟକ ବୋଲି ହୁଏ ତ ମୁଁ ମନେ କରିଥିଲି । ସେମାନଙ୍କ ଗୌଣ ଆସ୍ଫାଳନର ପାଣି ଫୋଟକାକୁ ସୂକ୍ଷ୍ମତମ ଚିନ୍ତାର ଛୁଞ୍ଚି (ସାହିତ୍ୟ)ରେ ଫୁଟାଇ ଦେବି - ଏହି ପିଲାଳିଆ ଚାଣକ୍ୟପଣ ବୋଧହୁଏ ମୋର ଲେଖନୀକୁ ପ୍ରଭାବିତ କରିଥିଲା । ସେଇଥିପାଇଁ ମୁଁ କବିତାରୁ ଦୂରେଇ ଯାଇ ଗଦ୍ୟସାହିତ୍ୟରେ ମନ ଦେଲି ।

ସ୍ୱୀକାରୋକ୍ତି ମିଳିଗଲେ ଜଜ୍ ସାହେବଙ୍କୁ ସାକ୍ଷୀପ୍ରମାଣ ଖୋଜିବାକୁ ପଡ଼େ ନାହିଁ । ତେବେ ସ୍ୱୀକାରୋକ୍ତି ଏକପ୍ରକାର ବଡ଼େଇ ନୁହେଁ ବୋଲି କିଏ କହିବ ?

ପ୍ର : ଆପଣଙ୍କ ବ୍ୟକ୍ତିଗତ ଜୀବନର ପାପ-ପୁଣ୍ୟ ଆପଣଙ୍କ ଗଳ୍ପକୁ ପ୍ରଭାବିତ କରିଛି କି ? ଆପଣଙ୍କର କୌଣସି କୌଣସି ଗଳ୍ପର ନାୟକ କଅଣ ଆପଣ ନିଜେ ? କବିତା ଭଳି ଗଳ୍ପ ବ୍ୟକ୍ତିକୈନ୍ଦ୍ରିକ ହୋଇ ଉଠୁଛି ବୋଲି ଅଭିଯୋଗ ହେଉଛି । ସେ ବିଷୟରେ ଆପଣଙ୍କ ମତ କଅଣ ?

ଉ : ଗୁରୁତର ପ୍ରଶ୍ନ । ଗୋଟିଏ ସ୍ୱୀକାରୋକ୍ତିର ସ୍ୱାଦ ମିଳିଗଲା ପରେ ମୋତେ ଆହୁରି ରସରସିଆ (ବିଷମୟ) ସ୍ୱୀକାରୋକ୍ତି କରିବାକୁ ଫୁସୁଲାଉଛନ୍ତି ନା କଅଣ ?

ହଁ, ବ୍ୟକ୍ତିଗତ ଜୀବନର ପାପ-ପୁଣ୍ୟ ନିଶ୍ଚୟ ମୋ ଗଳ୍ପକୁ ପ୍ରଭାବିତ କରିଛି । ଅନେକ ଗଳ୍ପର ନାୟକ ମୁଁ ନିଜେ, ଏହା ମଧ ନିଃସନ୍ଦେହରେ କୁହାଯାଇପାରେ ।

କିନ୍ତୁ ଏଥିର ଟିପ୍‌ପଣୀ ଆବଶ୍ୟକ । ବ୍ୟକ୍ତିଗତ ଅନୁଭୂତିର ପାପପୁଣ୍ୟ ଭଲମନ୍ଦ ସୁନ୍ଦର-ଅସୁନ୍ଦରର ଜ୍ୱାଳାରେ ଦଗ୍ଧ ଓ ପୁନୀତ ନ ହେଲେ କେଉଁ ଲେଖକ (କେବେଳ ମିଛ ନ ଲେଖି) ସତରେ ମିଛ ମିଶାଇ ଅଙ୍ଗେ ନିଭାଇବା କଥାର ଚମତ୍କାରିତା ସୃଷ୍ଟି କରି ପାରିବ ? କିନ୍ତୁ ମୋର ଦୈନନ୍ଦିନ ଅନୁଭୂତିରେ ଜ୍ୱାଳା ନାହିଁ । ବେଳେବେଳେ ଅଛି ଜ୍ୱାଳାର ଆଭାସ ଓ ସମ୍ଭାବନା । ସେଇ ହେଲା ଗୋଟିଏ ଉପାଦାନ । ମୁଁ ଯେଉଁ ସମାଜରେ ଚଳପ୍ରଚଳ ହେଉଛି, ସେଥିରେ ଲୋକମାନେ ମଧ୍ୟ ବେଳେବେଳେ ମୋତେ ନିଜ ଅନୁଭୂତ ଜ୍ୱାଳାରୁ ଧାପେ ଦେଇଯାଆନ୍ତି । ସେଗୁଡ଼ିକ ଅନ୍ୟତମ ଉପାଦାନ । ତା ପରେ ଆରମ୍ଭ ହୁଏ ସତ ମିଛର ଫ୍ୟାକ୍ଟରୀ । ମୁଁ ଯେଉଁ ନାୟକ-ନାୟିକାମାନଙ୍କୁ ସୃଷ୍ଟିକରେ ସେମାନେ ମୋର ଅନ୍ତରଙ୍ଗ ହୋଇ ଉଠନ୍ତି, ମୁଁ ନିଜେ ସେହି ନାୟକ ଅଥବା ନାୟିକା ପାଲଟିଯାଏ, ଏକ ଅଭିନଭ ଜ୍ୱାଳାର ଚମକ ଦେଖାଇବାକୁ ଚେଷ୍ଟା କରେ, ଯାହା ସତ କିମ୍ବା ସତ ହୋଇ ପାରନ୍ତା । ଧରନ୍ତୁ ମୋର 'ନିଶାପ' ଗଳ୍ପ । ଏହା ମୋର ଗୋଟିଏ ତରୁଣ ବନ୍ଧୁର ବାସ୍ତବ ଟ୍ରାଜେଡ଼ି ଉପରେ ପ୍ରତିଷ୍ଠିତ । କିଏ କହିପାରିବ ଯେ ମୁଁ ନିଜେ ସେହି ଗଳ୍ପର ନାୟକ ନୁହେଁ ? ଯେ ମୁଁ ତାର ଜୀବନ-ସରାଗ ଓ ଜୀବନ-ତ୍ୟାଗର ପ୍ରତିଟି ବେଦନାର ମିଶି ଯାଇ ନାହିଁ ?

କେବଳ ଗୋଟିଏ ଯୋଡ଼ିଏ ଗଳ୍ପରେ ବ୍ୟତିକ୍ରମ ହୋଇଛି । ଯଥା ମୋର ବିଧର୍ମୀ । ଏହି ଗଳ୍ପଟିର ଅନୁଭୂତି କେବେ କେଉଁଭାବରେ ମୋ ମନକୁ ଆସିଲା, ତାହା ମୁଁ ଆଜିଯାଏଁ ଠଉରାଇ ପାରିଲି ନାହିଁ । ଉପାଦାନଟିକୁ ଅଚେତନ-ଅବଚେତନରର ପଙ୍କରୁ ଉଦ୍ଧାର କରିପାରିନାହିଁ ।

ଅଳ୍ପ ବ୍ୟକ୍ତିକୈନ୍ଦ୍ରିକ ହେବ ନାହିଁ କାହିଁକି ? ବରଂ କହିବାକୁ ଗଲେ ଗଳ୍ପ ବ୍ୟକ୍ତିକୈନ୍ଦ୍ରିକ ନ ହୋଇ ଆଉ କ'ଣ ହୋଇପାରେ ? ସବୁରି ମୂଳରେ ଜଣେ, ଯେ ଲେଖୁଛି । ସମାଜଚେତନା, ଗଣଚେତନା ବା ଯେ କୌଣସି ଚେତନା ତା'ରି ବ୍ୟକ୍ତିମାନସ ମଧ୍ୟରେ ପ୍ରବେଶ ନ କରି ପାରିଲେ ସୃଷ୍ଟି ସମ୍ଭବ ନୁହେଁ ଏବଂ ସେହି ବ୍ୟକ୍ତି ମାନସରେ ଗୋଟିଏ ଅନ୍ଧାରି ଗୁହା ସଦାସର୍ବଦା ରହିଛି ଓ ରହିଥିବ, ଯାହା ତାର ଅଦ୍ୱିତୀୟ ବ୍ୟକ୍ତିତ୍ୱ, ଯେଉଁଥିପାଇଁ ସେ ଆଉ କାହାରିପରି

ନୁହେଁ । ଜଣେ ଏବଂ ଏକୁଟିଆ । ଯଦି ଜଣେ ଲେଖକ ତା'ର ମାନସ ଗୁହାର ପାଖ ନ ମାଡ଼ି ବାହାରୁ ଆସୁଥିବା ବିଭିନ୍ନ ଚେତନା ଆଲୁଅରେ ସାହିତ୍ୟ ରଚନା କରେ, ତାହେଲେ ସେ କେବଳ ଗୋଟିଏ ଯନ୍ତ୍ର ବା ଫଟୋକ୍ୟାମେରା ହୋଇରହିଯିବ । ଅପରପକ୍ଷରେ ସେ ଯଦି କେବଳ ତା'ର ଗୁହାର ଜନ୍ତୁମାନଙ୍କୁ ଖୋଜି ଖୋଜି ଚିହ୍ନିବାକୁ ଚେଷ୍ଟାକରେ, ତାହାହେଲେ ସେ ଆଦିମ କିମ୍ୱା ବାଳୁତ ହୋଇ ରହିଯିବ । ତା'ର ଗଭୀର ଅସ୍ପଷ୍ଟ କଥା ହୁଏତ କେବେ କେମିତି କବିତାରେ ଫୁଟିଉଠିବ, ଗଳ୍ପରେ ନୈବଚ ନୈବ ଚ । ତେଣୁ ମୋ ମତରେ ଜଣେ ଗଳ୍ପଲେଖକ ଅନ୍ଧାରିଗୁହା ଏବଂ ଆଲୋକିତ ଚେତନା କୌଣସିଟିକୁ ଛାଡ଼ିଗଲେ ଚଳିବ ନାହିଁ । ତାକୁ ଏକାଧାରରେ macroscopic ଏବଂ microscopic ହେବାକୁ ପଡ଼ିବ । ଅବଶ୍ୟ ନାୟକ ଭେଦରେ ମାତ୍ରାଗୁଣ ବଦଳିବା ସ୍ୱାଭାବିକ । ମୋର 'ଭଙ୍ଗାଖେଳଣା'ର ଗୀତା ଏବଂ 'ରାତିକୁକୁର'ର ନବୀନ ବାବୁ ଦୁହିଁଙ୍କ ବ୍ୟକ୍ତିମାନସରେ ଅନ୍ଧାର ଆଲୁଅର ପରିମାଣ ସମାନ ହୋଇ ପାରିବ ନାହିଁ । କାର୍ଯ୍ୟତଃ ଲେଖକକୁ ସେମାନଙ୍କ ଅନୁଗାମୀ ହେବାକୁ ପଡ଼ିବ ।

ଏଇଠି ଗୋଟିଏ ନିଜ କଥା କହିଦିଏ । ମୋର କେତୋଟି ଗଳ୍ପରେ ମୁଁ କେବଳ ଚେତନା ଆଲୁଅରେ ରଞ୍ଜିତ ହୋଇଛି ତାହା ନୁହେଁ, ମୁଁ ଜାଣିଶୁଣି ସେହି ଚେତନାର ଫିଲସଫି ବ୍ୟକ୍ତ କରିଛି, କେବଳ ଲୁଚୁକାଳି ଖେଳର ମଉଜ ନ ଦେଖି ଗୋଟିଏ ଶ୍ରେଣୀମଣିଷକୁ ଛିଗୁଲେଇଛି । ଯଥା ମୋର 'ବିଷ', 'ଗୋଟିଏ ଲାଲ୍‌ସନ୍ଧ୍ୟା', 'ଘେରାଉ' ଇତ୍ୟାଦି । ଏହି କେତୋଟି ଗଳ୍ପରେ ମୋର ଲେଖକଧର୍ମ ବ୍ୟାହତ ହୋଇଛି, ମୁଁ ଘୃଣାର ଲୋଭ ସମ୍ଭାଳିପାରି ନାହିଁ । ସେଥିପାଇଁ ମୁଁ କ୍ଷମା ମାଗି ନେଉଛି ।

ପ୍ର : ଗଳ୍ପର ଗଠନକଳା ସଂପର୍କରେ ଆପଣ କଅଣ ଭାବନ୍ତି ? କଥାବସ୍ତୁ ଶୈଳୀ ଏଥିମଧ୍ୟରୁ ଆପଣ କାହା ଉପରେ ବେଶୀ ଗୁରୁତ୍ୱ ଦିଅନ୍ତି ?

ଉ : ପ୍ରଶ୍ନର ଉତ୍ତର ସହଜ । କଥାବସ୍ତୁର ଗୁଣ ନଥିଲେ କଥାଚାତୁରୀର ମୂଲ୍ୟ ନାହିଁ । ପାଠକମାନେ ପଚାରିବେ - ପଢ଼ିବାକୁ ବେଶ୍ ଭଲ ଲାଗିବ, କିନ୍ତୁ କ'ଣ ଲେଖିଛି, କାହିଁକି ଲେଖିଛି, କହିଲେ ଦେଖି ?

କିନ୍ତୁ ଗଠନଶୈଳୀ ସଂପର୍କରେ ଗୋଟିଏ ଯୋଡ଼ିଏ କଥା କହିରଖେ ବିଶେଷତଃ, ମୋର ତରୁଣ ଲେଖକବନ୍ଧୁମାନଙ୍କ ପାଇଁ । ଗଠନମାତ୍ରେ ହିଁ ମନ୍ଦିର, ଗୃହ, ବିଦ୍ୟାଳୟ କୌଣସି ସୀମାସରହଦ ଦୀର୍ଘପ୍ରସ୍ଥଉଚ୍ଚତାର ବ୍ୟବସ୍ଥା ଥିବା ଉଚିତ । Art is a will to form । କଳା ପ୍ରକୃତିର ନିୟମନ, ଲେଖକର ଭଗବାନତ୍ୱ । ତେଣୁ ଯେଉଁ ଲେଖାଟି ହାଉଆରେ ଉଡ଼ିଗଲା ପରି ଲାଗେ, ସେଥିରେ ସୃଷ୍ଟିର ଆନନ୍ଦ ମିଳେ ନାହିଁ କିମ୍ୱା ଦେଇ ହୁଏ ନାହିଁ ।

ଦ୍ୱିତୀୟରେ, ଗଳ୍ପରେ ପ୍ରଗତି ଏବଂ ପରିଣତି ଥିବା ଆବଶ୍ୟକ । ଗଳ୍ପଟି ଘଟଣାପ୍ରଧାନ, ଚରିତ୍ରପ୍ରଧାନ, ପରିବେଶପ୍ରଧାନ, ଯାହା ହେଉ ନା କାହିଁକି, ସେଥିରେ କିଛି

ନା କିଛି ଆବିଷ୍କାର, revelation ଥିବା ଉଚିତ, ଯାହା ମୂଳରେ ଜଣା ପଡୁ ନଥିଲା, କିନ୍ତୁ ଶେଷକୁ ଜଣା ପଡ଼ିଗଲା । ତଥାକଥିତ ଅଳୀକତା (absurd)ର ବେଷ୍ଟନୀରେ ମଧ୍ୟ ଯାତ୍ରାରମ୍ଭର ଶୁଭ ସଙ୍କେତ ଏବଂ ଯାତ୍ରାଶେଷର ପୂର୍ଣ୍ଣତା ନଥିଲେ ଗଳ୍ପ ହୋଇପାରିବ ନାହିଁ । ସୁନ୍ଦର ପ୍ରବନ୍ଧ, ସୁନ୍ଦର ବକ୍ତୃତା, ସୁନ୍ଦର ଛବି ହୋଇପାରିବ - କିନ୍ତୁ ସୁନ୍ଦର ଗଳ୍ପ ହୋଇପାରିବ ନାହିଁ । ମୋତେ ଆପଣ ପୁରୁଣାକାଳିଆ ଭାବିପାରନ୍ତି, କିନ୍ତୁ ମୁଁ ନାଚାର ।

ପ୍ର : ସାଂପ୍ରତିକ ଓଡ଼ିଆ ଗଳ୍ପ-ସାହିତ୍ୟ ସଂପର୍କରେ ଆପଣଙ୍କର ମତ କ'ଣ ?

ଉ : ଏହାର ଉତ୍ତର ଦେବାକୁ ହେଲେ ଗୋଟିଏ ପ୍ରବନ୍ଧ ଲେଖିବାକୁ ପଡ଼ିବ । ତେବେ ମୋଟାମୋଟି ମୋର ଧାରଣା ଯେ ଆମ ଗଳ୍ପ-ସାହିତ୍ୟର କ୍ରମଶୀଳତା ପ୍ରଶଂସନୀୟ । ବେଳେବେଳେ ଅବଶ୍ୟ ଭାଷାର ଝଙ୍କାର, ଅହମିକାର ଝଣତ୍କାରରେ ମରମକଥା ଶୁଣି ହୁଏ ନାହିଁ । ମନେହୁଏ ଲେଖକ କହୁଛି - ମୁଁ କେଡ଼େ ଚମତ୍କାର ଭାଷାରେ କହୁଛି ଦେଖ, ମୁଁ କେଡ଼େ କଥା କହୁଛି ଶୁଣ, ମୋତେ ଦେଖ, ମୋତେ ଶୁଣ ... ମୋର ମରମକଥା, ମୋର ଅଙ୍ଗେ ନିଭାଇବା କଥାରୁ ତୁମକୁ କ'ଣ ମିଳିବ ?

କିନ୍ତୁ ବେଳେବେଳେ, ସବୁବେଳେ ନୁହେଁ । ଗଳ୍ପ-ସାହିତ୍ୟର ମୁଖ୍ୟ ସ୍ରୋତ ସତ୍ୟର ଦିଗନ୍ତ ଆଡ଼କୁ ବହିଚାଲିଛି । ମୋର ଦୃଢ ଧାରଣା ଯେ ତା'ର ବାରିସ୍ରୋତ ଦୂଷିତ କିମ୍ବା ସୀମିତ ହେବ ନାହିଁ ।

ପ୍ର : କେଉଁ କେଉଁ ଭାରତୀୟ ଓ ବିଦେଶୀ କଥାଶିଳ୍ପୀଙ୍କ ଲେଖା ଆପଣଙ୍କୁ ବେଶି ଆକର୍ଷଣ କରେ ?

ଉ : ଗୋପୀବାବୁଙ୍କ କଥା ପୂର୍ବରୁ କହିଛି । ସମସାମୟିକ ଓଡ଼ିଆ ଗାଳ୍ପିକମାନଙ୍କୁ ମୁଁ ଶ୍ରଦ୍ଧାକରେ ଏବଂ ଆମେ ପରସ୍ପରକୁ ଆନନ୍ଦିତ ତଥା ପ୍ରଭାବିତ କରିଛୁ ବୋଲି ମୋର ବିଶ୍ୱାସ । ତେବେ ଆମ ସମସ୍ତଙ୍କ ମଧ୍ୟରୁ ଶାନ୍ତନୁ ଆଚାର୍ଯ୍ୟ ସବୁଠାରୁ ଦୁଃସାହସୀ ଏବଂ ଦୁର୍ନିବାର ନୂତନତ୍ୱର ପ୍ରତୀକ ବୋଲି ମୋର ମନେ ହୁଏ ।

ଭାରତୀୟ ଗାଳ୍ପିକମାନଙ୍କ ମଧ୍ୟରେ ପ୍ରେମଚାନ୍ଦଙ୍କ କେତୋଟି ଗଳ୍ପ ଏବଂ ଅନେକ ବଙ୍ଗୀୟ ଲେଖକ ଯଥା ପ୍ରେମେନ୍ଦ୍ର ମିତ୍ର, ଅଚିନ୍ତ୍ୟ ସେନଗୁପ୍ତ, ମାଣିକ ବନ୍ଦୋପଧ୍ୟାୟ, ବନଫୁଲ ଇତ୍ୟାଦିଙ୍କର ଗଳ୍ପ ମୋତେ ଆକୃଷ୍ଟ କରିଛି । ଆନ୍ତର୍ଜାତିକ କ୍ଷେତ୍ରରେ ମୋର ପୁରୁଣା ପ୍ରିୟ ଲେଖକ ଥିଲେ ସମରସେଟ୍ ମମ୍ ଏବଂ ଚେକୋଭ୍ । ପରବର୍ତ୍ତୀ କାଳରେ କାଫ୍‌କା, ଅଲବର୍ଟ କାମ୍ୟୁ, ଉଇଲିୟମ୍ ସାରୋୟାଁ ଏବଂ କ୍ୟାଥାରାଇନ୍ ଅନ୍ ପୋର୍ଟର୍‌ଙ୍କ ଛୋଟ ବଡ଼ ଗଳ୍ପ ମୋତେ ବିଶେଷ ଭାବରେ ମୁଗ୍ଧ କରିଛି । ମୁଁ ନର୍ମାନ୍ ମ୍ୟେଲର୍‌ଙ୍କ ସହିତ ଏକମତ ଯେ କ୍ଷୁଦ୍ରଗଳ୍ପ ଗଭୀର ଏବଂ ଚାଞ୍ଚଲ୍ୟକାରୀ, deep and disturbing ନ ହେଲେ ଆମର ବ୍ୟବସାୟାତ୍ମକ ବୁଦ୍ଧିଜୀବି ମନକୁ ଛୁଇଁବ ନାହିଁ । ମୋର ଧାରଣା କାଫ୍‌କା ଓଗେର ସେଇ ପରୀକ୍ଷାରେ ସମ୍ୟକ୍‌ଭାବେ ଉତ୍ତୀର୍ଣ୍ଣ ହୋଇ ପାରିଛନ୍ତି ।

ପ୍ର : ସାହିତ୍ୟରେ ଅଶ୍ଳୀଳତା ଓ ଦୁର୍ବୋଧତା ସମ୍ପର୍କରେ ଆପଣଙ୍କ ମତ କଅଣ ।? କ୍ଷୁଦ୍ରଗଳ୍ପର ଆଭିମୁଖ୍ୟ କଅଣ ହେବା ଉଚିତ ବୋଲି ଆପଣଙ୍କର ମତ ?

ଉ : ଗଳ୍ପ ସାହିତ୍ୟରେ ଦୁର୍ବୋଧତା ଅକ୍ଷମଣୀୟ । ଅଳ୍ପ କଥା କୁହ, ମୁହଁ ତଳକୁ କରି ବଡ଼ କଥା ଧୀରେ ଧୀରେ କୁହ, ସଙ୍କେତରେ କଲବଲ କର, କିନ୍ତୁ ଅବଶେଷରେ ରସଗ୍ରାହୀ ପାଠକ ବୁଝିପାରୁ ଯେ ତାର ମନକୁ ଲକ୍ଷ୍ୟ କରି କଥାଟି କୁହାଯାଇଛି । ଲେଖକ ମହାବ୍ରାହ୍ମଣ ପ୍ରାୟ ନିଜକୁ ନିଜେ ମନ୍ତ୍ର ପଢୁ ନାହିଁ, ଆପଣାର ମାନସରୋବରକୁ ଦେଖିବା ପାଇଁ ଚ୍ୟାଲେଞ୍ଜ କରୁନାହିଁ । କବିତାର ଏଭଳି 'ସ୍ୱାଧୀନତା' ଗଳ୍ପ ସାହିତ୍ୟରେ ନାହିଁ ।

ଅଶ୍ଳୀଳତା ସମ୍ବନ୍ଧରେ ମୋର ଦୃଢ଼ ମତ ଯେ, ଯାହା ଗଳ୍ପର ମୂଳ କଥା ଚିନ୍ତା ଏବଂ ଦର୍ଶନର ବର୍ହିଭୂତ ନୁହେଁ, ତାକୁ ଅଶ୍ଳୀଳ କୁହାଯାଇ ନ ପାରେ । ହୁଏତ କୌଣସି ବର୍ଣ୍ଣନାରେ ତରଳମତି ବାଳକବାଳିକା କିମ୍ବା ହୀନବୀର୍ଯ୍ୟ ପ୍ରୌଢ଼ମାନେ ନିଷିଦ୍ଧ ଆନନ୍ଦରେ ଉଲ୍ଲସି ଉଠିବେ । ତା ବୋଲି ଲେଖକ ସେମାନଙ୍କୁ ରକ୍ଷା କରିବା ପାଇଁ ଗଳ୍ପ ଲେଖିପାରିବ ନାହିଁ । ଯଦି ଜଣେ ଲେଖକ ହାଲୁକା ମନୋବୃତ୍ତି ନେଇ କେବଳ ସେହିମାନଙ୍କ ଉଦ୍ଦେଶ୍ୟରେ ଗଳ୍ପ ଲେଖେ, ତାହା ହେଲେ ସେ ସହଜେ ଧରାପଡ଼ିଯିବ, ତାକୁ କେହି ସାହିତ୍ୟିକ ବୋଲି ମଣିବ ନାହିଁ । ଆଉ ଗୋଟିଏ କଥା । ସେକ୍ସ୍ ସବୁବେଳେ ହାଲୁକା କିମ୍ବା ଗହୀରିଆ ଆନନ୍ଦ ଦିଏ ନାହିଁ, ବେଳେବେଳେ ବୀଭତ୍ସରସ ସୃଷ୍ଟି କରି ନିରାନନ୍ଦ ଆଣିଦିଏ । ସାହିତ୍ୟରେ ସେଭଳି ଅଶ୍ଳୀଳତାର ସ୍ଥାନ ନାହିଁ । ଗୋପୀବାବୁଙ୍କ 'ହରିଜନ' ପରି ଯଦି ଜଣେ ଲେଖକ ବିଷ୍ଠାବର୍ଣ୍ଣନାଜନିତ ସୁନିର୍ଦ୍ଦିଷ୍ଟ କ୍ରୋଧ ଘୃଣାର ପ୍ରତିକ୍ରିୟା ସୃଷ୍ଟି କରିବାକୁ ଚାହେଁ, ସେ କଥା ଭିନ୍ନ । କିନ୍ତୁ ସେଭଳି ବିଶିଷ୍ଟ ଆଭିମୁଖ୍ୟର 'ବାସ୍ନା' ନ ଥିଲେ ଦୁର୍ଗନ୍ଧତା ସର୍ବଥା ବର୍ଜନୀୟ ।

ଆଭିମୁଖ୍ୟ ? ମୁଁ କୌଣସି ଆଭିମୁଖ୍ୟର ପକ୍ଷପାତୀ ନୁହେଁ । ମୋ ମତରେ ଏକ ସଫଳ କ୍ଷୁଦ୍ରଗଳ୍ପରେ ମୁଖ୍ୟତଃ ତିନୋଟି ଜିନିଷ ଥିବା ଉଚିତ : (୧) ଆନ୍ତରିକତା । ଅହମିକା-ଲଘୁତା । (ଅହମିକା-ଶୂନ୍ୟତା ବୋଲି କହିବି ନାହିଁ, କାରଣ କୌଣସି ଲେଖକ ସେହି ଦୋଷରୁ ମୁକ୍ତ ନୁହେଁ) ଯେଉଁଥିରେ ଲେଖକ ବିଶେଷତଃ ନିଜର ଉତ୍କର୍ଷ ପ୍ରତିପାଦନ କରିବାକୁ ଯାଇ ଶଠତା (ସାର୍ତ୍ରେଙ୍କ ଭାଷାରେ bad faith) ଆଚରଣ କରୁ ନ ଥିବ । (୨) ଚିନ୍ତା । ଅଧ୍ୟୟନ ଏବଂ ଅଭିଜ୍ଞତାପ୍ରସୂତ ଚିନ୍ତା ନଥିଲେ ଗଳ୍ପରେ କିଛି କହିବାକୁ ନ ଥିବ । ତେଣୁ ତା'କୁ ପଢି ଲାଭ କଅଣ ? (୩) କରୁଣା । ସର୍ବୋପରି ମଣିଷଜାତି ପ୍ରତି ବ୍ୟାପକ କରୁଣା ନଥିଲେ ଲେଖକ ଆମ ଦଳର ଲୋକ ନୁହେଁ । ଅମଣିଷ କିମ୍ବା ଦେବତାର ଲେଖା ପାଇଁ ମୋର ସମୟ ନାହିଁ ।

ଏତିକି ଥିଲେ ଯେ କୌଣସି ବ୍ୟକ୍ତିଗତ, ସମାଜଗତ, ଯୁଗ-ଅନୁକୂଳ କିମ୍ବା ଯୁଗ-ପ୍ରତିକୂଳ ଆଭିମୁଖ୍ୟ ସାର୍ଥକ ହେବ, କଥାଟି କାଳର କପୋଳରେ ଝଳି ଉଠିବ ।

ପ୍ର : ବର୍ତ୍ତମାନ ଆପଣଙ୍କ ସାହିତ୍ୟ-ସାଧନା ସଂପର୍କରେ କିଛି କୁହନ୍ତୁ । ଆପଣଙ୍କର ଏପର୍ଯ୍ୟନ୍ତ ପ୍ରକାଶ ପାଇଥିବା ଗଳ୍ପ-ଗ୍ରନ୍ଥଗୁଡ଼ିକର ନାମ ? ନିକଟରେ କୌଣସି ଗଳ୍ପ-ଗ୍ରନ୍ଥ ପ୍ରକାଶ ପାଇବାର ଅଛି କି ?

ଉ : ବର୍ତ୍ତମାନ ସୁଦ୍ଧା ପ୍ରକାଶିତ ହୋଇଥିବା ଗଳ୍ପ-ଗ୍ରନ୍ଥଗୁଡ଼ିକର ନାମ ହେଉଛି 'ଭଙ୍ଗାଖେଳଣା' ଘର ବାହୁଡ଼ା' 'ଲକ୍ଷ ବିହଙ୍ଗ' ଏବଂ 'ମଣିହାରା' । ନିକଟ ଭବିଷ୍ୟତରେ ପଞ୍ଚମ ଗଳ୍ପ ସଂକଳନ ପ୍ରକାଶ କରିବା ପାଇଁ ମନସ୍ଥ କରିଛି । ପ୍ରକାଶକଙ୍କ ଅନୁଗ୍ରହ ଥିଲେ ୧୯୭୩ ଆରମ୍ଭରେ ପାଠକମାନଙ୍କର ହସ୍ତଗତ ହେବ । କିନ୍ତୁ ଏହାପରେ ମୁଁ ମୋର ଗଳ୍ପଗୁଡ଼ିକୁ ଇଂରାଜୀ ଏବଂ ଅନ୍ୟାନ୍ୟ ଭାରତୀୟ ଭାଷାରେ ଅନୁବାଦ କରିବା ପାଇଁ ଚାହେଁ । National Book Trust ମୋର 'ଭଙ୍ଗା ଖେଳଣା' ଗଳ୍ପର ସମସ୍ତ ଭାରତୀୟ ଭାଷାରେ ଅନୁବାଦ କରିବାର ଅଧିକାର କିଣି ନେଇଛନ୍ତି । ତାହାଛଡ଼ା ମୋର ବେଶ୍ କେତୋଟି ଗଳ୍ପ 'ଇଂରାଜୀ', 'ହିନ୍ଦୀ', 'ବଙ୍ଗଳା', 'ଉର୍ଦ୍ଦୁ', 'ମାଲୟାଲାମ୍', 'କନ୍ନଡ଼' ଓ 'ଗୁଜୁରାଟି' ଭାଷାରେ ଅନୁଦିତ ହୋଇ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇସାରିଛି । ବିଦେଶୀ ପ୍ରକାଶକ Penguins ଏବଂ ଅନ୍ୟମାନଙ୍କ ସହିତ ମଧ୍ୟ କଥାବାର୍ତ୍ତା ଚାଲିଛି । କିନ୍ତୁ କୌଣସି ପ୍ରଚେଷ୍ଟା ନିଜ ଆଡୁ ହୋଇନାହିଁ । ତେଣୁ ଭାବୁଛି ଯେ କିଛି ଦିନ ମୂଳଲେଖା ସ୍ଥଗିତ କରି ଅନୁବାଦ ଉଦ୍ୟମରେ ଲାଗିପଡ଼ିଲେ ମନ୍ଦ ହେବ ନାହିଁ । ଅନ୍ୟ ଏକ କାମନା ଉପନ୍ୟାସ । ସମୟ ସରିଯାଉଛି । ଆଉ କେବେ ଉପନ୍ୟାସ ଲେଖିବି ?

ପ୍ର : ଆମ ଗଳ୍ପସାହିତ୍ୟର ବିକାଶରେ ପୁସ୍ତକ-ପ୍ରକାଶକ ଓ ପତ୍ରିକା-ସଂପାଦକମାନଙ୍କ ଭୂମିକା ସଂପର୍କରେ ଆପଣଙ୍କ ଅନୁଭୂତି କ'ଣ ?

ଉ : ସାହିତ୍ୟ ବିକାଶରେ ପୁସ୍ତକ-ପ୍ରକାଶକ ଏବଂ ପତ୍ରିକା-ସଂପାଦକମାନଙ୍କ ଭୂମିକା ଯଥେଷ୍ଟ ରହିଛି ଏତିକି କହିଲେ ଚଳିବ ନାହିଁ ? ନିଜ ଅନୁଭୂତି କଥା କହି ବସିଲେ ବ୍ୟକ୍ତିଗତ ଅଭିଯୋଗ ବାଢ଼ିବାକୁ ପଡ଼ିବ, ପ୍ରକାଶକ ସଂପାଦକମାନଙ୍କର ଦୁଃଖକଷ୍ଟ ସଂପର୍କରେ ନିଜର ଘୋର ଅଜ୍ଞତା ପ୍ରମାଣିତ ହୋଇଯିବ । ଅତଏବ... ଆଜି ଏତିକିରେ ଥାଉ ।



# କିଶୋରୀ ଚରଣ ଦାସଙ୍କ ସହ ସାକ୍ଷାତ ସଂଳାପ

(ଓଡ଼ିଶା ସାହିତ୍ୟ ଏକାଡେମୀଙ୍କ ଦ୍ୱାରା ଅନୁଷ୍ଠିତ ପ୍ରଶ୍ନମଞ୍ଚ ଓ ପ୍ରଶ୍ନାବଳୀର ଉତ୍ତର)

## ପ୍ରଥମ ପର୍ଯ୍ୟାୟ

ପ୍ରଶ୍ନକର୍ତ୍ତା - **ଡକ୍ଟର ଅପର୍ଣ୍ଣା ମହାନ୍ତି** -

ପ୍ରଶ୍ନ (୧) :- ସ୍ୱ ଅଭିବ୍ୟକ୍ତିର ମାଧ୍ୟମ ରୂପେ କ୍ଷୁଦ୍ରଗଳ୍ପକୁ ହିଁ ଗ୍ରହଣ କରି ନେବା ପଛରେ ଆପଣଙ୍କର କି ଅଭିପ୍ରାୟ ଥିଲା ?

ଉତ୍ତର :- କୌଣସି ନିର୍ଦ୍ଦିଷ୍ଟ ଅଭିପ୍ରାୟ ନ ଥିଲା । ପ୍ରଥମେ କବିତା ଲେଖୁଥିଲି, ପରେ ଗଳ୍ପ ଲେଖିଲି । ବୋଧହୁଏ ଭାବିଲି ଯେ କେବଳ ନିଜକୁ ବ୍ୟକ୍ତ କଲେ ପେଟ ପୂରିବ ନାହିଁ । ଦେଖିଲି ଯେ ସୃଷ୍ଟିରେ ବିଶେଷତଃ ମଣିଷର ଚରିତ୍ରରେ ଯେଉଁ ବୈଚିତ୍ର୍ୟ ଅଛି, ବର୍ଣ୍ଣବହୁଳ ତଥା ବିରୋଧାତ୍ମକ ବୈଚିତ୍ର୍ୟ, ତାକୁ କବିତା କୁଳେଇବ ନାହିଁ ।

ପ୍ରଶ୍ନ (୨) :- ଆପଣଙ୍କ ଗଳ୍ପଗୁଡିକର ଆଧାର ପ୍ରାୟ ମନସ୍ତତ୍ତ୍ୱ । ବିଶେଷ କରି ନାରୀ ଓ ଶିଶୁ (କନ୍ୟା) ମନସ୍ତତ୍ତ୍ୱ ଚିତ୍ରଣରେ ଆପଣ ଅନେକ ସଫଳ ପରୀକ୍ଷା କରିଛନ୍ତି । ଏହାର ପୃଷ୍ଠଭୂମି ସଂପର୍କରେ କିଛି ଜଣାଇବେ କି ?

ଉତ୍ତର :- ସୃଷ୍ଟିରେ ଏତେ ଧନରତ୍ନ ଅଛି ଯେ ନୂଆ ଲେଖକର ତର ସହେ ନାହିଁ, କାହାକୁ କେମିତି ଗୋଟେଇ ନେବ । ବିଶ୍ୱଦର୍ଶନର ଏଇ ବିସ୍ମୟ ଓ ଆନନ୍ଦ ହିଁ ସୃଜନ ଆବେଗର ଉତ୍ସ । ତେବେ ମୋତେ ଯେଉଁ ରତ୍ନଟି ସବୁଠାରୁ ବେଶି କଉତୁକିଆ ଓ ଫିସାଦିଆ ମନେ ହୋଇଛି ତାହା ହେଉଛି ମଣିଷମନର ବୈଚିତ୍ର୍ୟ । କିନ୍ତୁ ପ୍ରଥମେ ସିନା ଆମୋଦ ରସ ଉଛୁଳୁଥିଲା, କ୍ରମଶଃ, ଅର୍ଥାତ୍ ବ୍ୟକ୍ତି ତଥା ସମାଜ ପାଇଁ ଏକ ପ୍ରକାର ଦାୟିତ୍ୱବୋଧ ଆସିଲା ପରେ ବୈଚିତ୍ର୍ୟରେ ଲାଖି ରହିଥିବା ନିଦାରୁଣ ବୈଷମ୍ୟ ମୋତେ ଅନେକ ଦୁଃଖ ଦେଇଛି । ଏବଂ ବେଳେବେଳେ ରଗେଇଛି, ଯେତେବେଳେ ମୋର ମନେହୁଏ ଯେ ମୁଁ ଯାହା ଦର୍ଶାଇଲି ତାହା ଅତି ନଗଣ୍ୟ, tip of the iceberg, କିନ୍ତୁ ସେଇଠୁଁ ମୁଁ ଥୋଡାଏ ବାଟ ଆଗେଇଯିବି ନିଜକୁ ତଥା ସମାଜକୁ ବାଗେଇନେଲା ପରି, ସେ କ୍ଷମତା ମୋର ନାହିଁ । କାରଣ ମୁଁ ସାମାନ୍ୟ ଲେଖକଟିଏ । ଯାହା ହେଉ ବିଭେଦ ମୋଟାମୋଟି ଏଇ କେତେଗୁଡିଏ କ୍ରିୟାପ୍ରକ୍ରିୟାକୁ ନେଇ ବୋଲି ମୋର ଧାରଣା :

(କ) ମଣିଷ ଯାହା କୁହେ ଓ ଯାହା କରେ ।
(ଖ) ମଣିଷ ଯାହା ଭାବେ ଓ ଯାହା କୁହେ ।
(ଗ) ମଣିଷ ଯାହା ଭାବେ ଓ ତଦ୍ୱାରା ପ୍ରଚୋଦିତ ହୁଏ, କିନ୍ତୁ ତାକୁ ତା'ର ଭାବନା ବୋଲି ମାନିବାକୁ ଚାହେଁ ନାହିଁ ।
(ଘ) ମଣିଷ ଯାହା ଭାବିପାରେ ନାହିଁ (ହୁଏତ ବେଳେ ବେଳେ ତା'ର ଝପ୍‌ସା ରଂଗରୂପ ଦିଶିଯାଏ, ଯଥା ଅବଚେତନ ଅଥବା ଉର୍ଦ୍ଧ୍ୱଚେତନର ଉନ୍ମେଷ), କିନ୍ତୁ ତାଦ୍ୱାରା ପ୍ରଭାବିତ ହୁଏ, ତେଣୁ ସେଥିରେ ତାକୁ ଆହୁରି ହନ୍ତସନ୍ତ ଲାଗେ । ଇତ୍ୟାଦି ।
(ଙ) ଏବଂ ଏହି ଭଳି ବିଭିନ୍ନ ବୈଷମ୍ୟକୁ ନ ବୁଝିପାରି କିଂବା ବୁଝିବାକୁ ନ ଚାହିଁ ନିଜକୁ ଠକାଏ, ନିଜର ସୁଖବୋଧ ପାଇଁ ।

ଏହି ସମସ୍ତ ବୈଚିତ୍ର୍ୟର ଅବବୋଧ ଯେ ମୂଳରୁ ମୋ ମନରେ ଆସିଗଲା, ତା ନୁହେଁ । ପଢ଼ାଶୁଣା ଓ ଅଭିଜ୍ଞତାର ମାଧ୍ୟମରେ ବାଢ଼ିବାକୁ ଲାଗିଲା । ଏ ହେତୁ ବୋଧହୁଏ ଲକ୍ଷ୍ୟ କରିହେବ ଯେ କ୍ରମଶଃ ଏହି ମଣିଷ ଚରିତ୍ରକୁ ଚିହ୍ନାଇବା ବାଟରେ ମୋ ଗଳ୍ପଗୁଡିକ ଅଧିକରୁ ଅଧିକ ଜଟିଳ ମନେ ହୋଇଛି । ଏପରିକି ମୋର ଉତ୍ତର ଜୀବନର କେତେଗୁଡିଏ ଗଳ୍ପରୁ ହୁଏତ ଭ୍ରମ ହେବ ଯେ ଲେଖକଙ୍କର ଦିଗନ୍ତରେ ଆଲୁଅ ନାହିଁ, ତା'ର ଝଲକ ଟିକେ ବି ନାହିଁ, ଖାଲି ସଂଶୟ ଏବଂ ସଂଶୟ । ଏହି ଭ୍ରମ ଯଥାର୍ଥ ହେଉ ବା ନ ହେଉ, ଏବଂ ତା ପଛରେ ମୋର ବିଫଳତା ଥାଉ ବା ନ ଥାଉ (ତାର ଆଲୋଚନା ସମୟ ସାପେକ୍ଷ), ମୁଁ ଆଦୌ ମାନିବାକୁ ପ୍ରସ୍ତୁତ ନୁହେଁ ଯେ ଲେଖକ ହିସାବରେ ମୁଁ ଗୋଟିଏ ବିଶେଷଜ୍ଞ, ସ୍ପେଶାଲିଷ୍ଟ, ମନସ୍ତତ୍ତ୍ୱ ନାମକ ବିଭାଗର ଠେକା ନେଇଛି । ଅପରନ୍ତୁ ମୁଁ ସ୍ପଷ୍ଟଭାବରେ କହିବାକୁ ଚାହେଁ ଯେ - ମନ ହିଁ ତ ସବୁ, ତାକୁ ପ୍ରାଧାନ୍ୟ ନଦେଇ ମଣିଷଦଶାର କେଉଁ ସତକଥାଟିକୁ ଦର୍ଶାଇ ହେବ ? ଘଟଣା ଇତିହାସ, ପ୍ରକୃତି, ଆଦର୍ଶ, ନୀତିବୋଧ, ଇତ୍ୟାଦି ଇତ୍ୟାଦି ଯେ କୌଣସି ଭିତ୍ତିରେ ଗଳ୍ପଟିଏ ଲେଖ ପଛେ, ସବୁତ ସେଇ ମଣିଷ ମନର ବାଟ ଦେଇ ଯିବ କ୍ରିୟାନ୍ୱିତ ହେବା ପୂର୍ବରୁ ? ତାକୁଇ ନେଇ ତ ବଂଚିବ, ମରିବ, ରଂଜିତ ଅବା ଦୂଷିତ ଏବଂ ପ୍ରକଟିତ ହେବ ? ତେଣୁ ନିର୍ଦ୍ଦିଷ୍ଟ ନାୟକ ନାୟିକାଙ୍କ ମନଟାକୁ ଭଲଭାବରେ ଦେଖି ଚିହ୍ନି, ତା'ରି କଥାକୁହାକୁ କହିବା ପାଇଁ ଚେଷ୍ଟା ନ କରେ ତୁମ ଗଳ୍ପଟି ଅର୍ଧସତ୍ୟ, ଅନ୍ତତଃ ନୁଖୁରା ଓ ଅଧାପନ୍ତରିଆ ମନେ ହେବ ନାହିଁ କି ? ଲେଖକ-ଦାର୍ଶନିକ ଏମ୍‌ରସନ୍ (Emerson) କହିଲା ପରି - What is a man but what he thinks all day ? ଅନ୍ୟ ଅନେକ ଅନୁଭବୀ ଦାର୍ଶନିକମାନେ ମଧ୍ୟ ସେହି କ ଥାଟିକୁ କହିଛନ୍ତି ନାନା ଭାବରେ । Cogito, ergo sum, I think therefore I am । ମନ ତୋହର ନିଜ ଗୁରୁ, ଉଦ୍ଧବ କେତେ ତୁ ପଚାରୁ । ଇତ୍ୟାଦି । ତେଣୁ ଯେକୌଣସି ଗଳ୍ପରେ ମନସ୍ତତ୍ତ୍ୱର ଅଗ୍ରାଧିକାର

ଅନସ୍ୱୀକାର୍ଯ୍ୟ । ସେହେତୁ ଦୟାକରି ମୋତେ ସ୍ପେଶାଲିଷ୍ଟ୍ ବୋଲି କୁହନ୍ତୁ ନାହିଁ । ମନସ୍ତତ୍ତ୍ୱର ନ୍ୟାଯ୍ୟ ଅଗ୍ରାଧିକାରକୁ ମାନି ନେଇ ମୁଁ ମୋର ଅନୁଭବ ଓ ବିଦ୍ୟାବୁଦ୍ଧି ଜରିଆରେ ସେଇ ଏକା କଥା କହୁଛି - ମଣିଷଦଶାର ଅଛିଣ୍ଡା କଥା । । ଏବଂ କୌଣସି ସଫଳ ଲେଖକ ମନଟାକୁ 'ଥାଉ' ବୋଲି କହି ବର୍ତ୍ତି ଯାଇଛି ବୋଲି ମନେ ହୁଏ ନାହିଁ । କିଏ ତାକୁ ରଂଗେଇଛି, କିଏ ତାକୁ ଖେଳେଇଛି, ଏବଂ କିଏ ହୁଏତ (ମୋ ପରି) ତା ଗହୀର ଭିତରେ ପଶି ତା'ର ହୁଂଦର ଦେଖାଇବାକୁ ଚାହିଁଛି ।

କିନ୍ତୁ ନାରୀ ଓ ଶିଶୁକନ୍ୟାଙ୍କ ମନସ୍ତତ୍ତ୍ୱ ମୋର ବିଶେଷ ପ୍ରିୟ ଏଇ ମଂତବ୍ୟ କେତେଦୂର ତଥ୍ୟମୂଳକ ମୁଁ କହିପାରିବି ନାହିଁ । ଯଦିବା ତାହା ସତ ହୋଇ ଥାଏ ମୁଁ ତା'ର ଉତ୍ତର ଦେବାକୁ ଅକ୍ଷମ । ମୁଁ ପୁରୁଷ ବୋଲି ନାରୀ ଚରିତ୍ର ମୋତେ ଅଧିକ ଲୋଭନୀୟ ମନେ ହେଲା ? ଫ୍ରଏଡିୟ ଯୌନ ଆକର୍ଷଣ ? ନା ମୋ ନିଜ ପରିବାର (ପତ୍ନୀ, ଚାରୋଟି କନ୍ୟା, ଗୋଟିଏ ପୁତ୍ର) ନାରୀବହୁଳ ହୋଇଥିବାରୁ ଗୋଟିଏ ଜାତିର ଚରିତ୍ର ମୋତେ ବିଶେଷ ଭାବରେ ଦୃଶ୍ୟ ହେଲା ?

ପ୍ରଶ୍ନ (୩) :- ଆପଣ ଗଳ୍ପରେ ବହୁ ଶକ୍ତିଶାଳୀ ନାରୀଚରିତ୍ର ସ୍ଥାନ ପାଇଛନ୍ତି । ମଧ୍ୟବିତ୍ତ ଶ୍ରେଣୀର ଅଭିଜାତ ନାରୀମାନଙ୍କର ଗହଳି ଏଠାରେ ଅଧିକ । କିନ୍ତୁ ସାଂସାରିକ ସମସ୍ୟା କିଂବା ବାସ୍ତବ ସମସ୍ୟା ଅପେକ୍ଷା ନାରୀର ଅବଚେତନ ମନ ଓ ଫ୍ରୟେଡିୟ ମନୋବୈଜ୍ଞାନିକ ବିଶ୍ଳେଷଣ ଉପରେ ଆପଣ ଅଧିକ ଗୁରୁତ୍ୱ ଦେଉଛନ୍ତି - ଏପରି ଦୃଷ୍ଟିକୋଣ ଅପଣ କାହିଁକି ଗ୍ରହଣ କଲେ ?

ଉତ୍ତର : ମନସ୍ତତ୍ତ୍ୱ ଉପରେ ମୁଁ କାହିଁକି ଗୁରୁତ୍ୱ ଦିଏ ସେ ବିଷୟରେ ତ ପୂର୍ବରୁ କହିସାରିଛି । ଏବଂ ମାନୁଛି ଯେ ନାରୀଚରିତ୍ରମାନଙ୍କ ମଧ୍ୟରେ ମଧ୍ୟବିତ୍ତ ଓ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର ନାରୀମାନେ ବେଶି ଗହଳି କରିଛନ୍ତି ମୋ ଗପରେ । ତା'ର କାରଣ ବଖାଣିବା ଅନାବଶ୍ୟକ । କିନ୍ତୁ 'ସାଂସାରିକ ସମସ୍ୟା' କିଂବା 'ବାସ୍ତବ ସମସ୍ୟା' ଅପେକ୍ଷା ମୁଁ ନାରୀର ଅବଚେତନ ମନ ଓ ତାର ବିଶ୍ଳେଷଣ ଉପରେ ଅଧିକ ଗୁରୁତ୍ୱ ଦେଉଛି, ଏହି ପ୍ରକାର ଅଭିଯୋଗ କରିବା କଣ ଉଚିତ ହେବ ? କାରଣ ମନୋବୈଜ୍ଞାନିକ ବିଶ୍ଳେଷଣ ତ କେବଳ ଗୋଟିଏ ମାଧ୍ୟମ, ତା ପଛକୁ କ'ଣ ନାହିଁ ଲେଖକର ଆପଣା ବକ୍ତବ୍ୟ ଯାହାକି ପ୍ରତ୍ୟେକ ଗଳ୍ପର ସାଇତତ୍ତ୍ୱ, ଏବଂ ଯାହା ବିନା ଗଳ୍ପକୁ ସାହିତ୍ୟରେ ସାମିଲ କରିହେବ ନାହିଁ ? ଏବଂ ବକ୍ତବ୍ୟ ମାତ୍ରେ ହିଁ କୌଣସି ନା କୌଣସି ସମସ୍ୟାକୁ ନେଇ । ଏହି ପରିପ୍ରେକ୍ଷୀରେ ମୁଁ ମୋର ନାରୀ ଚରିତ୍ର ମୂଳକ ଓ ବିଶେଷ ଲୋକପ୍ରିୟ ଯୋଡ଼ିଏ ଗଳ୍ପର ଉଦାହରଣ ଦେଉଛି, ଯାହାକୁ ମୁଁ ଲେଖିଥିଲି ପ୍ରାୟ ତିରିଶ ପଇଁତ୍ରିସ୍ ବର୍ଷ ପୂର୍ବେ : ଗୋଟିଏ ହେଲା 'ଭଙ୍ଗା ଖେଳଣା' ଅନ୍ୟଟି 'ଲକ୍ଷ ବିହଂଗ' । ଭଙ୍ଗା ଖେଳଣା ଗଳ୍ପର ନାୟିକା ଗୋଟିଏ ସାନ ଝିଅ ଏବଂ ଲକ୍ଷ ବିହଂଗର

ନାୟିକା ଜଣେ ଅଭିଜାତ ମହିଳା । ଉଭୟ ଗଳ୍ପ ମନସ୍ତତ୍ତ୍ୱରେ ଓଜନିଆ ବୋଲି କୁହାଯାଇପାରେ । କିନ୍ତୁ ତା ପଛକୁ କ'ଣ କିଛି ସମସ୍ୟା ନାହିଁ ଯାହା ଉପରେ ମୁଁ କିଛି କହିବାକୁ ଚାହିଁଲି, ସମୁଜ୍ଜ୍ୱଳ ଛବିଟିଏ ଆଂକି ? ଭଂଗା ଖେଳଣାର ସମସ୍ୟା ହେଲା ଏଇ ଯେ ଦାଂପତ୍ୟ ଜୀବନରେ ତୃତୀୟ ବ୍ୟକ୍ତିର ଛାଇ ଯେତେ ହାଲୁକା ହେଉ ନା କାହିଁକି ଏବଂ ତା'ର ଅନୁପ୍ରବେଶ ଯେତେ 'ସମୀଚୀନ' ହେଉନା କାହିଁକି, ସଂତାନ ପାଇଁ ସେଉଟି ଛାଇ ନୁହେଁ ଭୂତ । ଏଇ ଭୂତର ମୁକାବିଲା କରିବାକୁ ପଡିବ । ନହେଲେ ସଂତାନର ହାନି । ଏଇ ସମସ୍ୟା କ'ଣ ଅସଂସାରୀ ନା ଅବାସ୍ତବ ? କୁମାରୀ ଗୀତାର ଟୋପାଏ ଲୁହ କ'ଣ ଏଇ ସମସ୍ୟା ଓ ସେଥିରୁ ଉପୁଜିବା ଦୁଃଖର ବାର୍ତ୍ତାବହ ନୁହେଁ ? ପୁଣି ଦେଖନ୍ତୁ 'ଲକ୍ଷ ବିହଂଗ' । ଅଭିଜାତ ମହିଳା ନିର୍ବୋଧ ନୁହଁନ୍ତି । ଅପରଂତୁ ଅତି ବୁଦ୍ଧିମତୀ । କିନ୍ତୁ ସେଇ ତ ସମସ୍ୟା । ମାନେ ତାଙ୍କର ବୁଦ୍ଧି ଏତେ ନିରୋଳା, ଅର୍ଥାତ୍ ସ୍ୱାର୍ଥସେବୀ, ଯେ ସେ ତାକୁ ଅକାରଣରେ ଖଟେଇ ପାଣିକୁ ଚହଲେଇବାକୁ ଚାହାନ୍ତି ନାହିଁ । ମିସେସ୍ ପୁରୀ ଯେଉଁ ବୌଦ୍ଧିକ ସୁଖବୋଧର ବାର୍ତ୍ତାବହ ହୋଇ ବିହଂଗମାନଙ୍କୁ ଭୁଟେଇଲେ ତା'ର ଅନ୍ୟ ନାଆଁ ହେଉଛି ନିଷ୍କ୍ରିୟତା, ଯାହାକି ଉପର ମଧ୍ୟବିତ୍ତ ନାରୀମହଲର ଏକ ଉଚ୍ଚାଂଗ ବ୍ୟାଧି । କିନ୍ତୁ ଦୁଃଖର ବିଷୟ ଯେ ସେଇ ବିଭ୍ରାନ୍ତ ବିହଂଗମାନଙ୍କ ପରି ତାକୁ ଗୋଟାଏ ବଡ ସମସ୍ୟା ବୋଲି ଧରାଯାଏ ନାହିଁ, ସତେକି ତାଙ୍କର ଅଳସବିଳାସ ହିଁ ସଭ୍ୟତାର ଅନ୍ୟତମ ସୂଚୀ । ବ୍ୟାପକ ଅର୍ଥରେ ମଧ୍ୟବିତ୍ତ ବୁଦ୍ଧିଜୀବୀର ନିଷ୍କ୍ରିୟତା ଗୋଟାଏ ବଡ ସମସ୍ୟା ଆମ ସମାଜର । ଯା'କୁ ବି କ'ଣ ସଂସାର ଅଥବା ବାସ୍ତବତାର ବହିର୍ଭୂତ ବୋଲି କୁହାଯିବ ? ଅବଶ୍ୟ ଯଦି କେବଳ ତେଲ ଲୁଣର ସମସ୍ୟାକୁ ହିଁ ବାସ୍ତବ ସଂସାରର ସମସ୍ୟା ବୋଲି କୁହାଯାଏ, ତାହେଲେ ମୋର କିଛି ସଫେଇ ଦେବାର ନାହିଁ ।

ପ୍ରଶ୍ନ (୪) :- ନାରୀମନର ପ୍ରେମଭାବନାକୁ ନେଇ ଆପଣ ନିଜ ଗଳ୍ପରେ ଦୁଇଟି ସ୍ପଷ୍ଟ ପରସ୍ପର-ବିରୋଧୀ ଧାରଣା ପ୍ରଦାନ କରିଛନ୍ତି । ଗୋଟିଏ ନିଛକ ଜୈବିକଧର୍ମୀ ଓ ଅନ୍ୟଟି ରୋମାଣ୍ଟିକ୍ ଉତ୍ତରଣର ଭାବନାରେ ସାଂଦ୍ର । 'ପାହାଡ଼' ଗଳ୍ପର ନଂଦିତା ମଲ୍ଲିକ୍ ଚରିତ୍ରଟିରେ ଏହି ଅଭିବ୍ୟୁତିର ଭାବ ସ୍ପଷ୍ଟ, ସେହିପରି 'ଭିନ୍ନପାଉଁଶ'ର ମ୍ୟାରିଲିନ୍ ଏକ ଅତୀଂଦ୍ରୀୟ ପ୍ରେମର ସଂଧାନରେ ବିଭୋର । ସାଧାରଣତଃ ଭାରତୀୟ ନାରୀର ଏହି ଧରଣର ପ୍ରେମ ପ୍ରତି ମର୍ଯ୍ୟଦା ଓ ଆନୁଗତ୍ୟ ଅଧିକ ବୋଲି ମୋର ମନେ ହୁଏ । ସେ ସ୍ଥଳରେ 'ଲକ୍ଷ ବିହଂଗର' ମିସେସ୍ ପୁରୀ କିଂବା 'ତ୍ରୟୋବିଂଶ ମୃତ୍ୟୁର' ମୁନୁ ପରି ଚରିତ୍ର ସୃଷ୍ଟି କରିବାରେ ଆପଣ ଏତେ ଯତ୍ନ କାହିଁକି କରିଛନ୍ତି ? ନଂଦିତା କିଂବା ମ୍ୟାରିଲିନ୍ ତୁଳନାରେ ଏମାନେ ଅଧିକ ଗତିଶୀଳ ଚରିତ୍ର ବୋଲି ଆପଣ ମନେ କରନ୍ତି କି ? ଏମାନଙ୍କ ଭିତରେ ଗଢ଼ି ଉଠିଥିବା ଭାବନା ଭିତରେ କେଉଁଟି ବାସ୍ତବ ଏବଂ ଯଥାର୍ଥ ବୋଲି ଆପଣ ମନେ କରନ୍ତି ?

**ଉତ୍ତର :** ମୋର ଅନୁଭୂତିରେ - ପ୍ରତ୍ୟକ୍ଷ ହେଉ ବା ପରୋକ୍ଷରେ - ମୁଁ ଉକ୍ତ ଦ୍ୱିବିଧ ନାରୀଙ୍କ ସଂସ୍ପର୍ଶରେ ଆସଛି । ଏବଂ ସେମାନଙ୍କ ଚରିତ୍ରର ଅଳ୍ପବହୁତ ସଂଧାନ ପାଇଛି ବୋଲି ମୋର ମନେ ହୁଏ । ତେବେ କେବଳ ଏହି ଧରଣର ନାରୀ କାହିଁକି, ଶ୍ରେଣୀଭୁକ୍ତ କରିବାକୁ ବସିଲେ ଅନ୍ୟ ଧରଣର ନାରୀ କ'ଣ ନାହାଁନ୍ତି ମୋ ଗଳ୍ପରେ ? 'ଦୁଃଖର ସାଥୀ'ରେ ସ୍ୱାମୀପ୍ରେମରୁ ବଂଚିତା ହୋଇଥିବା, ହେଲେ ତାକୁ ମିଛମିଛିକା ମୁଠେଇ ଧରିଥିବା, ଦୁଃଖକୁ କୌଣସି ମୋତେ ସୁଖ ବୋଲି ମଣୁଥିବା ରଂଜନାଦେବୀଙ୍କ ବୀରତ୍ୱ (ଯାହାକି ଆମ ସମାଜର ଅନେକ ବିବାହିତା ନାରୀଙ୍କ ବୀରତ୍ୱ)କୁ କେଉଁ ଥାକରେ ସଜେଇବା ? ଏବଂ ନାଲି ଗୁଲୁଗୁଲୁ ସାଧବ ବୋହୂର ଅନୁଢ଼ା ଗୀତାର ବିଦ୍ରୋହକୁ କ'ଣ ବୋଲି କହିବା - ଜୈବିକ ଧର୍ମୀ ନା ରୋମାଣ୍ଟିକ୍ ? ମୋର ଉତ୍ତର ଜୀବନର କେତେଗୁଡିଏ ଗଳ୍ପକୁ ନେଲେ ଏହି ପ୍ରକାର ବୀରତ୍ୱ ଅଥବା ବିଦ୍ରୋହ ଆହୁରି କେତେ ଅଜବ୍ ରୂପ ଦେଖାଇଛି ବୋଲି ମନେ ହେବ, ଯେଉଁଠି ନାରୀଚରିତ୍ରର କେବଳ ଗୋଟିଏ ବିଶିଷ୍ଟତା ସୁଦୃଶ୍ୟ - ଯେ ଆମର ପୁରୁଷାୟିତ ସମାଜରେ ତାକୁ ଉଚିତରୁ ଅଧିକ ଦ୍ୱଂଦର ସମ୍ମୁଖୀନ ହେବାକୁ ପଡେ । ତାକୁ ସେ କିପରି ଭାବରେ ତୁଲାଏ, କେଉଁପ୍ରକାର 'ସ୍ୱପ୍ନ' 'ପଳାୟନ' 'ବୀରତ୍ୱ' 'ବିଦ୍ରୋହ' ଅଥବା କୃତ୍ରିମତାର ପ୍ରୟୋଗ କରି, ତାହା ତା'ର ପରିସ୍ଥିତି ପରିବେଶ ଓ ସ୍ୱଗୁଣ ଉପରେ ନିର୍ଭର କରେ । ବେଳେ ବେଳେ ସେ ତାକୁ ତୁଲେଇ ପାରେ ନାହିଁ, ସହନ ଓ ଦହନ ହିଁ ପରିସ୍ଫୁଟ ହୋଇ ଉଠେ, ଯାହାର ଗୋଟିଏ ଜ୍ୱଳନ୍ତ ଉଦାହରଣ ବୋଧହୁଏ ପାଇବେ ମୋର 'ଜାଳେଣି' ଗଳ୍ପର ଚିତ୍ରାଦେବୀଙ୍କ ପାଖରେ । ମୋର ଧାରଣା ଯେ ମୋ ନାରୀଚରିତ୍ରର ଏଇ ମୁଖ୍ୟ ସ୍ୱରକୁ ଛାଡ଼ି ଦେଲେ ବାକୀସବୁ ମଣିଷସର୍ବସ୍ୱ । ନାରୀ ନର ନିର୍ବିଶେଷରେ ବିଭିନ୍ନ ଓ ବିଚିତ୍ର, ଯାହା ମୋତେ ମୋ ଗଳ୍ପମାନସର ଖୋରାକ୍ ଯୋଗାଇଛି । ତା'ହେଲେ ମୋର ଉପରୋକ୍ତ ମୁଖ୍ୟସ୍ୱର, ଭାରତୀୟ ନାରୀର ସଂସ୍କାରଗତ ଦୁରବସ୍ଥାକୁ ମୁଁ କ'ଣ ତାର ଯଥାର୍ଥ ରୂପ ବୋଲି କହିବି ? ନା, ତାହା ବର୍ତ୍ତମାନ ପାଇଁ ବାସ୍ତବ ହୋଇପାରେ, କିନ୍ତୁ ତା'ର ଦୂରୀକରଣତା ହିଁ କାମ୍ୟ, ତେଣୁ ତାକୁ ଯଥାର୍ଥ ବୋଲି କହିବି କେମିତି ?

ତା'ଛଡା କେତେକ ଗଳ୍ପରେ, ବିଶେଷତଃ ମୋ ଉତ୍ତରଜୀବନର ଅନେକ ଗଳ୍ପରେ ମୋ ଚରିତ୍ରଗୁଡ଼ିକ ଏତେ ଏତେ ଜଟିଳ ହୋଇପଡିଛନ୍ତି ଯେ ତାକୁ କ'ଣ ସହଜେ କେଉଁ ବିଶିଷ୍ଟ ଖୁଆଡରେ ପକେଇ ପାରିବେ ? ଧରନ୍ତୁ ଏବେକାର ଗୋଟିଏ ଗଳ୍ପ 'ଛକଡ଼ିର ଶ୍ରୀକୃଷ୍ଣ' । ସେଥିରେ ମାଆ ନା ଝିଅ, କାହାର ଚାରିତ୍ରିକ ଦୋଷ ଓ ଦୁର୍ବଳତା ଯୋଗୁଁ ତାଙ୍କ ଭିତରେ ଏଇ ଆଜୀବନ ଅସ୍ୱସ୍ତିର ଭାବ (Tension) ଗଢ଼ି ଉଠିଲା ? ବରଂ ସେଥିର ଅହଂଭାବରେ ପ୍ରେମ ଓ ତ୍ୟାଗ କ'ଣ ଏମିତି ଛଂଦାଛଂଦି ହୋଇନାହିଁ ଯେ ସେଥିର ସୂକ୍ଷ୍ମ କାରୁକାର୍ଯ୍ୟହିଁ ଭଲ ଲାଗିବ ଆପଣଙ୍କୁ ? ଯଦି ଭଲ ଲାଗି ନାହିଁ, ତା'ର ଅର୍ଥ ମୁଁ ମୋ ଉଦ୍ଦେଶ୍ୟରେ ସଫଳ

ହୋଇପାରି ନାହିଁ । ସେ ଯାହାହେଉ ଚରିତ୍ରବିଶେଷକୁ କୌଣସିମତେ ଗୋଟିଏ ଖୁଆଡରେ ପୂରାଇ ଦେବାର ସ୍ୱସ୍ତି ଲାଭରୁ କ୍ଷାନ୍ତ ହୁଅନ୍ତୁ, ଲେଖକକୁ ଅଧିକ ଅସ୍ୱସ୍ତିରୁ ରକ୍ଷା କରନ୍ତୁ, ଏତିକି ମୋର ଅନୁରୋଧ ।

ପ୍ରଶ୍ନ (୫) :- ମଧ୍ୟବିତ୍ତ ନାରୀଚରିତ୍ରକୁ ଏତେ ଅଧିକ ଗୁରୁତ୍ୱ ଦେଉଥିବାବେଳେ କାଁଭାଁ କେତୋଟି ଗଳ୍ପକୁ ଛାଡି ଦେଲେ କର୍ମଜୀବୀ ମହିଳାର ସମସ୍ୟା ସଂପର୍କରେ ଆପଣ ପ୍ରାୟ ନୀରବ - ଯଦିଓ ତା'ର ବାହ୍ୟ ଓ ଅନ୍ତର୍ଜଗତର ସମସ୍ୟା ଅଧିକ ବ୍ୟାପକ - ଏ ସଂପର୍କରେ ଆପଣଙ୍କ ମତାମତ କଅଣ ?

**ଉତ୍ତର :-** ଜଣାଶୁଣା କଥା ଯେ ମୁଁ ବେଶି ପରିମାଣରେ ମଧ୍ୟବିତ୍ତ ସମାଜର ଲୋକମାନଙ୍କ ବିଷୟରେ ଲେଖିଛି, କାରଣ ସେଇମାନଙ୍କୁ ହିଁ ମୁଁ ଭଲଭାବରେ ଜାଣିଛି ବୋଲି ମୋର ଧାରଣା । କିନ୍ତୁ କର୍ମଜୀବୀ ମହିଳାମାନଙ୍କ ବିଷୟରେ ମୁଁ ଲେଖିନାହିଁ ବୋଲି କିଏ କହିଲା ? ମୋର ପୁରୁଣା ଗପ ଗୁଡ଼ିକରେ ମଧ୍ୟ ପାଇବେ 'ସାବିତ୍ରୀର ସୁଦିନ'ର ସାବିତ୍ରୀ, ଯେ ଜଣେ ଟାଇପିଷ୍ଟ, 'ମୁକ୍ତକେଶୀ'ର ସରସୀ ଯେ ଜଣେ ଅଧ୍ୟାପିକା । ପରବର୍ତ୍ତୀ କାଳରେ 'ବନ୍ୟା ଓ ଝରଣାର' ନନୀ ଦେଇ ଜଣେ ସମାଜ ସେବିକା । ଇତ୍ୟାଦି । ତେବେ ମୁଁ ମାନୁଁଛି ଯେ କର୍ମଜୀବୀ ମହିଳାର ପେଟପାଟଣାଗତ ଦୁଃଖ ଉପରେ ସମସ୍ତ ଗୁରୁତ୍ୱ ନ ଦେଇ ମୁଁ ତାକୁ ପ୍ରଥମେ ଟାଣି ଆଣିଛି ତା'ର ମନ ଗହୀରକୁ, ଯେଉଁଠି ସେଇ ଦୁଃଖର ଭେଟାଭେଟି ଆଉ କେତେ ପ୍ରକାରର ସୁଖ ଦୁଃଖ ସାଂଗରେ - ଜୈବିକ, ସାମାଜିକ, ଆଧ୍ୟାତ୍ମିକ ଅଥବା ଅନ୍ୟ କେଉଁ ଆବେଗ ଓ ପ୍ରବଣତା ସାଂଗରେ - ଏବଂ ସେହି ସମସ୍ତକୁ ନେଇ ଯେଉଁ ଚରିତ୍ର ଫୁଟି ଉଠିବ, ମୁଁ ତା'କୁ ନେଇ କିଛି କହିବାକୁ ଚାହିଁଛି । ତଥାପି ମୁଁ ସ୍ୱୀକାର କରୁଛି ଯେ ଆଧୁନିକ ସହରି ସମାଜର ବାସ୍ତବତା ସହିତ ତାଳ ଦେଇ ମୁଁ ଆହୁରି ଅଧିକ କର୍ମଜୀବୀ ମହିଳାମାନଙ୍କୁ ମୋ ଗଳ୍ପ ଜଗତର ନାୟିକା କରିପାରିଥାଆନ୍ତି । ମୁଁ ସେଥିପାଇଁ ଦୁଃଖିତ ।

ପ୍ରଶ୍ନ (୬) :- ନାରୀ ଚରିତ୍ରରେ ଠାକୁର ମୂର୍ତ୍ତି ମାଧ୍ୟମରେ ମଧ୍ୟ ଯୌନକାମନାର ସୂଚନା ଦେବାକୁ ଆପଣ ଚେଷ୍ଟା କରିଛନ୍ତି, ଯଥା- 'ଛକଡ଼ିର ଶ୍ରୀକୃଷ୍ଣ', 'ପତ୍ନୀଙ୍କ ପ୍ରେମ' ଇତ୍ୟାଦି ଗଳ୍ପ । ଭାରତୀୟ ସଂସ୍କାର ବିଶିଷ୍ଟ ଆପଣଙ୍କର ମନ ଏଥିପାଇଁ କେଉଁ ଯୁକ୍ତିରେ ଅନୁମତି ଦେଇଛି ?

ଉତ୍ତର :- ନା । ଠାକୁର ମୂର୍ତ୍ତିର ମାଧ୍ୟମରେ ମୁଁ ଯୌନକାମନାର ସୂଚନା ଦେଇ ନାହିଁ । ପତ୍ନୀଙ୍କ ପ୍ରେମରେ ପତି ଜଣକ ହିଁ ତା'ର ଭୂତ ଦେଖିଛନ୍ତି, ଯାହାକି ତାଙ୍କର ଦୁଃସ୍ଥ ବ୍ୟକ୍ତିତ୍ୱର ପରିଚାୟକ । ଗଳ୍ପଟି ବ୍ୟଙ୍ଗାତ୍ମକ, ତେଣୁ ତାଙ୍କର ଏଇ ମନୋଭାବକୁ ସଂସ୍କାରଗତ ଅଥବା ନୈତିକ ଦୃଷ୍ଟିରୁ ବିଚାର କରି ସେଇଥିପାଇଁ ଲେଖକ ଠାରୁ ଜବାବ୍ ଲୋଡିବା ଉଚିତ ହେବ କି ? ଏବଂ 'ଛକଡ଼ିର ଶ୍ରୀକୃଷ୍ଣ'ରେ ଯୌନକାମନାର ପ୍ରଶ୍ନ ଉଠୁ ନାହିଁ । ସୁରୁଚି ଦେବୀ ତାଙ୍କ ଶ୍ରୀକୃଷ୍ଣଙ୍କୁ ଭଲ ପାଆନ୍ତି, ପ୍ରେମଧର୍ମାବଲମ୍ବୀ ଭକ୍ତ ଯେମିତି ତାର ଶ୍ରୀକୃଷ୍ଣଙ୍କୁ ଭଲ ପାଏ । ମନୋବୈଜ୍ଞାନିକ

ଦୃଷ୍ଟିରୁ ଦେଖିଲେ ସେଥିରେ ହୁଏତ ଯତ୍‌କିଂଚିତ ଯୌନତା ଥାଇପାରେ, ନାରୀ ଓ ପୁରୁଷ ମଧ୍ୟରେ ଯୌନ ଆକର୍ଷଣର ଶାଶ୍ୱତ ଓ ଅନିବାର୍ଯ୍ୟ ତାଡ଼ନା, କିନ୍ତୁ ତାକୁ ଯୌନକାମନା ବୋଲି କଦାପି କୁହାଯିବ ନାହିଁ । ସେଠି ପ୍ରୟତୀୟ ଭାଷାରେ ସେକ୍‌ସ୍ ସମାହିତ ହୋଇ ଯାଇଛି । ପୂରାପୂରି ସମାହିତ ନ ହେଲେ ମଧ୍ୟ ତାର ସୌନ୍ଦର୍ଯ୍ୟ, ଲାବଣ୍ୟ, ସୂକ୍ଷ୍ମସୁନ୍ଦର ଆବେଗ, ଚରିତ୍ରର ଭାବନାକୁ ପ୍ରଭାବିତ କରିଛି । ମୋ ମତରେ ଭାରତୀୟ ସଂସ୍କାର ଏଥିରେ ବିମୁଖ ନୁହେଁ, ତେଣୁ ସେଥିରୁ ଓହରି ଯିବାର ଅନୁମତି ଲୋଡ଼ା ନ ଥିଲା ମୋର ।

ପ୍ରଶ୍ନ (୭) :- ଗଳ୍ପରେ ନାରୀର ବିଭିନ୍ନ ରୂପ ଆଙ୍କିବାର ଆପଣ ଅପ୍ରତିଦ୍ୱଂଦୀ ସ୍ରଷ୍ଟା । ତଥାପି ନାରୀମନର କୌଣସି ଦିଗ ବାକୀ ରହିଯାଇଛି କିଂବା ନାରୀର ସମସ୍ତ ରହସ୍ୟ ଆପଣ ବୁଝିଛନ୍ତି ବୋଲି ଆପଣଙ୍କର ମନେ ହୁଏ କି ? ଏ ଦୃଷ୍ଟିରୁ ତରୁଣ ଗାଳ୍ପିକମାନଙ୍କ ନିମନ୍ତେ ଆପଣଙ୍କର କି ବାର୍ତ୍ତା ରହିବ ?

ଉତ୍ତର :- ମୁଁ ନାରୀମନର ବହୁମୁଖୀ ରହସ୍ୟର ସଂଧାନ ଦେଇପାରିଛି, ଏଭଳି ଆସ୍ପର୍ଦ୍ଧା ମୋର ନାହିଁ । ଯାହା କି ମୁଁ ପୂର୍ବରୁ କହିଛି, ମଣିଷର ମନ ବାସ୍ତବରେ ବିଚିତ୍ର ଏବଂ ଭାବ ଭାବନାର ବିଭିନ୍ନ ଦ୍ୱନ୍ଦ୍ୱ ଓ କନ୍ଦଳକୁ ନେଇ ବିରୋଧାତ୍ମକ, ତେଣୁ ବେଳେବେଳେ ବିଷମ ଓ ଦୁଃଖଦ । କିନ୍ତୁ ଚତୁର୍ଥ ପ୍ରଶ୍ନର ଉତ୍ତରକୁ ଆହୁରି ବାଖ୍ୟା କରି ପୁଣି ଥରେ କହିବାକୁ ମୋର ଆପତ୍ତି ନାହିଁ ଯେ ଏହି ସାର୍ବଜନୀନ ବୈଚିତ୍ର୍ୟ ଭିତରେ ନାରୀମନର ସ୍ୱରୂପ ଆହୁରି ଘନ ଓ ଦୁର୍ଭେଦ୍ୟ ବୋଲି ମୋର ମନେ ହୁଏ । ତା'ର କାରଣ ନୁହେଁ ଯେ, ନାରୀ ହୋଇଥିବାରୁ ତା ମନଟା ମୂଳରୁ ଆଉପ୍ରକାରେ ହୋଇଯାଇଛି । ମୋଟେ ତା' ନୁହେଁ । ପୁରୁଷର ସମାଜରେ ବିଶେଷତଃ ଭାରତୀୟ ସମାଜରେ ଯେଉଁ ସଂସ୍କାର ଗଢ଼ି ଉଠିଛି, ସେଠି ତାକୁ କେଉଁ ଇମେଜ୍ ଦିଆଯାଇଛି, ଏଣେ ତା'ର ସ୍ୱାଧୀନ ଚିନ୍ତା ଓ ଆଧୁନିକ ବିଚାର ଧାରାକୁ ନେଇ ସେ ଯାହା ଏବଂ ଯାହା ହେବାକୁ ଚାହେଁ, ଏଇ ଦୁଇଟିର ସଂଘର୍ଷ ନାରୀ ମନର ବୈଚିତ୍ର୍ୟକୁ ଆହୁରି ଜଟିଳ କରି ଦେଇଛି । ଏଇ ସଂଘର୍ଷକୁ ନେଇଁ କେତେ ଲୁଚୁକାଳି, କେତେ ରଂଗଢ଼ଙ୍ଗ, କେତେ ନୀରବ କାଂଦଣା, ଅନ୍ତର୍ଦାହ ଏବଂ ବୀରତ୍ୱର ଆସ୍ଫାଳନ ତଥା କାରସାଦି - ତା'ର ବିବିଧବହୁଳ ରୂପଗୁଣକୁ କେତେଜଣ ଲେଖକ କଳି ପାରିଛନ୍ତି ?

ତରୁଣ ଲେଖକମାନଙ୍କ ପ୍ରତି କିଛି ବାର୍ତ୍ତା ଦେବାର ଅଧିକାର ଅଛି ମୋ ପକ୍ଷରେ, ଏଭଳି ଧାରଣା ମୋତେ ଅଡୁଆ ଲାଗେ । ତୁଚ୍ଛା ପ୍ରବୀଣତାର ବାହାଦୁରୀ ବୋଲି ମନେ ହୁଏ । ଯାହାହେଉ ପ୍ରଶ୍ନର ଉତ୍ତର ହିସାବରେ କହିବି ଯେ ତୁମ ଅନୁଭୂତ ସତ୍ୟକୁ ହିଁ ଦର୍ଶାଇବାର ଯତ୍ନ କର । କାହା କଥାରେ ପଡ ନାହିଁ - କେଉଁ ବହିପଢ଼ା କଥା, ନେତାଙ୍କ ଉପଦେଶ, ଅବା ତଥାକଥିତ ଯୁଗଧର୍ମର ଚାହିଦା ଏବଂ ନିଷ୍ଠାର ସହ । କିନ୍ତୁ ସର୍ବୋପରି ମଣିଷ ଭାଇଭଉଣୀମାନଙ୍କ ପ୍ରତି ଗୋଟାଏ ବ୍ୟାପକ କରୁଣାର ଜାଲରେ ବାଂଧି ହୋଇ ।

# ଦ୍ୱିତୀୟ ପର୍ଯ୍ୟାୟ

**ପ୍ରଶ୍ନକର୍ତ୍ତା - ଦାଶ ବେନହୁର (ଜିତେନ୍ଦ୍ର ନାରାୟଣ ଦାଶ)**

ପ୍ରଶ୍ନ (୧) :- ଆପଣଙ୍କ ଗଳ୍ପରେ ଭାଷାର ସ୍ୱର ଗୋଟିଏ ସ୍ତରରେ ଥାଏ । ମାନେ ଗାଳ୍ପିକ ନିଜେ ବର୍ଣ୍ଣନା କଲା ବେଳେ ଯେଉଁ ଶବ୍ଦମାନ ବ୍ୟବହାର କରନ୍ତି, ତାହା ଗଳ୍ପ ଭିତରେ କୌଣସି ଚରିତ୍ରର ସଂଳାପର ଭାଷାଠାରୁ ଅଲଗା ନୁହେଁ । ତେଣୁ ଆପଣଙ୍କ ଚରିତ୍ରମାନେ ଭିନ୍ନ ଭିନ୍ନ ସ୍ତରର ଓଡିଆ ଭାଷା ନ କହି ଗୋଟିଏ ମାନବ-ଓଡିଆ ଭାଷା କହନ୍ତି ? ଏହା ଆପଣ ସ୍ୱେଚ୍ଛାକୃତଭାବେ କରନ୍ତି ନା ଏହା ଆପଣଙ୍କର ଅଜାଣତରେ ଘଟେ ?

ଉତ୍ତର : ଆପଣଙ୍କର ଧାରଣା ଅନେକାଂଶରେ ସତ, କାରଣ ମୋର ପ୍ରଧାନ ଚରିତ୍ରମାନେ ଯେଉଁ ଶ୍ରେଣୀରୁ ଉଦ୍‌ଭୁତ ମୁଁ ମଧ୍ୟ ସେହି ଶ୍ରେଣୀର ଲୋକ, ତେଣୁ ଆମ ଭାଷାର ସ୍ୱର ପ୍ରାୟ ଏକା ଭଳି ମନେ ହେବା ସ୍ୱାଭାବିକ । ତେବେ ଏହି ସଂକ୍ରାନ୍ତରେ ଦୁଇଟି କଥା କହିବାର ଅଛି । ଏକ - ମୋ ଚରିତ୍ରମାନଙ୍କ ମନର ଭାଷା ଓ ତାଙ୍କ କଥାକୁହା ଭାଷା ମଧ୍ୟରେ ପାର୍ଥକ୍ୟ ରହିଛି । ଭାଷଣ ନୁହେଁ, ନିତ୍ୟନୈମିତ୍ତିକ ସଂଳାପରେ ସାଧୁଶବ୍ଦ ସଂବଳିତ ଏବଂ ସଂଗଠିତ ଭାଷା ସ୍ୱାଭାବିକ ନୁହେଁ । ଅଥଚ ମନର ଭାଷାରେ ଲେଖକର ପୂର୍ଣ୍ଣ ଅଧିକାର ଅଛି ତାଙ୍କ ଚେତନାର ଛବିଗୁଡ଼ିକୁ ନାନା ଭଳି ଶବ୍ଦ ଓ ରୂପକଳ୍ପ ସାହାଯ୍ୟରେ ସଜାଡିବା ପାଇଁ, ଯେପରିକି ସେହିସବୁ ଛାଇ-ଆଲୁଅରେ ଝଲମଲ ଛବି ଏକାଧାରେରେ ସଂଶ୍ଳିଷ୍ଟ ଓ ବ୍ୟଂଜନାତ୍ମକ ହୋଇ ପାରିବ । ମୁଁ ଯଥାସଂଭବ ଏହି ପାର୍ଥକ୍ୟର ଅନୁସରଣ କରିବାକୁ ଚେଷ୍ଟା କରିଛି । ତା' ଛଡା ଲେଖକୀୟ କଥାକୁହାର ସ୍ୱାଧୀନତା ଚରିତ୍ରର କଥାକୁହାରେ ନାହିଁ ଏବଂ ରହିବା ଉଚିତ ନୁହେଁ । ମୁଁ ସେଥିପ୍ରତି ସଜାଗ ହୋଇ ରହିବା ପାଇଁ ଚେଷ୍ଟା କରିଛି ।

ଦୁଇ - ମୋର ମୁଖ୍ୟ ଚରିତ୍ରମାନେ ପ୍ରାୟତଃ ମଧ୍ୟବିତ୍ତ ଶ୍ରେଣୀର ହୋଇଥିଲେ ମଧ୍ୟ ସେଥିର କେତେକ ଉପଶ୍ରେଣୀଙ୍କ ଭାଷାରେ କିଛି କିଛି ବିଶିଷ୍ଟତା ରହିଛି । ଯଥା: ପାରଂପରିକ ଘରକରଣାର ସ୍ତ୍ରୀମାନଙ୍କ ତଥାକଥିତ ମାଇପି ଭାଷା, ନବ୍ୟ ସଭ୍ୟ ପାଠପଢୁଆ ଟୋକାଙ୍କ ବେପରୁଆ ବେଖାତିରିଆ ଭାଷା, ଇତ୍ୟାଦି । ବେଳେ ବେଳେ ପାର୍ଶ୍ୱଚରିତ୍ର କିଂବା ପୃଷ୍ଠଭୂମିର ପରିବେଶକୁ ନେଇ ମଧ୍ୟ ସଂପୂର୍ଣ୍ଣ ଭିନ୍ନ ଧରଣର ଭାଷା ପ୍ରୟୋଗ କରିବାକୁ ପଡିଥାଏ । ଉଦାହରଣ ସ୍ୱରୂପ :- 'ପ୍ରେମନାରାୟଣ'ରେ ନାରୀମହଲର ଗସିପ୍ - ମୁଁ କ'ଣ କହୁଛି ଶୁଣ, ଗୁନି ବାହାଘର ବର୍ଷ ... ଫୁସ୍ ଫୁସ୍ ଫୁସ୍ .. ନଟ ଭାଇଙ୍କ ପୁତୁରାକୁ ଜାଣି ନାହଁ ? ତମେ କେଉଁ ବିଲାତରୁ ଆସିଛ କିଓ ?.. ସମବେତ ହସ, ଟୁପ୍ ଟୁପ୍ ଟୁପ୍ .. ଫଟା କଣ୍ଠର ହସ ... ହେଲେ ଆମ ଅନ୍ତ ଭାଇ ଛାଡ଼ିବା ଲୋକ ନୁହନ୍ତି । ଧରିଲେ ଚୁଟି .. ।

'ଗଳି ସିନେମା'ରେ ଗଳିପିଲାଙ୍କ କଥାକୁହା - ଗଲା, ଗଲା ମାର୍ ଶଳାକୁ, କାଟେ.. ବାଟେ.. ଧ୍ୟାତ୍‌ତେରୀ (ହୋ-ହୋ-ହୋ) (ଗଳି ଉପରେ ତାଳି)ହ୍ୟାପ ବେଧୁଆ ଟୋକା, ମୋର ଯା' ଉପରେ ଚଢ଼ିବାକୁ କିଏ କହିଲା ତତେ, ଉହ୍ଲଉଛି କି ନାହିଁ ? .. କ'ଣ କହିଲୁ ଆବେ ଆମ ଗଳି ଗଂଧିଆ ? ଗଲୁ ନାହିଁ କୋଉ ବୋପା ଘରକୁ ଗୁଡି ଉଡ଼ାଇବା ପାଇଁ ? ଏଠିକି ଆସିଲୁ କାହିଁକି ? ଶ-ଅ-ଳା ଇତ୍ୟାଦି ।

ପ୍ରଶ୍ନ (୨) :- ଗଳ୍ପ ଲେଖିଲା ବେଳେ କେଉଁ କଥାଟି ଆପଣଙ୍କ ପାଖକୁ ପ୍ରଥମେ ଆସେ ? ଗଳ୍ପଟିର ପରିଣତି ? ଗଳ୍ପର ପ୍ରଥମ ଚରିତ୍ର ? ଗଳ୍ପର ପ୍ରଥମ ଘଟଣା ? ନା ଗଳ୍ପ ଭିତରେ ଆବିଷ୍ଟ ହେବାକୁ ଥିବା ଆପଣଙ୍କ ମନର ଦର୍ଶନ ?

ଉତ୍ତର :- ଗଳ୍ପର conceptual stageମାନେ ଯେତେବେଳେ ଗଳ୍ପର ମୂଳକଥା ମନରେ ବାନ୍ଧି ହୋଇଆସେ, ସେତେବେଳେ ଥାଏ କେଉଁ ଗୋଟିଏ ବିଶିଷ୍ଟ ଘଟଣା ଅଥବା ଚରିତ୍ରର ନୂତନତ୍ୱ ଏବଂ ସେଥିରୁ ଉପୁଜି ପାରୁଥିବା ମୋ ଅନୁଭୂତ ଦର୍ଶନର ଅଭିବ୍ୟକ୍ତି, ମୋର ଅନ୍ୟତମ ବକ୍ତବ୍ୟ, ଯାହାକୁ ମୁଁ ମୋର ପାଠକ ପାଠିକାମାନଙ୍କ ପାଖରେ ଉପସ୍ଥାପିତ କରିବାକୁ ଚାହେଁ । ତା'ପରେ କଲମ ଧରିବା ପୂର୍ବରୁ ମୁଁ ପ୍ରଥମେ ମୋ ଗଳ୍ପର ପରିଣତି, ତାର ଶେଷ କଥା, କ୍ଲାଇମାକ ସ୍ କିଂବା ଆଣ୍ଟି-କ୍ଲାଇମାକ୍ସର ଉଦ୍ଘାଟନକୁ ଠିକଣା କରିନିଏ, ଯେପରିକି ତାରି ମାଧ୍ୟମରେ ମୋର ଅଭିବ୍ୟକ୍ତି ଯଥାସଂଭବ ସୂଚିତ ହୋଇପାରିବ । ସୁସ୍ପଷ୍ଟ ନୁହେଁ । 'ସୂଚିତ' କାରଣ ମୋର ବକ୍ତବ୍ୟ ଅଧିକାଂଶରେ ବହୁମୁଖୀ ଏବଂ ପ୍ରଶ୍ନବାଚୀ, ତେଣୁ ଶ୍ଳେଷ (irony)କୁ ଆଶ୍ରା କରିଥାଏ ।

(୩) :- ଧରାଯାଉ ଆପଣ ଓଡ଼ିଶା ଛାଡି ବର୍ତ୍ତମାନ ଅନେକ ଦୂରକୁ ଅନେକ ଦିନ ପାଇଁ ଚାଲିଯିବାକୁ ବାଧ୍ୟ ହେବେ । ତେବେ ଆପଣ କେଉଁ ପାଞ୍ଚୋଟି ଓଡିଆ ପୁସ୍ତକ ସାଙ୍ଗରେ ନେଇ ଯିବାକୁ ଚାହିଁବେ ?

ଉତ୍ତର :- ଓଡ଼ିଶା ଛାଡି ଅନେକ ଦିନ ପାଇଁ ଅନେକ ଦୂରକୁ ଗଲେ ମଧ୍ୟ ମୁଁ ସଂଭବତଃ ଆତୁର ହୋଇଉଠିବି ନାହିଁ, ବଛାବଛା କେତୋଟି ଓଡିଆ ବହି ସାଙ୍ଗରେ ନେଇଯିବା ପାଇଁ, କାରଣ ଯଥାକ୍ରମେ ଫେରିଆସିବି, ଏଇ ଆଶା ସବୁବେଳେ ମନରେ ଥିବ । ତେବେ କେବଳ ଜଣେ ଲେଖକ ଓ ସାହିତ୍ୟ ପ୍ରେମୀ ହିସାବରେ ମୋର ଇଚ୍ଛା ହେବ କେବଳ ସେହି ଓଡିଆ ବହିଗୁଡ଼ିକୁ ନେଇଯିବା ପାଇଁ, ଯାହାର ମହତ୍ତ୍ୱ ମୁଁ ବିଦେଶୀମାନଙ୍କ ଆଗରେ ବଖାଣି ପାରିବି । ସେହି ଦୃଷ୍ଟିରୁ ନିଜ ଲେଖା ଛଡା ଫକିରମୋହନ ଓ ଗୋପୀନାଥ ମହାନ୍ତିଙ୍କର ଉପନ୍ୟାସ ତଥା ସମସାମୟିକ କେତେକ କଥାକାର ଯଥା ମନୋଜ, ଶାଂତନୁ, ଚନ୍ଦ୍ରଶେଖର ରଥ ଓ ମହାପାତ୍ର ନୀଳମଣି ସାହୁଙ୍କ ଗଳ୍ପ, ଏବଂ କବି ସଚି ରାଉତରାଏ  ଗୁରୁପ୍ରସାଦ, ଉମାକାନ୍ତ, ସୌଭାଗ୍ୟ ଓ ରାଜେନ୍ଦ୍ର ପଣ୍ଡାଙ୍କ କବିତା ବହି ନେଇଯିବାକୁ ମନ ହେବ । କିନ୍ତୁ ତାଙ୍କ ଭିତରୁ କେଉଁ ପାଞ୍ଚୋଟି ବାଛିବି (ଯଦି ସେପରି କିଛି ବାଧ୍ୟବାଧ୍ୟକତା ଥାଏ), ତାହା ଶେଷ ମୂହୂର୍ତ୍ତର ଖିଆଲ ଓ ଆବେଗ ଉପରେ ନିର୍ଭର କରେ ।

ପ୍ରଶ୍ନ (୪) :- ଯୁବ ଗାଳ୍ପିକମାନଙ୍କର ଗଳ୍ପକୁ ଆପଣ ପଢ଼ନ୍ତି କି ନାହିଁ ? ଦୟାକରି ଆପଣଙ୍କ ବିବେଚନାରେ ଉଜ୍ଜ୍ୱଳ ସଂଭାବନା ଥିବା ଗାଳ୍ପିକମାନଙ୍କର ନାମ କହିବେ କି ?

ଉତ୍ତର :- ପଢ଼େ । ମୋ ମତରେ ରାମଚନ୍ଦ୍ର ବେହେରା, ଯଶୋଧାରା ମିଶ୍ର, ହୃଷୀକେଶ ପଣ୍ଡା, ପଦ୍ମଜ ପାଳ ଓ ଶ୍ୟାମାପ୍ରସାଦ ଚୌଧୁରୀଙ୍କ ଗଳ୍ପରେ ସାହସିକ, ବୌଦ୍ଧିକ ତଥା ସୁଖପାଠ୍ୟ ଗାଳ୍ପିକତାର ଉଜ୍ଜ୍ୱଳ ସଂଭାବନା ରହିଛି । ତେବେ ଆହୁରି କେତେ ଯୁବ ଗାଳ୍ପିକ ବୋଧହୁଏ ଥିବେ ଯାହାଙ୍କ ଲେଖା ମୁଁ ପଢ଼ି ନାହିଁ । ତେଣୁ ମୋର ବିଚାରକୁ ଆଂଶିକ ବୋଲି ମନେ କରିବାକୁ ଅନୁରୋଧ ।

ପ୍ରଶ୍ନ (୫) :- ଗଳ୍ପକୁ ଯଦି ଦୁଇଭାଗ କରି କାହାଣୀଧର୍ମୀ ଓ ବର୍ଣ୍ଣନାଧର୍ମୀ ଭାବେ ବର୍ଗୀକରଣ କରାଯାଏ, ତେବେ ଆପଣ ଜଣେ ବର୍ଣ୍ଣନାଧର୍ମୀ ଗାଳ୍ପିକ । କିନ୍ତୁ ସାହିତ୍ୟର ଇତିହାସ କାହାଣୀଧର୍ମୀ ଗଳ୍ପମାନେ ହିଁ କାଳଜୟୀ । ଏହା ଉପରେ ଆପଣଙ୍କର ମତାମତ କ'ଣ ?

ଉତ୍ତର :- ମୁଁ ମୋର ଗଳ୍ପଗୁଡ଼ିକୁ ଯଥାର୍ଥରେ ବର୍ଣ୍ଣନାଧର୍ମୀ (descriptive) ବୋଲି କହିପାରୁ ନାହିଁ । ବିଶେଷତଃ ଏଠି ଗଳ୍ପ କଥା ପଡ଼ିଛି, ଉପନ୍ୟାସ ନୁହେଁ, ଯେଉଁଥିରେ ବର୍ଣ୍ଣନାର ଭୂମିକା ଉଚିତରୁ ଅଧିକ ହେଲେ ବିପଦ । କାରଣ ଗଳ୍ପରେ ଗୋଟାଏ ଫୋକସ୍, ତେଣୁ ପ୍ରବାହକ୍ରମେ ଏକପ୍ରକାର ପରିଣତି, କ୍ଲାଇମାକସ୍-ଆଣ୍ଟିକ୍ଲାଇମାକସ୍‌ର ଆବିଷ୍କାର ରହିବା ଏକାନ୍ତ ଆବଶ୍ୟକ । ଏହେତୁ ବାହ୍ୟିକ ହେଉ ବା ଅନ୍ତରୀଣ, ଘଟଣାବିଶେଷ ରହିବା ଅନିବାର୍ଯ୍ୟ । ଯାହାକି ପାଣିକୁ ଚହଲେଇଦେବ, ପ୍ରବାହ କିଂବା ସେଥିର ଭ୍ରମ ସୃଷ୍ଟି କରିବ, ଏବଂ ବାଟ କଢ଼େଇ ନେବ କେଉଁ ଏକ ମୁହାଣକୁ । ବେଳେ ବେଳେ ଏହି ପ୍ରବାହ, vertical ଅର୍ଥାତ୍ ତରଂଗଧର୍ମୀ ହୋଇପାରେ, ସତେ ଆକାଶକୁ ଛୁଇଁଲା ପରି । କିନ୍ତୁ ଯେମିତି ହେଲେ ରହିବ ଏକ ଉଦ୍ଦେଶ୍ୟମୂଳକ ଗତିଶୀଳତା, ଯାହା ବିନା ସଫଳ ଗଳ୍ପଟିଏ ସମ୍ଭବ ନୁହେଁ ବୋଲି ମୋର ବିଶ୍ୱାସ । ତେଣୁ ମୁଁ ଭାବେ ଯେ ମୋର ତଥାକଥିତ ଘଟଣାବିହୀନ ଗଳ୍ପରେ ବାହ୍ୟିକ ଘଟଣାର ସଂଘାତ ଓ ଟେକ୍ନିକ ଚମକ ନଥିଲେ ମଧ୍ୟ ଆପାତତଃ ସାମାନ୍ୟ ବୋଲି ମନେ ହେଉଥିବା ପାରିବାରିକ, ସାମାଜିକ ଅଥବା ବ୍ୟକ୍ତିଗତ ଦିନଚର୍ଯ୍ୟାର କ୍ରମରେ ନାନା କଥା ଘଟେ । ତଥା ସ୍ମୃତିଗତ ଭାବନାରେ । ଯାହାକି ଉପରୋକ୍ତ ପ୍ରବାହ କିଂବା ତରଂଗ ସୃଷ୍ଟିକରେ ଓ ଗଳ୍ପକୁ ମୋର ବରାଦିଆ ପରିଣତି ଆଡକୁ ଟାଣି ନିଏ । ତା'ଛଡ଼ା ମୋର ଏକାଧିକ ଗଳ୍ପ ମଧ୍ୟ ରହିଛି, ଯାହାକୁ ପାରଂପରିକ ଅର୍ଥରେ ଘଟଣାମୂଳକ ବୋଲି କୁହାଯିବ ଯଥା 'ରାତି କୁକୁର', 'ଗୋଟିଏ ଲାଲ୍ ସଂଧ୍ୟା' ଇତ୍ୟାଦି ଏବଂ ଏଗୁଡିକ ବେଶ୍ ଲୋକପ୍ରିୟ ହୋଇପାରିଛି ବୋଲି ମୋର ବିଶ୍ୱାସ । କିନ୍ତୁ ସବୁଠାରୁ ଘାଣ୍ଟି ମନେ ହେଉଥିବା ଗଳ୍ପଟିଏ ନିଅନ୍ତୁ - ''ଲକ୍ଷ ବିହଂଗ'' । ଇଏ ହେଉଛି ନିଷ୍କ୍ରିୟତାର ଗୋଟିଏ କ୍ୟାନ୍‌ଭ୍ୟାସ୍, ଇଚ୍ଛାକୃତ । ତେଣୁ ତଥାକଥିତ ଘଟଣାର ପ୍ରଶ୍ନ ଉଠୁ ନାହିଁ । ତଥାପି ମିସେସ୍ ପୁରୀଙ୍କ ଭାବନାରେ ନାନା

ବୁଦ୍‌ବୁଦ ଫୁଟି ଉଠୁଛି, ସ୍ମୃତିର ତଥା ଉପସ୍ଥିତ ବର୍ତ୍ତମାନର ସାନସାନ ଘଟଣାକୁ ନେଇ, ଯଦ୍ୱାରା ମିସେସ୍ ପୁରୀଙ୍କର ବ୍ୟକ୍ତିତ୍ୱ ଏଭଳି ଏକ ଅବବୋଧର ଶୀର୍ଷରେ ପହଞ୍ଚିପାରିଛି ଯେଉଁଥିରେ ବିହଂଗମାନେ ମୁଗଧ । ଏବଂ ଲେଖକ ତା'ର ବକ୍ତବ୍ୟ ପୂରା କରିପାରିଛି ।

କେବଳ ଘଟଣାମୂଳକ ଗଳ୍ପ କାଳଜୟୀ ହୋଇପାରିଛି, ଏହା କେତେଦୂର ସତ ମୁଁ କହିପାରୁ ନାହିଁ । ତେବେ ଯଦିବା ତାହା ସତ ହୋଇଥାଏ, ଗୋଟିଏ କଥା ଭୁଲିଗଲେ ଚଳିବ ନାହିଁ ଯେ ଆଧୁନିକ ଗଳ୍ପ ସାହିତ୍ୟର ଇତିହାସରେ ଏଇ 'କାଳ' ମାତ୍ର ଯୋଡିଏ ତିନୋଟି ଶତାବ୍‌ଦୀର ଶିଶୁ । କିନ୍ତୁ ଯେଉଁମାନେ ପ୍ରଥମେ ସେଇ କଳା ଓ କାରିଗରୀର ମେଳ ସୃଷ୍ଟି କଲେ, ସେମାନେ ସହଜେ ପୁରାତନୀ କଥା କାହାଣୀର ଫ୍ରେମ୍‌କୁ ହିଁ ଆଶ୍ରା କଲେ ଓ ତା'ରି ଉପରେ ଆଧୁନିକ ଭାବନାର ବାସ୍ତବତାକୁ ଖଞ୍ଜିବାକୁ ଲାଗିଲେ। ତେଣୁ ଆଜି ବିଶ୍ୱ ଗଳ୍ପ ସାହିତ୍ୟର କର୍ଣ୍ଣଧାର ଯଥା ଓ. ହେନ୍‌ରୀ ମୋପାସାଁ ସେକୋଭ୍ ଆଦିଙ୍କ ଉତ୍‌କୃଷ୍ଟ ଗଳ୍ପଗୁଡ଼ିକ ଚିରସ୍ମରଣୀୟ ଅର୍ଥାତ୍ କାଳଜୟୀ ବୋଲି ମନେହେଉଛି । କିନ୍ତୁ କାଳକ୍ରମେ ଏଇ ଫ୍ରେମ୍ ଲୁଚିଲୁଚି ଯାଉଛି ଏବଂ ଚିନ୍ତାଚେତନାର ସୌନ୍ଦର୍ଯ୍ୟ ଓ ସାରବତ୍ତା ହିଁ ଆମକୁ ଉତ୍ତରୋତ୍ତର ଆନନ୍ଦ ଆଣି ଦେଉଛି ବୋଲି କହିଲେ ଭୁଲ୍ ହେବ କି ? ଏବଂ ଭବିଷ୍ୟତରେ ଭିର୍ଜିନିଆ ଉଲ୍‌ଫ୍ ବା ଉଇଲିୟମ୍ ସାରୋୟାନ୍‌ଙ୍କ ତଥାକଥିତ ଘଟଣାବିହୀନ ଗଳ୍ପ କାଳଜୟୀ ହେବନାହିଁ ବୋଲି କିଏ କହିଁବ ? କିଂବା ଗୋପୀନାଥ ମହାନ୍ତିଙ୍କ 'ପାହାଡ଼' ଯାହା ଗୋଟିଏ ପାହାଡ଼ ପରି ସ୍ଥାଣୁ, ହେଲେ ଭାବନାର ଛାଇଆଲୁଅରେ ନିତ୍ୟ ନବୀକୃତ ଚରିତ୍ରର ବର୍ଣ୍ଣନା ? ତା'ଛଡା କାଳ କାହାକୁ କେତେବେଳେ ଉଠେଇଦିଏ ବା ପକେଇଦିଏ ତାର ଯଥେଷ୍ଟ ଉଦାହରଣ କ'ଣ ନାହିଁ ସାହିତ୍ୟର ଇତିହାସରେ ?

ପ୍ରଶ୍ନ (୬) :- ଗଳ୍ପଛଡା କବିତା, ପ୍ରବନ୍ଧ ଓ ବର୍ତ୍ତମାନ ଭ୍ରମଣ ବୃତ୍ତାନ୍ତ ଲେଖିବା ପାଇଁ ଆପଣ ଆଗଭର । ଏହା ଅବଲୀଳା କ୍ରମେ ଘଟୁଛି ନା ଆପଣ 'ଛପା-, ବର୍ତ୍ତମାନରେ ରହିବା ପାଇଁ, ଅଥବା ଆପଣଙ୍କ ଚିନ୍ତାରୁ ଗଳ୍ପଗତ ପ୍ରବଣତା ଅନ୍ତର ହୋଇଗଲାଣି ବୋଲି ସାହିତ୍ୟର ଅନ୍ୟ ବିଭାଗ ଉପରେ ପ୍ରୟାସ କରୁଛନ୍ତି ?

ଉତ୍ତର :- ମୋର ସାହିତ୍ୟକୃତି କବିତାକୁ ନେଇ ଆରମ୍ଭ । ଏବଂ ପ୍ରଥମେ ପ୍ରଥମେ ମୁଁ ଅନେକ କବିତା ଲେଖିଛି । ମଝିରେ ମଝିରେ ମଧ୍ୟ ଲେଖିଛି ଓଡ଼ିଆରେ ତଥା ଇଂରେଜୀରେ, ଯେତେବେଳେ ମୁଁ ମୋ ଗଳ୍ପଲେଖାର ନିରପେକ୍ଷ ଭଗବାନ ପଣିଆରୁ ମୁକୁଳି ଯାଇ ମୋର ବୈକ୍ତିକ ଆବେଗକୁ ଅଜାଡି ଦେବାକୁ ଚାହିଁଛି, କେଉଁ ଏକ ଅନୁଭବର ସଂଘାତରେ । ସେହେତୁ ମୋର କବିତାଗୁଡ଼ିକ ପ୍ରାୟଶଃ ଲିରିକ୍‌ଧର୍ମୀ । କିନ୍ତୁ ପ୍ରବନ୍ଧ ଲେଖାର ପ୍ରବଣତା ଭିନ୍ନ । ଅନେକ ସୃଜନମୂଳକ ଲେଖାଲେଖି ସରିଲା ପରେ ଏବଂ ଭାରୀ ବୟସର ଅଭିଜ୍ଞତାକୁ ମୋ ଗଳ୍ପ ବୋଧେ କୁଳେଇବ ନାହିଁ, ଏହି ଭାବରେ ମୋର ଇଚ୍ଛା ହୋଇଛି ସିଧାସଳଖ ନାନା

କଥା କହିବାକୁ, ଏଇ କେତେ ବର୍ଷ ହେଲା । ଜୀବନ ବିଷୟରେ, ସାହିତ୍ୟ ବିଷୟରେ ଇତ୍ୟାଦି । ଭ୍ରମଣ କାହାଣୀ ଲେଖିବା ଗୋଟାଏ ନୂଆ ସଉକ୍ ଏବଂ ଉପନ୍ୟାସ ? ଆଶା ଅଛି ଉପନ୍ୟାସ ଖଣ୍ଡେ ଦି'ଖଣ୍ଡ ଲେଖିବି, ଲେଖାଲେଖି ଛାଡିବା ପୂର୍ବରୁ । କିନ୍ତୁ ଏହି ପ୍ରକାର ପ୍ରବଣତା ବା ଉଦ୍ୟମର ଅର୍ଥ ନୁହେଁ ଯେ ଗଳ୍ପଲେଖା ଚିଟା ଲାଗିଲାଣି । ଗଳ୍ପଗତ ପ୍ରବଣତା ଅନ୍ତର ହୋଇଯାଇନାହିଁ, ଖାଲି ଅନୁମତି ନେଇଛି ଟିକିଏ ଅନ୍ୟ ଆଡେ ବୁଲିଆସିବା ପାଇଁ । ଯାହାକୁ ବିରାମ କୁହାଯିବ, ବ୍ୟତିକ୍ରମ ନୁହେଁ, ନିବୃତ୍ତି ଦୂରର କଥା ।

ପ୍ରଶ୍ନ (୭) :- କିଛିଦିନ ତଳେ ଗଠିତ ହୋଇଥିବା 'ସାଂପ୍ରତିକ' ସାହିତ୍ୟ ଅନୁଷ୍ଠାନର ଆପଣ ଜଣେ ଆଗୁସାର ସଂଗଠନ ଥିଲେ । ବର୍ତ୍ତମାନ ଅବସର ପରେ ଆପଣଙ୍କ ହାତରେ ଆପାତତଃ କିଛି ଅଧିକ ସମୟ ଥିବା ଦୃଷ୍ଟିରୁ ଆପଣ ଏହାର ପୂର୍ବଘୋଷିତ ଲକ୍ଷ୍ୟଗୁଡ଼ିକ ପାଇଁ ଅଧିକ କାମ କରିପାରନ୍ତେ । କିନ୍ତୁ ସେପ୍ରତି ଆପଣ ଆଉ ପୂର୍ବବତ୍ ସଂଶ୍ଳିଷ୍ଟ ନ ରହିବାର କାରଣ କଣ ?

ଉତ୍ତର :- 'ସାଂପ୍ରତିକ' ସାହିତ୍ୟ ଅନୁଷ୍ଠାନ ତାର ଲକ୍ଷ୍ୟ ପୂରଣ କରିବାରେ ସମର୍ଥ ହୋଇପାରିନାହିଁ । ସାଂଗଠନିକ ଦୁର୍ବଳତା ଏହି ବିଫଳତାର କାରଣ । ଏବଂ ଏଥିପାଇଁ ମୋତେ ମଧ୍ୟ ଦାୟୀ କରିବା ଉଚିତ୍, ସଭାପତି ହିସାବରେ । ଏଣିକି ଆଉ କିଛି ପଚାରନ୍ତୁ ନାହିଁ । ସଭାପତି ହୋଇ ସାଂଗଠନିକ ଦୋଷ ଦୁର୍ବଳତାକୁ ଚିହ୍ନେଇ ଦେବା ନୀତିବିରୁଦ୍ଧ ନୁହେଁ କି ?

ପ୍ରଶ୍ନ (୮) :- ଗଳ୍ପ ସଂକଳନଟିଏ ବାହାର କରିବା ପାଇଁ ଆପଣ ପ୍ରକାଶକଙ୍କ ଦ୍ୱାରସ୍ଥ ହୁଅନ୍ତି ନା ପ୍ରକାଶକ ଆପଣଙ୍କ ଠାରୁ ଆଗ୍ରହ କରି ଆସି ମାଗି ନିଅନ୍ତି ?

ଉତ୍ତର :- ନା, ମୋତେ ପ୍ରକାଶକମାନଙ୍କ 'ଦ୍ୱାରସ୍ଥ' ହେବାକୁ ପଡିନାହିଁ । ଯଦିଓ ପ୍ରସ୍ତାବ ବେଳେବେଳେ ମୋ ଆଡୁ ଆସିଛି ଓ ବେଳେବେଳେ ତାଙ୍କ ଆଡୁ ।

ପ୍ରଶ୍ନ (୯) :- ସାହିତ୍ୟ ଲେଖାରୁ ଆପଣ ପାରିଶ୍ରମିକ ପାଆନ୍ତି କି ? ଯଦି ପାଆନ୍ତି, ଆପଣ କ'ଣ ସେଥିରେ ସଂତୁଷ୍ଟ ?

ଉତ୍ତର :- ପାରିଶ୍ରମିକ ପାଏ । ମୋ ଭଳି ଅନ୍ୟ ଲେଖକମାନେ ଯେଉଁ ଅନୁପାତରେ ପାଆନ୍ତି, ମୁଁ ମଧ୍ୟ ସେହି ଅନୁପାତରେ ପାଏ । ସେହି ଦୃଷ୍ଟିରୁ ମୋର ଅସନ୍ତୁଷ୍ଟ ହେବାର କାରଣ ନାହିଁ । ତେବେ ମୋର ଗୋଟିଏ ଗଳ୍ପ ଇଂରାଜୀ ପତ୍ରପତ୍ରିକାରେ ଛପା ହେଲେ ମୁଁ ଯାହା ପାଏ, ଗୋଟିଏ ଓଡିଆ ଗଳ୍ପସଂକଳନର ବାର୍ଷିକ ରୟାଲଟି ମଧ୍ୟ, ବେଳେବେଳେ ସେତିକ ହୁଏନାହିଁ । ଓଡିଆ ସାହିତ୍ୟର ପ୍ରସାର ଦୃଷ୍ଟିରୁ ଏହି ତାରତମ୍ୟ ଭାବିବାର ବିଷୟ ।

ପ୍ରଶ୍ନ (୧୦) :- ଓଡ଼ିଶାର କେଉଁ ଚରିତ୍ର ବା କେଉଁ ଲେଖା ବା କେଉଁ ସ୍ଥାନ ବା କେଉଁ ଘଟଣା ଆପଣଙ୍କର ସାହିତ୍ୟକ ସ୍ୱକୀୟତାକୁ ବିମଥିତ କରି ପ୍ରଭାବ ପକାଇଛି ?

ଉତ୍ତର :- ସ୍ଥାନ ହିସାବରେ ମୋର ଏଇ ପୁରାତନ ଜନାକୀର୍ଣ୍ଣ ଛୋଟ ସହର କଟକ, ତା'ର ଗଳି ନାଳନର୍ଦ୍ଦମା, ତା'ର ପୃଷ୍ଠଭୂମିରେ ଘଟୁଥିବା ନାନା ଘଟଣା ଏବଂ ସେସବୁକୁ ନେଇ ଆତଯାତ ହେଉଥିବା ନାନା ଚରିତ୍ର ମୋ ଗଳ୍ପର ଖୋରାକ୍ ଯୋଗାଇ ପାରିଛି । ଏଣେ ବି.ଏ ପାଠ ପଢ଼ା ପରେ ମୋର ଉଚ୍ଚ ଶିକ୍ଷା ତଥା କର୍ମଜୀବନ ପ୍ରାୟ ଓଡ଼ିଶା ବାହାରେ କଟିଛି । ବଡ଼ ସହରରେ । ପୁଣି କେତୋଟି ବର୍ଷ ବିଦେଶରେ । ସେହେତୁ ତୁଳନାତ୍ମକ ଅନୁଭୂତିକୁ ନେଇ ମୋର ଏଇ ଅତି-ଆତ୍ମୀୟ ଘରର ପରିବେଶ ଓ ଆବ୍‌ହାଓ୍ୱା ମୋତେ ଉଚିତରୁ ଅଧିକ କଷ୍ଟ ଦେଇଛି । ପ୍ରେମ-ଘୃଣା ସଂପର୍କ, love-hate relationshipର ଏଇ ଦ୍ୱୈତ୍ୟ ମୋର ଏକାଧିକ ଗଳ୍ପ ଓ କବିତାରେ ଦେଖିବାକୁ ପାଇବେ । ତେବେ କଟକ ସହର ନାମକ ଏଇ ଚରିତ୍ର ଓ ତା' ସହିତ ମୋର ସଂପର୍କକୁ ଛାଡ଼ିଦେଲେ ଓଡ଼ିଶାର ଅନ୍ୟ କୌଣସି ଏକ ବିଶିଷ୍ଟ ଚରିତ୍ର ବା ଘଟଣା ମୋର ସାହିତ୍ୟକ ସ୍ୱକୀୟତାକୁ ବିମଥିତ କରିଛି ବୋଲି ମୋର ମନେ ହେଉ ନାହିଁ । ଜଗନ୍ନାଥ ଦେଶର ବିଶିଷ୍ଟ ସାଂସ୍କୃତିକ ଚେତନା ଅବଶ୍ୟ ମୋତେ ପ୍ରଭାବିତ କରିଛି । କିନ୍ତୁ ବିମଥିତ ହେବା ଏକ ଭିନ୍ନ ଅନୁଭବ । ପ୍ରତ୍ୟକ୍ଷ ଓ ତୀବ୍ର । ତା' ସହିତ ଓଡ଼ିଶାର କେଉଁ ଚରିତ୍ର ଇତ୍ୟାଦିକୁ ଯୋଡି ପାରିବି କି ନାହିଁ, ସେ ବିଷୟରେ ମୋର ସ୍ମୃତି ନୀରବ ।

ପ୍ରଶ୍ନ (୧୧) :- ଆପଣ ମୋତେ କିଛି ନେବାକୁ ଚାହୁଁଛନ୍ତି କି ? କିଂବା ଆପଣ ସାହିତ୍ୟ ସଂପର୍କିତ କୌଣସି ମୁଁ ପଚାରି ନଥିବା ସ୍ୱୀକାରୋକ୍ତି କରିବାକୁ ଚାହୁଁଛନ୍ତି କି ?

ଉତ୍ତର :- ମୋର ବିଶେଷତଃ ଗୋଟିଏ ପ୍ରଶ୍ନ ପଚାରିବାକୁ ମନ ହୁଏ ମୋର ପାଠକ ଓ ସମାଲୋଚକମାନଙ୍କୁ । ଧରିନେଉଛି ଯେ ଆପଣ ମୋର ସବୁ ଗଳ୍ପ ପଢ଼ି ନଥିଲେ ମଧ୍ୟ ଅନେକ କିଛି ପଢ଼ିଛନ୍ତି ସେବେଠୁଁ ଆଜିଯାଏଁ, ପ୍ରାୟ ଚାଳିଶ ବର୍ଷର ପ୍ରକାଶିତ ଗଳ୍ପ । ତା'ହେଲେ ଦୟାକରି କହିପାରିବେ କି ଯେ ବୟସ ଓ ଅଭିଜ୍ଞତା ବଢ଼ିବା ସଂଗେ ସଂଗେ ମୋ ଗଳ୍ପର ଭାଷା, ଭାବ, ଗଢ଼ଣ, ବିଶେଷତଃ ସେଥିରେ ଥିବା ବକ୍ତବ୍ୟ ଏବଂ ବ୍ୟକ୍ତବ୍ୟରେ ନିହିତ ଜୀବନ ଦର୍ଶନ କେତେଦୂର ବଦଳିଛି ? ଏବଂ ଯଦି ବଦଳିଥାଏ । (ମୋ ନିଜ ମତରେ ମୁଁ ଅବଶ୍ୟ ବଦଳିଛି) ତାକୁ ଉନ୍ନତି ନା ଅବନତି କୁହାଯିବ ? ଯଥା, ସେବେଳର 'ଭଙ୍ଗା ଖେଳଣା' ଓ ଏବେକାର 'ଛକଡ଼ିର ଶ୍ରୀକୃଷ୍ଣ' ମଧ୍ୟରେ କେଉଁଟି ଅଧିକ ସୁନ୍ଦର ବୋଲି ମନେହୁଏ ଓ କାହିଁକି ? ମୋର ଏହି ପ୍ରଶ୍ନର ଠିକଣା ଉତ୍ତର ମୁଁ ଆଜିଯାଏ ପାଇଲି ନାହିଁ । ଅପରନ୍ତୁ ଦୁଃଖର ବିଷୟ ଯେ ଅନେକ ମୋର କେତୋଟି ପୁରୁଣା ଗଳ୍ପର ସିଦ୍ଧିକୁ ନେଇ ମୋତେ ଗୋଟିଏ ନିର୍ଦ୍ଦିଷ୍ଟ ଥାକରେ ଥୋଇ ନେଇଛନ୍ତି, ଏବଂ ସେଠାରୁ ମୋତେ ଉଦ୍ଧାର କରିବାକୁ ନାରାଜ । ଏହି ଦୁରବସ୍ଥାରୁ ମୋତେ ମୁକୁଳେଇ ପାରିବେ କି ?

ପ୍ରଶ୍ନ (୧୨) :- ଆପଣଙ୍କର ପ୍ରିୟ ବସ୍ତୁ କ'ଣ ? ଆପଣଙ୍କୁ କ'ଣ ବ୍ୟଥିତ କରେ ?

ଉତ୍ତର :- ମୋର ପ୍ରିୟବସ୍ତୁ ତ ଅନେକ । ତାର ଇସ୍ତାହାର ଦେଇ ଲାଭ ନାହିଁ । ତେବେ ଆଜିକାଲି ଶିଶୁର ହସ ବୋଧ ହୁଏ ମୋତେ ସବୁଠାରୁ ବେଶି ଆନନ୍ଦ ଦିଏ ।

ମୋତେ ସବୁଠାରୁ ବ୍ୟଥିତ କରେ ଜାଣିଶୁଣି ନିଜକୁ ଠକେଇବାର ମନବୃତ୍ତି । ଅଜାଣତରେ ତ ଆମେ ସମସ୍ତେ ନିଜକୁ ଠକେଇଥାଉ, ଅଳ୍ପବହୁତ । କିନ୍ତୁ ସ୍ୱାର୍ଥସୁଖ ପାଇଁ କିଂବା ଯେକୌଣସି ଉଦ୍ଦେଶ୍ୟର ପୂର୍ତ୍ତିପାଇଁ ଜାଣିଶୁଣି ନିଜକୁ ଠକେଇବାର ଢଂଗ ମୁଁ ଆଦୌ ସହିପାରେ ନାହିଁ । କିନ୍ତୁ କିଛି ନ କରି ପାଇବାରୁ ବ୍ୟଥିତ ହୁଏ ।

ପ୍ରଶ୍ନ (୧୩) :- ଏବେ ଆପଣ ଆଉ କଣ ସବୁ ଲେଖିବାରେ ଯୋଜନା କରିଛନ୍ତି ?

ଉତ୍ତର :- କୌଣସି ନିର୍ଦ୍ଦିଷ୍ଟ ଓ ବିଧିବଦ୍ଧ ଯୋଜନା ନାହିଁ । ତେବେ ମୋର ଇଚ୍ଛା ଅଛି ଯେ ଆହୁରି କିଛି ଗଳ୍ପ, ପ୍ରବନ୍ଧ, ହୁଏତ କବିତାର ବହି ଲେଖିବା ଛଡା ଖଣ୍ଡେ ଦି'ଖଣ୍ଡ ଉପନ୍ୟାସ ମଧ୍ୟ ଲେଖିବି । ଦେଖିବା କଣ ହେଉଛି । ବର୍ତ୍ତମାନ ଅନେକଗୁଡ଼ିଏ ବହି ପ୍ରକାଶ ଅପେକ୍ଷାରେ ରହିଛି । ସେଗୁଡିକ ହେଲା :

୧. କଥା ସାହିତ୍ୟର କଳା ଓ କାରିଗରି - ସାହିତ୍ୟ ସଂଦର୍ଭ
୨. ନିଜସଂଜ - ତ୍ରୟୋଦଶ ଗଳ୍ପ ସଂକଳନ
୩. ଲେଖକର ଦୁଃଖ - ଦ୍ୱିତୀୟ ପ୍ରବନ୍ଧ ସଂକଳନ
୪. ତିରିଶ ବର୍ଷର ଗଳ୍ପ ଓ ଆଳାପ - ଗ୍ରନ୍ଥାବଳୀର ଦ୍ୱିତୀୟ ଖଣ୍ଡ
୫. Being an Indian Writer - ଇଂରାଜୀ ପ୍ରବନ୍ଧ ସଂକଳନ

ଏହା ଛଡା ଯଥାକ୍ରମେ ପ୍ରକାଶିତ ହେବାର ଅଛି :

୧. ଚେନାଏ ପୃଥିବୀ, ଚିରୁଡାଏ ଘର - ଭ୍ରମାତ୍ମକ ପ୍ରବନ୍ଧ ସଂକଳନ
୨. Midnight Moon and Other Stories - ତୃତୀୟ ଇଂରାଜି ଗଳ୍ପର ସଂକଳନ ।

## ତୃତୀୟ ପର୍ଯ୍ୟାୟ

ପ୍ରଶ୍ନ କର୍ତ୍ତା - **ଡକ୍ଟର ବିଜୟ କୁମାର ଶତପଥୀ**

ପ୍ରଶ୍ନ (୧) :- ଆପଣ ଗଳ୍ପ ସୃଷ୍ଟି ପାଇଁ କେଉଁଠୁ ପ୍ରେରଣା ପାଇଥିଲେ ? ଆପଣ ନିଜକୁ ବ୍ୟକ୍ତ କରିବାପାଇଁ ଏହିପରି ଏକ ମାଧ୍ୟମକୁ ବାଛି ନେବାରେ କୌଣସି ବିଶେଷ କାରଣ ଅଛି କି ?

ଉତ୍ତର :- ଗଳ୍ପ ଲେଖିବା ପାଇଁ କୌଣସି ବ୍ୟକ୍ତିବିଶେଷଙ୍କ ଠାରୁ ପ୍ରେରଣା ପାଇଛି ବୋଲି କହି ପାରିବି ନାହିଁ । ସର୍ବ ପ୍ରଥମେ ନିଜକୁ ବ୍ୟକ୍ତ କରିଥିଲି କବିତାରେ, ପ୍ରାୟ ଦଶବାର ବର୍ଷ ବୟସରେ । ପରେ ଯେତେବେଳେ ଲିଖିତ ଶବ୍ଦ ଜରିଆରେ ଅନେକ କିଛି କହିବାକୁ ମନେ ହେଲା, କେବଳ ନିଜର ସାମୟିକ ଆବେଗ ଅଥବା ଭାବନାକୁ ନେଇ ନୁହେଁ, ସଂପର୍କ ଓ ସମାଜର ସଂସାରକୁ ନେଇ ଏବଂ ସେଥିର କିଛି ଗୋଟାଏ ନୂଆ ଓ ବିଚିତ୍ର କଥା ଶୁଣାଇଲା

ପରି, ସେତେବେଳେ ମୋର ମନେହେଲା ଯେ କବିତାର ଅନୁଶାସନ ମୋ 'ବକ୍ତବ୍ୟକୁ' କୁଳେଇବ ନାହିଁ । ଯଥା ମୋର ଗୋଟିଏ ଅତି ପୁରୁଣା ଗଳ୍ପରେ (ବୋଧ ହୁଏ ସେଇ ହେଉଛି ମୋର ପହିଲି ପ୍ରକାଶିତ ଗଳ୍ପ, ତା ନାଆଁ 'ପରଦା ତଳେ') ମୁଁ କହିବାକୁ ଚାହିଁଲି ଯେ ପରଦା ଉପରେ ଫୁଟି ଉଠୁଥିବା ଯେଉଁପ୍ରକାର ଚରିତ୍ର ର ଦୁଃଖକଷ୍ଟ ଆମ ମନକୁ ଚହଲେଇଦିଏ, ପରଦା ତଳେ, ଅର୍ଥାତ୍ ବାସ୍ତବ ସଂସାରର ଘରେଘରେ ରାସ୍ତାଘାଟରେ ତାର ନୁଖୁରା ସର୍ବସାଧାରଣ ଚେହେରା ଆମ ମନକୁ ଛୁଇଁ ପାରେନାହିଁ । ସେଥିପାଇଁ ସ୍ୱାର୍ଥରକ୍ଷାର ପ୍ରବୃତ୍ତି ଅଥବା କଳାର ସମ୍ମୋହନୀୟ ଗୁଣ କାହାକୁ ଧନ୍ୟବାଦ ଦେବ ସେକଥା ଭିନ୍ନ । ଏଭଳି ଏକ ବକ୍ତବ୍ୟକୁ କବିତାରେ ପ୍ରକାଶ କରିଥାଆନ୍ତି କେମିତି ?

ତେବେ କ୍ରମଶଃ ଗଳ୍ପଲେଖା କବିତାଲେଖାରୁ ଆଗେଇଗଲା, ତାର କାରଣ ବୋଧହୁଏ ଏଇ ଯେ ମୋ ଗଳ୍ପ ପ୍ରଥମେ ଏବଂ ବିଶେଷଭାବରେ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କଲା ।

ପ୍ରଶ୍ନ (୨) :- ସାହିତ୍ୟ ସୃଷ୍ଟି ପାଇଁ କୌଣସି ଦୈବୀ ପ୍ରେରଣାକୁ ଆପଣ ସ୍ୱୀକାର କରନ୍ତି କି ?

ଉତ୍ତର :- ଦୈବୀ ପ୍ରେରଣା କଥା ଭଗବାନ୍ ଜାଣନ୍ତି, ତେବେ ମୋର ବିଶ୍ୱାସ ଯେ ଲେଖକର ଅନୁଭବ ଓ ଚିନ୍ତା ତାକୁ ଗୋଟିଏ କାରୁକାର୍ଯ୍ୟବିଶିଷ୍ଟ ମନ୍ଦିର ତଥା ତାର ଅଧିଷ୍ଠାତ୍ରୀ ଦେବତାଙ୍କ ପରିକଳ୍ପନା ଆଣିଦିଏ । କିନ୍ତୁ ଦିଅଁଙ୍କ ଥାପନା ସଂଭବ ହୁଏ ଯେତେବେଳେ ମନର ଗହୀରରୁ, ଅବା ସତେ କେଉଁ ମହୋଦଧିର ସେପାରିରୁ ବିଗ୍ରହଟିଏ ତା' ହାତରେ ଆସି ଧରାଦିଏ । ଆରେ କେଉଁଠି ଆସିଲା ଏହି ମୌଳିକ ନୂଆ କଥାଟିଏ ? ତାହା ଚରିତ୍ର ହେଉ ବା ଘଟଣା ବା କ୍ଲାଇମାକସ୍‌ର ଶେଷକଥା । ଭାବେ, ଇଏ ଥିଲା ମୋ ଅନୁଭବରେ ନା ଚିନ୍ତାରେ ? କାହିଁ, ମୋର ମନେପଡୁ ନାହିଁ ତ ? ଯାହାହେଉ ମୁଁ ଖୁସିଟାଏ ହୁଏ ଯେ ଏହି ହେଉଛି ମୋ ଗପର ମଂଜି, ମାନେ ଯାରି ଯୋଗୁଁ ମୋ ଗଳ୍ପ ସଫଳ ହେବ ବୋଲି ମନେ ହେଉଛି । ସଫଳ ହୁଏ ମଧ୍ୟ, ଅଧିକାଂଶ କ୍ଷେତ୍ରରେ । ଏହି ପ୍ରକାର ଅପ୍ରତ୍ୟାଶିତ ଅବଦାନକୁ ଦୈବୀ ପ୍ରେରଣା କହିପାର ଅବା ଅବଚେତନର କାଉଁରୀ କାଠି । E.M. Forster ମଧ୍ୟ ଏହିପ୍ରକାର ବିସ୍ମୟକୁ ସ୍ୱୀକାର କରି କହିଛନ୍ତି - "In the creative state a man is taken out of himself. He lets down, as it were, a bucket into his subconscious, and draws up something which is normally beyond his reach. He mixes the thing with his normal experience and out of the mixture he makes a work of art". ସେ କୁହନ୍ତି ଯେ କେଉଁ ପଣ୍ଡିତ ସମୀକ୍ଷକ ତାର ଭେଦ ପାଇ ତାର ସମୀକ୍ଷା କରିପାରିବ ନାହିଁ । ଏବଂ ମୁଁ ତାଙ୍କ ସହିତ ଏକମତ ।

ପ୍ରଶ୍ନ (୩) :- କେତେକ ପାଠକ ଓ ସମାଲୋଚକ ଅଭିଯୋଗ କରନ୍ତି ଯେ ଅଭିଜାତ ଗୋଷ୍ଠୀ ଓ ବୁଦ୍ଧିଜୀବିମାନଙ୍କର ଜଟିଳ ତଥା ସୂକ୍ଷ୍ମ ମନସ୍ତତ୍ତ୍ୱ ଉପରେ ଆପଣଙ୍କ ଗଳ୍ପଗୁଡିକ ଗଢ଼ିଉଠିଛି - ଏ ସଂପର୍କରେ ଆପଣଙ୍କର ବକ୍ତବ୍ୟ କଣ ?

ଉତ୍ତର :- ଅଭିଯୋଗଟି ଆଂଶିକ ସତ୍ୟ । ମୁଁ କେବଳ ଅଭିଜାତ ଗୋଷ୍ଠୀ ଓ ବୁଦ୍ଧିଜୀବିମାନଙ୍କୁ ନେଇ ମୋ ଗଳ୍ପଗୁଡିକୁ ଲେଖି ନାହିଁ । ମଧ୍ୟବିତ୍ତ ସଂସାରର ପ୍ରଶସ୍ତ ସରଣୀରେ ବାଟ ଚାଲୁଥିବା କଲମପେଷା ଦୁଃସ୍ଥ କିରାଣୀଟିଏ ଠାରୁ ଆରମ୍ଭ କରି ଧଳା ରେଫ୍ରିଜିରେଟର୍ ଉପରେ ମାଛିକୁ ଅନେଇ ଅନେଇ ଶୋଇ ପଡୁଥିବା ମିସେସ୍ ପୁରୀ ଆଦି ବିଭିନ୍ନ ବର୍ଗର ଲୋକେ ମୋ ଗଳ୍ପରେ ଅଛନ୍ତି । ନାହାନ୍ତି ମାନେ କଥକ-ନାୟକ ବା ମୁଖ୍ୟ ଚରିତ୍ର ହିସାବରେ ନାହାଁନ୍ତି, ଅତି-ବଡଲୋକ ସଂପ୍ରଦାୟ ଏବଂ ସମାଜର ସର୍ବନିମ୍ନ ଶ୍ରେଣୀର ଲୋକେ ଯଦିଓ ମୁଁ ତାଙ୍କ ବିଷୟରେ ଲେଖିଛି ଏବଂ ଅନେକ କ୍ଷେତ୍ରରେ ସେଇମାନେ ହିଁ ନାୟକର ଚରିତ୍ରକୁ ଏକ ଅପ୍ରତ୍ୟାଶିତ ଝଲକରେ ଚିହ୍ନେଇ ଦେଇଛନ୍ତି । କେତେକ ଗଳ୍ପରେ ଲେଖକର ବକ୍ତବ୍ୟ ମଧ୍ୟ ସେଇମାନଙ୍କୁ ନେଇ, ନାୟକ ଲେଖକର ହାତ ବାରିସି ଛଡା ଆଉ କିଛି ନୁହେଁ । ଯଥା ମୋର 'ଟନେଲ୍' ଗପରେ ଆସାମର ପାହାଡ଼ ଜଙ୍ଗଲରେ ଟନେଲ୍ ଖୋଳୁଥିବା ଓଡିଆ ଶ୍ରମିକଙ୍କ ଦଳ । ହେଲେ ମୁଁ ସେମାନଙ୍କୁ ମୋର ମୁଖ୍ୟ ଚରିତ୍ର କରିପାରି ନାହିଁ, କାରଣ ମୋର ଭୟ ହୋଇଛି ଯେ ହୁଏତ ମୁଁ ତାଙ୍କ ମନ ଭିତରେ ପଶିପାରିବି ନାହିଁ, ତାଙ୍କ ପ୍ରତି ମୋର ଯଥେଷ୍ଟ ସହାନୁଭୂତି (sympathy) କିଂବା ବିଦ୍ୱେଷ (antipathy) ଥିଲେ ଆଉ ପଛେ ଅନ୍ତରଂଗ ସହ-ଅନୁଭୂତି (empathy) ଆସୁନାହିଁ, ତେଣୁ ହୁଏତ ମୋ ଗପ ରୋମାଣ୍ଟିକ୍ ଭାବପ୍ରବଣତା ମହାନୁଭବତା ଇତ୍ୟାଦି ଦୋଷରେ ଦୂଷିତ ହେବ, କୃତ୍ରିମ ହୋଇପଡ଼ିବ । ଏବଂ ମୋର ଭୟକୁ ମୁଁ ମିଛବାଘ ବୋଲି କହିପାରିବି ନାହିଁ, କାରଣ ମୁଁ ସମସାମୟିକ ଅନେକ ଗଳ୍ପରେ ଏଭଳି କୃତ୍ରିମତା ଦେଖିବାକୁ ପାଇଛି, ଯାହାକୁ ପଢ଼ିଲେ ଦୁଃଖ ଲାଗେ ।

ପ୍ରଶ୍ନ (୪) :- ମନସ୍ତତ୍ତ୍ୱର ଜଟିଳ ଚିତ୍ର ପରିବେଷଣ ଦ୍ୱାରା ଓ ଗାଳ୍ପିକ ତାର ଦୃଷ୍ଟିକୋଣକୁ ଏହା ଉପରେ କେନ୍ଦ୍ରୀଭୂତ କରିବା ଦ୍ୱାରା ଗଳ୍ପର ଆବେଦନ ଉପରେ ଏହାର କୌଣସି ପ୍ରଭାବ ପଡେ କି ?

ଉତ୍ତର :- ନା । ମୁଁ ଯାହା କହିଛି ଡକ୍ଟର ଅପର୍ଣ୍ଣା ମହାନ୍ତିଙ୍କ ଗୋଟିଏ ପ୍ରଶ୍ନର ଉତ୍ତରରେ- ଯେ ମନୋବୈଜ୍ଞାନିକ ବିଶ୍ଳେଷଣ ମୋର ନିଜସ୍ୱ ମାଧ୍ୟମ ହୋଇପାରେ, କିନ୍ତୁ ତାହା ଲେଖକୀୟ ବକ୍ତବ୍ୟର ଅନ୍ୟତମ ମାଧ୍ୟମ ଛଡା ଆଉ କିଛି ନୁହେଁ । ପ୍ରତି ସଫଳ ଗଳ୍ପରେ ଅବଶ୍ୟ ରହିଥିବ କିଛି ଗୋଟିଏ ସମସ୍ୟା ନିର୍ଦ୍ଦିଷ୍ଟ ଘଟଣା ଓ ଚରିତ୍ରକୁ ନେଇ, ସେଥିରୁ ଉପୁଜେଇବା ଅନୁଭବ ଓ ଚିନ୍ତା, ଶେଷକୁ କିଛି ଗୋଟିଏ ବକ୍ତବ୍ୟ । ଏବଂ ବକ୍ତବ୍ୟଟି ଯେତେ ସୂଚନାତ୍ମକ,

ଜଟିଳ ଓ ବହୁମୁଖୀ ହେଉ ନା କାହିଁକି, ତାହାହିଁ ଲେଖକ ତଥା ପାଠକର ଆବିଷ୍କାର ଏବଂ ସଂତୋଷ । ଏଦିଗରେ ମୋର ଦୁଃଖ ନାହିଁ ସିନା, ପାଠକ ମାନେ ହିଁ ବିଚାର କରିବେ ମୁଁ କେତେଦୂର ସଫଳ ହୋଇପାରିଛି ।

ପ୍ରଶ୍ନ (୫) :- ଫକୀରମୋହନଙ୍କ ପରଠାରୁ ବର୍ତ୍ତମାନ ଯାଏଁ ଓଡିଆ ଗଳ୍ପ ବୈଶିଷ୍ଟ୍ୟ ଦୃଷ୍ଟିରୁ କିପରି ସମୃଦ୍ଧ ହୋଇଛି ବୋଲି ଆପଣ ଭାବୁଛନ୍ତି ?

ଉତ୍ତର :- ଫକୀରମୋହନଙ୍କ ପରେ ଓଡିଆ ଗଳ୍ପ ଅନେକ ଦିନ ଯାଏ ଧୀମେଇ ଯାଇଥିଲା, ଉଦ୍ଦେଶ୍ୟମୂଳକ ଅଥବା ଭାବପ୍ରବଣ ହୋଇ ବାସ୍ତବତାଠାରୁ ଦୂରରେ ଯାଇଥିଲା ବୋଲି ମୋର ମନେ ହୁଏ । କିନ୍ତୁ ସ୍ୱାଧିନତା ପରେ ଏହାର ଅଗ୍ରଗତି ମୋଟାମୋଟି ସଂତୋଷଜନକ ବୋଲି ମୋର ଧାରଣା । ତେବେ 'ବୈଶିଷ୍ଟ୍ୟକୁ' ଖୋଜି ବସିଲେ ଓଡିଆ ଗଳ୍ପସାହିତ୍ୟ ଯେ ପଡ଼ୋଶୀ ପ୍ରାନ୍ତର ସାହିତ୍ୟଠାରୁ, ଏପରିକି ଆଧୁନିକ ପୃଥିବୀର ସାହିତ୍ୟଠାରୁ, ମୌଳିକ ଭାବରେ ଭିନ୍ନ ମୁଁ ଏହିପ୍ରକାର ଦାବି କରିପାରୁ ନାହିଁ । କାରଣ ମଣିଷଦଶା, ତା'ପଛକୁ ଶ୍ରେଣୀଗତ ମଣିଷର ଦଶା କଣ ସବୁଠି ସମାନ ନ ହେଲେ ମଧ୍ୟ ଏକାଭଳି ନୁହେଁ ? ଏବଂ ଏହି ସାଦୃଶ୍ୟ କଣ ଦିନକୁ ଦିନ ବଢୁ ନାହିଁ, ପୃଥିବୀ ଅଧିକରୁ ଅଧିକ ଛୋଟ ହୋଇଆସିଲାରୁ ? ଅବଶ୍ୟ ଭାରତୀୟ ସାହିତ୍ୟରେ ଏହି ସାଦୃଶ୍ୟ ଆହୁରି ଅଧିକ, ସମାନତା କହିଲେ ଚଳେ । ତାର କାରଣ ଦର୍ଶାଇବା ଅନାବଶ୍ୟକ ।

ପ୍ରଶ୍ନ (୬) :- ଆପଣ ଗଳ୍ପ ଲେଖିଲାବେଳେ କୌଣସି ବିଶେଷ ସମସ୍ୟା ବା ସଙ୍କଟର ସାମ୍ନା କରିଛନ୍ତି କି ?

ଉତ୍ତର :- ବୈକ୍ତିକ, ପାରସ୍ପରିକ, ସାମାଜିକ, ଜୈବିକ, ଆଧ୍ୟାତ୍ମିକ ଇତ୍ୟାଦି ଇତ୍ୟାଦି ନାନାଦି ଦ୍ୱଂଦ୍ୱର ଅବବୋଧକୁ ନେଇ ତ ଗଳ୍ପ । ତେଣୁ ଗଳ୍ପ ଲେଖିବା ବେଳେ ସେହିପ୍ରକାର ଦ୍ୱଂଦ୍ୱାତ୍ମକ ସମସ୍ୟା ବା ସଂଙ୍କଟରୁ ଦୁରେଇ ରହିପାରିବି କେମତି ? କିନ୍ତୁ ଆପଣ ଯଦି ପଚାରିବାକୁ ଚାହାଁନ୍ତି ଯେ ଗଳ୍ପର ମାଧ୍ୟମରେ ନିଜକୁ ବ୍ୟକ୍ତ କରିବାକୁଯାଇ ମୋତେ ନିଜକୁ କୌଣସି ସମସ୍ୟା ବା ସଙ୍କଟର ସାମ୍ନା କରିବାକୁ ପଡେ କି ନାହିଁ, ତାର ଉତ୍ତରରେ ମୁଁ ଯୋଡିଏ ଅନୁଭବର ଉଲ୍ଲେଖ କରବି । ଏକ - କେତେକ କ୍ଷେତ୍ରରେ ମୋର ମନେ ହୁଏ ଯେ ଶବ୍ଦର କିଂବା ମୋ ନିଜର ଅକ୍ଷମତା ହେତୁ ମୁଁ ଯାହା କିଛି କହିବାକୁ ଚାହୁଁଥିଲି, ତାକୁ ପୂରାପୁରି କହିପାରୁନାହିଁ । କିଂବା ଲୋକେ ବୁଝିବେ ନାହିଁ ମୋର ଇଙ୍ଗିତ, ମୋର ଶ୍ଳେଷ । ଅଥଚ ବ୍ୟାଖ୍ୟା କରି କହିଲେ ଗଳ୍ପଟି ମାରା ହୋଇଯିବ କଳାତ୍ମକ ଦୃଷ୍ଟିରୁ । ତେଣୁ ଉପାୟ କଅଣ ? ଦୁଇ - ମୋର ମନେ ହୁଏ ଯେ ଅନୁଭୂତ ସତ-ବାସ୍ତବକୁ ଦେଖାଇବାକୁ ଯାଇ ମୁଁ ବୋଧ ହୁଏ ଟିକିଏ ବେଶି ଦୂରକୁ ମାଡିଗଲିଣି, ଯେଉଁଥିରୁ ମୋତେ ଲୋକେ ଭୁଲ୍ ବୁଝିବେ । ଯେତେ ସାହସୀ ହେବାକୁ କହିଲେ ମଧ୍ୟ ମୁଁ ଏଭଳି ନିନ୍ଦା ଶୁଣିବାକୁ ଚାହେଁ ନାହିଁ । ଏଭଳି ଲୋକଙ୍କ ଠାରୁ ଯେଉଁଥିରେ ମୋ ସରାଗ ମରିଯିବ, ସୃଜନର ଉତ୍ସ ଶୁଖିଯିବ । ଯେତେ

ହେଲେ ମୁଁ ଡାଏରୀ ଲେଖୁନାହିଁ । ମୁଖ୍ୟତଃ, (ଅନ୍ତତଃ ମୋ ବିଚାରରେ) 'ସୁଧୀଜନ' ହୋଇଥିବା (ଲୋକେ ସେମାନେ ଯେତେ ସଂଖ୍ୟାଲଘୁ ହୁଅନ୍ତି ପଛେ) ପଢ଼ନ୍ତୁ, ଏବଂ ପଢ଼ିଲାରୁ ଖୁସି ହୁଅନ୍ତୁ । ଲେଖକର ନୀତିଗତ ସତ୍‌ସାହସ ଏବଂ ଲେଖକର ସାମାଜିକ ସ୍ୱାର୍ଥ ଏ ଦୁଇଟି ବେଳେବେଳେ କଳି କରି ବସନ୍ତି, ଏବଂ ମୋତେ ଅସୁବିଧାରେ ପକାନ୍ତି, ଏତିକି ସ୍ୱୀକାର କରିବାରେ ମୋର ଦ୍ୱିଧା ନାହିଁ ।

ପ୍ରଶ୍ନ (୭) :- ଏବେ ଗଳ୍ପ ପ୍ଲଟ୍ ଉପରେ ପ୍ରାଧାନ୍ୟ ନ ଦେଇ ଗୋଟେ ମୁଡ୍ କିଂବା ମୂହୁର୍ତ୍ତକର ବିଶ୍ଳେଷଣକୁ ଗୁରୁତ୍ୱ ଦେଉଛି । ଏହା ଗଳ୍ପର vitality ବା ପ୍ରାଣଶକ୍ତିକୁ ଆଘାତ କରୁଛି ବୋଲି ଆପଣ ଭାବୁଛନ୍ତି କି ?

ଉତ୍ତର :- ନା । ଗଳ୍ପର ପ୍ରାଣଶକ୍ତି ନିର୍ଭର କରେ (କ) ତା' କଥାବସ୍ତୁର ପ୍ରାଣଶକ୍ତି ଅର୍ଥାତ୍ ତାର ବାସ୍ତବତା, ପ୍ରାସଂଗିକତା, ଗଭୀରତା, ଏବଂ (ଖ) ତାକୁ ରୂପାୟିତ କରିବାରେ ଲେଖକର ନିଷ୍ଠା, ଆନ୍ତରିକତା ଏବଂ କଳାକୌଶଳ ଉପରେ । ତେଣୁ ଗଳ୍ପରେ ପ୍ଲଟ୍‌ର ପ୍ରାଧାନ୍ୟ ଥାଉ କି ମୁଡ୍‌ର, ଚରିତ୍ରର ବା ଚିନ୍ତାର, ସେଥିରେ ବିଶେଷ କିଛି ଯାଏ ଆସେ ନାହିଁ । ତେବେ ଗଳ୍ପର ପ୍ରବାହ ଓ ପରିଣତି ଏବଂ ସେହେତୁ ଏକପ୍ରକାର ବର୍ତ୍ତୁଳତା ଥିବା ଆବଶ୍ୟକ, ନହେଲେ ତାକୁ ଗଳ୍ପ କୁହାଯିବ ନାହିଁ । ଜଣେ ପାଶ୍ଚାତ୍ୟ ସମୀକ୍ଷକ ଚପଳ ଭଙ୍ଗୀରେ କହିଲା ପରି - "A short story is not a slice of life, call of a roll if you will".

ପ୍ରଶ୍ନ (୮) :- ମାନବାତ୍ମାର ସଂକଟ, ତାର ଉଦାସଭାବ, ଏକେଲାପଣ, ସର୍ବୋପରି ତାର ଆତ୍ମବିରୋଧର ଛବିକୁ ଆପଣଙ୍କର ଗଳ୍ପରେ ଉକୁଟାଇଲା ବେଳେ କେଉଁଠି କେମିତି ତା ପ୍ରତି ସଦୟ ହୋଇଉଠିଛନ୍ତି କି ନାହିଁ । ?

ଉତ୍ତର :- ମାନବାତ୍ମାର ଉଦାସଭାବ, 'ନିଃସଂଗତା' ଇତ୍ୟାଦି ଇତ୍ୟାଦି, ଯାହାକୁ ଇଂରାଜିରେ alienation କୁହନ୍ତି, ତାକୁ ଯଦି ମୁଁ ଭଲ ଭାବରେ ଦେଖାଇ ପାରୁଥାଏ ଯେଉଁଥିରେ ପାଠକର ହୃଦୟ ମଂଥି ହେବ, ତା ଆଖିରୁ ଲୁହ ବହିବ, ଅଥବା ସେ ବ୍ୟତିବ୍ୟସ୍ତ ହେବ ଏମତି କାହିଁକି ହୁଏ ବୋଲି ଭାବିବା ପାଇଁ, ଆହୁରି ଭାବିବା ପାଇଁ, ତା'ହେଲେ ବୁଝିବାକୁ ହେବ ଯେ ମୋ ଗଳ୍ପର ସେଇ ମଣିଷଟି ପ୍ରତି (ହୁଏତ ତା ଜରିଆରେ ମଣିଷ ଜାତି ପ୍ରତି) ମୁଁ ସଦୟ ଓ ସକରୁଣ ହେବାର କଥା କାହିଁକି ନା ମୁଁ ମଧ୍ୟ ମଣିଷ । କିନ୍ତୁ ଯଦି ମୁଁ ସେହି ପ୍ରକାର ଭାବଭାବନା ଆଣିପାରୁ ନଥାଏ ପାଠକର ମନରେ, ତା'ହେଲେ ଭାବନ୍ତୁ ନାହିଁ ଯେ ମୁଁ ସଦୟ ନୁହେଁ, ଧରି ନିଅନ୍ତୁ ଯେ ମୋର ସଦୟଭାବ ପରିସ୍ଫୁଟ ହୋଇପାରି ନାହିଁ । ସେ ଦୃଷ୍ଟିରୁ ଗଳ୍ପଟି ବିଫଳ ବୋଲି ମନେ କରିବାକୁ ହେବ । କାରଣ ମୋ ମତରେ ସର୍ବୋପରି ଏଇ କରୁଣାର ଭାବ (compassion) ନ ଥିଲେ ସାହିତ୍ୟ ସୃଷ୍ଟି ହୋଇପାରିବ ନାହିଁ । ମଣିଷକୁ ଅର୍ଥାତ୍ ନିଜକୁ କେବଳ ଘୃଣା କରୁଥିବା ଲୋକ, ପୂରାପୁରି ହାରି ଯାଇଥିବା ଲୋକ, ସାହିତ୍ୟ ଲେଖିବ କାହିଁକି ? କାମ୍ୟୁ କହିଲା ପରି - "No writer can ever

be a nihilist. The very act of writing is an affirmation," ସେ ଲେଖୁଛି କାରଣ ସେ ତଥାପି ନିଜକୁ ଓ ମଣିଷକୁ ଭଲ ପାଏ । ତଥାପି ତାର ଆଶା ଅଛି, ବିଶ୍ୱାସ ଅଛି । ଏବଂ ତାର ମୂଳକଥା ହେଲା କରୁଣା ।

ପ୍ରଶ୍ନ (୯) :- ଆପଣଙ୍କ ବିଚାରରେ ଜଣେ ସାର୍ଥକ ସ୍ରଷ୍ଟାର ପ୍ରକୃତ ଗୌରବ କଣ ?

ଉତ୍ତର :- ଏ ବିଷୟରେ କୌଣସି ସାର୍ବଜନୀନ ତଥ୍ୟ ଥାଇପାରେ କି ? ପ୍ରତ୍ୟେକ ଲେଖକର ଦୁଃଖ ପରି ତାର ଗୌରବ ମଧ୍ୟ କଣ ନିଜଗଢ଼ା ନୁହେଁ ? ଯାହାହେଉ ମୁଁ ଯେତେବେଳେ ମୋ ଲେଖାଟି ଲେଖି ସାରିଲା ପରେ ତାକୁ ପଢ଼ି ଏତେ ଖୁସି ହୁଏ ଯେ ମୋର ମନେ ହୁଏ ଯେ ମୁଁ କେବଳ ପୃଥିବୀର ଗୋଲ୍‌ଟିଏ ଆଙ୍କି ନାହିଁ, ସେଇଠୁଁ ଖିଅ ଧରି ମୁଁ ଗୋଟିଏ ବ୍ରହ୍ମାଣ୍ଡ ଆଂକି ପାରିବି, ଆଂକିବି ଗୋଲ୍ ପରେ ଗୋଲ୍, ନ ହେଲେ ମୋର ପେଟ ପୂରିବ ନାହିଁ.. ନିଜର ଭାବନାକୁ ସସଂପୂର୍ଣ୍ଣ କରିବା ପାଇଁ ଏହିପ୍ରକାର ଅପରିସୀମ ତୃଷ୍ଣା, ତଣ୍ଟି ଶୁଖିଲା ପରି ନୁହେଁ, ପାନପାତ୍ରକୁ ନିଃଶେଷ କରି ଆନନ୍ଦରେ ଆଉଗୋଟିକୁ, ପୁଣି ଆଉ ଗୋଟିକୁ, ହାତ ବଢ଼େଇବାର ପ୍ରବଣତା ଯେତେବେଳେ ମୋ ମନରେ ଆସେ, ମୋର ମନେ ହୁଏ ଯେ ଏଇ ଗଳ୍ପଟି ମୋର ଗୋଟିଏ ସାର୍ଥକ କୃତି ।

ପ୍ରଶ୍ନ (୧୦) :- ଧରନ୍ତୁ ଆପଣଙ୍କୁ କିଛି ରଂଗ ଓ ତୂଳୀଟିଏ ଧରେଇ ଦିଆଗଲା, ଏବଂ କୁହାଗଲା ମଣିଷର ଛବି ଆଙ୍କିବା ପାଇଁ । ଆପଣ କିପରି ଭାବରେ ତାକୁ ଆଙ୍କିବେ ?

ଉତ୍ତର :- ମୁଁ ଭାବୁକ ମଣିଷଟିଏ ଆଙ୍କିବି । କିନ୍ତୁ ମୋର ଭୟ ଯେ ତାକୁ ନିଠେଇ କରିଦେଖିଲେ ଆପଣ ଜାଣିପାରିବେ ଯେ ଭାବୁକତା ହେଉଛି ତାର ଦେଖାଣିଆ ବଡପଣ । ସେ ଭିତରେ ଭିତରେ କାନ୍ଦୁଛି, ତା ପାଇଁ ଦୁଃଖର ସୀମା ନାହିଁ । ଏବଂ ସେଥିରେ ଖାଲି ଉପରକୁ ଉଠି ନ ପାରିବାର ଦୁଃଖ ନାହିଁ, ବାରମ୍ବାର ତଳକୁ ଖସି ପଡିବାର ଦୁଃଖ ମଧ୍ୟ ଅଛି କାହିଁରେ କଅଣ ।

ପ୍ରଶ୍ନ (୧୧) :- ଆପଣ ଆପଙ୍କର ଗଳ୍ପର ଚରିତ୍ରମାନଙ୍କୁ ଗଳ୍ପ ଲେଖିବା ପୂର୍ବରୁ ସେମାନଙ୍କୁ ଖୋଜି ଲୋଡ଼ି ଭେଟି ସାରିଥାଆନ୍ତି କିଂବା ସେମାନେ ଆପଣଙ୍କର ସାକ୍ଷାତ ପାଇଁ ଧାଡିବାନ୍ଧି ଅପେକ୍ଷା କରନ୍ତି ?

ଉତ୍ତର :- ମୁଁ ଚରିତ୍ରମାନଙ୍କର ଚେନାଏ ଚେନାଏ ସ୍ୱରୂପକୁ ଭେଟି ସାରିଥାଏ ମୋ ସଂସାରରେ । ବେଳେବେଳେ ସେସବୁକୁ ଯୋଡ଼ିଯାଡି 'ମଣିଷ' କରି ତାକୁ ମଧ୍ୟ ଚିହ୍ନି ସାରିଥାଏ ମନେ ମନେ । ସେଇଠୁଁ ଯାଇଁ ମୁଁ ସେଇ ଭଗ୍ନାଂଶଗୁଡିକୁ ଅଥବା ମଣିଷଟିକୁ ଡାକି ଆଣେ ମୋ କଳ୍ପନାର କୁଣ୍ଡଳୀ ଭିତରକୁ ମୋ ମନଲାଖି ଚରିତ୍ରଟିଏ ଗଢ଼ିବା ପାଇଁ, ଏବଂ ତାଙ୍କ ଜରିଆରେ ମୋର ବକ୍ତବ୍ୟ ଶୁଣାଇବା ପାଇଁ । ଅବଶ୍ୟ ମୁଁ ମାନିବାକୁ ବାଧ୍ୟ ହେଉଛି ଯେ ନିମଂତ୍ରଣ ବେଶି ଡେରି ହୋଇଗଲେ ଚରିତ୍ରଟି ମରିହଜି ଯିବା ବିଚିତ୍ର ନୁହେଁ ।



# ସଦାକିଶୋର କିଶୋରୀଚରଣ

*ଡକ୍ଟର ବିଜୟାନନ୍ଦ ସିଂହ*

କିଶୋରୀ ଚରଣ ଦାସ ସାଂପ୍ରତିକ ଓଡିଆ ସାହିତ୍ୟ ଜଗତର ଏକ ସ୍ୱର୍ଦ୍ଧିତ ବ୍ୟକ୍ତିତ୍ୱ । ଦୀର୍ଘ ଅର୍ଦ୍ଧଶତାବ୍ଦୀ ବ୍ୟାପୀ ତାଙ୍କର ସାହିତ୍ୟ ସାଧନା ଓଡିଆ ସାହିତ୍ୟରେ ସୃଷ୍ଟି କରିଛି ଏକ ନବଚେତନା । ତାଙ୍କ କଥା କହିବାର ଭଂଗୀ ଭିନ୍ନ ପୁଣି ମନୋମୁଗ୍ଧକର । ମଣିଷର ସୂକ୍ଷ୍ମତମ ଚେତନାକୁ ସରଳ, ସୁନ୍ଦର ଭାବରେ ଅଂକନ କରିବାରେ ତାଙ୍କ ଶିଳ୍ପଚାତୁରୀ ଅନନ୍ୟ । ଗଭୀର ମାନବିକ ସମ୍ବେଦ କିଶୋରୀ ଚରଣ ଗଳ୍ପମାନସର ଆତ୍ମା ସବୁପ୍ରକାର ଛଳନା, ପ୍ରତାରଣା, ପ୍ରବଞ୍ଚନା, ଆଟୋପକୁ ପରିହାରକରି ବାସ୍ତବ ମଣିଷ ଓ ସମାଜର ରୂପ ଉନ୍ମୋଚନ କରିବାରେ ଶ୍ରେଷ୍ଠ ଶବ୍ଦ ଶିଳ୍ପୀ କିଶୋରୀଚରଣ । ତାଙ୍କ ସାହିତ୍ୟରେ ଅଛି ବୌଦ୍ଧିକ ଆନନ୍ଦର ଉପାଦାନ ସହ ସାମାଜିକ ସଂସ୍କାର ପାଇଁ ପ୍ରୟାସ, ପୁଣି ମନଗହନର ଚମକପ୍ରଦ ଆବିଷ୍କାର । ସ୍ୱତଂତ୍ର ଶୈଳୀ, ଚମତ୍କାର କଥାବସ୍ତୁ ମନୋନୟନ, ଦାର୍ଶନିକ ଦୃଷ୍ଟିଭଙ୍ଗୀ ଓ ମନସ୍ତାତ୍ତ୍ୱିକ ବିଶ୍ଳେଷଣରେ କିଶୋରୀ ଚରଣ କଥା ସାହିତ୍ୟର ଜୟଯାତ୍ରା । ଜୀବନବାଦୀ ଗଭୀର ଦୃଷ୍ଟିଭଙ୍ଗୀ, ନିରବଚ୍ଛିନ୍ନ ସାହିତ୍ୟ ସାଧନା କିଶୋରୀ ଚରଣ ସାହିତ୍ୟକୁ କରିଛି ସଂଭ୍ରାନ୍ତ ଓ ଅନନ୍ୟ । କେବଳ କଥାସାହିତ୍ୟ ନୁହେଁ, ଆଲୋଚନା, ପ୍ରବନ୍ଧ, ଅନ୍ୟାନ୍ୟ ଗଦ୍ୟରଚନା ସହ କବିତା ରଚନା କରି ଓଡ଼ିଆ ସାହିତ୍ୟକୁ ଗୌରବମୟ କରିଛନ୍ତି କିଶୋରୀଚରଣ । ତାଙ୍କ ସାହିତ୍ୟ ସଦାସର୍ବଦା ଚଳଚଞ୍ଚଳ, ପ୍ରାଣବନ୍ତ ଓ ନିତ୍ୟ କିଶୋର ।

କିଶୋରୀଚରଣ ଓଡ଼ିଆ ଭାଷା ସାହିତ୍ୟରେ ଯେପରି ସୁପ୍ରତିଷ୍ଠିତ, ସେହିପରି ସେ ସୁପରିଚିତ, ଚର୍ଚ୍ଚିତ ଇଂରାଜୀ ଭାଷା ସମେତ ଭିନ୍ନ ଭିନ୍ନ ଭାଷା ସାହିତ୍ୟରେ । ସେ ନିଜେ ମଧ୍ୟ ଇଂରାଜୀ ଭାଷାର ମୌଳିକ ଗଳ୍ପଲେଖକ । ଓଡ଼ିଆ ଭାଷାରୁ ମଧ୍ୟ ତାଙ୍କର ବହୁ ଗଳ୍ପ ଭାରତୀୟ ଭାଷାରେ, ବିଦେଶୀ ଭାଷାରେ ଅନୁଦିତ ହୋଇ ଅଜସ୍ର ପାଠକୀୟ ଶ୍ରଦ୍ଧା, ସମ୍ମାନ, ସ୍ୱୀକୃତି ଲାଭ କରିଛି । ବାସ୍ତବରେ କିଶୋରୀଚରଣ ଓଡ଼ିଆ କଥା ସାହିତ୍ୟର ଅନ୍ୟତମ ପ୍ରଥିତଯଶା ଦିଗପାଳ । ବୟସ ଆଧିକ୍ୟକୁ ଆଦୌ ସ୍ୱୀକାର ନ କରି ସଦା କିଶୋର ପରି ଲେଖନୀ ଚଳନା କରୁଥିବା ଏହି ସାହିତ୍ୟ ମହାରଥୀ ଓଡ଼ିଆ ସାହିତ୍ୟର ସମ୍ମାନୀୟ ଉଚ୍ଚାରଣ ..... କିଶୋରୀଚରଣ - ଆସନ୍ତୁ ତାଙ୍କ ସହ ସାକ୍ଷାତ ଆଲୋଚନା କରିବା - ଜାଣିବା ତାଙ୍କ ସାରସ୍ୱତ ଜଗତର କଥା ଓ କାହାଣୀକୁ ....

ପ୍ରଶ୍ନ (୧) :- ଆପଣ କାହିଁକି ଲେଖନ୍ତି ?

ଉତ୍ତର :-ବୋଧହୁଏ ପ୍ରତ୍ୟେକ ଲେଖକକୁ ଏହି ପ୍ରଶ୍ନଟି ସବୁଠାରୁ ବେଶୀ ପଚରାଯାଇଥାଏ । ମୋତେ ମଧ ପଚରା ଯାଇଛି, ଯେବେଠୁଁ ମୁଁ ଜଣେ ଲେଖକ ହିସାବରେ ପରିଚିତ ହେଲିଣି । ପ୍ରଥମେ, ଆନୁଷ୍ଠାନିକ ଭାବରେ, ବିଶ୍ୱଭାରତୀ, ଶାନ୍ତିନିକେତନଙ୍କ ଓଡ଼ିଆ ବିଭାଗ ଦ୍ୱାରା ୨୯ ମାର୍ଚ୍ଚ ୧୯୭୦ ମସିହାରେ, ସେମାନଙ୍କ ବୁଧବାରିଆ ସାହିତ୍ୟ ଆସରରେ ଏକାଠି ବସି । ଏବଂ ସେତେବେଳେର 'ଅଣଉତ୍ତର'କୁ ମୁଁ ଆଜିଯାଏଁ କାଟି ଦେଇପାରି ନାହିଁ ।

ଭାବିଚିନ୍ତି କହିଥିଲି ଯେ ଏ ବିଷୟରେ ଅନେକ ଥିଓରି ରହିଛି । ଯଥା : (୧) ପଳାୟନବାଦ, ଯାହାକି ଏକ ଫ୍ରଏଡ଼ୀୟ ତଥ୍ୟ (୨) ଭୟ, ଅର୍ଥାତ୍ ମୁଁ ଜୀବନକୁ ଡରେ ନାହିଁ ମ' ଦେଖ ତା ଉପରେ କେମିତି ସବାର ହୋଇପାରୁଛି ବୋଲି କହିଲା ପରି, (୩) ନିପାରିଲାପଣ ଅର୍ଥାତ୍ ନିଜର କେଉଁ ନ୍ୟୂନତାବୋଧ ମୋତେ ମାଡ଼ି ପଡୁଛି, ତେଣୁ ମୁଁ ଏହି ଭାବରେ ତାକୁ ଅସ୍ୱୀକାର କରିବାକୁ ବସିଛି, (୪) ଆତ୍ମବଡ଼ିମା, ଦେଖ ମୁଁ କେମିତି ସୃଷ୍ଟିକର୍ତ୍ତାଙ୍କୁ ନକଲ କରିପାରୁଛି, ହୁଏତ ମୋ ସୃଷ୍ଟି ତାଙ୍କ ସଂସାରଠାରୁ ଅଧିକ ସୁନ୍ଦର ବୋଲି କହିଲାପରି । ହେଲେ ତା'ପରେ କହିଥିଲି ଯେ ଏଥିରୁ କେଉଁ କାରଣଟି ମୋ ପ୍ରତି ବେଶୀ ପ୍ରଯୁଜ୍ୟ ତା' ମୁଁ କହିପାରିବି ନାହିଁ । ହୁଏତ ଉଣା ଅଧିକେ ସବୁକିଛି । କିନ୍ତୁ ମୋର ଶେଷକଥା ହେଲା ଏଇ ଯେ 'ଲେଖିବାକୁ' ଚାହିଁବା ମୋ ପାଇଁ ଏକ ଅଦମ୍ୟ ଆବେଗ ଅନ୍ୟ ଅର୍ଥରେ ଦୁର୍ବିସହ ତାଡ଼ନା । ସତେକି ନ ଲେଖିଲେ, ଏଇ ଜୀବନଟାକୁ ନେଇ କିଛି ନ କହିଲେ ଏବଂ ତାହା ଆପଣମାନଙ୍କୁ ଶୁଣାଇ ନ ପାରିଲେ, ମୁଁ ବଞ୍ଚିଲା ପରି ବଞ୍ଚିପାରିବି ନାହିଁ । ୟାକୁ କଣ ଗୋଟାଏ ଉଚିତ୍ ଉତ୍ତର ବୋଲି କୁହାଯାଇପାରେ ? କେଜାଣି ?

ପ୍ରଶ୍ନ (୨) :- ଆପଣଙ୍କ ଲେଖକ ଜୀବନର ପ୍ରେରଣାର ଉତ୍ସ ?

ଉତ୍ତର :- ପ୍ରେରଣାର ଉତ୍ସ ବୋଲି କିଛି ନ ଥିଲା । କେବଳ ଗୋଟାଏ ତାଡ଼ନା, ଯାହାକୁ ପ୍ରେରଣା ବୋଲି କୁହାଯାଇ ନପାରେ । ସତେକି ନ ଲେଖିଲେ ଚଳିବ ନାହିଁ, ପେଟ ପୂରିବ ନାହିଁ, ମୋ ମନ କଥା କେହି ବୁଝିବେ ନାହିଁ ଇତ୍ୟାଦି ।

ପ୍ରଶ୍ନ (୩) :- ଆପଣ କେବେଠାରୁ ଲେଖା ଆରମ୍ଭ କଲେ ?

ଉତ୍ତର :- ସ୍କୁଲରେ ପଢ଼ିଲା ବେଳଠୁଁ, ଯେତେବେଳେ ମୋତେ ବାର ତେରବର୍ଷ ହୋଇଥିଲା । ପ୍ରଥମେ କବିତା ଲେଖୁଥିଲି, ପରେ ଗଳ୍ପ । ମୋତେ ଅଠର ବର୍ଷ ହୋଇଥିଲା ବେଳେ ମୋର ଗଳ୍ପ 'ପରଦା ତଳେ' 'ନବୀନ'ରେ ପ୍ରକାଶ ପାଇଥିଲା । ତାହାହିଁ ମୋର ସର୍ବ ପ୍ରଥମ ପ୍ରକାଶିତ ଗଳ୍ପ ।

ପ୍ରଶ୍ନ (୪) :- ବାଲ୍ୟକାଳରୁ କିଭଳି ପରିବେଶ ଆପଣଙ୍କ ଜୀବନକୁ ପ୍ରୋତ୍ସାହିତ କରିଛି ?

ଉତ୍ତର :- ମୋ ବାଲ୍ୟଜୀବନର ପରିବେଶରେ କୌଣସି ବୈଶିଷ୍ଟ୍ୟ ନଥିଲା, ଏବଂ କେବଳ ଏତିକି କହିବି ଯେ, ପିଲାଦିନୁ ମୁଁ ଅଳ୍ପବହୁତ ଆତ୍ମଭୋଳା (ଇଣ୍ଟ୍ରୋଭର୍ଟ) ଥିଲି ବୋଲି

କୁହାଯାଏ । ଏବଂ ମୋର ପରିବେଶ ଏଇ 'ଅବିଗୁଣର' ପ୍ରତିକୂଳ ନ ଥିଲା । ସେହେତୁ ମୁଁ ସ୍ୱଚ୍ଛନ୍ଦରେ ମୋର ଲେଖକୀୟ ଆତ୍ମାନନ୍ଦକୁ ବଢ଼େଇ ନେଇ ପାରିଥିଲି ବୋଲି କହିଲେ ଭୁଲ୍ ହେବନାହିଁ ।

ପ୍ରଶ୍ନ (୫) :- ଆପଣ ପ୍ରଥମେ କବିତା ଲେଖୁଥିଲେ, ତେବେ କବିତାରୁ ଗଳ୍ପରଚନା ପ୍ରତି ଏତେ ଗୁରୁତ୍ୱ ଦେଲେ କାହିଁକି ?

ଉତ୍ତର :- ଯଥାକ୍ରମେ ମୋର ମନେ ହେଲା ଯେ ମୁଁ ମୋର ସଂସାର ବିଷୟରେ ଯାହା କହିବାକୁ ଚାହୁଁଛି, ତାହା ଏତେ ବ୍ୟାପକ, ଜଟିଳ ଏବଂ ଦ୍ୱନ୍ଦାତ୍ମକ ଯେ ତାକୁ ଅଳ୍ପକରେ ସାରିଦେଇ ହେଉନାହିଁ । ଆବେଗମୂଳକ ଭାବଭାବନାର ଖିଅଟିଏ ମାତ୍ର ପାଠକ ପାଠିକାମାନଙ୍କ ହାତକୁ ବଢ଼ାଇ ଦେଇ ଟିକିଏ ହସି ଦେଇ, ଅବା ଦୀର୍ଘ ନିଃଶ୍ୱାସଟିଏ ପକେଇ । ସେହେତୁ କଥା ସାହିତ୍ୟକୁ ଆବୁରିଲି ଏବଂ କେଜାଣି କେମିତି ସେଇଥିରେ ଭାସିଗଲି । ତେବେ ଉଲ୍ଲେଖଯୋଗ୍ୟ ଯେ ମଝିରେ ମଝିରେ ମୁଁ କବିତାଟିଏ ନ ଲେଖି ରହିପାରେ ନାହିଁ । କେଉଁ ଚରିତ୍ରଟିଏ ନ ହୋଇ ସିଧା ସଳଖ କିଶୋରୀଚରଣ ନାମକ ବ୍ୟକ୍ତିଟିଏ ହେବା ପାଇଁ, ତା ନିଜର ବ୍ୟକ୍ତିଗତ ଆବେଗକୁ ବ୍ୟକ୍ତ କରି ସେଥିର ଚାପରୁ ଖଲାସ ପାଇଲାପରି ।

ପ୍ରଶ୍ନ (୬) :- ଆପଣ ଉପନ୍ୟାସ ବି ଲେଖି ବେଶ୍ ସଫଳତା ହାସଲ କରିଛନ୍ତି - ତେବେ ଗଳ୍ପପରେ ଉପନ୍ୟାସ ରଚନା କରିବା ପାଇଁ କାହିଁକି ପ୍ରୟାସ କଲେ ?

ଉତ୍ତର :- ପୂର୍ବରୁ ଉପନ୍ୟାସ ନ ଲେଖିବାର କେବଳ ଗୋଟିଏ କାରଣ ଥିଲା । ଏଇ ଯେ ସେଥିପାଇଁ ମୋତେ ସମୟ ମିଳୁ ନଥିଲା । ଚାକିରୀ ଜୀବନରେ ସ୍ୱଳ୍ପ ସୀମିତ ଅବସରକୁ ପ୍ରଲମ୍ବିତ ଉପନ୍ୟାସ ଲେଖାରେ ସାରି ନ ଦେଇ ତା ବଦଳରେ ଏକାଧିକ ଗଳ୍ପ ଲେଖି ସେଥିରୁ ମିଳୁଥିବା ଆଶୁ ଆନନ୍ଦ ଶ୍ରେୟସ୍କର ବୋଲି ମୋର ମନେ ହେଲା ।

ପ୍ରଶ୍ନ (୭) :- ଆପଣ ମାପିଚୁପି ଭାଷାର ବ୍ୟବହାର କରିଛନ୍ତି - ଏହା ଆପଣଙ୍କର ରଚନାର ବୈଶିଷ୍ଟ୍ୟ - ଏ ସଂପର୍କରେ ଆପଣଙ୍କ ମତ ?

ଉତ୍ତର :- ମାପିଚୁପି ଭାଷାର ବ୍ୟବହାର କରିବାର ଅର୍ଥ ନୁହେଁ ଯେ ମୁଁ ଜାଣିଶୁଣି ଏବଂ ଚେଷ୍ଟା କରି ନିଜକୁ ଅଟକାଇ ଦିଏ । ଆପେଆପେ ମୁଁ ଏମତି ଲେଖି ଆସିଛି, ଏହାହିଁ ମୋ ଲେଖାର ସ୍ୱାଭାବିକ ଶୈଳୀ । ହୁଏତ ମୋ କଥାକୁହାର ଉଦ୍ଦେଶ୍ୟକୁ ସଫଳ କରିବା ଦିଗରେ କେବଳ ସେତିକରୁ ଅଧିକ କିଛି କହିବାର କାରଣ ନଥିଲା ମୋ ପାଇଁ ।

ପ୍ରଶ୍ନ (୮) :- ଆପଣଙ୍କ ଜୀବନର ଅର୍ଦ୍ଧାଧିକ ସମୟ ଓଡ଼ିଶା ବାହାରେ ବିତିଛି, ତେବେ ଏହାର କିଛି ପ୍ରଭାବ ଆପଣଙ୍କୁ ପ୍ରଭାବିତ କରିଛି କି ?

ଉତ୍ତର :- ଅବଶ୍ୟ ପ୍ରଭାବିତ କରିଛି ବୋଲି ମୋର ମନେ ହୁଏ । ଦେଶ-ବିଦେଶର ବିଭିନ୍ନ ରୁଚି, ଆଚାର ବ୍ୟବହାର, ତଥା ଧର୍ମଧାରଣା ବିଶିଷ୍ଟ ଲୋକମାନଙ୍କ ସହିତ ଯେତିକି ମିଶିବାର

ସୁଯୋଗ ପାଇଛି, ସେତିକି ବେଶି ମୋର ମନେ ହୋଇଛି - ଆଃ ! କେତେ ଭଳି ବିଚିତ୍ର ଏଇ ମଣିଷର ଚରିତ୍ର, କାଲିଫର୍ଣ୍ଣିଆରୁ କଟକ ଯାଏଁ ! କିନ୍ତୁ ଯଥାକ୍ରମେ ମୋତେ ବୁଝିବାକୁ ପଡ଼ିଛି ଯେ ଏଇ ବିଭିନ୍ନତା ଠାରୁ ଅଧିକ ଚମତ୍କାର ଆମର ଅଭିନ୍ନତା । ଆମର ମୌଳିକ ଦୋଷଗୁଣରେ ଗଢ଼ା 'ମଣିଷଦଶା' ଯାହାକି ମୋଟାମୋଟି ସମାନ, କାଲିଫର୍ଣ୍ଣିଆରୁ କଟକ ଯାଏଁ । ସେହେତୁ ଏକ ସହିଷ୍ଣୁ ଉଦାରତାର ଭାବ ଆସେ ମୋ ମନରେ ଏଇ ହତଭାଗା, ହେଲେ ସଦାସର୍ବଦା କେଉଁ ଅମୃତକୁ ଲୋଡୁଥିବା ମଣିଷ ଜାତି ପ୍ରତି ।

ପ୍ରଶ୍ନ (୯) :- 'ଭଙ୍ଗା ଖେଳନା' - ଓଡ଼ିଆ ଗଳ୍ପ କାହିଁକି ସମଗ୍ର ଭାରତୀୟ କଥା ସାହିତ୍ୟର ଏକ ଅନନ୍ୟ ରଚନା - ଏପରି ଗଳ୍ପ ଲେଖିବା ପାଇଁ ପ୍ଲଟ୍ କେଉଁଠୁ ପାଇଲେ ?

ଉତ୍ତର :- ମୋର କେଉଁ ଗଳ୍ପ କାହିଁକି ବେଶି ଲୋକପ୍ରିୟ ହୋଇପାରିଛି ଅବା ଉତ୍କୃଷ୍ଟ ବୋଲି ବିବେଚିତ ହୋଇପାରିଛି, ତାର ଉତ୍ତର ମୋ ପାଖରେ ନାହିଁ । କିନ୍ତୁ 'ଗପର ପ୍ଲଟ୍' ନେଇ ଯେଉଁ ପ୍ରଶ୍ନର ଅବତାରଣ କରିଛନ୍ତି, ତାର ବିସ୍ତାରିତ ଉତ୍ତର ମୁଁ ମୋର ନିବନ୍ଧ 'ଅକୁହା କାହାଣୀ' ('ଲେଖକର ଦୁଃଖ' ସଂକଳନରେ ପ୍ରକାଶିତ)ରେ ଦେଇସାରଛି । ତାର ସାରକଥା ହେଲା ଏଇ ଯେ ଲେଖକ ସହଜେ ତାର ଚରିତ୍ରଗୁଡ଼ିକୁ ତାର ନିଜ ଜୀବନାଭୂତିରୁ ଗ୍ରହଣ କରେ, କିନ୍ତୁ ସାଧାରଣତଃ କୌଣସି ଗୋଟିଏ ପରିଚିତ ଏବଂ ଜୀବନ୍ତ ବ୍ୟକ୍ତିକୁ ସେ ତା ଗଳ୍ପ-ଉପନ୍ୟାସର ପ୍ରଧାନ ଚରିତ୍ର ଭାବରେ ଠିଆକରେଇ ପାରିବ ନାହିଁ । ଏକାଧିକ ମଣିଷଙ୍କର ଚେନାଏ ଚେନାଏ ରୂପ, ଗୁଣ ଓ ସ୍ୱଭାବ ଚରିତ୍ରକୁ ନେଇ ସେ ତା ମନଲାଖି ଚରିତ୍ରଟିଏ ତିଆରି କରେ, ଯାହା ଏକାଧାରରେ ବିଶ୍ୱସନୀୟ ହୋଇଥିବ, ତଥା ଲେଖକର ବକ୍ତବ୍ୟକୁ ଯଥାବିଧି ବ୍ୟକ୍ତ ଏବଂ ରୂପାୟିତ କରିପାରିବ । 'ଭଙ୍ଗା ଖେଳନାର' ଗୀତା ଏବଂ ଅନ୍ୟମାନେ ସେହିପରି ଭାବରେ ଗଢ଼ି ହୋଇଯାଇଛନ୍ତି ଯେ ମୋ ପାଇଁ - କିଛି ପ୍ରତ୍ୟକ୍ଷ ଅନୁଭୂତି, କିଛି ପରୋକ୍ଷ ଅର୍ଥାତ୍ ନିବିଡ଼ ନିରୀକ୍ଷଣମୂଳକ ଅନୁଭୂତି ଏବଂ ସକ୍ରିୟ କଳ୍ପନାକୁ ନେଇ ।

ପ୍ରଶ୍ନ (୧୦) :- ଆପଣ ଗଳ୍ପ/ଉପନ୍ୟାସ ରଚନା ପାଇଁ କେଉଁଠୁ ପ୍ଲଟ୍ ଓ ଚରିତ୍ର ପାଅନ୍ତି ?

ଉତ୍ତର :- ମୋର ପରିପାର୍ଶ୍ୱରୁ । ଯେଉଁ ମଣିଷମାନଙ୍କୁ ମୁଁ ପାଖରୁ ଦେଖିଛି, ଏବଂ ସେମାନଙ୍କ ଠାରୁ ପାଇଛି କିଛି ପ୍ରତ୍ୟକ୍ଷ, ପରୋକ୍ଷ, ତଥା ସମ୍ଭାବ୍ୟ ଆଚାର ବ୍ୟବହାର ଓ ଭାବଭାବନା ସେଇମାନଙ୍କୁ ମୁଁ ନେଇ ମୋର 'ଚରିତ୍ର' ତିଆରି କରେ । ଆପଣା ସମେତ ନାନା ମଣିଷଙ୍କ ଚେନାଏ ଚିରୁଡ଼ାଏକୁ ଏକାଠି କରି ବିବିଧ - ବିଭିନ୍ନ ନୂଆ ନୂଆ ମଣିଷ, ଯେଉଁମାନଙ୍କ ଗତିବିଧି ଆପଣଙ୍କୁ ଏକାଧାରରେ ସତ ଏବଂ ବିସ୍ମୟଜନକ ବୋଲି ମନେ ହେବ । ଏବଂ ସେହିମାନେ ହିଁ ମୋ ପାଇଁ ପ୍ଲଟ୍‌ଟିଏ ତିଆରି କରିଦିଅନ୍ତି । କଳ୍ପନାର ଅଣନିଃଶ୍ୱାସୀ ଆଡ୍‌ଭେଂଚର୍ ମୋତେ ସୁହାଏ ନାହିଁ ।

ପ୍ରଶ୍ନ (୧୧) :- ଆପଣ ଗଳ୍ପ/ଉପନ୍ୟାସ ଗୁଡ଼ିକର ମନସ୍ତାତ୍ତ୍ୱିକ ଚିତ୍ର/ଦାର୍ଶନିକ ଚିନ୍ତାକୁ ପ୍ରାଧାନ୍ୟ ଦେଇଛନ୍ତି ?

ଉତ୍ତର :- ହଁ, ପାଠକ-ସମୀକ୍ଷକମାନେ ଏହାହିଁ କହିଆସିଛନ୍ତି ମୋ ସାହିତ୍ୟ ବିଷୟରେ । କିନ୍ତୁ ମୁଁ ଭାବିଚିନ୍ତି ଏଭଳି କୌଣସି କଳା କୌଶଳର ପ୍ରୟୋଗ କରିନାହିଁ । ତାହା ଆପେ ଆପେ ଆସିଯାଇଛି, ମୋର ସ୍ୱଧର୍ମ ବୋଲାଇଲା ପରି । କାରଣ ମୋ ମତରେ ଅନୁଭବୀ ମଣିଷର ସୁଖଦୁଃଖ କଣ ଯଥାର୍ଥରେ ତା' ମନର ଘଟଣା ନୁହେଁ ? ତେଣୁ ଯେତେଦୂର ସଂଭବ ସେଥିର ଗହୀରକୁ ନ ଯାଇ, କେବଳ ବାହ୍ୟିକ ପ୍ରକୃତି, ପରିବେଶ ଓ ଘଟଣାକୁ ଦର୍ଶାଇ ଲାଭ କଅଣ ? ଏବଂ କେଉଁ ସୁଖଦୁଃଖର କାହାଣୀକୁ ନେଇ ଯଦି କିଛି ଭାବିବାକୁ ନ ପଡ଼ିଲା, ଲେଖକକୁ ତଥା ଆପଣଙ୍କୁ, ମଣିଷ ଦଶାର ଚିରନ୍ତନ, ହେଲେ ନିତ୍ୟନୂତନ ରଂଗରୂପକୁ ଆହୁରି ଭଲଭାବରେ ଚିହ୍ନିଲା ପରି, ତାହେଲେ ସେଇ ଲେଖାର ମୂଲ୍ୟ କଣ ?

ପ୍ରଶ୍ନ (୧୨) :- ଆପଣଙ୍କ ରଚିତ ଉପନ୍ୟାସ 'ସାତୋଟି ଦିନର ସତୀ' ଓ 'ସକଳ ସନ୍ତାନ' ଆମ ସାହିତ୍ୟର ସଫଳ କୃତି - ଏହାର ସ୍ୱତନ୍ତ୍ରାତାବି ବାରିହୋଇ ପଡ଼େ - ଏହି ଉପନ୍ୟାସ ସଂପର୍କରେ ଆପଣଙ୍କର ବ୍ୟକ୍ତିଗତ ଅଭିମତ ?

ଉତ୍ତର :- ସବୁତ ସେହି ଅନୁଭୂତି - କଳ୍ପନାର ଖେଳ । ସେହି ହିସାବରେ 'ସାତୋଟି ଦିନର ସତୀ'ର ନାୟିକାକୁ ମୁଁ ଚିହ୍ନିଛି ଓ ଭଲପାଏ । ମଧ ଚିହ୍ନିଛି ଓ ଭଲପାଏ, ସକଳ ସନ୍ତାନର କବୟିତ୍ରୀ ନାୟିକାକୁ ଏବଂ ମୁଁ ଚାହେଁ ଅପଣ ମଧ ସେମାନଙ୍କୁ ଠିକଣା ଭାବରେ ଚିହ୍ନିବେ, ଭଲ ପାଇବେ ଏବଂ ତାଙ୍କର ସୁଖ ଦୁଃଖ ବିଷୟରେ ଟିକିଏ ଭାବିବା ହେବେ । ତେବେ ସୁପ୍ରସିଦ୍ଧ ଔପନ୍ୟାସିକ ଇ.ଏମ. ଫୋର୍ଷ୍ଟର କହିଲାପରି, ପ୍ରତ୍ୟେକ ସଫଳ ସର୍ଜନାରେ ମଧ କିଛି ଗୋଟାଏ ରହସ୍ୟ ଥାଏ, କେଉଁ ଏକ ଅଚେତନ-ଅବଚେତନର କାନକୁହା ଯାହାକୁ ନା କେଉଁ ସମୀକ୍ଷକ କଳି ପାରିବ ନା ଲେଖକ ନିଜେ ଠଉରେଇ ପାରିବ ।

ପ୍ରଶ୍ନ (୧୩) :- ଏବେ ସଦ୍ୟପ୍ରକାଶିତ 'ତୁମ ଆମ ଶତାବ୍ଦୀ' ଏକ ଭିନ୍ନସ୍ୱାଦର ଉପନ୍ୟାସ । ଏପରି ରଚନାର ଭିତ୍ତିଭୂମି କଣ ?

ଉତ୍ତର :- ମୁଁ ଗୋଟିଏ ଶତାବ୍ଦୀର ନବ ଯୌବନରେ ଜନ୍ମ ହୋଇ ତା'କୁ ପାରି ହୋଇଗଲିଣି, ଏବେ ଶୁଣୁଛି ଆଉ ଗୋଟିଏ ଶତାବ୍ଦୀର ଦରୋଟି ବଚନ, ମୋ ଜୀବନର ସାୟାହ୍ନଂରେ । ଏଭଳି ସୌଭାଗ୍ୟ କେତେ ଜଣଙ୍କୁ ମିଳିଥାଏ ? ତେଣୁ ଭାବିଲି କହିବି, ଜଣେ ଭାରତୀୟ ହିସାବରେ, ଯେ ମୋ ଶତାବ୍ଦୀ କିଭଳି ସ୍ୱପ୍ନ ଦେଖିଥିଲା ଏବଂ ତାହା କେତେଦୂର ସାକାର ହୋଇପାରିଛି । ଯେଉଁ ଚିତା ଜଳିଛି ମୋ ଶତାବ୍ଦୀରେ, ଗୋଟିକ ପରେ ଗୋଟିଏ ସେଥିରେ କଣ ପୋଡ଼ିଜଳି ଭସ୍ମ ହୋଇଗଲା, ହେଲେ କେଉଁ ପ୍ରତିଶୃତି ତଥାପି ଚିକିଚିକି ହେଉଛି ମୋ ନାତିନାତୁଣୀଙ୍କ ପାଇଁ । ଏବଂ ସବୁକିଛି କହିବି ଅଙ୍ଗେ ନିଭାଇଲା ପରି, ଆପଣା ଅନୁଭୂତିକୁ

ଆଶ୍ରୟ କରି, ତାହା ଯେତେ ସୀମିତ ପଛେ । ଏଇ ଚ୍ୟାଲେଂଜକୁ ନେଇ ମୁଁ କେତେଦୂର ସଫଳ ହୋଇ ପାରିଛି, ତାର ବିଚାର ଆପଣମାନଙ୍କ ଉପରେ ।

ପ୍ରଶ୍ନ (୧୪) :- 'ଶାନ୍ତ ଅପରାହ୍ନ'ରେ ସଂଯୋଜିତ ଗଳ୍ପସମୂହ ନୂଆନୂଆ ପରି ମନେ ହେଉଛି ଆମକୁ । କେତୋଟି ଗଳ୍ପ ଆପଣଙ୍କ ରଚନା ଶୈଳୀର ବ୍ୟତିକ୍ରମ ବୋଲି ବିଚାର କରାଯାଇଛି । ଏ ବିଷୟରେ କିଛି କହିବେ କି ?

ଉତ୍ତର :- ଗତ କେତୋଟି ବର୍ଷ ମଧ୍ୟରେ ଲେଖାଯାଇଥିବା ଏଇ ଗଳ୍ପଗୁଡ଼ିକୁ ମୁଁ ଜାଣିଶୁଣି କେଉଁ ନୂଆ ରଂଗରେ ସଜାଇ ନାହିଁ ତ ? କେଉଁ ପ୍ରକାର ବ୍ୟତିକ୍ରମ ଆପଣଙ୍କ ଆଖିରେ ପଡିଛି ବୋଲି କହିଲେ ହୁଏତ ମୁଁ ତାର ଯଥାଯଥ ଉତ୍ତର ଦେବାକୁ ଚେଷ୍ଟା କରିଥାଆନ୍ତି । ତେବେ ଲୋଭ ହେଉଛି କହିବା ପାଇଁ ଯେ ଛାଇ ଲେଉଟାଣିରୁ ଅନ୍ଧାର ଆସିବା ଯାଏଁ କଣ କେବଳ ଏକ ଗୁରୁଗମ୍ଭୀର ଆତ୍ମଦର୍ଶନ ମାଡ଼ିବସେ ତମକୁ ? ଏହି ସମୟକୁ ଯେଉଁ ବର୍ଣ୍ଣବଭବର ସୃଷ୍ଟି ହୁଏ, ତାର ପ୍ରଭାବ ମଧ୍ୟ ମୋର ସାହିତ୍ୟ ରଚନା ଉପରେ ପଡି ନଥିବ ବୋଲି କିଏ କହିବ ?

ପ୍ରଶ୍ନ (୧୫) :- ଆପଣ ସଂପ୍ରତି ଗଳ୍ପ, ଉପନ୍ୟାସ ପରି କଣ କବିତା ଲେଖୁଛନ୍ତି ?

ଉତ୍ତର :- ହଁ - କବିତା ଲେଖିଛି ଏବଂ ଆଜିକାଲି ମଧ ଲେଖୁଛି ବେଳେ ବେଳେ । ଓଡ଼ିଆରେ ତଥା ଇଂରାଜୀରେ । କିନ୍ତୁ ପ୍ରକାଶିତ ପୁସ୍ତକ ମାତ୍ର ଗୋଟିଏ ଲେଖାଏଁ - ମିନି କାମନା ଏବଂ "Faces in the Dark" ।

ପ୍ରଶ୍ନ (୧୬) :- ଆପଣ ପ୍ରବନ୍ଧ/ସମାଲୋଚନା ଲେଖିଛନ୍ତି - କିନ୍ତୁ ଗଳ୍ପ/ଉପନ୍ୟାସ ପରି ନୁହେଁ ?

ଉତ୍ତର :- ବୋଧହୁଏ ଏଇଥିପାଇଁ ଯେ ମୁଁ ଆହୁରି ଅଧିକ କଥାକୁହା ହେବାକୁ ଚାହିଁଲି । ଭାବିଲି ଯେ ସୃଜନାତ୍ମକ ଲେଖାରେ ମୁଁ କେବଳ ମୋର ଚରିତ୍ରମାନଙ୍କର ମାଧମରେ ଯାହାକିଛି, କହିପାରିବି ଏବଂ ତାହା ମଧ ଅନେକ କ୍ଷେତ୍ରରେ ବହୁବିଧ ଏବଂ ବିରୋଧାତ୍ମକ ହେବାକୁ ବାଧ । ତେଣୁ ସିଧାସଳଖ ତଥା ସୁଚିନ୍ତିତ କିଛି କହିବାକୁ ହେଲେ ପ୍ରବନ୍ଧ ନ ଲେଖିଲେ ଚଳିବ ନାହିଁ । ସେଥିରୁ କେତୋଟିରେ ମୁଁ ମୋ ନିଜର ଭାବଭାବନା ଏବଂ ତହିଁରୁ ଉଦ୍‌ଭୂତ ସାହିତ୍ୟକୁ ମଧ ଚିହ୍ନେଇବାକୁ ଚେଷ୍ଟା କରିଛି ।

ପ୍ରଶ୍ନ (୧୭) :- ଆମର ମନେ ହୁଏ ଯେ ଆପଣଙ୍କ ଆତ୍ମଜୀବନୀ 'ସମୟ ନାହିଁ'ରେ ମଧ ଆପଣ ଗଳ୍ପ/ଉପନ୍ୟାସ ପରି ମାପିଚୁପି ଭାଷାର ବ୍ୟବହାର କରିଛନ୍ତି, ପୁଣି ଅତ୍ୟନ୍ତ ସଚେତନ ଓ ସତର୍କ ଦୃଷ୍ଟିଭଙ୍ଗୀ ସହ । ଆପଣ କଣ ଜୀବନର ସବୁ ସତ କଥାକୁ ପ୍ରକାଶ କରିବାକୁ ଚାହିଁଛନ୍ତ ?

ଉତ୍ତର :- ଆତ୍ମଜୀବନୀ ହୋଇଥିବାରୁ ସେଥିରେ ମୋର ନିଜସ୍ୱ ପ୍ରକାଶଭଂଗୀ ବଦଳିଯିବ କାହିଁକି, ନା ମୁଁ ତାକୁ ବଦଳାଇବାକୁ ଚାହିଁବି ? ଏବଂ ତା' ସହିତ 'ସବୁ ସତ କଥା' କହିବା

ନ କହିବାର ପ୍ରଶ୍ନ ଆସୁଛି କେଉଁଠୁ ? ତେବେ, କ୍ଷମା କରିବେ, ମୁଁ ଜୀବନାଭୂତିର ସବୁ ସତକଥା କହିବାର ଆସ୍ପର୍ଦ୍ଧା କରିପାରିବି ନାହିଁ । ମୋ ଚରିତ୍ରମାନଙ୍କର ହର୍ତ୍ତାକର୍ତ୍ତା ଭାଗ୍ୟବିଧାତା ହୋଇ ତାଙ୍କୁ ବି' ତ କୁହାଇପାରି ନାହିଁ, ମୋ ଦ୍ୱାରା ତାହା ସଂଭବ ହୋଇଥାଆନ୍ତା କେମିତି ? ତେବେ ନିଶ୍ଚିତରେ କହିପାରେ ଯେ ମୁଁ ମିଛ କହିନାହିଁ, ଆତ୍ମବଡ଼ିମାରୁ ଦୂରେଇ ରହିବାକୁ ଚେଷ୍ଟା କରିଛି, ଏବଂ ନିଜ ସମେତ କୌଣସି ବ୍ୟକ୍ତିର ଦୋଷ-ଦୁର୍ବଳତା ପ୍ରତି ଆଙ୍ଗୁଳି ନିର୍ଦ୍ଦେଶ କରିବାର ଜଜ୍ ପଣିଆ ଦେଖାଇ ନାହିଁ, କାଳେ ତାହା ଭୂଲ୍ ହୋଇଥିବ ।

ପ୍ରଶ୍ନ (୧୮) :- ଆପଣ ଜଣେ ଭାରତ ସରକାରଙ୍କର ଉଚ୍ଚପଦସ୍ଥ ଅଧିକାରୀ ଥିଲେ । ପ୍ରଶାସନିକ ଅଭିଜ୍ଞତା ଖୁବ୍ ବେଶି - ତେବେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି ଭାବରେ ଆପଣ ସେହି ପ୍ରଶାସନିକ ଅଭିଜ୍ଞତାକୁ ଉପାଯୋଗ କରିଛନ୍ତି କି ?

ଉତ୍ତର :- ହଁ, ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି ହିସାବରେ ମୁଁ ମୋର ସେହି ଅଭିଜ୍ଞତାର ଉପଯୋଗ କରିବାକୁ ଚାହିଁଥିଲି । ତେବେ ମୋର ଦୁଃଖ ଯେ ନାନାଦି କାରଣରୁ ମୁଁ ସେ ଦିଗରେ ବିଶେଷ ସଫଳ ହୋଇପାରିନାହିଁ ।

ପ୍ରଶ୍ନ (୧୯) :- ଆପଣ ଆମ ସାହତ୍ୟର ଜଣେ ପ୍ରଖ୍ୟାତ ପ୍ରଗତିଶୀଳ ସ୍ରଷ୍ଟା-ତେବେ ଆଶା କରାଯାଉଥିଲା ଆପଣଙ୍କ ସଭାପତି କାଳରେ ସାହିତ୍ୟ ଏକାଡ଼େମୀର କିଛି ଆଙ୍ଗିକ/ ଆତ୍ମିକ ପରିବର୍ତ୍ତନ ହେବ ବୋଲି ?

ଉତ୍ତର :- ପରମ ଉତ୍ସାହ ସହ ମୁଁ ଅନେକ କିଛି ନୂଆ କାମ ହାତକୁ ନେବା ପାଇଁ ଚାହିଁଥିଲି ଏବଂ ଅନେକ ପଡ଼ିରହିଥିବା କାମକୁ ତ୍ୱରାନ୍ୱିତ କରିବାକୁ ବସିଥିଲି । କିନ୍ତୁ ଯଥାଶୀଘ୍ର ମୁଁ ମୋର ଉଚ୍ଚାଭିଳାଷକୁ ତଳକୁ ଖସେଇ ଆଣିବା ପାଇଁ ବାଧ ହେଲି । ବୁଝିଲି ଯେ ଅତି-ସୀମିତ ସ୍ୱାତଂତ୍ର୍ୟ ଏବଂ ଅତି-ସୀମିତ ସମ୍ବଳକୁ ନେଇ ଏକାଡ଼େମୀର କାର୍ଯ୍ୟକ୍ରମକୁ ଯେତିକି ବଢ଼େଇ ନେଇ ହେଉଛି, ସେତିକିରେ ସନ୍ତୁଷ୍ଟ ହୋଇରହିବା ବୁଦ୍ଧିମାନର ଲକ୍ଷଣ ।

ପ୍ରଶ୍ନ (୨୧) :- ମନେ ହେଉଛି ବୟସ ଆପଣଙ୍କର ଅଧିକ ହୋଇଥିଲେ ବି ଆପଣ ଦିବ୍ୟ କିଶୋର ପରି ଏବେ ମଧ ଲେଖନୀ ଚାଳନା କରୁଛନ୍ତି ?

ଉତ୍ତର :- ନା, ଆଗଭଳି ଇଚ୍ଛାନୁଯାୟୀ ଲେଖିପାରୁ ନାହିଁ । ଥକି ଯାଉଛି । କିନ୍ତୁ କଣ କରାଯିବ ? ଯାହା ପୂର୍ବରୁ କହିଛି ଲେଖିବା ମୋ ପାଇଁ ଏକ ଦୁର୍ବିସହ ତାଡ଼ନା, କିନ୍ତୁ ଦେଖୁଛି ପାର ଯେ 'ସମୟ ନାହିଁ' ।

ପ୍ରଶ୍ନ (୨୧) :- ଆପଣଙ୍କ ଭବିଷ୍ୟତ ଯୋଜନା କଣ ?

ଉତ୍ତର :- କୌଣସି ନିର୍ଦ୍ଦିଷ୍ଟ ଯୋଜନା ନାହିଁ । ତେବେ ନିଜର ମୌଳିକ ରଚନା ଛଡ଼ା ମୁଁ ଡ. ଜଗନ୍ନାଥ ପ୍ରସାଦ ଦାସଙ୍କ ସହଯୋଗରେ ହାତ ଦେଇଥିବା ଅନେକ ବର୍ଷ ତଳର ଗୋଟିଏ ସଂକଳନ - ସଂପାଦନା ଗତ ପ୍ରକଳ୍ପକୁ କେବେ ପୁରା କରି ଆପ୍‌ଣମାନଙ୍କ ପାଖରେ ପହୁଁଚେଇ ଦେଇପାରିବି ବୋଲି ବ୍ୟସ୍ତ ହୋଇ ଉଠିଲିଣି । ପ୍ରକଳ୍ପର ନାଆଁ "Oriya Writing Today"

ଯେଉଁଥିରେ ଆମେ କଥା - କବିତା ନାଟକ ଆଦି ବିଭିନ୍ନ ଧାରାରେ ପ୍ରବାହିତ ଏବଂ ଉଚ୍ଛଳ ଆଧୁନିକ ଓଡ଼ିଆ ସାହିତ୍ୟକୁ ଗୋଟିଏ ଗ୍ରନ୍ଥାବଳୀ ମାଧ୍ୟମରେ ପ୍ରକାଶିତ କରିବାକୁ ଚାହୁଁ, ସର୍ବଭାରତୀୟ ପାଠକପାଠିକା ମାନଙ୍କ ଅବଗତି ପାଇଁ ।

ପ୍ରଶ୍ନ (୨୨) :- ଆପଣ ଗଳ୍ପ ନା ଉପନ୍ୟାସ ରଚନା କରିବାକୁ ଅଧିକ ପସନ୍ଦ କରନ୍ତି ?

ଉତ୍ତର :- 'ଅଧିକ ପସନ୍ଦ' ର ପ୍ରଶ୍ନ ଉଠୁ ନାହିଁ ମୋ ପାଇଁ । ମୁଁ ଗଳ୍ପ, ଉପନ୍ୟାସ, କବିତା, ନାଟକ ଆଦି ପ୍ରତ୍ୟେକ ସୃଜନାତ୍ମକ ତଥା ଚିନ୍ତାମୂଳକ ସାହିତ୍ୟର ରଚୟିତା ହେବାକୁ ଚାହିଁଛି । ପ୍ରତ୍ୟେକର ଭିନ୍ନ ଆନନ୍ଦରେ ଧନୀ ହେବାକୁ ଚାହିଁଛି । ବୋଧହୁଏ କୌଣସି ଲୋକ ଏହି ଦୂରଭିଳାଷରୁ ମୁକ୍ତ ନୁହେଁ । ତେବେ ସୀମିତ ସମୟ ଏବଂ ନିଜର ଯୋଗ୍ୟତା ହେତୁ ମୁଁ କେଉଁ ବାଟରେ କେତେଦୂର ଆଗେଇ ଯାଇପାରିଲି (ଅଥବା ସେଥିର ପାଖ ମାଡ଼ି ପାରିଲି ନାହିଁ, ଯଥା ନାଟକ) ସେ କଥା ଭିନ୍ନ ।

ପ୍ରଶ୍ନ (୨୩) :- ଓଡ଼ିଆ କଥା ସାହତ୍ୟ, ବିଶେଷତଃ ଉପନ୍ୟାସର ସାଂପ୍ରତିକ ସ୍ଥିତି ଓ ଭବିଷ୍ୟତ ସଂପର୍କରେ କଣ ଚିନ୍ତା କରୁଛନ୍ତି ?

ଉତ୍ତର :- ସାହିତ୍ୟ ପଦବାଚ୍ୟ ଓଡ଼ିଆ ଲେଖାର ଆଦର ଓ ଚାହିଦା କ୍ରମଶଃ କମିଯାଉଛି, ଏ ବିଷୟରେ ମୁଁ ନିଃସନ୍ଦେହ ଏବଂ ଏହା ଦୁର୍ଭାଗ୍ୟଜନକ । କିନ୍ତୁ ଏହି ପରିପ୍ରେକ୍ଷୀରେ କଥା ସାହିତ୍ୟ ଅଥବା ଉପନ୍ୟାସର ଭବିଷ୍ୟତ ଅଧିକ ଉଦ୍‌ବେଗଜନକ ବୋଲି ମୋର ମନେ ହୁଏ ନାହିଁ । ଏହାର କାରଣ କ'ଣ ଏବଂ ପ୍ରତିକାରର ଉପାୟ କେଉଁ ପ୍ରକାର, ତାର ଅଲୋଚନା ସମୟସାପେକ୍ଷ । ତେଣୁ ଏଠି କେବଳ ଏତିକି କହିବାକୁ ଚାହେଁ, ସଂକ୍ଷେପରେ:- (୧) ପ୍ରତ୍ୟେକ ସାହିତ୍ୟପ୍ରେମୀର ଲେଖକ, ପାଠକ, ପ୍ରକାଶକ ତଥା ଓଡ଼ିଆ ସଂସ୍କୃତିର ପୃଷ୍ଟପୋଷକ ବୋଲାଉଥିବା ଲୋକପ୍ରିୟ ସରକାରଙ୍କ ଦାୟିତ୍ୱ ରହିଛି ଏଦିଗରେ । ସେହେତୁ ଆମେ ବିଧିବଦ୍ଧ ଭାବରେ ଏକାଠି ହୋଇ ଅବସ୍ଥାକୁ ସୁଧୁରେଇବାର ଚେଷ୍ଟା କରିପାରନ୍ତେ ନାହିଁ ? (୨) ସାହିତ୍ୟକ ସଭାସମିତିରେ ସ୍ତୁତିଚାରଣ ଓ ପୂଜ୍ୟପୂଜାର ଭୂମିକା ତଥା ସମବେତ ହେବାର ଆନନ୍ଦକୁ ଅସ୍ୱୀକାର କରିହେବ ନାହିଁ । କିନ୍ତୁ ଯଥାର୍ଥ ଆଳାପ - କେତେଦୂର ହୋଇପାରୁଛି ଆମ ଭିତରେ ? ଆଉ ସେତିକି ନ ହେଲେ ଆମେ କେମିତି ଆଶ୍ୱସ୍ତ ହୋଇପାରିବା ଯେ ଆମ ସାହିତ୍ୟର ପ୍ରବାହକୁ ମଧ୍ୟ ପ୍ରଗତି ବୋଲି କୁହାଯିବ ଏବଂ ତାହା ଅଧିକରୁ ଅଧିକ ଆଦର ଓ ସମ୍ମାନର ଅଧିକାରୀ ହେବା ଉଚିତ୍ ।

ପ୍ରଶ୍ନ (୨୪) :- ଆପଣଙ୍କ ଗଳ୍ପ/ଉପନ୍ୟାସ ବିଭିନ୍ନ ଭାରତୀୟ ଭାଷାରେ ଅନୂଦିତ ହେବା ସହ ଆନ୍ତର୍ଜାତିକ କ୍ଷେତ୍ରରେ ମଧ୍ୟ ଆଦର ଲାଭ କରିଛି, ଆପଣଙ୍କ ଅଭିମତ ?

ଉତ୍ତର :- ଏହା ସହଜେ ମୋ ପାଇଁ ଯଥା ଓଡ଼ିଆ ସାହିତ୍ୟ ପାଇଁ ଆନନ୍ଦର ବିଷୟ । ଅଭିମତ କଣ ଦେବି ? କେବଳ ଏତିକି ଯେ ମୋତେ ଏବଂ ଅନ୍ୟ କେତେକ ଓଡ଼ିଆ ଲେଖକ ଲେଖିକାମାନଙ୍କୁ ଯେଉଁ ସୁଯୋଗ ମିଳିଛି ଏ ଦିଗରେ ତାହା ଅନେକ ଅନ୍ୟ ମାନଙ୍କୁ

ମିଳି ନାହିଁ । ତେଣୁ ଓଡ଼ିଆ ସାହିତ୍ୟର ଅଧିକରୁ ଅଧିକ ଅନୁବାଦ ଏବଂ ପ୍ରସାର ଆବଶ୍ୟକ ଯେପରିକି କେହି (ଆମ ପୂର୍ବସୂରୀମାନଙ୍କ ସମେତ) ଏହି ସୁଯୋଗରୁ ବଂଚିତ ହେବେ ନାହିଁ । ହଁ, ଏହି ପରିପ୍ରେକ୍ଷୀରେ କହିରଖେ ମୋର ବନ୍ଧୁମାନଙ୍କ ଅବଗତି ପାଇଁ ଯେ ମୋର ଯେଉଁ ଅନୂଦିତ ଇଂରାଜୀ ଗଳ୍ପ ସଂକଳନ "The Journey : stories by K.C. Das" ଆମେରିକାର Michigan University Press ଙ୍କ ଦ୍ୱାରା ପ୍ରକାଶିତ ହୋଇଛି, ଭାରତର Penguin Books (India) Pvt. Ltd ଏବେ ତାର ଗୋଟିଏ ଭାରତୀୟ ସଂସ୍କରଣ ଛପାଇବାକୁ ଆଗ୍ରହ ପ୍ରକାଶ କରିଛନ୍ତି । ତେଣୁ ଆଶାକରାଯାଏ ଯେ ଏହି ବହିଟି ଯଥା ଶୀଘ୍ର ସୁଲଭ ମୂଲ୍ୟରେ ଭାରତରେ ମଧ୍ୟ ମିଳିପାରିବ ।

ପ୍ରଶ୍ନ (୨୫) :- ଆପଣ ଗଳ୍ପ ବା ଉପନ୍ୟାସ ଲେଖିଲାବେଳେ କୌଣସି ସଂକଟର ସମ୍ମୁଖୀନ ହୁଅନ୍ତି କି ?

ଉତ୍ତର :- ନାଇଁ ତ ? ବେଳେବେଳେ ହୁଏତ କୌଣସି ପାରିବାରିକ କିମ୍ୱା ବୃତ୍ତିଗତ କାରଣରୁ ମୋ ଲେଖନୀ ଶୀଥିଳ ହୋଇଯାଇଛି କିଛି ସମୟ ପାଇଁ, କିନ୍ତୁ ସେହି ପ୍ରକାର ବାଧା ବିଘ୍ନକୁ 'ସଂକଟ' ବୋଲି କହି ହେବ ନାହିଁ ।

ପ୍ରଶ୍ନ (୨୬) :- ଲେଖକ ହେବା ଭାଗ୍ୟ ନା ବିଧିନିର୍ଦ୍ଦେଶ, ନା ନିଜର ସାଧନା ବଳରେ ଜଣେ ଲେଖକ ହୋଇ ପାରିବ ?

ଉତ୍ତର :- ମୋ ମତରେ 'ନହି ସୁପ୍ତସ୍ୟ ସିଂହସ୍ୟ ପ୍ରବିଶନ୍ତି ମୁଖେ ମୃଗାଃ' । ପ୍ରଥମେ ସିଂହର କ୍ଷୁଧା ଥିବା ଆବଶ୍ୟକ, ତହୁଁ ତାର ଅବିରତ ଉଦ୍ୟମ, ସେହି କ୍ଷୁଧାର ନିବାରଣ ପାଇଁ । ସେଣିକି ଭାଗ୍ୟଲକ୍ଷ୍ମୀଙ୍କ ଦୟା ।

ପ୍ରଶ୍ନ (୨୭) :- ଆପଣଙ୍କର କିଛି ସ୍ମରଣୀୟ ଅନୁଭବ ?

ଉତ୍ତର :- ଅନୁଭବର ସାରାଂଶ ହେଉଛି ଯେ ପିଲାଦିନୁଁ ମୋର ସାହିତ୍ୟ ପ୍ରତି ବିଶେଷ ଆଗ୍ରହ ରହିଛି ଏବଂ ମୁଁ ଅତ୍ୟଧିକ କଳ୍ପନାପ୍ରବଣ ବୋଲି ମୋତେ କୁହାଯାଇଛି, ଯାହା ସବୁବେଳେ ପ୍ରଶଂସାମୂଳକ ନଥିଲା । ଗୋଟିଏ ପିଲାଦିନର ଅନୁଭୂତି ସ୍ମରଣଯୋଗ୍ୟ - 'ବର୍ଷାଋତୁ' ନାମକ ଗୋଟିଏ ରଚନାରେ ମୁଁ ଧ୍ୱନି ଏବଂ ରୂପର ସଂସାରକୁ ନେଇ ଏତେ ଭୋଳ ହୋଇଯାଇଥିଲି ଯେ ବର୍ଷା କାହିଁକି ହୁଏ ଏବଂ ସେଥିରେ ଲାଭ କ୍ଷତି ବିଷୟରେ କିଛି କହିବାକୁ ଭୁଲି ଯାଇଥିଲି । ସେହେତୁ ମୋର ଟିଉସନ୍ ମାଷ୍ଟର ରାଗିକରି ମୋର ରଚନା ଉପରେ ଗୋଟିଏ ବିରାଟ ଛକି ପକାଇ କହିଥିଲେ ଯେ ମୋର ଦେଇ ପାଠ ହେବ ନାହିଁ, ମୁଁ ଗୋଟିଏ ମହାମୂର୍ଖ ହୋଇ ରହିଯିବ ।

ପ୍ରଶ୍ନ (୨୮) :- ଆମ ରାଜ୍ୟ ତଥା ଦେଶରେ ସାହିତ୍ୟ ପାଇଁ ପ୍ରଦାନ କରାଯାଇଥିବା ବିଭିନ୍ନ 'ପୁରସ୍କାର' ସଂପର୍କରେ ବିଭିନ୍ନ ଟିକା/ଟିପ୍ପଣୀ ପ୍ରକାଶ ପାଉଛି - ଏ ସଂପର୍କରେ ଆପଣଙ୍କ ପ୍ରତିକ୍ରିୟା ?

ଉତ୍ତର :- ଏ ସଂପର୍କରେ ମୁଁ ଏତିକି କହିବି ଯେ, (୧) ପୁରସ୍କାରର ମର୍ଯ୍ୟାଦା ଦୃଷ୍ଟିରୁ ସେଗୁଡ଼ିକ କେବଳ ରାଜ୍ୟ ଏବଂ ରାଷ୍ଟ୍ରୀୟ ସ୍ତରରେ ସୀମିତ ହୋଇରହୁ । (୨) ସେଥିର ପୁରସ୍କାର ପଦ୍ଧତି ବିଷୟରେ ସମସ୍ତେ ଜାଣନ୍ତୁ ଏବଂ ସେଥିରେ ଏଭଳି କୌଣସି ବ୍ୟବସ୍ଥା ନଥାଉ ଯାହାଦ୍ୱାରା ନିରପେକ୍ଷ ବିଚାରରେ ଆଞ୍ଚ ଲାଗିପାରେ । (୩) କେବଳ ହିନ୍ଦୀ କିମ୍ବା ଇଂରାଜୀ ଅନୁବାଦ ଭିତ୍ତିରେ ବିବେଚିତ ହୋଇପାରିଥିବା ସାହିତ୍ୟକୁ ଆଶ୍ରାକରି ଏଇଟି ଏବର୍ଷର ସର୍ବୋତ୍କୃଷ୍ଟ ଭାରତୀୟ ସାହିତ୍ୟ ବୋଲି କୁହାଯିବା ଅନ୍ୟାୟ । କାରଣ ନାନାଦି କାରଣରୁ ଅନେକ ସମକାଳୀନ କୃତି, ସେହି ପ୍ରକାର ଅନୁବାଦର ସୌଭାଗ୍ୟ ଲାଭ କରିପାରି ନାହିଁ ।

ପ୍ରଶ୍ନ (୨୯) :- ଆପଣଙ୍କ ଜୀବନର ସବୁଠାରୁ ଆନନ୍ଦର ଦିନ ?

ଉତ୍ତର :- ମୋର ପ୍ରଥମ ସନ୍ତାନର ଜନ୍ମ ମୋ ପାଇଁ ଏକ ଅତି ବିଶିଷ୍ଟ ଆନନ୍ଦର ଘଟଣା ବୋଲି ମୁଁ କହିବି ।

ପ୍ରଶ୍ନ (୩୦) :- ଆପଣଙ୍କ ସାହିତ୍ୟ ପାଠକମାନଙ୍କ ସଂପର୍କରେ ଆପଣଙ୍କ ଅନୁଭବ ?

ଉତ୍ତର :- ପାଠକ ପାଠିକାମାନେ ତ ମୋର ଗରାଖ ଏବଂ ମଝିରେ ମଝିରେ ସେମାନଙ୍କ ଠାରୁ ମିଳୁଥିବା ପ୍ରଶଂସାପତ୍ର ମୋର ଅମୂଲ୍ୟ ଧନ । ତେଣୁ ସେମାନଙ୍କ ବିଷୟରେ ମତ କଣ କହିବି ? ମୋର ଦୁଃଖ କେବଳ ଏତିକି ଯେ ସାକ୍ଷାତରେ ଯେଉଁ ଆଦାନ ପ୍ରଦାନର ଆବଶ୍ୟକତା ରହିଛି ଆମ ଭିତରେ ତାହା ଯଥାବିଧି ଅନୁଷ୍ଠିତ ହୋଇପାରୁ ନାହିଁ ଏବଂ ପୁଣି କହିବି ଯେ, ସେଥିପାଇଁ ଆମେ ସମସ୍ତେ ଦାୟୀ ।



## ଉପସ୍ଥାପନାର ପ୍ରତିଲିପି

# ମୁଁ କାହିଁକି ଲେଖେ

### ('ବିଶ୍ୱଭାରତୀ' ଶାନ୍ତିନିକେତନ ଓଡ଼ିଆ ବିଭାଗ ଦ୍ୱାରା ରଚିତ ବାର୍ତ୍ତାଳାପ)

**କିଶୋରୀ ଚରଣ ଦାସ**

ମୌଳିକ ଅର୍ଥରେ ମୁଁ ଅଗଣିତ ଅନ୍ୟ ଲେଖକମାନଙ୍କଠାରୁ ଭିନ୍ନ ନୁହେଁ । ତେଣୁ ଏହି ସମ୍ବନ୍ଧରେ ପ୍ରଥମେ କେତୋଟି ପ୍ରଚଳିତ ଥିଓରିର ସାମାନ୍ୟକଥନ ଦେବାକୁ ପଡ଼ିବ ।
(କ) The theory of play. ଏହା ଗୋଟିଏ ଧରଣର ଖେଳ । ବାସ୍ତବ ଜୀବନରୁ ଦୂରେଇ ଯାଇ ଏଭଳି ମିଛିମିଛିକା ହାତୀଘୋଡା ଧରି ଖେଳିବାକୁ ଭଲ ଲାଗେ ।
(ଖ) The theory of fear. ମୁଁ ଜୀବନକୁ ଆବୁରି ପାରେନାହିଁ । ତାର କାରଣ ଓ ଉଦ୍ଦେଶ୍ୟକୁ କଳି ପାରେ ନାହିଁ । ମୁଁ ଜୀବନର ଛାଇକୁ ଡରେ । ତେଣୁ ଭୀତ ବିଭ୍ରାନ୍ତ ହୋଇ ମୁଁ କିଛି କରିବାକୁ ଚାହେଁ, ଯେଉଁଥିରୁ ନୀତି ଓ ସ୍ଥିତିର ଆଶ୍ୱାସନା ମିଳିବ ।
(ଗ) The theory of inferiority Complex. ପ୍ରତି ଲେଖକର କିଛି ନା କିଛି ନପାରିଲା ପଣ ରହିଛି । ନିଜର ଅଜାଣତରେ ସେ ସେହି ଦାଗକୁ ଲିଭାଇବାକୁ ଚାହେଁ, ସେହି ତପ୍ତ ବୈତରଣୀକୁ ଡ଼େଇଁବାକୁ ଚାହେଁ ଏବଂ ତଦ୍ୱାରା ସାଧନର ସୃଷ୍ଟି ହୁଏ ।
(ଘ) The theory of divine urge. ମୁଁ ଅମୃତର ପୁତ୍ର, ଅସୀମରୁ ଚେନାଏ । ମୁଁ ସେହି ଅମୃତ-ଅସୀମକୁ ଛୁଇଁବାକୁ ଚାହେଁ । ଫଳରେ ମୁଁ ଭଗବାନଙ୍କ ଉଦାହରଣ କରେ ଓ ଗୋଲ୍ ଗୋଲ୍ ବ୍ରହ୍ମାଣ୍ଡ ତିଆରି କରେ ।
(ଙ) ପ୍ରଶ୍ନଟି ଅବାନ୍ତର । ମୋତେ ଲେଖିବାକୁ ଭଲ ଲାଗେ, ସେଇଥିପାଇଁ ମୁଁ ଲେଖେ । ଚିନ୍ତାର ବିଷୟ ମୋର କେମିତି ଲେଖିବା ଉଚିତ, ସମାଜ ମୋ ଠାରୁ କଣ ଚାହେଁ, ଇତ୍ୟାଦି ।
ମୋର ନିବେଦନ :

ମୁଁ ଶେଷୋକ୍ତ ଅଣ-ଉତ୍ତରକୁ ମାନିବି ନାହିଁ । ପ୍ରଶ୍ନଟିର ଅର୍ଥ ହେଉଛି ମୁଁ କେଉଁ କାରଣରୁ ଲେଖେ । ପ୍ରତ୍ୟେକ ମାନବିକ ପ୍ରକ୍ରିୟା ପରି ମୋ ଲେଖନର ନିଶ୍ଚୟ ମୌଳିକ କାରଣ ରହିଛି । ମୁଁ ସେଇ ଜିଜ୍ଞାସାର ପାଖ ମାଡ଼ିବି ନାହିଁ, ଅଥଚ ମୋ ଲେଖାର ଉଦ୍ଦେଶ୍ୟ ନେଇ ଘଣ୍ଟା ଚକଟା କରିବି, ଏଭଳି ଥିଓରିର ସାରବତ୍ତା ମୋର ଅବୋଧ । ଯଦୁ କାହିଁକି

ଲେଖେ, ମଧୁ କାହିଁକି ଫୁଲଗଛ ଲଗାଏ, ସାଧୁ କାହିଁକି ଘର ତୋଳେ ଏଭଳି ପ୍ରଶ୍ନ ପଚାରିବି ନାହିଁ, ଅଥଚ ଦେଖିବି ଯଦୁ ସମାଜର ତଟକା ବିଜ୍ଞାପନ ଦେଇଛି କି ନାହିଁ ମଧୁର ଫୁଲରେ ନିର୍ଦ୍ଦିଷ୍ଟ ଲୋହିତ ରଙ୍ଗ ଅଛି କି ନାହିଁ, ସାଧୁର ଘରେ ଭୋଜିଭାତ କରି ହେବ ନାହିଁ !

ଅନ୍ୟ ଉତ୍ତରଗୁଡ଼ିକ ଗଙ୍ଗା-ଯମୁନା ଯୋଡ଼ିଏ ଧାରାରେ ପ୍ରବାହିତ ବୋଲି ମନେହୁଏ । ଗୋଟିଏ ପରିପୂରଣ ଏବଂ ଅନ୍ୟଟି କ୍ଷତିପୂରଣର ଧାରା । ଦୁହିଁକି ମଧ୍ୟରେ ଗୁଣାତ୍ମକ ପାର୍ଥକ୍ୟ ନାହିଁ, କେବଳ ବର୍ଣ୍ଣର ପ୍ରଭେଦ । ଗୋଟିଏ ମତରେ ମୁଁ ଉପବାସୀ ନୁହେଁ, ତେଣୁ ମୋର ଭୋଜ୍ୟକୁ ରୂପା ଥାଳୀରେ ବାଢ଼ି ନ ଦେଲେ ପେଟ ପୂରିବ ନାହିଁ । ଅନ୍ୟ ମତରେ ମୁଁ ହତଭାଗା, ତେଣୁ ଯେଉଁ କଦନ୍ନ ମିଳୁଛି ସେତିକ ରୂପା ଥାଳୀରେ ବାଢ଼ି ନ ଦେଲେ ଜୀବନ ବ୍ୟର୍ଥ । ଅସଲ କଥା ହେଲା ହେଇ ରୂପେଲି ଆବେଗ, ଜୀବନଧାରଣର ସାଧାରଣ ଆବଶ୍ୟକତାକୁ ଅସ୍ୱୀକାର କରି 'ଆହୁରି କିଛି' ପାଇବାର ବ୍ୟାକୁଳତା, ନ ହେଲେ ପେଟ ପୂରିବ ନାହିଁ ।

ମୋତେ ଯଦି ପଚାରିବେ ମୁଁ କହିବି ଯେ ନ ଲେଖିଲେ ମୋର ପେଟ ପୂରିବ ନାହିଁ । ଜଣେ ଆଧୁନିକ ଲେଖକ Jesse Stuartଙ୍କ ଭାଷାରେ - I have to write stories or I believe I would die. It comes as natural as dreaming, eating. ସେତିକି ଜାଣିଲେ ଯଥେଷ୍ଟ । ସେଥିରୁ ଆପଣ (ଗ) ଚିହ୍ନିତ ଉତ୍ତର ଅନୁଯାୟୀ ଭାବିପାରନ୍ତି ଯେ ମୋର ଉଚ୍ଚାଭିଳାଷ ପ୍ରଶଂସାର ପାତ୍ର । ଅଥବା (କ) ଓ (ଖ) ଅନୁଯାୟୀ ଭାବିପାରନ୍ତି ଯେ ମୁଁ ପଳାୟନପନ୍ଥା ଓ ଭୀରୁ । ଯାହା ଭାବନ୍ତୁ ପଛକେ ମନେରଖନ୍ତୁ ଯେ ମୋର ଏହି ରୂପା ଥାଳୀରେ ଖାଇବାର ଆବେଗ ସତ୍ୟ, ସତ୍ୟ, ତ୍ରିବାର ସତ୍ୟ । ପୁଣି ମନେ ରଖନ୍ତୁ ଯେ ଏହି ଆବେଗ ସର୍ବନାଶୀ ଓ ସର୍ବଗ୍ରାସୀ, ଏହାର ଜ୍ୱାଳା ମର୍ମନ୍ତୁଦ ।

ଅବଶେଷରେ ମୋ ପାଇଁ ଟୋପାଏ ଲୁହ ଝରାନ୍ତୁ । କାରଣ ମୁଁ ଜାଣେ ଯେ ମୁଁ ରୂପାଥାଳୀ ପାଇବି ନାହିଁ ।

ସଂଦେହ । ଆପଣଙ୍କ ମନରେ ସଂଦେହ ଆସୁଛି ଯେ ସାମାନ୍ୟ ଲେଖକ ଏହି କିଶୋରୀଚରଣ ଦାସ ଆଦର୍ଶ ଲେଖକର ଲକ୍ଷଣ ବଖାଣୁଛି । ଏଭଳି ଆବେଗ ଓ ବେଦନା Pasion and Pain. ସଚରାଚର ଦେଖାଯାଏ ନାହିଁ । ହୋଇଥିବ । ମୁଁ କେବଳ ଏତିକି କହିବି ଯେ ମୋର ଯେତିକି ଊଣା ଅଛି, ମୁଁ ସେତିକି ଛୋଟ ଲେଖକ, ମୋର ଦରିଦ୍ରତା ସେତିକି ପରିମାଣରେ ମୋର ସାହିତ୍ୟରେ ଫୁଟି ଉଠୁଥିବ । ତୀକ୍ଷ୍ଣ ବୁଦ୍ଧିଗତ ସମାଲୋଚନା ଦ୍ୱାରା ଆପଣ ହୁଏତ ଜାଣିପାରୁଥିବେ ଯେ ମୋ ସାହିତ୍ୟର ସ୍ଥାନେସ୍ଥାନେ ଏହି ସବୁ ତ୍ରୁଟି ରହିଛି, ଯଥା- (୧) ମୁଁ ପାଣ୍ଡିତ୍ୟର ବାହାଦୂରୀ ନେବାକୁ ଚେଷ୍ଟା କରିଛି (୨) ମୁଁ ମୋର 'ପ୍ରଗତିଶୀଳ'ମତବାଦକୁ ଜଣାଇବାକୁ ଚାହିଁଛି, (୩) ସଂଖ୍ୟାଗରିଷ୍ଠ ସୁସ୍ଥିବାଦୀ ପାଠକମାନଙ୍କୁ ବାଧିବ ନାହିଁ ତାର ବ୍ୟବସ୍ଥା କରିଛି, ଇତ୍ୟାଦି । ଅନ୍ୟ ଅର୍ଥରେ ଆପଣ ଜାଣିପାରୁଥିବେ ଯେ

ମୋର ଏହି ଆବେଗ ଷୋଳଅଣା ଅସାଧାରଣ ଓ ଅନାବଶ୍ୟକ ନୁହେଁ । ସେଥିରେ ସାଧାରଣ ଓ ଆବଶ୍ୟକ ସ୍ୱାର୍ଥ ରହିଛି । ମୋ ସାହିତ୍ୟ Conceit ଅର୍ଥାତ୍ ଅହମିକା ଦୋଷରେ ଦୂଷିତ । ତାହା କେତେଦୂର ଦୂଷିତ ସେ ବିଚାର ଆପଣମାନଙ୍କ ଉପରେ ।

**(୨) ମୁଁ ଏମିତି କାହିଁକି ଲେଖେ ?**

ମୋର ପ୍ରିୟ ବନ୍ଧୁ ଖଗେଶ୍ୱର ବାବୁଙ୍କ ବରାଦ୍ ଯେ ମୁଁ ଏହି ସଂପର୍କରେ କିଛି କହିଲେ ଆଧୁନିକ ସାହିତ୍ୟର ଯତ୍‌ସାମାନ୍ୟ ସୂଚନା ମିଳିବ । କିନ୍ତୁ ଏହି ପ୍ରକାର ପ୍ରଶ୍ନଟି ଅତି ଜଟିଳ । କାରଣ ମୋ ନିଜର ଚରିତ୍ର ଓ ଅଭିଜ୍ଞତାକୁ ଜନସମ୍ମୁଖରେ କାଢ଼ି ଦେବାକୁ ପଡ଼ିବ । ପ୍ରଥମେ କଥା ହେଲା - ମୁଁ ପାରିବି ତ ? ମୋର ନିଜକୁ ବିଶ୍ଳେଷଣ କରିବାର କ୍ଷମତା ଅଛି ତ ? ଦ୍ୱିତୀୟରେ ଯେତିକି କ୍ଷମତା ଅଛି ତା'ର ସଦ୍‌ବ୍ୟବହାର କରିବାକୁ ଲାଜ ମାଡିବ ନାହିଁତ ? ଆପଣମାନେ କଣ ଭାବିବେ ?

ଯାହାହେଉ ମୋର ବୁଦ୍ଧିଗତ ଓ ଭାବଗତ ଅକ୍ଷମତା ସତ୍ତ୍ୱେ ମୁଁ ମୋର ବ୍ୟକ୍ତି ଚେତନାର କେତୋଟି କଖଗ, - factual data - ଦେବାକୁ ଯାଉଛି । ସେଥିରୁ ଆପଣ ଯାହା ବୁଝିବେ ।

ମୁଁ ୪୬ ବର୍ଷ ପୂର୍ବେ କଟକର ଗୋଟିଏ ସମ୍ଭ୍ରାନ୍ତ ତତ୍‌କାଳୀନ ଉପର-ମଧ୍ୟବିତ୍ତ ସମାଜରେ ଜନ୍ମଗ୍ରହଣ କରିଥିଲି । ପିଲା ଦିନର ସ୍ମୃତି ଅଛି ଯେ ମୁଁ ମୋର ଶାନ୍ତଶିଷ୍ଟ ସ୍ୱଭାବ ପାଇଁ ପ୍ରଶଂସା ପାଉଥିଲି ଅଥଚ ଲାଜକୁଳାପଣ ଓ ଅଳସୁଆମି ଯୋଗୁଁ ଗାଳି ଖାଉଥିଲି । ଘରେ ବସି ଏଣୁ ତେଣୁ ଭାବିବା ଓ ଏଣୁ ତେଣୁ ଲେଖିବା ମୋର ବଦଭ୍ୟାସ ରୂପେ ଗଣା ଯାଉଥିଲା । ମୋର ମନେ ଅଛି ଯେ ଥରେ ମୋର ଘର ମାଷ୍ଟ୍ରେ ମୋତେ 'ବର୍ଷାଋତୁ' ବିଷୟରେ ଗୋଟିଏ ରଚନା ଲେଖିବାକୁ କହିଥିଲେ । ମୁଁ ରଚନାରେ ବର୍ଷା କାହିଁକି ହୁଏ, ବର୍ଷା ହେତୁ କି କି ଉପକାର ଓ ଅପକାର ହୁଏ ସେ ସବୁ ନଲେଖି ବର୍ଷାରେ ପାଣି କେମିତି ଟପ୍ ଟପ୍ ପଡ଼େ, ତା ପରେ କେମିତି କଳକଳ ହୋଇ ବହିଯାଏ, ପୋକ ଜୋକମାନେ କେମିତି ସାଲୁବାଲୁ ହୁଅନ୍ତି, ଲୋକମାନେ କେମିତି ଉଷୁମ ଟାଣନ୍ତି ଏଇୟାକୁ ନେଇ ମହାଭାରତ ଲେଖିଥିଲି । ମାଷ୍ଟ୍ରେ ରାଗି ଯାଇ ମୋ ଲେଖାରେ ଛକି ପକାଇଦେଇ କହିଲେ ଯେ ମୋ ମୁଣ୍ଡରେ ଗୋବର ଅଛି । ମୁଁ ମାନିଲି ନାହିଁ । କହିଲି ଯେ ଆପଣ ମୋତେ ଭୂଗୋଳ ଲେଖିବାକୁ କହିନଥିଲେ, ସାହିତ୍ୟରେ ଏମିତି ଲେଖା ହୁଏ । ସେଇଠୁଁ ସେ ବାପାଙ୍କ ପାଖକୁ ଖଣ୍ଡେ ଚିଠି ଲେଖି ଜଣାଇଲେ ଯେ ମୋ ଦ୍ୱାରା ପାଠଶାଠ ହେବ ନାହିଁ, କାହିଁକି ନା ମୁଁ ମନେ ମନେ ଭାବିଛି ଯେ ମୁଁ ଗୋଟାଏ କବି କାଳିଦାସ । ବାପାଙ୍କର ନିର୍ଦ୍ଦେଶ ଅନୁଯାୟୀ ମୁଁ ମାଷ୍ଟ୍ରଙ୍କ ଠାରୁ କ୍ଷମା ମାଗିଲି, କିନ୍ତୁ ମୋର ମନ ବୁଝିଲା ନାହିଁ । ଧର, ମୁଁ କବି ହେବାକୁ ବସିଛି, ସେଥିରେ କ୍ଷତି କଣ ଅଛି ? ବାସ୍ତବିକ ଏହିପରି କେତୋଟି ଘଟଣା ପରେ ମୁଁ ବହୁବାର କବିତା

ଲେଖିବାକୁ ଚେଷ୍ଟା କରିଛି । ପାରି ନାହିଁ । କିନ୍ତୁ ମୁଁ କଳ୍ପନାରେ ମହାକବି ବୋଲାଇଛି, କଳ୍ପନାରେ ଲଜାମଂତ୍ରୀ ଖେଳ ଖେଳିଛି, ଯୁଦ୍ଧ କରିଛି, ଜିତିଛି ଓ ହାରିଛି, କାନ୍ଦିଛି ଓ ହସିଛି । ନିଜକୁ ନିଜେ । ବେଳା ଦ୍ୱିପ୍ରହର । ସ୍ଥାନ- ଏକୁଟିଆ ପଢ଼ା ଘର । ଏଇଥିରୁ ଜାଣିବେ ଯେ ମୋର ଲାଜକୁଳାପଣ ଆତ୍ମକୈନ୍ଦ୍ରିକତା (introversion)ର ଲକ୍ଷଣ ଛଡ଼ା ଆଉ କିଛି ନଥିଲା । ଏବଂ ଏହି ଅବିଗୁଣ ଯୋଗୁଁ ମୁଁ ବ୍ୟବହାରିକ ବର୍ହିଜଗତରୁ ଶଙ୍କି ଯାଇ କଳ୍ପନାର ଆନନ୍ଦକୁ ଲୋଡୁଥିଲି, କବି କାହିଁକି ହୋଇପାରିବି ନାହିଁ ବୋଲି ନିଜକୁ ବ୍ୟତିବ୍ୟସ୍ତ କରୁଥିଲି । ତେବେ ଏହି ଆତ୍ମକୈନ୍ଦ୍ରିକତା ଆସିଲା କେଉଁଠୁ ? ସମ୍ଭ୍ରାନ୍ତ ପରିବାରର ବଡ଼ ପୁଅ ହୋଇଥିବା ଯୋଗୁଁ ବାପାମାଆ ମୋତେ ଏକୁଟିଆ ବାହାରକୁ ଛାଡୁ ନଥିଲେ, ଖରା ବର୍ଷା, 'ଛତରା' ସାଙ୍ଗସାଥୀ ସଂସାରର ନିଷ୍ଠୁର ବାସ୍ତବତାର ସ୍ପର୍ଶରୁ ବଞ୍ଚାଇ ରଖିଥିଲେ, ସେଇଥି ପାଇଁ ? ନା ପୁରାତନ ଫ୍ରୟେଡ଼ବାଦ ଅନୁଯାୟୀ ମୋର ପହିଲି ପାଞ୍ଚ ବର୍ଷ ମଧ୍ୟରେ ବାପା-ମାଆ ସମ୍ବଳିତ ସଂସାରରେ ଯେଉଁ ଅନୁଭୂତି ଆସିଲା ତାରି ଫଳସ୍ୱରୂପ ମୁଁ ଏମିତି ଅବାଗିଆ ହୋଇଗଲି ? କଣ ସେ ଅନୁଭୂତି ? କିଏ କହିବ ?

କୈଶୋର ଓ ପୌଗଣ୍ଡ । ମନସ୍ତତ୍ତ୍ୱବିଦ୍ ମାନେ କହନ୍ତି ଯେ ଏହି ସମୟରେ ମୂଲ୍ୟବୋଧର ମୂଳଦୁଆ କାହିଁକି, କୋଠାବାଡ଼ି ତିଆରି ହୋଇ ସରିଥାଏ । James Harvey Robinson, କହିଛନ୍ତି " We have had time before 15 to take over the standardised sentimate of our elders, to learn all that they know, to accept their views on religion, politics, manners, general proprieties and respectabilities", ତାଙ୍କ ମତରେ କେବଳ ମୁଷ୍ଟିମୟ ଲୋକ ସେମାନଙ୍କର ପରଜୀବନରେ ଏହି ଉତ୍ତୁଙ୍ଗ ଅଟ୍ଟାଳିକାକୁ ଭାଙ୍ଗି ଦେବାକୁ ଚେଷ୍ଟା କରନ୍ତି ଓ ସେହିମାନେ ହିଁ ଚିନ୍ତାର ମୂଳଧନକୁ ବଢ଼ାନ୍ତି । କିନ୍ତୁ ସେ ବୁଝାଇ ପାରି ନାହାନ୍ତି ଯେ ଏହି ମୁଷ୍ଟିମେୟ ଲୋକ କେଉଁଠୁ ଆସନ୍ତି ଏବଂ କେଉଁ କାରଣରୁ ଏମିତି ଗୋଠ ଖଣ୍ଡିଆ ହୋଇ ଫନ୍ଦସନ୍ତ ହୁଅନ୍ତି । ଯାହାହେଉ ପଛକୁ ଫେରି ଚାହିଁ ମୋର ମନେ ହେଉଛି ଯେ ଅନ୍ୟମାନଙ୍କ ପରି ମୋର ମୂଲ୍ୟବୋଧ ଯଥା ସମୟରେ ପ୍ରସ୍ତୁତ ହୋଇ ସାରିଥିଲା । ଭଲମନ୍ଦ ପାପ ପୂଣ୍ୟର ବିଚାର ନିର୍ଦ୍ଦିଷ୍ଟ ଓ ନିରୂପିତ ହୋଇଥିଲା । ପ୍ରଭେଦ ଏତିକି ଯେ ମୁଁ ସେହି ବିଚାରକୁ ସଂସାରର ବାସ୍ତବ ଲୀଳାଖେଳାରେ ବିଗଳିତ ହେବାକୁ ନଦେଇ ତା'ର ସ୍ଥୂଳ ରୂପକୁ ମନ ମଧ୍ୟରେ ଜାବୁଡି ଧରିଥିଲି । ଯେ ଏଇୟା ଭଲ, ତେଣୁ ଏମିତି ହେବା ଉଚିତ । କଳା ଓ ଧଳା ମଧ୍ୟରେ କୌଣସି ସାମଞ୍ଜସ୍ୟ ନାହିଁ, ବୁଝାମଣାର ପ୍ରଶ୍ନ ଉଠୁ ନାହିଁ । ଏହାର ଗୋଟିଏ କାରଣ ମୁଁ ପୂର୍ବରୁ କହିଛି, - ଯେ ମୁଁ ମୋର ଏକୁଟିଆ ଘରେ ଛାଇ ତଳେ ରହିଥିଲି, ବର୍ହିଜଗତରେ ସଂସ୍ପର୍ଶରେ ଆସିବାର ବିଶେଷ ସୁବିଧା ପାଇ ନଥିଲି । ଆଉ

ଗୋଟିଏ ଲକ୍ଷଣ ହେଉଛି ଯେ ଏହି ସମୟରେ ମୁଁ ଜଣେ ଆଦର୍ଶବାଦୀ ବନ୍ଧୁର ସାହାଚର୍ଯ୍ୟ ପାଇଥିଲି । ସେହି ଚଉଦ ପନ୍ଦର ବର୍ଷ ବୟସର ସାଙ୍ଗ ମୋ ମନରେ ମଂଜି ପୋତି ଦେଇଗଲା ଯେ ଆଦର୍ଶ କୁହୁଡ଼ି ନୁହେଁ କି ଦିଗ୍‌ବଳୟ ନୁହେଁ, ପ୍ରତ୍ୟକ୍ଷ ନିଶ୍ଚିତ ସତ୍ୟ ।

କଲେଜ ଜୀବନରେ ବନ୍ଧୁ ଅପସରିଗଲା । ଏବଂ ମୁଁ ପରିବାରର ସୁଶୀତଳ ଛାଇରୁ ଚାଲି ଆସିଲି । ପନ୍ଦର ବର୍ଷରୁ ପଚିଶ ବର୍ଷ ମଧ୍ୟରେ ମୋର ଅଭିଜ୍ଞତାର ପାତ୍ର ଭରିଗଲା ଓ କ୍ରମଶଃ ମୋର ମନେ ହେଲା ଯେ ମୁଁ 'କିଛି ନୁହେଁ' 'ମୁଁ ଚରିତ୍ରହୀନ' ମୁଁ ପାପୀ କାରଣ ମୁଁ ଆଦର୍ଶର କାଣିଚାଏ ଧରି ରଖି ପାରୁ ନାହିଁ । ପ୍ରଥମ କେତେ ବର୍ଷ ମୁଁ ଆତ୍ମଗ୍ଲାନିରେ ସନ୍ତପ୍ତ ହେଲି । ସେତେବେଳର ମୋ ଡାଏରୀ ପଢ଼ିଲେ କେହି ହେଲେ ଭାବିବ ଯେ ଏଭଳି ଲୋକର ଉଦ୍ଧାର ନାହିଁ ।

ଧୀରେ ଧୀରେ ମୋର ଧାରଣା ହେଲା ଯେ ମୁଁ ଏକା ନୁହେଁ, ମୋ ଭଳି ପାପୀ ଅନେକ ଅଛନ୍ତି । କହିବାକୁ ଗଲେ ମୁଁ ଯେଉଁମାନଙ୍କୁ ଜାଣେ ମୋର ଆତ୍ମୀୟ ସ୍ୱଜନ, ସାଥୀ ସହଚର, ସମସ୍ତେ ମୋ ଭଳି । କିନ୍ତୁ ସେମାନେ କଣ ମୋ ପରି କାନ୍ଦୁଛନ୍ତି ? କାହିଁ ନାହିଁ ତ ? ତା ହେଲେ କଣ ମୋର ମୂଲ୍ୟବୋଧ ସଂପୂର୍ଣ୍ଣ ଭୁଲ୍ ? ଆଦର୍ଶ ସତ୍ୟ ନୁହେଁ ? କେହି ତ ସେ କଥା କହୁ ନାହାନ୍ତି ! ସମସ୍ତେ ଏକମତ ଯେ ପ୍ରେମ ସ୍ୱର୍ଗୀୟ, କାମନାକୁ ଧିକ୍, 'ଅହିଂସା ପରମ ଧର୍ମ', ଗୀତା ବଚନ ଜୀବନର ସାର ତଥ୍ୟ ଇତ୍ୟାଦି ଇତ୍ୟାଦି । ସମସ୍ତେ କହୁଛନ୍ତି ଯେ ସେମାନେ ଏହି ଆଦର୍ଶକୁ ମାନନ୍ତି, କିନ୍ତୁ ମଣିଷ ହୋଇଥିବା ଯୋଗୁଁ ବେଳେବେଳେ ଦୁର୍ବଳ ହୋଇପଡ଼ନ୍ତି । ବେଳେବେଳେ - ସତେ !! ମୁଁ ମନେ ମନେ ସେମାନଙ୍କୁ ଛିଗୁଲେଇଲି । ମୋର ସଂଦେହ ରହିଲା ନାହିଁ । ଯେ ସେମାନେ ମିଛ କହୁଛନ୍ତି, ଏହି ତଥାକଥିତ ଦୁର୍ବଳତା ସାର୍ବଜନୀନ ଓ ସର୍ବବ୍ୟାପୀ, ପ୍ରତ୍ୟକ୍ଷ, ପ୍ରତିନିୟତ ।

ମୁଁ ନାନାଦି କାବ୍ୟ ଉପନ୍ୟାସ ପଢ଼ିଲି, ସିନେମା ଥିଏଟର ଦେଖିଲି । ନେତାମାନଙ୍କର ବକ୍ତୃତା ଶୁଣିଲ । ଦେଖିଲି ଯେ ଯାହା ବ୍ୟକ୍ତ ଓ ପ୍ରକାଶିତ ହେଉଛି ତାର ବ୍ୟକ୍ତିଗତ ଆଚରଣ ସହିତ କୌଣସି ସଂପର୍କ ନାହିଁ ।

କ୍ରମଶଃ ଚିନ୍ତାର ଆଉ ଗୋଟିଏ ସ୍ତରକୁ ଉଠିଲି ବା ଖସିଲି । ମୁଁ ଭାବିଲି ଯେ ସେମାନେ ମିଛ କହୁନାହାଁନ୍ତି, ଅଧିକାଂଶ ଲୋକ ସଚେତନ ମନରେ ଭାବନ୍ତି ଯେ (କ୍ଷଣିକ ଦୁର୍ବଳତା ଛଡ଼ା) ସେମାନେ ସତ୍‌ରେ ଚଳନ୍ତି । ଜଗୁଦାଦା ନିଃସନ୍ଦେହ ଯେ ତାଙ୍କ ମନରେ ମଳିଧୂଳି ନାହିଁ, ବନୁଦାଦା ଅସଲ ପାଜି । ଦୂରରୁ ସେଇୟା ମନେ ହୁଏ । ବନୁଦାଦାଙ୍କ ସଂସ୍ପର୍ଶରେ ଆସିଲେ ଦେଖିବାକୁ ମିଳେ ଯେ ବନୁଦାଦାଙ୍କର କିଛି ଦୋଷ ନାହିଁ, ଜଗୁଦାଦା ଅସଲ ସଇତାନ୍ ।

ଏ କଣ ହେଲା ? ପ୍ରଥମ ସିଦ୍ଧାନ୍ତ - ପ୍ରକୃତରେ କେହି ଭଲ ନୁହନ୍ତି । ଦ୍ୱିତୀୟ ସିଦ୍ଧାନ୍ତ - ପ୍ରକୃତରେ କେହି ଖରାପ ନୁହନ୍ତି । ହିସାବ ମିଳୁ ନାହିଁ ତ !

ଆଜି ଯାଏଁ  ହିସାବ ମିଳାଇ ପାରି ନାହିଁ । ଏବଂ ଏହି ଅଙ୍କକଷାର ଦାୟିତ୍ୱ ମୋର ସାହିତ୍ୟକୁ ରଂଜିତ କରିଛି ବୋଲି ମୋର ମନେ ହୁଏ । ମୋର ଚରିତ୍ରମାନଙ୍କ କାର୍ଯ୍ୟକଳାପ, ଭାବନା କଳ୍ପନାର ଖିଅ ଧରି ମୁଁ ବୋଧ ହୁଏ ଏମିତି କିଛି କହିବାକୁ ଚାହିଁଛି ।
(୧) ଦେଖିଲେ ତ ? ଅମୁକ ବାବୁ ଓ ଅମୁକ ଦେବୀ ପରସ୍ପର ପରସ୍ପରକୁ କେତେ ଭଲ ପାଆନ୍ତି ? ଭଲ ପାଇବା ଭିତରେ କେତେ ହିଂସା ଓ ଘୃଣା ଭରି ରହିଛି ଦେଖିଲେ ତ ? ନା ନା, ସେମାନଙ୍କୁ ଚେତାଇ ଦିଅନ୍ତୁ ନାହିଁ, ସେମାନଙ୍କ ସୁଖର ସଂସାର ଅକ୍ଷୁର୍ଣ୍ଣ ରହୁ ।
(୨) ଦେଖିଲେ ତ ? ଅମୁକ ବାବୁ କିଭଳି ଦୟାଳୁ, ସମବେଦନାରେ ଜୁବୁବୁ ! ସେହି ଦୟାଦାକ୍ଷିଣ୍ୟରେ କେତେ ନିଷ୍ଠୁରତା, ଆଖି ବୁଜି ଦୁଧ ପିଇବାର ଭାବ ଦେଖିଲେତ ? ନା' ନା' ତାକୁ ଚେତାଇ ଦିଅନ୍ତୁ ନାହିଁ, ତାହା ହେଲେ ସମାଜର ଖମ୍ବ ଭୁଷୁଡି ପଡ଼ିବ ।
(୩) ଦେଖିଲେ ତ ? ଅକାରଣରେ ବିନାଦୋଷରେ ଏହି ପିଲାଟି ଏହି ଭଲ ଲୋକଟି କେମିତି କଷ୍ଟ ପାଉଛି ? ନା' ନା' ତାକୁ ଚେତାଇଦିଅନ୍ତୁ ନାହିଁ ତା ହେଲେ ତାର ଆଦର୍ଶ ଉଜୁଡ଼ି ଯିବ । ବିଚରା କାନ୍ଦିବ ।
(୪) ଦେଖିଲେ ତ ? ଏହି ସମାଜବିରୋଧୀ ପାପୀ ଲୋକଟିକୁ ଦେଖିଲେତ ? ଆପଣା ମନରେ ସେ କେତେ ସତ୍‌ରେ ଚଳୁଛି, କେତେ ଆନନ୍ଦରେ ହରି ନାମ କରୁଛି ଦେଖିଲେ ତ ? କିନ୍ତୁ ଦୟା କରନ୍ତୁ, ତାର ମନର ସରାଗ  ଭାଙ୍ଗି ଦିଅନ୍ତୁ ନାହିଁ ।

ଇତ୍ୟାଦି । ମଣିଷ ଯାହା କୁହେ ଓ ଯାହା କରେ, ଯାହା ଭାବେ ଓ ଯାହା କୁହେ, ଯାହା ଭାବେ ଓ ଯାହା ଭାବିବାକୁ ଚାହେଁ, ଯାହା ଉପର ମନରେ ଭାବେ ଓ ଯାହା ଭିତରେ ମନରେ ନିଜ ଅଜାଣତରେ ସ୍ଥିର କରିନିଏ ଏହି ପରସ୍ପର ବିରୋଧର ବୈଚିତ୍ର୍ୟ ମୋତେ ମୁଗ୍ଧ କରିଛି । ନା, ଭୁଲ୍ କହିଲି । ମୁଗ୍ଧ କରି ନାହିଁ । ମୁଁ ମୋର ସାହିତ୍ୟ ମାଧ୍ୟମରେ ନିଜକୁ ଶାନ୍ତି ଦେବାକୁ ଚେଷ୍ଟା କରିଛି । ନିଜକୁ କହିଛି - ବାବୁ, ଏହି ବୈଚିତ୍ର୍ୟକୁ ସ୍ୱୀକାର କରି ନିଅ, ଅକାରଣରେ ଦୁଃଖୀ ଓ ଅଜାଣତରେ ଶଠମାନଙ୍କ ବ୍ୟକ୍ତିତ୍ୱକୁ ମାନି ନେଇ ମୃଦୁ ମୃଦୁ ହସୁ ଥାଅ । ଅନ୍ୟଥା ତୁ ସନ୍ୟାସୀ ହୋଇଯିବୁ କିମ୍ୱା କ୍ରୋଧରେ କଣ ବୋଲି କରି ବସିବୁ । ମୋର ଏହି ଭୀରୁ ସ୍ୱୀକୋରକ୍ତି ମୋର ଚରିତ୍ର ଚିତ୍ରଣରେ ଫୁଟି  ଉଠିଛି । ମୋର ଚରିତ୍ରମାନେ କେହି କେହି ଦ୍ୱନ୍ଦରେ ପୀଡ଼ିତ ହୋଇଛନ୍ତି, କିନ୍ତୁ ତାର ଆଦିମୂଳ ଜାଣିପାରି ସନ୍ୟାସ ବା ମହାକ୍ରୋଧର ସୀମା ଛୁଇଁ ନାହାନ୍ତି । ପାଠକମାନେ ଯାହା ଦେଖିଛନ୍ତି, ସେମାନେ ଦେଖିବାକୁ ପାଇନାହାନ୍ତି । ତେଣୁ ମୋର ଅଧିକାଂଶ ଗଳ୍ପରେ ପରୋକ୍ଷ ଆମୋଦ ବା irony ସର୍ବ ପ୍ରଧାନ । ଭୁଲ୍ କରିଛି ? ଆପଣ କଣ ଭାବୁ ନାହାନ୍ତି ଯେ ଏଥିରୁ ମୋର ସଂବେଦନା ସୂଚିତ ହେଉଛି ?

କିନ୍ତୁ ସବୁବେଳେ ପାରି ନାହିଁ । ସବୁବେଳେ Albert Camusଙ୍କ ପରି "Outsider" ହୋଇ ମୁରକି ମୁରକି ହସି ପାରି ନାହିଁ । ଗତ ଛଅ ସାତ ବାର୍ଷ ମଧ୍ୟରେ ବିଭିନ୍ନ ଗଳ୍ପରେ ମୋର ବିଦ୍ରୂପ ସ୍ପଷ୍ଟ ହୋଇ ଉଠିଛି । ମୁଁ ଜଣାଇ ଦେବାକୁ ଚାହିଁଛି ଯେ ଏଇ

ଲୋକ, ଏଇମାନେ ଘୃଣାର ପାତ୍ର । କାରଣ ନିଜକୁ ବୁଝାଇବାର କ୍ଷମତା ସେମାନଙ୍କର ଅଛି, ଅଥଚ ସେମାନେ ବୁଝିବାକୁ ଚେଷ୍ଟା କରୁନାହାନ୍ତି । ଅବଚେତନ କଥା ଛାଡ଼ିଦିଅ, ଏମାନେ ଚେତନ ମନକୁ ଜାଣିଶୁଣି 'ଧୋ ବାୟା' କହି ଶୁଆଇ ଦେଉଛନ୍ତି । ସେମାନେ ହେଉଛନ୍ତି ମଧ୍ୟବିତ୍ତ ଓ ଉପର ମଧ୍ୟବିତ୍ତ ଶ୍ରେଣୀର ଲୋକ ଯେଉଁମାନେ ଅଜ୍ଞ ନୁହନ୍ତି, କିନ୍ତୁ ଅଜ୍ଞତାର ଆଶ୍ରୟ ନେଇ ଆପଣା ସୁଖ ବିନିମୟରେ ସମାଜକୁ ଏପରି କଦାକାର କରି ରଖିଛନ୍ତି । ଏହିସବୁ ଗଳ୍ପରେ ମୋର ସାହିତ୍ୟ ଉଦ୍ଦେଶ୍ୟମୂଳକ । ଭବିଷ୍ୟତରେ ମୁଁ ମୋର ପୂର୍ବକାଳୀନ ନିବୃତ୍ତ କରୁଣାଗତ ଭାବକୁ ଫେରିଯିବି କିମ୍ବା ଉଦ୍ଦେଶ୍ୟମୂଳକ ପ୍ରଗତିର ବାନା ଧରିବି, ମୁଁ କହିପାରୁ ନାହିଁ । ଆପଣ ମୋତେ ସ୍ମରଣ କରି ଦେଇ ପାରନ୍ତି ଯେ ଶେଷୋକ୍ତ ଆଭିମୁଖ୍ୟ ମୋର ସୃଷ୍ଟିମୂଳକ ଆବେଗକୁ ନଷ୍ଟ କରିଦେବ । ମୁଁ ଛୋଟ ଲେଖକ ହୋଇଯିବି । ମୁଁ ସେ କଥା ଆଗରୁ କହିଛି । ହେଉ । କ୍ଷତି କଣ ? କେତେ ଦିନ ମୁଁ ସମର ସେଟ୍ ମମ୍‌ଙ୍କ ପରି ଭାବିବି ଯେ ଘର ପୋଡ଼ିଗଲେ କଳାକାର ପ୍ରଥମେ ତାର ପଟ ଓ ତୂଳି ନେଇ ପ୍ରସ୍ତୁତ ହୋଇଯାଏ, ବାଲ୍‌ଟିଏ ପାଣି ନିଆଁ ଲିଭାଇବାକୁ ଉଦ୍ୟତ ହୁଏ ନାହିଁ ? କଳାକାର କାହିଁକି ଭାବିବ ନାହିଁ ଯେ ତା' ନିଜ ଘର ପୋଡ଼ି ଯାଉଛି ? The bell also talls for thee .. ? ଛାଡ଼ନ୍ତୁ, ମୁଁ ଯୁକ୍ତିଛଳରେ କହୁଛି । ବୋଧହୁଏ ମୁଁ ଚେଷ୍ଟା କଲେ ମଧ୍ୟ କର୍ମବୀର ହୋଇପାରିବି ନାହିଁ । ସତ୍ୟର ଯତ୍‌ସାମାନ୍ୟ ଆଗ୍ରହ ନେଇ ନିରୋଳା ସାହିତ୍ୟ ସୃଷ୍ଟି କରି ବଞ୍ଚି ରହିବି । କହିପାରୁନାହିଁ ।

ଗପୁ ଗପୁ ଅନେକ ଗପି ସାରିଲିଣି । ସବୁ କଥା କହିବାକୁ ସମୟ ନାହିଁ । ତେବେ ପଦେଅଧେ ଜରୁରୀ କଥାକହି ମୁଁ ମୋର ବକ୍ତବ୍ୟ ଶେଷ କରିବି ।

କେତେଜଣ ସମାଲୋଚକ ମୋତେ ଓ ମୋ ପରି ଅନ୍ୟ ଲେଖକମାନଙ୍କୁ ଆଙ୍ଗୁଳି ଦେଖାଇ କହିଛନ୍ତି-ଏମାନଙ୍କୁ ବର୍ଜନ କର । କାରଣ ଏମାନେ ନାସ୍ତିବାଦୀ, ନିରାଶାବାଦୀ । ଏମାନଙ୍କ କଥା ଶୁଣିଲେ ଜୀବନର ସୁଆଦ ମରିଯିବ, ମାନବ ଜାତିକୁ ଶ୍ରଦ୍ଧା କରି ହେବ ନାହିଁ, ତେଣୁ ପ୍ରଗତିର ପଥ ବ୍ୟାହତ ହେବ ।

ଏଭଳି ସମାଲୋଚନା ଶୁଣିଲେ ମୋତେ ଦୁଃଖ ଲାଗେ । ପ୍ରଥମ କଥା ଲେଖକ କଦାପି ନାସ୍ତିବାଦୀ ହୋଇପାରେ ନାହିଁ । ସେ ଲେଖୁଛି କାହିଁକି ? ତା'ର ଜୀବନ ପ୍ରତି ଆଗ୍ରହ ଅଛି ବୋଲି ତ ସେ ଲେଖୁଛି ! ସେ ତ ଚାହେଁ ତା ଲେଖା ସମସ୍ତେ ପଢ଼ନ୍ତୁ ! କାହିଁକି ? ଜୀବନ ବିମୁଖ ହୋଇଥିଲେ ତ ସେ ଘରେ କବାଟ କିଳି ବସନ୍ତା । ବା ଆତ୍ମହତ୍ୟା କରନ୍ତା ! ଆଲ୍‌ବର୍ଟ କାମ୍ୟୁଙ୍କ ଭାଷାରେ - "There is really no such thing as nihilist literature. The act of writing is in itself an affirmation and when one afformes one does so on behalf of something".

ଆଉ ଜଣେ କଳାବିତ୍ ଅନ୍ୟ ଭାବରେ କହିଛନ୍ତି, "The despair of the artist is often misunderstand. It is never total. It excepts his own work". ଦ୍ୱିତୀୟରେ ଆତ୍ମଦର୍ଶନରେ ବଳୀୟାନ ହୋଇ ମୁଁ କହିବି ଯେ ପୃଥିବୀରେ ଆଦର୍ଶର ବ୍ୟାଖ୍ୟା ଓ ଅବତାରଣା କଣ ଯଥେଷ୍ଟ ହୋଇନାହିଁ ? ଯଥେଷ୍ଟ ଯୀଶୁଖ୍ରୀଷ୍ଟ, ବୁଦ୍ଧ ଓ ଗାନ୍ଧୀ କଣ ଆସିଫେରି ଯାଇନାହାନ୍ତି ।

ଆମେ ସେମାନଙ୍କୁ ସମ୍ମାନ ଦେଇଛୁ, ଜଣେ ଅଧେ ଅନୁପ୍ରାଣିତ ଓ ଉଦ୍‌ବୁଦ୍ଧ ହୋଇ ମହାତ୍ମା ପାଲଟିଛୁ, କିନ୍ତୁ ପୃଥିବୀରେ ସଂଘର୍ଷ ଓ ଯାତନାର ମୂଳଧନ ଉତ୍ତରୋତ୍ତର ବୃଦ୍ଧିପ୍ରାପ୍ତ ହୋଇଛି । କାହିଁକିନା ଜଗୁ ଦାଦା ଓ ବନୁ ଦାଦାଙ୍କ ପରି ଆମେ ନିଜକୁ ବୁଝିବାକୁ ଚେଷ୍ଟା କରିନାହୁଁ । ଆମ ଭିତରେ ଥିବା "Inner furies" ର ଯଥାର୍ଥ ସତ୍ୟକୁ ମାନିବାକୁ ପ୍ରସ୍ତୁତ ହୋଇନାହୁଁ, କାଳେ ସେଥିରେ ଆମ ଆଦର୍ଶର ଅବମାନନା ହେବ । ମୁଁ କହୁଛି ଯେ ଏହି ଦୈତ୍ୟ ଦାନବମାନଙ୍କୁ ମାନିନିଅ, ସମାୟିକ ଦୁର୍ବଳତା ବୋଲି ଆଡେଇ ଦିଅନାହିଁ । ବିଜ୍ଞାନ ଓ ଅନ୍ତଦୃଷ୍ଟି ସାହାର୍ଯ୍ୟରେ ମଣିଷର ପ୍ରକୃତି ସ୍ୱରୂପକୁ ଜାଣିବାକୁ ଚେଷ୍ଟା କର । ମୁଁ ଦାର୍ଶନିକ John Erskineଙ୍କ ସହିତ ଏକମତ ଯେ ନୈତିକତରାର ମୂଳମନ୍ତ୍ର ହେଉଛି ବୌଦ୍ଧିକତା । There is a supreme moral obligation to be intelligant. Affections divide us . Intelligence unites us with mankind. ଏହି ବୌଦ୍ଧିକତାର ଆଶ୍ରୟ ନେଇ ତୁମେ ଯଦି ମଣିଷ ମନର ଅସୁନ୍ଦର ନାରଖାର ପଣକୁ ଦେଖିବାକୁ ପାଅ ଓ ଛଟପଟ ହୁଅ, ତାହାହେଲେ ମୋତେ ଦୋଷ ଦିଅ ନାହିଁ । ସ୍ୱୀକାର କର ଯେ ମୁଁ ତୁମକୁ ଅଶାନ୍ତି ଦେ ଇଛି ସିନା, ଠକେଇ ନାହିଁ । ସାର୍ତ୍ରେଙ୍କ ଭାଷାରେ ମୁଁ 'bad faith' ଆଚରଣ କରି ନାହିଁ, ବିଶ୍ୱାସରେ ବିଷ ଦେଇନାହିଁ । ଯଥାକ୍ରମେ କେଉଁ ସୁଦୂର ଭବିଷ୍ୟତରେ ଜଗୁ ଦାଦା ଓ ବନୁ ଦାଦା କୋଳାକୋଳି ହେବେ, ଆତ୍ମପ୍ରବଞ୍ଚନାର ପାଚିରୀକୁ ଭାଙ୍ଗି ଉଡ଼େଇ ଦେବେ, ସେତିକି ମୋର କାମ୍ୟ । ସେତେଦିନ ଯାଏଁ ମୁଁ ନିବୃତ୍ତ ହୋଇ ଅବା ପ୍ରବୃତ୍ତ ହୋଇ ଏମିତି ଖେଞ୍ଚୁଥିବି । ଯେପରିକି ତୁମେ ଅଳ୍ପ ରାଗିଯାଇ ଅଧିକ ଚିନ୍ତା କରିବ, ମଧ୍ୟଯୁଗର ବା ଭିକ୍ଟୋରିଆନ୍ ସାହିତ୍ୟ ପରି ମୋ ଲେଖାରେ କେବଳ ବିଳସିତ ବିମୋହିତ ହୋଇ ଶୋଇପଡ଼ିବ ନାହିଁ । ଏଇଠୁ ମୁଁ ଜଣେ ଆଧୁନିକ ଇଂରାଜି ଲେଖକ Norman Maillorଙ୍କ ଉକ୍ତିକୁ ଉଦ୍ଧାର କରୁଛି,

The virtue I should like most to believe is to be genuinely disturbing, by going to the root of whether is written about, so that life-which I believe is always disturbing if it is indeed seen - may serve as the gadfly to complacency, institution and the deadwieight of public test.

ନା, ହେଲା ନାହିଁ । ଆପଣ କହିପାରନ୍ତି ଯେ ମୁଁ ନାସ୍ତିବାଦୀ ନିରାଶାବାଦୀ ନ ହେଲେ ମଧ୍ୟ ଗୋଟିଏ କଳାପାହାଡ଼ । ପ୍ରତିମା ଭଙ୍ଗିବାକୁ ଆସିଛି । ଆପଣ ଚାହାଁନ୍ତି ପ୍ରତିମା ପୂଜା । କେଉଁ ଭବିଷ୍ୟତରେ ଜଗୁଦାଦା ଓ ବନୁଦାଦା କୋଳାକୋଳି ହେବେ, ସେଥିରେ ଆପଣଙ୍କର ଯାଏ ଆସେ ନାହିଁ । ବର୍ତ୍ତମାନ ପାଇଁ ଆପଣ ମାନିବାକୁ ପ୍ରସ୍ତୁତ ନୁହନ୍ତି ଯେ କେହି କେହି ପ୍ରକୃତରେ ଭଲ ଅବା କେହି ପୂରାପୂରି ଖରାପ । Dostoveisky ଙ୍କର Brothes Karamazov ରେ Ivan କହିଲା ଭଳି "Everything is lawful" 'ସବୁଚଳେ' ଏହି ଦର୍ଶନ ଅଶୋଭନୀୟ ଓ ଆଗ୍ରାହ୍ୟ ।

କ୍ଷମା କରନ୍ତୁ । ମୁଁ ଅପଣଙ୍କର ଦାବୀ ମେଣ୍ଟାଇ ପାରିବି ନାହିଁ । ମୁଁ ପହୁଞ୍ଚି ନାହିଁ । ଅଙ୍କକଷା ସରି ନାହିଁ । ମୁଁ କେବଳ ଏତିକି କହିବି ଯେ ଏହି ସଂଧାନ କଲ୍ୟାଣର ପଥ, ଏହି ବାଟରେ ଗଲେ ଆପଣ କଷ୍ଟ ପାଇବେ ସିନା, ଲକ୍ଷ୍ୟଭ୍ରଷ୍ଟ ହେବେ ନାହିଁ ।

ପରିଶେଷରେ ଆଜିର ସଂଧ୍ୟାରେ ମୋତେ ଅନୁମତି ଦିଅନ୍ତୁ ଯେ ମୁଁ ପିଲାଦିନର ବର୍ଷାଋତୁକୁ ଭୁଲି ନଯାଏ ଓ ଆପଣମାନଙ୍କୁ ଭୁଲିବାକୁ ନ ଦିଏ । Dortoveiskyର Ivan ଯେ କହିଥିଲା ଯେ "Everything is lawful", ସେହି ମଧ୍ୟ କହିଥିଲା - "I have a longing for life and I go on living, inspite of logic. Though I may not believe in the order of the universe, yet I love the sticky little leaves, as they open in spring". ଏହି ଜୀବନଆଗ୍ରହ ଯେତେ ଦିନ ଯାଏଥିବ, ସେତେଦିନ ଯାଏ ବୌଦ୍ଧିକତାର ଛାଟ ବାଧିବ ନାହିଁ, ଲେଖକ ପାଠକ କାହାରିକୁ ବାଧିବ ନାହିଁ ।

ବର୍ଷାଋତୁ ଅଛି । ସବୁକଥା ସରିଲା ପରେ ନିରୋଳା ମୂହୁର୍ତଟି ମୋ ପାଇଁ ରହିଛି, ଯେତେବେଳେ ମୁଁ ଏକୁଟିଆ ହୋଇବସିବ ଓ ଜଣକ ସାଙ୍ଗରେ ଗୋପନରେ କଥାଭାଷା ହେବି । ସେ ଧର୍ମ ବୁଝେ ନାହିଁ, ସାହିତ୍ୟ ବୁଝେ ନାହିଁ, କିଛି ବୁଝେ ନାହିଁ । ସେ କିଏ ମୁଁ ଜାଣେ ନାହିଁ, କିନ୍ତୁ ସେ ମୋର ପ୍ରଣୟିନୀ । ମୁଁ ତାକୁ ପ୍ରେମ କରିବି । ପାଟିରୁ କଥା ନ ବାହାରିଲେ ମଧ୍ୟ ପାକୁ ପାକୁ ହେବି । 'ଏମନି ଦିନେ ତାରେ' ବଲା ଯାୟ, ଏମନି ଘନ ଯୋର ବରିଷାୟ ।'

ମୋର ଏହି ପ୍ରେମର ପ୍ରବଣତାଟିକ ବଞ୍ଚିରହୁ, ମୁଁ ଏତିକି ଆର୍ଶୀବାଦ ମାଗୁଛି । ନମସ୍କାର ।



# ନିଜ କଥା

## (ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗ ଆନୁକୂଲ୍ୟରେ ପଠିତ ପ୍ରବଂଧ)

**କିଶୋରୀ ଚରଣ ଦାସ**

ନାନାଦି କାରଣରୁ ଆଜିର ଏହି ଆଳାପକୁ ପରିଶିଷ୍ଟ ଅର୍ଥାତ୍ ବଳକା ଛଡ଼ା ଆଉ କିଛି କହିହେଉ ନାହିଁ । ଏକେ, ମୋତେ ଚାରୋଟି ନୁହେଁ ପାଞ୍ଚଟି ବକ୍ତୃତା ଦେବାକୁ ପଡ଼ିବ, ତା'ର ସୂଚନା ମିଳିଲା ଅଳ୍ପ କେତେଦିନ ତଳେ, କିନ୍ତୁ ସେତେବେଳକୁ ମୁଁ ଚାରୋଟିର ଲେଖା ଲେଖି ସାରିଲିଣି । ଏବଂ ଗାଳ୍ପିକଠାରୁ ଯାହା ଆଶା କରିବା ସ୍ୱାଭାବିକ, ମୁଁ ସେଗୁଡ଼ିକୁ ଗୋଟିଏ ସୁନିର୍ଦ୍ଦିଷ୍ଟ ଗୋଲେଇରେ ବାନ୍ଧି ସାରିଲିଣି, ପ୍ରେମର ପ୍ରଥମ ପ୍ରଶ୍ନଠାରୁ ଆରମ୍ଭ କରି ସ୍ୱପ୍ନର ଶେଷ ଉତ୍ତର ଯାଏଁ, ମଝିରେ କେତୋଟି କଥା ଓ କାହାଣୀକୁ ସାକ୍ଷୀ ରଖି । ତାକୁ ଆଉ ବଦଳେଇ ହେବ ନାହିଁ । କଳାକାର ହୋଇ ସେଭଳି କୁକର୍ମ କରିବା ସମ୍ଭବ ନୁହେଁ ମୋ ପକ୍ଷରେ । ତା'ହେଲେ ଉପାୟ କଅଣ ? ଭାବି ଦେଖିଲି ଯେ କେବଳ ଗୋଟିଏ ଅଧମତାରଣ ପନ୍ଥାର ଆଶ୍ରୟ ନେଇହେବ । କିଛି ନିଜ କଥା କହି ହେବ, ତାହା ଯେତେ ଅନାବଶ୍ୟକ ହେଉ ପଛେ । ଅନାବଶ୍ୟକ, କାରଣ ଏଥିପୂର୍ବରୁ ମୁଁ ତାକୁ ଆବଶ୍ୟକ ବୋଲି ଭାବି ନ ଥିଲି ଓ ବର୍ତ୍ତମାନ ମଧ ଭାବୁ ନାହିଁ, ମୋ ବକ୍ତବ୍ୟର ପୂର୍ତ୍ତି ପାଇଁ । ତେଣୁ ପଛରେ ଯୋଡ଼ା ହୋଇଥିବା ବସ୍ତୁ ହିସାବରେ ତଥା ଗୁଣାତ୍ମକ ଦୃଷ୍ଟିରୁ ମୋର ଏଇ 'ନିଜ କଥା' କୁ ବଳକା କହିବା ହିଁ ବିଧେୟ, ଯଦିଓ ଅକଳିଆରେ ପଡ଼ି ମୁଁ କିଛି କହିବାକୁ ବାଧ ହେଉଛି, ସେ ବିଷୟରେ । ମୋର ସଫେଇ ଭିତରେ କେବଳ ଏତିକି ଯେ ଯେତେହେଲେ ମୁଁ ବି ଜଣେ କଥାକାର, ତେଣୁ ଏହି ପ୍ରକାର କଥନ ଅନାବଶ୍ୟକ ହେଲେ ମଧ ଅବାନ୍ତର ନୁହେଁ ବିଷୟବସ୍ତୁର ପରିପ୍ରେକ୍ଷୀରେ । ସେହେତୁ ମୁଁ ଆଶା କରୁଛି, ଆପଣ ମୋର ଧର୍ମସଂକଟକୁ ବୁଝିବା ହେବେ ଏବଂ ମୋର ଏହି ପରିଶିଷ୍ଟ ବକ୍ତବ୍ୟକୁ ମଧ ମନ ଦେଇ ଶୁଣିବେ, ଗତ ଚାରିଦିନ ପରି । ଏବଂ ମୁଁ ଖୁସି ହେବି ଯଦି ପରେ ତାକୁ ନେଇ କିଛି ତର୍କ କରି ବସିବେ ମୋ ସାଙ୍ଗରେ । କାରଣ ତା ହେଲେ ମୁଁ ଜାଣିବି ଯେ ମୋର ଏଇ ନିଜଲେଖା ଗପଗୁଡ଼ିକରେ ଆପଣଙ୍କ ମନଲାଖି ଅର୍ଥ ଥାଉ ବା ନ ଥାଉ, ସେଥିର ଅଳ୍ପ ବହୁତ ମୁନ ଅଛି ନିଶ୍ଚୟ । ଏବଂ ତାହାହିଁ ତ ମୁଁ ଚାହେଁ, ବିଶେଷତଃ ଏଭଳି ଏକ ବିଜ୍ଞ ଓ ବିଦଗ୍ଧ ଶ୍ରୋତାମଣ୍ଡଳୀଠାରୁ ।

କ'ଣ ୟା'ର ଅର୍ଥ ? ଏହା ଗୋଟିଏ ଚିରାଚରିତ ପ୍ରଶ୍ନ, ଯାହା ଶୁଣିବାକୁ ମିଳେ ପାଠକ ଠାରୁ, ଯେତେବେଳେ ସେ କୌଣସି ସୃଜନାତ୍ମକ ସାହିତ୍ୟ କୃତିକୁ ଗ୍ରହଣ କରିପାରେ ନାହିଁ । ଉଚିତ ପ୍ରଶ୍ନ । ଇଏ କଣ ପ୍ରବନ୍ଧ ହୋଇଛି ଯାହାର ଅର୍ଥ ଖୋଜି ବାହାର କରିହେବ ଅଭିଧାନରୁ କିମ୍ବା କେଉଁ ସଞ୍ଚିତ ଜ୍ଞାନମୁଣିରୁ ? କିନ୍ତୁ ଅନ୍ୟ କେଉଁ ରସିକ ଗ୍ରାହକ କୁ ନ ପଚାରି ଖୋଦ୍ କଳାକାରଙ୍କୁ ଏଭଳି ପ୍ରଶ୍ନ ପଚାରିବା ଅନ୍ୟାୟ ନୁହେଁ କି ? ମନେ ହେବ ଯେ ଯେଉଁ କଳାବତୀ ଆପଣା ଗାରିମାରେ ଠିଆ ହୋଇଛି ତୁମ ସାମ୍ନାରେ, ଆପଣା ଶବ୍ଦ ସ୍ୱରୂପର ପ୍ରକଟ ତଥା ପ୍ରଚ୍ଛନ୍ନ ରଙ୍ଗ ରସ ଓ ଧ୍ୱନିର ସମ୍ଭାରକୁ ନେଇ, ତାକୁଇ ପରୋ ହେଉଛି -ତୋ ସୁନ୍ଦରପଣ ଠିକ୍ କେଉଁଠି ଅଛି କହିଲୁ ଦେଖି ? ତା ହେଲେ ସିନା ମୁଁ ତୋତେ ଛୁଇଁ ପାରିବି ?

ଏହି ପ୍ରକାର ଅଭିମାନର ବଶବର୍ତ୍ତୀ ହୋଇ ମୁଁ ଅଳ୍ପ ବହୁତ ବିରକ୍ତ ହୋଇଉଠିଲି ସେଦିନ, ଯେତେବେଳେ ଜଣେ ଅପରିଚିତ ଏବଂ ତରୁଣ ଅଧ୍ୟାପକ ମୋତେ ଆକ୍ରମଣ କଲେ ଉପରୋକ୍ତ ପ୍ରଶ୍ନଟିକୁ ନେଇ, ଆମ ଘରର ଦାଣ୍ଡ ଦୁଆର ବନ୍ଧରେ । ଅତର୍କିତ ଆକ୍ରମଣ । ଭଦ୍ରଲୋକ ଆସି ଥିଲେ ଆଉ ଜଣଙ୍କ ସାଙ୍ଗରେ, ଯାହାଙ୍କର କିଛି କାମ ଥିଲା ମୋ ପାଖରେ । ଏବଂ ତାଙ୍କଠାରୁ ବିଦାୟ ନେଲା ବେଳେ ଇଏ ହଠାତ୍ ମାଡ଼ି ବସିଲେ ମୋତେ - ''ସାର୍, ମୁଁ ଗୋଟାଏ କଥା ପଚାରିବା ପାଇଁ ଆସିଥିଲି ଏଠିକି । କିଛି ମନେ କରିବେ ନାହିଁ । ଆପଣଙ୍କର ଏଇ ଯେଉଁ ଗପଟି ଆମ କଲେଜ୍‌ର ଟେକ୍ସଟ୍ ବହିରେ ଅଛି, ପ୍ରକୃତରେ ତା'ର ମାନେ କଅଣ ?'' ତାଙ୍କ ଅତର୍କିତ ଆକ୍ରମଣ ମୋତେ ଅପ୍ରସ୍ତୁତ କରିଦେଲା, ଠିକ୍ ତା ନୁହେଁ । ମୋର ଅଭିମାନବୋଧ ଚେଇଁ ଉଠିଲା । ବିଶେଷତଃ ଏଇଥିପାଇଁ ଯେ ସେ ଯେଉଁ ଗଳ୍ପଟି ବିଷୟରେ ମୋତେ ପ୍ରଶ୍ନ କଲେ, ତାହା ଇଂରାଜୀ ତଥା ପ୍ରାୟ ସମସ୍ତ ଭାରତୀୟ ଭାଷାରେ ଅନୁଦିତ, ବହୁପ୍ରଶଂସିତ ଏବଂ ପ୍ରାୟ ତେତିଶ ବର୍ଷ ତଳର ପୁରୁଣା ଗପ ''ଭଙ୍ଗା ଖେଳଣା'', ଯାହାକୁ କେତେକ ଆଧୁନିକ ଓଡ଼ିଆ କଥାସାହିତ୍ୟର ଏକ ମାଇଲ ଖୁଣ୍ଟ ବୋଲି କୁହନ୍ତି । ଏଭଳି ଏକ ଗଳ୍ପର ମାନେ କଅଣ ବୋଲି ପଚାରୁଛନ୍ତି ଭଦ୍ରଲୋକ । ମୋ ପାଟିରୁ ବାହାରି ପଡ଼ିଲା ଏକ ଅଶୋଭନୀୟ ଉତ୍ତର, "ଆଜ୍ଞା, ଯଦି ମୋ ଗଳ୍ପର ଅର୍ଥ ଆପେଆପେ ବୁଝିହେଉ ନାହିଁ, ତା ହେଲେ ତାର ଯୋଡ଼ିଏ କାରଣ ହୋଇପାରେ । ହୁଏତ ଗଳ୍ପଟି ଶୂନ୍ୟଗର୍ଭ, ତାହା ଯେତେ ଲୋକପ୍ରିୟ ହେଉ ପଛକେ, ଅଥବା ଆପଣ ତାକୁ ବୁଝିବା ପାଇଁ ଅକ୍ଷମ । ତେଣୁ ମୋର ଦିହିଁଙ୍କ ମଝିରେ ମଧ୍ୟସ୍ଥ ହେବା ଉଚିତ ହେବ କି ?" ଅବଶ୍ୟ ମୁଁ ତା ପରେ ପରେ ନିଜକୁ ସଂଯତ କରିନେଲି, ଏବଂ ତାଙ୍କୁ କହିଲି ଯେ ଆଉ ଦିନେ ଆସିବେ, ନିରୋଳାରେ ବସି ଆଲୋଚନା କରିବା ସେ ବିଷୟରେ । କିନ୍ତୁ ମୁଁ ନିଜକୁ କ୍ଷମା କରିପାରି ନାହିଁ, ମୋର ସେଇ ପହିଲି ଅସହିଷ୍ଣୁ ପ୍ରତିକ୍ରିୟା ପାଇଁ । ଯାହାହେଉ ସେ ପ୍ରଶ୍ନ ମୋତେ ବାଧ୍ୟ କଲା ଭାବିବାକୁ ଏଇ ଗପଟି ବିଷୟରେ । କାହିଁକି ? ଜଣେ ଉଚ୍ଚଶିକ୍ଷିତ, ପୁଣି ସାହିତ୍ୟକ ଭଦ୍ରଲୋକ,

କାହିଁକି ଏହି ପ୍ରଖ୍ୟାତ ଗଳ୍ପର ଅର୍ଥ ବୁଝି ପାରିଲେ ନାହିଁ ? ସେ କିଭଳି ଅର୍ଥ ଖୋଜୁଥିଲେ, ଯାହା ତାଙ୍କୁ ମିଳିଲା ନାହିଁ ?

ସେଇଠୁଁ ମୁଁ ଦେଖିନେଲି, ମୁଁ ନିଜେ ଯାହା ଲେଖିଛି ଗଳ୍ପ ବିଷୟରେ ମୋର ''ତିରିଶ ବର୍ଷର ଗଳ୍ପ ଓ ଆଳାପ''ର ପ୍ରଥମ ଖଣ୍ଡରେ। ଲେଖିଛି -

"... କିଶୋରୀ କନ୍ୟାର କଅଁଳ ମନରେ ଖରାଛାଇର ଖେଳ, ଉତ୍ପାତ ଏବଂ ଶେଷକୁ ଟୋପାଏ ଲୁହ - ଏହାଛଡ଼ା ଏ ଗପରେ ଆଉ କଣ ଅଛି ?କାହିଁ ଗଭୀରତା ? ଦର୍ଶନ, ଚିନ୍ତନ ? ବାସ୍ତବ ଶୋକ ଦୁଃଖର କୋହ ? ସେଇଥି ପାଇଁ କଣ ଗପଟି ଏତେ ସୁନ୍ଦର ହୋଇପାରିଛି ? ତା' ହେଲେ କଣ ଶିଶିର କଣାର ସପ୍ତରଙ୍ଗ ହିଁ ପ୍ରତ୍ୟେକ ଗଳ୍ପର କାମ୍ୟ ? ବିଚାର ଆପଣମାନଙ୍କ ଉପରେ ।"

ଏଇଥିରୁ ମନେ ହେବ ଯେ ସେଇ ସୁଦୂର ଅତୀତରେ ମୁଁ ମୋ ଗପରେ କୌଣସି ଅର୍ଥର ଗୁରୁତ୍ୱ ଆଣିବାକୁ ଚେଷ୍ଟା କରୁ ନ ଥିଲି । ଯାହା ଘଟିଲା କି ନ ଘଟିଲା, ତାକୁ ନେଇ କିଛି ଭାବିବା ଉଚିତ ପାଠକର, ଏଭଳି କୌଣସି ଉଦ୍ଦେଶ୍ୟ ନ ଥିଲା ମୋ ମନରେ । ଛବି ଆଙ୍କିଲା ପରି ଲେଖୁଥିଲି । କିନ୍ତୁ କ୍ରମଶଃ, ହୁଏତ ଦୁଃଖର ବିଷୟ-ଯାହା ମୋର କେତେକ ବନ୍ଧୁ କୁହନ୍ତି - ଶିଶିରକଣାଟି ଆଉ ଦୃଶ୍ୟ ହେଲା ନାହିଁ ମୋତେ । କାହିଁକି ନା ମୁଁ ବଡ଼ ହୋଇଗଲି । କିଶୋରୀସୁଲଭ ଲୁହ କଥା ଛାଡ଼, କେବଳ କାରୁଣ୍ୟକୁ ନେଇ ଗପଟିଏ ଗଢ଼ିବାକୁ ଚାହିଁଲି ନାହିଁ, ଯଦି ସେଥିରେ କିଛି ଗୋଟାଏ ଲେଖକୀୟ ବକ୍ତବ୍ୟ ନ ଥାଏ, ଯାହା ନୂଆ ପରି ଲାଗିବ ପାଠକକୁ, ଉପସ୍ଥିତ କ୍ଷେତ୍ରରେ, ମଣିଷ ଦଶାକୁ ଚିହ୍ନାଇବା ପାଇଁ । କାରୁଣ୍ୟର ଉପାଦାନ ଯେତେ ବାସ୍ତବ ଓ ଗଭୀର ହେଉ ପଛକେ । 'ଭଙ୍ଗା ଖେଳଣା' ପରି ଆଉ ଗୋଟିଏ ଗପ ମୁଁ ଲେଖିପାରିନାହିଁ ମୋ ଜୀବନରେ । ମୁଁ ସେକଥା ସ୍ୱୀକାର କରିଛି ମୋର ଉପରୋକ୍ତ ଆଳାପରେ । କିନ୍ତୁ... କିନ୍ତୁ ତା'ହେଲେ ମୁଁ କଣ ବଢ଼ିଲି ନା ଛିଡ଼ିଲି ?

ତାତ୍ତ୍ୱିକ ନିଷ୍କର୍ଷରେ ପହଞ୍ଚିବାକୁ ହେଲେ ଏହି ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିବ- ଯେ ଦୁଇଟି ସଫଳ ଗଳ୍ପ ମଧ୍ୟରୁ କେଉଁଟିକୁ ଅଧିକ ମାର୍କ ମିଳିବା ଉଚିତ-ଯେଉଁଥିରେ କେବଳ ଭାବାବେଶ ଅଥବା ଭାବାବେଗର ମାଧୁରୀ ମିଳିବ, ନା ଯେଉଁଥିରେ ତାଙ୍କୁ ଅତିକ୍ରମ କରି ତାର ବୈଚିତ୍ର୍ୟ, ବୈଷମ୍ୟ କିମ୍ବା ନୂତନତ୍ୱକୁ ନେଇ ଅଳ୍ପବହୁତ ଭାବିବାକୁ ଇଚ୍ଛା ହେବ ଦାର୍ଶନିକ ପରି ? ପରୀକ୍ଷାଖାତାରେ ଉତ୍ତର ଲେଖିବାକୁ ହେଲେ ମୁଁ ଦ୍ୱିତୀୟର ଅଧିକ ମୂଲ୍ୟ ଦେବି । କହିବି ଯେ କଳାତ୍ମକତା-ଯୁକ୍ତ-ଚିନ୍ତାଶୀଳତା ଅଧିକ ମୂଲ୍ୟବାନ ମୋ ପାଇଁ । ଅନ୍ତତଃ ଗଦ୍ୟ-ସାହିତ୍ୟରେ । ନ ହେଲେ କ'ଣ ଏତେ କଥା କହିଥାଆନ୍ତି 'ବୌଦ୍ଧିକ ଆନନ୍ଦ' ର ବଡ଼ପଣ ବିଷୟରେ ? କିନ୍ତୁ ମୋର ବିଚାର ଖାପ୍ ଖାଉ ନାହିଁ ତ ମୋର ନିଜ ଗଢ଼ା 'ଭଙ୍ଗା ଖେଳଣା' ସାଙ୍ଗରେ ! ଖାଉଛି କି ? ଯଦିଓ ଏ ଗପଟି କେବଳ ଲୋକପ୍ରିୟ ନୁହେଁ, ମୁଁ

ମଧ୍ୟ ତାକୁ ବିଶେଷ ଭାବରେ ଭଲପାଏ । ତା'ହେଲେ କଣ କହିବି ଯେ ଭଲ ପାଇବାର ଅର୍ଥ ଭଲ ପାଇବା, ଏବଂ କିଶୋରୀ ନାୟିକା ଗୀତା ପ୍ରତି ମୋର ଗୋଟାଏ ଦୁର୍ବଳତା ରହିଛି, ଯାହାକି ମୁଁ ସ୍ୱୀକାର କରି ଆସିଛି, ତେଣୁ ଏଠି ମୋର ତାତ୍ତ୍ୱିକ ବିଚାରକୁ ପୂରାଇବା ଉଚିତ ନୁହେଁ ?

ତଥାପି ମୋର ମନ ମାନିଲା ନାହିଁ । ଆଜି ମଧ୍ୟ ମାନୁ ନାହିଁ । ଏବଂ ସେହେତୁ ମୁଁ ଆପଣଙ୍କ ସାହାଯ୍ୟ ଲୋଡୁଛି । ଏବଂ ନିଜକୁ ତଥା ଆପଣଙ୍କୁ ପଚାରୁଛି- 'ଭଙ୍ଗା ଖେଳଣା' ଉପରେ କଣ କିଛି ଭାବିଲା ପରି ନାହିଁ, ଯାହା ମୋର ମଧ୍ୟଜୀବନ ଓ ଉତ୍ତରଜୀବନର ଗପରେ ପ୍ରାୟ ଦେଖିବାକୁ ମିଳେ ? କେବଳ କାରୁଣ୍ୟ ନୁହେଁ, ଗୀତାର ଅସହାୟପଣ କଣ ମଣିଷଦଶାର ଏକ ନିର୍ମମ ପରିଚାୟକ ନୁହେଁ ? କହିବାକୁ ଗଲେ ଝିଅ ଗୀତା ପଚାରୁଛି ଆପଣଙ୍କୁ - ଯେତେ ସାନ ହେଲେ ମଧ୍ୟ ମୋ ଲୁହ କଣ ଏତେ ହାଲୁକା ? ଆପଣଙ୍କ ସଂସାରର ବାପ ମାଆମାନେ କଣ ନାରୀ-ପୁରୁଷ ଗଣ୍ଡଗୋଳିଆ ସମ୍ପର୍କର ଊର୍ଦ୍ଧ୍ୱକୁ ଉଠି ପାରିବେ ନାହିଁ, ତାଙ୍କ ଗେହ୍ଲା ଝିଅ ମାନଙ୍କ ଓଠରେ ହସ ଟିକେ ଆଣିଦେବା ପାଇଁ ? ନା ସେଇ ନିଉଛୁଣା ସଂପର୍କ ଏତେ ମୌଳିକ ଓ ବାସ୍ତବ ଯେ ସେଥିରୁ ଉଦ୍ଧାର ନାହିଁ ? ଭାବି ଦେଖନ୍ତୁ, ଏଇ ଜୀବନ-ଚିନ୍ତା କେତେଦୂର ଯଥାର୍ଥ । ମୋର ଆଉ କିଛି କହିବାର ନାହିଁ 'ଭଙ୍ଗା ଖେଳଣା' କି ତାର ଶିଶୁ ନାୟିକା ବିଷୟରେ । ଏଇଠି ଗୋଟିଏ କଥା କହିଦିଏ, ମୋର ଅନ୍ୟ କୌଣସି ଗଳ୍ପର ଉଲ୍ଲେଖ କରିବା ପୂର୍ବରୁ । ଆଜି ମୁଁ କୌଣସି ଗଳ୍ପର ମୂଲ୍ୟାୟନ କି ବିଶଦ ବ୍ୟାଖ୍ୟା କରିବାକୁ ଯାଉନାହିଁ । ଯାହାକି ସହଜେ ସମ୍ଭବ ନୁହେଁ ମୋ ପକ୍ଷରେ ଏବଂ ଯେଉଁ କାରଣରୁ ମୁଁ 'ଭଙ୍ଗା ଖେଳଣା'ର ଜିଜ୍ଞାସୁ ଭଦ୍ରଲୋକଙ୍କୁ ଫେରାଇ ଦେଇଥିଲି ସେଦିନ, ଯଦିଓ ମୁଁ ମୋର କେତୋଟି ଗଳ୍ପ ବିଷୟରେ ଆଳାପ କରିବାକୁ ଚାହେଁ ଆପଣଙ୍କ ସାଙ୍ଗରେ । ତା ସହିତ ଜଡ଼ିତ ହୋଇଥିବା ବିଭିନ୍ନ ଅନୁଭୂତି, ଜିଜ୍ଞାସା ଓ ସଂଶୟ ନେଇ । ଏବଂ ଆଶା କରୁଛି ତାହା ଆପଣଙ୍କୁ ନିତାନ୍ତ ନୀରସ ବୋଲି ମନେ ହେବ ନାହିଁ ।

"ଲକ୍ଷ ବିହଙ୍ଗ" ସେବେକର ଆଉ ଗୋଟିଏ ଗପ । ସମୟ ଅନୁପାତରେ ବେଶି ଦୂର ନୁହେଁ 'ଭଙ୍ଗା ଖେଳଣା' ଠାରୁ । ଗଳ୍ପର ବକ୍ତବ୍ୟର କିଛି ବଶେଷ ରହସ୍ୟ ଅଛି, କିମ୍ବା ସେଥିରେ ଥିବା ସାମାଜିକ ମନ୍ତବ୍ୟରେ ନୂତନତ୍ୱର ଚମକ ଅଛି, ଏକଥା କହିହେବ ନାହିଁ । ତଥାପି ଗପଟି ବେଶ୍ ଚହଳ ପକାଇଥିଲା ପାଠକପାଠିକା ମହଲରେ ଏବଂ ବିଭିନ୍ନ ଭାଷାରେ ଅନୂଦିତ ଓ ପ୍ରକାଶିତ ହୋଇ ପ୍ରଶଂସା ଲାଭ କରିଛି । କିନ୍ତୁ କେଉଁଥିପାଇଁ, ସେ ବିଷୟରେ ମୁଁ ମୁଣ୍ଡ ଘୁରାଇବାକୁ ଚାହିଁଲି ନାହିଁ । ଧରିନେଲି ଯେ ତାର ଗଠନଶୈଳୀର ଅଭିନବତ୍ୱ ହିଁ ପାଠକମାନଙ୍କୁ ଆକୃଷ୍ଟ କରିଛି । ପୂରାପୂରି ଘଟଣାବିହୀନ ଏବଂ ନିସ୍ତରଙ୍ଗ ଗଳ୍ପର ଘ୍ରାଣତ୍ୱ ହିଁ ମଜା ଲାଗିଛି ସେମାନଙ୍କୁ, ନାୟିକା ମିସେସ୍ ପୁରୀଙ୍କ ଅଳସ ବିଳାସ ସାଙ୍ଗକୁ ଖାପ୍ ଖାଇଲା ପରି । ସତେକି କଳା ସାଙ୍ଗରେ କାରିଗରି ମିଶି ଯାଇଛି ଚମତ୍କାର ଭାବରେ । କିନ୍ତୁ

ବେଶିଦିନ ଯାଏଁ ନିଜକୁ ବାହାବା ଦେଇ ପାରିଲି ନାହିଁ ମୋ କୃତିତ୍ୱ ପାଇଁ । ଭାରତର ଜଣେ ବିଶିଷ୍ଟ ଲେଖକ ମୋ ଠାରୁ କେତୋଟି ଇଂରାଜୀରେ ଅନୂଦିତ ହୋଇଥିବା ଗଳ୍ପ ମାଗି ଥିଲେ, ତାଙ୍କର ପ୍ରାୟୋଜିତ ସଂକଳନ "New Writing in India" ରେ ପ୍ରକାଶ କରିବା ପାଇଁ Penguin Books, ଲଣ୍ଡନ ତରଫରୁ । ମୋତେ ଲେଖିଥିଲେ କେବଳ ଗୋଟିଏ ଯୋଡ଼ିଏ ଗପ ପଠାଇବାକୁ, ଯେଉଁଥିରେ ସମାଜଚେତନାର ସୁସ୍ପଷ୍ଟ ସ୍ୱାକ୍ଷର ଥିବ । ଭଲ କଥା । ମୁଁ ଏହି ଗପ ଏବଂ 'ଗୋଟିଏ ଲାଲ୍ ସଂଧ୍ୟା'ର ଇଂରାଜୀ ଅନୁବାଦ ପାଇଥିଲି ତାଙ୍କ ପାଖକୁ । ସେ ଏଇ ଦୁଇଟି ମଧ୍ୟରୁ ଅନ୍ୟଟିକୁ ବାଛିଲେ । ସେଥିରେ ଦୁଃଖ କରିବାର କିଛି ନାହିଁ । କିନ୍ତୁ ତା ସାଙ୍ଗକୁ ଗୋଟିଏ ମନ୍ତବ୍ୟ ଦେଲେ 'ଲକ୍ଷ ବିହଙ୍ଗ' ଉପରେ, ଯାହା ମୋତେ ଆଶ୍ଚର୍ଯ୍ୟ ଲାଗିଲା । କହିଲେ, ଗପଟା ନିହାତି "Static", ଅର୍ଥାତ୍ ନିଷ୍କ୍ରିୟ ହୋଇଯାଉଛି । ହେ ଭଗବାନ ! ସେଇ ତ ଗପର ବାହାଦୂରୀ ! କିନ୍ତୁ ଲେଖକ ମହାଶୟଙ୍କ ମତରେ ଇଏ ଚଳିବ ନାହିଁ ବିଦେଶ ବିପଣୀରେ । ତାଙ୍କ ସାଙ୍ଗରେ ତର୍କ କରିବାର ଅବକାଶ ନଥିଲା । ସେଇଠୁଁ ମୁଁ ଭାବି ହେଲି ତାଙ୍କ ସମାଲୋଚନାକୁ ନେଇ । ସତରେ କଣ ଗପଟା ନିହାତି ନିଷ୍କ୍ରିୟ ହୋଇଯାଇଛି ? ତା'ହେଲେ ତାହା ଏତେ ଲୋକପ୍ରିୟ ହୋଇପାରିଲା କେମିତି ? କାରିଗରି ହିସାବରେ ମୁଁ ନିଷ୍କ୍ରିୟତାର ବିରୋଧୀ । ମୁଁ ତାର ତତ୍ତ୍ୱ ଶୁଣାଇଛି ଏବେ ମୋ ବହି 'କଥା ସାହିତ୍ୟର କଳା ଓ କାରିଗରି' ରେ । କହିଛି, 'କାହାଣୀ ପାଇଁ ଅନ୍ତତଃ ଚାଖଣ୍ଡେ ଜାଗା ଦରକାର ଯେଉଁଠି ସେ ହାତ ଗୋଡ଼ ଚଳେଇ ପାରିବ, କଡ଼ ଲେଉଟେଇ ପାରିବ । ତାଛଡ଼ା ଅଙ୍ଗ ଚାଳନାର ପ୍ରବୃତ୍ତି ଓ ଅବକାଶ କଥାବସ୍ତୁକୁ ଆବୁରିବା ପାଇଁ । ମନେରଖ ଯେ ଗପ ଯେତେ ଛୋଟ ହେଲେ ମଧ୍ୟ ବିନ୍ଦୁରେ ପର୍ଯ୍ୟବସିତ ହୋଇପାରିବ ନାହିଁ । ତା'ପାଇଁ ଲୋଡ଼ା ଯତ୍ ସାମାନ୍ୟ ପ୍ରବାହ ଓ ବିସ୍ତାର... ।' ତେଣୁ ପ୍ରଶ୍ନ ହେଉଛି, - ମିସେସ୍ ପୂରୀ ଯେଉଁ ସୁଖ-ଶଯ୍ୟାରେ କଡ଼ ଲେଉଟାଉ ଥିଲେ, ସେଇ ଚାଖଣ୍ଡେ ଜାଗା କଣ ଯଥେଷ୍ଟ ନଥିଲା ଗଳ୍ପର ପ୍ରବାହ ଓ ବିସ୍ତାର ପାଇଁ ? ଅର୍ଥାତ୍ କିଛି ନ କରି ତାଙ୍କ ଅତିବୁଦ୍ଧି ମନଟାକୁ ଖେଳାଉଥିଲେ ନାନା ଉଦ୍ୟମର ସଂଭାବନା ନେଇ, ହେଲେ ଯଥା ସମୟରେ ଫେରି ଆସୁଥିଲେ ତାଙ୍କ ଅଳସବିଳାସର ସ୍ୱର୍ଗକୁ, ସେଇ କାର୍ଯ୍ୟକଳାପର ପରିସର କଣ ଉପଯୋଗୀ ନଥିଲା ଗଳ୍ପର କଥାକୁହା ପାଇଁ ? ଆପଣ କହିବେ ଯେ ଭୁଲି ଯାଅ କବି ଆଦିଲ୍ ଜସାଓ୍ୱାଲା କଣ କହିଥିଲେ ବିଦେଶୀ ସଂସ୍ଥା ତରଫରୁ । ଆମ ଦେଶରେ ସଫଳତା ମିଳିଛି ଗପଟିକୁ, ସେଇଥିରୁ କଣ ବୁଝାପଡୁ ନାହିଁ ଯେ ମିସେସ୍ ପୁରୀଙ୍କ ଶେଯ, ଶାଢ଼ୀ ଓ ଲକ୍ଷ ବିହଙ୍ଗକୁ ଖୁଣିବାର ନୁହେଁ ?

ମୁଁ ବି ସେମତି ଭାବିଥିଲି ଏବଂ ସେହି ସଂକ୍ରାନ୍ତରେ ଏକ ସୂଚିନ୍ତିତ ସଫେଇ ଶୁଣେଇଥିଲି ନିଜକୁ ଗଳ୍ପର ସଂଫଳତାକୁ ନେଇ । ଯେ ଯଦି ଖାଲି ମିସେସ୍ ପୂରୀ ଥାଆନ୍ତେ ମୋ ଗପରେ ଓ ସେ କେବଳ ଭାବି ଚାଲି ଥାଆନ୍ତେ, ଅଳସ ଅଳସ ଅକର୍ମଣ୍ୟ ଭାବନା,

ସେଇଠୁଁ ଆଖିବୁଜି ଥାଆନ୍ତେ, ଧଳା ରିଫ୍ରିଜିରେଟର୍ ଉପରେ ବସିଥିବା ମାଛିଟାକୁ ଅନେଇ, ତା' ହେଲେ ଗପଟାକୁ ବୋଧହୁଏ ପ୍ରକୃତରେ ନିଷ୍କ୍ରିୟ କୁହାଯାଆନ୍ତା ଏବଂ ହାରାହାରି ପାଠକର ଆଖି ମଧ୍ୟ ଲାଗି ଆସନ୍ତା ବୋର୍ ହୋଇ । କିନ୍ତୁ ଦେଖୁନାହାନ୍ତି ନିଷ୍କ୍ରିୟତାର ଅପୂର୍ବ ସାଜଶୃଂଗାର ? ତା'ର ଅଭିନବ ରୂପକଳ୍ପ ? ନାୟିକାଙ୍କ ଶାଢ଼ୀରେ ଥିବା 'ଲକ୍ଷ ବିହଙ୍ଗର ଶୋଭା' ଠାରୁ ଆରମ୍ଭ କରି ବିହଙ୍ଗୀୟ ଜୀବନଦର୍ଶନ ଓ ତାଙ୍କ ଚୈତନ୍ୟୋଦୟର ଶେଷ କଥା ଯାଏଁ ? ଏହି କଣ ସଭ୍ୟତାର ସ୍ୱର୍ଗ ? ହୋଇଥିବ । କାହିଁକି ନା ଏଠି ଜ୍ଞାନର ଭାରୀ ପଣ ନାହିଁ ଓ ଅଜ୍ଞାନର ଜଡ଼ତା ନାହିଁ । ଅସଂନ୍ତୋଷ ନାହିଁ, ଉଦ୍ୟମ ନାହିଁ । ଅନୁକମ୍ପା ନାହିଁ, ହିଂସା ନାହିଁ । ବେରସିକତା ନାହିଁ । ଏଇ ସଯତ୍ନ ନିର୍ମିତ କାରିଗିରି, କ୍ଲାଇମାକ୍ସ, ନାହିଁ - ନଥିବା ଚଢ଼େଇମାନଙ୍କୁ ନେଇ, ଏହା ହିଁ କଣ ଗଳ୍ପର ତଥାକଥିତ ନିଷ୍କ୍ରିୟତାକୁ ବାତିଲ୍ କରି ଦେଉ ନାହିଁ ?

କିନ୍ତୁ ଦୁଃଖର ବିଷୟ, ମୋର ଏହି ଦମ୍ଭ ମଧ୍ୟ ତିଷ୍ଠି ରହି ପାରିଲା ନାହିଁ ବେଶୀ ଦିନ । କାରଣ, ବିକାଶ ପ୍ରତିଷ୍ଠାନର ସାହିତ୍ୟ ସଂପାଦକ କହିଲେ ମୋର ଏହି ଗପ ବିଷୟରେ- ଏମିତିକା ସୁନ୍ଦରିଆ ଗପ ଭଲ ଲାଗେ ଅନେକଙ୍କୁ । କିନ୍ତୁ କୃତ୍ରିମ ପରି ମନେ ହୁଏ ମୋତେ । ଏ ଚାରୁକଳା, ଯାହା ଗଳ୍ପର ପ୍ରାଣକୁ ଚିହ୍ନିବାକୁ ଦିଏ ନାହିଁ । ତାଙ୍କ କହିବା କଥା ଯେ କଳାରୁ ଭାରି ଗରି ବଳି ପଡ଼ିଛି ଏଇ ଗପରେ । ତେଣୁ ଯେତେ କଳାତ୍ମକ (artistic) ହେଲେ ମଧ୍ୟ ଯାକୁ କୃତ୍ରିମ (artificial) ବୋଲି କୁହାଯିବ । ହାୟ ! କିଏ ଭଲା ଧାର୍ଯ୍ୟ କରିବ ମୋ ପାଇଁ କି କେଉଁ ଲେଖକ ପାଇଁ ଯେ ସାହିତ୍ୟକ କଳାର ସୀମାରେଖା ଏଇଠି, ସେଣିକି କେବଳ ଚାରୁକଳା, ତୁଚ୍ଛା କାରିଗରି ?

ଯାହାହେଉ 'ଲକ୍ଷ ବିହଙ୍ଗ'ରେ ସମାଜଚେତନାର ସାକ୍ଷର ସୁସ୍ପଷ୍ଟ ନୁହେଁ ବୋଲି କେହି କହି ପାରିବ ନାହିଁ । ଏବଂ ଉକ୍ତ ସଂପାଦକ ମହୋଦୟ ମଧ୍ୟ ସେ ବିଷୟରେ କୌଣସି ମନ୍ତବ୍ୟ ଦେଇନାହାନ୍ତି । ବରଂ ମୋର ମନେ ହୁଏ ଯେ ସ୍ୱାକ୍ଷରଟି ଏତେ ସୁସ୍ପଷ୍ଟ ଓ ସୁଦୃଶ୍ୟ ହୋଇ ନଥିଲେ ଭଲ ହୋଇଥାଆନ୍ତା । ମୋଟ ଉପରେ ମୋର ଧାରଣା ଯେ ବ୍ୟକ୍ତିମୂଳକ ଗଳ୍ପମାନଙ୍କରେ ମୁଁ ଯେଉଁ ଶ୍ଳେଷ (irony)ର ଚାତୁରୀ ଓ ମାଧୁରୀ ଆଣି ଦେଇ ପାରିଛି ମଣିଷ ମନରେ ବୈଚିତ୍ର୍ୟ ଦର୍ଶାଇବା ପାଇଁ, ମୁଁ ମୋର ସେହି ସ୍ୱଧର୍ମ ରକ୍ଷା କରିପାରି ନାହିଁ ଯେଉଁଥିରେ ଚରିତ୍ରବିଶେଷର ସମାଜ ଚେତନା, ଅର୍ଥାତ୍ ସେଥିର ରୂପଗୁଣ ଭଲମନ୍ଦ ହିଁ ଭାବିବାର ବିଷୟ । କିନ୍ତୁ କାହିଁକି ? ମଣିଷ ମନର ସାମଗ୍ରିକ ରଙ୍ଗ ଯଦି ପ୍ରକୃତରେ ଧୂସର, ତା'ର ହିଂସା -ଦୟା, ପ୍ରେମ-ଘୃଣା, ଭୟ-ସାହସ ଇତ୍ୟାଦିର ବିଚିତ୍ର ସଂମିଶ୍ରଣକୁ ନେଇ, ବ୍ୟକ୍ତିବିଶେଷର ବିଭିନ୍ନ ଭାଗମାପ ସତ୍ତ୍ୱେ, ତା'ହେଲେ ମୁଁ ଶ୍ଳେଷର ଇସାରା ଇଙ୍ଗିତ ଆଖିମିଟିକା ଆଦି ସୂକ୍ଷ୍ମସୁନ୍ଦର ଶୈଳୀକୁ ଛାଡ଼ି ଦେଲି କାହିଁକି, ସମାଜକୈନ୍ଦ୍ରିକ ଗଳ୍ପଟିଏ

ଲେଖିବା ପାଇଁ ? ନିହଣ ମୂନକୁ ଛାଡ଼ି ଦେଇ ହାତୁଡ଼ି ଧରିଲି କାହିଁକି ? ଅଯଥାରେ ମୋର ସ୍ୱର ଉଞ୍ଚେଇଲି କାହିଁକି ? ଯଥା 'ଲକ୍ଷ ବିହଙ୍ଗ'ରେ ଥିବା ବିଦ୍ରୂପ କଣ ସତରେ ଘୋଡ଼େଇ ହୋଇଯାଇଛି ବିହଙ୍ଗମାନଙ୍କ ମିଛିମିଛିକା ଚୈତନ୍ୟୋଦୟରେ ? ନା ତା'ର ମୂନ ଆହୁରି ଗହୀରରେ ଗଳି ଯାଉଥିବ ସମାଜର ମିସେସ୍ ପୁରୀମାନଙ୍କ ଦେହରେ ? ଯାହାହେଉ, ଏଥିରେ ତ ଅନ୍ତତଃ ଗୋଟାଏ କଳାତ୍ମକ କାରସାଦି ଅଛି, ତା'ର କାର୍ଯ୍ୟକାରିତା ଯାହା ହେଉ ପଛେ, ଅନ୍ୟ କେତୋଟି ଗଳ୍ପରେ ତାହା ମଧ୍ୟ ନାହିଁ । ସତେକି ଲେଖକ ନ ରାଗି ରହି ପାରିନାହିଁ ଏବଂ ତା ସ୍ମିତହାସଦିଆ ଦରକୁହାପଣକୁ ବର୍ଜନ କରିଛି ସିଧାସଳଖ ଖୁଂଚା ଦେବା ପାଇଁ ତା'ର ଶରବ୍ୟ ମଣିଷଟିକୁ । ଶବ୍ଦାୟିତ ହୋଇଉଠିଛି ତାର ବିଦ୍ରୂପର ବାଣୀ ।

ଉଦାହରଣ ସ୍ୱରୂପ, "ଲାଲ୍ ସଂଧାରେ" ରେ ବିପ୍ଲବୀ ବୀର । ଯେତେବେଳେ ତା'ର ବିପ୍ଲବୀ ମନୋଭାବ ପାଣି ଫାଟି ଯାଇଛି, ମିଷ୍ଟର ଦତ୍ତଙ୍କ ସୌଖୀନ ସୁରୁଚିପୂର୍ଣ୍ଣ ବୈଠକଖାନାରେ ତାଙ୍କ ମନୋହାରିଣୀ ଶାଳୀଙ୍କ ଗହଣରେ, ଏବଂ ସେ ଓଲଟି ଯାଇଛି ତା' ନିଜ ବିରୁଦ୍ଧରେ । ଏବଂ ଚେତାଇ ଦେଇଛି ତା ସାଙ୍ଗ ଭାଇମାନଙ୍କୁ -

" କିଓ, ମୁଁ କଣ କରିବି ? ମୁଁ କଣ ଲିଡର୍ ନା ହିରୋ ? ଏତିକି ବୁଝୁ ନାହିଁ ଯେ ମୁଁ ତୁମ ଦଳରେ ଥିଲେ କଣ ହେବ, ମୋର ଦର୍କାର ଏମିତି ଗୋଟାଏ ଘର, ଏମତି ଗୋଟାଏ ଡ୍ରଇଁରୁମ୍ - ? ଏସବୁ ମୋ ହାତପାହାନ୍ତାରେ, ମୁଁ ଯଦି ଲାଗି ପଡ଼ନ୍ତି । ଏଇ ପାହାଚରେ ଉଠିବା ସହଜ, ଆଉ ତା'ହେଲେ ମୁଁ ଜଲ୍ଦି ହିରୋ ହୋଇଯିବି । ଥରେ ହିରୋ ହୋଇଗଲେ ଆଉ କଥା ନାହିଁ । ମୁଁ ବିପ୍ଲବର ଢେଉ ଉପରେ ଚଢ଼ିଯିବି । ଚଢ଼ିଯିବି, ଆଉ ତୁମମାନଙ୍କୁ ଧନ୍ୟ କରିବି । ଏତିକି ବୁଝୁ ନାହିଁ ? " କ୍ୱଚିଦ୍ ଏହି ପ୍ରକାର ଦୟନୀୟ ଦୈନ୍ୟର ସ୍ୱର ଫୁଟିଉଠିଛି ମୋର ଅନ୍ୟ କେଉଁ ଚରିତ୍ରର ମୁହଁରେ ଯେଉଁଠି ସମାଜ ଚେତନାର ଭୂମିକା ସୁପ୍ରଧାନ ନୁହେଁ ।

ସେ ଥିଲା ଜଣେ ସାନବୁର୍ଜୁଆ ଯେ ସହଜେ ବଡ଼ବୁର୍ଜୁଆ ହେବାର ଲୋଭକୁ ସମ୍ଭାଳି ପାରିଲା ନାହିଁ, ସେ ଯେତେ ରାଗୁ ପଛେ, ମିଷ୍ଟର ଦ ତ୍ତଙ୍କର ପୁଞ୍ଜିବାଦୀ ସମାଜ ଉପରେ । କିନ୍ତୁ ମୋ 'ରାତି କୁକୁର'ର ନକ୍ସାଲ ଓ କନ୍ସାଲଙ୍କ ଲଢ଼େଇ ଭିତରେ ନିଜକୁ ସୁରକ୍ଷିତ କରି ରଖିବାକୁ ଚାହୁଁଥିବା ସାନବ୍ୟୁରୋକ୍ରାଟ୍‌ର ଦୁରବସ୍ଥା ବୋଧ ହୁଏ ଆହୁରି ହାସ୍ୟାସ୍ପଦ ତଥା ଯନ୍ତ୍ରଣାଦାୟକ । ବୁଦ୍ଧିମତୀ ନବୀନା ତା'ର ସ୍ୱାମୀ ଶୀତଳବାବୁଙ୍କୁ କେମିତି ଛିଗୁଲେଉଛି ଦେଖନ୍ତୁ -

"ନା, ଆମର କିଛି ହେବ ନାହିଁ । ଆମେ ସେହି ଦଳର ପ୍ରାଣୀ, ଯେଉଁମାନେ ସୁନ୍ଦର ହିଂସ୍ର ବ୍ୟାଘ୍ରର ମୁହଁକୁ ମୁଗ୍ଧ ହୋଇ ଚାହିଁ ରହୁ । ଲାଙ୍ଗୁଳ ଜାକି ପଳାଇ ଯାଉପାରୁ ନାହିଁ - ଆମେ କ'ଣ ଛେଳି, ମେଣ୍ଢା ହୋଇଛୁ ? ଅଥଚ ବାଘ ସାଙ୍ଗରେ ଯୁଦ୍ଧ କରିବାର ସାହସ ନାହିଁ । ଆମେ କେବଳ ଚାହିଁ ରହୁ । ଆହା, କି ଅପରୂପ ଠାଣି ! କି ନାଲି ଗୁଲୁଗୁଲିଆ ହିଂସା ! ସେ କଅଣ ମୋତେ ଖାଇବ ?"

ସେଇଠୁ ଖଣ୍ଡି ଖଣ୍ଡି ହସର ବ୍ୟବଧାନପରେ ''ସେ କଅଣ ମୋତେ ଖାଇବ ? ସେ କଅଣ ଜାଣେ ନାହିଁ ଯେ ମୁଁ କାହାରି କଳିକଜିଆ ସୁଖ ଦୁଃଖରେ ନଥାଏ ? ସେ କ'ଣ ଜାଣେ ନାହିଁ ଯେ ମୁଁ ନିଜ ସ୍ୱାର୍ଥ, ନିଜ ଅଫିସ୍, ନିଜ ସ୍ତ୍ରୀକୁ ନେଇ ଥାଏ ? ଯେ ମୋର ରୋଷ ନାହିଁ, ରସ ନାହିଁ, ଦଳ ନାହିଁ କି ବଳ ନାହିଁ ?

ସେ କଅଣ ଜାଣେ ନାହିଁ ଯେ ମୁଁ ଧେଡ଼ୀ କୁକୁର ?"

ଚମତ୍କାର ଭାଷଣ । ନିର୍ମମ ଓ ନାଟକୀୟ କୁଠାରଘାତ, ବିଚରା ଶୀତଳବାବୁଙ୍କ ସୁସ୍ଥିବାଦୀ ଚେତନା ଉପରେ । କିନ୍ତୁ ମିଛକ୍ ବାସ୍ତବତାର ପରିପ୍ରେକ୍ଷୀରେ ଦେଖିବାକୁ ଗଲେ, କେଉଁ ସ୍ତ୍ରୀ କ'ଣ ଏହି ପ୍ରକାର ଭାଷଣ ଦେଇଥାଏ ତା'ର ସ୍ୱାମୀକୁ, ତାଙ୍କ ଶୋଇବା ଶେଯରେ ? ଏବଂ ମୁଁ କଣ ଠିକ୍ ଏହି ପ୍ରକାର ବାଗ୍ମିତାକୁ ଖୁଣି ନାହିଁ ମୋର ଦ୍ୱିତୀୟ ବକ୍ତୃତାରେ, 'ଗତ କାଲିର କଥା' ଉପରେ କିଛି କହିବାକୁ ଯାଇ ?

ହଁ, ମୁଁ ମୋ ସ୍ୱଧର୍ମକୁ  ରକ୍ଷା କରିପାରି ନାହିଁ ଏଇ ଗପଟିରେ । ମୋ ନିଜ କାବ୍ୟାଦର୍ଶନର ଉଲ୍ଲଙ୍ଘଂନ କରିଛି । ଯେଉଁଥିରେ ତା'ର ବାସ୍ତବତା ତଥା କଳାତ୍ମକତା ବ୍ୟାହତ ହୋଇଛି ବୋଲି କହିବାକୁ ହେବ । ହୋଇପାରେ ଯେ ଏ ଦୁଇଟିଯାକ ଗଳ୍ପ ମଧ ବିଭିନ୍ନ ଭାଷାରେ ଅନୂଦିତ ଓ ପ୍ରକାଶିତ ହୋଇ ସୁଖ୍ୟାତି ଅର୍ଜନ କରିଛି, Penguin Books. Londonଙ୍କ ସଂକଳନରେ ,ଗୋଟିଏ ଲାଲ ସଂଧାର ଇଂରାଜୀ ଅନୁବାଦ "Red Evening" ଏବଂ ପ୍ୟାରିସ୍‌ରୁ ପ୍ରକାଶିତ "Europe" ପତ୍ରିକାରେ 'ରାତି କୁକୁର'ର ଫରାସୀ ଅନୁବାଦ ସମେତ । ତଥାପି ମୁଁ ନବୀନାକୁ ଆଜିଯାଏ କ୍ଷମା କରିପାରିନାହିଁ ତା'ର ସେହି ମଞ୍ଚସୁଲଭ ଭାଷଣ ପାଇଁ ।

ତେବେ ମୋ ସ୍ଖଳନର ଗୋଟିଏ କାରଣ ମୋତେ ଦିଶିଯାଉଛି ଜଳଜଳ ହୋଇ, ଯେଉଁଥି ପାଇଁ ମୁଁ ଲଜ୍ଜାରେ ମୁଣ୍ଡକୁ ତଳକୁ କରିପାରୁ ନାହିଁ । ମାନୁଛି ଯେ ବ୍ୟକ୍ତିଚେତନା ଓ ସମାଜ ଚେତନା-ଉଭୟେ ମନଗହନର ବାସିନ୍ଦା ଓ ସେଥିରେ ଥିବା ବିଭିନ୍ନ ରଙ୍ଗ ସାମୁହିକ ଧୂସର ରଙ୍ଗରେ ସାମିଲ୍ ହେବାକୁ ବାଧ । କିନ୍ତୁ କଅଣ ହୁଏ କି, ବ୍ୟକ୍ତିବିଶେଷର ସମାଜଚେତନା ବିଷୟରେ କିଛି କହିବାକୁ ଗଲେ ମୋର ସାମାଜିକ ଆଭିମୁଖ୍ୟ ପ୍ରବଳ ହୋଇଉଠେ ବେଳେବେଳେ ଏବଂ ମୋର ମନେ ହୁଏ ଯେ ତା'ର ଦୁର୍ବଳତା, ଶଠତା ଓ ସ୍ୱାର୍ଥପରତାକୁ ପାଠକର ଆଖିରେ ଅଙ୍ଗୁଳି ଗେଞ୍ଜି ଦେଖାଇବାକୁ ପଡ଼ିବ, ତାହା ଯେତେ ସ୍ଥୂଳ ଏବଂ ଅସୁନ୍ଦର ହେଉ ପଛକେ । ଛାଇ-ଆଲୁଅର ବୈଚିତ୍ର୍ୟ କାମ ଦେବ ନାହିଁ  ଏଠି । ମୋତେ ରୋକ୍ ଠୋକ୍ କିଛି କହିବାକୁ ପଡ଼ିବ ଆସାମୀକୁ କାଠଗଡ଼ାରେ ପୂରାଇ । ଯେମିତିକି ତା' ମୁହଁ ରଙ୍ଗା ହୋଇଉଠିବ । କିନ୍ତୁ ସେହି ପ୍ରକାର ହିଂସ୍ରତା ଆସେନାହିଁ ବିଚରା ବ୍ୟକ୍ତିର ଅନ୍ତରଙ୍ଗ ଦୁଃଖ ସୁଖ ବିଷୟରେ ଲେଖିଲା ବେଳେ । ସତେକି ବ୍ୟକ୍ତିଗତ ସଂପର୍କର ରାଜ୍ୟ ଏତେ

ଗହନ ଓ କଣ୍ଟକିତ, ତଥା ବିଧିବିଧାନର ଅଧିନ ଯେ ସେଠି କାହାରିକୁ ସହଜେ ଦୋଷ ଦେଇ ହେବନାହିଁ ।

ଏଇ ଦୋମୁହାଁ ନୀତିର ସଫେଇ ନାହିଁ ମୋ ପାଖରେ । କିନ୍ତୁ ବେଳେବେଳେ ସନ୍ଦେହ ହୁଏ ଯେ ଶିକ୍ଷିତ ମଧ୍ୟବିତ୍ତ ସମାଜର ସଭ୍ୟଟିଏ ହୋଇ ମୋର ଦୋଷୀଭାବ କଣ ମାଡ଼ିପଡୁଛି ମୋତେ ଓ ମୁଁ ତା'ର ଦାଉ ସାଧୁଛି ମୋର ଜାତିଭାଇଙ୍କ ଉପରେ ?

ସେତେବେଳର ଅନ୍ୟତମ ପ୍ରତିଷ୍ଠିତ ଏବଂ ବିଭିନ୍ନ ଭାଷାରେ ଅନୂଦିତ ଗଳ୍ପ, 'ବିଧର୍ମୀ' । ଯାହାର ବକ୍ତବ୍ୟରେ ସମାଜ ସହିତ ଦେଣନେଣ ନାହିଁ । କେବଳ ନିଜର ନିଜ ସହିତ । ଏକାନ୍ତ ଗୋପନୀୟ ଏବଂ ତାହା ଏକ ଅପୂର୍ବ ଆଧାତ୍ମିକ ବେଦନାରେ ଆପ୍ଳୁତ ବୋଲି ଅନେକ କୁହନ୍ତି । ହେଲେ ତା'ର ଲୋକପ୍ରିୟତା ସଂଦିଗ୍ଧ, କେବଳ ପ୍ରତିଷ୍ଠାର ଅନୁଗାମୀ ବୋଲି ମୋର ମନେ ହୁଏ । ଦୁଇ ବନ୍ଧୁଙ୍କ ଦୁଇ ପିଲାଙ୍କ ଭିତରୁ ଗୋଟିଏ ଚାଲିଗଲା । ରବର ବଲ୍‌ଟା ବର୍ଷାରେ ଭିଜୁଛି ତା' ଆସିବା ବାଟକୁ ଅନେଇ ଅନେଇ, ହେଲେ ସେଇ ଖେଳଣାବାଲାଟା ତଥାପି ଗଳିରେ ଗୀତ ଗାଇଗାଇ ଚାଲିଛି । "ଖୋକା ଖେଲବେ ଖୁକୀ ଖେଲବେ" ଆଉ ବଞ୍ଚିଥିଲା ପିଲାର ବାପା ରାଗିଲା ପରି କହୁଛି ତା' କୋହ ଭିତରୁ ଯେ ସେ କେବେହେଲେ କିଛି କିଣିବ ନାହିଁ ତା'ଠାରୁ । ଏହି କାରୁଣ୍ୟ ରସର ମହୋତ୍ସବ ଯୋଗୁଁ ହିଁ ଗପଟି ଏତେବାଟ ଆସିପାରିଛି, କିନ୍ତୁ ତା'ର ମୂଳକଥା, ବଜ୍ରାହତ ନାୟକର ବିଚ୍ଛିନ୍ନତାବୋଧ, ଅଶୁଣା ଓ ଅବୁଝା ରହିଯାଇଛି, ଏଭଳି ଧାରଣା ମୋତେ ଆକ୍ରମଣ କରେ ଏବଂ ମୁଁ ତାକୁ ମିଛ ବୋଲି ଘଉଡ଼େଇ ଦେଇପାରେ ନାହିଁ ।

ଘଟଣାଟିକୁ ମନେ ପକାଇ ଦିଏ । ଦୁଇ ବନ୍ଧୁଙ୍କ ମରେ ଜଣେ ଧାର୍ମିକ ଏବଂ ଅନ୍ୟ ଜଣକ ମନେ ମନେ ନାସ୍ତିକ । ଥରେ ଦିହିଁଙ୍କ ସମବୟସୀ ପିଲା ଦି'ଜଣ ଶକ୍ତ ବେମାର ପଡ଼ିଲେ । ଜଣକୁ ଟାଇଫଏଡ୍ ଅନ୍ୟ ଜଣକୁ ବସନ୍ତ । ଏବଂ କ୍ରମଶଃ ଜୀବନ ମରଣର ସଂକଟ ଦେଖା ଦେଲା ଦି'ଜଣଙ୍କ ପାଇଁ । ସେହି ପରିସ୍ଥିତିରେ ଶୁଣନ୍ତୁ ମୋ ନାୟକ କ'ଣ କହୁଛି ତା' ପ୍ରାର୍ଥନାର ଲୋଭକୁ ଦମନ କଲାପରେ, ଯେତେବେଳେ ତା'ର ମନେପଡ଼ିଲା ବନ୍ଧୁ ଅଭିରାମ ବାବୁଙ୍କ କଥା-

"ଅଭିରାମ ବାବୁ ଓ ଇନ୍ଦୁ । ଅଭିରାମ ବାବୁ ମୋ ପରି କଷ୍ଟ ପାଇନାହାନ୍ତି । କାରଣ ସେ ଗୋଟିଏ ମିଛ ଧାରଣାରେ ନିଜକୁ ଡୁବାଇ ରଖିଛନ୍ତି ।

ସେହିଠୁ ମୋ ମନରେ ଆସିଲା ଯେ- । ମୋର ମନରେ ଆସିଲା, ଜଣେ କେହି ମରିଲେ ଅନ୍ୟଜଣକ ବଂଚି ଉଠିବ ।

ମୋ ଇଚ୍ଛାପୂରଣ ନୁହେଁ, ଏ ମୋର ପ୍ରାର୍ଥନା ନୁହେଁ, କାମନା ନୁହେଁ । ମୋର କ'ଣ ତାଙ୍କ ଉପରେ ଅହନ୍ତା ଥିଲା ? ନା ମୁଁ ଇନ୍ଦୁକୁ ଭଲପାଏ ନାହିଁ ? କିନ୍ତୁ ମୋର ବିଶ୍ୱାସ

ହେଲା ଯେ ମୋ ପୁଅ ବଞ୍ଚି ଉଠିବ । ଇନ୍ଦୁ ମରିବ । କାହିଁକି ନା ଅଭିରାମ ବାବୁ ଧାର୍ମିକ, ତାଙ୍କୁ କିଛି ବାଧିବ ନାହିଁ । ସେମତି ହେବା ଉଚିତ୍ ।

ଏହି ସମୟରେ କାଚ ଝରକା ଭିତରର ଲୋକମାନେ ବୋଧ ହୁଏ ବେଶି ଜୋର୍‌ରେ ହସି ଉଠିଲେ । ରାସ୍ତାଘାଟ, ଘର ବାହାରରେ ଥିବା ମୋର ପଡ଼ୋଶୀମାନେ ଅଧିକ ଚଞ୍ଚଳ ହେଲା ପରି ମନେ ହେଲା । ଚଞ୍ଚଳ ଓ ସମ୍ବନ୍ଧଶୀଳ । ଏପରିକି ମୋତେ ଲାଗିଲା ଯେ ଏହି ଧାଉଁଥିବା କାର୍ ସବୁ ଓ ଏକୁଟିଆ ପୁଲିସ୍ ପ୍ରହରୀ ଏକାଠୀ ଅଛନ୍ତି, ଅଭିନ୍ନ, ଗୋଟିଏ ସଂପୂର୍ଣ୍ଣ ଗୀତୀକାବ୍ୟର ପଦେପଦେ । କେବଳ ମୁଁ ସେଠି ନାହିଁ, ମୁଁ ଅପର ବ୍ୟକ୍ତି । ବିଧର୍ମୀ ।''

ଏମିତି କ'ଣ କିଏ ଭାବେ ? ଯେ ମୋ ବନ୍ଧୁର ପିଲା, ଯାହାକୁ ମୁଁ ଏତେ ଭଲ ପାଏ, ସେ ମରିବ (ଅର୍ଥାତ୍ ମରୁ) ଓ ସେଇଠୁ ମୋ ପିଲା ବଞ୍ଚି ଉଠିବ ? ଏକାଧିକ ବନ୍ଧୁ ମୋତେ ପଚାରିଛନ୍ତି ଏହି ପ୍ରଶ୍ନ । ଏବଂ ଅନେଇଛନ୍ତି ମୋ ମୁହଁକୁ ବଲ ବଲ ହୋଇ ସତେକି ଲେଖକ ଏକ ଅଜବ୍ ଜନ୍ତୁ, ଯେତେକ ଖରାପ ଭାବନା ପଶେ ତା' ମୁଣ୍ଡରେ । ଅବଶ୍ୟ ଆଶା କରୁଛି ଯେ ସେମାନେ ଖାଲି ମୋରି ଆଡ଼କୁ ଅନେଇ ନ ଥାଆନ୍ତି ସେମିତି, ଯେ ମୁଇଁ ଖରାପ, କେଉଁ ଲେଖକ ନୁହେଁ ।

ହଁ ଆଜ୍ଞା ଏମିତି ହୁଏ । ଅନେକ ଭାବରେ ବୁଝେଇ ପାରି ଥାଆନ୍ତି ଏକଥା । ଯେ ଇଏ ଗୋଟିଏ ଅଦ୍‌ଭୁତ ମନସ୍ତାତ୍ତ୍ୱିକ ତଥ୍ୟ । ଆପଣ ଫ୍ରଏଡଙ୍କୁ ପଢ଼ି ନାହାନ୍ତି ? କାମ୍ୟୁଙ୍କର ସେହି ଉପନ୍ୟାସ ପଢ଼ିନାହାନ୍ତି ଯେଉଁଠି ତରୁଣ ନାୟକ ତା' ମାଆର ଶେଷକୃତ୍ୟରେ ଯୋଗ ଦେବାକୁ ଯାଉଛି ଏବଂ ସେ ତା' ମାଆକୁ ଅବଶ୍ୟ ଭଲ ପାଏ, କିନ୍ତୁ ଏକ ବିସ୍ମୟକର ଧାରଣା ତା' ମନକୁ ଆସୁଛି ଯେ ସେ ବେଳେବେଳେ ଚାହୁଁଥିଲା ଏମିତି ହେବ ବୋଲି ? କିନ୍ତୁ ଆଶ୍ୱାସନା ଦେଇ ଥାଆନ୍ତି ଯେ ଏହି ପ୍ରକାର କାମନାକୁ ପ୍ରକୃତରେ କାମନା କୁହାଯାଏ ନାହିଁ, ଏଥିରେ କିଛି ଆଶଂକା ରହିଛି ଏବଂ କିଛି ଆତ୍ମବଡ଼ିମାର ନାଟକୀୟତା । ଯେମିତି କି ମୋ 'ବିର୍ଧମୀ'ର ନାୟକ କହୁଛି ଯେତେବେଳେ ତା' ପୁଅକୁ ବସନ୍ତ ହୋଇଛି ବୋଲି ଜଣା ପଡ଼ିଲା, ବନ୍ଧୁଙ୍କ ଝିଅ ଇନ୍ଦୁ ବେମାର ପଡ଼ିଲା ପରେ-

"ମୁଁ ପ୍ରଥମେ ଯେତେବେଳେ ଅଭିରାମ ବାବୁଙ୍କୁ ଏହି ଖବର ଦେଲି, ମୋ ମନରେ ଗୋଟାଏ ବିକୃତ ଗାରିମା ଥିଲା । ମୋତେ ମଧ୍ୟ ଟ୍ରାଜେଡ଼ି ଛୁଇଁଛି । ମୋତେ ସମ୍ମାନ ଦିଅ, ସହାନୁଭୂତି ଦିଅ ।"

କିନ୍ତୁ ଏଇ ମିଛ ଗାରିମା କଟି ଯାଇଥିଲା ଯେତେବେଳେ ପୁଅର ଅବସ୍ଥା ସାଂଘାତିକ ହୋଇଉଠିଲା । ସେ ମରିଯିବ କି କଅଣ, ଏଇ ଆଶଂକା ଆସିଲା ତା ମନକୁ ଏବଂ ସେଇଠୁଁ ତା'ରି ସେଇ ଅଦ୍‌ଭୁତ କାମନା... ନା, ନା, କାମନା ନୁହେଁ, ସେ କିଛି ଭାବି ନଥିଲା ସେ ଦିଗରେ, ଅଳପେଇସା ଭାବନାଟା ଛାଏଁ ଛାଏଁ ଆସି ପହୁଁଚିଲା ତା' ମନରେ ଏବଂ ପହୁଂଚିଲାରୁ

ତା'କୁ କ'ଣ ବୋଲି କ'ଣ କହିଲା ତା' ଆପଣ ଜାଣନ୍ତି । ହଁ, ଆଜ୍ଞା, ଏମିତି ହୁଏ । ବୁଝୁନାହାନ୍ତି ଯେ ତା' ମନରେ ଯଦି ପ୍ରକୃତରେ କିଛି ହିଂସାଭାବ ଥାଆନ୍ତା, ତାହାହେଲେ କଅଣ ସେ ପରେ ପରେ ଭାବିଥାଆନ୍ତା ଯେ ସେ ଅପର ବ୍ୟକ୍ତି ? ବିର୍ଧମୀ ?

ହେଲେ ଦୁଃଖର ବିଷୟ ଯେ ମୁଁ ବିଶେଷ କିଛି ବୁଝେଇ ପାରିଲି ନାହିଁ । ଖାଲି ଟିକିଏ ହସି ଦେଲି । ତା'ର ଅର୍ଥ ଯାହା ହେଉ ପଛେ ।

ସତକଥା କହିବାକୁ ଗଲେ ମୁଁ ଜାଣିଛି ଏମିତି ହୁଏ, ଆପଣା ଅନୁଭବକୁ ନେଇ । ମୁଁ ମଧ୍ୟ ବେଳେବେଳେ ଶୁଣିଛି ଏଇ ଭୟଙ୍କର ଏବଂ ହତାଶିଆ ସ୍ୱାର୍ଥର ଧ୍ୱନି ଏବଂ ପରେପରେ ଘୋର ଲଜ୍ଜିତ ହୋଇଛି । ଅସ୍ୱୀକାର କରିଛି ନିଜ ଭାବନାକୁ । ହେଲେ ମୁଁ ନିଜେ ବୁଝି ନାହିଁ ତା'ର କାରଣ କଣ । ଯେହେତୁ ମୋର ଦୃଢ଼ ବିଶ୍ୱାସ ମୁଁ ଖରାପ ଲୋକ ନୁହେଁ । ତା' ହେଲେ ମୁଁ କେମିତି ଭଲା ବୁଝେଇ ଥାଆନ୍ତି ମୋର ଭଲମଣିଷ ବନ୍ଧୁମାନଙ୍କୁ ଯେ ଏମିତି ହୁଏ, ଏବଂ ହେବା ସ୍ୱାଭାବିକ ?

ସବୁ ଦୋଷ ସୃଷ୍ଟିକର୍ତ୍ତାଙ୍କର । ଯେ ମୋତେ ରାଜା କରି ରଖିଲେ ମୋ 'ମୁଁ' ପଣର ରାଜ୍ୟରେ, ହେଲେ କେଉଁଠି ଟିକିଏ ବାଟ ଫିଟେଇ ଦେଇଛନ୍ତି ମୋ ପାଇଁ ଲୁହା ପାଚେରୀ ଥିବା କଣା ଟିଏ ପରି, ଯେମିତିକି ମୁଁ ମଝିରେ ମଝିରେ ବୁଝିବି ଓ ବୁଝିଲାରୁ ଛଟପଟ ହେବି ଯେ ଇଏ ମୋ ରାଜ୍ୟ ନୁହଁ, ଏ ମୋ ବନ୍ଦୀଶାଳା । ମୁଁ ନୁହେଁ ଏଇ ସଂସାରର କେନ୍ଦ୍ରବିନ୍ଦୁ, ମୋ ମନ ଜ୍ଞାନ, ଚିନ୍ତା ଓ ଚେତନାକୁ ନେଇ । ପ୍ରତ୍ୟେକେ ଅଛନ୍ତି ଯେଝା ରାଜ୍ୟର ରାଜା ହୋଇ, ବନ୍ଦୀ ହୋଇ । ଇସ୍ କି ଅସଭ୍ୟ ବ୍ୟବସ୍ଥା ଭଗବାନଙ୍କର ! ଯେତିକି ଅସଭ୍ୟ ସେତିକି ନିର୍ମମ । ଏଇ ଅର୍ଦ୍ଧ-ଅନୁଭବର ବଲବଲକୁ ମୁଁ ଦେଖେଇଛି ମୋର ଗୋଟିଏ ଅନେକ ପୁରୁଣା ଗପ "ଗୋଟିଏ ରାତିର କାହାଣୀ"ରେ, ଯାହା କେଜାଣି କାହିଁକି ପାଠକର ଦୃଷ୍ଟି ଆକର୍ଷଣ କରିପାରି ନାହିଁ । ବୋଧହୁଏ ଏଇଥିପାଇଁ ଯେ ସେତେବେଳେ ମୁଁ ନୂଆ ନୂଆ ଲେଖୁଥିଲି ଏବଂ ବଡ଼ କଥା ଅର୍ଥାତ୍ ଦାର୍ଶନିକତା ଶୋଭା ପାଇଲା ନାହିଁ ମୋ ମୁହଁରେ । ଏଇ ଗପର ତରୁଣ ନାୟକ ହରେନ୍ଦ୍ର ମହାନ୍ତି ହସ୍‌ପିଟାଲରେ ରାତି ବିତେଇବାକୁ ଯାଇଥିଲା ତା'ର ଅପରେସନ୍ ରୁ ଉଠିଥିବା ବନ୍ଧୁର ପହରା ଦେବା ପାଇଁ । ଏବଂ ଗୋଟିଏ ରାତିରେ ତାକୁ ଏଇ-ଅର୍ଦ୍ଧ-ଅନୁଭବର ଯନ୍ତ୍ରଣା ଭୋଗିବାକୁ ପଡ଼ିଲା ଯେତେବେଳେ ସେ ଦେଖିଲା ଯେ ପାଖ ବେଡ୍‌ରେ ଥିବା ରୋଗୀ ଜଣକ ମରୁଛି, ତା'ର ସଂସାର ଲିଭି ଲିଭି ଆସୁଛି । କିନ୍ତୁ ସେ ତା' ଅନୁଭବକୁ ନିଜର କରିପାରୁ ନାହିଁ । ସେଇଠୁଁ ଭାବୁଛି-

"କାହିଁକି ମଣିଷ ଅଯଥାରେ ଚାହେଁ ଆଉ କାହା ଅନୁଭୂତିରେ ମିଶିବ, ଆଉ କାହା ଚେତନାରୁ ଧାର ନେଇ ନେବ ଟିକିଏ ? ତା' ନିଜ ଚେତନାର ଲୁହା ତାରରେ ବନ୍ଦୀ ସେ । ଚେଷ୍ଟା କଲେ ବି ଫିଟି ଆସିପାରିବ ନାହିଁ । ତେବେ ସେ କାହିଁକି ମିଛରେ ଚାହେଁ ହାତ ଚଢ଼େଇ ଆଉ କାହା ଚେତନାକୁ ଛୁଇଁବାକୁ ?''

ତଥାପି ହରେନ୍ଦ୍ର ସେଇ ରାତିରେ ଓ ସେଇ ହସ୍‌ପିଟାଲରେ ପ୍ରେମ କଲା ନର୍ସ ସାଧନା ଗୁପ୍ତା ସାଙ୍ଗରେ, ପୂର୍ବ ଆପଏଣ୍ଟମେଣ୍ଟ୍ ଅନୁଯାୟୀ । କିନ୍ତୁ ସେ ତା'ର ପ୍ରେମ ଅନୁଭବକୁ ବି ପୂରା କରିପାରିଲା ନାହିଁ । କାହିଁକି ନା ତାର ମନେ ହେଲା, - " ତା' ଭିତରେ କିଏ କାନ୍ଦୁଛି, କିଏ ଚିତ୍‌କାର କରୁଛି । କାହାକୁ ପଛରେ ପକାଇ ଆସିଥିଲା ସେ, ଶୁଆଇ ଦେଇଥିଲା, ସେ ଏଇକ୍ଷଣି ଚମକି ଉଠି କହୁଛି- ମୋତେ ଛାଡ଼ି ଯାଆନା, ମୋତେ ଛାଡ଼ି ଯାଅନା, ମୁଁ ବି ତୁମର ।"

ଅବଶ୍ୟ ବନ୍ଦୀର ଉଚିତ ବନ୍ଦୀ ହୋଇରହିବା, ମନେ ମନେ ରାଙ୍କୁତି କରିବା । କିଏ କହୁଥିଲା ତା'କୁ କେଉଁ ଫାଟକ ବାଟେ ବାହାରକୁ ଅନେଇବା ପାଇଁ ? ଆଉ ଏମିତି ଛଟ ପଟ ହେବା ପାଇଁ ଯେ, ହାୟ ! ମୁଁ ଏଠି ବନ୍ଦୀ ହୋଇ ପଡ଼ିଛି ? ସୁସ୍ଥ ଲୋକମାନେ ଏଇଆ କହିବେ । ସାଧନାଗୁପ୍ତା କହିଲା ନାହିଁ କି ତା'ର ନବବିବାହିତା ସ୍ୱାମୀ ଡକ୍ଟର ସନ୍‌ହାକୁ ହରେନ୍ଦ୍ରର ଅଭିନନ୍ଦନ ପତ୍ର ପାଇଲା ପରେ-"କେହି ନୁହେଁ, ଗୋଟିଏ ଆଡ଼ପାଗଳା ରୋଗୀ-ଯାହାର ମୁଁ ସେବା କରିଥିଲି ।"

ବନ୍ଦୀମାନେ ଆଡ଼ପାଗଳା ହେବେ ନାହିଁ ତ ଆଉ ହେବ କିଏ ? ବନ୍ଦୀତ୍ୱର ମୋହକୁ ଛାଡ଼ି ପାରିବେ ନାହିଁ । ମାନେ ସ୍ୱାର୍ଥର ଦୂରନ୍ତ ତାଡ଼ନାକୁ ହେଲେ ଏମିତି ଛଟ ପଟ ହେବେ, ଯେତେବେଳେ ତାଙ୍କର ଖିଆଲ୍ ଆସିବ ଯେ ଏ ସ୍ୱାର୍ଥଟା ଆଉ କେହି ନୁହେଁ ତାଙ୍କରି ଆତତାୟୀ ଜେଲର୍ । ଆଉ ସେତେବେଳେ ରାଗିବେ ନିଜ ଉପରେ । କ'ଣ ନା ମୁଁ ବିର୍ଧମୀ । କିଏ କ'ଣ କରିବ ଏଇ ହତଭାଗାଙ୍କୁ ନେଇ, ଭଗବାନଙ୍କୁ ଦୋଷ ଦେବା ଛଡ଼ା ?

"ଗୋଟିଏ ରାତିର କାହାଣୀ"କୁ ଲେଖିବାର ପ୍ରାୟ ପଇଂତ୍ରିଶ ବର୍ଷରୁ ଉର୍ଦ୍ଧ୍ୱ ହେଲାଣି । ଇତି ମଧରେ ମୋର ଗପଗୁଡ଼ିକ କେତେ ମୋଡ଼ ଓ ବାଙ୍କର 'ଅନୁଭୂତ ସତ୍ୟ'କୁ ନେଇ ମୋଟେଇ ଗଲେଣି । ଏବଂ ଚରିତ୍ରମାନଙ୍କ ମିଶ୍ରିତ ମନୋଭାବ ହେତୁ କାହାର ଦୁଃଖ କେଉଁଠୁ ଆସିଲା ଏବଂ କାହାର କେତେ ଦୋଷ କି ଭୂଲ୍ ବୋଲି ବୁଝି ହେବ ନାହିଁ । ଏଠି ମୁଁ କହୁଛି କେବଳ ବ୍ୟକ୍ତିମୂଳକ କାହାଣୀ ବିଷୟରେ, ଯେଉଁଠି ମଣିଷ-ମଣିଷ ସଂପର୍କ ଓ ତା'ର ବୈଚିତ୍ର୍ୟ ହିଁ ମୂଳ କଥା ଏବଂ କେଉଁ ଶ୍ରେଣୀଗତ ମଣିଷ ଉପରେ ରାଗିବାର କି ତାକୁ ଛିଗୁଲେଇବାର ଅବକାଶ ନଥାଏ । କିନ୍ତୁ ଅଧିକାଂଶ କ୍ଷେତ୍ରରେ ଅତୀତର ଅର୍ବାଚୀନ ଓ ଆଡ଼ପାଗଳା ହରେନ୍ଦ୍ର ମହାନ୍ତିର ସ୍ୱାକ୍ଷର ଅଛି ବୋଲି ମୋର ମନେ ହୁଏ । ସେହି ବନ୍ଦୀତ୍ୱର ଅବବୋଧ ଏବଂ ହନ୍ତସନ୍ତ ଯେ ମୁଁ ତାକୁ ଛୁଇଁ ପାରୁନାହିଁ । ଏବଂ ରାଗ ଯେ ସେ ମୋର ଆତୁରତାକୁ ବୁଝିପାରୁ ନାହିଁ । ସେଇଠୁ କେଉଁ ପାଗଳ କିଭଳି କାମ କରେ ସେକଥା ଭିନ୍ନ । ସେଥିରୁ ଯୋଡ଼ିଏ ନମୁନା ଦେଲେ ଚଳିବ ବୋଧ ହୁଏ, ଆଜିକାଲି ଆଳାପର ବେଷ୍ଟନି ଭିତରେ ।

ଧରନ୍ତୁ, 'ଜାଳେଣି' ଗପର ଚିତ୍ରାଦେବୀଙ୍କର ଦୁଃଖ । ତାଙ୍କ ଝିଅର ବାରମ୍ବାର ଗର୍ଭ ନଷ୍ଟ ହୋଇଯାଉଛି, ଏବଂ ସେ ପାଖ ଘରେ କୁନ୍ଥଉଛି । ପୁଅଟା ସୁଖ ନିଦ୍ରାରେ ଶୋଇ ପାରିଛି ସତ, କିନ୍ତୁ ତା'ର କାରଣ ସେ ବଦ୍ଧ ନିର୍ବୋଧ, ଇଡ଼ିଅଟ୍ ହୋଇ ରହିଯାଇଛି ପିଲାଟି ଦିନୁ । ଏହି ପରିସ୍ଥିତିରେ ସେ ଅଧରାତିରେ ଉଠି ପଡ଼ିଲେ ସ୍ୱାମୀଙ୍କ ସହିତ ରତିକ୍ରିୟା ପରେ । ଯାହା କି ଏକ ନିତ୍ୟନୈମିତ୍ତିକ ରୁଟିନ୍ । ସ୍ୱାମୀ ତ ଦିବ୍ୟ ଘୁଙ୍ଗୁଡ଼ି ମାରିଲେଣି, କିନ୍ତୁ ୟା'ଙ୍କ ଆଖିକୁ ନିଦ ଆସୁ ନାହିଁ । ଆକାଶରେ ଜହ୍ନ । ଚିତ୍ରାଦେବୀ ଜହ୍ନ ଠାରୁ ହିଁ ମାଗି ବସିଲେ ଯାହା ସେ ପାଇ ନାହାନ୍ତି ତାଙ୍କ ଜୀବନରୁ । ପାଇଲେ ନାହିଁ । କିନ୍ତୁ ସେହି ଅବସ୍ଥାରେ ତାଙ୍କୁ ତାଙ୍କ ବୁଢ଼ା ଶ୍ୱଶୁରଙ୍କ ହାତ ଧରିଧରି ନେଇ ଯିବାକୁ ପଡ଼ିଲା ବାଥ୍‌ରୁମ୍‌କୁ, ଗୋଟାଏ କ୍ଲାନ୍ତିକର ଡିଉଟି କଲାପରି । ହେଲେ ଶେଷକୁ ତାଙ୍କର ମନେ ହେଲା ଯେ ତାଙ୍କରି ଯୋଗୁଁ ବୁଢ଼ା ଜହ୍ନ ସାଙ୍ଗରେ କଥା ଭାଷା ହୋଇ ପାରିଲେ, ଏବଂ କିଛି ଗୋଟାଏ ପାଇଲେ କେଉଁ ସ୍ମୃତିର ଜରିଆରେ, ଯାହା ତାଙ୍କୁ ମିଳି ନଥିଲା । ଯେଉଁଥି ପାଇଁ ସେ ଏମିତି ଝଲି ଦିଶୁଛନ୍ତି । ଚିତ୍ରାଦେବୀ ନିଜକୁ ଧନ୍ୟ ମନେ କଲେ । ଯେ ସେ ଅନ୍ତତଃ ୟା'ଙ୍କୁ ତ ଖୁସି କରିପାରିଛନ୍ତି ମୂହୁର୍ତ୍ତକ ପାଇଁ ! ଏବଂ ପ୍ରଜ୍ୱଳିତ ଆତ୍ମତ୍ୟାଗର ବଡ଼ିମାରେ ସେ ନିଜକୁ କହିଲେ ଯେ ସେ ଏମିତି ଜଳିବାକୁ ଜନ୍ମ ହୋଇଛନ୍ତି । କହିଲେ-

" ଚଡ଼୍ ଚଡ଼୍ ହୋଇ ଜଳିବା, ଫୁର୍‌ଫୁର୍ ହୋଇ ଜଳିବା ତିଳତିଳ ହୋଇ ଜଳିବା, ସେହି ମୋ ଜୀବନର ଶେଷ କଥା । ଆରେ, ମୁଁ ନିଜକୁ କଷ୍ଟ ଦେଉଁ ନାହିଁ ମ, ମୋତେ ଭଲ ଲାଗୁଛି । ମୁଁ ଜଳିଲି ବୋଲି ତ ବୁଢ଼ା ଶ୍ୱଶୁର ଏମିତି ଖୁସି ହେଲେ ? ଆରେ ମୁଁ ସତ କହୁଛି- ମୋ ପୁଅକୁ ବୋକା କରିବ ଯଦି କର, ମୋ ଝିଅର କୋଳରେ ପିଲା ଦେବ ନାହିଁ- ଯଦି ନ ଦିଅ, କିନ୍ତୁ ମୋତେ କାହାରି ପାଇଁ ହେଲେ, କେଉଁଥିପାଇଁ ହେଲେ ଜଳିବାକୁ ଦିଅ, ଭଲ କରି, ଯେମିତିକି ଗୋଟାଏ ମୂହୁର୍ତ୍ତରେ ଫାଙ୍କ ରହିବ ନାହିଁ ।

ନିଜ ଶୋଇବା ଘରବିଛଣାରେ ପହଞ୍ଚିଲା କ୍ଷଣି ସ୍ୱାମୀଙ୍କ ହାତ ଆଲିଙ୍ଗନ ଉଦ୍ଦେଶ୍ୟରେ ବଢ଼ି ଆସିଲା ଏବଂ ଚିତ୍ରାଦେବୀ କହିଲେ-ହଁ ନିଅ ମୋତେ, ଆହୁରି ନିଅ, ସେଥିକୁ ମଧ ମନା କରିବି ନାହିଁ । ଜଳିବି ।''

ଇଏ କ'ଣ ସଚ୍ଚା ଆତ୍ମତ୍ୟାଗର ଉପଲବ୍ଧି ? ନା ଏକ ନିର୍ମମ ଉପହାସ ନିଜ ପ୍ରତି ? ଏଇ ହେଉଛି ମୋ ସଚେତନ ବନ୍ଦୀ ଓରଫ୍ ପାଗଳମାନଙ୍କ ଦଶା । ବିଚରା କାହାରି ଦୁଃଖ ହରି ନେଇ ପାରିବେ ନାହିଁ । କି କାହାରିକୁ ନିଜ ଦୁଃଖ ଦେଇପାରିବେ ନାହିଁ । ଏବଂ ଅକାଳେ ସକାଳେ କାହାକୁ କିଛି ଦେଇପାରିବାର ସୁଖକୁ ଆତ୍ମତ୍ୟାଗ ନା ଆତ୍ମପୀଡ଼ନର ଆନନ୍ଦ ବୋଲି ବୁଝି ପାରିବେ ନାହିଁ ।

ଅବା ଦେଖନ୍ତୁ 'ଛକଡ଼ିର ଶ୍ରୀକୃଷ୍ଣ'ରେ ମାଆ ଝିଅଙ୍କ ଦଶା । ଦିହେଁ ଦିହିଁକୁ ଅବଶ୍ୟ ଭଲପାଆନ୍ତି । କିନ୍ତୁ ଆତୁର ହୁଅନ୍ତି ତା'ଙ୍କୁ ଅନୁଭବ କରିବା ପାଇଁ । ସତେକି

ଗୋଟିଏ ବଡ଼ ଧରଣର ଅମେଳ ରହିଯାଉଛି ଦେବା ଓ ନେବା ଭିତରେ । ଝିଅ ଭାବେ ମାଆଟା ଗର୍ବୀ, ମାଆଭାବେ ଝିଅଟା ହୁଣ୍ଡୀ ଏବଂ ଦିହେଁ ଭାବନ୍ତି ସେ ମୋତେ ଭୁଲ୍ ବୁଝୁଛି । ଶେଷକୁ ମଆ ଯେଉଁ ମିଛଟିଏ କହିଲେ ନିଜ ଭଲ ପାଇବାକୁ ସାବ୍ୟସ୍ତ କରିବା ପାଇଁ, ଏବଂ ତା' ରି ବଦଳରେ ଝିଅ ତାଙ୍କ ଠାରୁ ତାଙ୍କ ପ୍ରାଣପ୍ରିୟ ଶ୍ରୀକୃଷ୍ଣଙ୍କୁ ହାସଲ କରି ନେଲା, ସେଥିରେ କାହାରି ପେଟ ପୂରିଲା କି ? ନା ଝିଅର ନା ମାଆର ? ବରଂ ଘରକୁ ଫେରିଗଲା ପରେ ମାଆଙ୍କୁ ଦେଖିବାକୁ ପଡ଼ିବ ଯେ ତାଙ୍କ ଘରପାଖ ଡେଙ୍ଗା ଗଛଟା କଟା ହୋଇଗଲାଣି । ''ଖାଲି ତା' ଗଣ୍ଡିରୁ ଖଣ୍ଡେ ପଡ଼ି ରହିଛି, ମାଟିରୁ ମୁକୁଳି ପାରୁ ନାହିଁ । ସେଇଠୁ ସେ ବୋଧ ହୁଏ କହିବେ, କହିଲେ ଶୋଭା ପାଇବ ଯେ ଏ ଗଛ ମୋର ନୁହେଁ କାଠରୁରିଆର ।'' ମଣିଷକୁ ତା'ର ଇଗୋ କୁହ କି ତାର ବ୍ୟକ୍ତିତ୍ୱ, ତା'କୁ ତେଜିବାକୁ ପଡ଼ିବ, ନ ହେଲେ ସେ ନିଜକୁ ଚିହ୍ନାଇ ପାରିବ ନାହିଁ । ସାଧାରଣପଣରେ ହଜିଯିବ । କିନ୍ତୁ ବ୍ୟକ୍ତିତ୍ୱ ହିଁ ଅଶାନ୍ତିର ଉତ୍ସ, ଏବଂ ଅନ୍ୟକୁ ଛୁଇଁ ନ ପାରିବାର ହେତୁ । ସେଥିକୁ ଉପାୟ କଅଣ ?

ଏହି ବନ୍ଦୀସୁଲଭ ତାତ୍ତ୍ୱିକତା କ'ଣ ରଞ୍ଜିତ ଅଥବା ଦୂଷିତ କରିଛି ମୋର କଥାକୁହାକୁ, ସେଦିନୁଁ ଆଜିଯାଏଁ, ଅନ୍ୟାନ୍ୟ ଦୋଷଗୁଣ ଛଡ଼ା ?

ହିନ୍ଦିର ପ୍ରଖ୍ୟାତ ସାହିତ୍ୟିକ ନିର୍ମଳ ବର୍ମା କହିଲେ ଯେ ପାଶ୍ଚାତ୍ୟ ସାହିତ୍ୟର ମୁଖ୍ୟସ୍ରୋତ ମନସ୍ତାତ୍ତ୍ୱିକ, ତାହା ହିଁ ତା'ର ଐତିହ୍ୟ । କିନ୍ତୁ ଭାରତୀୟ ସାହିତ୍ୟର ଐତିହ୍ୟ ହେଉଛି ଦାର୍ଶନିକତା । ସେଇଥି ପାଇଁ କଷ୍ଟ ପାଏ ଆଜିର ଭାରତୀୟ ଲେଖକ, ତା'ର ମନେହୁଏ ସେ ସୁଅ ସାଙ୍ଗରେ ଲଢୁଛି । ଲଢ଼ି ଲଢ଼ି ହାଲିଆ ହୋଇ ଯାଉଛି ।

ହୋଇଥିବ । କିନ୍ତୁ ବୟସ ବଢ଼ିବା ସାଙ୍ଗେ ସାଙ୍ଗେ ମୁଁ ବେଶ୍ ବୁଝି ପାରୁଛି ଯେ କୌଣସି ମନସ୍ତାତ୍ତ୍ୱିକ ସତ୍ୟର ସନ୍ଧାନ ଓ ଆବିଷ୍କାର ମୂଳ ପ୍ରଶ୍ନକୁ ଆଡ଼େଇ ଦେଇ ରହି ପାରିବ ନାହିଁ , ଯେ କାହିଁକି ମୁଁ ଏମିତି ବନ୍ଦୀ ହୋଇ ରହିଛି । ଏବଂ ଛଟପଟ ହେଉଛି ଅଶାନ୍ତ ଜୀବନର ଉପଭୋଗ ଓ ଶାନ୍ତିମୟ ଅମୃତର ଉନ୍ମେଷ ଭିତରେ । ତେଣୁ ମୋର ସମସ୍ତ ଜିଜ୍ଞାସା ସେଇ ବ୍ରହ୍ମଜିଜ୍ଞାସାର ଅଧିନ, ଯାହାର ଉତ୍ତର ନାହିଁ ମୋ ପାଖରେ, ହେଲେ ମୁଁ ଯାହାକୁ ନମସ୍କାର ନକରି ରହିପାରିବି ନାହିଁ ।

ନମସ୍କାର କରିବି ସିନା, ଆଉ କିଛି କରିପାରିବି ନାହିଁ । ବାସ୍ତବ ସତ୍ୟରୁ କେମିତି ଲମ୍ଫ ଦେଇ ହେବ ଚିରନ୍ତନ ସତ୍ୟକୁ, ତା'ର ଉପାୟ ଜଣା ନାହିଁ ମୋତେ । ତେଣୁ ଏମିତି ଖାଲି ବକର ବକର ହେଉଥିବି ଆଉ ଫଟରେଇ ହେଉଥିବି, ନିଆଁଲଗା ମନଟାକୁ ନେଇ, ତାକୁ ଯେତେକ ଅରମା ଭୂଇଁରେ ଚଲେଇ ଚଲେଇ, ଘୋଷାରି ଘୋଷାରି ।

ଭୟ ? ଭୂଇଁରୁ ପାଦ ଖସିଯିବାର ଭୟ ? ନା ପାଟି ପଡ଼ିଯିବାର ଭୟ ? ମନେ ପଡୁଛି ଗୋପୀନାଥ ମହାନ୍ତି ଯାହା କରିଥିଲେ ତାଙ୍କ 'ମୁଣ୍ଡିଆ' ଗପରେ-

"... ମୁଁ ନିଜେ ଅଛି ବୋଲି ଚିହ୍ନ ଏକମାତ୍ର ଖାଲି ଭୟ, ଅଜଣା ଅବୁଝା ସ୍ତବ୍ଧ, ଶୂନ୍ୟ ପରି ଲାଗୁଥିବା ସୃଷ୍ଟି ଭିତରେ ଏକୁଟିଆ ପଡ଼ିରହିଥିଲା ପରି ଭୟ । ଭୟଟା ଥରୁଛି, ଜୀବନର ସ୍ପନ୍ଦନ ସେତିକି ।''

ହଉ । କିନ୍ତୁ ମୁଁ ଯେ ପୃଥିବୀଯାକର ସ୍ପନ୍ଦନକୁ ଆବୁରିବାକୁ ଚାହୁଁଛି ମୋର ଦୁଃଖୀ ଚରିତ୍ରମାନଙ୍କ ଭିତର ଦେଇ, ଇଏ କ'ଣ ଖାଲି ଭୟ କାଟିବାର ଅନ୍ୟତମ କାରସାଦି ? ଏଥିରେ କ'ଣ ଯତ୍ ସାମାନ୍ୟ ବୀରତ୍ୱ ନାହିଁ ? ଏବଂ ରାମକୃଷ୍ଣ ପରମହଂସଙ୍କ ଭାଷାରେ, ମାୟାରୁ ଉପୁଜିଥିବା ଦୟାର ଉଛୁଳାପଣ ? ମାତ୍ର ଏତିକି ସ୍ୱୀକୃତି ମୁଁ ଲୋଡୁଛି ନିଜଠାରୁ, ମୋର ଶେଷ ଜୀବନରେ ନିଜକୁ ମର୍ଯ୍ୟାଦା ଦେବା ପାଇଁ, ମୋର ମୌଳିକ ଅକ୍ଷମତା ସତ୍ୱେ । ହେଲା ଏବେ ମୁଁ ଖାଲି ଜିଜ୍ଞାସୁ ହେଇ ରହିଗଲି, ସତସତିକା ମୁମୁକ୍ଷୁ ହୋଇ ପାରିବା ମୋ କପାଳରେ ନାହିଁ ।



# ଏକବିଂଶ ଶତାବ୍ଦୀର ଭୂତ -ନିର୍ବାଚିତ ଉଦ୍ଧୃତାଂଶ

## (ଉତ୍କଳ ବିଶ୍ୱବିଦ୍ୟାଳୟ ଇଂରାଜୀ ବିଭାଗ ଆନୁକୂଲ୍ୟରେ ପଠିତ Who is afraid of the 21st century"ର ଓଡ଼ିଆ ଅନୁବାଦ)

..ବରଂ ମୁଁ ମୋର ନବାଗତ ବାର୍ଦ୍ଧକ୍ୟକୁ ନମସ୍କାର ଜଣାଇବାକୁ ଚାହେଁ, ଯେ ଏଣିକି ମୁଁ ମୋର ବୁଦ୍ଧି ବିଚାରକୁ ବଦଳେଇବାକୁ ଅକ୍ଷମ । ତେଣୁ ଏକବିଂଶ ଶତାବ୍ଦୀର ଭୂତକୁ ଦେଖି ଯେତେ ଥରହର ହେଲେ ମଧ ମୁଁ ନିଜକୁ, ସେହେତୁ ମୋର ସାହିତ୍ୟକୁ, ଅସ୍ୱୀକାର କରି ପାରୁ ନାହିଁ । ଅସ୍ୱୀକାର କରିବା ଦୂରର କଥା, ମୋର ମନ ହେଉଛି ଯେ ମୁଁ ମୋର ସ୍ୱଳ୍ପ ସୀମିତ ସାହିତ୍ୟକୁ କେଉଁ ଦୃଷ୍ଟିରେ ଦେଖେ, ତାର ଦୋଷଗୁଡ଼ିକୁ ଚିହ୍ନେଇ ତା'କୁ ତଥାପି ଭଲ ପାଏ, ସେ ବିଷୟରେ କିଛି କହିବି । ଭୂତକୁ ଚିଡ଼େଇଲା ପରି ।

### ଏକ

କେଉଁ ପ୍ରକାର ଅକ୍ଷମତା ହେତୁ ମୁଁ ମୋର ସାହିତ୍ୟ ଲେଖିଆସୁଛି ଜାଣେ ନାହିଁ, କିନ୍ତୁ ମୋର ଯଥେଷ୍ଟ ଗର୍ବ ଯେ ଉକ୍ତ ଅକ୍ଷମତା ମୋତେ ଅନ୍ୟ କେଉଁ କ୍ଷତିପୂରଣର ଲୋଭ ନ ଦେଖାଇ ଏଇ ବାଟକୁ ନେଇଆସିଛି । ଏବଂ ଏହା ଅନ୍ୟାନ୍ୟ ସୂକ୍ଷ୍ମତର କଳାତ୍ମକ ଉଦ୍ୟମ (ଯଥା ସଙ୍ଗୀତ ଓ ଚିତ୍ରକଳା) ତୁଳନାରେ ଅଧିକ ଉତ୍ତମ ବୋଲି ମୋର ମନେ ହୁଏ । ସତେକି ମାଧ୍ୟମ ଯେତିକି ଦୁର୍ବଳ ଓ ଦଣ୍ଡଡ଼ା ହୋଇଥିବ, ମୋର ବୁକୁଫଟା ବେଦନା ସେତିକି ବ୍ୟାକୁଳ ହୋଇଉଠିବ ଅପହୁଂଚରେ ପହଞ୍ଚିବା ପାଇଁ, କାବ୍ୟିକ ବୁଲ୍‌ବୁଲ୍ ଚଢ଼େଇ ଯେମିତି ତାର ଟିକି ହୃଦୟକୁ କଣ୍ଟାରେ ଫୋଡ଼ିଫୋଡ଼ି ଦେଉଥିଲା, ତାର ରକ୍ତ ଦେଇ କେଉଁ ଉଦାସୀନ ଗୋଲାପକୁ ରଙ୍ଗେଇବା ପାଇଁ । ନା, ମୁଁ ମୋର ଏଇ ଶବ୍ଦର ସାହିତ୍ୟକୁ ଭଲ ପାଏ । ଧନ୍ୟବାଦ ।

### ଦୁଇ

ମୋର ସାହିତ୍ୟ ଅଭିଜାତ । ଆଭିଜାତ୍ୟର ଅର୍ଥ ନୁହେଁ ଶ୍ରେଣୀଗତ ଦୂରତ୍ୱ, ଯାହା କେତେକାଂଶରେ ଅନିବାର୍ଯ୍ୟ ଏବଂ ଯେଉଁଥିପାଇଁ ମୋର ସବୁଦିନିଆ ଦୁଃଖ ଯେ ମୋର ସାହିତ୍ୟର ପ୍ରାଙ୍ଗଣ ଯଥେଷ୍ଟ ବିସ୍ତୃତ ହୋଇପାରି ନାହିଁ । ଚିନ୍ତାବଦ୍ଧତା ହିଁ ମୋର ଅଭିଜାତ୍ୟର ଲକ୍ଷଣ, ଏବଂ ସେଥିରେ ମୋର ଦୁଃଖ କରିବାର ଅବା ଲଜ୍ଜିତ ହେବାର କୌଣସି କାରଣ

ନାହିଁ । ଏହି ଦୃଷ୍ଟିରୁ ମୁଁ ମାନିବାକୁ ପ୍ରସ୍ତୁତ ନୁହେଁ ଯେ ମୋର ସାହିତ୍ୟକୁ ଆହୁରି ହାଲୁକା କରେଇବା ଉଚିତ, ଯଦ୍ୱାରା ମୁଁ ଅଧିକ 'ଉପଯୋଗୀ' ଅବା ଆନନ୍ଦବର୍ଦ୍ଧକ ହୋଇପାରି ଥାଆନ୍ତି, ଗଣମାନସକୁ ଛୁଇଁ ପାରି ଥାଆନ୍ତି । ମୋ ବିଚାରରେ 'ଗଣ ସାହିତ୍ୟ' ଏକ ଅର୍ନ୍ତବିରୋଧୀ ଏବଂ ମାରାତ୍ମକ ଶବ୍ଦ । କାରଣ ସାହିତ୍ୟରେ ଏହି ପ୍ରକାର ବିଶେଷଣ ଯୋଡ଼ି ଦେଲେ ସମଗ୍ର ମାନବଜାତି ପ୍ରତି ତାର ଦାୟିତ୍ୱ କମିଗଲା ଜାଣ । ଯେମିତିକି ଜାତି ଭାଇଙ୍କ ମଧ୍ୟରୁ କେତେଜଣଙ୍କୁ କୁହାଗଲା ଯେ ଆହା, ତୁମେ ଉପରକୁ ଉଠି ପାରିବ ନାହିଁ, ତେଣୁ ବାଧ ହୋଇ ଆମେ ତୁମ ପାଇଁ ଗୋଟାଏ ବିଶେଷ ସାହିତ୍ୟ ଗଢୁଛୁ ତୁମ ମୁଣ୍ଡରେ ପଶିବା ପାଇଁ । ସତେକି ଭଗବାନଙ୍କ ମଣିଷ ହେଲେ କଣ ହେବ, ସେମାନେ ଉତ୍ତରକୁ ମୁହେଁଇ ନାହାନ୍ତି କି ମୁହେଁଇ ପାରିବେନାହିଁ । ମୁଁ ଏହି ପ୍ରକାର ଦୟାଭାବର ପକ୍ଷପାତୀ ନୁହେଁ । ଅବଶ୍ୟ ଭାଷାକୁ ଯେତେ ସରଳ କରେଇ ପାରିବ, ସେତେ ଭଲ କିନ୍ତୁ ମୋ ମତରେ ଚିନ୍ତାଚେତନାକୁ ଜାଣିଶୁଣି ତଳକୁ ଓହ୍ଲେଇ ଆଣିବା ଏକାନ୍ତ ଅନ୍ୟାୟ, ନିଜ ପାଇଁ ତଥା ସେମାନଙ୍କ ପାଇଁ ।

## ତିନି

ମୋର ଚିନ୍ତାରେ ଦାର୍ଶନିକତା ଅବଶ୍ୟ ରହିଛି । କାହିଁକି ବା ନ ରହିବ ? କିନ୍ତୁ ଇଏ ଦାର୍ଶନିକର ଚିନ୍ତା ନୁହେଁ, ଅନୁଭବୀର ଚିନ୍ତା । ମୁଁ ଏକାଧାରରେ ସାଧାରଣ ଏବଂ ଅଦ୍ୱିତୀୟ । ସାଧାରଣ ଏହି ହିସାବରେ ଯେ ହାରାହାରୀ ମଣିଷର ଯେତେକ ଦୋଷଦୁର୍ବଳତା, ଅଭାବ ଅକ୍ଷମତା, ସବୁ ଅଳ୍ପବହୁତ ଅଛି ମୋ ଠାରେ ବୋଲି ମୋର ଧାରଣା । ଏବଂ ସେଇ ପଙ୍କ ମୋର ଏକ ଅପରିହାର୍ଯ୍ୟ ଅଙ୍ଗ ବୋଲି ସ୍ୱୀକାର କରି, ତୁମର ବି' ସେମିତି ହୋଇଥିବ ବୋଲି ଦର୍ଶାଇ, ମୁଁ ମଧ୍ୟ ପଙ୍କଜ ହେବାକୁ ଚାହେଁ, ଏଇ ମୋର ବ୍ୟକୁଳତା । ହାରାହାରୀ ମଣିଷର କାନ୍ଦଣାରେ ମିଶିଗଲା ପରି । କିନ୍ତୁ ମୁଁ ଅଦ୍ୱିତୀୟ, କାରଣ ପ୍ରତ୍ୟେକ ସଚେତନ ମଣିଷ ଅଦ୍ୱିତୀୟ ହେବାକୁ ବାଧ । ମୋର ସଚେତନତା ଯେଉଁ ଛାଇ-ଆଲୁଅରେ ଚିତ୍ରିତ ଏବଂ ଠିକ୍ ଯେତିକି ଡିଗ୍ରୀର କୋଣରେ ଅଣେଇ ହୋଇ ଯାଇଛି ଜୀବନ ଆଡକୁ, ତାହା ନିଶ୍ଚୟ ଆଉ କାହାରି ହୋଇନଥିବ । ହେଲେ ମାନିବାକୁ ପଡ଼ିବ ଯେ ଜୀବନ ପ୍ରତି ଅଣେଇ ହୋଇଥିବା ହେତୁ ମୋ ସାହିତ୍ୟର ଦର୍ଶନ ସାପେକ୍ଷିକ । 'ଦୂଷିତ' କିନ୍ତୁ ଅଦ୍ୱିତୀୟ, ସାଧାରଣ ହେଲେ ମଧ୍ୟ ଭିନ୍ନ ଏବଂ ଏହି ଭିନ୍ନତାକୁ ନ ଚିହ୍ନେଇ ପାରିଲେ ମୋ ମନ ଶାନ୍ତ ହେବ ନାହିଁ ।

ମୋର ଏହି ଖଣ୍ଡିତ ଚିନ୍ତାର ସାହିତ୍ୟ କଣ ଗ୍ରହଣୀୟ ନୁହେଁ ? ମୁଁ କେବଳ ଏତିକି ଆଶ୍ୱାସନା ଦେଉଛି ଆପଣଙ୍କୁ, ଯେ ମୁଁ ଯେତେଦୂର ସଂଭବ, ମୋର ଅନୁଭବକୁ ଖେଳେଇ

ଟିକନିଖି କରି ଦର୍ଶାଇବାର ଚେଷ୍ଟା କରିଛି । ହେଲେ ତା' ସତ୍ତ୍ୱେ ମୋର ପ୍ରାଣେ ଭୟ ଯେ ମୁଁ ଅଜାଣତରେ କାଳେ ଆପଣଙ୍କୁ ଠକେଇଥିବି !

## ଚାରି

ମୁଁ ବିଶ୍ଳେଷଣ କରି ବାସ୍ତବର ସ୍ୱରୂପକୁ, ତାର ଧୂସରତାରେ କେତେ କିସମର ରଂଗ ମିଶିକରି ଅଛି ବୋଲି ଜାଣିବାକୁ ଭଲ ପାଏ । କିନ୍ତୁ ମୁଁ ଲୋଡୁଥାଏ, ଅନୁଭବର ତୀବ୍ର ସମୁଜ୍ଜ୍ୱଳତା, ଆଖିଝଲସା ଶୁଭ୍ରତା । ତେଣୁ ଯେତେ ରୋକ୍ ଠୋକ୍ ବିଶ୍ଳେଷଣ କରିବାକୁ ବସିଲେ ମଧ ମୁଁ ସୁବିଧା ପାଇଲେ (ବିଶେଷତଃ ମୋର ଉତ୍ତର ଜୀବନରେ) ଚରିତ୍ର ବିଶେଷଙ୍କୁ ଏମିତି ଉଡ଼ିବାକୁ, ବୁଡିବାକୁ, କେଉଁ ଏକ ଅତି-ଅନୁଭବ ର ନିଆଁରେ ଦଗ୍ଧ ହେବାକୁ ଉସ୍କାଏ, ଯାହାକୁ ମୋର ଅଣୁବୀକ୍ଷଣ ସହଜେ ଧରିପାରିବ ନାହିଁ । ସେମାନେ କେତେଦୂର ମୋର ଭିତିରିଆ ନିର୍ଦ୍ଦେଶକୁ ଗ୍ରହଣ କରନ୍ତି ମୁଁ ଜାଣେ ନାହିଁ । କିନ୍ତୁ ଏହି ଅସଦାଚରଣକୁ ମିଛ ବୋଲି କହି ହେଉ ନାହିଁ । ଖାଲି ଏତିକି ମନେ ହୁଏ, ବେଳେବେଳେ, ଯେ ବୋଧହୁଏ ଏହି ଦ୍ୱୈତ୍ୱ ଦୂଷଣୀୟ ନୁହେଁ, ଏହାହିଁ ପରିଚୟ ଦେଉଛି ଯେ - ସାହିତ୍ୟ ଦୌଡ଼ି ଦୌଡ଼ି ସିଙ୍ଗୁବାଡ଼ ଯାଏଁ । କିଛିଦୂର ଗଲାପରେ (କିନ୍ତୁ ଗଲାପରେ ଯାଇଁ) ଅନୁଭବକୁ ଚିନ୍ତା ପାଇବ ନାହିଁ, ଏବଂ ନ ପାଇଲେ ହିଁ ତାହାର ମହତ୍ତ୍ୱ ଫୁଟି ଉଠିବ । ଇଏ ମଧ୍ୟ କଣ ବାର୍ଦ୍ଧକ୍ୟଗତ ବିଫଳତାର ଅନ୍ୟ ଏକ ରୂପ ? ଆଧ୍ୟାତ୍ମିକତାକୁ ଆଖି ମିଟିକା ମାରିବା କଥା ? ନା ପ୍ରତ୍ୟେକ ସାହିତ୍ୟ ସର୍ଜନାରେ ଏହି ପ୍ରକାର ଦ୍ୱୈତ୍ୱ ଅନିବାର୍ଯ୍ୟ ? ବିଚାର ଆପଣମାନଙ୍କ ଉପରେ ।

ପ୍ରସିଦ୍ଧ ସୁଲେଖିକା ନାଦିନ୍ ଗର୍ଡ଼ିମର୍ କହିଲେ ଯେ ମୁଁ ଚାହେଁ ମୋର ପ୍ରତ୍ୟେକ ଗପର ଅଭିବ୍ୟକ୍ତି ଏତେ ତୀବ୍ର ହୋଇଥିବ, ମଣିଷ ଅନୁଭୂତିର ଝାଳ, ଲୁହ, ରକ୍ତ, ଅବା ବୀର୍ଯ୍ୟକୁ ନେଇ, ଏତେ ତାତି ଥିବ ସେଥିରେ ଯେ ସେଥିରେ କାଗଜ ଜଳିଯିବ । ହଉ, କିନ୍ତୁ ମୋର ଅହେତୁକ ଆଶା ଯେ ତୀବ୍ରତାର ଶେଷ କଥା ପାଉଁଶ ନୁହେଁ, ତଲ୍ଲୀନତା ଆଖିଝଲସା ଶୁଭ୍ରତାର ପଛକୁ ଅଛି ଶାନ୍ତି । ପାଏ ବା ନ ପାଏ, ଲେଖକ ବୋଲି ସେ ଆଡ଼କୁ ହାତ ବଢ଼େଇବା କଣ ମନା ?

## ପାଞ୍ଚ

ସଂସାରରେ ଆଜଯାତ ହେଉଥିବା ପ୍ରାଣୀ ମାନେ ଯେ କେବଳ ଜନ୍ମ-ମୃତ୍ୟୁ ଜରା-ବ୍ୟାଧିର ଦଲିଲ୍‌ଭୁକ୍ତ ଦାୟାଦ, ତା ନୁହେଁ, ନାନା ଭାବରେ ସେମାନେ ପାରସ୍ପରିକ ସମ୍ପର୍କର ଦାୟିତ୍ୱକୁ ସମ୍ଭାଳି ପାରୁନାହାନ୍ତି, ଓ ସେଥି ପାଇଁ ଅଧିକ ଦୁଃଖ କଷ୍ଟ ଭୋଗୁଛନ୍ତି, ଏଥିରେ ଆଦୌ ସନ୍ଦେହ ନାହିଁ । ଏବଂ ମନେ ରଖିବାକୁ ହେବ ଯେ ଏହି ସମ୍ପର୍କ କେବଳ ବ୍ୟକ୍ତିଗତ ନୁହେଁ, ଏଥିରେ ବ୍ୟକ୍ତି-ବନାମ-ସମାଜର ପ୍ରଭାବଶାଳୀ ଭୂମିକା ରହିଛି । ତେଣୁ ସାହିତ୍ୟରେ ସମାଜ ବ୍ୟବସ୍ଥାର ବିଭିନ୍ନ ଅନ୍ୟାୟ, ଅବିଚାର ଏବଂ ଅବୁଝାମଣାର ବାସ୍ତବତାକୁ

ଫୁଟାଇ ନ ପାରିଲେ ତାକୁ ଅସଂପୂର୍ଣ୍ଣ ବୋଲି କହିବାକୁ ହେବ । କିନ୍ତୁ ମୋର ଅସୁବିଧା କେଉଁଠି  ଜାଣନ୍ତି ? ବ୍ୟବସ୍ଥା କ୍ଷେତ୍ରରୁ ଅମୁକ ମଣିଷର ମନ ରାଇଜକୁ ଖସି ଆସିଲା ବେଳକୁ (ଖସି ଆସିବାକୁ ପଡ଼ିବ ଯେହେତୁ ନିର୍ଦ୍ଦିଷ୍ଟ ମଣିଷର ମନ ହିଁ ଯନ୍ତ୍ରଣା ଦେବାର ଏବଂ ଭୋଗିବାର ମାଧ୍ୟମ) ମୁଁ ଦୁଷ୍ଟକୁ ଏବଂ ଶିଷ୍ଟକୁ ସୁସ୍ପଷ୍ଟ ଭିନ୍ନ ଭିନ୍ନ ରୂପରେ ରାମ ରାବଣ ରୂପରେ ଦେଖି ପାରେ ନାହିଁ । ଅବଶ୍ୟ କେତେଜଣ ରାବଣ ଅଛନ୍ତି ଆମ ପୃଥିବୀରେ, ଯେଉଁମାନେ ଜାଣିଶୁଣି ବୁଝିବିଚାରି, ଖରାପ କାମ କରନ୍ତି, ଅପରକୁ କଷ୍ଟ ଦିଅନ୍ତି ଏବଂ ତହିଁରୁ ଏକ  ହିଂସାତ୍ମକ (Sadistic) ଆନନ୍ଦ ଲାଭ କରନ୍ତି । କିନ୍ତୁ ଅଧିକାଂଶ ଲୋକେ ବୋଧହୁଏ ଶତକଡ଼ା ଅନେଶ୍ୱତ ଦଶମିକ ନଅ, ସଂସ୍କାରରେ ବନ୍ଧା ହୋଇଥିବା ଯୋଗୁଁ ନିଜ ଅଜାଣତରେ ଏବଂ ନିଜକୁ ଠକେଇ ଅନ୍ୟମାନଙ୍କୁ କଷ୍ଟ ଦିଅନ୍ତି ବୋଲି ମୋର ଧାରଣା । ଏବଂ ଯେଉଁମାନେ କଷ୍ଟ ପାଆନ୍ତି, ସେମାନେ ମଧ୍ୟ ସେଥିର ସତ-ମିଛ କାରଣ ଯୋଗାଇବାରେ ହେଳା କରନ୍ତି ନାହିଁ । ତେଣୁ ମୋତେ ଏଇ ଗୋଲାପି କୁହୁଡ଼ିକୁ ଭେଦ କରି ଦେଖିବାକୁ ହେବ କେଉଁଠି କାହାର ତଣ୍ଟି ଚିପି ହୋଇଯାଉଛି, କିଏ ତିଳତିଳ ହୋଇ ମରୁଛି, କିଏ ଜଡ଼ ହୋଇ ଯାଉଛି, କିଏ ଅନ୍ଧ ହୋଇ ଯାଉଛି, ଏବଂ କାହାର ସ୍ୱଭାବ ନଷ୍ଟ ହୋଇଯାଉଛି ... ଅଥଚ ମନେ ହେବ ଯାର ଦୋଷ ନାହିଁ କି ତାର ଦୋଷ ନାହିଁ ! ଅତି ମର୍ମନ୍ତୁଦ ଏଇ ଅମୃ-ଶଠ ଆତ୍ମ-ତୁଷ୍ଟ ସମାଜର କାରବାର । ହେଲେ ରାଗି ହେଉଛି କେଉଁଠି ? କାହା ଉପରେ ରାଗିବି ? ହିଂସୁକର ନାଲି ଆଖି, ଦୁର୍ଜନର କୁଟିଳ ହାସ୍ୟ ଦେଖିଲେ ତ ରାଗିବି ? ଯଦିଓ ମୁଁ ଜାଣେ ଯେ ସମାଜ ବ୍ୟବସ୍ଥାକୁ ବଦଳେଇବାକୁ ହେଲେ କ୍ରୋଧ ନିତାନ୍ତ ଆବଶ୍ୟକ । ପତାକାଧାରୀ ବିପ୍ଳବୀ ପାଇଁ ଆମ ଆଡୁ ମଧ୍ୟ କିଛି ସାହାଯ୍ୟ ଦରକାର । ଏବଂ ଯେ ବିପ୍ଳବୀ ହୋଇପାରି ନାହିଁ, କିନ୍ତୁ ଘର କୋଣରେ ଅବା ମନ-ଗହନରେ କାନ୍ଦୁଛି, ଏଣେ ଭାବିବାକୁ ଚାହୁଁଛି ଯେ ମୁଁ ସୁପତ୍ନୀ, ସୁଗୃହିଣୀ ଇତ୍ୟାଦି, ତାକୁ ମଧ୍ୟ ଉସ୍‌କେଇବାକୁ ପଡ଼ିବ ଯେ ତୋର କାନ୍ଦ ସତ, ବାକୀ ସବୁ ଭୁଲ୍, ସମାଜର କାରସାଦି । ଜାଣିଛି । ସେଇଥିପାଇଁ କେତୋଟି ଗଳ୍ପରେ କ୍ରୋଧ ତଥା ବିଦ୍ରୂପର ମୁଥ ମାରିଛି ମୋ ରାବଣମାନଙ୍କୁ, ତାଙ୍କ ଭିତରେ ଛଟପଟ ହେଉଥିବା ରାମଚନ୍ଦ୍ରମାନଙ୍କୁ ଅସ୍ୱୀକାର କରିଛି, ଅଧା ସତକୁ ସଂପୂର୍ଣ୍ଣ ସତ ବୋଲି ଧରି ନେଇଛି । କିନ୍ତୁ ମାନୁଛି ଯେ ମୋର କ୍ରୋଧ ଯଥେଷ୍ଟ ପ୍ରଚଣ୍ଡ ଓ ବ୍ୟାପକ ହୋଇପାରିନାହିଁ । ତେବେ ସେଥିପାଇଁ କିଏ ଆସିବ ବିପ୍ଳବୋତ୍ତର କଚେରୀର କାଠଗଡ  ଭିତରକୁ ? ମୋର ବାସ୍ତବଧର୍ମୀ ବୌଦ୍ଧିକତା ? ନା ମୋର ବୁର୍ଜୁଆଧର୍ମୀ ଭୀରୁତା ? ଭାବି ଦେଖନ୍ତୁ ।

## ଛଅ

କିନ୍ତୁ ମୋର ଦୁଃଖ ନାହିଁ ଯେ ସମାଜ ବ୍ୟବସ୍ଥାର ବହିର୍ଭୂତ ବ୍ୟକ୍ତିଗତ ସମ୍ପର୍କରେ ଦଗ୍ଧ ହେଉଥିବା ପ୍ରାଣୀକୁ ମୁଁ କେବଳ ସାମାନ୍ୟ ସହାନୁଭୂତି, ଦୟା, କ୍ଷମା ଏବଂ ଆମୋଦର

ସମ୍ମାନ ଦେଇଛି । କଦାପି କାହାକୁ ରାମ ଅଥବା ରାବଣ ରୂପେ ଦେଖି ନାହିଁ, କିମ୍ବା ଦେଖିବା ଆବଶ୍ୟକ, ରାଗିବା ଉଚିତ ବୋଲି ମନେ କରିନାହିଁ । କ୍ଷମା କରିବେ, ପ୍ରତ୍ୟେକର ପିଚ୍ଛିଳ ଉଆ - ଉଷୁନା ଚରିତ୍ରର ବୈଚିତ୍ର୍ୟ ମୋତେ ଏତେ ମଜା ଲାଗିଛି ଯେ .. । ଛାଡ଼ନ୍ତୁ, ନ ରାଗିଲେ କ୍ଷତି ନାହିଁ, କାହିଁକି ନା ତାର ଏହି ଚଳଚଂଚଳ ବୈଚିତ୍ର୍ୟ, ଏପରିକି ଅମୃଣଠତା, ତାକୁ  ଉଦ୍ଧାର କରିବ, ଟ୍ରାଜେଡ଼ିକୁ ଶୁଖେଇ ଦେବ, ମରଣକୁ ମର୍ ବୋଲି କହିପାରିବ । ମୋର ସାହାଯ୍ୟ ଲୋଡ଼ା ନାହିଁ । ମୋର ଆଶା ଆପଣ ଏକମତ ହେବେ ।

କହୁ କହୁ ଆପଣା ସାହିତ୍ୟ ବିଷୟରେ ଅନେକ କିଛି କହିଗଲିଣି । ବୋଧହୁଏ ଭୂତଟା ମୋ ବାଟ ଓଗାଳି ବସିଛି ବୋଲି ମୋର ଏଇ ବାଚାଳତା । ଅସମ୍ଭାଳ ଗୁହାରି ଆପଣମାନଙ୍କ ପାଖରେ । ଯେ ଦେଖନ୍ତୁ ଏଇ ମୋର ସାହିତ୍ୟ, ସେଥିରେ ଏଇ ଦୋଷଗୁଣ, ଅହମିକା ଏବଂ ଅକ୍ଷମତା ଅଛି ବୋଲି ମୋର ବିଶ୍ୱାସ । ହୁଏତ ଆହୁରି ଥିବ । ତା'ବୋଲି କଣ ଏଭଳି ସାହିତ୍ୟ ଲେଖିବାକୁ ମନା ? ମୋର ତ ବେଳକାଳ ସରି ଆସିଲାଣି, ମୋର ଅନୁଜ ଓ ବଂଶଧରମାନେ କଣ ସ୍ୱେଚ୍ଛାକୃତ, ସ୍ୱାଧୀନ ଏବଂ ଆନ୍ତରିକତାରେ ଜୁଡୁବୁଡୁ ହେଉଥିବା ସାହିତ୍ୟ ଲେଖିପାରିବେ ନାହିଁ ? ଆସନ୍ତା ଶତାବ୍ଦୀର ଏଇ ଅଶ୍ଳୀଳ ଭୟାବହ ପିଆଦାକୁ କଣ ସତେ ମାନିବାକୁ ପଡ଼ିବ ?

ମନେ ପଡ଼ି ଯାଉଛି ସୋଲ୍‌ଜେଣ୍ଟ୍‌ସିନ୍ (Solzhentsyn)ଙ୍କର ''କ୍ୟାନ୍‌ସର ୱାଡ୍''ର ବୁଢ଼ା ଓରେନ୍ ଷୋକୋଭ୍ ଯାହା କହିଥିଲେ । କହିଲେ, ବଂଚିବାର ଅର୍ଥ ହେଉଛି ଯେ ମୁଁ ଜନ୍ମ ହେବା ପରଠାରୁ ଶାଶ୍ୱତର ଯେଉଁ ଛବିଟିକୁ ଧରି ରଖିଛି ମୋ ଭିତରେ, ଶାନ୍ତ ପୁଷ୍କରିଣୀରେ ଶୋଭା ପାଉଥିବା ଶଶୀମଣି ପରି, ତାକୁଇ ଗୋଟିପଣେ ବଂଚେଇ ରଖିବା, ଯେତେଦୂର ସଂଭବ ।

ତେଣୁ 'ତଥାପି' ମୋର ବିଶ୍ୱାସ ଯେ ଏକବିଂଶ ଆସୁ ଅବା ଦ୍ୱାବିଂଶ, 'ଅଦ୍ୟୈବ ମରଣମସ୍ତୁ ଯୁଗାନ୍ତରେ ବା ସାହିତ୍ୟର ସତ୍ୟଦର୍ଶୀ ମହାନତା ନଷ୍ଟ ହୋଇ ରହିଯିବ  ନାହିଁ । ଏବଂ ତାକୁ କେହି ହେଲେ ଲେଖିବ, କେହି ହେଲେ ପଢ଼ିବ । ଶଶୀମଣିକୁ କେହି ହେଲେ ବଂଚେଇ ରଖିବ ।



## ସାହିତ୍ୟ ପରିକ୍ରମା

# କଥା କାରିଗର କିଶୋରୀ ଚରଣ : ଏକ ସ୍ୱର୍ଦ୍ଧିତ ପ୍ରତିଶ୍ରୁତି

*ଡକ୍ଟର ବୈଷ୍ଣବ ଚରଣ ସାମଲ*

କଥା କାରିଗର କିଶୋରୀ ଚରଣ ଦାସ ବିଂଶ ଶତାବ୍ଦୀ ଦ୍ୱିତୀୟାର୍ଦ୍ଧର ଓଡ଼ିଆ ସାହିତ୍ୟରେ ଏକ ସ୍ୱର୍ଦ୍ଧିତ ପ୍ରତିଶ୍ରୁତି । ଚଳନ୍ତି ସମୟର ଅନେକ କଥାକାରଙ୍କ ଠାରୁ ସେ ଉଭୟ ଶୈଳୀ ଓ ଥିମ୍ ଦୃଷ୍ଟିରୁ ସ୍ୱତନ୍ତ୍ର । ଅନେକଙ୍କ ଭିତରେ ଥାଇ ମଧ୍ୟ ସେ ଏକାକୀ ଓ ଏକାକୀ ହୋଇ ମଧ୍ୟ ସେ ଅନେକଙ୍କ ଭିତରେ ବିଦ୍ୟମାନ । ଗଳ୍ପ ରଚନା କଲାବେଳେ ତାଙ୍କର ଦୁଇଟି ସତ୍ତା କାମ କରେ - ଗୋଟିଏ ବାହାରର ପରିଚିତ ସତ୍ତା କିଶୋରୀଚରଣ, ଅନ୍ୟଟି ଭିତରର ଅପରିଚିତ ଅଶରୀରୀ ସତ୍ତା । ସେହି ସତ୍ତାଟି ପରିଚିତ କିଶୋରୀ ଚରଣଙ୍କ ଭିତରେ ପ୍ରକୃତ କିଶୋରୀ ଚରଣ - ଯିଏ ଦେଖାଯାଆନ୍ତି ନାହିଁ, ଅଥଚ ଅତ୍ୟନ୍ତ ଶକ୍ତିଶାଳୀ, ସର୍ବଦ୍ରଷ୍ଟା ଓ ସର୍ବଗାମୀ । ଗଳ୍ପ ଭିତରେ ଏହି ସତ୍ତାଟି କେତେବେଳେ ଉପରର ଭୂମିଟିକୁ ଛୁଇଁ ଦେଉଛି ତ ଠିକ୍ ସେହି ମୁହୂର୍ତ୍ତରେ ହଠାତ୍ ଅଦୃଶ୍ୟ ହୋଇଯାଇ ଭୂମିର କେଉଁ ଅନନ୍ତ ଗହ୍ୱରକୁ ଚାଲିଯାଉଛି । ଏମିତି ଗୋଟାଏ ସତ୍ତା ସହିତ ପାଠକ ଗତି କରିପାରେ ନାହିଁ । ତେଣୁ ତାକୁ ତାଙ୍କ ଗଳ୍ପ ବିଚିତ୍ର ଲାଗେ । ବେଳେବେଳେ ସେହି ଗଳ୍ପର କେନ୍ଦ୍ରକୁ ମଧ୍ୟ ପାଠକ ଛୁଇଁ ପାରେ ନାହିଁ ଓ ସେହି କାରଣରୁ ଉପରକୁ ସମୁଦ୍ରରେ ବୁଡ଼ିଥିବା ପର୍ବତର ଯେତିକି ଅଂଶ ଦେଖାଯାଏ, ତାହାକୁ ହିଁ କେବଳ ସତ୍ୟ କହି ଭ୍ରାନ୍ତିରେ ପଡ଼ିଗଲା ପରି କିଶୋରୀଚରଣଙ୍କ ଗଳ୍ପକୁ ବିଚାର କରିବାକୁ ଯାଇ ସେଇ ଭ୍ରାନ୍ତିରେ ପଡ଼ିଯାଏ । ଏହି ଯେମିତି 'ଲକ୍ଷ ବିହଙ୍ଗ' ଗଳ୍ପକୁ ବିଚାର କରିବାକୁ ଯାଇ ତା'ର ବିଷାଦମଣ୍ଡିତ ସାମାଜିକ କେନ୍ଦ୍ରକୁ ଛୁଇଁ ନ ପାରି ତାହାକୁ ସେକ୍ସର ପ୍ରତୀକ ଭାବରେ ଗ୍ରହଣ କରିଅଛନ୍ତି କେହି କେହି ଆଲୋଚକ । କିଶୋରୀ ଚରଣଙ୍କ ସ୍ରଷ୍ଟା-ଜୀବନର ଅନୁଭୂତି ତିନୋଟି ସ୍ତରକୁ ନେଇ - ଗୋଟିଏ ବାଲ୍ୟ-କିଶୋର ଓ ଛାତ୍ର ଜୀବନରୁ ସ୍ୱାଧୀନତା ଲାଭ ଓ ପ୍ରଥମ ଚାକିରି ଜୀବନ ପର୍ଯ୍ୟନ୍ତ, ଦ୍ୱିତୀୟଟି ମାଜିଷ୍ଟ୍ରେଟ ଭାବରେ ଓଡ଼ିଶାରେ ପ୍ରଥମ ଚାକିରି ଜୀବନ ଓ ତୃତୀୟଟି ସର୍ବଭାରତୀୟ ଚାକିରିରେ ଯୋଗଦେବାଠାରୁ ଅବସର ଗ୍ରହଣ କରିବା ପର୍ଯ୍ୟନ୍ତ ଓ ଅବସର ପରେ । ପ୍ରଥମ ଅନୁଭୂତିର ବଳୟ ଭିତରେ ଅଛନ୍ତି ବାପା, ମାଆ, ଭାଇ, ଭଉଣୀ, ବନ୍ଧୁ, ପଢ଼ା ସାଥୀ ଓ ବେଳେବେଳେ ସେକାଳର ସ୍ୱାଧୀନତା ସଂଗ୍ରାମୀ । ଦ୍ୱିତୀୟ ସ୍ତରରେ ଓଡ଼ିଶା କେନ୍ଦ୍ରିକ ପ୍ରଶାସନିକ ଅଧିକାରୀ, ଉପରିସ୍ଥ ହାକିମ, ନେତା, ମନ୍ତ୍ରୀ ଓ

ଜନଗଣ ଅନୁଭୂତି ବଳୟକୁ ଆସିଛନ୍ତି ଏବଂ ସେଠି ଗୋଟାଏ ହିପୋକ୍ରାସି ନୂଆ କରି ବ୍ୟୂହ ରଚନା କରିଯାଉଥିବା କଥାକୁ ସେ ଲକ୍ଷ୍ୟ କରିଛନ୍ତି । ତୃତୀୟ ସ୍ତରର ଅନୁଭୂତି ବଳୟ ବ୍ୟାପକ ଓ ତାହା ଭାରତର ବିଭିନ୍ନ ରାଜ୍ୟରୁ ସୁଦୂର ଆମେରିକା, କ୍ୟାନେଡ଼ା, ଇଂଲଣ୍ଡ, ଫ୍ରାନ୍‌ସ ଆଦି ସ୍ଥାନକୁ ସଂପ୍ରସାରିତ । ଏହି ଅନୁଭୂତି ବଳୟକୁ ଆସିଯାଇଛନ୍ତି କେତେ କେତେ ବିଚିତ୍ର ଚରିତ୍ର । ଗ୍ରାମ-ଓଡ଼ିଶା ପରିବର୍ତ୍ତେ ନଗର-ଓଡ଼ିଶା ଯେମିତି ଗଳ୍ପ ଭିତରକୁ ଆସିଛି ଓ ନବ ଅଭିଜାତ ବର୍ଗର ନରନାରୀ ଯେମିତି ଆସର ଜମେଇଛନ୍ତି ସେହିପରି ମଧ୍ୟ ନଗର-ଭାରତ ଓ ବିଦେଶର ଅଭିଜାତ ଚରିତ୍ରମାନେ ତାଙ୍କ ଗଳ୍ପ ଭିତରେ ଆସନ ଜମେଇଛନ୍ତି । ବେଳେବେଳେ ନିମ୍ନବର୍ଗର ନରନାରୀ ଯେ ଗଳ୍ପ ଭିତରକୁ ଆସିନାହାନ୍ତି, ନୁହେଁ । ବରଂ ଯେଉଁ କେତେକ ଗଳ୍ପରେ ଏପରି ଚରିତ୍ର-ପାତ୍ରଙ୍କୁ ଦେଖାଯାଏ ସେମାନେ ଯେ ପାଠକଙ୍କୁ ଗଭୀର ଭାବରେ ସ୍ପର୍ଶ କରନ୍ତି, ତାହା ମନେହୁଏ । କିଶୋରୀ ଚରଣଙ୍କ ଗଳ୍ପରେ ଘଟଣା ଅଛି, ଘଟଣାର ଖଣ୍ଡ ଖଣ୍ଡ ରୂପ ଅଛି, ଚରିତ୍ରମାନେ ଅଛନ୍ତି ମାତ୍ର ଏସବୁ କେହି ମୁଖ୍ୟ ନୁହନ୍ତି; ମୁଖ୍ୟ ଭାବ ବା Idea ଏବଂ ସେଇ ଆଇଡ଼ିଆକୁ ନେଇ ଘଟଣା ଓ ଚରିତ୍ରମାନେ ଗଳ୍ପ ଭିତରକୁ ଆସିଛନ୍ତି । ଆଇଡ଼ିଆ ମୁଖ୍ୟ ହୋଇଥିବାରୁ ନୀରବତା ହିଁ ତାଙ୍କ ଗଳ୍ପର ହୋଇଯାଇଛି ପ୍ରକୃତ ଆକର୍ଷଣ । ଏହି ନୀରବତା ଯୋଗୁ କିଶୋରୀ ଚରଣ ତାଙ୍କର ସମକାଳୀନ ଅନ୍ୟାନ୍ୟ ଗଳ୍ପକାରମାନଙ୍କଠାରୁ କେବଳ ସ୍ୱତନ୍ତ୍ର ନୁହନ୍ତି, ବରଂ ବହୁ ଦୃଷ୍ଟିକୋଣରୁ ବିଶିଷ୍ଟ ମଧ୍ୟ । ଏହି ବିଶିଷ୍ଟତା ଯୋଗୁଁ ତାଙ୍କର ଗଳ୍ପ ବାରିହୋଇ ପଡ଼େ - ଗୋପୀନାଥ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ଅଖିଳମୋହନ ପଟ୍ଟନାୟକ, ମନୋଜ ଦାସ, ଶାନ୍ତନୁ ଆଚାର୍ଯ୍ୟ ଓ ମହାପାତ୍ର ନୀଳମଣି ସାହୁ ପ୍ରମୁଖଙ୍କ ଗଳ୍ପଠାରୁ । ଆବେଗ ଦୃଷ୍ଟିରୁ ମହାପାତ୍ର ନୀଳମଣି ସାହୁଙ୍କ ଗଳ୍ପ ସହିତ ତାଙ୍କ ଗଳ୍ପର ସୂଚୀ-ସଂପର୍କ ଅନୁଭୂତ ହେଲେହେଁ ତାଙ୍କ ଗଳ୍ପରେ ଶ୍ରୀ ସାହୁଙ୍କ ପରି ପ୍ରଗଳ୍‌ଭତା ନାହିଁ । ତାହା ଭାବସାନ୍ଦ୍ର ଓ ନୀରବ । ତେଣୁ ପଚାଶୋତ୍ତର ଓଡ଼ିଆ ଗଳ୍ପ-ସାହିତ୍ୟରେ କିଶୋରୀ ଚରଣ ଯେ ଏକ ଅନନ୍ୟ ପ୍ରତିଭାଧର ଶିଳ୍ପୀ, ନିଃସନ୍ଦେହ ।

କିଶୋରୀ ଚରଣ ବିଚିତ୍ର କଥା କାରିଗର । ଏହି କାରିଗରୀ ତାଙ୍କ ମୌଳିକ ପ୍ରତିଭାର ସଫଳ ପ୍ରତିଶ୍ରୁତି । ପଚାଶ ଶତକର ପରବର୍ତ୍ତୀ ସମୟରୁ ହିଁ ତାଙ୍କ ଗଳ୍ପ ପ୍ରତିଭାର ଉନ୍ମେଷ ଓ ବିକାଶ । ପୂର୍ବରୁ ‘ନବୀନ’ ପତ୍ରିକାରେ ତାଙ୍କର ପ୍ରଥମ ଗଳ୍ପ ‘ପରଦାତଳେ’ ପ୍ରକାଶ ପାଇଥିଲେ ହେଁ ୧୯୫୫ ମସିହାରେ ‘ଝଙ୍କାର’ ଜୁଲାଇ ସଂଖ୍ୟାରେ ପ୍ରକାଶିତ ‘ବଡ଼ଲୋକି’ ଗଳ୍ପଠାରୁ ହିଁ ତାଙ୍କ ଗଳ୍ପ ଚରନାର ଦିଗନ୍ତ ସଂପ୍ରସାରିତ ହେବାକୁ ଲାଗିଲା । ୧୯୬୧ ମସିହାରେ ପ୍ରକାଶ ପାଇଲା ତାଙ୍କର ପ୍ରଥମ ଗଳ୍ପ ସଂକଳନ ‘ଭଙ୍ଗାଖେଳଣା’ ତେରଟି ଗଳ୍ପକୁ ନେଇ । ଏଥିରେ ପ୍ରକାଶିତ ସମସ୍ତ ଗଳ୍ପ ପ୍ରାୟ ‘ଝଙ୍କାର’ ପତ୍ରିକାରେ ପ୍ରକାଶିତ । ଏହା ପରେପରେ ପ୍ରକାଶ ପାଇଲା ‘ଲକ୍ଷ ବିହଙ୍ଗ’ (୧୯୬୮), ‘ଘରବାହୁଡ଼ା’ (୧୯୬୮), ‘ମଣିହରା’

(୧୯୭୦), 'ଠାକୁର ଘର' (୧୯୭୫), 'ନାଲି ଗୁଲୁଗୁଲୁ ସାଧବ ବୋହୂ' (୧୯୭୮), 'ଗମନ' (୧୯୮୦), 'ଖେଳର ନାଆଁ ରଂଗ' (୧୯୮୨), 'ଭିନ୍ନ ପାଉଁଶ' (୧୯୮୬), 'ଶୀତ ଲହରୀ' (୧୯୮୬), 'ତ୍ରୟୋବିଂଶ ମୃତ୍ୟୁ' (୧୯୮୭), 'ଲେଉଟାଣି' (୧୯୮୯), 'ନିଜ ନିଜ ସଂଜ' (୧୯୯୨), 'ଆଶ୍ଚର୍ଯ୍ୟବତ୍' ଓ 'ଶେଷ ଗଳ୍ପ' । ପ୍ରାୟ ଦୁଇଶହ ଗଳ୍ପର ସ୍ରଷ୍ଟା କିଶୋରୀ ଚରଣ ଓ ତାଙ୍କର ପ୍ରତ୍ୟେକ ଗଳ୍ପର ଥିମ୍ ମଧ୍ୟ ଭିନ୍ନ । ଗୋଟାଏ ବିଚିତ୍ର ଅବଚେତନୀୟ ଓ ଘୂର୍ଣ୍ଣାୟମାନ ଶୈଳୀରେ ଗଳ୍ପଗୁଡ଼ିକ ପ୍ରାଣବନ୍ତ । ପାଠକ ତାଙ୍କ ଗଳ୍ପ ଅଧ୍ୟୟନ କଲାବେଳେ ମନେ କରେ ସତେ ଯେମିତି କବିତା ଓ ଗଳ୍ପର ଏକ ମିଶ୍ରରାଗ ଝଙ୍କୃତ ହୋଇ ଉଠୁଛି । ସାମଗ୍ରିକ ଭାବରେ ତାଙ୍କ ଗଳ୍ପ ସଂସାରକୁ ଦୃଷ୍ଟିପାତ କଲେ ଜଣାଯାଏ ଯେ ସେ କେବଳ ନୂଆ କରି ଚଳିତ ସମୟରେ ଯେଉଁ ବ୍ୟକ୍ତିମଣିଷଟି ଜନ୍ମ ନେଇ ଆପଣାକୁ କ୍ଷମତା, ପଦପଦବୀ, ଅର୍ଥବାଦ, ଉପଭୋଗ, ଆତ୍ମମ୍ଭରିତା, ପ୍ରବଞ୍ଚନା ଓ ପ୍ରତାରଣା ଭିତରେ ପ୍ରତିଷ୍ଠା କରିବାକୁ ଯାଇ ସମଗ୍ରତାରୁ ବିଚ୍ୟୁତ ହୋଇପଡୁଛି ଏବଂ ଭିତରେ ଭିତରେ ଅସହାୟତାର ଶିକାର ହୋଇଯାଉଛି, ତାହାକୁ ହିଁ କେବଳ ସେ ଗଳ୍ପରେ ରୂପ ଦେଇନାହାନ୍ତି ତତ୍‌ସହିତ ତାଙ୍କ ଗଳ୍ପ ସମକାଳୀନ ସାମାଜିକ, ସାଂସ୍କୃତିକ ଓ ରାଜନୀତିକ ଚେତନା, ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ପୃଥିବୀର ଓ ସ୍ୱାଧୀନତା ପରବର୍ତ୍ତୀ ଗାଣତନ୍ତ୍ରିକ ଭାରତବର୍ଷର ଜାରଜ ସଂସ୍କୃତି ଏବଂ ସ୍ୱେଚ୍ଛାଚାରୀ ମୂଲ୍ୟବୋଧହୀନ ମାନସିକତା, ମନସ୍ତାତ୍ତ୍ୱିକ ଓ ଉଦ୍‌ଭଟ ଚିନ୍ତାଚେତନା, ବ୍ୟକ୍ତି-ଚରିତ୍ରର ବିବିଧ ସ୍ୱରୂପର ଉଦ୍‌ଘାଟନ, ପୁରୁଷ ଓ ନାରୀର ସଂସର୍ଗ ଓ ତାହାର ପରିଣତି, ପ୍ରାଚୁର୍ଯ୍ୟ ଭିତରେ ନିଜକୁ ହରାଇ ଦେବାର ମନୋବୃତ୍ତି, ଅସ୍ତିତ୍ୱବାଦୀ ଜୀବନ ଧାରାରେ ମଣିଷର ଦୁଃଖ ଓ ଦୁର୍ଦ୍ଦଶା ଇତ୍ୟାଦିର ଆଣୁବୀକ୍ଷଣିକ ଅନୁଭବକୁ ମଧ୍ୟ ଉପଲବ୍ଧି କରେ । କଥାକାର ଯେପରି ଭାବରେ ଆତ୍ମଚରିତଧର୍ମୀ ଶୈଳୀର ବ୍ୟବହାର କରି ବ୍ୟକ୍ତିଗତ 'ମୁଁ'ଟିକୁ ସର୍ବଜନୀନ 'ମୁଁ'ରେ ରୂପାନ୍ତରିତ କରିଦେଇପାରିଛନ୍ତି, ଯେପରି ମିଥ୍, ପ୍ରତୀକ, ଚିତ୍ରକଳ୍ପ ଇତ୍ୟାଦି ପ୍ରୟୋଗ କରି ଗଳ୍ପକୁ ସୌନ୍ଦର୍ଯ୍ୟମଣ୍ଡିତ କରିଛନ୍ତି, ଯେପରି ଭିତରର ଜିନିଷକୁ ବାହାରର, ବାହାର ଜିନିଷକୁ ଭିତରର କରିପାରିଛନ୍ତି, ବାସ୍ତବିକ ତାହା ଅନନ୍ୟ ।

ଆଦ୍ୟ ଗଳ୍ପ ସୃଷ୍ଟିର ପଚାଶ ବର୍ଷ ପରେ ମଧ୍ୟ କିଶୋରୀ ଚରଣ ସୃଜନଧର୍ମିତାରୁ ନୀରବ ରହିନାହାନ୍ତି । ପରିଣତ ବୟସ ବେଳକୁ ସେ ମଧ୍ୟ ରଚନା କରିଛନ୍ତି ଉପନ୍ୟାସ - 'ତିନୋଟି ରାତିର ସତୀ', 'ନେତା ଓ ନେତ୍ରମଣି', 'ସ୍ୱର୍ଗସୀମା' ଏବଂ 'ବିଦେଶିନୀ' ଇତ୍ୟାଦି । ଗଳ୍ପ ହେଉ ଅଥବା ଉପନ୍ୟାସ ହେଉ ସର୍ବତ୍ର ତାଙ୍କର ଅପୂର୍ବ କଥାକାରିଗରୀର ପରିଚୟ ମିଳିଥାଏ । ତାଙ୍କ ଗଳ୍ପ ଯେମିତି ସ୍ୱତନ୍ତ୍ର ମହିମାଦୀପ୍ତ ସେହିପରି ଉପନ୍ୟାସ ମଧ୍ୟ । ତାଙ୍କର ଗଳ୍ପ ପ୍ରାୟତଃ ଅନ୍ତର୍ମୁଖୀ । ନଗରର ପରିବେଶ ତାଙ୍କ ଗଳ୍ପର ପୃଷ୍ଠଭୂମି ଓ ମଧ୍ୟବିତ୍ତ ତଥା ଉଚ୍ଚବିତ୍ତ ଅଭିଜାତ ନରନାରୀ ତାଙ୍କ ଗଳ୍ପର ପାତ୍ରପାତ୍ରୀ ହୋଇଥିଲେ ହେଁ ନିମ୍ନବିତ୍ତ ଓ ସାଧାରଣ

ମଣିଷମାନେ ମଧ୍ୟ ତାଙ୍କ ଗଳ୍ପ ବୃତ୍ତକୁ ଆସିଛନ୍ତି । ଉପରବର୍ଗର ମଣିଷମାନଙ୍କର ଅସହାୟତା, ଶୂନ୍ୟତା, ଗ୍ଲାନି ଓ ନିଃସଙ୍ଗତା ଯେପରି ତାଙ୍କ ଗଳ୍ପମାନଙ୍କରେ ଉପଲବ୍ଧ, ସେହିପରି ମଧ୍ୟ ସାଧାରଣ ମଣିଷମାନଙ୍କ ଦୁଃଖ ଓ ବେଦନାବୋଧ ଅନୁଭୂତ । ଆଧୁନିକ ଅଭିଜାତ ମଣିଷର ଭିତରର ଛଦ୍ମତା, ହିପୋକ୍ରାସି ଓ ଛଳନାକୁ ଉଦ୍‌ଭିନ୍ନ କରି ତା'ରି ଭିତରୁ ପ୍ରକୃତ ମଣିଷଟିକୁ ସେ ଆବିଷ୍କାର କରି ଆଣିଛନ୍ତି । ଅନୁସଂଧାନ ଓ ଆବିଷ୍କାର ପ୍ରକ୍ରିୟାରେ ତାଙ୍କ ସୃଜନଶୀଳ ମାନସ ଗଳ୍ପଗୁଡ଼ିକୁ ଏପରି ଗଢ଼ି ଦେଇଛି ଯେ ତାହା ସତ୍ୟଭ୍ରମ ମହାମାୟା ପରି ଜଣାଯାଏ । ସର୍ବତ୍ର ଯେପରି ଗଳ୍ପର ହୋଇଛି ଅନ୍ତର୍ଯାତ୍ରା । ଭଦ୍ରମୁଖାଧାରୀ ଆଧୁନିକ ମଣିଷର ମୁଖା ଖୋଲି ଦେଇ ଜୀବନର ପ୍ରକୃତ ଅର୍ଥକୁ ସେ ସୂଚାଇ ଦେଇଅଛନ୍ତି । ସ୍ରଷ୍ଟା-ଜୀବନର ଆଦି ପୂର୍ବରେ କିଶୋରୀ ଚରଣ କବିତା ଲେଖୁଥିଲେ ଓ କବିତା ପ୍ରତି ତାଙ୍କର ଅବଚେତନରେ ରହିଯାଇଛି ଶ୍ରଦ୍ଧା । କବିତାରୁ ଗଳ୍ପକୁ ଗତି କଲାବେଳେ ସେହି କବି-ସତ୍ତାଟି ତାଙ୍କ ଭିତରେ ବେଶ୍ ପ୍ରଭାବଶାଳୀ ହୋଇ ଉଠିଛି ଓ ଗଳ୍ପଗୁଡ଼ିକ ହୋଇଯାଇଛି ତାଙ୍କ କବି-ସତ୍ତା ଓ ସମାଜ ସତ୍ତାର ସମନ୍ୱିତ କଳା ରୂପ । ଏକ ମନସ୍ତାତ୍ତ୍ୱିକ ଶୈଳୀରେ ତାଙ୍କ ଗଳ୍ପଗୁଡ଼ିକ ଗତିଶୀଳ । ଆବଚେତନିକ ରହସ୍ୟ ଉଦ୍‌ଘାଟନ ଏହାର ବୈଶିଷ୍ଟ୍ୟ । ପାରଂପରିକ ପଦ୍ଧତିରେ ଏହି କ୍ରାନ୍ତିକାରୀ କଥାକାର ମଣିଷକୁ ଓ ବିଶ୍ୱକୁ ବୀକ୍ଷଣ କରିନାହାନ୍ତି । ସଂପୂର୍ଣ୍ଣ ନୂତନ ପଦ୍ଧତିରେ ସେ ନିରୀକ୍ଷଣ କରିଛନ୍ତି । ତେଣୁ ତାଙ୍କର ଗଳ୍ପ ହୋଇଯାଇଛି ଅନ୍ତର୍ନିରୀକ୍ଷାର ଗଳ୍ପ । ପାଠକ ବେଳେବେଳେ ବଣା ହୋଇଯାଏ କିଶୋରୀ ଚରଣଙ୍କ ଗଳ୍ପ, ବୃତ୍ତର କେନ୍ଦ୍ରକୁ ଧରିପାରେ ନାହିଁ । ଯେତେବେଳେ ସେହି କେନ୍ଦ୍ରଟି ସହିତ ପାଠକ ନିଜକୁ ମିଶାଇ ଦେଇପାରେ ସେତିକିବେଳେ ସେ ଆଉ କିଶୋରୀ ଚରଣଙ୍କ ଗଳ୍ପ ମାଧୁର୍ଯ୍ୟରୁ ଅଲଗା ହୋଇଯାଇପାରେ ନାହିଁ । ଗଳ୍ପରେ ଅଭିଜାତ ବା ମଧ୍ୟବିତ୍ତ କି ଉଚ୍ଚବିତ୍ତ ପ୍ରସଙ୍ଗକୁ ଗୁରୁତ୍ୱ ନ ଦେଇ ସିଧାସଳଖ ମଣିଷ ସହିତ ସଂପର୍କ ଯୋଡ଼ି ଦିଏ । ତେଣୁ କିଶୋରୀ ଚରଣଙ୍କ ଗଳ୍ପ ହୋଇଯାଏ ସଂପର୍କର ଏକ ନୂତନ ସେତୁ ବନ୍ଧନ । ସେହି ସେତୁ ଦେଇ ପାଠକ ଯିବାଆସିବା କରେ ଗଳ୍ପରୁ ବାହାର ଜଗତକୁ ଓ ବାହାର ଜଗତରୁ ଗଳ୍ପ ଭିତରକୁ । ସେତିକିବେଳେ ସେ ଆପଣାକୁ ଦେଖେ ଗଳ୍ପର ଚରିତ୍ରମାନଙ୍କ ଭିତରେ । ଅନୁଭବ କରେ କଥାକାରଙ୍କ ଶାଣିତ ବ୍ୟଙ୍ଗୋକ୍ତିର ଗଭୀର ମାନବୀୟ ସମ୍ବେଦନାକୁ ।

'ଭଙ୍ଗାଖେଳଣା' ଗଳ୍ପ ପୁସ୍ତକର ନୂତନ ପ୍ରତ୍ୟୟ କିଶୋରୀ ଚରଣଙ୍କୁ ଗାଳ୍ପିକର ମାନ୍ୟତା ଦେଲା । ସେହି ପ୍ରତ୍ୟୟ ଆହୁରି ସଂପ୍ରସାରିତ ହୋଇଗଲା ପରବର୍ତ୍ତୀ ଗଳ୍ପ ସଂକଳନମାନଙ୍କରେ । କେଉଁଠି କାହାଣୀଟିଏ ଅଛି ତ, ଅନ୍ୟ କେଉଁଠି ନାହିଁ କୌଣସି ନିର୍ଦ୍ଦିଷ୍ଟ କାହାଣୀ । ଅଥଚ ତାହା ହୋଇଛି ଗଳ୍ପଟିଏ ସଂକଟଗ୍ରସ୍ତ ମଣିଷ ମନର ଜିଜ୍ଞାସାକୁ ନେଇ । ସେଥିରୁ ଫୁଟି ଉଠିଛି ଆତ୍ମ-ପରିଚୟ । କିଶୋରୀ ଚରଣ କୌଣସି 'ବାଦ' (ISM)ର କଥାକାର ନୁହଁନ୍ତି, ଅଥଚ ଆଧୁନିକ ଯୁଗରେ ଯେତେ 'ବାଦ' (ISM)ର ଚର୍ଚ୍ଚା ହୋଇଛି

ସବୁର ଏକ ସନ୍ତୁଳିତ ଭାବ ପ୍ରବାହକୁ ସେ ବୁହାଇ ଦେଇଛନ୍ତି ତାଙ୍କର ଗଳ୍ପରେ । ପ୍ରତ୍ୟେକ ସୃଷ୍ଟ ଚରିତ୍ର ତାଙ୍କର ଆତ୍ମୀୟ । ଆପଣାର ସମ୍ବେଦନଶୀଳ ବ୍ୟକ୍ତିସତ୍ତାର ଖଣ୍ଡ ଖଣ୍ଡ ରୂପକୁ ସତେଯେପରି ସେ ବାଣ୍ଟି ଦେଇଛନ୍ତି ବିଭିନ୍ନ ଗଳ୍ପର ଚରିତ୍ରମାନଙ୍କ ଭିତରେ । ତେଣୁ ସମୟର କାନ୍‌ଭାସ ଉପରେ ତାଙ୍କ ଗଳ୍ପର ଚିତ୍ର ଫଟୋଗ୍ରାଫିକ୍ ନୁହେଁ, ସମୟର ଅନ୍ତର୍ନିହିତ ପ୍ରାଣସତ୍ତାର ମର୍ମଲିପି । ନିର୍ମିତ ଗଳ୍ପ ନହୋଇ, ହୋଇଯାଇଛି, ଏହି କାରଣରୁ, ସ୍ୱତଃସ୍ଫୂର୍ତ୍ତ । ମଣିଷମାନେ, ବାସ୍ତବ ଓ ଦୃଶ୍ୟମାନ ହୋଇ ମଧ, ହୋଇଯାଇଛନ୍ତି କେଉଁ ଅତଳ ଅନ୍ଧକାରର ମଣିଷ, ଯେଉଁଠି ସେମାନଙ୍କ ଭିତରୁ ବାହାରି ଆସିଛି ହୃଦୟଭେଦୀ ଦୀର୍ଘଶ୍ୱାସ । ସେମାନେ ଆଲୋକକୁ ଆସିଛନ୍ତି, ରହିପାରି ନାହାନ୍ତି, ପୁଣି ଚାଲିଯାଇଛନ୍ତି ଅନ୍ଧକାରକୁ । କଥାକାର ସେହି ଅନ୍ଧାରକୁ ଘାଣ୍ଟିଛନ୍ତି । ଉଦ୍ଦେଶ୍ୟ ଅନ୍ଧାର ଚିରି ଆଲୋକ ଦେଖାଇବା, ମଣିଷର 'ମୁଁ' ପଣିଆ ଭିତରୁ ପ୍ରକୃତ ମଣିଷକୁ ବାହାର କରିଆଣିବା । ଏଇ ମଣିଷ 'ଭଙ୍ଗାଖେଳନା'ର ମଣିଷ କେବଳ ନୁହେଁ, 'ଲକ୍ଷବିହଙ୍ଗ' ଓ 'ଘରବାହୁଡ଼ା'ର ମଣିଷ, 'ବିଧର୍ମୀ' ଭିତରେ 'ଠାକୁରଘର'ର ମଣିଷ । ସେ 'ମଣିହରା' ହୋଇ ମଧ 'ଗମନ' ତାର ଧର୍ମ । 'ଶୀତ ଲହରୀ'ରେ ଥୁରୁଥୁରୁ ହୋଇ 'ତ୍ରୟୋବିଂଶ ମୃତ୍ୟୁ'କୁ ସ୍ୱାଗତ କରୁଥିଲେ ମଧ 'ଭିନ୍ନ ପାଉଁଶ' ଭିତରୁ ସଂଧାନ କରେ ଜୀବନକୁ ଓ ଏକ ବିଭୂତିବୋଧରେ ଉଦ୍‌ବୁଦ୍ଧ ହୋଇ 'ଖେଳର ନାଁ ରଙ୍ଗ' ଦିଏ ଓ ଏଥିରୁ ତା'ଭିତର ଦେଇ ଗୁମୁରି ଉଠେ 'ନାଲି ଗୁଲୁଗୁଲୁ ସାଧବ ବୋହୂ'ର ସ୍ୱପ୍ନ ଓ ସ୍ୱପ୍ନଭଙ୍ଗର ମହାକାରୁଣ୍ୟ । ପୁଣି ସେ 'ଲେଉଟାଣି' ଆସେ ଜୀବନକୁ । ବାସ୍ତବ ପୃଥିବୀକୁ ଏଇମିତି ଆସୁଆସୁ ଆସିଯାଏ 'ନିଜନିଜ ସଂଜ' ଭିତରକୁ । ଆଗରେ ଅନ୍ଧାର । ଆଲୋକ ନିଭିଯିବ । ଅନ୍ଧାର ମାଡ଼ି ଆସିବ । 'ଆଶ୍ଚର୍ଯ୍ୟବତ୍' ସେ ଚାହିଁ ରହେ । ଯେମିତି ସେ ଦେଖୁଛି ଆଉ ଦେଖୁ ନାହିଁ । 'ଶେଷଗଳ୍ପ' ଲେଖେ ଅଥଚ ତାହା ଶେଷ ହୁଏ ନାହିଁ । ଶେଷ ପରି ଜଣାଯାଏ ମାତ୍ର ତାହା ଯେମିତି ହୋଇଯାଏ ପୁଣି ଏକ ନୂତନ ଆରମ୍ଭ । କିଶୋରୀ ଚରଣଙ୍କ ଗଳ୍ପର ପଚାଶ ବର୍ଷର ପରିଧିକୁ ବିଚାର କଲେ ଜଣାଯାଏ ଯେ ତାହାର ଆରମ୍ଭ ଅଛି, ଶେଷ ନାହିଁ । ପ୍ରତ୍ୟେକ ଗଳ୍ପ ହିଁ ଗୋଟିଏ ଗୋଟିଏ ନୂତନ ଆରମ୍ଭ, ନୂତନ ଆବିଷ୍କାର, ନୂତନ ଅନୁସଂଧାନ । ଏହାର ଶେଷ କେଉଁଠି ? ଜୀବନର ପଥ ଅନନ୍ତ । ସ୍ରଷ୍ଟାର ସୃଷ୍ଟି ମଧ ସେହି ଜୀବନ ପଥର ଅନନ୍ତ ଅଭିମୁଖୀ । ତାକୁ ଯେତେ ଆବିଷ୍କାର କଲେ ହେଁ ତଥାପି ରହିଯାଏ ଅନେକ ବାକୀ । ପୂର୍ଣ୍ଣ କରିବାକୁ ଚେଷ୍ଟା କଲେ ମଧ ତାହା ରହିଯାଏ ଅପୂର୍ଣ୍ଣ । କିଶୋରୀ ଚରଣ ଏହି 'ଅପୂର୍ଣ୍ଣ'ର ସ୍ରଷ୍ଟା, ପୂର୍ଣ୍ଣତାର ନୁହେଁ । ପୂର୍ଣ୍ଣତା ଆସିଲେ ହିଁ ସ୍ରଷ୍ଟାର ମୃତ୍ୟୁ । ଅପୂର୍ଣ୍ଣତା ହିଁ ତା'ର ପ୍ରେରଣା, ଅନୁସଂଧାନର ଉତ୍ସ । ଏହି ଦୃଷ୍ଟିରୁ କିଶୋରୀ ଚରଣଙ୍କ ଗଳ୍ପ ବିଚାର୍ଯ୍ୟ ।

କଥାକାର-ଜୀବନର ଦୀର୍ଘ ଦିନର ଅନୁଭୂତିରୁ କିଶୋରୀ ଚରଣ କହନ୍ତି - 'ମୋ ସାହିତ୍ୟକୁ ନେଇ ମୁଁ ଅବଶ୍ୟ କହିବି ଯେ ମୁଖ୍ୟତଃ ତା'ର ଆଭିମୁଖ୍ୟ କେବେହେଲେ ସମାଜ ସୁଧାର ନଥିଲା କି ନାହିଁ । ସେଭଳି ପ୍ରଗଲ୍‌ଭତାକୁ ଦୂରରେ ରଖି ମୁଁ ସବୁବେଳେ ଚାହିଁଛି ଯେ

ମୁଁ ମୋର ଅନୁଭୂତ ସତ୍ୟକୁ ନିଷ୍ଠାର ସହିତ ପ୍ରକାଶ କରିବି, ଯେତେଟା ସମ୍ଭବ, ଗଭୀରତମ ଚିନ୍ତା ଏବଂ ଅନୁଭବର ମାଧ୍ୟମରେ । ସମାଜର ମଣିଷ ହିସାବରେ ଯଦି ମୋର କୌଣସି ଶୁଭଙ୍କରୀ ଦୃଷ୍ଟିକୋଣ ଥାଏ, ତାହା ଆପେ ଆପେ ଫୁଟି ଉଠିବ ଏବଂ ମୋ ସାହିତ୍ୟକୁ ରଙ୍ଗେଇବ ।' (ମୋ ସମୟ ମୋ ସାହିତ୍ୟ, ପୃ ୧୩) ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ କିଶୋରୀ ଚରଣ ସମାଜ ସୁଧାର ପାଇଁ ଗଳ୍ପ ଲେଖିନାହାନ୍ତି, ଗଳ୍ପ ଲେଖିଛନ୍ତି ପାଠକଙ୍କ ଚେତନାକୁ ସଂପ୍ରସାରିତ କରିବା ପାଇଁ । ଗାଳ୍ପିକର କାର୍ଯ୍ୟ ତା'ର ଅନୁଭୂତ ସତ୍ୟକୁ ଗଳ୍ପରେ ନିଷ୍ଠାର ସହିତ ପ୍ରକାଶ କରିବ । ଏହାପରେ କଳାକୌଶଳ ପ୍ରୟୋଗ । କୌଶଳ ପ୍ରୟୋଗ ମୁଖ୍ୟ ହୋଇଗଲେ ଗଳ୍ପ ଦରିଦ୍ର ହୋଇଯାଏ ଓ ତାହା ପ୍ରଭାବ ପକାଏ ନାହିଁ । କିଶୋରୀ ଚରଣ ଆପଣାର କଥାକାର ଜୀବନ ସଂପର୍କରେ କହନ୍ତି - '୧୯୫୦ ରୁ ୧୯୮୨ । ମୋର ବତିଶ ବର୍ଷର ଚାକିରି ଜୀବନ ଭାରତ ସରକାରଙ୍କ ଅଧୀନରେ । ତା'ପରେ ପୁନର୍ନିଯୁକ୍ତି ଅଢ଼େଇବର୍ଷ ପାଇଁ, ଆସାମ ସରକାରଙ୍କ ବିଦ୍ୟୁତ୍ ନିଗମରେ । ମୋଟାମୋଟି ସମ୍ବିଧାନର ପ୍ରଣୟନଠାରୁ ଆରମ୍ଭ କରି ଇନ୍ଦିରା ଗାନ୍ଧୀଙ୍କ ହତ୍ୟାଯାଏ କହିଲେ ଚଳେ । ଦେଶର ଅନେକ କିଛି ଘଟିଯାଇଛି ନିଶ୍ଚୟ ଏହି ସମୟ ଭିତରେ । ଦି'ଦିଟା ଯୁଦ୍ଧ ପାକିସ୍ଥାନ ସାଙ୍ଗରେ, ଗୋଟାଏ ଲଜ୍ଜାଜନକ ଯୁଦ୍ଧ ଚୀନ୍ ସାଙ୍ଗରେ, ସଂପୂର୍ଣ୍ଣ କ୍ରାନ୍ତିର ସ୍ଫୁରଣ ଏବଂ ମୃତ୍ୟୁ, ଏମରଜେନ୍ସୀର କାଳରାତ୍ରି ଇତ୍ୟାଦି । କିନ୍ତୁ ମୋ ସାହିତ୍ୟକୁ ନୂଆ ମୋଡ଼ ଦେଲା ପରି କିଛି ନଥିଲା ଯା' ଭିତରେ । ଯାହା କିଛି ଘଟିଥିଲା ମୋତେ ଚେତେଇବା ପାଇଁ, ବୁଦ୍ଧି ଦେବା ପାଇଁ ଏବଂ ଶେଷରେ ମୋ ସ୍ୱପ୍ନକୁ ସାବାଡ଼ କରି 'ଠିକଣା' ବାଟରେ ଚଳେଇ ନେବା ପାଇଁ, ତା' ଥିଲା ମୋ ଯୌବନର ଅନୁଭୂତି । ଏବଂ ସେଇଥିରୁ ଉପୁଜିଥିବା ମାନସିକତା ମୋ ସାହିତ୍ୟକୁ ଗୋଟିଏ ନିର୍ଦ୍ଦିଷ୍ଟ ରୂପଗୁଣ ଆଣିଦେଇଛି, ଯଦ୍ୱାରା ମୋ ସମୀକ୍ଷକମାନଙ୍କର ସୁବିଧା ହୋଇଛି ତାକୁ ଚିହ୍ନଟ କରିବା ପାଇଁ । ସେଣିକି ଗୋଟାଏ ବିସ୍ତୃତ ଉପତ୍ୟକାର ଖାଲଢ଼ିପ, ଅକସ୍ମାତ୍ ଫୁଲବନ ଏବଂ ଅକସ୍ମାତ୍ ନୀଳଜଳ ହିଁ ହୋଇଛି ମୋ ଲେଖକ ଜୀବନର ଆଧାର ଓ ପୃଷ୍ଠଭୂମି । ସଂଘାତ ନାହିଁ, ଚେତି ଚମକି ଉଠିବାରେ ଅବକାଶ ନାହିଁ, କେବଳ ସେଇ ଜଣାଶୁଣା କଥାର ବିଭିନ୍ନ ଓ ନିତ୍ୟନୂତନ ରୂପ ।' (ମୋ ସମୟ ମୋ ସାହିତ୍ୟ - ପୃ ୧୦/୧୧)

ଉପରୋକ୍ତ ଉକ୍ତିରୁ ଜଣାଯାଏ ଯେ ପଚାଶୋତ୍ତର ଭାରତ ବର୍ଷରେ ଯେଉଁ ଯେଉଁ ଘଟଣାସବୁ ଘଟିଯାଇଥିଲା ସେସବୁ ତାଙ୍କ ଗଳ୍ପ ପାଇଁ କୌଣସି ନୂଆ ମୋଡ଼ ଦେଇ ନଥିଲା । ଯାହା ଜଣାଶୁଣା କଥା ତାହାକୁ ସେ ସାଉଁଟି ନେଇଛନ୍ତି ଓ ସେଥିରେ ସେ ଭରି ଦେଇଛନ୍ତି 'ମଣିଷ ଜାତିର ସମାନ ସ୍ଥିତିବାଦୀ ଦୁଃଖକୁ ।' ଏହି ଚେତନା ସେ ଆହରଣ କରିବାରେ ସକ୍ଷମ ହୋଇଛନ୍ତି ଭାରତର ତଥା ପୃଥିବୀର ବିଭିନ୍ନ ସ୍ଥାନର ଲୋକମାନଙ୍କ ସଂପର୍କରେ ଆସି ପାରିଥିବା ହେତୁ । କଳ୍ପନାରେ ମହାକବି ସାଜିଛନ୍ତି । କଳ୍ପନାରେ ମଧ୍ୟ ସେ ଖେଳିଛନ୍ତି ରାଜାମନ୍ତ୍ରୀ

ଖେଳ । ସେଇ କଳ୍ପନାରେ ସେ ଯୁଦ୍ଧ କରିଛନ୍ତି, ଜିତିଛନ୍ତି ଓ ହାରିଛନ୍ତି, କାନ୍ଦିଛନ୍ତି ଓ ହସିଛନ୍ତି । (ଶତାବ୍ଦୀର କଳାଦୃଷ୍ଟି : କ୍ଷୁଦ୍ରଗଳ୍ପ - ଗଦ୍ୟଶିଳ୍ପୀ କିଶୋରୀ ଚରଣ, ପୃ ୨୨) ଏହାହିଁ ତାଙ୍କର ଆତ୍ମକେନ୍ଦ୍ରିକ ଭାବନାର ପରିପ୍ରକାଶ । ଆତ୍ମକେନ୍ଦ୍ରିକତାରୁ ତାଙ୍କ ଗଳ୍ପରେ ବ୍ୟକ୍ତିଚେତନା ପ୍ରାଧାନ୍ୟ ଲାଭ କରିଛି ଓ ଏହି ବ୍ୟକ୍ତିଚେତନା ସମାଜଚେତନା ସହିତ ନିବିଡ଼ ଭାବରେ ସଂପୃକ୍ତ ହୋଇଯାଇଥିବା ଲକ୍ଷ୍ୟ କରିହୁଏ । ତାହାରି ଭିତରେ ଥାଏ ଗୋଟାଏ ପ୍ରଚ୍ଛନ୍ନ ନୀତିକଥା । ଏହା କିନ୍ତୁ ହିତୋପଦେଶୀୟ ସିଧାସଳଖ ନୀତିକଥା ନୁହେଁ; ଏକ ପ୍ରଚ୍ଛନ୍ନ ନୀତିକଥା ଓ ତାହାହିଁ ଲେଖକଙ୍କ ବକ୍ତବ୍ୟ । ଏ ପ୍ରସଙ୍ଗରେ ଲେଖକ କହନ୍ତି - 'ଏଇଥିରୁ ବୁଝ୍ କିଭଳି ଛାଇ କିଲିବିଲି କରୁଛି ଆପାତସ୍ପଷ୍ଟ ଦିନର ଆଲୁଅକୁ, ଅବା କିଭଳି ଜ୍ୟୋତି ଜୁଳୁଜୁଳୁ ହେଉଛି ତଥାକଥିତ ଅନ୍ଧାର ଭିତରେ । ଅନ୍ୟ ଅର୍ଥରେ କିଭଳି 'ଭଲ' ବସାବାନ୍ଧିଛି ମନ୍ଦ ଭିତରେ ଏବଂ ମନ୍ଦ ଭଲ ଭିତରେ ।' (ଗଦ୍ୟଶିଳ୍ପୀ କିଶୋରୀ ଚରଣ - ପୃ ୧୪) କଥାକାର ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ କେହି ପ୍ରକୃତରେ ଭଲ ନୁହନ୍ତି ବା କେହି ମଧ ପ୍ରକୃତରେ ମନ୍ଦ ନୁହନ୍ତି । ଏହି ହିସାବ ମିଳାଇବାକୁ ସେ ଚେଷ୍ଟା କରିଆସିଛନ୍ତି । ସେହି ଅଙ୍କ କଷାର ଦାୟିତ୍ୱ ତାଙ୍କ ସାହିତ୍ୟକୁ ଅନୁରଂଜିତ କରିଛି ।

କିଶୋରୀ ଚରଣ ସମୟର ବିଶ୍ୱସ୍ତ ରୂପକାର । ତେଣୁ ତାଙ୍କର ଗଳ୍ପ ସମୟର ବାସ୍ତବ ଓ ଜୀବନ୍ତ ରୂପ ଚିତ୍ର । ତା' ମଧକୁ କେତେ କେତେ ଚରିତ୍ର ଆସିଛନ୍ତି, କେତେ କୋଳାହଳ ସୃଷ୍ଟି କରିଛନ୍ତି, କେତେ ଅଶ୍ରୁ ଆଉ କାରୁଣ୍ୟ ଭିତରେ ଉବୁଟୁବୁ ହୋଇଛନ୍ତି, କେତେ ଶଠତା ଓ ପ୍ରତାରଣା ଭିତରେ ବୁଡ଼ି ରହି ବାହାରକୁ ଭଦ୍ର ଖୋଳ ପିନ୍ଧି ବାହାରିଛନ୍ତି, ତଥାପି ସବୁ ଯେମିତି ପ୍ରଗଲ୍‌ଭତାରୁ ନୀରବତାକୁ ଗତି କରିଯାଇଛନ୍ତି ଧୀରେ ଧୀରେ ଏବଂ ସେହି ନୀରବତା ହିଁ ହୋଇଯାଇଛି ତାଙ୍କ ଗଳ୍ପର ଦିବ୍ୟଦ୍ୟୁତି । ମଣିଷର ଶଠତା, ପ୍ରତାରଣା, ଛଳନା ପ୍ରତି ସେ ବ୍ୟଙ୍ଗ କରିଛନ୍ତି, ମୃଦୁ ବିଦ୍ରୂପ କରିଛନ୍ତି । ତାହା କିନ୍ତୁ ଉଦ୍ଦେଶ୍ୟ ପ୍ରଣୋଦିତ ନୁହେଁ; ସ୍ୱତଃ । ଗଳ୍ପର ଗତିପ୍ରବାହ ଭିତର ଦେଇ ସଭ୍ୟ ଓ ଚତୁର ଶ୍ଳେଷ ଆସିଯାଏ ଓ ତାହାହିଁ ହୋଇଯାଏ ତାଙ୍କ ଗଳ୍ପର ବୈଶିଷ୍ଟ୍ୟ । ମଣିଷକୁ ସେ ଭଲ ପାଇଛନ୍ତି, ଭଲପାଇଛନ୍ତି ମଣିଷର ଅସହାୟତାକୁ, ଅଶ୍ରୁକୁ ଓ ଦୁଃଖକୁ । ସେହି ଭଲ ପାଇବା ବଡ଼ ମାର୍ମିକ ଓ ଆନ୍ତରିକ । ତେଣୁ ଯେତେବେଳେ ଗଳ୍ପରେ କୌଣସି ଚରିତ୍ର ପ୍ରତି ବିଦ୍ରୂପ ପ୍ରକାଶ ପାଇଛି ତାହା ସେହି ଆନ୍ତରିକ ମମତାର ନିଦର୍ଶନ ହୋଇଯାଇଛି । କେଉଁଠି ତାହା ହୋଇନାହିଁ ଅସୂୟା ବା ଈର୍ଷା ପ୍ରଣୋଦିତ । ଜଣେ ସଚ୍ଚା କଥାକାର ଆପଣାର କଥାବୃତ୍ତ ଭିତରେ କେତେ କେତେ ଚରିତ୍ରଙ୍କୁ ସମାବେଶ କରିଦିଏ, ନିଜେ ସେମାନଙ୍କ ଭିତରେ ଜଣେ ହୋଇଯାଏ, ସମସ୍ତଙ୍କ ସହିତ ହୃଦୟର ମିଳନ ଘଟାଏ, ନିଜେ ମିଳେ ଓ ଅନ୍ୟମାନଙ୍କୁ ମିଳାଏ, ମଣିଷ ଜୀବନର ଗୋଟାଏ ସମ୍ଭାବ୍ୟ ପରିବର୍ତ୍ତନର ସୂଚନା ଦିଏ । ଯେଉଁ ସମାଜର ମଣିଷମାନଙ୍କୁ ସେ ଦେଖେ, ଚିହ୍ନେ ଓ

ଭଲ ଭାବରେ ଜାଣେ, ସେହିମାନଙ୍କୁ ଗଳ୍ପରେ ରୂପ ଦିଏ । କିଶୋରୀ ଚରଣଙ୍କ ଗଳ୍ପ ଜଗତରେ ତାଙ୍କ ଚିହ୍ନା-ସମାଜର, ଅର୍ଥାତ୍ ମଧ୍ୟବିତ୍ତ ଓ ଉଚ୍ଚମଧ୍ୟବିତ୍ତ ସମାଜର ଚରିତ୍ରମାନେ ଆସର ଜମେଇଛନ୍ତି । ସେମାନଙ୍କ ଚେତନ/ଅବଚେତନ ମନର ରହସ୍ୟ ଉନ୍ମୋଚିତ ହୋଇଛି । ତେଣୁ କିଶୋରୀ ଚରଣଙ୍କ ଗଳ୍ପ ଜଗତ ହୋଇଯାଇଛି ମଣିଷମାନଙ୍କର ବିଚିତ୍ର ଚାରଣ ଭୂମି । କେହି ହୁଏତ କ୍ଷମତାମଦମତ୍ତ ହୋଇ ଅନ୍ୟମାନଙ୍କୁ ପଚାରି ନାହିଁ, ଅନ୍ୟ କେହି ଯୌନପ୍ରମତ୍ତ ହୋଇ ସକଳ ମୂଲ୍ୟବୋଧକୁ ହରାଇଦେଇଛି । କେହି ହୁଏତ ବୟସ୍କ ବା ବୟସ୍କା, ଅନ୍ୟ କେହି ଶିଶୁ ବା ଯୁବକ ଯୁବତୀ । କେହି ହୁଏତ ଚାକିରିଜୀବୀ, ଅନ୍ୟ କେହି ଶିଳ୍ପପତି / ବ୍ୟବସାୟୀ ବା ରାଜନୀତିକ ନେତା । କେହି ହୁଏତ ହାକିମ, ଅନ୍ୟ କେହି ସମାଜସେବୀ ବା ଭୂତପୂର୍ବ ସ୍ୱାଧୀନତା ସଂଗ୍ରାମୀ । ଏ ସକଳ ମଣିଷ ପୁଣି ସ୍ରଷ୍ଟାଙ୍କ ଅଖଣ୍ଡ ବ୍ୟକ୍ତିସତ୍ତାର ଖଣ୍ଡ ଖଣ୍ଡ ରୂପ । ତେଣୁ ସମସ୍ତଙ୍କ ପ୍ରତି ଝରି ଆସିଛି ସହାନୁଭୂତି ଓ ସଂବେଦନା । ଏହି କାରଣରୁ କିଶୋରୀ ଚରଣଙ୍କ ଗଳ୍ପ ଓଡ଼ିଆ ସାହିତ୍ୟରେ ନେଇଛି ଏକ ସ୍ୱତନ୍ତ୍ର ସ୍ଥାନ ।

କିଶୋରୀ ଚରଣଙ୍କ ପ୍ରଥମ ଗଳ୍ପ 'ପରଦା ତଳେ' ସ୍ୱାଧୀନତା ପୂର୍ବରୁ ଚାଳିଶ ଦଶକରେ ପ୍ରକାଶ ପାଇଥିଲା 'ନବୀନ' ପତ୍ରିକାରେ । ଏହି ଗଳ୍ପ ମଣିଷର ଦ୍ୱୈତ ସ୍ୱରୂପ ପ୍ରତି ଏକ ତିର୍ଯ୍ୟକ ଦୃଷ୍ଟିପାତ । ସିନେମା ପରଦାରେ ଫୁଟି ଉଠୁଥିବା ଗରିବର ଦୁଃଖ ଦେଖି ଆମେ ତରଳି ଯାଉ ମାତ୍ର ସିନେମା ହଲରୁ ପଦାକୁ ଆସି ବାସ୍ତବ କ୍ଷେତ୍ରରେ କୌଣସି ଅସହାୟ ଭିକାରିଟିଏ ହାତ ପତେଇ କିଛି ମାଗୁଥିବା ଦେଖିଲେ ଆମେ ନ ଦେଖିଲା ପରି ଆଡ଼େଇ ଦେଇ ଚାଲିଯାଉ । ବାହାରକୁ ଆମେ ଭଦ୍ର ଓ ମଣିଷର ଦୁଃଖରେ ଦୁଃଖୀ ବୋଲି ଦେଖେଇ ହେଉ । ମାତ୍ର ଭିତରେ ଆମ ଭିତରେ ସଂଗୁପ୍ତ ହୋଇ ରହିଥାଏ ଆଉ ଗୋଟାଏ ଛଳନାମୟ ବ୍ୟକ୍ତିତ୍ୱ । ସେହି ସମୟରେ ତାଙ୍କର ଅନ୍ୟ ଏକ ଗଳ୍ପ 'ପୂର୍ବାପର' ସେହି 'ନବୀନ' ପତ୍ରିକାରେ ପ୍ରକାଶ ପାଇଥିଲା । ଏଥିରେ ଲେଖକ ଦର୍ଶାଇ ଦେଇଛନ୍ତି ଯେ ମାଆ ସହିତ ଜଡ଼ିତ ହୋଇ ରହିଥିବା ପୁଅ ବାହା ହେଲା ପରେ ମାଆର ପଣତ କାନି ତଳୁ ଚାଲିଯାଏ ଅନ୍ୟ ଏକ ନାରୀ-ପତ୍ନୀର ପଣତ ତଳକୁ । ପତ୍ନୀର ସଙ୍ଗସୁଖ ତା ପାଖରେ ଅଧିକ କାମ୍ୟ ବିବେଚିତ ହୁଏ । ଏହାହିଁ ଅନୁଭୂତ ସତ୍ୟ ଓ ନିଷ୍ଠୁର ବାସ୍ତବ । ଏହି ବାସ୍ତବତାର ରୂପକାର କିଶୋରୀ ଚରଣ ।

'ଭଙ୍ଗା ଖେଳଣା'ର ପ୍ରତ୍ୟେକଟି ଗଳ୍ପ ଭିତରେ ଲେଖକ ମଣିଷର କ୍ଷତବିକ୍ଷତ ମନର ଭାବଧାରାକୁ ପ୍ରକାଶ କରିଥିଲା ବେଳେ 'ଘରବାହୁଡ଼ା'ର ଗଳ୍ପ ଭିତରେ ସେ ଅନୁଭବ କରିଛନ୍ତି ବିଦେଶୀ ପରିବେଶ ଓ ଚରିତ୍ରମାନଙ୍କର ପ୍ରସଙ୍ଗକୁ ଓ ତାହାରି ଭିତରେ ସ୍ୱଦେଶକୁ, ସ୍ୱସଂସ୍କୃତିକୁ ଭଲ ପାଉଥିବା ମଣିଷ ହୃଦୟର ନିବିଡ଼ ଭାବକୁ । ଅବଚେତନର ରହସ୍ୟକୁ ସେ ଉନ୍ମୋଚନ କରିଛନ୍ତି 'ଲକ୍ଷବିହଙ୍ଗ'ରେ । ଯୌନ ଅଭୀପ୍ସା ସହିତ ଜୀବନ ଜିଜ୍ଞାସା ଏହି ଗଳ୍ପଗୁଡ଼ିକରେ ନେଇଛି ପ୍ରାଣବନ୍ତ ରୂପ । ଏହାରି ଭିତରେ ଫୁଟି ଉଠିଛି ମଣିଷର

ଅସହାୟତାବୋଧ । ଏକ ବାସ୍ତବ ଦୃଷ୍ଟିକୋଣ ନେଇ ମଣିଷ ଜୀବନର ସକରୁଣ କାହାଣୀ ପ୍ରକାଶ ପାଇଛି 'ମଣିହରା' ଗଳ୍ପ ସଂକଳନରେ ।

'ଭଙ୍ଗାଖେଳଣା'ର ନିଜ କଥାରେ ଲେଖକ କହନ୍ତି - 'ମୁଁ ଖାଲି ଏତିକି କହିବି ଯେ ଏଥିରେ କୌଣସି ନିର୍ଦ୍ଦିଷ୍ଟ ମତବାଦ ନାହିଁ, ନୂଆ ତଥ୍ୟ ବାଢ଼ିବାର ପ୍ରଗଲ୍‌ଭତା ତ ଦୂରର କଥା । ଅଧେ ଅନୁଭୂତି ଅଧେ କଳ୍ପନା ଦେଇ ଛବି ଆଙ୍କିଛି, ଛବିର ମୂଳ କଥା ହେଲା ମଣିଷ ମନର ବୈଚିତ୍ର୍ୟ । ଭଲ ଖରାପ, ନୀତି ଅନୀତିର ମାପକାଠି ନାହିଁ ମୋ ପାଖରେ, ଯେତେ ମାପକାଠି ଦେଖିଛି ସବୁ ମୋତେ ଲାଗିଛି ବଙ୍କା, ଅସମାନ, ଅସୁନ୍ଦର ।' କିଶୋରୀ ଚରଣଙ୍କ ଗଳ୍ପ-ଅନୁଭୂତି ଓ କଳ୍ପନାର ମିଶ୍ରଭାଗ । କୌଣସି ମତବାଦର ମୋହର ନାହିଁ ତାଙ୍କ ଗଳ୍ପରେ । ମୋହର ହିଁ ଗଳ୍ପକୁ ପ୍ରଚାରଧର୍ମୀ କରିଦିଏ । ଗଳ୍ପର କଳାତ୍ମକତା ହ୍ରାସ ପାଇଯାଏ । ଯିଏ ମଣିଷକୁ ମୁଖ୍ୟ କରିନିଏ, ମଣିଷର ନାନାବିଧ ସମସ୍ୟାକୁ ଗୁରୁତ୍ୱ ଦିଏ, ସିଏ କେଉଁ ମୋହରକୁ ତା'ର ଗଳ୍ପରେ ମାରିବ ? ତା' ପାଖରେ ନୀତି ଅନୀତିର ମୂଳ ତଉଲ ନଥାଏ । ସବୁ ଯେମିତି ସ୍ୱତଃ ତା' ଗଳ୍ପ ଭିତରକୁ ଚାଲିଆସେ । ଏହି କାରଣକୁ 'ମଣିହରା' ବା ପରବର୍ତ୍ତୀ ଅନ୍ୟାନ୍ୟ ଗଳ୍ପ ସଂକଳନମାନଙ୍କରେ ନୀତି ବା ଆଦର୍ଶର ଜୟଗାନ ନ କରି ଯାହା ମଣିଷ ଜୀବନରେ ସତ୍ୟ ତାହାକୁ ସେ ରୂପଦେଇ ଅଛନ୍ତି ଓ ପ୍ରତ୍ୟେକଟି ଗଳ୍ପରେ ମଣିଷ ମନର ବୈଚିତ୍ର୍ୟ ହୋଇଛି ଆବିଷ୍କୃତ ଓ ଅଙ୍କିତ । 'ଲକ୍ଷବିହଙ୍ଗ' ଗଳ୍ପ ପୁସ୍ତକର ନିଜ କଥାରେ ଲେଖକଙ୍କ ବକ୍ତବ୍ୟ 'ମୁଁ ମୋରି ପରି ସାଧାରଣ ପ୍ରେମୀମାନଙ୍କ ବିଷୟରେ ଲେଖିଛି, ଯେଉଁମାନେ ଭଗବାନ, ଧର୍ମ, ସମାଜ, ସେକ୍‌ସ, ଜରା, ମରଣ ଇତ୍ୟାଦିର ତାଡ଼ନାରେ ହନ୍ତସନ୍ତ ହେଉଛନ୍ତି, ନିଜକୁ ଭଲପାଇବା ପାଇଁ ଅସତ୍ୟ ଓ ଅଜ୍ଞାନର ଆଶ୍ରା ନେଉଛନ୍ତି ଏବଂ ଶାନ୍ତିରେ ବଞ୍ଚିବାକୁ ଚାହୁଁଛନ୍ତି ।' ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହୋଇଯାଉଛି ଯେ କିଶୋରୀ ଚରଣ ତାଙ୍କରି ପରି ସାଧାରଣ ମଣିଷମାନଙ୍କର ପ୍ରେମ-କାରୁଣ୍ୟ-ଅଶ୍ରୁ-ବ୍ୟଥା ଓ ବ୍ୟର୍ଥତାକୁ ରୂପ ଦେଇଛନ୍ତି । ଚଳନ୍ତି ସମୟର ନରନାରୀଙ୍କ ସମଷ୍ଟୀଭୂତ ଅବଚେତନର ରସ ରହସ୍ୟକୁ ଉପଲବ୍‌ଧି କରି ତାହାକୁ ଗୋଟାଏ ଅନ୍ତରୀଣ ଚଳଚିତ୍ର ନ୍ୟାୟରେ ଏପରି ରୂପ ଦେଇଅଛନ୍ତି ଯେ ତାହା ପାଠକକୁ ଅଭିଭୂତ କରିଦିଏ ।

କିଶୋରୀ ଚରଣ ନୀରବ ଦ୍ରଷ୍ଟା, ନୀରବ ସାଧକ ଓ ନୀରବ ଶିଳ୍ପୀ । 'ଭଙ୍ଗା ଖେଳନା', 'ଲକ୍ଷବିହଙ୍ଗ', 'ଘରବାହୁଡ଼ା', 'ମଣିହରା', 'ଠାକୁରଘର', 'ନାଲି ଗୁଲୁଗୁଲୁ ସାଧବବୋହୂ', 'ଗମନ', 'ଭିନ୍ନ ପାଉଁଶ', 'ଶୀତ ଲହରୀ', 'ଖେଳର ନାଆଁ ରଙ୍ଗ', 'ତ୍ରୟୋବିଂଶ ମୃତ୍ୟୁ', 'ଲେଉଟାଣି', 'ନିଜ ସଂଙ୍ଗ', 'ଧବଳ ଆକାଶ', 'ଥରୁଟିଏ', 'ତରଙ୍ଗ', 'ଶେଷଗଳ୍ପ' ଇତ୍ୟାଦି ବିବିଧ ଗଳ୍ପ ସଂକଳନ ମଧଦେଇ ଏହି ନୀରବ ଶିଳ୍ପୀଙ୍କର ସ୍ରଷ୍ଟାମାନସ ଗତି କରିଛି ବିଚିତ୍ର ଭଙ୍ଗୀ ଓ ଭାବରେ । ସର୍ବତ୍ର ତାଙ୍କର ଅନୁଭୂତ ସତ୍ୟ କଳ୍ପନାକୁ ଆଶ୍ରୟ

କରି ହୋଇଛି ଗତିଶୀଳ । ଏହି ଗତିଶୀଳତାରେ ବର୍ଣ୍ଣନାର ଛଟା ଅଛି; ଅଛି ମଧ୍ୟ ନିବିଡ଼ ଆନ୍ତରିକତାର ସ୍ପର୍ଶ । ବହିରଙ୍ଗ ପରିବେଶର ଚମତ୍କାରିତା ଅଛି; ଅଛି ମଧ୍ୟ ଅନ୍ତରଙ୍ଗ ବ୍ୟକ୍ତି ସତ୍ତାର ଖଣ୍ଡରୂପର ମହିମାମୟ ଦୀପ୍ତି । 'ଭଙ୍ଗାଖେଳଣା' ଅନ୍ତରଙ୍ଗ ବ୍ୟକ୍ତିସତ୍ତାର ଆବେଗମୟ ଉଚ୍ଚାରଣ, ଅନୁଭୂତ ସତ୍ୟର କାବ୍ୟମୟ ପ୍ରତୀତି ଓ ନୀରବ ମାନସିକ ଯନ୍ତ୍ରଣାର ଅନ୍ତରୀଣ ଚଳଚ୍ଚିତ୍ର । ଏହି ଗଳ୍ପର କେନ୍ଦ୍ରରେ ବିଦ୍ୟମାନ ଅପରିପକ୍ୱ ବାଳିକା ଗୀତା । ବୋଉ, ବାପା ଓ ବନୁଦାକୁ ନେଇ ତା'ର ମାନସିକ ସଂଘର୍ଷ । ବୋଉ ଓ ବନୁଦାର ହସ ଓ ସଂପର୍କ, ବାପାଙ୍କ ପ୍ରତି ବୋଉର ଉଦାସୀନତା କୋମଳମତି ଗୀତାର ଅବଚେତନରେ ସୃଷ୍ଟି କରିଛି ଝଡ଼ । ବନୁଦାଦା ପ୍ରଦତ୍ତ ତାଜମହଲ ପ୍ରତି ବୋଉର ଆସକ୍ତି ଗୀତାକୁ ଉତ୍‌କ୍ଷିପ୍ତ କରିଛି ଓ ତାହାହିଁ ତା' ଭିତରେ ବନୁଦାଦା ପ୍ରତି ସୃଷ୍ଟି କରିଛି ଘୃଣା । ତା'ର ଇଚ୍ଛା ବୋଉ ପ୍ରଥମେ ତାର ଉପହାର 'ଶାମୁକା'କୁ ଦେଖୁ ଓ ପରେ ବନୁଦାଦାର ଉପହାର ତାଜମହଲକୁ ଶ୍ରଦ୍ଧା କରୁ । ଅସତର୍କ ଭାବରେ ତାଜମହଲ ଉଠାଉ ଉଠାଉ ହାତରୁ ପଡ଼ି ଭାଙ୍ଗି ଯାଇଛି । ଭୟ କରି ଯାଇଛି ଗୀତା, ହୁଏତ ବୋଉ ତା'ପ୍ରତି ରାଗିଯାଇପାରେ । ତାକୁ ମାଡ଼ ଦେଇପାରେ । ଗୋଟିଏ ଛୋଟ ପିଲାର ମାନସିକ ସନ୍ତୁଳନ ଓ ଚିତ୍ତ-ସଂଘର୍ଷ ଏହି ଗଳ୍ପରେ ଜୀବନ୍ତ ହୋଇଥିବା ସଙ୍ଗେ ସଙ୍ଗେ ଅଭିଜାତ ମଣିଷର ଅସହାୟତା ଓ ଅପରପକ୍ଷରେ ସେହି ବର୍ଗର ନରନାରୀଙ୍କ ମୂଲ୍ୟବୋଧରହିତ ଉପଭୋଗ କାମନା ମଧ୍ୟ ବେଶ୍ ପ୍ରାଣବନ୍ତ ହୋଇଉଠିଛି । ଏଠି ନୀତି ଓ ଆଦର୍ଶ ନାମରେ ବାସ୍ତବ ସତ୍ୟକୁ ଅସ୍ୱୀକାର କରାଯାଇ ନାହିଁ । ଅଥଚ ସେହି ବାସ୍ତବ କେତେ ଅସହାୟ ନ ହୋଇଛି ! ଠିକ୍ ଏହିପରି 'କାନ୍ଦୁରୀ' ଗଳ୍ପର ଗୀତା, ନାଲି ଗୁଲୁଗୁଲୁ ସାଧବ ବୋହୂ'ର ଗୀତା ଭିନ୍ନ ସମୟ ଓ ଭିନ୍ନ ପରିବେଶର ହୋଇଥିଲେ ମଧ୍ୟ ଏହି ତିନୋଟି ଗୀତା ଚରିତ୍ର ମଧ୍ୟରେ ଅଛି ଗୋଟାଏ ଅନ୍ତର୍ନିହିତ ସଂପର୍କ । ଏଥିରେ ଆମେରିକାର ଟିନ୍ ଏଜରମାନଙ୍କର ମୁକ୍ତ ବିହାର, ଦ୍ରୁତ ଗତିରେ ଧାବମାନ ଜୀବନ ସ୍ରୋତ ସହିତ ମିଶିଯିବାର ଅଭିଳାଷକୁ ଯେପରି ସୂଚାଇ ଦିଆଯାଇଛି ସେହିପରି ଭାରତବର୍ଷରେ ସେମାନଙ୍କର ସ୍ୱାଧୀନତା ପ୍ରତି ଆକଟ ଓ ନିୟନ୍ତ୍ରଣକୁ ମଧ୍ୟ ବ୍ୟଂଜିତ କରାଯାଇଅଛି । ଗୋଟିଏ ସହାନୁଭୂତିଶୀଳ ହୃଦୟ ଦେଇ ଏପରି ଗୀତାମାନଙ୍କ ବ୍ୟଥା ଓ ବେଦନାକୁ ବୁଝିବା ପାଇଁ ଲେଖକ ଇଙ୍ଗିତ ଦେଇଅଛନ୍ତି । ସେହି ଗୀତା 'ନାଲି ଗୁଲୁଗୁଲୁ ସାଧବ ବୋହୂ' ଗଳ୍ପରେ କିନ୍ତୁ ବିବାହ କରି ବୋହୂ ହେବାକୁ ଯାଉଛି । ଗଳ୍ପର ଆରମ୍ଭରେ ସେ ସାଉଁଟିଛି ସାଧବ ବୋହୂ ଓ ଶେଷରେ ସେଗୁଡ଼ିକୁ କାଚ ଡବାରୁ ବାହାର କରି ଫୋପାଡ଼ି ଦେଇଛି । ଏହି ପ୍ରତୀକାତ୍ମକ ଉପସ୍ଥାପନା ଦେଇ ଗୀତାର ମନସ୍ତାତ୍ତ୍ୱିକ ଦିଗ ପ୍ରତି ରହିଛି ଇଙ୍ଗିତ । ବାଲ୍ୟାବସ୍ଥାରେ ସେ ଆକଟ ଭିତରେ ଥିଲା । ବିବାହ ପରେ ମଧ୍ୟ ସେହି ଆକଟ । ତା' ଭିତରେ କିନ୍ତୁ ପ୍ରକାଶ ପାଇଛି ଗୋଟାଏ ମୁକ୍ତିବୋଧ । ଲେଖକଙ୍କ ଦୃଷ୍ଟିରେ ବାହା ହେଲା ପରେ ଗୀତା କ୍ରମଶଃ ଆଉ ଜଣେ ନାରୀରେ ପରିଣତ

ହୋଇଯିବ । ବଂଚନା ଭିତରେ ନିଜକୁ ବଂଚେଇ ରଖିବାକୁ ଭଲି ଭଲି ମୁଖା ପିନ୍ଧିବ । ସମାଜର ସେ ହେବ ଅନ୍ୟତମ ଏକ ନାରୀ (ଗଳ୍ପ ଆଳାପ ପୃ ୨୬୬) ନାରୀର ମୁକ୍ତି ଓ ମୁଖା ଏ ଗଳ୍ପକୁ ପ୍ରାଣବନ୍ତ କରିଅଛି । ସତ୍ ଆନ୍ତରିକ ମନ ଓ ହୃଦୟ ନଥିଲେ ଜଣେ ଏପରି ଗଳ୍ପ ରଚନା କରିବା ସମ୍ଭବ ନୁହେଁ ।

ନାନା ନାରୀ ଚରିତ୍ରକୁ ନେଇ ତାଙ୍କର ଗଳ୍ପ ଯେପରି ଋଦ୍ଧିମନ୍ତ ସେହିପରି ଶିଶୁ, କିଶୋର ଓ ପୁରୁଷ ଚରିତ୍ରକୁ ନେଇ ମଧ୍ୟ ଗଳ୍ପଗୁଡ଼ିକ ପ୍ରାଣବନ୍ତ । ଏହି ସମସ୍ତ ଚରିତ୍ର ଯଦିଓ ବାହାରର ପରି ଜଣାଯାଆନ୍ତି, ମନେହୁଏ ସେମାନେ ସମସ୍ତେ ଯେପରି ଲେଖକଙ୍କ ଭିତିରି ସତ୍ତାରେ ବିଦ୍ୟମାନ ଥିବା ଜଣେ ଜଣେ ଚରିତ୍ର । ତାଙ୍କର ବ୍ୟକ୍ତିଗତ ଜୀବନରେ ପହିଲି ଟ୍ରାଜେଡ଼ି ଘଟିଗଲା ପ୍ରଥମ ପୁତ୍ର ଜନ୍ମ ହେବାର ଆଠ ମାସ ନ ପୂରୁଣୁ ମରିଯିବା । ଏହି ସ୍ମୃତି ସଂଜୀବିତ ଥିଲା ତାଙ୍କର ଅବଚେତନରେ । ବହୁ ବର୍ଷ ପରେ 'ମଣିହରା' ଗଳ୍ପରେ ତାହା ଆତ୍ମପ୍ରକାଶ କଲା । ସେ ପୁଣି ତାଙ୍କ ଗଳ୍ପମାନଙ୍କରେ ଦେଖାଇଛନ୍ତି ଯେ ମଣିଷଟା କେତେ ଶଠ, ମିଛୁଆ ଓ ସ୍ୱାର୍ଥୀ । ଏହାସତ୍ତ୍ୱେ ସେଥିରେ ମଣିଷର ଉତ୍ତରଣ ବ୍ୟାକୁଳତାକୁ ମଧ୍ୟ ସୂଚାଇ ଦେଇଛନ୍ତି । ବିଧର୍ମୀ ଗଳ୍ପ ଏହି ସତ୍ୟର ବାସ୍ତବ ଚିତ୍ର । ନାସ୍ତିକ ବୋଲାଉଥିବା ବୁଦ୍ଧିଜୀବୀ ମଣିଷଟି ବନ୍ଧୁର ସୁନାନାକୀ ଝିଅଟା ମରିଗଲେ ଭଲ ହୁଅନ୍ତା ବୋଲି ଭାବୁଥିଲା ବେଳେ ସେହି ଝିଅଟି ପ୍ରକୃତରେ ମରିଯିବାରୁ ବୁଦ୍ଧିଜୀବୀ ମଣିଷଟିର ଦେଖାଦେଇଛି ଭାବାନ୍ତର । ସେ ଯେ ପ୍ରକୃତରେ ବିଧର୍ମୀ ନୁହେଁ ଓ ତା' ଭିତରେ ଗୋଟାଏ ସମ୍ବେଦନଶୀଳ ବ୍ୟକ୍ତିତ୍ୱ ବିଦ୍ୟମାନ ତାହା ପ୍ରତିପାଦିତ ହୋଇଥାଏ । ଶ୍ରୀ ଦାସଙ୍କର ପ୍ରଥମ ଗଳ୍ପ ସୃଷ୍ଟିଠାରୁ ଆରମ୍ଭ କରି 'ଲକ୍ଷ ବିହଙ୍ଗ' ବା 'ମଣିହରା' ପର୍ଯ୍ୟନ୍ତ ଯେଉଁ ସରଳ ଓ ସାଧାରଣ ଚରିତ୍ରମାନଙ୍କୁ ଲକ୍ଷ୍ୟ କରାଯାଉଥିଲା କ୍ରମେ ତାହା ଅଧିକ ଜଟିଳ ହେବାକୁ ଲାଗିଲା । ନିଜେ ଲେଖକ କହନ୍ତି - 'ଯାହାହେଉ ପରିଣତ ବୟସରେ ମୋର ଚରିତ୍ରଗୁଡ଼ିକ ଅଧିକରୁ ଅଧିକ ଜଟିଳ ଏବଂ ମୋର ବକ୍ତବ୍ୟ ବହିର୍ମୁଖୀ ହୋଇପଡ଼ିଛି ବୋଲି ମୋର ବିଶ୍ୱାସ । ମନେହୁଏ ଯେ ସେବେଳର ଭୀରୁତା ଏବେକାର ଉଦାରତାରେ ପରିଣତ ହୋଇଛି । ସତେକି ଏଇ ମଣିଷ, ବିଶେଷତଃ ମଧ୍ୟବିତ୍ତ ସମାଜର ମଣିଷ, ଆତ୍ମ ପ୍ରତାରକ ହେଲେ ମଧ୍ୟ ଅକ୍ଷମ; ଅନିଚ୍ଛୁକ ନୁହେଁ, ଅକ୍ଷମ ନିଜକୁ ଚିହ୍ନିବା ପାଇଁ ।' (ମୋ ସମୟ ମୋ ସାହିତ୍ୟ, ପୃ ୧୨) ।

କିଶୋରୀ ଚରଣଙ୍କ ଗଳ୍ପ-ଜଗତର ଚରିତ୍ରମାନେ ସମଗ୍ରତା ଦୃଷ୍ଟିକୋଣରୁ ଦୁଇଟି ସ୍ତର ଦେଇ ଗତିଶୀଳ - ଗୋଟିଏ ଜଟିଳ ମାନସିକତାର ସ୍ତର ଓ ଅନ୍ୟଟି ଉଦାର ହୃଦୟବତ୍ତାର ସ୍ତର । ଏହି ଦୁଇଟି ସ୍ତର ଯେ ପରସ୍ପରଠାରୁ ଅଲଗା, ତାହା ନୁହେଁ । ଉଭୟ ମଧ୍ୟରେ ବ୍ୟବଧାନ ଅଛି; ପୁଣି ଉଭୟର ମଧ୍ୟ ମିଳନ ଘଟିଛି ଗୋଟିଏ ଭାବବିନ୍ଦୁରେ । ଲେଖକଙ୍କର ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ବିଚାର ଓ ଚିନ୍ତନର ମଧ୍ୟ ବିବର୍ତ୍ତନ ଦେଖାଦେଇଛି । ଗୋଟାଏ ବୁଦ୍ଧ

ସୁଲଭ କାରୁଣ୍ୟ ତାଙ୍କ ବିଚାରକୁ ଡୁବେଇ ଦେଇଛି ବୋଲି ତାଙ୍କର ମନେ ହୋଇଛି । ତାଙ୍କର ବିବର୍ତ୍ତନ ଯୋଗୁଁ ତାଙ୍କ ଗଳ୍ପର ଅଙ୍ଗ ଓ ଆତ୍ମା ବଦଳିଛି, ମାତ୍ର ସମ୍ବେଦନା ନିବିଡ଼ ହୋଇଉଠିଛି । ଅତୀତର ସ୍ମୃତି ଓ ବର୍ତ୍ତମାନର ଜୀବନାନୁଭୂତି ଯୁଗପଦ୍ ତାଙ୍କ ଗଳ୍ପମାନଙ୍କରେ ସ୍ଥାନ ନେଇଛି ଏବଂ ତାଙ୍କ ଗଳ୍ପ ସମାଜକୁ, ସମୟକୁ ଓ ସଂସ୍କୃତିକୁ ଛାଡ଼ି ଯାଇନାହିଁ । ବରଂ ସମାଜ-ମଣିଷମାନଙ୍କର ବହୁଧା ବିଭକ୍ତ ଓ ବିଦୀର୍ଣ୍ଣ ବ୍ୟକ୍ତିତ୍ୱର ଖଣ୍ଡ ଖଣ୍ଡ ରୂପ ତାଙ୍କ ଗଳ୍ପରେ ପ୍ରକାଶ ପାଇ ସମ୍ବେଦନଶୀଳ ପାଠକର ଅନ୍ତର ଭିତରେ ପ୍ରତିକ୍ରିୟା ସୃଷ୍ଟି କରିଛି ।

'ଗୋଟିଏ ବାହାଘର' ଗଳ୍ପ ଜନୈକ ଉଚ୍ଚଶିକ୍ଷିତ ଯୁବକର ଦୁର୍ବଳ ବ୍ୟକ୍ତିତ୍ୱ ପ୍ରତି ଶ୍ଳେଷାତ୍ମକ ଅଭିବ୍ୟକ୍ତି । ଏପରି ଯୁବକ ତା'ର ବାପାଙ୍କ ଅର୍ଥ ଲାଭର ଖାତିରରେ ଆପଣାର ପସନ୍ଦ ଅପସନ୍ଦକୁ ଭୁଲି ଯାଏ । ଏଠି ଯେତେ ଚତୁର ମଧୁର ବ୍ୟଙ୍ଗ ଥିଲେ ମଧ ତାହାର ପ୍ରଭାବ ପଡ଼େ ନାହିଁ ଆଜିର ଅର୍ଥସର୍ବସ୍ୱ ମଣିଷ ଉପରେ । ଏବେ ନବନିଯୁକ୍ତ ଆଇ.ଏ.ଏସ୍. ଅଫିସର ଖୋଲାଖୋଲି ଭାବରେ ମୋଟା ଅଙ୍କର ଯୌତୁକ ଦାବି କରୁଛି । ବଧୂହତ୍ୟା ମଧ ହୋଇଗଲାଣି ଗୋଟାଏ ଦେହସୁହା ଘଟଣା । 'ବିଜୟା ଦଶମୀ' ଗଳ୍ପରେ ଲେଖକ ସୂଚାଇ ଦେଇଛନ୍ତି ଯେ ଜନୈକ ଅଧିକାରୀ କୌଣସି ଏକ ବ୍ୟକ୍ତିଠାରୁ ଡାଲାଟିଏ ଗ୍ରହଣ କରୁଛି ଓ ନିଜକୁ ସଫେଇ ଦେଉଛି ଯେ ସେ ଲାଂଚ ନେଉ ନାହିଁ; ଭେଟି ନେଉଛି । ଅଥଚ ପରେ ପରେ ତା'ର ଭାବାନ୍ତର ଦେଖାଦେଉଛି । ତା'ର ମନେ ହେଉଛି ସତେ ଯେମିତି ତା ବାପା ମରିଗଲେ ଏଇକ୍ଷଣି । ଏଇ ଯେଉଁ ନୈତିକ ଦ୍ୱନ୍ଦ୍ୱ ଆଜିର ସମାଜରେ ଦୁର୍ଲଭ । ବରଂ ଦୁର୍ନୀତି ହୋଇଯାଇଛି ଗୋଟାଏ ସାମାଜିକ ଚଳଣି ଓ ତାହାହିଁ ହୋଇଛି ବାସ୍ତବ । ଭୋଟ ବେପାରଠାରୁ ଆରମ୍ଭ କରି ଚାକିରିରେ ଠିକଣା ସ୍ଥାନକୁ ବଦଳି ହେବା ଇତ୍ୟାଦି ନାନା କ୍ଷେତ୍ରରେ ଦୁର୍ନୀତିର କାୟା ବିସ୍ତାର କରିଯାଇଛି । ଏହି ବାସ୍ତବକୁ ଲେଖକ ତାଙ୍କର ଗଳ୍ପରେ ରୂପ ପ୍ରଦାନ କରିଛନ୍ତି । 'ମୁଁ ପାରିବି' ଗଳ୍ପରେ ମଧ ଏହି ସତ୍ୟ ବିମ୍ବିତ । ଜନୈକ ନୀତିନିଷ୍ଠ ସ୍ୱାଧୀନତା ସଂଗ୍ରାମୀ ଓ ଯୁବ ହାକିମଙ୍କ ମାଧମରେ ଲେଖକ ଏହି ସତ୍ୟକୁ ପ୍ରକାଶ କରିଅଛନ୍ତି । ପ୍ରାୟ ଅଧିକାଂଶ ଗଳ୍ପରେ ଚରିତ୍ରମାନେ ମଧବିତ୍ତ ଓ ଉଚ୍ଚମଧବିତ୍ତ ଶ୍ରେଣୀର । ମାତ୍ର ସର୍ବତ୍ର ଗୋଟାଏ ଆନ୍ତରିକ ସାମାଜିକ ଦୃଷ୍ଟି ପ୍ରକଟିତ ।

'ଘେରାଉ' ଗଳ୍ପ ବିଗତ ଷାଠିଏ ଦଶକର ରାଜନୀତିକ ସୁବିଧାବାଦ ଦୃଷ୍ଟିକୋଣରୁ ଘେରାଉ କରି ଦାବି ହାସଲ କରିବାର ପ୍ରବଣତା ଉପରେ ଆଧାରିତ । ଏହି ଚିନ୍ତାଧାରାକୁ ନେଇ ଅନ୍ୟାନ୍ୟ କେତେକ କଥାକାର ଗଳ୍ପ ଲେଖିଥିଲେ ମଧ କିଶୋରୀ ଚରଣଙ୍କର ଗଳ୍ପ ସ୍ୱତନ୍ତ୍ର ମହିମାନ୍ୱିତ । ଏହି ଗଳ୍ପର ନାୟକ ସମାଜ ନିରପେକ୍ଷ ବ୍ୟକ୍ତିଚେତନାର ପ୍ରତୀକ ହେଲେ ମଧ କ୍ରମେ ତାଙ୍କର ରୂପାନ୍ତର ଘଟିଛି ସମାଜଚେତନାରେ । ମିଷ୍ଟର ନାୟକ ତେଣୁ ମନେ କରିଛନ୍ତି ସତେ ଯେପରି- 'କେତେଗୁଡ଼ିଏ ଜୀଅନ୍ତା ଦେହର ଆଖି ଏକାଠି ହୋଇ ତାଙ୍କୁ

ଉସ୍‌କେଉଛି, ପୃଥିବୀ ଘେରାଉ କରୁଛି ।' ଏହି ଗଳ୍ପରେ ଉଭୟ ଅଫିସର ଓ କର୍ମଚାରୀ ଅସହାୟ । ଏକ ସମ୍ବେଦନଶୀଳ ଦୃଷ୍ଟିକୋଣ ନେଇ ଲେଖକ ଏହି ଗଳ୍ପକୁ ରୂପ ଦେଇଛନ୍ତି । ଆଜିର ମଣିଷ ମାନସିକ ଭାବରେ ଅସହାୟ । ସେ ଦେଖୁଛି ତା'ର ଚତୁର୍ଦ୍ଦିଗରେ ଶୂନ୍ୟତା । 'ଗୋଟିଏ ଲାଲ ସଂଧ୍ୟା' ଗଳ୍ପରେ ଲେଖକ ଏହି ସତ୍ୟକୁ ପ୍ରକାଶ କରି କହନ୍ତି - 'ରାସ୍ତା ଉପରେ ଖଣ୍ଡୀ କୁକୁରଟାଏ ଛିଡ଼ା ହୋଇ ଲାଙ୍ଗୁଡ଼ ହଲାଉଛି, ଶୂନ୍ୟତାର ବାନା ଉଡ଼ାଉଛି ।' ଆଜିର ମଣିଷ ଘୂରୁଛି ଧୂଆଁ ଓ ଧାବନର ଚକରେ । ତା'ର ଛାତି ଦମ୍ ଦମ୍ ହେଉଛି । ପ୍ରାଣ ହେଉଛି ଛଟପଟ । ବାହୁ ଦୁଇଟି ଉପରକୁ ଉତ୍ତୋଳନ କରି ସେ କହୁଛି - 'ଭଗବାନଙ୍କୁ ନୁହେଁ, ମୁଁ ତାଙ୍କୁ ବିଶ୍ୱାସ କରେ ନାହିଁ, ମୁଁ ଇତିହାସର କାଳପୁରୁଷକୁ ଡାକିଲି । ଡାକିଲି ଯେ ମୋତେ ଉଠାଇ ନିଅ, ମୋତେ ତୁମ ରଥରେ ବସେଇ ଦିଅ । ମୋତେ କିଛି କରିବାକୁ ଦିଅ ।' (ଗୋଟିଏ ଲାଲ୍ ସଂଧ୍ୟା)

କିଶୋରୀ ଚରଣ ଜୀବନବାଦୀ ଶିଳ୍ପୀ । ଜୀବନରେ ଦୁଃଖ ଅଛି, ଯନ୍ତ୍ରଣା ଅଛି; ତଥାପି ଅଛି ଆନନ୍ଦ । ଏହା ସତ୍ୟ ଯେ ଆଜିର ମଣିଷ ଜୀବନରେ ନୀତି ବା ଆଦର୍ଶର ସ୍ଥାନ ନାହିଁ । ସ୍ୱାର୍ଥର ପ୍ରତିଯୋଗିତାରେ ସେ ହୁଏତ ଆଗେଇ ଯାଇପାରେ ଅଥବା ପରାସ୍ତ ହୋଇ ଯନ୍ତ୍ରଣା ଲାଭ କରିପାରେ । ଜୀବନରେ ଆଗେଇବାକୁ ହେଲେ ସୁନ୍ଦରୀ ପତ୍ନୀର ଆବଶ୍ୟକତା ଯେ କେତେ ବେଶୀ ତାହାକୁ 'ଆଇସ୍‌କ୍ରିମ୍' ଗଳ୍ପରେ ଲେଖକ ଦର୍ଶାଇ ଦେଇଛନ୍ତି । ସୁନ୍ଦରୀ ପତ୍ନୀ ଯୋଗୁ ହିଁ ଗଳ୍ପ ନାୟକ ଶର୍ମା ସାହେବ ଚାକିରି କ୍ଷେତ୍ରରେ ଆଗେଇ ଯାଇପାରିଥିଲେ । ସାଧାରଣତଃ ଦେଖାଯାଏ ଯେ ଦରିଦ୍ର ବ୍ୟକ୍ତିର ଅଶ୍ଳୀଳ ଜୀବନ ପ୍ରତି ବଡ଼ଲୋକମାନେ ବାଚିକ ସମବେଦନା ପ୍ରକାଶ କରନ୍ତି । ଏହାଦ୍ୱାରା ସେମାନଙ୍କର ବଡ଼ଲୋକି ପ୍ରକାଶ ପାଇଥାଏ । 'ବଡ଼ଲୋକି' ଗଳ୍ପରେ ଜଗା ମୁଖରେ ଲେଖକ ଏହି ସତ୍ୟକୁ ପ୍ରକାଶ କରି ଅଛନ୍ତି - 'ଯେତେବେଳେ ତୁମେମାନେ ବିଳାସର କୋଠାରେ ରହି ଆମ ସଙ୍ଗରେ ମିଶିବାକୁ ଚେଷ୍ଟା କର, ଆମର ଦାରିଦ୍ର୍ୟକୁ ରୋମାଣ୍ଟିକ୍ ଛାପ ଦେବାକୁ ଚେଷ୍ଟା କର, କୋଠାଘରେ ରହି କୁହ ଯେ ଗଛତଳର ଛାଇ କି ସୁନ୍ଦର ! ଆମକୁ ଘୃଣା କରନ୍ତ, ଦୂରରେ ରଖନ୍ତ, ଆମେ ଜାଣନ୍ତୁ ଯେ ତୁମେ ଓ ଆମେ ଅଲଗା, କିନ୍ତୁ ଯେତେବେଳେ ତୁମେମାନେ ସହାନୁଭୂତିର ଦୁହା ଦେଇ ଆମ ମଇଳା, ନିକୁଛିଆ ସଂସାରକୁ ଭଲ ବୋଲି କୁହ, ଦେଖାଇ ହୁଅ ଯେ ତୁମେ ତା' ଭିତରୁ ଜଣେ, ସେଇ ଛଳନାଟି ସବୁଠୁ କଷ୍ଟ ଦିଏ ।' ଏହି ବର୍ଣ୍ଣନା ଭିତରେ ମଣିଷର ପ୍ରକୃତ ସ୍ୱରୂପ ଉତ୍‌କୀର୍ଣ୍ଣ । 'ଲକ୍ଷ ବିହଙ୍ଗ' ଗଳ୍ପରେ ଲେଖକ ସୂଚେଇ ଦେଇଛନ୍ତି ଯେ 'ବାହାରେ ନେଳି ଆକାଶର ଅସୀମତା ସୂଚନା ଦେବ ଯେ ଜୀବନ ସରେ ନାହିଁ, ଆଶା ପୂରେ ନାହିଁ ଏବଂ ତଳକୁ ଅନାଇଲେ ଦେଖାଯିବ ଯେ, ପୃଥିବୀ ଅଯଥାରେ ପେଲି ହେଉଛି, ଧଇଁସଇଁ ହେଉଛି, ଭାବୁଛି ଜୀବନର ଅର୍ଥ ଅଛି । କେତେ ଝାଳ ଓ ନିଃଶ୍ୱାସ, କେତେ ଧୂଆଁ ଓ ଧୂଳି ଜୀବନର

ଅର୍ଥ ତିଆରି କରୁଛି, ପାରୁନାହିଁ ।' ଏହା ସତ୍ତ୍ୱେ ମଣିଷ ବିକଳ ମନ ଓ ଲଙ୍ଗଳା ଦେହରେ ଚିତ୍କାର କରୁଛି 'ମୁଁ ମଣିଷ, ମୁଁ ମଣିଷ ।' ଯାବତୀୟ ଦୁଃଖ ଓ ଯନ୍ତ୍ରଣା ସତ୍ତ୍ୱେ ମଣିଷ କହୁଛି 'ଆମେ ବଂଚିବୁ ।' ଏହି ଜୀବନ ବଂଚିବା କିଶୋରୀ ଚରଣଙ୍କ ଗଳ୍ପମାନଙ୍କରେ ପ୍ରମୁଖ ବୈଶିଷ୍ଟ୍ୟ । ସେ ପୁଣି 'ସୁଖର ସଂସାର' ଗଳ୍ପରେ ଜୀବନ-ବଂଚିବାର ଗୋଟିଏ ଗୋଟିଏ ଫ୍ରେମ୍ ସଂପର୍କରେ ଉଲ୍ଲେଖ କରିଅଛନ୍ତି । 'ଜୀବନର ବିଭିନ୍ନ ଅବସ୍ଥା ପାଇଁ ବିଭିନ୍ନ ଫ୍ରେମ୍ । ଚାକିରି ଜୀବନ ପାଇଁ ଗୋଟାଏ ଫ୍ରେମ୍, - ପେଟପୋଷିବାକୁ ହେବ । ବିବାହିତ ଜୀବନ ପାଇଁ ଗୋଟାଏ ଫ୍ରେମ୍,- ସ୍ତ୍ରୀ ସବୁଦିନର ସାଥୀ । ସାମାଜିକ ଜୀବନ ପାଇଁ ଆଉ ଗୋଟାଏ ଫ୍ରେମ୍, - ସମସ୍ତେ ବନ୍ଧୁ, କେହି ନିଜର ନୁହନ୍ତି । କହିବାକୁ ଗଲେ ସମଗ୍ର ଜୀବନ ପାଇଁ ଗୋଟିଏ ସର୍ବବ୍ୟାପୀ ଫ୍ରେମ୍ ରହିଛି, - ବଂଚିବାକୁ ହେବ । ବଂଚିବା ପାଇଁ ମଣିଷ ନାନା ଫ୍ରେମ୍ ଭିତରେ ବାନ୍ଧି ହୋଇଥାଏ । ଅଥଚ କୌଣସି ଫ୍ରେମ୍‌ରେ ସେ ସ୍ଥାୟୀ ହୋଇ ରହିପାରେ ନାହିଁ । ତଥାପି ସେହି ମଣିଷ କହେ -'ମୁଁ ପିଲା ନୁହେଁ, ପ୍ରକୃତିର ଗଛ ନୁହେଁ । ମୁଁ ଜଣେ ମଣିଷ ।' (ମଣିହରା) ମଣିଷର ଜୀବନ ବଡ଼ ଅସହାୟ, ନାନା ଜଂଜାଳରେ ପରିପୂର୍ଣ୍ଣ ତା'ର ଜୀବନ । ଏହା ସତ୍ତ୍ୱେ ସେ ଜୀବନକୁ ସ୍ୱୀକାର କରେ । ସମାଜର ବନ୍ଧୁର ପଥରେ ପଡ଼ି ଉଠି ସେ ଗତି କରେ । 'ମଣିହରା' ଗଳ୍ପ ପୁସ୍ତକର ନିବେଦନରେ ଲେଖକଙ୍କ ବକ୍ତବ୍ୟ 'ଆମର ବ୍ୟକ୍ତି ଚେତନା ଓ ସମାଜ ଚେତନା ଲହୁଲୁହାଣ ହୋଇ ପଡ଼ି ଉଠି ଆଗେଇବାକୁ ଚାହେଁ, ପ୍ରକୃତି ଓ ସମାଜର ତାଡ଼ନାକୁ ଭ୍ରୂକ୍ଷେପ ନକରି ମହାନନ୍ଦ ଲଭିବାକୁ ଚାହେଁ, ସକଳ ଅଶାନ୍ତି ମଧ୍ୟଦେଇ ଆଜି ଧର୍ମ ସତ୍ୟ ଆଦି ଜନନୀର କୋଳରେ ଶୋଇବାକୁ ଚାହେଁ ।' ଜୀବନର ରୁକ୍ଷ ବାସ୍ତବତା ସହିତ କୋମଳ ଗାନ୍ଧାର କିଶୋରୀ ଚରଣଙ୍କ ଗଳ୍ପରେ ପ୍ରକଟିତ ।

କିଶୋରୀ ଚରଣଙ୍କ ଗଳ୍ପ ଜଗତରେ ଉଭୟ ନାରୀ ଓ ପୁରୁଷଙ୍କର ସ୍ୱାଭାବିକ ରୂପ ବର୍ଣ୍ଣିତ । ଏମାନେ ବିବିଧ ରୂପରେ ଗଳ୍ପମାନଙ୍କରେ ରୂପାୟିତ । ନାରୀ ଜାୟା ଓ ଜନନୀ, ଗୃହିଣୀ ଓ ପ୍ରଣୟିନୀ, କାମୁକିନୀ ଓ ବହୁରୂପିଣୀ ଭାବରେ ଯେପରି ଚିତ୍ରିତ ସେହିପରି ପୁରୁଷର ମଧ୍ୟ ବିବିଧ ଚରିତ୍ର ବ୍ୟଂଜିତ । ଆଇସକ୍ରିମ୍, ସାବିତ୍ରୀର ସୁଦିନ, ଲକ୍ଷବିହଙ୍ଗ, ବନମୟୂର, ମଣିହରା, ଅଣ୍ଡା, ପୁଅ କାନ୍ଦୁଛି, ବିଷ, ଗୋଟିଏ ଲାଲ ସଂଧ୍ୟା, ଶହେ ପୁଅ, ତ୍ରୟୋବିଂଶ ମୃତ୍ୟୁ, ଠାକୁର ଘର, ଭିନ୍ନ ପାଉଁଶ, ଶୀତଳହରୀ, ରାତି କୁକୁର ଆଦି ନାନା ଗଳ୍ପରୁ ଆଧୁନିକ ସମାଜର ନାରୀ ଚରିତ୍ରର ବିବିଧ ଦିଗକୁ ଯେପରି ଉପଲବ୍ଧି କରିହୁଏ, ସେହିପରି ପୁରୁଷ ଚରିତ୍ରର ନାନା ଦିଗକୁ ମଧ୍ୟ ଅନୁଭବ କରିହୁଏ । ମଣିଷକୁ ଜାଣିବା ଓ ତାହାର ଅବଚେତନର ଅତଳ ରହସ୍ୟକୁ ଉଦ୍‌ଘାଟନ କରିବା କିଶୋରୀ ଚରଣଙ୍କ ଗଳ୍ପର ଆଭିମୁଖ୍ୟ । ଏଥିପାଇଁ ସେ କହନ୍ତି - 'କିଛି ଅନୁଭୂତିକୁ ନେଇ ଚରିତ୍ର ମାଧ୍ୟମରେ ମୁଁ ଅଭିନୟ କରେ । ଯେକୌଣସି ଲେଖା ପାଇଁ ଚିନ୍ତା, ଆନ୍ତରିକତା ଏବଂ ସାହସ ନଥିଲେ, ସୃଷ୍ଟି ସଫଳ ହେବନି ଏବଂ ଏହି

ଆନ୍ତରିକତା ଅନ୍ତଃମଜ୍ଜାଗତ ହେବା ଉଚିତ । ମୋର ଆଖପାଖର ମଣିଷକୁ ଯେପରି ମୁଁ ଦେଖେ, କଳ୍ପନାର ରଙ୍ଗ ଦେଇ ଆଉ ଟିକିଏ ବଢ଼ାଇ ଦିଏ । ଗୋଟିଏ ମଣିଷ ସହିତ ଆଉ ଗୋଟିଏ ମଣିଷର ଭାଗ୍ୟକୁ ଯୋଡ଼ି ତଉଲେ ଯେ ଏଇଟି ଅନ୍ୟଟି ପରି ହୋଇଥିଲେ କିପରି ହୁଅନ୍ତା । ବର୍ଣ୍ଣନାଗୁଡ଼ିକୁ ନିଜସ୍ୱ ଢ଼ଙ୍ଗରେ ଖେଳେଇ ଦିଏ । ଅଶାନ୍ତିରୁ ପ୍ରଶାନ୍ତିକୁ ଉତ୍ତରଣ ହେଉଛି ମୋର ବର୍ତ୍ତମାନର ଚେତନା ।' (ଅଧୁନା ୮ମ ବର୍ଷ ୨ୟ ସଂଖ୍ୟା), କିଶୋରୀ ଚରଣଙ୍କ ଗଳ୍ପରେ ମଣିଷ ମୁଖ୍ୟ, ମୁଖ୍ୟ ସେହି ମଣିଷର ମନ ଗହନର ରହସ୍ୟ ଓ ଚିତ୍ତ-ସଂଘର୍ଷ । ମଣିଷ ମନର ବୈଚିତ୍ର୍ୟ ନାନା ଭାବରେ, ନାନା ରୂପରେ ତାଙ୍କ ଗଳ୍ପମାନଙ୍କରେ ଚିତ୍ରିତ । ସେହି ମଣିଷ ମଧ୍ୟବିତ୍ତ ବା ଉଚ୍ଚମଧ୍ୟବିତ୍ତ ଶ୍ରେଣୀର ହୋଇଥିଲେ ମଧ୍ୟ ସବୁ ଶ୍ରେଣୀର ମଣିଷଙ୍କ ମନର କଥାକୁ କହିଥିଲା ପରି ମନେହୁଏ ।

'ଘର ବାହୁଡ଼ା' ଗଳ୍ପ ସଂକଳନର 'ନିଜ କଥା'ରେ ଲେଖକ କହନ୍ତି - 'ପ୍ରତି ଗଳ୍ପ ବିଦେଶର ପୃଷ୍ଠଭୂମିରେ ଲେଖା ହୋଇଛି । ନିକଟରେ ମୁଁ ପ୍ରାୟ ତିନି ବର୍ଷ ଯୁକ୍ତରାଷ୍ଟ୍ରର ରାଜଧାନୀ ୱାସିଙ୍ଗଟନରେ ଥିଲି ଏବଂ ସେହିଠାରୁ ଦକ୍ଷିଣ ଆମେରିକାର ବିଭିନ୍ନ ଅଂଚଳକୁ ଯିବାର ସୁଯୋଗ ପାଇଥିଲି । ତାହା ପୂର୍ବରୁ ଅଳ୍ପଦିନ ପାଇଁ ଦକ୍ଷିଣ-ପୂର୍ବ ଏସିଆକୁ ଯାଇଥିଲି । ଏହିସବୁ ବିଦେଶ ଭୂମିର ବିଚିତ୍ର ନୂତନ ପରିବେଶରେ ମୋର ଦେଶବାସୀମାନେ କେତେ ଭାବରେ ଧାବିତ, ଉନ୍ମତ୍ତ, ଉତ୍‌କ୍ଷିପ୍ତ ତଥା ବ୍ୟଥିତ ହୁଅନ୍ତି, କେତେ ସଂଘାତର ମୁକାବିଲା କରିବାକୁ ଯାଇ ଛଟପଟ ହୁଅନ୍ତି, ତା'ର ସାମାନ୍ୟ ଅନୁଭୂତି ମୋର ମନକୁ ଛୁଇଁଛି । ପୁଣି ଘରକୁ ଫେରି ଆସି ନିଜ ଦେଶକୁ ନୂଆ ଆଖିରେ ଦେଖିବାର ବିସ୍ମୟ ଓ ବେଦନା - ତା'ର ମୂଲ୍ୟ ନିଆରା । ଏହି ହେଉଛି ଗଳ୍ପ ଗୁଡ଼ିକର ସାଧାରଣ ଗୁଣ ।' ଆମେରିକାରେ ଥିଲାବେଳେ ତାଙ୍କ ଭିତରେ ସ୍ୱଦେଶସ୍ମୃତି ଯେପରି ଶାଣିତ ହୋଇ ଉଠିଛି ତାହା ଏହି ଗଳ୍ପମାନଙ୍କରେ ବର୍ଣ୍ଣିତ । 'ଘରବାହୁଡ଼ା' ଗଳ୍ପରେ ତାଙ୍କର ବକ୍ତବ୍ୟ - 'ମୋ ଭାରତ କ'ଣ ସୁନ୍ଦର ନୁହେଁ ? ଏହି ସ୍ନିଗ୍ଧା ଶ୍ୟାମା ବର୍ଷାସଜଳ ଭାରତ ଭୂଇଁର କବିମାନଙ୍କ ମଧ୍ୟରେ ମୁଁ ମଧ୍ୟ ଜଣେ, ମୋତେ ଭୁଲ୍ ବୁଝ ନାହିଁ । ମୋର ତା'ପ୍ରତି ପ୍ରଗାଢ଼ ମମତା ଅଛି, ତାହା ମୋର ଜନ୍ମଗତ ଅଧିକାର ।' ସେ ପୁଣି ଏକ ସାକ୍ଷାତକାରରେ କହନ୍ତି - 'ଯଦି ଜଣେ ଲେଖକ ତା'ର ମାନସ ଗୁହାର ପାଖ ନ ମାଡ଼ି ବାହାରୁ ଆସୁଥିବା ବିଭିନ୍ନ ଚେତନାର ଆଲୁଅରେ ସାହିତ୍ୟ ରଚନା କରେ, ତା' ହେଲେ ସେ ଗୋଟାଏ ଯନ୍ତ୍ର ବା ଫଟୋ କ୍ୟାମେରାରେ ପରିଣତ ହୋଇଯିବ । ଅପରପକ୍ଷରେ ସେ ଯଦି କେବଳ ତା'ର ଗୁହାର ଜନ୍ତୁମାନଙ୍କୁ ଖୋଜି ଖୋଜି ଚିହ୍ନିବାକୁ ଚେଷ୍ଟା କରିବ ତା'ହେଲେ ସେ କେବଳ ଆଦିମ ବା ବାଲୁତ ହୋଇଯିବ । ତେଣୁ ମୋ ମତରେ ଜଣେ ଗଳ୍ପ ଲେଖକ ଅନ୍ଧାରୀ ଗୁହା ଓ ଆଲୋକିତ ଚେତନା କୌଣସିଟିକୁ ଛାଡ଼ିଗଲେ ଚଳିବ ନାହିଁ । ତେଣୁ ତାକୁ ଏକାଧାରରେ Macroscopic ଓ Microscopic ହେବାକୁ ପଡ଼ିବ ।'

(ଗଳ୍ପ - ୮ମ ଭା/ ଅକ୍ଟୋବର ୧୯୭୨) ଶୀତଳହରୀ, ଠାକୁରଘର, ଭଙ୍ଗାଖେଳଣା, ଲକ୍ଷବିହଙ୍ଗ, ଭିନ୍ନପାଉଁଶ, ଗମନ, ନିଜ ନିଜ ସଂଜ, ସରମାର ରୋମାନ୍‌ସ ଇତ୍ୟାଦି ବିବିଧ ଗଳ୍ପକୁ ଆଲୋଚନା କଲେ ଉପରୋକ୍ତ ସତ୍ୟର ପରିଚୟ ମିଳିଥାଏ । 'ଠାକୁରଘର' ଗଳ୍ପରେ ସୁନନ୍ଦା ଦେବୀଙ୍କର ଜୀବନ/ମରଣର ସଂଘର୍ଷ କାଳରେ ସବୁ ପୁଅଝିଅମାନେ ଆସି ତାଙ୍କର ଯତ୍ନ ନେଇଛନ୍ତି । କେବଳ ସାନ ଝିଅ ବିନି ବାରମ୍ବାର ଠାକୁର ଘରକୁ ଯାଇ ମାଆର ଆରୋଗ୍ୟ ପାଇଁ ଅଶ୍ରୁଳ ପ୍ରାର୍ଥନା କରୁଛି । ଅନ୍ୟମାନେ ମାଆର ବ୍ୟାଧି ଓ ଦେବତାର ଆଶୀର୍ବାଦ ବିଷୟରେ ନିଶ୍ଚେତନ ଓ ଅନାସକ୍ତ । ବିନିର ସାରଲ୍ୟ ଓ ଶୁଚିପୂତ ବିଶ୍ୱାସ ଯୋଗୁ ହିଁ ମାଆ ମୃତ୍ୟୁ ମୁଖରୁ ବଂଚି ଯାଇଛି । ଆଜିର ବିଶ୍ୱରେ ଦରକାର ନୁହେଁ କ୍ଷମତା, ଅର୍ଥ ଓ ପ୍ରତିପତ୍ତି; ଦରକାର ବିଶ୍ୱାସ ଓ ଅନାବିଳ ଭଲ ପାଇବା । ଏହାହିଁ 'ଠାକୁରଘର' ଗଳ୍ପର ପ୍ରତିପାଦିତ ବିଷୟ । 'ସରମାର ରୋମାନ୍‌ସ' ଗଳ୍ପ ନାରୀ ସହିତ ନାରୀର ସମଲିଙ୍ଗୀ ସଂପର୍କର ଏକ ରମ୍ୟ ଆଲେଖ୍ୟ । 'ହସକଥା' ନିରଂଜନ ବାବୁଙ୍କର ପରନାରୀ ପଛରେ ଗୋଡ଼ାଇବାର ଏକ ଅଦ୍‌ଭୂତ ମାନସିକତାର ଗଳ୍ପ । 'ଶୀତ ଲହରୀ' ଗଳ୍ପ ଅବସରପ୍ରାପ୍ତ ନିଃସଙ୍ଗ ବୃଦ୍ଧର ମାନସିକ ଅସହାୟତାର ଚିତ୍ର ପ୍ରଦାନ କରେ । ବୃଦ୍ଧ କାର୍ତ୍ତିକବାବୁ ଚାକିରିରୁ ଅବସର ନେଇ କ୍ରମେ ହୋଇ ପଡ଼ିଛନ୍ତି ନିଃସଙ୍ଗ । ମୃତ୍ୟୁକୁ ସେ ଅପେକ୍ଷା କରି ରହିଛନ୍ତି । ଏହି ଅପେକ୍ଷାର କାରୁଣ୍ୟ ହିଁ ଏହି ଗଳ୍ପର ମର୍ମଲିପି ।

'ସମଦୁଃଖିନୀ' ଗଳ୍ପରେ ଶ୍ରୀଲେଖାଙ୍କ ମାନସିକ ଭାବାବେଗ ବେଶ୍ ମର୍ମସ୍ପର୍ଶୀ । ସେ ଅଧ୍ୟାପିକା । ଅବିବାହିତା ମଧ୍ୟ । ଛାତ୍ର ମଣ୍ଟୁ ଓରଫ ମନୋଜ ରାଏକୁ ସେ ଶ୍ରଦ୍ଧା କରନ୍ତି । ସେ ମଣ୍ଟୁ ପାଇଁ କେବଳ ଜଣେ ଶିକ୍ଷୟିତ୍ରୀ ନଥିଲେ; ଥିଲେ ତା'ଠାରୁ ଆହୁରି ଅଧିକା । ମଣ୍ଟୁର ଆକସ୍ମିକ ମୃତ୍ୟୁ ସଂବାଦ ପାଇ ଅନେକ ହିତାକାଂକ୍ଷୀ ତା' ମାଆ ପାଖକୁ ଆସି ସମବେଦନା ଜଣାଇଲେ । ଶ୍ରୀଲେଖା ପ୍ରତିବେଶୀ ହୋଇଥିଲେ ମଧ୍ୟ ଟିକିଏ ବିଳମ୍ବରେ ସମବେଦନା ଜଣାଇବାକୁ ଯାଇଥିଲେ । ସେ ଅନୁଭବ କଲେ ଯେ ଏହି ସମବେଦନା ଜଣାଇବା ଗୋଟାଏ ବାହ୍ୟ ଲୋକାଚାରରେ ପରିଣତ ହୋଇଗଲାଣି । ମିସେସ୍ ରାଏ ଓ ଡକ୍ଟର ଶ୍ରୀଲେଖା କଥାବାର୍ତ୍ତା ହେଉଥିଲାବେଳେ ମିସେସ୍ ଦୀପିକା ମିତ୍ର ଆସିଛନ୍ତି ସମବେଦନା ଜଣାଇବା ପାଇଁ । ସେ ହେଉଛନ୍ତି ଟି.କେ. ମିତ୍ରଙ୍କ ପତ୍ନୀ । ଏହି ଟି.କେ. ମିତ୍ର ହିଁ ତୁଷାରକାନ୍ତି ମିତ୍ର । ଶ୍ରୀଲେଖାର ମନେପଡ଼ିଛି ତା'ର କଲେଜ ଜୀବନ କଥା । ତୁଷାରଙ୍କ ସହିତ ତା'ର ସଂପର୍କ ମଧ୍ୟ ମନେ ପଡ଼ିଛି । ସେହି ତୁଷାର ପୋଲିସ ଅଫିସର ହୋଇଥିଲା ଓ ଏକ ସାଂପ୍ରଦାୟିକ ଦଙ୍ଗାରେ ମୃତ୍ୟୁବରଣ କରିଥିଲା । ଶ୍ରୀଲେଖାର ମନ ଭିତରେ ଦେଖା ଦେଲା ଝଡ-ମଣ୍ଟୁ ଓ ତୁଷାରକୁ ନେଇ । ଘରକୁ ଫେରି ପୁଷି ବିଲେଇକୁ କୋଳରେ ପୂରାଇ ଆଉଁଷିବାକୁ ଲାଗିଲା । ମଣ୍ଟୁ ଓ ତୁଷାର ଉଦ୍ଦେଶ୍ୟରେ ସେ ମନେ ମନେ କହିବାକୁ ଲାଗିଲା - 'ମାଇଚିଆ ! ବୃଦ୍ଧ

ମାଇଚିଆ ତମେ ଦି'ଜଣ ଯାକ । କାହିଁକି ଏମିତି ନେଥେଇ ଫୁଲେଇ ହେଉଥିଲ ମୋ ଆଗରେ, ଯଦି ସେଇ ମାଆ ମାଇପଙ୍କ କୋଳରେ ପଶି ମରିବାକୁ ଥିଲା ? କୋଉ ଯଶ ତମକୁ ମିଳିଗଲା ସେଥିରେ ? ନାଇଁ ... ନାଇଁ, ତମ ଦୋଷ ନୁହେଁ, ତମ ଭାଗ୍ୟ ସେଇଆ ।'' (ସମଦୁଃଖିନୀ) 'ଆବର୍ତ୍ତ' ଗଳ୍ପ ନାରୀ - ମାନସିକତାର ଅନ୍ୟ ଏକ ମର୍ମସ୍ପର୍ଶୀ ଚିତ୍ର । ପ୍ରେମ, ସ୍ମୃତି ଓ କାରୁଣ୍ୟ ଏହି ଗଳ୍ପକୁ ପ୍ରାଣବନ୍ତ କରିଅଛି ।

କିଶୋରୀ ଚରଣଙ୍କ ଗଳ୍ପ ଆଧୁନିକ ଅଭିଜାତ ମଣିଷର ହିପୋକ୍ରାସି ଓ ଛଳନା, ବ୍ୟଥା ଓ ବେଦନା, ଆଶା ଓ ଅସହାୟତାର ମାର୍ମିକ ଆଲେଖ୍ୟ । 'ଭଙ୍ଗାଖେଳଣା' ପରି ଗଳ୍ପଟି ଲେଖକଙ୍କ ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଓ ସତ୍ ଆନ୍ତରିକ ମନର କଳାତ୍ମକ ରୂପ । ନିଜେ ଲେଖକ ହିଁ ଯେପରି ଏହି ଗଳ୍ପରେ ହୋଇଯାଇଛନ୍ତି ଶିଶୁ ଗୀତା ଭୂମିକାରେ ଅବତୀର୍ଣ୍ଣ । ପୁଣି ତାଙ୍କର ଅସହାୟ ସତ୍ତାଟି ଗୀତାର ବାପା ଚରିତ୍ର ଭିତରେ ହୋଇଛି ବ୍ୟଂଜିତ । ଏହି ଚରିତ୍ରଟି ଅଭିଜାତ; ଅଥଚ ମେରୁଦଣ୍ଡହୀନ । ପତ୍ନୀର ଅନ୍ୟ ପୁରୁଷ ସହିତ ସଂପର୍କକୁ ସହିପାରୁନି, ଅଥଚ କିଛି କରିପାରୁ ନାହିଁ । ଶିଶୁକନ୍ୟା ଗୀତାର ମନ ଭିତରେ କେବଳ ଅସରନ୍ତି ପ୍ରଶ୍ନ - ମାଆ କାହିଁକି ତାକୁ ଭଲ ପାଉନି, ବାପାଙ୍କୁ ଭଲ ପାଉନି, ଅଥଚ ଭଲପାଉଛି ବନୁ ଦାଦାଙ୍କୁ । ବାପା କାହିଁକି ରାଗୁଛନ୍ତି, ଅଥଚ ବୋଉକୁ କିଛି କହିପାରୁ ନାହାନ୍ତି । କେତେ ନିବିଡ଼ ଅନୁଭୂତିକୁ ନେଇ ଏ ଗଳ୍ପ ଋଦ୍ଧିମନ୍ତ ନୁହେଁ ସତେ ! ନିଜେ ଲେଖକ କହନ୍ତି - 'ସେଇ ସୁଦୂର ଅତୀତରେ ମୁଁ ମୋ ଗପରେ (ଭଙ୍ଗାଖେଳଣା) କୌଣସି ଅର୍ଥରେ ଗୁରୁତ୍ୱ ଆଣିବାକୁ ଚେଷ୍ଟା କରୁ ନଥିଲି । ଯାହା ଘଟିଲା କି ନ ଘଟିଲା ତାକୁ ନେଇ କିଛି ଭାବିବା ଉଚିତ ପାଠକର, ଏଭଳି କୌଣସି ଉଦ୍ଦେଶ୍ୟ ନଥିଲା ମୋ ମନରେ । ଛବି ଆଙ୍କିଲା ପରି ଲେଖୁଥିଲି । କିନ୍ତୁ କ୍ରମଶଃ ଏବଂ ହୁଏତ ଦୁଃଖର ବିଷୟ - ଯାହା ମୋର କେତେକ ବଂଧୁ କୁହନ୍ତି - ଶିଶିର କଣାଟି ଆଉ ଦୃଶ୍ୟ ହେଲା ନାହିଁ ମୋତେ । କାହିଁକି ନା ମୁଁ ବଡ଼ ହୋଇଗଲି । କିଶୋରୀସୁଲଭ ଲୁହକଥା ଛାଡ଼, କେବଳ କାରୁଣ୍ୟକୁ ନେଇ ଗପଟିଏ ଗଢ଼ିବାକୁ ଚାହିଁଲି ନାହିଁ, ଯଦି ସେଥିରେ କିଛି ଗୋଟାଏ ଲେଖକୀୟ ବକ୍ତବ୍ୟ ନଥାଏ, ଯାହା ନୂଆ ପରି ଲାଗିବ ପାଠକକୁ, ଉପସ୍ଥିତ କ୍ଷେତ୍ରରେ ମଣିଷ ଦଶାକୁ ଚିହ୍ନାଇବା ପାଇଁ । କାରୁଣ୍ୟର ଉପାଦାନ ଯେତେ ବାସ୍ତବ ଓ ଗଭୀର ହେଉ ପଛକେ । ଭଙ୍ଗା ଖେଳଣା ପରି ଆଉ ଗୋଟିଏ ଗପ ମୁଁ ଲେଖିପାରି ନାହିଁ ମୋ ଜୀବନରେ । ମୁଁ ସେକଥା ସ୍ୱୀକାର କରିଛି ମୋର ଉପରୋକ୍ତ ଆଳାପରେ । ତଥାପି ମୋର ମନ ମାନିଲା ନାହିଁ । ଆଜି ମଧ୍ୟ ମାନୁ ନାହିଁ ଏବଂ ସେହେତୁ ମୁଁ ଆପଣଙ୍କ ସାହାଯ୍ୟ ଲୋଡୁଛି ଓ ନିଜକୁ ତଥା ଆପଣଙ୍କୁ ପଚାରୁଛି - 'ଭଙ୍ଗାଖେଳଣା' ଗଳ୍ପରେ କ'ଣ କିଛି ଭାବିଲା ପରି ନାହିଁ, ଯାହା ମୋ ମଧ୍ୟ ଜୀବନ ଓ ଉତ୍ତର ଜୀବନର ଗପରେ ପ୍ରାୟ ଦେଖିବାକୁ ମିଳେ । କେବଳ କାରୁଣ୍ୟ ନୁହେଁ, ଗୀତାର ଅସହାୟତା କ'ଣ ମଣିଷଦଶାର ଏକ ନିର୍ମମ ପରିଚାୟକ ନୁହେଁ । କହିବାକୁ ଗଲେ

ଝିଅ ଗୀତା ପଚାରୁଛି ଆପଣଙ୍କୁ - ଯେତେ ସାନ ହେଲେ ମଧ୍ୟ ମୋ ଲୁହ କ'ଣ ଏତେ ହାଲୁକା ? ଆପଣଙ୍କ ସଂସାରର ବାପା ମାଆମାନେ କ'ଣ ନାରୀପୁରୁଷ ଗଣ୍ଡଗୋଳିଆ ସଂପର୍କର ଊର୍ଦ୍ଧ୍ୱକୁ ଉଠିପାରିବେ ନାହିଁ, ତାଙ୍କ ଗେହ୍ଲା ଝିଅମାନଙ୍କ ଓଠରେ ହସଟିକେ ଆଣିଦେବା ପାଇଁ ? ନା ସେଇ ନିଉଛୁଣା ସଂପର୍କ ଏତେ ମୌଳିକ ଓ ବାସ୍ତବ ଯେ ସେଥିରୁ ଉଦ୍ଧାର ନାହିଁ ? ଭାବି ଦେଖନ୍ତୁ ଏଇ ଜୀବନ ଚିନ୍ତା କେତେଦୂର ଯଥାର୍ଥ । ମୋର ଆଉ କିଛି କହିବାର ନାହିଁ ଭଙ୍ଗାଖେଳଣା ବା ତା'ର ଶିଶୁ ନାୟିକା ବିଷୟରେ । (ତିରିଶ ବର୍ଷର ଗଳ୍ପ ଓ ଆଳାପ, ୧ମ ଭାଗ, ୧୯୮୮) ।

'ଭଙ୍ଗାଖେଳଣା' ସମାଜ ମନସ୍ତାତ୍ତ୍ୱିକ ଗଳ୍ପ । ଗଳ୍ପନାୟିକା ଗୀତା ମାତ୍ର ଦଶବର୍ଷର । ଘରେ ତା'ର ବାପା -ଜନୈକ ପଦସ୍ଥ ଅଫିସର, ସାନଭାଇ ରାଜୁ ଓ ବିଜୁ, ଚାକର କୁଳିଆ, ରୋଷେୟା । ପଡ଼ୋଶୀ ବନୁଦାଦାଙ୍କ ପ୍ରତି ବୋଉର ଗଭୀର ମମତା । କେହି ନଥିଲା ବେଳେ ବନୁଦାଦା ସହିତ ବୋଉର ମିଳନ । ବନୁଦାଦା ଘରକୁ ଆସିଲେ ବୋଉର ଆନନ୍ଦ । ବନୁଦାଦାର ଉପହାର ବୋଉର ପସନ୍ଦ । ଗୀତା ଝିଅ । ମାତ୍ର ଦର୍ଶବର୍ଷ ତା'ର ବୟସ । ତା'ର ଅବଚେତନରେ ପ୍ରଶ୍ନ - ବୋଉ ଓ ବନୁଦାଦାଙ୍କୁ ନେଇ - ବୋଉ କାହିଁକି ବନୁଦାଦାଙ୍କୁ ଦେଖିଲେ ଖୁସି ହେଉଛି ? ବାପାଙ୍କ ପ୍ରତି ସେ କାହିଁକି ଅନୁଦାର ? ବୋଉର ଜନ୍ମ ଦିନରେ ବନୁଦାଦାଙ୍କ ଉପହାର କାହିଁକି ବୋଉର ପ୍ରିୟ ? ଏପରି ପ୍ରଶ୍ନ ଜଣେ ଅପ୍ରାପ୍ତବୟସ୍କା ବାଳିକାର ଅବଚେତନରେ ଆଲୋଡ଼ନ ସୃଷ୍ଟି କରିଛି । ବାପାଙ୍କର ଗଭୀର ବେଦନାବୋଧକୁ ସେ ଉପଲବ୍ଧି କରିଛି । ବନୁଦାଦାଙ୍କ ପ୍ରେଜେଣ୍ଟେସନ୍ ତାଜମହଲ ଭାଙ୍ଗିଯାଇଛି ଗୀତା ହାତରୁ ପଡ଼ି । ଗୋଟାଏ ଅସହାୟତା ଘେରିଯାଇଛି ଗୀତାକୁ ବୋଉଠାରୁ ଗାଳି ଓ ମାଡ଼ ଖାଇବାର ଆଶଙ୍କାରେ । ବାପାଙ୍କ ନୀରବତା ଓ ବୋଉର ବନୁଦାଦାଙ୍କ ସଂପର୍କ ଜାଣି ମଧ୍ୟ ତାଙ୍କର ଉଦାସୀନତା ଗୀତାକୁ କ୍ଷୁବ୍‌ଧ କରିଛି । ଏପରି ଏକ ଗଳ୍ପ ରଚନା ମଧ୍ୟ ଦେଇ ଗାଳ୍ପିକ ଜୀବନର ଆମୂଳ ସତ୍ୟ ଉଦ୍‌ଘାଟନରେ ବ୍ରତୀ ହୋଇଛନ୍ତି । ଫ୍ରଏଡ଼ୀୟ ମନସ୍ତତ୍ତ୍ୱ ବେଶ୍ ଚମତ୍କାର ଭାବରେ ବିଶ୍ଳେଷିତ । ଓଡ଼ିଆ ଗଳ୍ପ ସାହିତ୍ୟର ଧରା ଓ ଧାରାରେ ଏହା ନିଶ୍ଚିତ ଏକ ସ୍ମରଣୀୟ ସୃଷ୍ଟି । ଏଥିରେ ଶିଶିର କଣାର ସପ୍ତରଙ୍ଗ ଇନ୍ଦ୍ରଧନୁ ଯେ ବ୍ୟଂଜିତ ହୋଇନାହିଁ, ଚରିତ୍ରମାନଙ୍କର ଅନ୍ତର୍ନିହିତ ସ୍ୱରୂପ ଯେ ଉଦ୍‌ଘାଟିତ ହୋଇନାହିଁ, ନୁହେଁ । ଯୌନତାର ଅନ୍ତରାଳରେ ଏକ ଗଭୀର ବେଦନାବୋଧ ଏହି ଗଳ୍ପର ମର୍ମଧ୍ୱନି ।

'ଘରବାହୁଡ଼ା' ଗଳ୍ପ ପୁସ୍ତକରେ ଲେଖକ ସତେ ଯେମିତି ନିଜର ଆତ୍ମକଥାକୁ ବ୍ୟକ୍ତ କରିଅଛନ୍ତି । ଘରୁ ବିଦେଶ ଭୂଇଁକୁ ଯାଇଥିବା ମଣିଷଟି ବିଦେଶର ନାନା ବାତାବରଣ ଭିତରେ ଥାଇ ମଧ୍ୟ ବାରମ୍ବାର ନିଭୃତ ମୁହୂର୍ତ୍ତରେ ଆପଣାର ଜନ୍ମମାଟିକୁ ସ୍ମରଣ କରେ । ସେତିକିବେଳେ ସେ ମିଳେଇ ଦେଖେ ବିଦେଶ ଭୂଇଁକୁ ଆପଣାର ଭୂଇଁ ସହିତ, ସେଠାକାର ଚରିତ୍ରକୁ ଏଠାକାର ଚରିତ୍ର ସହିତ । ମାନବ ଭୂମାର ଆମୂଳ ସତ୍ୟଟି ସର୍ବତ୍ର ସମାନ ହେଲେ ହେଁ ତଥାପି ତା'

ଭିତରେ କିଛି ନା କିଛି ଆଚାରଗତ ବୈଷମ୍ୟ ଉପଲବ୍ଧ ହୁଏ । ସେହି ଉପଲବ୍ଧି 'ଘରବାହୁଡ଼ା'ର ଗଳ୍ପଗୁଡ଼ିକୁ ଦେଇଛି ଏକ ସ୍ୱତନ୍ତ୍ର ମହିମା । ନିଜେ ଲେଖକ କହନ୍ତି - ଇଏ ଗପ ନୁହେଁ । ତଥାପି ମୁଁ ତାକୁ ଗପର ସମ୍ମାନ ଦେବାକୁ ଯାଇଛି । କାହିଁକି ନା ମୋର ଧାରଣା ଯେ ମୋର ଅନୁଭୂତି, ଉକ୍‌ଣ୍ଠା, ଆଶ୍ଚର୍ଯ୍ୟ, ଆଘାତ, ଅସ୍ଥିରତା, ବିଷାଦ, ଆମୋଦ ଆଦିର ପୁଞ୍ଜୀଭୂତ ସମାହାର ବୋଧହୁଏ ପ୍ରତ୍ୟେକ ସଂବେଦନଶୀଳ ମଣିଷ ସାଙ୍ଗରେ କଥାଭାଷା ହୋଇପାରିବ, ଯେ ତା' ଜୀବନରେ ଥରେ ହେଲେ ମାଆ ପାଖରୁ, ଆପଣା ଗାଁ ଭୂଇଁରୁ ଦୂରକୁ ଯାଇ ଫେରିଆସିଛି । (ତିରିଶ ବର୍ଷର ଗଳ୍ପ ଓ ଆଳାପ, ୧ମ ଭାଗ) ଆମେରିକାର ଐଶ୍ୱର୍ଯ୍ୟ, ଲଣ୍ଡନର ମାଧୁର୍ଯ୍ୟ ତାଙ୍କୁ ଆକର୍ଷଣ କରିଥିଲେ ହେଁ ସେ କେଉଁଠି ବାନ୍ଧି ହୋଇଯିବାକୁ ପସନ୍ଦ କରିନାହାନ୍ତି । ଏହି କାରଣରୁ ଅରୁଣସେନ ଆପଣାର ବିଧବା ମାଆକୁ ଗାଁ ଭୂଇଁରେ ଏକାକୀ ଛାଡ଼ି ଲଣ୍ଡନରେ ସ୍ଥାୟୀ ଭାବରେ ରହିଯିବାକୁ ଲେଖକ ପସନ୍ଦ କରିନାହାନ୍ତି । ବରଂ କହିଛନ୍ତି - 'ଆମ ଡିବିରି ଆଲୁଅ ନିଉନ, କିନ୍ତୁ ନିଉଛୁଣା ନୁହେଁ ।' ଗୋଟାଏ ସ୍ୱାଭିମାନ ଦୀପ୍ତ ଜନ୍ମଭୂମି ପ୍ରତି ମମତା ହିଁ 'ଘରବାହୁଡ଼ା' ଗଳ୍ପମାନଙ୍କର ଦୀପ୍ତି ।

'ଲକ୍ଷବିହଙ୍ଗ' ଗଳ୍ପ ମନସ୍ତାତ୍ତ୍ୱିକ ଚିନ୍ତା ଆଧାରରେ ରଚିତ ଏକ ଭିନ୍ନ ଗଳ୍ପ । ଆଧୁନିକ ଅଭିଜାତ ନାରୀର ମନଗହନର ସୂକ୍ଷ୍ମ ବିଶ୍ଳେଷଣ ଏହାର ବୈଶିଷ୍ଟ୍ୟ । ଗଳ୍ପ ନାୟିକା ମିସେସ୍ ପୁରୀ ସଂଭ୍ରାନ୍ତ ମହିଳା । ସ୍ୱାମୀ ପଦସ୍ଥ କର୍ମଚାରୀ, ମାତ୍ର ସେ ସ୍ମାର୍ଟ୍ ନୁହନ୍ତି । ଘରେ ମିସେସ୍ ପୁରୀଙ୍କ ଅଳସ ମୁହୂର୍ତ୍ତ କଟିଯାଏ ବିଛଣାରେ ଶୋଇ ଓ ଜୋକ୍ ବହି ପଢ଼ି । ତାଙ୍କ ଶାଢ଼ିରେ ଲକ୍ଷ ବିହଙ୍ଗର ଶୋଭା । ମନ ଭିତରେ ବାରମ୍ବାର ଉଙ୍କିମାରେ ବଳିଷ୍ଠ ପୁରୁଷର ସାନ୍ନିଧ ପାଇଁ ଆକାଂକ୍ଷା । ଆଗରେ ଆବିର୍ଭୂତ ହୁଏ ଯୁବକ ଚାକର ଜୟରାମ । ତା'ର ବଳିଷ୍ଠ ଚେହେରା ପ୍ରତି ମିସେସ୍ ପୁରୀ ଆକୃଷ୍ଟ ହୁଅନ୍ତି ମାତ୍ର ଯୌନ ସଂଭୋଗ କରନ୍ତି ନାହିଁ । ଜୟରାମ ଯେମିତି ଫ୍ରିଜ୍ ଉପରେ ବସିଥିବା ମାଛିଟିଏ । ସେ ଭିତରର ଖାଦ୍ୟ ଉପଭୋଗ କରିପାରେ ନାହିଁ । ମିସେସ୍ ପୁରୀଙ୍କ ଚେତନା ପ୍ରବାହର ବିଶ୍ଳେଷଣ ମଧ ଦେଇ ଏତାଦୃଶ ଆଧୁନିକ ବସ୍ତୁବାଦୀ ସମାଜର ନାରୀମାନଙ୍କ ଚରିତ୍ରକୁ ଲେଖକ ବ୍ୟଂଜିତ କରିଦେଇଛନ୍ତି । ଏହି ଗଳ୍ପର ମୃଦୁ ବିଦ୍ରୂପ ବାସ୍ତବିକ ରମ୍ୟ ଓ ମଧୁର ।

'ମଣିହରା' ଗଳ୍ପ ଆଧୁନିକ ବୁଦ୍ଧିଜୀବୀ ମଣିଷର ଜଟିଳ ମାନସିକତାର ଏକ ଚମତ୍କାର କଳା-ରୂପ । ନିଜର ଆଠ ମାସର ପୁଅର ମୃତ୍ୟୁରେ ଗାଳ୍ପିକ ଯେଉଁ ଦୁଃଖ ଓ ଯନ୍ତ୍ରଣା ଅନୁଭବ କରିଛନ୍ତି ତାହାର ହିଁ ଏହି ଗଳ୍ପ ଏକ ସାର୍ଥକ ରୂପଚିତ୍ର । ଗଳ୍ପ ନାୟକ ଉମେଶବାବୁ ଉଚ୍ଚଶିକ୍ଷିତ, ଆଧୁନିକ ସଭ୍ୟତା ପୁଷ୍ଟ ନାଗରିକ । ତାଙ୍କ ଦାମ୍ପତ୍ୟ ଜୀବନର ଆଦ୍ୟ ସ୍ମାରକୀ ସେହି ପୁତ୍ରକୁ ନେଇ ଦେଖାଦେଇଛି କେତେ ସ୍ୱପ୍ନ । ଅଥଚ ପୁଅର ହେଲା ଅକାଳ ମୃତ୍ୟୁ । ପତ୍ନୀ ନିର୍ମଳା ଦେବୀଙ୍କର ଦେଖାଦେଇଛି ଗଭୀର ମାନସିକ ଅବସାଦ । ପୁଅକୁ ହରାଇ ସତେ ଯେମିତି

ସେ ହୋଇଯାଇଛନ୍ତି ମଣିହରା ସର୍ପ ପରି ବିକଳ ବିଧୁରା । ସଂସାରର ମାୟାକୁ କାଟିବାକୁ ଚିନ୍ତା କରି ମଧ୍ୟ କାଟିପାରି ନାହାନ୍ତି ମାୟାକୁ । ସ୍ୱାମୀ ସହିତ ପୁଣି ମିଳିତ ହୋଇଛନ୍ତି । ତଥାପି ସନ୍ତାନହରା ମାତୃତ୍ୱ ତାଙ୍କ ଭିତରେ ବିଳପି ଉଠିଛି ବାରମ୍ବାର । 'ଠାକୁରଘର' ବେଳକୁ କିଶୋରୀ ଚରଣଙ୍କ ବ୍ୟକ୍ତି ମଣିଷଟି କ୍ରମଶଃ ରୂପାନ୍ତରିତ ହୋଇଯାଇଛି ସମାଜ-ମଣିଷରେ । ଏହି ଗଳ୍ପରେ ଲେଖକ ଆଧୁନିକ ମଣିଷର ଯନ୍ତ୍ରଣାଦଗ୍ଧ କରୁଣ ଜୀବନ ପ୍ରତି ଯେପରି ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି ସେହିପରି ପରଂପରା ପ୍ରତି ମଧ୍ୟ ଜଣାଇଛନ୍ତି ଅନ୍ତରର ଶ୍ରଦ୍ଧା । ଏହା ଭିତରେ ମଧ୍ୟ ରହିଛି ମଣିଷର ଯୌନ ଚେତନାର ଅଖଣ୍ଡ ସ୍ରୋତ । ଆଧୁନିକ ବସ୍ତୁବାଦର ଆଘାତରେ ପାରଂପରିକ ଯୌଥ ପରିବାରର ବନ୍ଧନ ହୁଗୁଳି ଯାଇଛି । ଭାଇ ଭାଇ ବାପ-ପୁଅ ସଂପର୍କ ଯେମିତି ଛିଣ୍ଡିଛିଣ୍ଡି ଯାଉଛି । ସ୍ନେହମମତା ଓ ପ୍ରେମ ଯେମିତି ଅସାର ମନେ ହୋଇଛି । ସୁନନ୍ଦା ଦେବୀ ସ୍ୱାମୀହରା । ପୁଅଝିଅଙ୍କ ଗହଣରେ ଜୀବନ ବିତାଇଛନ୍ତି । ବଡ଼ପୁଅ ବାହାରେ ଚାକିରି କରେ । ସାନପୁଅ ଅବିବାହିତ ଓ କଣ୍ଟ୍ରାକ୍ଟର । ବଡ଼ଝିଅ ବୀଣା । ଅସୁନ୍ଦରୀ ମାତ୍ର କର୍ମଦକ୍ଷା । ମଧ୍ୟମା କନ୍ୟା ବୀଥି ସୁନ୍ଦରୀ ଓ ବହୁ ସନ୍ତାନର ଜନନୀ । ସାନଝିଅ ବିବାହିତା । ସେ ମଧ୍ୟ ସୁନ୍ଦରୀ ଓ ଧର୍ମବିଶ୍ୱାସୀ । ସୁନନ୍ଦା ଦେବୀଙ୍କ ପରିବାର ମଧ୍ୟବିତ୍ତ ଓ ଶିକ୍ଷିତ । ସବୁ ମଧ୍ୟବିତ୍ତ ଓ ଉଚ୍ଚବିତ୍ତ ପରିବାର ବାହାରକୁ ସୁନ୍ଦର । ସୌଖୀନ ବିଳାସ ସେଠି ଆଦର୍ଶ । ଅଥଚ ଭିତରେ ଥାଏ ଅଶାନ୍ତି ଓ ଅସହାୟତା, ପାରସ୍ପରିକ ଅଶ୍ରଦ୍ଧା ଓ ବ୍ୟକ୍ତିଗତ ସ୍ୱାର୍ଥ । ଶିଥିଳ ସେଠି ସ୍ନେହ, ପ୍ରେମ ଓ ମମତା । ପ୍ରମୁଖ ସେଠି ଶଠତା, ପ୍ରତାରଣା, ଅନୀତି, ଚରିତ୍ରହୀନତା, ଉପଭୋଗ ସର୍ବସ୍ୱତା, ସ୍ୱାର୍ଥପରତା ।

'ଠାକୁରଘର' ଗଳ୍ପ ଅବକ୍ଷୟୀ ସମାଜର ମର୍ମଚିତ୍ର । ମାନବିକ ମୂଲ୍ୟବୋଧର ବିପର୍ଯ୍ୟୟ ପ୍ରତି ଏକ ଆବେଗଧର୍ମୀ ଇଙ୍ଗିତ । ଅର୍ଥ ଯେଉଁଠି ପରମାର୍ଥ, ସେଠି ମୂଲ୍ୟବୋଧ ଆସିବ କେଉଁଠୁ ? ସେଠି ରହିଛି କେବଳ ଗୋଟାଏ ବ୍ୟାବସାୟିକ ଲାଭକ୍ଷତିର ହିସାବ । ଶିକ୍ଷିତ ଚାକିରିଜୀବୀ ଓ ବ୍ୟବସାୟୀ ଆତ୍ମକେନ୍ଦ୍ରିକ । ସୁନନ୍ଦାଙ୍କ ଘରେ ସେହିପରି ଏକ ବାତାବରଣ । ସୁନନ୍ଦା ବୃଦ୍ଧା । ରୋଗଜୀର୍ଣ୍ଣ । ପୁଅଝିଅ ତାଙ୍କ ପ୍ରତି ଉଦାସୀନ । ବୋହୂ ସୁଷମା ବିଦେଶିନୀ । ସେ ଜାଣେ ନାହିଁ ଭାରତୀୟ ଯୌଥ ପରିବାରର ମହିମା ଓ ମହତ୍ତ୍ୱ । ତ୍ୟାଗ ଓ ପାରସ୍ପରିକ ସଂପର୍କରେ ଯୌଥ ପରିବାରର ବୃଦ୍ଧିପାଏ ଶ୍ରୀ ଓ ସୌନ୍ଦର୍ଯ୍ୟ । ସେ କିନ୍ତୁ ଏକ ବସ୍ତୁବାଦୀ ସଂସ୍କୃତିରୁ ଆସିଛି ଯେଉଁଠି ପରିବାର ବୋଲି କିଛି ନାହିଁ । ସାନଝିଅ ବିନିର ଅଟଳ ଠାକୁର ବିଶ୍ୱାସ ଓ ମାଆର ଆରୋଗ୍ୟ ପାଇଁ ଠାକୁର ଘରେ ଅଶ୍ରୁଳ ପ୍ରାର୍ଥନା । ମାଆର ଆରୋଗ୍ୟ ଜଡ଼ବାଦୀ ବଡ଼ପୁଅ, ସାନପୁଅ, ବଡ଼ଝିଅ ସମସ୍ତଙ୍କର ମୋହଭଙ୍ଗ କରିଛି । ସମସ୍ତେ ମାଆ ପାଖରେ ଏକତ୍ର ହୋଇଛନ୍ତି । ପରଂପରାର ହୋଇଛି ବିଜୟ । ବିଶ୍ୱାସ ହିଁ ପିନ୍ଧିଛି ବିଜୟ ଟୀକା । 'ନାଲିଗୁଲୁଗୁଲୁ ସାଧବବୋହୂ' ଗଳ୍ପ ସଂକଳନ ସଂପର୍କରେ ଲେଖକ କହନ୍ତି -

'ଯେଉଁ ସକାଳର ଆବେଗରେ ଉଚ୍ଛନ୍ନ ହୋଇ 'ଲକ୍ଷବିହଙ୍ଗ'ର ଭେଟି ଦେଇଥିଲି, ଆଜି ତା'ର ରଙ୍ଗ ଅନେକ ଅନ୍ତରଙ୍ଗ ପ୍ରୀତି ଓ ଭୀତିରେ ଦଗ୍ଧ ହୋଇ ଏତେ ସୁନ୍ଦର ଦେଖାଯାଉଛି ଯେ ମନେ ହେଉଛି ଆଉ ଥରେ ଆଉ କିଛି ହେଲା ଏବେ ଏଇ ନାଲି ଗୁଲୁଗୁଲୁ ସାଧବ ବୋହୂଟିକୁ ନ ଦେଲେ ମନ ପୂରିବ ନାହିଁ। ଅବଶ୍ୟ ମନ ପୂରିବ ନାହିଁ। ଆହୁରି ଅଧିକା କହିବା ପାଇଁ ଦେବା ପାଇଁ, ଏକାଠି ହେବା ପାଇଁ ଆତୁର ହେଉଥିବ ବଂଚିଥିବା ଯାଏ।' (ଉତ୍ସର୍ଗ) ଏ ଗଳ୍ପ ପୁସ୍ତକ ବେଳକୁ ଲେଖକଙ୍କର ବୟସ ଲମ୍ବି ଆସିଲାଣି। 'ଛାଇ ବଢ଼ିଲାଣି ଏମିତି ଲେଖୁ ଲେଖୁ, ହୁଏତ ଲେଖା ସରିଯିବ, ମୋ କଥା ଅକୁହା ରହିଯିବ।'

କିଶୋରୀ ଚରଣଙ୍କ କଥା ଅକୁହା ରହିନାହିଁ। ଯାହା କହିବାର କଥା ରାଶି ରାଶି ଗଳ୍ପ ଭିତରେ ସେ କହିସାରିଛନ୍ତି। କ୍ରାନ୍ତଦର୍ଶୀ ସ୍ରଷ୍ଟା ମଣିଷର ଜୀବନକୁ ଯେତିକି ନିରିଖେଇ ଦେଖିପାରିଛନ୍ତି ସେତିକି ତାଙ୍କର ଗଳ୍ପ ହୋଇଯାଇଛି ଶାଣିତ ଓ ମାର୍ମିକ। ସେତିକି ଗଳ୍ପ ବର୍ଣ୍ଣିତ ଚରିତ୍ରମାନଙ୍କ ପ୍ରତି ତାଙ୍କର ପ୍ରକାଶ ପାଇଛି ନିବିଡ଼ ମମତା ଓ ଆନ୍ତରିକତା। 'ଭଙ୍ଗାଖେଳଣା'ର ଗୀତା 'କାନ୍ଦୁରୀ' ଗଳ୍ପ ବାଟେ ଗତି କରି 'ନାଲି ଗୁଲୁଗୁଲୁ ସାଧବବୋହୂ'ରେ ବିବାହଯୋଗ୍ୟା ଅବସ୍ଥାରେ ହୋଇଛି ଉପନୀତା। ସେ ଫ୍ରକ୍ ଛାଡ଼ି ଶାଢ଼ି ପିନ୍ଧିଛି। କଲେଜକୁ ଯାଇଛି। ତାକୁ ବୋହୂ କରି ନେବାକୁ ଅନେକ ଆସିଛନ୍ତି। ଅଥଚ ତା'ର ମନର ଅକୁହା କଥାକୁ କେହି ବୁଝିନାହାନ୍ତି। ସେ ତେଣୁ ନିଜ ଭିତରେ ବୁଡ଼ି ରହିଛି। ନିଜକୁ ଆବିଷ୍କାର କରିବାକୁ ଚାହିଁଛି। ଅନ୍ୟମାନଙ୍କର ନିଷ୍ଠୁରତା, ହୃଦୟହୀନତା ଓ ସ୍ୱାର୍ଥପରତାରୁ ସେ ମୁକ୍ତି ଚାହିଁଛି। ତା'ର ମନକୁ କେହି ବୁଝିନାହାନ୍ତି। ବେଶ୍ ମର୍ମସ୍ପର୍ଶୀ ଏଇ ଗଳ୍ପ।

'ଗମନ' ଗଳ୍ପ ପୁସ୍ତକ ବେଳକୁ ଗାଳ୍ପିକଙ୍କ ଭାବନାରେ ଆଧ୍ୟାତ୍ମିକ ଅନୁଚିନ୍ତା କ୍ରମଶଃ ଗଭୀର ହୋଇଉଠିଲାଣି। ଏ ସମୟକୁ ସେ ଅନୁଭବ କରିଛନ୍ତି ଯେ ମଣିଷ ଯେତେ ଜ୍ଞାନ ବିଜ୍ଞାନ ଧନସଂପଦ କ୍ଷମତା ଲାଭ କରୁ ନା କାହିଁକି, ଇମିତି ଗୋଟାଏ ମୁହୂର୍ତ୍ତ ଆସି ପହଞ୍ଚେ ଯେତେବେଳେ ତା' ଭିତରେ ଗୋଟାଏ ଅଧ୍ୟାତ୍ମ-ଅନ୍ୱେଷା ଶାଣିତ ହୋଇଉଠେ। ଏହି ଅନୁଭବ ଆସିଗଲେ କ୍ଷମତା, ଜ୍ଞାନ, ବିଜ୍ଞାନ, ଧନସଂପତ୍ତି ସବୁ ଅସାର ମନେହୁଏ। ମାନବେନ୍ଦ୍ର ମହାନ୍ତି ସ୍ୱନାମଧନ୍ୟ ଓକିଲ, ସାଂବାଦିକ ଓ ଲେଖକ। ପିଲାଦିନେ ସେ ଥରେ ମାଆଙ୍କ ସହିତ ମନ୍ଦିରକୁ ଯାଇଥିଲେ। ପଚସ୍ତରି ବର୍ଷ ପର୍ଯ୍ୟନ୍ତ ସେ ଆଉ ମନ୍ଦିରକୁ ଯାଇନାହାନ୍ତି। ଏବେ ସେ ଏକାକୀ ପାହାଡ଼ ଉପରେ ଥିବା ଶିବମନ୍ଦିରକୁ ଯାଉଛନ୍ତି। ତାଙ୍କର ଧାରଣା ଥିଲା ଯେ ମନ୍ଦିରରେ ମାଙ୍କଡ଼ ଥାନ୍ତି। ମାଙ୍କଡ଼ ପ୍ରତି ତାଙ୍କର ଭୟ। ପିଲାଦିନେ ମନ୍ଦିରକୁ ଯାଇଥିବା ବେଳେ କୁଷ୍ଠରୋଗୀକୁ ପଇସା ଦେବାକୁ ହାତ ବଢ଼ାଇବାରୁ ମାଆ ତାଙ୍କୁ ତାଗିଦ କରିଥିଲେ। ସେହି ଦିନରୁ ତାଙ୍କ ମନ ଭିତରେ ମାଙ୍କଡ଼ କଥାଟି ଜୀବନ୍ତ ହୋଇଥିଲା। ବୟସ ଓ ଜ୍ଞାନର ପରିପକ୍ୱତା ସହିତ ତାଙ୍କ ଭିତରେ ପୁଣି ମନ୍ଦିର କଥା ଚେଇଁ ଉଠିଛି। ସେ ମନେ କରିଛନ୍ତି

ଅଭିଜାତ ମଣିଷମାନଙ୍କୁ ଗୋଟିଏ ଗୋଟିଏ ମାଙ୍କଡ଼ ପରି । ସେମାନେ ଯେମିତିକି ମାଙ୍କଡ଼ାମି ଭିତରେ ମଜ୍ଜି ରହିଛନ୍ତି । ତେଣୁ ସେ ଏଇ ମଣିଷମାନଙ୍କଠାରୁ ମୁକ୍ତ ହୋଇ ଏକାକୀ ଯାଉଛନ୍ତି ମନ୍ଦିରକୁ । ଆଉ ତାଙ୍କର ମାଙ୍କଡ଼ ପ୍ରତି ଭୟ ନାହିଁ । ସେ ମୁକ୍ତ । ଏକ ଅହେତୁକ ଆଧାତ୍ମିକ ଉଲ୍ଲାସବୋଧ ତାଙ୍କୁ କ୍ରମଶଃ ବିମୋହିତ କରିଛି । ଏହାହିଁ ଯେପରି ତାଙ୍କ ଜୀବନର ପରମ ସାର୍ଥକତା । ନାତିକୁ ମଧ୍ୟ ସେ କହିଛନ୍ତି ଯେ ସବୁଦିନେ ସେ ମନ୍ଦିରକୁ ଯିବେ ଓ ତାକୁ ମଧ୍ୟ ସାଙ୍ଗରେ ନେବେ । ଆଧୁନିକ ବସ୍ତୁବାଦୀ ମଣିଷର ଆତ୍ମମୁକ୍ତି ଓ ଆତ୍ମାରାମ ପାଇଁ ଏହି ଗଳ୍ପ ଯେ ଏକ ଇଙ୍ଗିତ - ଏକଥା କହିଲେ ସତ୍ୟର ଅପଳାପ ହେବ ନାହିଁ ।

'ଖେଳର ନାଁ ରଙ୍ଗ' ମଣିଷର ମନଗହନର ସ୍ୱରୂପ ଉଦ୍‌ଘାଟନରେ ଏକ ସମର୍ଥ ଗଳ୍ପ ସଂକଳନ । ମୃତ୍ୟୁବୋଧ କ୍ରମଶଃ ଶାଣିତ ହୋଇଉଠିଛି ଏହି ଗଳ୍ପମାନଙ୍କରେ । 'ଭିନ୍ନ ପାଉଁଶ' ଗଳ୍ପ ପୁସ୍ତକରେ ଲେଖକ ଆଧୁନିକ ମଣିଷର ବସ୍ତୁଗତ ଅସାରତା ଓ ଆଧାତ୍ମିକ ଅନ୍ୱେଷା, 'ଶୀତଲହରୀ'ରେ ଯୁଗ ରୁଚି ଓ ଯୁଗ ଆହ୍ୱାନ ପ୍ରତି ଶ୍ରଦ୍ଧା ପ୍ରକାଶିତ । 'ଶୀତ ଲହରୀ'ର 'ନିଜ କଥା' ପ୍ରସଙ୍ଗରେ ଲେଖକ କହନ୍ତି - 'ମୁଁ ଯେମିତି ନାଚାର ହୋଇ ଜନ୍ମ ନେଲି, ନାଚାର ହୋଇ ମରିବାକୁ ଯାଉଛି, ସେମିତି ନାଚାର ହୋଇ ଲେଖୁଛି, ଲେଖୁଥିବି, ହାୟ ! ଏଇ ହେଉଛି ମୋ ସାହିତ୍ୟର ଶେଷ କଥା ? ଅଣବାବୁଆପଣରେ କାନ୍ଦିବା କ'ଣ ଏହାଠାରୁ ଶ୍ରେୟସ୍କର ନୁହେଁ ?' ଏ ସମୟକୁ ଲେଖକ ନିଃସଙ୍ଗତା ଓ ଏକାକୀତ୍ୱରୁ ଦୂରେଇ ଆସି ସଂହତି ଓ ସମଗ୍ର ଆଡ଼କୁ ମୁହାଁଇଲେଣି । ତାଙ୍କର ମନେ ହେଲାଣି - 'ଜୀବନରେ ଯଦି ନାହିଁ କୋଳାକୋଳି, ନାହିଁ ପାଟିତୁଣ୍ଡ, ନାହିଁ ରଙ୍ଗତରଙ୍ଗ, ନାହିଁ ଚାଞ୍ଚଲ୍ୟ, ସେ ଜୀବନ ନିରର୍ଥକ ।' ଏକଲାପଣରୁ ବିମୁକ୍ତି ହିଁ ଏ ସମୟର ଗଳ୍ପଗୁଡ଼ିକର ଅନ୍ତର୍ବାଣୀ । 'ତ୍ରୟୋବିଂଶମୃତ୍ୟୁ' ଗଳ୍ପ ସଂପର୍କରେ ମଧ୍ୟ ଲେଖକ ଏଇକଥା କହିଛନ୍ତି । 'ଆଧୁନିକ ଖଣ୍ଡିତ ମଣିଷମାନଙ୍କୁ ଦେଖି ଦେଖି ବିରକ୍ତ ହୋଇଗଲିଣି, ତେଣୁ ଦଣ୍ଡିତ ମଣିଷର ବଡ଼ପଣକୁ ଖୋଜୁଛି, ଟ୍ରାଜେଡ଼ିର ଗୁଣ ଗାଇବାକୁ ଚାହୁଁଛି, ତାହା ଯେତେ ଅବାସ୍ତବ ହେଉ ନା କାହିଁକି । ସେଇଥିପାଇଁ ପୁରାଣର ଅଭିଶପ୍ତା, ତେଣୁ ମହୀୟସୀ ଗାନ୍ଧାରୀଙ୍କୁ ଡାକି ଆଣିଛି । ମନେ ହେଉଛି ସେ ପ୍ରକୃତରେ ଆଦ୍ୟାନାରୀ ଖାଲି ମହାଭାରତରେ ନୁହନ୍ତି, ଆମରି, ଆମରି ଦେଶର, କଳିଯୁଗର ।' ସେ ପୁଣି କହନ୍ତି - 'ଏତେ ଲେଖିଲେଖି କେଉଁ ବାସ୍ତବକୁ ଚିହ୍ନେଇ ହେଲା ? ପାଣିକୁ ଗୋଳେଇ ଦେଲାରୁ କେତେ ଜିଆ ଗେଣ୍ଡା ସାଲୁବାଲୁ ହେଲେ, ଗହୀରକୁ ଗଲାରୁ ସମ୍ଭବତଃ କେତେ ଦେବଦାନବଙ୍କ ସଂଧାନ ମିଳିଲା - ସେଇଠୁଁ କେଉଁ ସାରତତ୍ତ୍ୱ ପାଇଲି ନା କାହାକୁ ଦେଇଗଲି ଯେ ଶ୍ରମ ସାର୍ଥକ ହେଲାପରି ମନେହେବ ।'' ଗାନ୍ଧାରୀ ଚରିତ୍ରକୁ ମିଥ୍-ପ୍ରତୀକ ଭାବରେ ଗ୍ରହଣ କରି ଲେଖକ ତାହାରି ମାଧ୍ୟମରେ ଚିରନ୍ତନ ନାରୀ ସତ୍ତାକୁ ବ୍ୟଂଜିତ କରିଅଛନ୍ତି । ଏକ ଟ୍ରାଜିକ ରୂପାୟନ ଭିତରେ ଫୁଟି ଉଠିଛି ନାରୀତ୍ୱର ଦୀପ୍ତି ଓ ଦ୍ୟୁତି । 'ଲେଉଟାଣି', 'ନିଃଜସଂଜ'

ଓ ଅନ୍ୟାନ୍ୟ ଗଳ୍ପପୁସ୍ତକ ମଧ୍ୟ ଦେଇ ଗାଳ୍ପିକ ଆଧୁନିକ ଜୀବନ ଜିଜ୍ଞାସାର ଯେଉଁ ଭାବମୂର୍ତ୍ତି ଅଙ୍କନ କରିଛନ୍ତି ତାହା ବାସ୍ତବିକ ଅନନ୍ୟ । ତାଙ୍କର ପ୍ରତ୍ୟେକଟି ଗଳ୍ପ ନୂତନ ଚିନ୍ତାର ବାର୍ତ୍ତାବହ । ସର୍ବତ୍ର କିନ୍ତୁ ଅଛି ବିଷାଦମଣ୍ଡିତ ଆଧୁନିକ ଅଭିଜାତ ମଣିଷର ଆର୍ତ୍ତି ଓ ଆକୁଳତା, ବ୍ୟଥା ଓ ବ୍ୟର୍ଥତା, ନୈରାଶ୍ୟ ଓ ଶୋଚନୀୟତା । ଲେଖକ କିନ୍ତୁ ଗଳ୍ପମାନଙ୍କରେ ଏସବୁର ରୂପାୟନ ମଧ୍ୟ ଦେଇ ସୂଚାଇ ଦେଇଛନ୍ତି ମଣିଷପଣିଆର ଉନ୍ମେଷ ପାଇଁ ଜୀବନକୁ ନୂଆ କରି ଦେଖିବାକୁ, ଅନ୍ତରର ଭଲ ପାଇବାକୁ ଅନ୍ୟ ପାଇଁ ଅଜାଡ଼ି ଦେବାକୁ, ବସ୍ତୁବାଦୀ ଆକାଂକ୍ଷା ଓ ବିଳାସ ଭିତରୁ ବାହାରି ଆସି ମାଟି ଓ ମଣିଷ ପ୍ରତ୍ୟୟ ସୃଷ୍ଟି କରିବାକୁ ।

କିଶୋରୀ ଚରଣଙ୍କ ଗଳ୍ପର ପରିସର ବିଚିତ୍ର । ଅଥଚ ସୁରେନ୍ଦ୍ର ମହାନ୍ତି ତାଙ୍କ ଗଳ୍ପ ସଂପର୍କରେ ମନ୍ତବ୍ୟ ଦିଅନ୍ତି - 'କିଶୋରୀ ଚରଣଙ୍କ କ୍ଷୁଦ୍ରଗଳ୍ପର ପରିଧି ଅତ୍ୟନ୍ତ ସୀମିତ ମଧ୍ୟବିତ୍ତ ପରିବାର ଯାହାର କର୍ତ୍ତା କୌଣସି ଅଫିସରେ ବଡ଼ ଅଫିସର, ଯିଏ ବ୍ରେକ୍‌ଫାଷ୍ଟ୍ ଖାଆନ୍ତି, ଯାହାଙ୍କର ମୋଟର କାର୍ ଅଛି, ଯିଏ ବଡ଼ ଗମ୍ଭୀର, ଏହିପରି ପରିବାରରେ ବିଭିନ୍ନ ଚରିତ୍ରମାନଙ୍କର ମନ ଓ ମାନସିକତାର ବିଶ୍ଳେଷଣ କିଶୋରୀ ଚରଣଙ୍କ ଗଳ୍ପଗୁଡ଼ିକର ଉପଜୀବ୍ୟ ।' (ଓଡ଼ିଆ ସାହିତ୍ୟର କ୍ରମବିକାଶ, ପୃ ୪୭୮) ଏହି ଅଭିମତ ଯଥାର୍ଥ ନୁହେଁ । କିଶୋରୀ ଚରଣ ଅବଶ୍ୟ ମଧ୍ୟବିତ୍ତ ଓ ଉଚ୍ଚମଧ୍ୟବିତ୍ତ ସମାଜର ନରନାରୀଙ୍କୁ ଗଳ୍ପରେ ଉପଜୀବ୍ୟ କରିଛନ୍ତି ସତ୍ୟ, ଏହାର ଅର୍ଥ ନୁହେଁ ଯେ ସେ ସାଧାରଣ ବର୍ଗରେ ନରନାରୀଙ୍କୁ ଗଳ୍ପରେ ଚିତ୍ରଣ କରିନାହାନ୍ତି । ଯେତେବେଳେ ସେ ଯେଉଁ ଚରିତ୍ରକୁ ନେଇଛନ୍ତି ତାହାକୁ ସେ ଜୀବନ୍ତ କରିଦେଇଛନ୍ତି । ନିଜର ଅନୁଭୂତ ସତ୍ୟକୁ ସେହି ଚରିତ୍ର ସହିତ ସାମିଲ କରି ରୂପ ଦେଇଅଛନ୍ତି । ତାଙ୍କ ଗଳ୍ପରେ ଆତ୍ମକେନ୍ଦ୍ରିକ ଭାବ ବିଶେଷ ସ୍ଥାନ ନେଇଥିଲେ ହେଁ ସେହି ଆତ୍ମକେନ୍ଦ୍ରିକ ସ୍ଥିତି ମଧ୍ୟ ଦେଇ ସମାଜସତ୍ତା ବ୍ୟଂଜିତ ହୋଇଅଛି । ତାଙ୍କ ଗଳ୍ପ ସୃଷ୍ଟିର ମୂଳରେ ଅଛି ଏକ ଗଭୀର ବେଦନାବୋଧ । ତାହାହିଁ ମଣିଷ ମନରେ ସୃଷ୍ଟି କରିଛି ନୂତନ ପ୍ରତ୍ୟୟ । ତାଙ୍କର ପ୍ରତିଟି ଗଳ୍ପ ନୂତନ ନୂତନ ଆଙ୍ଗିକରେ ସରସସୁନ୍ଦର ଓ ଆତ୍ମିକ ବିଭବରେ ପ୍ରାଣବନ୍ତ । ତାଙ୍କ ଗଳ୍ପର ଉପାଦାନ ତାଙ୍କର ପରିଚିତ ଓ ଅନୁଭୂତ ଜଗତରୁ ଗୃହୀତ । ଘଟଣା ସାମାନ୍ୟ । ଅଥଚ ତାହାର ଆବେଦନ ଅସାମାନ୍ୟ । ଏହିପରି ଗୋଟାଏ ଗଳ୍ପ 'ଶହେପୁଅ' - ଯେଉଁଥିରେ ଦିଶାହରା ଓ ଛିନ୍ନମୂଳ ଯୁବକଙ୍କ ମଧ୍ୟ ଦେଇ ପ୍ରକାଶ ପାଇଛି ନବ ମାନବତାର ସଂଧାନ । ତାଙ୍କ ଗଳ୍ପରେ ଅଛି ଅନୁଭୂତ ସତ୍ୟ, କଳ୍ପନା ଓ ସୌନ୍ଦର୍ଯ୍ୟବୋଧ । ଏହି ତ୍ରୟୀର ହୋଇଛି ଅପୂର୍ବ ତ୍ରିବେଣୀ ସଂଗମ । କିଶୋରୀ ଚରଣ ମନସ୍ତାତ୍ତ୍ୱିକ ଗଳ୍ପକାର । ମଣିଷ ମନର ଅତଳ ଗଭୀର ପ୍ରଦେଶରେ ତାଙ୍କର ଶିଳ୍ପୀ ସତ୍ତା ପ୍ରବେଶ କରି ସତ୍ୟକୁ ଆବିଷ୍କାର କରିଛି । ତାଙ୍କ ଗଳ୍ପଜଗତ ସ୍ପଷ୍ଟ ଭାବରେ ସୂଚାଇ ଦେଇଛି ମଣିଷ କେତେ ଅସହାୟ । ସର୍ବତ୍ର ସେ କିନ୍ତୁ ଖୋଜିଛନ୍ତି ମଣିଷର ହୃଦୟ । ଆଧୁନିକ ମଣିଷର ଛଦ୍ମତାକୁ ସେ ଉନ୍ମୋଚନ କରି ଭିତରର

ଅସହାୟ ସତ୍ତାକୁ ଦେଖାଇ ଦେଇଛନ୍ତି । ମୂଲ୍ୟବୋଧକୁ ହରାଇ ଗୋଟାଏ ଉପଭୋଗୀ ବୃତ୍ତରେ ବିଚରଣ କରୁଥିବା ନରନାରୀଙ୍କ ଭିତିରି ସ୍ୱରୂପକୁ ଉଦ୍‌ଘାଟନ କରିଛନ୍ତି ଓ ନୈତିକ ମୂଲ୍ୟବୋଧ ପାଇଁ ଦେଇଛନ୍ତି ନୂତନ ଇଙ୍ଗିତ । ତାଙ୍କର ପ୍ରତ୍ୟେକ ଗଳ୍ପ ଭିନ୍ନ ଭିନ୍ନ ସ୍ୱାଦର । ପ୍ରତ୍ୟେକରେ ଅଛି ଜୀବନକୁ ଚିହ୍ନି ଚିହ୍ନାଇବାର ବାସନା । ତାଙ୍କ ଗଳ୍ପର ଶୈଳୀ ସ୍ଥିର ନୁହେଁ, ପରିବର୍ତ୍ତନଶୀଳ । ପ୍ରଥମ ଗଳ୍ପରେ ଯେଉଁ ଶୈଳୀ ଥିଲା ବା 'ଭଙ୍ଗାଖେଳଣା' ଠାରୁ 'ଘରବାହୁଡ଼ା' ବା 'ଲକ୍ଷ ବିହଙ୍ଗ' ପର୍ଯ୍ୟନ୍ତ ଯେଉଁ ଶୈଳୀ ଥିଲା ତାହାର ପୁଣି ପରିବର୍ତ୍ତନ ଘଟିଛି ପରବର୍ତ୍ତୀ ଗଳ୍ପ ସଂକଳନମାନଙ୍କରେ । ଭାଷା ଅନ୍ତରୀଣ ବ୍ୟକ୍ତିସତ୍ତାର ମର୍ମଧ୍ୱନି । ତେଣୁ ଗୋଟାଏ କାବ୍ୟିକ ଭାବାବେଗ ପ୍ରାୟ ଗଳ୍ପଗୁଡ଼ିକରେ ଉପଲବ୍ଧ ।

କିଶୋରୀ ଚରଣ ଆଧୁନିକ ଓଡ଼ିଆ ଗଳ୍ପ ସାହିତ୍ୟରେ ଅପ୍ରତିଦ୍ୱନ୍ଦ୍ୱୀ ମନନଶୀଳ ସ୍ରଷ୍ଟା । ଏବେ ଅଶୀତିପର ବୟସରେ ମଧ ଗଳ୍ପରେ ସେ ନୂତନ ପରୀକ୍ଷା କରୁଛନ୍ତି । ସଚେତନ ମନର ଭାଷା ସହିତ ଅବଚେତନ ମନର ନୀରବ ଭାଷାର ସମାହାର ହୋଇଛି ତାଙ୍କ ଗଳ୍ପରେ । 'ଶେଷଗଳ୍ପ'ରେ ସେ ଲେଖିଛନ୍ତି - ଅଥଚ ସ୍ରଷ୍ଟା ପାଖରେ ସୃଷ୍ଟି କରିବାର ଅଭୀପ୍‌ସାର କ'ଣ ଶେଷ ଅଛି ? କିଶୋରୀ ଚରଣ ଏବେ ଯେଉଁସବୁ ଗପ ଲେଖୁଛନ୍ତି ସେସବୁ ମଧ ନୂତନତାର ଝଲକ ସୃଷ୍ଟି କରୁଛି । ସ୍ରଷ୍ଟା କାଳଜୟୀ ଜୀବନ ଓ ଜଗତର ମୁଗ୍ଧ ରୂପକାର । କିଶୋରୀ ଚରଣ ସ୍ରଷ୍ଟା । ବାଙ୍‌ମୟ ସାମ୍ରାଜ୍ୟର ସେ ସାରସ୍ୱତ ବିଧାତା । ତେଣୁ ତାଙ୍କର ଗଳ୍ପର ପୂର୍ଣ୍ଣଛେଦ ନାହିଁ । ଦୀର୍ଘ ପଚାଶ ବର୍ଷରୁ ଉର୍ଦ୍ଧ୍ୱକାଳ ଧରି ତାହା ଗତି କରିଆସିଛି । ଓଡ଼ିଶାରୁ ଭାରତ ଓ ଭାରତରୁ ବିଦେଶ ଭୂଇଁକୁ ତାଙ୍କର ଗଳ୍ପ ଗତି କରିଛି । ସର୍ବତ୍ର ସେ ମଣିଷକୁ ରୂପ ଦେଇଛନ୍ତି ଓ ମଣିଷ ଭିତରର ମଣିଷକୁ ଆବିଷ୍କାର କରିଅଛନ୍ତି । ଓଡ଼ିଆ ସାହିତ୍ୟରେ ଜଣେ ଭିନ୍ନ ସ୍ୱାଦ ଓ ଶୈଳୀର କଥାକାର ଭାବରେ କିଶୋରୀ ଚରଣ ଯେ ସର୍ବମାନ୍ୟ ସ୍ରଷ୍ଟା, ଏକଥା କହିଲେ ଅତିରଂଜିତ ହେବ ନାହିଁ ।



# କିଶୋରୀ ଚରଣ : ଉପନ୍ୟାସ - ଏକ ଆକଳନ

*ଡକ୍ଟର ନଟବର ଶତପଥୀ*

## (୧)

ଯଶସ୍ୱୀ ଗାଳ୍ପିକ କିଶୋରୀ ଚରଣ ଦାସ ଉପନ୍ୟାସ ଜଗତରେ ପ୍ରବେଶ କରି ଅଦ୍ୟାବଧି ସୃଷ୍ଟି କରିଛନ୍ତି ସାତୋଟି ଗ୍ରନ୍ଥ । ସେଗୁଡ଼ିକ - 'ସାତୋଟି ଦିନର ସତୀ' (୧୯୯୩), 'ସକଳ ସନ୍ତାନ' (୧୯୯୫), 'ନେତା ଓ ନେତ୍ରମଣି' (୧୯୯୬), 'ସ୍ୱର୍ଗସୀମା' (୧୯୯୮), 'ବିଦେଶିନୀ' (୨୦୦୦), 'ତୁମ ଆମ ଶତାବ୍ଦୀ' (୨୦୦୨) ଏବଂ 'ଶେଷ ଅଙ୍କ ପ୍ରଥମ ଦୃଶ୍ୟ' (୨୦୦୩) । ଉପନ୍ୟାସ କ୍ଷେତ୍ରଟି ଆଜି ସଙ୍କୁଚିତ ହୋଇ ପଡୁଥିବା ବେଳେ ଶ୍ରୀଯୁକ୍ତ ଦାସଙ୍କର ଏହି ରଚନାବଳୀ ଅନେକ ଆଶା ଓ ଭରସା ସୃଷ୍ଟି କରେ । ପରିମାଣ ଦୃଷ୍ଟିରୁ ଓଡ଼ିଆ ଉପନ୍ୟାସ ହତାଶ ବ୍ୟଞ୍ଜକ ହେଲେହେଁ ଗୁଣାତ୍ମକ ମାନରେ ଏହା ଆଦୌ ଦରିଦ୍ର ନୁହେଁ । ଏହି ଗୁଣାତ୍ମକ ମାନ ଅଭିବୃଦ୍ଧିରେ ଯେଉଁ କେତେଜଣ ସ୍ରଷ୍ଟାଙ୍କର ଅବଦାନ ରହିଛି ସେମାନଙ୍କ ମଧ୍ୟରେ କିଶୋରୀ ବାବୁଙ୍କର ସ୍ଥାନ ସ୍ୱତନ୍ତ୍ର । ବିପୁଳ ମାନବିକ ସମସ୍ୟା ଘେରରେ ଆଜିର ସମାଜ ଓ ବ୍ୟକ୍ତିଜୀବନ ପୀଡ଼ିତ ହେଉଛି । ନୂଆ ସମୟର ନୂଆ ବିଚାର ଆସୁଛି । ମୂଲ୍ୟବୋଧଆଶ୍ରିତ 'ପ୍ରାଚୀନ' ଅବକ୍ଷୟ ପଥରେ ମଳିନ ହେଉଛି । 'ନବୀନ' ବ୍ୟକ୍ତିପ୍ରଧାନ ଚିନ୍ତାରେ ଝୁଲୁଛି । ବ୍ୟକ୍ତି ଜୀବନ ସରସତା ଖୋଜୁଛି ଅର୍ଥ ଓ କ୍ଷମତାକୁ ପତିଆରା କରି । ଫଳରେ କ୍ଷମତା ବଳୟ ବିସ୍ତାରିତ ହେବା ସହିତ ଜନ ସଂପର୍କବୋଧ ହେଉଛି କ୍ଷୀଣତର । ସ୍ୱାଧୀନତାର ନୂଆ ସଂସ୍କୃତି ଫୁଲର ବାସ୍ନା ଚହଟୁଛି ସବୁଠି; ଉପର ମହଲାରୁ ଭୂତଳ ଯାଏ । ଭୋଗ ବୁର୍ଜୁଆ ମାତୁଛି ପ୍ରସାଦ ସେବନର ପତ୍ରେ ପତ୍ରେ ନିଜର ଚିକ୍କଣ ହାତର ମୁଦ୍ରା ଦେଖାଇ । ଶାସନର ଅର୍ଥ କେଉଁଠି ଦଳୀୟ ବିମାନରେ ବ୍ୟକ୍ତି ଇଚ୍ଛାର ରାଧାକୃଷ୍ଣଙ୍କୁ ବସାଇ ମେଲଣ କରୁଛି ତ କେଉଁଠି କାଗଜ ସାମ୍ରାଜ୍ୟ ଭିତରେ କଲ୍ୟାଣର ଇମାରତ ଗଢୁଛି (କଲ୍ୟାଣର ଅର୍ଥ ବିଜ୍ଞାପନ ବିଳାସରେ ବିମୋହନ ହୁଅ - ସବୁଚାଲୁ) । ତ୍ରାସ ଓ ନିରୀହ ଆତଙ୍କର ବର୍ଣ୍ଣୋତ୍ସବ ହୋଇଛି ଜନମଙ୍ଗଳର ନାମାନ୍ତର । କୃତ୍ରିମତା ହେଉଛି ସଭ୍ୟତାର ସଂଜ୍ଞା, ବିଷ ହେଉଛି ସ୍ୱଚ୍ଛନ୍ଦତାର ସାଧନ । ବିଜ୍ଞାନ ଓ କାରିଗରୀକୌଶଳ ଜନିତ ଉଦ୍‌ଭାବନୀ ଜ୍ଞାନ ମଞ୍ଜିର ଅମରୀ ଭିତରୁ ଅମୂଳ ଅମଳ ହେଉଛି । ଗୋଟାଏ ପ୍ରଚଣ୍ଡ ବିଭୀଷିକା ଆତ୍ମଗୋପନ କରୁଛି ଜ୍ଞାନର

ଦାନବ ଭିତରେ । ଜ୍ଞାନର ଅର୍ଥ ହେଉଛି ବିଜ୍ଞାପନରୁ ସଂଗୃହୀତ ସମ୍ବାଦର ଭଣ୍ଡାର । ସମ୍ବାଦପତ୍ରକୁ ବିଡ଼ା କରିଦେଲେ ତାହା ଭାଗବତ ଗାଦିର ବିଶ୍ୱକୋଷ ହେବା ବିଚିତ୍ର ନୁହେଁ । ଏପରି ଦ୍ରୁତ ପରିବର୍ତ୍ତନଶୀଳ ଆମର ସଭ୍ୟତା ଓ ତା'ର କଳାହାତର ରେଶମୀ ସ୍ପର୍ଶ ପାଇଁ ବ୍ୟାକୁଳତା ଆଜି ସର୍ବତ୍ର ବିରାଜମାନ । ଏହାକୁ ଅତିକ୍ରମ କରିବା ଅସମ୍ଭବ ମନେ ହେଲାଣି । ଏଣୁ ଯନ୍ତ୍ରଣାର ଅତିଷ୍ଠତାକୁ ଆଧୁନିକତାର ନବତମ ନିଦାନ ବୋଲି ଭାବିବା ଅସ୍ୱାଭାବିକ ନୁହେଁ ।

ସାହିତ୍ୟରେ ଏସବୁର ସଙ୍କେତ ସ୍ୱାଗତଯୋଗ୍ୟ । ବିଶେଷ କରି ଆଧୁନିକ ସୂକ୍ଷ୍ମ ଗଦ୍ୟଶୈଳୀର ପ୍ରତିଷ୍ଠା ପରେ ଦ୍ରୁତ ପରିବର୍ତ୍ତନଶୀଳ ସାମାଜିକ ବିଭାବ ନୂଆ ରୀତିଟିଏ ଲୋଡ଼େ, ନୂଆ କାହାଣୀଟିଏ ଖୋଜେ, ନୂଆ ପରିବେଶ ପାଇଁ ଦରକାର ହୁଏ ନୂଆ ଭାଷାର ପୋଷାକ । ନୂଆ ଚାଲ ପାଇଁ ନୂଆ ଚିନ୍ତା ବା କୌଶଳ ଜନନୀ ହେବା ପରି ଆଜିର ବାଙ୍ମୟର ମୂଳରେ ପୁରୁଣା ସ୍ଥାନ ଓ ପାତ୍ର ବ୍ୟତିକ୍ରାନ୍ତ ସାହିତ୍ୟିକ ଉପାଦାନ ହୋଇଗଲାଣି । ତା'ର ସ୍ଥାନ ନେଇଛି ଅନ୍ତର୍ଦେଶୀୟ ଭାବନା । ବହୁଦେଶୀୟ କମ୍ପାନୀର କାରବାର ପରି ଆଜିର ସ୍ରଷ୍ଟା ସ୍ୱଦେଶ ସ୍ୱସ୍ଥାନ ଅନ୍ତର୍ହିତ ଭାବ ସତ୍ତାରେ ଅଧିଷ୍ଠିତ ହେବାକୁ ବାଧ୍ୟ । ତାଙ୍କର ମନୋଭୂମି ଯଥାର୍ଥରେ ବିଶ୍ୱଭୂମି । ତାଙ୍କ ପର୍ଯ୍ୟବେକ୍ଷଣର ଉପସ୍ଥଳୀ ରାଣୀହାଟ ବା ଷ୍ଟେସନର ବରଗଛ ତଳ ନୁହେଁ । ଜର୍ଜ ନର୍ଦ୍ଦମାରୁ ଉଠି ଅମୃତହସ୍ତା ବାବାଜିର ଟା ପିଇ ଭୋକିଲା ଜନତାର ପଟୁଆର ଆଗରେ ଗୁଳି ଖାଇ ସାରିଛି, ବୁଢ଼ା ନିଧି ଦାସ ସଂଗ୍ରାମୀମାନଙ୍କ ଆଶ୍ରମର ପାପାଚାର ସହି ନପାରି ବିରୂପା ନଦୀ ବନ୍ଧ ତଳ କିଆ ଗୋହିରୀ ଗାଁ ଭିତରେ ଲୁଚି ଯାଇଛି । ଅହିଂସା ସଂଗ୍ରାମୀ ଶୁଦ୍ଧୋଦନର ଗୋପନ ପୀରତିରୁ ନିରୀହ ମାଳତୀ ପାପଶିଶୁର ମା ହୋଇଛି, ଶୁଦ୍ଧୋଦନ ମୁଖ୍ୟମନ୍ତ୍ରୀ ହୋଇଛି, ରବି ବିଏ ପାଶ୍ କରି ବନ୍ଧମୂଳ ଗାଁରୁ ସହରକୁ ନ ଯାଇ ଫୁଲସରା ଗାଁରେ ସମବାୟର ଆଦର୍ଶ ପ୍ରତିଷ୍ଠା କରିଛି - ଓଡ଼ିଆ ଉପନ୍ୟାସର ବସ୍ତୁକ୍ଷେତ୍ର ଓଡ଼ିଶାଗତ ଜୀବନ କୁସୁମରେ ତା'ର କୁମାରୀତ୍ୱ ଅତିକ୍ରମ କରିସାରିଛି । ଏବେ ସେ ପୂର୍ଣ୍ଣ ଯୌବନ ଶେଷକରି ପରିଣତ ବୟସ୍କ । ସ୍ଥାନାନ୍ତର ଓ କାଳାନ୍ତର ହିଁ ଏ ବୟସର ଦୁଇଟି ଶୋଭାଯୋଗ୍ୟ ପରିଧାନ । ଏ ଦୁଇଟି ଯୋଗ୍ୟ ପରିଧାନର ନିର୍ମାତା ପିତା ହେଉଛନ୍ତି ମନୋଜ ଦାସ ଓ କିଶୋରୀ ଚରଣ ଦାସ । ସ୍ଥାନୀୟ ଅଭିଜ୍ଞତାର ମଞ୍ଜୁ ବୃହତ୍ ବିଶ୍ୱ-ଅଙ୍ଗନର ସ୍ନିଗ୍ଧ ଅଣୁଝଳି(ପାଉଡ଼ର)ରେ ରୂପ ମଣ୍ଡନ କରିବାର କାଳ ଉପସ୍ଥିତ ହୋଇଛି । ଉପନ୍ୟାସ ଆଧୁନିକ ଶୈଳୀ ସ୍ୱାଦର ଏକ ଆଙ୍ଗିକ । ସେ ଆଙ୍ଗିକର ଅକ୍ଷୟ ବିଭାବସ୍ତୁ ବ୍ୟତିକ୍ରମକୁ ଧରି ଶୋଭାପ୍ରଦ ହେଉଥିବା ଯାଏ ସାହିତ୍ୟିକ ବିଭବ ସମୃଦ୍ଧ ହେଉଥାଏ ।

ଶ୍ରୀଯୁକ୍ତ କିଶୋରୀ ଚରଣ ଦାସ ଗଳ୍ପ ଜଗତରେ ଓଡ଼ିଆ ପାଠକଙ୍କୁ ଯେଉଁ ନୂଆ ରୁଚି ଆଣି ଦେଇଛନ୍ତି ସୂକ୍ଷ୍ମାତିସୂକ୍ଷ୍ମ ବର୍ଣ୍ଣନାମୂଳକ ଅଭିବ୍ୟକ୍ତି ଭିତରେ, ତାର ଏକ ପ୍ରଶସ୍ତତର ରୂପ ଉପନ୍ୟାସରେ ସେ ପରୀକ୍ଷା କରିଛନ୍ତି । ତାଙ୍କର ଧ୍ୟାନର ଜଗତଟି ନିଷ୍ଠୁର ଭାବେ ପରିମିତ,

ଅଥଚ ସେଇ ପରିମିତି ତଳାତଳ ରସାତଳ ଚୁମ୍ବୀ । ତାଙ୍କର ଅନୁଭୂତିର ସ୍ୱଚ୍ଛନ୍ଦ ଲୀଳା ଉଚ୍ଚ ଓ ମଧ୍ୟବିତ୍ତର ଜୀବନ ପଦ୍ଧତିକୁ କେନ୍ଦ୍ର କରିଛି ସତ କିନ୍ତୁ ତା'ର ବିରଳ ସୌକୁମାର୍ଯ୍ୟଟି ହେଉଛି ଅନ୍ତଃଦର୍ଶନର ପ୍ରତିଫଳନ । ସୁଧାର ମଧ୍ୟବିତ୍ତର ସଂସାର ଭିତରେ ବ୍ୟକ୍ତିଟିଏ ନିମଜ୍ଜିତ ହେଲା ପରେ ତାର ଅସ୍ତିତ୍ୱ ଯେଉଁ ସ୍ଥାନାନ୍ତର ରୂପ ପରିଗ୍ରହ କରେ ତାହା ଏକକ ପୁଣି ବହୁ ବ୍ୟତିକ୍ରମର ଶେଷ ଶିଖର ସ୍ପର୍ଶ କରିବାକୁ ବ୍ୟାକୁଳ । ତା'ର ଜୀବନ ସାଧାରଣ ଲାଭକ୍ଷତିର ପରିବେଶରୁ ଛିନ୍ନ ହୋଇ ଏକ ସ୍ୱତନ୍ତ୍ର ନିଜସ୍ୱ ଆଶ୍ରୟଖୋସା ଲୋଡ଼େ । ଏଇ ଖୋସାବାସ ଭିତରୁ କିଶୋରୀ ବାବୁ ତା'ର ଜୀବନ ଲକ୍ଷ୍ୟକୁ ଅନୁଧ୍ୟାନ କରନ୍ତି - ଦୁଃଖ ପ୍ରକାଶନ୍ତି, ସମ୍ବେଦିତ ହୁଅନ୍ତି, ଅଭିଭୂତ ହୁଅନ୍ତି, ବେଳେବେଳେ ବି ଟିକିଏ ତାଙ୍କ ଭାଷାରେ ଛିଗୁଲାନ୍ତି । ମଧ୍ୟବିତ୍ତର ସୁରକ୍ଷା-ବଳୟଟିଏ ଅଛି । ସେଇ ଭିତରେ ଜୀବନ ବଞ୍ଚିବାର ଯେତେ ସବୁ ସମ୍ମୋହନ, ସେଗୁଡ଼ିକ ଭାରି ଚଟୁଳ ଓ ଚମ୍ପାପୂର୍ଣ୍ଣ, ଏଣୁ ମୂଲ୍ୟବୋଧ ମପାଚୁପା ବିଚାର କୈନ୍ଦ୍ରିକ । କୁମ୍ଭକାର କୀଟ ପରି ବାହାର ଜଗତର ଅନୁଭୂତିର ମଲାପୋକ ଧରି ସେ ଆତ୍ମବାସର ଗୁମ୍ଫା ଭିତରେ ନିକିମା ପ୍ରତିମା ଗଢ଼ି ବସେ । ଶ୍ରୀଯୁକ୍ତ ଦାସ ସେପରି ଦୁନିଆର ଚରିତ୍ରମାନଙ୍କୁ ଯେତେ ନିବିଡ଼ ଭାବେ ଦେଖନ୍ତି ତାହା ଯଥାର୍ଥରେ ଓଡ଼ିଆରେ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଓ ଆସନର ଅଧିକାରୀ ହୋଇପାରେ ।

କ୍ଷୁଦ୍ରଗଳ୍ପରେ ଆଶାତୀତ ସଫଳତା ସହିତ ସ୍ୱତନ୍ତ୍ର ଏକ ରୀତିର ପ୍ରତିଷ୍ଠା ପରେ ଶ୍ରୀ ଦାସ ଉପନ୍ୟାସ କ୍ଷେତ୍ରରେ ପ୍ରବେଶ କରୁଛନ୍ତି । ଏଇଠି ଲେଖକଙ୍କ ଭୂମିକା ଭିନ୍ନ ଧରଣର । କ୍ଷୁଦ୍ରଗଳ୍ପକୁ ବଡ଼ କରିଦେଲେ ଉପନ୍ୟାସ ହେବ ନାହିଁ । ଗଳ୍ପର ପରିସୀମାର ବିସ୍ତୃତି ବା ଅନେକ ଚରିତ୍ରର ସଂଯୋଗ ଉପନ୍ୟାସର ବିଶେଷତ୍ୱ ନୁହେଁ । ଏଣୁ କେହି ଭାବିବେ ନାହିଁ ଯେ ଜଣେ ସଫଳ ଗାଳ୍ପିକ, ସଫଳ ଔପନ୍ୟାସିକ ହେବାରେ ବୈଚିତ୍ର୍ୟ ନାହିଁ । ବିଗତ ଶତକର ଜଣେ ଗାଳ୍ପିକ ପକ୍ଷରେ ଏପରି ହେବା ବିଚିତ୍ର ନଥିଲା । ତା'ର କାରଣ ବୋଧହୁଏ ଥିଲା ଗଳ୍ପ ବା ଉପନ୍ୟାସ ଥିଲା କାହାଣୀ ପ୍ରଧାନ । ଫକିରମୋହନଙ୍କର ଅଳ୍ପ କେତୋଟି ଗଳ୍ପକୁ ବାଦ ଦେଲେ ଅବଶିଷ୍ଟ ଗଳ୍ପର କାହାଣୀ ପରିସର ବଢ଼ାଇ ଦେଲେ ତାହା ଉପନ୍ୟାସ ଯୋଗ୍ୟ ହୋଇପାରେ । ଓଡ଼ିଆ କଥାସାହିତ୍ୟରେ ଏପରି ରଚନାର ସଂଖ୍ୟା ପ୍ରତୁଳ । କିନ୍ତୁ ଯେଉଁ କଥାକାରମାନେ ସାହିତ୍ୟକୁ କଳାର ଭାବଭୂମିରେ ରଖି ବିଚାର କରନ୍ତି ସେମାନଙ୍କ କୃତି ଦୁଇ ସ୍ୱତନ୍ତ୍ର କୋଟୀରେ ନିଜସ୍ୱ ବିଭାରେ ଦୀପ୍ତିମନ୍ତ ହୁଏ । କିଶୋରୀ ଚରଣଙ୍କ କ୍ଷେତ୍ରରେ ତାହାହିଁ ଘଟିଛି । ସଫଳ ଗାଳ୍ପିକ ସଫଳ ଉପନ୍ୟାସକାର ହେବେ, ଏହା ସର୍ବତ୍ର ସମ୍ଭବ ନୁହେଁ । କିଶୋରୀବାବୁଙ୍କ କ୍ଷେତ୍ରରେ କେତେକ ସୁବିଧା ଥିଲା । ଯେଉଁ ଚରିତ୍ର ବର୍ଗକୁ ସେ ଗଳ୍ପ ପରିସୀମାରେ ଅବତରଣ କରାଇଛନ୍ତି ସେମାନଙ୍କ ସମ୍ପର୍କରେ ଅନେକାନେକ ଅଭିଜ୍ଞତା ତାଙ୍କର ସମ୍ପଦ । ତାହା ଆଣି ଦେଇଛି ଏକ ପ୍ରେରଣା; ଅନୁଭୂତ ସତ୍ୟକୁ ବଖାଣିବା । କେବଳ ଶୈଳୀର ବାନ୍ଧଣ ସୂତ୍ର ଓ ଭାଷାର ପ୍ରାଣ ସଞ୍ଚାରୀ ତେଜ ଦରକାର ଥିଲା । ଗଳ୍ପ ରଚନାର ଆରମ୍ଭରୁ ସେ

ଏ ଦୁଇଟିକୁ ଆୟତ୍ତ କରିଛନ୍ତି । ତାଙ୍କ ଚରିତ୍ର ଯେଉଁଠି ଯେଉଁ ପରିବେଶରୁ ସୃଷ୍ଟି ହେଉନା କାହିଁକି ଶ୍ରୀ ଦାସ ତାକୁ ଖୁଣ୍ଟିନାଣ୍ଟି ଅଜସ୍ର ଦୃଷ୍ଟିରେ ଦେଖିଛନ୍ତି, ତା'ର ଅନ୍ତର୍ଜଗତକୁ ବୁଝି ତା ଭିତରୁ ସୂକ୍ଷ୍ମ କଥାଟିଏ ବାହାର କରିବାଯାଏଁ ସେ ପରିବେଶକୁ ବଖାଣିଛନ୍ତି । ଅନ୍ୟ କଥାରେ କହିଲେ ସାକ୍ଷୀର ଏକ ପ୍ରଶ୍ନୋତ୍ତର ଓ ପୁନଃ ପୁନଃ ପରୀକ୍ଷା ଏବଂ ପୁନର୍ବାର ପ୍ରଶ୍ନ, ଏପରି ଦ୍ୱନ୍ଦ୍ୱାତ୍ମକ ରୀତିରେ ଆଗେଇଛନ୍ତି । ମନସ୍ତାତ୍ତ୍ୱିକତାର ଏହି ମନନଧର୍ମୀ ଆରୋହଣ ପ୍ରକ୍ରିୟା ତାଙ୍କ ଗଳ୍ପର ଏକ ସ୍ୱତନ୍ତ୍ର ରୀତି । ଅନେକ ସ୍ଥଳରେ ପାଠକ ବିରକ୍ତ ହୁଏ, କେହି ମଧ୍ୟ ମନ୍ତବ୍ୟ ଦିଅନ୍ତି, 'ସେ ଫେଣଉଛନ୍ତି', ଏପରି ଫେଣାଇବା ଚିତ୍ରଣକୁ ପାଠକ ନିଜର ଆବେଗ ପାଖରେ ସହିବା କଷ୍ଟକର ହୋଇପଡ଼େ । କାରଣ ପାଠକ ସିଧାସଳଖ ପରିଣତିର ସ୍ୱାଦୁ ଚାହେଁ, ପରିଣତିର ପୁଲକକୁ ଅଚିରେ ଉପଲବ୍‌ଧି କରିବାକୁ ଚାହେଁ । କିନ୍ତୁ କଳାର ଧର୍ମ ଭିନ୍ନ । ବିଶେଷତଃ ଶ୍ରୀ ଦାସ ଗ୍ରହଣ କରିଥିବା ରୀତିରେ ତାହା ଆଦୌ ସମ୍ଭବ ନୁହେଁ । କଳାର ସ୍ୱାଦୁ ରହିଛି ସେହି ଖୁଣ୍ଟିନାଣ୍ଟି ବା ଫେଣାଳିଆ ବର୍ଣ୍ଣନାରେ ।

ଏବେ ଉପନ୍ୟାସରେ ପ୍ରାୟଶଃ ସେହି ରୀତି । ତେବେ କାହାଣୀର ପରିବେଶ, ପରିସୀମା, ଚରିତ୍ର ଓ ଚରିତ୍ରମାନଙ୍କର ସଂସାର ଗଳ୍ପରେ ବର୍ଣ୍ଣିତ ସାମଗ୍ରୀ ଠାରୁ ଗୁଣ ଓ ମାନରେ ପୃଥକ ନୁହେଁ । ସର୍ବତ୍ର ସେଇ ଉଚ୍ଚମଧ୍ୟବିତ୍ତ ବା ମଧ୍ୟବିତ୍ତର ସ୍ୱର୍ଗଭୂମି । କିନ୍ତୁ ଏଥର ଦୃଷ୍ଟିର ପରିସର ବ୍ୟାପକ, ପ୍ରେକ୍ଷାପଟ ବା କାନଭାସଟି ବଡ଼ । ବହୁ ଉପଖଣ୍ଡର ମିଳନରେ ସେ କାନ୍‌ଭାସ ଆତ୍ମ ପ୍ରକାଶ କରିଛି । ତାଙ୍କର ଭାବଭୂମି ଖୋଜିଛି ଅନେକାନେକ ପରିବେଶ ଓ ପରିସ୍ଥିତି ଭିତରେ ମଧ୍ୟବିତ୍ତ ଜୀବନର ଅସଲ ରୂପ । ଗଳ୍ପର ସଂକୀର୍ଣ୍ଣ ଆୟତନ ଭିତରେ ସମ୍ଭବ ହୋଇଥିଲା, ଏବେ ଭିନ୍ନ ଭିନ୍ନ ସ୍ଥାନ, ପାତ୍ର ଓ କାଳ ପରିପ୍ରେକ୍ଷୀରେ ଅନୂଦ୍ୟ ହେଉଛି । ଏହାର କାରଣ ଗଳ୍ପ ଭିତରେ ଯାହା କହିହେବ ନାହିଁ ତାହା ଉପନ୍ୟାସରେ ସମ୍ଭବ । ମଧ୍ୟବିତ୍ତର ଆଚରଣ ବଦଳିଛି, ତା'ର ରୂପାନ୍ତର ଘଟିଛି ଆଜିର ରାଜନୀତିକ ଓ ସର୍ବୋପରି ଅର୍ଦ୍ଧ ସାମନ୍ତବାଦୀ, ଅର୍ଦ୍ଧ ଉପନିବେଶବାଦୀ ବା ପୁଞ୍ଜିବାଦୀ ସମାଜ ବ୍ୟବସ୍ଥା ଭିତରେ । କ୍ରମଶଃ ମଧ୍ୟବିତ୍ତର ଚର୍ବିଳ ଚେହେରାର ମୋଟେଇ ଭିତରେ ତା'ର ଆତ୍ମରଚିତ ସ୍ୱର୍ଗକୁ ପଶି ଆସିଛନ୍ତି ରାଜନୀତିର ଲୋକ, ବ୍ୟବସାୟୀ, ବହୁ ଧର୍ମଧ୍ୱଜାଧାରୀ ଭଣ୍ଡ, ସମାଜ ସେବା ଆଖ୍ୟାଧାରୀ ଛଦ୍ମବେଶୀବୃନ୍ଦ । ଷାଠିଏ ସତୁରି ଦଶକର ଭାରତ ବା ଓଡ଼ିଶାର ଘଟାନ୍ତର ଘଟିଛି ଆତ୍ମୀୟତାରୁ ମୁଖାପିନ୍ଧା ସ୍ତରକୁ । ଓଡ଼ିଶାର କାନ୍ଥ ଭାଙ୍ଗିଛି ଓ ଭାରତ ବର୍ଷର ପାଚେରି ଦବି ଯାଇଛି, ଓଡ଼ିଶା ହୋଇଛି ଭାରତ ବର୍ଷର ପଛବାଡ଼ି ଓ ଭାରତବର୍ଷ ବିଶ୍ୱର ସାମ୍ନା ଅଗଣା । ନବେ ଦଶନ୍ଧିକୁ ଏ ଯେଉଁ ପରିବର୍ତ୍ତନ, ସ୍ଥାନ ସ୍ଥାନ ଭେଦରେ ବା ସ୍ତରୀୟ ପଦ ମର୍ଯ୍ୟାଦା ଭେଦରେ ବ୍ୟକ୍ତିର ଆଚରଣରେ ଯେପରି ଅଦୃଶ୍ୟ ଘଟଣାର ସଙ୍କେତମାନ ମିଳେ ତାହା ଗଳ୍ପର ସାମଗ୍ରୀ ହୋଇପାରେ ନାହିଁ । ତା'ର ବର୍ଣ୍ଣନା ହିଁ ଉପନ୍ୟାସର ସାଧନା । ବିଚିତ୍ର ଅନୁଭବର ଓ ଜାତୀୟ ଲକ୍ଷଣର ପ୍ରତିଫଳନ ଉପନ୍ୟାସ ହିଁ କରିପାରେ । ମୋର ମନେହୁଏ ଏଥିପାଇଁ ଶ୍ରୀ ଦାସ କଲମର ବାଟ ବଦଳାଇ ଦେଇଛନ୍ତି ।

## (୨)

୧. 'ସାତୋଟି ରାତିର ସତୀ' । ଏଇ ପ୍ରଥମ ରଚନା ଓଡ଼ିଆ ଉପନ୍ୟାସ ଧାରାରେ ଏକ ଉତ୍ତରଣ । ଏଥିରେ ବର୍ଣ୍ଣିତ ଶୈଳୀର ପୂର୍ବଜ ଉପନ୍ୟାସ ରାହୁର ଛାୟା, ଲୟବିଲୟ, ଦିଗଦିହୁଡ଼ି ପ୍ରଭୃତି ଗୋପୀନାଥ ମହାନ୍ତିଙ୍କର । କିନ୍ତୁ ପୂର୍ବଜ ଗୋପୀନାଥଙ୍କ ଠାରୁ କିଶୋରୀ ଚରଣଙ୍କ ବ୍ୟତିକ୍ରମ ଅନେକ । ଏଇଟି ନବ ପରିଣୀତାର ସଂସାରକୁ କେନ୍ଦ୍ରକରି, ହେଲେ ସଂସାରର ଚାଲୁ ଅର୍ଥରେ ନୁହେଁ । ବଧୂବେଶ ଛାଡ଼ି ପତ୍ନୀ ହେବାର ପୂର୍ବରୁ ପରିଣୀତାର ସାତୋଟି ଦିନର କାହାଣୀ । ଶିରୋନାମାଟି ସ୍ୱୟଂ ଅର୍ଥ ପ୍ରଖ୍ୟାପକ - ବିବାହର ସାତ ଦିନ ଯାଏଁ ତା'ର କୁମାରୀତ୍ୱ ରକ୍ଷା କରିଥିବା ବଧୂଟିଏର କାହାଣୀ । ଏହା ଭିତରେ ବିତିଛି ଜୀବନର ବହୁ ପ୍ରତୀକ୍ଷିତ ଓ ରୋମାନ୍‌ସ କୌତୁକର ଦିନ, ପ୍ରଥମ ବାସର ରାତି । ଫୁଲର ଶେଯ ଉପରେ କୁମାର କୁମାରୀ ବିଦାୟ ଦିଅନ୍ତି କୌମାର୍ଯ୍ୟକୁ, ସ୍ୱାଗତ କରନ୍ତି ବନ୍ଧନକୁ । ଏଇ ମିଳନର ମୁହୂର୍ତ୍ତରୁ ଦେହର ବେଦୀ ଭିତରେ ଅଭିନ୍ନ ଆତ୍ମାର ଅମର ସଂଗୀତ ଯେଉଁ ଅଧୀର ବେଣୁସ୍ୱନର ରାଗିଣୀ ଶୁଣାଏ ତାହା କାଳକାଳାନ୍ତରକୁ ସମ୍ପଦରେ ପରିଣତ ହୁଏ । ସମ୍ବଲପୁରର ନନ୍ଦୁପଲ୍ଲୀରୁ ଇଂରେଜୀ ଏମ୍‌ଏ ପଢ଼ା ଝିଅ ଅନୁ ବଧୂବେଶରେ ଆସୁଛି ଭୁବନେଶ୍ୱର । ଚତୁର୍ଥୀ ପରଦିନ ସେ ଯିବ ସ୍ୱାମୀ ସାଙ୍ଗରେ ଆମେରିକା । କୌତୂହଳ ଓ କୌତୁକର କେତେ ସ୍ୱପ୍ନ ସଞ୍ଚାର ପଥରେ ପରିଣୀତାର ଆଶା ରୋମାଞ୍ଚିତ ହୋଇ ନଥିବ ! କିନ୍ତୁ ହେଉନାହିଁ, ଚତୁର୍ଥୀ ରାତିରେ ସ୍ୱାମୀର ଲାଳସୀ ଓଠର ଉଇଁଲା ଚନ୍ଦ୍ରକୁ ବଞ୍ଚେଇ ପରିଣୀତା କହୁଛି ମନେ ମନେ, ''ଷ୍ଟପ୍ ଇଟ୍ । ଆଇ ହେଟ୍ ୟୁ, ଅଲ୍ ଅଫ୍ ୟୁ'' । ତା ପର ଦିନ ଉଡ଼ାଣରେ ଦିଲ୍ଲୀ । ସେଇଠି ସ୍ୱାମୀ ବିଶନବାବୁଙ୍କ ଭବିଷ୍ୟତ କର୍ମ ଯୋଜନାର ଭାଗ୍ୟ ନିର୍ଦ୍ଧାରିତ ହେଲା ବହୁ ଦ୍ୱନ୍ଦ୍ୱ ଓ ଆଶଙ୍କା ଭିତରେ ଏବଂ ଶେଷରେ ଖୁସିରେ ପରିଣୀତାକୁ ଧରି ସେ ଚାଲିଲେ ନିୟୁର୍କ । ବିଦେଶ, ପୁଣି ସମ୍ପୂର୍ଣ୍ଣ ଏକ ଅଜଣା ଅଜ୍ଞାତ ସଂସ୍କୃତିର ରୋଶଣି ଭିତରେ କେଇଟା ଦିନ ଅନୁ ନିଆରା ରହେ ହୋଟେଲରେ । ଯେମିତିକି ତା'ର ଗୋଟାଏ ପଣ; ସତୀତ୍ୱକୁ ସେ ଜଳାଞ୍ଜଳି ଦେବ ନାହିଁ । ପଲ୍ଲୀର ସରଳ ସଂସ୍କାର ଭିତରେ ଲୁଚିଥିବା ଗୋଟିଏ ନିରୀହ ବିଶ୍ୱାସକୁ ଧରି ଜୀବନ ବଞ୍ଚିଥିବା ତରୁଣୀ ଉଚ୍ଚଶିକ୍ଷିତ ହେବା ପରେ ଆହରଣ କରିଛି ଆତ୍ମବଳ । ସେ ଅବଳା ନୁହେଁ, ଏଣୁ ନିୟୁର୍କରେ ପାଦ ଦେଉ ଦେଉ ସେ ଏକାକୀ ସହର ପରିକ୍ରମା କରିପାରେ । ତା'ର ଆଖି ସାମନାରେ ପରସ୍ପର ମୁହଁ ଖୁମ୍ପାଖୁମ୍ପିରତ ପୁରୁଷସ୍ତ୍ରୀଙ୍କ ପ୍ରକାଶ୍ୟ ରୋମାନ୍‌ସକୁ ସେ ଭ୍ରୂକ୍ଷେପ କରିପାରେ । ଶିକ୍ଷା ବ୍ୟକ୍ତିତ୍ୱର ରୂପାୟନ କରିବାରେ କିଛି ବାହାଦୂରୀ ନାହିଁ, ବାହାଦୁରୀ ରହିଛି ନିଜ ଭିତରର ଆତ୍ମବଳରେ, ନିଜ ଉପରେ ବିଶ୍ୱାସକୁ ଅତୁଟ ରଖିବାରେ । ତାହା ହେଉପଛେ ସାତ ଦିନ, ଏପରିକି ସାତଟି ଘଣ୍ଟା କି ମୁହୂର୍ତ୍ତ, ଯେଉଁ ସମୟରେ ନାରୀ ନିଜ ଭିତରର ଗ୍ଲାନି ଭୁଲି ଯାଇ ପୁରୁଷର ଅହଂକାରକୁ ବଳି ଦେବ ଓ ନିଜକୁ ସ୍ୱାଧୀନ ବୋଲି ଘୋଷଣା କରିବ । ଅନୁ ଭିତରେ ସେଇ ଭାବଟିକୁ ଲେଖକ ତିଆରି କରିଛନ୍ତି ।

ହେଉ । ମହିଳାର ଶକ୍ତି ସଞ୍ଚାର ଘଟୁ, ହେଉ ସଶକ୍ତୀକରଣ, ଆତ୍ମଚେତନାର ବିକାଶ ଘଟି ନାରୀ ହେଉ ପୁରୁଷର ସମାନ୍ତରାଳ । ସେ ଯୌନ ଭୋଗର ଭଣ୍ଡାରଟିଏ ନୁହେଁ, ସୌନ୍ଦର୍ଯ୍ୟର ଅନବଦ୍ୟ ପ୍ରତିମା ରୂପେ ସେ କେବଳ ସ୍ନିଗ୍ଧ ବିହ୍ୱଳ ରୂପଶ୍ରୀ ଝରାଇବ ନାହିଁ, ସ୍ଫୁଲିଙ୍ଗର ବିଚ୍ଛୁରଣ କରିବ ମଧ । ତଥାସ୍ତୁ କୁହନ୍ତୁ । କିନ୍ତୁ କାହିଁକି ? ସ୍ଫୁଲିଙ୍ଗର ଦ୍ୟୋତନା ଭିତ୍ତିଟି କ'ଣ ?

କିଶୋରୀବାବୁ ବୌଦ୍ଧିକ ଜଗତରେ ରହସ୍ୟପ୍ରିୟ । ମନସ୍ତତ୍ତ୍ୱବିଦ୍ ପରି ମରମ କଥାରୁ ଟିକେ ଉଖାରି ଦେଇ ସେ ମୁରୁକି ମୁରୁକି ହସନ୍ତି, ଚାପା ସହାସ୍ୟ ବଦନରେ ଖେଳ ଦେଖିବାକୁ ବୋଧହୁଏ ତାଙ୍କୁ ଭଲ ଲାଗେ ଓ ଖେଳ ଦେଖୁ ଦେଖୁ ସେ ମଝିରେ ମଝିରେ ଛିଗୁଲେଇ ଦିଅନ୍ତି ଆଇବୁଢ଼ୀ ନାତୁଣୀ ବୋହୂକୁ କେଞ୍ଚୁଥିବା ପରି । ଅସଲ ଗୁମର ପେଡ଼ିର ଚାବିକାଠି ଯେମିତିକି ଅଛି ତାଙ୍କ ପାଖରେ । ଅଛି ତ । ସେଉଠୁ ସେ ଆରମ୍ଭ କରନ୍ତି ତାଙ୍କର ବର୍ଣ୍ଣନା ।

କାରଣ ରହିଛି ଧବଳୀ ଭିତରେ । ଧବଳୀ ଧଳା ରଙ୍ଗର ମାରୁତି, ଯଉତୁକ ସ୍ୱରୂପ ଆସିଛି । ଅଥଚ ଶାଶୁଘରେ ପହଞ୍ଚିବା ଯାଏ ଅନୁ ଜାଣି ପାରିଲା ନାହିଁ । ଶାଶୁଘରେ ପହଞ୍ଚିବା ରାତିର ପରଦିନ ସକାଳେ ଧବଳୀକୁ ସେ ଆବିଷ୍କାର କଲା । ସେଉଠୁ ତା'ର ଉଚ୍ଛୁଳି ପଡ଼ିଲା ସବୁ ପ୍ରତିକ୍ରିୟା ବାପାଙ୍କ ବିରୁଦ୍ଧରେ । ବିବାହର ସୂତ୍ରଧର ଉଚ୍ଚ ପଦସ୍ଥ ସମ୍ପର୍କୀୟ ରଙ୍ଗୁଭାଇ ଉପରେ ରାଗର ଜମାଟ । ଏଇ ପ୍ରଥମ ପରିଚ୍ଛେଦ 'ଧବଳୀ' ସମଗ୍ର ଉପନ୍ୟାସରେ ବିଚ୍ଛୁରିତ ଦ୍ୱନ୍ଦ୍ୱର ସଙ୍କେତ ବହନ କରେ ।

ବାପା ବ୍ରଜ ଜଣେ ଆଦର୍ଶ ଶିକ୍ଷକ ହୋଇ ଶେଷରେ ଯଉତୁକକୁ ସମର୍ଥନ କଲେ, ଧନ ପାଇଲେ କାହୁଁ ? ତଥାକଥିତ ଇଣ୍ଟେଲେକ୍ଚୁଆଲର ଆଚରଣ ଅଙ୍ଗୀକାର ବିଚ୍ୟୁତ ହୋଇପାରେ ? ଏହି ବିଚ୍ୟୁତିର ଅନ୍ୟତମ ଲକ୍ଷଣ ସେ ଦେଖିଲା ଦିଲ୍ଲୀରେ ସ୍ୱାମୀ ବିଶନ ବାବୁଙ୍କ ଆମେରିକା କମ୍ପାନୀର ଜିନିଷ ଭାରତ ସରକାରଙ୍କର କିଣିବାକୁ ନେଇ । ଅଫିସର ସ୍ତରରେ ତାଙ୍କ କମ୍ପାନୀର ଉତ୍ପାଦିତ ବସ୍ତୁକୁ ନିମ୍ନମାନର ବୋଲି ଦର୍ଶାଇ ଟେଣ୍ଡର୍ ରଦ୍ଦ କରି ଦିଆଯାଇଥିଲା । ଏପରି ସ୍ଥଳେ ବିଶନଙ୍କର କମ୍ପାନୀ ପାଖରେ ପତିଆରା ନଷ୍ଟ ହେବ ଓ ସେ ଚାକିରି ହରାଇବେ । ଏ ପରିସ୍ଥିତିରେ କ'ଣ କରାଯାଏ ? ଭାରତ ବର୍ଷରେ ପରିସ୍ଥିତି ଅନୁକ୍ରମେ ଉପସ୍ଥିତ କର୍ତ୍ତବ୍ୟ (?) ବିଷୟଟି କାହାକୁ ଅଜ୍ଞାତ ? ବସ୍ତୁତଃ, ବିଶନବାବୁ ଶ୍ୱଶୁରଙ୍କ ଠାରୁ ଆଣିଥିଲେ ଚିଠିଟିଏ, ତାଙ୍କର କୋଉ ଏକ କଲେଜ ବେଳର ସାଥୀ ଗୋବିନ୍ଦଜୀଙ୍କ ଉଦ୍ଦେଶ୍ୟରେ ଲିଖିତ । ଗୋବିନ୍ଦଜୀ ବିଭାଗୀୟ ମନ୍ତ୍ରୀଙ୍କୁ ଧରି କାମଟି ପାଇଁ ଶେଷ ସ୍ତରରେ ସୁପାରିଶ କରାଇ ନେଲେ । ଶ୍ୱଶୁର ଜରାସନ୍ଧ ବୀର ହୋଇଥିଲେ ଜୋଇଁ କଂସହିଁ ହେବ । କିନ୍ତୁ ବୈଚିତ୍ର୍ୟ ଏହି ଯେ ଅସମ୍ଭବକୁ ସମ୍ଭବ କରି ପାରୁଥିବା ଏହି କଂସାସୁରମାନେ ନିଜର ବିଜୟ ଉତ୍ସବ

ପାଳନ କରନ୍ତି ଶକ୍ତ ପାନୀୟ ଭିତରେ, ''ମହାତ୍ମା ଗାନ୍ଧି କି ଜୟ'' ବୋଲି କହି । ଅନୁର ବିଶ୍ୱାସ ତୁଟିଯାଏ ଏହି ଉତ୍ସବର ଜୟଧ୍ୱନି ଶୁଣି । ତେଣୁ ବିଶନବାବୁଙ୍କ ପ୍ରତି ପତି ପରମ ଦେବତାର ସବୁ ମଧ୍ୟଯୁଗୀୟ ଭକ୍ତି ଭ୍ରାନ୍ତିରେ ପରିଣତ ହୁଏ । ସେହି ବିକାର ବଶତ ସ୍ୱାମୀ ମିଳନକୁ ସେ କରେ ପ୍ରତ୍ୟାଖ୍ୟାନ ।

କିନ୍ତୁ କେତେ ଦିନ ? ଅବଶ୍ୟ ଏହା ଉପନ୍ୟାସର ବିଚାର ପରିସର ନୁହେଁ । ପ୍ରତିବାଦର ଉଗ୍ରତା ଓ ଘନତା ତା'ର ବିଜୟର ସଙ୍କେତ ଦିଏ । କାଳର ଦୀର୍ଘତା ନୁହେଁ, ଅଙ୍ଗିକାରର ସ୍ୱଚ୍ଛତା ଲୋଡ଼ା । ଅନୁର ଅଙ୍ଗିକାର ଅଛି, ତାହା ଶିକ୍ଷକ ପରିବାରର ଯେତେ ସବୁ ରୂଢ଼ିବାଦୀ ମନୋବୃତ୍ତିର ପ୍ରଭାବ ହୋଇପାରେ, ଅଧିକନ୍ତୁ ଉଚ୍ଚଶିକ୍ଷାଜନିତ ମୌଳିକତାବୋଧରୁ ତାହା ବହୁ ପରିମାଣରେ ଶକ୍ତି ଆହରଣ କରେ । ଏ କ୍ଷେତ୍ରରେ ଅନୁ ଦେଖିଛି ତା'ର କାରୁଣ୍ୟ କାତର ମା'କୁ, ଯିଏ ସଦାଚାରିଣୀର ବ୍ରତ ଧରି ଗୋଟିଏ ପରିବାରର ଗ୍ଲାନିକୁ ଦେହ ଭିତରେ ସବାର କରେ ମଳିନ କରୁଣ ମାତୃ ମୂର୍ତ୍ତିଟିଏ ହୋଇ ସହିବାର ଅମାପ ଧୈର୍ଯ୍ୟ ଧରି । ଅନୁର ପ୍ରେରଣା ତାର ଶିକ୍ଷକ ବାପା ନୁହଁନ୍ତି, ମଳିନା ମା । ବାପା ତ ଥିଲେ ଯୌବନରେ ଗାନ୍ଧିବାଦୀ, ସଂଗ୍ରାମ ବ୍ରତୀ, କିନ୍ତୁ ତାହା ଅପସରି ଗଲା କାହିଁକି ? ସଂସାରର କଠୋରତା, ରୁକ୍ଷତା, ଯାହାକୁ ବାସ୍ତବ ସଂଗ୍ରାମ ନାମରେ ସମୁଖୀନ ହେଉ ହେଉ ମଣିଷ ଭୁଲିଯାଏ ଯୌବନର ଆଦର୍ଶ ଓ କରିବାର ପଣ ? ଅନୁ ତାହା ସ୍ୱୀକାର କରେ ନାହିଁ । ଗାନ୍ଧି ହୁଏତ ଅନୁ ପରି ଏହି ପିଢ଼ିର ଯୁବକଯୁବତୀଙ୍କ ପାଇଁ ଗୋଟିଏ ଇତିହାସ, ଗୋଟିଏ ସ୍ୱପ୍ନ ବା କିମ୍ବଦନ୍ତୀ କିନ୍ତୁ ତା'ର ଅଛି ମହିମା, ହୋଇପାରେ ସେ ସୁପ୍ତ, କିନ୍ତୁ ତନ୍ତ୍ରୀର କେଉଁ ଏକ ସ୍ତରରେ ତା'ର ସ୍ପଷ୍ଟ ଅବସ୍ଥିତି ଅଛି । ଭାରତୀୟ ଜୀବନବୋଧର ଉତ୍ତୁଙ୍ଗ ଶିଖର ତା'ର ସ୍ପର୍ଶ ପାଇଛି କେତେ କାଳରୁ । ଅନୁ ସେହି ଶିଖରଚୁମ୍ବିତ ହିଲ୍ଲୋଳର ମୃଦୁ କମ୍ପନଟିଏ । ସେ ଶକ୍ତି ପାଇଛି କେତୋଟି ମୁହୂର୍ତ୍ତ ପାଇଁ ଦେଖିଥିବା ମରଣ ଶେଯ ଉପରେ ତାର ଜେଜେ ଶ୍ୱଶୁରଙ୍କ ଠାରୁ । ଯିଏ ତା' ମନରେ ଭରି ଦେଇଥିଲେ ରାଣୀ ଗୁମ୍ଫା ଦେଖିବାର ଲାଳସା । ତାଙ୍କରି ପରାମର୍ଶକୁ ଏଡ଼େଇ ନପାରି ଶାଶୁଘରେ ପାଦ ଦେବାର ପରଦିନ ଏକାକୀ ସେ ଯାଇଥିଲା ଇତିହାସକୁ ଦେଖିବାକୁ । କଣ ଶିଖିଲା ସେ ? ରାଣୀ ଗୁମ୍ଫାରେ ''ହାତୀ ଗାଧୋଉଛନ୍ତି, ହରିଣ ଉଡୁଛନ୍ତି '' । ଜେଜେଙ୍କର ଏ ସଙ୍କେତ ଭିତରେ କି ପରମାର୍ଥ ଏମିତି ଲୁଚି ରହିଛି ? ସେ ଅନୁକୁ କହିଥିଲେ, ''ତୁ ପାରିବୁ'' ନାରୀର ଜନ୍ମ ନୁହେଁ ଗୃହଦେବୀ ହେବା, ସେ ଚାହିଁଲେ ରାଣୀଗୁମ୍ଫାର ଜୀବମାନଙ୍କ ପରି ଉଡ଼ି ପାରିବ, ବୁଡ଼ି ପାରିବ । କାଳର ସ୍ଥବିର ପଥର ଫଟାଇ ସେ ତା'ର ଆଧୁନିକ ବିଚାରର ପ୍ରଶସ୍ତ ଦିଗନ୍ତ ମେଲାଇ ଦେଇପାରିବ ।

ଅନୁ ସତ ସତିକା ବିଦ୍ରୋହିଣୀ । ଚିନ୍ତା ଓ କାର୍ଯ୍ୟର ସମନ୍ୱୟରେ ସେ ଯେମିତି ପରମ୍ପରାଅନୁଗତ ସେତିକି ଯୁକ୍ତିଶୀଳ ଆଧୁନିକତାର ସହ୍ଯୋଗୀ ବ୍ୟକ୍ତି ମଧ୍ୟ । ଯେଉଁଠି ଅନ୍ତରର

ବଳ ଆଶ୍ରୟ ଖୋଜେ ସତ୍‌କଳ୍ପନା ଓ ସରଳ ବିଶ୍ୱାସର ସେଇଠି ସ୍ୱଷ୍ଟତା ଓ ନିର୍ଭୀକତାର ମନ୍ତ୍ର ଯାଦୁପରି କାର୍ଯ୍ୟ କରେ । ଅନୁ ତେଣୁ ବିଶନବାବୁଙ୍କ ପାଖରେ ସର୍ତ୍ତ ରଖେ 'ଆଉ ସେପରି କହିବ ନାହିଁ'; ଅର୍ଥାତ୍ ଗାନ୍ଧିଙ୍କର ପବିତ୍ର ନାମ ଅପବିତ୍ର କର୍ମ ସହ ଯୋଡ଼ିବ ନାହିଁ । ଏଇ ସର୍ତ୍ତଟି ଯେମିତି ମିଳନ ପାଇଁ ଅପେକ୍ଷା କରିଥିଲା ନିୟର୍କରେ ପହଞ୍ଚିବା ଦିନ ଯାଏ । ତା'ର ପରଦିନ ବିଶନବାବୁ ଦୁଃସମ୍ବାଦଟିଏ ଶୁଣାଇ ଦେଲେ ଅନୁକୁ, ''ଗତ ରାତିରେ ଜେଜେ ଚାଲିଗଲେ ।'' ସମ୍ବାଦଟି କରୁଣ । କିନ୍ତୁ ସମ୍ବାଦ ଶୁଣି ଅନୁ କହୁଛି ''ମାନେ ଆମେ ଯେତେବେଳେ'' ? ହଁ, ସେବେଳଟି ଥିଲା ସେମାନଙ୍କର ହନିମୁନର ମୁହୂର୍ତ୍ତ । ପୂର୍ବରାତିରେ ଭୁବନେଶ୍ୱରରେ ଜେଜେ ଶେଷନିଃଶ୍ୱାସ ଛାଡ଼ିବା ବେଳକୁ ନିୟୁର୍କରେ ଠିକ୍ ସେହି ସମୟରେ ଅନୁର ଦାମ୍ପତ୍ୟ ପହିଲୁ ଶ୍ୱାସ ଗ୍ରହଣ କରୁଥିଲା ।

ଜେଜେ କହିଥିଲେ, 'ତୁ ପାରିବୁ' । କ'ଣ ପାରିଲା ଅନୁ ? ବୃଦ୍ଧର ଆଶୀର୍ବାଦ ଅମେଣ୍ଟଣ ହୁଏ ନାହିଁ । ସେ ସ୍ୱାମୀକୁ ପ୍ରବର୍ତ୍ତାଇ ପାରିଲା, ଅନ୍ତତ ଏଇ ବିଶ୍ୱାସଟିଏ ଜଗାଇଲା- ସେ ମହାତ୍ମା ଗାନ୍ଧିଙ୍କୁ ବ୍ୟଙ୍ଗ କରିବ ନାହିଁ, ଯେମିତି ସଚରାଚର ଭାରତ ବର୍ଷରେ କରାଯାଉଛି । ସେଇ ବିଶ୍ୱାସ ବଳରୁ ବିଶନବାବୁ ହାରିଗଲା ପରି ସ୍ୱୀକାର କଲେ, ''ଅନୁ, ୟୁ ଆର୍ ଗ୍ରେଟ୍ ।''

ନାରୀର ସ୍ୱାତନ୍ତ୍ର୍ୟ, ନାରୀ ଜାଗରଣ ବା ସଶକ୍ତୀକରଣର ସ୍ଲୋଗାନ କେତେ ଅର୍ଥପୂର୍ଣ୍ଣ, ଯଦି ତା'ର ଉଦାହରଣ ନଥାଏ । ଆମର ଜାତୀୟ ଆଭିମୁଖ୍ୟ ସହ ସାମାଜିକ ଆଚରଣ ଓ ସାହିତ୍ୟ ସ୍ତରରେ ତା'ର ଭାବସଂଘଟନ ଅଦ୍ୟାବଧି ଏକାତ୍ମ ହୋଇପାରି ନାହିଁ ବିଭିନ୍ନ କାରଣରୁ । ନାରୀ ନିଜକୁ ଅବଳା ମନେ କରୁଥିବା ପରିପ୍ରେକ୍ଷୀରେ ଏହି ସାମାଜିକ ଭାବ ସମୁଚ୍ଚୟର ବିକଳ ରୂପ ତା'ର ଅସ୍ତିତ୍ୱକୁ ଅସ୍ୱୀକାର କରିବାକୁ ଉଦ୍ୟତ । ସେଥିପାଇଁ ନାରୀ ପ୍ରତି ସମ୍ମାନ ହ୍ରାସ ହେଉଛି । ଅନୁପମା ଭିତରେ ଶ୍ରୀଯୁକ୍ତ ଦାସ ସଂଚାର କରିଛନ୍ତି ପୁରୁଷର ଦାମ୍ଭିକତା, ପାରିବାପଣର କଠୋରତା । ନାରୀ ଅସମର୍ଥ ନୁହେଁ । ବରଂ କୁହାଯାଉ, ଭାରତ ପରି ଏକ ଦେଶରେ ସ୍ୱାମୀପଣ ଯେଉଁଠି ବୋଫର୍ସ୍ ପ୍ରବଣ, ନାରୀର ଭୂମିକା ସେଇଠି ଅନେକ ଭଲ । ନାରୀ ଭଲ ପତ୍ନୀ ଓ ଦେଶର ଅଗ୍ରଗାମୀ ଭଲ ନାଗରିକର ମା' ।

୨. 'ନେତା ଓ ନେତ୍ରମଣି'- ରଚନା କ୍ରମରେ ଦ୍ୱିତୀୟ କିନ୍ତୁ ପ୍ରକାଶନରେ ତୃତୀୟ । ଏଇଟି ନେତାଙ୍କ ସଂସାରକୁ ନେଇ, ଏଣୁ କୁହାଯାଉ ଏକ ରାଜନୀତିକ ଉପନ୍ୟାସ । 'ଅନ୍ଧ ଦିଗନ୍ତ', 'ଅବ୍ୟାପାର', 'ଟାଉଟର' ସମେତ 'ଶକୁନ୍ତଳା' ଏଥିପୂର୍ବେ ଲୋକପ୍ରିୟତା ଅର୍ଜନ କରିଛି । 'ଅନ୍ଧ ଦିଗନ୍ତ' ସ୍ୱାଧୀନତା ସଂଗ୍ରାମ କାଳର ରାଜନୀତି ଭିତ୍ତିକ ହେବାବେଳେ 'ଶକୁନ୍ତଳା' ସତୁରି ଦଶକର ନକ୍‌ସଲ ଆନ୍ଦୋଳନକୁ ଆଧାର କରିଛି । ଉଭୟ କୃତିରେ ଦ୍ୱନ୍ଦ୍ୱର କେନ୍ଦ୍ର ବିନ୍ଦୁ କ୍ଷମତା । କ୍ଷମତା ପଛରେ ଆଦର୍ଶର ପ୍ରସଙ୍ଗ ଯେତେ ଶକ୍ତିଶାଳୀ ହେଉ ବା ନହେଉ ଚରିତ୍ରମାନଙ୍କର ବ୍ୟକ୍ତିଗତ ବିଶ୍ୱାସ ଓ ଆଚରଣ ସେଥିରେ ମୁଖ୍ୟତ ବର୍ଣ୍ଣିତ ହୋଇଛି । ସଂପ୍ରତି

'ନେତା ଓ ନେତ୍ରମଣି' ଏହି ଧାରାର ଏକ ଭିନ୍ନ କୃତି ଏବଂ ପ୍ରଚଳିତ ରାଜନୀତିର ଏକ ମୁଗ୍ଧ ପ୍ରତିଫଳନ । ବାହୁଲ୍ୟ ହେବ କହିଲେ ଯେ ସାଂପ୍ରତିକ ରାଜନୀତି ଆଦର୍ଶ ବା ଦର୍ଶନରୁ ମୁକ୍ତ ଷଡ଼ଯନ୍ତ୍ରମୂଳକ ଅପ-ଆଚାର ସମ୍ପନ୍ନ କର୍ମ, ଏକ କ୍ଷମତାଲୋଭର ସ୍ୱେଚ୍ଛାଚାର; ଯେଉଁଠି ନ୍ୟାୟନୀତି ବା ସୁରୁଚିସମ୍ପନ୍ନ ମୂଲ୍ୟବୋଧର ହତ୍ୟା କରାଯାଇପାରେ ବ୍ୟକ୍ତି ସ୍ୱାର୍ଥ ପାଇଁ । ବ୍ୟକ୍ତି ଦଳକୁ ପ୍ରଭାବିତ କରେ ନିଜର ଇଚ୍ଛାରେ ଜାତୀୟ ସ୍ୱାର୍ଥକୁ ଆଖିବୁଜି ଦେଇ । ଯେଉଁ କାଳରୁ ଇଣ୍ଡିଆ ଓ ଇନ୍ଦିରା ଏକ ହୋଇଗଲେ, ରାଜନୀତିର ସ୍ଲୋଗାନ, ଦଳୀୟ ବିଶ୍ୱାସ ଓ ଆଚରଣ ଭିତରେ ସେହିକାଳୁ ବ୍ୟକ୍ତି ରାଷ୍ଟ୍ରର ବିକଳ୍ପ ରୂପେ ଗଣାହେଲା ଏବଂ ଦଳ ଭିତରେ ବ୍ୟକ୍ତିକୁ ସର୍ବାଗ୍ରେ ଉପସ୍ଥାପନ କରାଗଲା । ରାଷ୍ଟ୍ରପୂଜାର ସ୍ଥାନାଧିକାର କରିଲା ବ୍ୟକ୍ତିପୂଜା । ବ୍ୟକ୍ତି କ୍ଷମତା କନ୍ଦଳରେ ବୁଡ଼ି ରହି ଦଳୀୟ ସ୍ୱାର୍ଥକୁ ରାଷ୍ଟ୍ରର ସ୍ୱାର୍ଥ ବୋଲି ଗ୍ରହଣ କରିଲା । 'ନେତା ଓ ନେତ୍ରମଣି' ଭାରତବର୍ଷର ଏପରି ଏକ ଜୀବନ୍ତ ରାଜନୈତିକ ଭ୍ରଷ୍ଟାଚାରର ଚିତ୍ର ଆମକୁ ଦିଏ । କଳୁଷିତ ଏକ ବ୍ୟବସ୍ଥାର ଅନ୍ତରୂପ କେତେ ବୀଭତ୍ସ ଓ ଚକ୍ରାନ୍ତର ଗଡ଼ ଅଜେୟ ହୋଇପାରେ, ଏହା ତା'ର ଏକ ନିଦର୍ଶନ ।

ରାଜନୀତି ବିଜ୍ଞାନର ଛାତ୍ର ବିରାଜ ମହାନ୍ତି ଜୟ ପ୍ରକାଶ ନାରାୟଣଙ୍କ ଆଦର୍ଶରେ ଅନୁପ୍ରାଣିତ । ସ୍ୱଭାବତ ଜୀବନ ପ୍ରତି ସୁକୁମାର ଦୃଷ୍ଟି ତାଙ୍କୁ କରିଛି ଦୟାର୍ଦ୍ର । ଶ୍ରଦ୍ଧା ସହାନୁଭୂତିରେ ପ୍ଲୁତ ତାଙ୍କର କୋମଳ ହୃଦୟ ତାଙ୍କୁ ଦେଇଛି ଏକ ଭିନ୍ନ ବ୍ୟକ୍ତିତ୍ୱ । ସାମାଜିକ ସଙ୍ଗଠନ ଓ ଯୁବ ଆନ୍ଦୋଳନ ମାଧ୍ୟମରେ ସେ ଦୁର୍ନୀତିମୁକ୍ତ ଏକ ବ୍ୟବସ୍ଥାର ପରିକଳ୍ପନା କରିଛନ୍ତି । କର୍ମ ମାଧ୍ୟମରେ ଜନ ସହଯୋଗ ହେଉଛି ତାଙ୍କର ପଦ୍ଧତି । କର୍ମୀ ମୂଳତ ଜଣେ ପ୍ରେମୀ, ଜୀବନ ପ୍ରେମ ତା'ର ସ୍ୱଭାବ ଧର୍ମ । ଏହି ସ୍ୱଭାବ ବଶତ ଯୌବନରେ ସେ ଭଲପାଇ ବସିଥିଲେ ମାମୁଁଘର ଗାଁର କେଉଁ ଏକ ଝିଅ ନିରୁପମାକୁ । ମାତ୍ର ତାହାଥିଲା ଅନୁଚ୍ଚାରିତ ଅନ୍ତରର ବାସନା କେବଳ । ଚାରୁଚଞ୍ଚଳ ହୃଦୟ ତିଳେ ହେଲେ ନୈତିକତାର ସୀମା ଲଙ୍ଘନ କରିନଥିଲା । ଘଟଣା କ୍ରମେ ତାଙ୍କରି ମଧ୍ୟସ୍ଥତାରେ ନିରୁପମା ବିଭା ହୁଏ ନବଘନକୁ । ଝିଅଟିଏ ଜନ୍ମ ହେବା ପରେ ନବଘନ ସନ୍ନ୍ୟାସରେ ଅନ୍ତର୍ଦ୍ଧାନ ହୋଇଯାଏ ଏବଂ ନିରୁପମା ଶିକ୍ଷୟିତ୍ରୀ ହୋଇ ଝିଅକୁ ଛାଡ଼ି ଅନ୍ୟତ୍ର ଚାଲିଯାଏ । ସେଇ ଝିଅ ନେତ୍ରମଣିକୁ ବାପର ସ୍ନେହରେ ବାନ୍ଧି ଆଣନ୍ତି ବିରାଜବାବୁ । ସମୟାନ୍ତରରେ ତାଙ୍କ ଗଠିତ ଦଳ କ୍ଷମତାକୁ ଆସିଲେ ସୁଦ୍ଧା ବିରାଜବାବୁ କ୍ଷମତାରୁ ଦୂରେଇ ରୁହନ୍ତି । ଅପର ପକ୍ଷରେ ସ୍ଥାନୀୟ କୌଣସି ଏକ କଲେଜର ଦର୍ଶନ ଅଧ୍ୟାପକ ଡଃ. ମୋହନ ପ୍ରଧାନ ପରୀକ୍ଷାରେ କପି ଧରିବା କାରଣରୁ ଛାତ୍ର ଅଶାନ୍ତି ପ୍ରସଙ୍ଗରେ ଆଦର୍ଶବାଦୀ ନେତା ବିରାଜ ମହାନ୍ତିଙ୍କ ସହ ସାକ୍ଷାତ କରିବାକୁ ଆଗ୍ରହୀ ହୁଅନ୍ତି । ଏହି ସଂକ୍ରାନ୍ତରେ ତାଙ୍କୁ ସାହାଯ୍ୟ କରେ ତାଙ୍କର ଜଣେ ମୁଗ୍ଧ ଛାତ୍ରୀ ଭାରତୀ । ଭାରତୀ ବିରାଜବାବୁଙ୍କ ପାଳିତ କନ୍ୟା ନେତ୍ରମଣିର ଅନ୍ତରଙ୍ଗ ବନ୍ଧୁ ।

ବିରାଜବାବୁଙ୍କ ସହ ପ୍ରାଥମିକ ଦେଖାରୁ ମୋହନ ତାଙ୍କ ପ୍ରତି ଆକୃଷ୍ଟ ହୁଏ ଓ ଅଧାପନା ଛାଡ଼ି ରାଜନୀତିରେ ତାଙ୍କୁ ଗୁରୁ ରୂପେ ଗ୍ରହଣ କରେ । ବିରାଜବାବୁ ମଧ୍ୟ ଅନୁଭବ କରନ୍ତି ମୋହନ ଭିତରେ ଲୁଚି ରହିଛି ପ୍ରତିଭା, ସୁନଦ୍ଧ ବୌଦ୍ଧିକତା । ସେ ସୁଦମ ନୁହଁନ୍ତି । ସୁଚାଳିତ ହେଲେ ସେ ଅଦ୍ଭୁତ ସଫଳତା ଆଣି ଦେଇପାରନ୍ତି । ଗୋଟାଏ ବ୍ରିଲିଆଣ୍ଟ ପିଲା ସେ । ଏହା ପ୍ରମାଣିତ ହେଲା ବିରାଜଙ୍କୁ ଉପନିର୍ବାଚନରେ ଜିତାଇ ଆଣିବାରେ । ଫଳତଃ, ଦଳକୁ ମିଳିଲା ଲୋକପ୍ରିୟତା । ମୋହନଙ୍କୁ ଉପନିର୍ବାଚନ କାଳରେ ସାହାଯ୍ୟ କରି ନେତ୍ରମଣି ହୋଇଉଠିଲା ମୋହନ ହୃଦୟର ମଣି । ବିରାଜବାବୁ ଶିକ୍ଷା ମନ୍ତ୍ରୀ ହେଲେ । ବିଭା ଦେଲେ ଝିଅକୁ ମୋହନ ସାଙ୍ଗରେ । ବିରାଜଙ୍କ ଦଳ ଜେଏପିର ଲୋକପ୍ରିୟତାରେ ବିରୋଧୀ ଦଳ ଚକ୍ରାନ୍ତ କରିଲେ ଦଳକୁ ନାନା ଭ୍ରଷ୍ଟାଚାରରେ ଯୁକ୍ତ କରି । ମୁଖ୍ୟତଃ ଘଟୁଥିବା କେତେକ ସାଧାରଣ ଘଟଣାକୁ ସମ୍ବାଦ ପତ୍ରରେ ବ୍ୟାପକ ପ୍ରଚାର କରି ଲୋକ ତିକ୍ତତା ବଢ଼ାଇ ଦିଆଗଲା । ଏଥିରେ ଜେଏପିର ବିଧାୟକମାନେ ଭବିଷ୍ୟତର ନିର୍ବାଚନରେ ଶୋଚନୀୟ ପରାଜୟ ଆଶଙ୍କା କରି ଅସନ୍ତୋଷ ପ୍ରକାଶ କଲେ ଏବଂ କ୍ରମେ ଅସନ୍ତୁଷ୍ଟ ଗୋଷ୍ଠୀ ନେତା ପରିବର୍ତ୍ତନ କରାଇ ବିରାଜଙ୍କୁ ମୁଖ୍ୟମନ୍ତ୍ରୀ ଆସନରେ ବସାଇଲେ । ମନ୍ତ୍ରୀ ମଣ୍ଡଳରେ ବିରାଜ ସ୍ଥାନ ଦେଲେ ତାଙ୍କର ବ୍ରିଲିଆଣ୍ଟ ଜୋଇଁ ମୋହନଙ୍କୁ । ଏଥିରେ ବିରୋଧୀ ଦଳର କମ୍ ଭୂମିକା ନଥିଲା । ବିରୋଧୀ ଦଳ ଭାବିଥିଲା ବିରାଜ ମହାନ୍ତି କାନ୍ଦୁରା ଲୋକ, ଦୁଖରେ କାନ୍ଦି ପକାଏ, ସେ ଖାଲି କାନ୍ଦିବ, ନରମ ମୁହଁରେ ଅମାପ ଅଶ୍ରୁଳ ବେଦନା ହେବ ତା'ର ପତନର କାରଣ । ଜନତାର ଦୁଃଖରେ ବିରାଜ ମହାନ୍ତି କାନ୍ଦିଲେ, ମାତ୍ର ସମସ୍ତଙ୍କୁ ଚକିତ କରି ଯେ ଆଇନର ଠିକ୍ ପ୍ରୟୋଗ ହେଉଛି । ନିୟମପାଳନ କ୍ରାନ୍ତି ଆଣିଛି, ସ୍ୱଚ୍ଛ ଶାସନର ଯୁଗ ଆସିଛି । କିନ୍ତୁ ତାହା କୌଣସି ଦଳକୁ ସୁହାଇଲା ନାହିଁ । ଷଡ଼ଯନ୍ତ୍ର ଚାଲିଲା ବିରୋଧୀଦଳ ପକ୍ଷରୁ । ଅପପ୍ରଚାର କରାଗଲା ବିରାଜ ମହାନ୍ତିଙ୍କ ନାମରେ ତାଙ୍କର ଯୌବନର ଲୁକାୟିତ ପ୍ରେମକୁ ନେଇ । ନିରୁପମା ସଂପର୍କରେ ଦି'ଧାଡ଼ି କବିତା ସେ ଲେଖିଥିଲେ ସେଇ ଯୌବନ କାଳରେ । ବିରୋଧୀ ଦଳର ଜଣେ ନୂଆ ସଭ୍ୟ ତରୁଣୀ ସୁଶ୍ରୀ ହିମାନୀ ମାଧମରେ କବିତାଟି ମୁଖ୍ୟମନ୍ତ୍ରୀଙ୍କ ଆଲମିରାରୁ ଚୋରି କରି ନିଆଗଲା । ମୋହନଙ୍କୁ ଉପମୁଖ୍ୟମନ୍ତ୍ରୀ ହେବାର ଲାଳସା ଦେଖାଇ ଏବଂ ଅନ୍ୟମାନଙ୍କୁ ଧନ ଦେଇ ଦଳତ୍ୟାଗ କରାଇ ବିରୋଧୀଦଳ ପ୍ରସ୍ତୁତ ହେଲା ଅନାସ୍ଥା ପ୍ରସ୍ତାବ ଆଣିବ । ଏହି ସମୟରେ ଘଟିଲା ଏକ ସତ୍ୟର ଉନ୍ମୋଚନ । ବିରାଜଙ୍କ ଅଜ୍ଞାତ ସାରରେ ଉପନିର୍ବାଚନ ବେଳେ ମୋହନ ଆଣିଥିଲା ପାର୍ଟିର ପୃଷ୍ଠପୋଷକ ଶିଳ୍ପପତି ତଥା ଛାତ୍ରୀ ଭାରତୀର ପିତା ଶିବ ରାଉତରାଙ୍କ ଠାରୁ ଦଶଲକ୍ଷ ଟଙ୍କା । କିନ୍ତୁ ବିରାଜଙ୍କ ସରକାର ଶିବ ରାଉତରାଙ୍କୁ କୌଣସି ପ୍ରକାର ଆଇନର ରକ୍ଷାକବଚ ଦେଇ ନଥିବା କାରଣରୁ ଶ୍ରୀ ରାଉତରା ବର୍ତ୍ତମାନ ବିରୋଧୀ ଦଳକୁ ଏହି ସମ୍ବାଦଟି ଦେଇ ଦେଲେ । ଏହାକୁ ପାଣ୍ଠି କରାଗଲା ମୋହନଙ୍କୁ ଦଳ ତ୍ୟାଗ କରିବାରେ । ଏହି କାରଣରୁ ଜନସାଧରଣଙ୍କ ଦୃଷ୍ଟିରେ ବିରାଜ ହେଲେ ନିନ୍ଦିତ, ଅସମର୍ଥ ଏକ ମୁଖ୍ୟମନ୍ତ୍ରୀ । ଆସନ୍ନ ଅନାସ୍ଥା ପ୍ରସ୍ତାବରେ ସେ ହାରିବା ନିଶ୍ଚିତ ମନେ

କରି ବିଚଳିତ ହୋଇପଡ଼ିଲେ । ମାନସିକ ସୁସ୍ଥତା ହରାଇଲେ । ନିଦ ବଟିକା ଖାଇ ଅଜ୍ଞାତସାରରେ ଆତ୍ମହତ୍ୟା କଲେ । କିନ୍ତୁ ତାଙ୍କର ବୁଦ୍ଧିମତୀ ପତ୍ନୀ ବିରାଜଙ୍କୁ ନିନ୍ଦାରୁ ତ୍ରାହି କରିବା ପାଇଁ ପ୍ରଚାର କଲେ ଯେ ତାଙ୍କର 'ହୃଦରୋଗ' ଥିଲା ଓ ତାହାହିଁ ହେଲା ମୃତ୍ୟୁର କାରଣ ।

ଅର୍ଥ ବା କ୍ଷମତା ଲାଳସାରୁ ଦଳତ୍ୟାଗ ସାଂପ୍ରତିକ ରାଜନୀତିର ଏକ କ୍ରୁର ବ୍ରଣ । ସେହିପରି ଯୌନାଚାର ମଧ୍ୟ । ମୋହନ ପ୍ରଧାନଙ୍କ ଦଳତ୍ୟାଗର ଗୋପନ ଅଭିନୟର ମୂଳରେ ଥିଲା ବିଚକ୍ଷଣ ଯୁବତୀ ହିମାନୀ । 'ରାଜନୀତିରେ ନାରୀ' ଉପରେ ଗବେଷଣା ଆଳରେ ବିରୋଧୀ ଦଳର ଗୁପ୍ତଚର ଭାବେ ସେ ରୂପର ପ୍ରଭାବ ପକାଇ ମୋହନଙ୍କୁ ମୋହିନେଲା । ବିରାଜଙ୍କ ପ୍ରତି ଏହାଥିଲା ଏକ କୃତଘ୍ନତା । କାର୍ଯ୍ୟରତ ମୁଖ୍ୟମନ୍ତ୍ରୀଙ୍କ ବିୟୋଗରେ ଆସେମ୍ବ୍ଲି ଅଧିବେଶନ ଘୁଞ୍ଚାଇ ଦିଆଗଲା । ସମଗ୍ର ରାଜ୍ୟ ଶୋକାଭିଭୂତ ହେଲା । କାମଚଳା ମୁଖ୍ୟମନ୍ତ୍ରୀ ବଛାଗଲେ । ଜେଏପି ଦଳ ନିକଟେଇ ଆସୁଥିବା ନିର୍ବାଚନରେ ମୋହନଙ୍କୁ ନେଇ ଅନୁକମ୍ପାମୂଳକ ଭୋଟ ପାଇବ ଓ ସରକାର ଗଢ଼ିବ ଏପରି ଆଶା ବଳବତ୍ତର ହୋଇଗଲା ।

ଏପରି ଏକ ରାଜନୈତିକ ଚିତ୍ରକୁ ଆଧାର କରି 'ନେତା ଓ ନେତ୍ରମଣି' ଉପନ୍ୟାସର ଆକର୍ଷଣୀୟ ଶୈଳୀ ଉପନ୍ୟାସକୁ କରିଛି ସୁଖପାଠ୍ୟ, ମନୋଜ୍ଞ ଓ ବିଶ୍ଳେଷଣ ଧର୍ମୀ । ମଧ୍ୟ ଦେଇଛି ମନସ୍ତାତ୍ତ୍ୱିକ ପର୍ଯ୍ୟବେକ୍ଷଣ । ଏଥିରେ ରାଜନୀତିକ ଘଟଣା ପଟ୍ଟଭୂମି ମାତ୍ର । ଉପନ୍ୟାସଟି ଚରିତ୍ର ପ୍ରଧାନ । ଚରିତ୍ରମାନେ ସମସାମୟିକ ଦୃଶ୍ୟାବଳୀର ପ୍ରତିନିଧି । ଏହିପରି ଏକ ବାସ୍ତବଧର୍ମୀ ଆଖ୍ୟାନକୁ ନେଇ ଶ୍ରୀ ଦାସ ଆମର ସାଂପ୍ରତିକ ଜୀବନବୋଧର ମର୍ମ ଉଦ୍‌ଘାଟନ କରିଛନ୍ତି । ଏହାହିଁ ସତ୍ୟ ଯେ ରାଜନୀତି ହୋଇଛି ଆଜିର ବିଚାରର ସର୍ବମୂଳ ଆଧାର । ପ୍ରଥମେ ନୀତି, ତା'ପରେ ରାଜନୀତି ଏପରି ବିଶ୍ୱାସ କରୁଥିବା ବ୍ୟକ୍ତିମାନଙ୍କର କ୍ଷମତା ଆସକ୍ତି ନଥାଏ କିନ୍ତୁ ଯେଉଁମାନେ ରାଜନୀତି କରନ୍ତି ସେମାନେ ନୀତିକୁ ଜଳାଞ୍ଜଳି ଦିଅନ୍ତି କ୍ଷମତା, ଅର୍ଥ ଓ କାୟାକାମନା ଚରିତାର୍ଥ କରିବା ପାଇଁ । ଆଜିର ଜୀବନର ରମଣୀୟତା ଯେମିତିକି ତିଷ୍ଠିଛି ଏହି ତିନୋଟି ଭୋଗପ୍ରଧାନ ବିଷୟ ଉପରେ । ରାଜନୀତିର ସର୍ବଗ୍ରାସୀ କରାଳତା ଆଜି ବାସ୍ତବରେ ସ୍ନେହଶ୍ରଦ୍ଧା ସମ୍ବେଦନା ପରି ମାନବିକ ଗୁଣଗୁଡ଼ିକୁ ନଷ୍ଟ କରି ମୂଲ୍ୟବୋଧର ମୁଣ୍ଡରେ ନଡ଼ିଆ ଭାଙ୍ଗିଲାଣି । ଏପରି ଚିତ୍ରର ଝଲକ ମିଳେ । ବ୍ୟକ୍ତି ତା'ର ଉଦ୍ଦେଶ୍ୟ ପୂରଣରେ ଅସମର୍ଥ ହେଲେ ରାଜନୀତିର କୂଟ କାପଟ୍ୟର ଆଶ୍ରୟ ନିଏ, କଳାକୌଶଳର କାରୁକାର୍ଯ୍ୟ ହୁଏ ତା'ର ଆତ୍ମରକ୍ଷାର ଭୂଷଣ । ଭାରତୀ ଯୁବ ଅଧ୍ୟାପକ ଡଃ. ମୋହନ ପ୍ରଧାନଙ୍କ ବ୍ରିଲିଆଣ୍ଟ ଗୁଣ ଦ୍ୱାରା ପ୍ରଭାବିତ ହୋଇ ମନକୁ ମନ ତାଙ୍କୁ ଭଲ ପାଇ ବସିଲା । ମାତ୍ର ଡଃ. ପ୍ରଧାନ ରାଜନୀତିରେ ପଶି ନେତ୍ରମଣିକୁ ବିବାହ ହେବାରୁ ଭାରତୀ ମନରେ ଆସିଲା ପ୍ରତିହିଂସା । ନେତ୍ରମଣିକୁ 'ବେଷ୍ଟ ଫ୍ରେଣ୍ଡ' ବୋଲି ସେ ମନେ କରୁଥିଲେ ବି

ମୋହନଙ୍କୁ ପାନେ ଦେବାର ପ୍ରତିଜ୍ଞାରୁ ଓହରି ପାରିଲା ନାହିଁ । ଫଳରେ, ହେଉପଛେ ସାମୟିକ, ସେ ନେତ୍ରମଣି ମନରେ ମୋହନଙ୍କ ପ୍ରତି ବିରୂପ ବିଶ୍ରୀ ଧାରଣା ଜଗେଇ ଦେଲା । ଅପରପକ୍ଷରେ ନେତ୍ରମଣି ରାଜନୀତିର କୌଶଳକୁ ନ ବୁଝି ଭାରତୀ ବୋଲରେ ଉତ୍‌କ୍ଷିପ୍ତ ହେଲା ସ୍ୱାମୀଙ୍କ ଉପରେ । ଅବଶ୍ୟ ଏହାର ସ୍ଥାୟିତ୍ୱ ଅଳ୍ପକାଳ । ତେବେ ଚରିତ୍ରମାନଙ୍କର ଅଛି ନିଜସ୍ୱ ଏକ ମନୋଜଗତ ସେହି ଜଗତରେ ସେମାନେ ଯେପରି ନିଜ ଆଲୋକରେ ତେଜୀୟାନ ହୁଅନ୍ତି ତାହା ଦେଖାଇ ଦେବା ଲେଖକଙ୍କର ଉଦ୍ଦେଶ୍ୟ ବରଂ କୁହାଯାଉ ତାଙ୍କ ଶିଳ୍ପକଳାର ବିଶେଷତ୍ୱ । ପ୍ରସଙ୍ଗକ୍ରମେ ଏହାର ବିଚାର ହେବ ।

୩. 'ସକଳ ସନ୍ତାନ' - ଲେଖକଙ୍କର ସଂସାରକୁ ନେଇ ଓ ତା' ଭିତରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ସମ୍ମାନ ପୁରସ୍କାରକୁ ଧରିବା ପାଇଁ ନାନା ଫନ୍ଦିଫିକର ଓ ରାଜନୀତି । ଓଡ଼ିଆ କବି ଶୈଳଜା ପଣ୍ଡାଙ୍କର କ୍ରମାନ୍ୱୟେ ଛୋଟରୁ ବଡ଼ ପୁରସ୍କାର ଲାଭ ଏବଂ ଶେଷରେ ଭାରତବର୍ଷର ଅନ୍ୟତମ ଶ୍ରେଷ୍ଠ ପୁରସ୍କାର 'ବାଣୀ ସନ୍ତାନ' ଲାଭକୁ କେନ୍ଦ୍ର କରି ରଚିତ । ବର୍ଣ୍ଣନାକ୍ରମରେ ଆସିଛି ଲେଖକଙ୍କ ସଂସାର ସଂପର୍କରେ ଚମତ୍କାର ଘଟଣାବଳୀ ଯାହା ସାଧାରଣ ପାଠକ ଜାଣି ନଥାଏ । ଶୈଳଜା ଜଣେ କବି । ରାମହରି ନାମକ ଜଣେ ଅଗ୍ରଜ କବିଙ୍କ ସାନ୍ନିଧ ଓ ପ୍ରେରଣାରେ ସେ କବିତାରେ ପ୍ରତିଷ୍ଠା ପାଆନ୍ତି । ସମୟକ୍ରମେ ତାଙ୍କର ପୁରସ୍କାର ଲାଭରେ ଚକିତ ହୁଅନ୍ତି । ପାଠକ ସାଧାରଣ ଏପରି କୃତିତ୍ୱ ପଛରେ ଥାଏ କାହାର ସଦିଚ୍ଛା ? ସ୍ୱୟଂ ବାଗ୍‌ଦେବୀଙ୍କର ? ସରସ୍ୱତୀଙ୍କର ସନ୍ତାନ ଅପେକ୍ଷା କରେ କି ଅନ୍ୟର କରିବାକୁ ? ସଦିଚ୍ଛାର କାର୍ଯ୍ୟ କରିବା ସାଧନା ପ୍ରତିଭାର ଯମଜ ଭାଇ ବା ଭଉଣୀ ବୋଲି ଯଦି କୁହାଯାଏ ତେବେ ସମ୍ଭବତଃ ସାଂପ୍ରତିକ ଯୁଗରେ ତାହା ଦ୍ୱିଅର୍ଥକ ବିବେଚିତ ହେବ । ଏହି ସାଧନାଟି ହେଉଛି, ତୁମର କେତେ ସମ୍ପର୍କ ଉପର ମହଲରେ, ତା'ର ଅନୁସନ୍ଧାନରେ ଲାଗି ପଡ଼ିବା । ଶୈଳଜା ଏହି ଦୃଷ୍ଟିରୁ ସାଧନାସଫଳ ସରସ୍ୱତୀ ସନ୍ତାନ । 'ବାଣୀ ସନ୍ତାନ' ପୁରସ୍କାରର ବିଚାରକମାନଙ୍କୁ ବିଭିନ୍ନ ଉପାୟରେ ସନ୍ତୁଷ୍ଟ କରାଇ ସେ ସାଧନାର ଶିଖର ସ୍ପର୍ଶ କରିଛନ୍ତି । ଏ କ୍ଷେତ୍ରରେ ସାହାଯ୍ୟ ମିଳିଛି ଉଚ୍ଚଶିକ୍ଷିତା ଝିଅର ସଂସ୍ପର୍ଶରେ ଆସିଥିବା ଉଚ୍ଚପଦସ୍ଥ ଅଫିସରଙ୍କ ଠାରୁ । ସାହିତ୍ୟ ଜୀବନବୋଧର ବିଶିଷ୍ଟ କ୍ଷେତ୍ର, ସୁରୁଚି ଓ ସୌନ୍ଦର୍ଯ୍ୟର ଶିଳ୍ପକର୍ମ । ଆଦର ଓ ଆନନ୍ଦ ସେହି କ୍ଷେତ୍ରର ଦୁଇଟି ମୁଗ୍ଧ ଫୁଲ । ଅନ୍ୟକୁ ଆଦର କର, ପ୍ରେମ କର ଓ ସେହି ଆଦରରୁ ମିଳୁଥିବା ଅନୁଭୂତିକୁ ଆନନ୍ଦ ବୋଲି ଗ୍ରହଣ କରିନିଅ । ମୁହୁର୍ମୁହୁ ପରିବର୍ତ୍ତନର ଘଟାଟୋପରେ ଯଦି ଜୀବନ ବିପନ୍ନ ହେଉଥାଏ ତାକୁ ସମ୍ପନ୍ନ କରିବାର ସୂତ୍ର ଖୋଜିବାର ଦାୟିତ୍ୱ ସାହିତ୍ୟିକର । ଜୀବନର ଗୌରବ ତାର ବଞ୍ଚିବାର କଳାରେ - ସୁରୁଚିର ପ୍ରତିଷ୍ଠାରେ । କିନ୍ତୁ ସାହିତ୍ୟିକର ଜଗତଟି ଆଜି ହୋଇପଡ଼ିଛି ରୁଗ୍‌ଣ । ପ୍ରେମ ଘୃଣା ଓ ଈର୍ଷାର ଦାସ ସାଜିଛି । ସ୍ୱାର୍ଥ ଓ ଯଶଲିପ୍‌ସା ହୋଇଛି ଲେଖକର ଧ୍ୟାନ । ସ୍ୱାର୍ଥ ତ୍ୟାଗୀ ସାହିତ୍ୟ ସାଧକ ହୋଇଛି ଆପାଙ୍‌କ୍ତେୟ ଓ ସବାଶେଷ ଲୋକ ଭାବେ ପରିଗଣିତ । କେହି ଅବା ଦୁର୍ଦ୍ଦମନୀୟ

ସାରସ୍ୱତ ଜ୍ୱାଳାରେ ଦଗ୍ଧ ହେଉଛି । ଏହିପ୍ରକାର ଚରିତ୍ରମାନଙ୍କର କାହାଣୀ ଫୁଟି ଉଠିଛି 'ସକଳ ସନ୍ତାନ'ରେ । ଲେଖକ ଠାଏ ବିଦ୍ରୂପ କରିଛନ୍ତି, 'ତୋହରି ସନ୍ତାନ ଆମ୍ଭେ ଅଟୁ ସଇବେ', କବିବାଣୀର ଆର୍ଷତ୍ୱ ହଜିଛି, ସ୍ଥାନ ନେଇଛି ଗଣତାନ୍ତ୍ରିକତା, ଯେଉଁଠି ପ୍ରତ୍ୟେକଙ୍କର ମାତୃଦତ୍ତ ଅଧିକାର ପରି ଅଧିକାର ଅଛି ସ୍ୱଇଚ୍ଛାରେ ପୁରସ୍କାର ପରି ପୁରସ୍କାରଟିଏ ପାଇବା ପାଇଁ ଗଳଦ୍‌ଘର୍ମ ହେବା ।

ମନେହୁଏ ଭାରତ ବା ଓଡ଼ିଶାରେ କେତେଜଣ ଲେଖକଙ୍କ ତଥାକଥିତ ସାରସ୍ୱତ ଆଚରଣର ପ୍ରଭାବ ପଡ଼ିଛି ଲେଖକଙ୍କ ଉପରେ । ଶୈଳଜାଙ୍କ ପୁରସ୍କୃତ କାବ୍ୟଗ୍ରନ୍ଥ 'ଅହଲ୍ୟା' ଓ 'ବାଣୀ ସନ୍ତାନ' ସମ୍ମାନର ମୂଳ ପ୍ରେରଣାଟି ଧରା ନ ପଡ଼ି ରହିପାରେ ନାହିଁ । ସେଇ ତଥ୍ୟଟି ଓଡ଼ିଶାର ସାହିତ୍ୟିକ ମଣ୍ଡଳରେ ଦିନେ ଚାପା ଗୁଜଂରଣ ସୃଷ୍ଟି କରିଥିଲା । ସୁନୀତିର ସିଂହାସନ କ୍ରମେ ମଞ୍ଚ ଉପରୁ ଖସିଯାଉଛି; ଆସୁଛି କଳା ସିଂହାସନ, କଳାର ଯାଦୁବର୍ଣ୍ଣ ଭିତରେ ଶ୍ୱେତ ଓ ପାବନ ମ୍ଳାନ ପଡୁଛି ।

୪. 'ସ୍ୱର୍ଗସୀମା' ଅମଲାତନ୍ତ୍ରର ସଂସାର ସଂପର୍କିତ ଏକ ଉପନ୍ୟାସ । 'ସକଳ ସନ୍ତାନ'ରେ ମେଧାର ଅସ୍ୱୀକାର ପରେ ଏଇଟିରେ ମେଧାକୁ ବିନାଶ କରିବାର ଚକ୍ରାନ୍ତ ସହଜରେ ଧରାପଡ଼ିଯାଏ । ନୃତ୍ୟ ପ୍ରଦର୍ଶନ ପାଇଁ ବିଦେଶକୁ ଭାରତୀୟ ପ୍ରତିନିଧି ପଠାଇବା ଘଟଣାକୁ ଧରି ପ୍ରିୟାପ୍ରୀତି କାରବାରର ଚିତ୍ର ଉପସ୍ଥାପନ କରେ 'ସ୍ୱର୍ଗସୀମା' । ଓଡ଼ିଶାର ଶିଳ୍ପୀ ମଞ୍ଜୁଶ୍ରୀ ସମସ୍ତ ଯୋଗ୍ୟତା ସତ୍ତ୍ୱେ ସୁଯୋଗ ପାଏ ନାହିଁ, ସୁଯୋଗ ନେଇଯାଏ ବଙ୍ଗଳାର କେହି ଜଣେ ଛନ୍ଦା । ଦିଲ୍ଲୀ ସ୍ତରରେ କେହି ଜଣେ ଉଚ୍ଚପଦସ୍ଥ ଅଫିସରଙ୍କ ଦୟାର ସୁଫଳ ସେ ଭୋଗ କରେ । ଓଡ଼ିଶୀ ନୃତ୍ୟ ପ୍ରଦର୍ଶନରେ ଓଡ଼ିଶାର ଯୁବତୀ ମଞ୍ଜୁଶ୍ରୀ 'ଗୀତଗୋବିନ୍ଦ'କୁ ଯେପରି ନୃତ୍ୟଭଙ୍ଗୀରେ ଉପସ୍ଥାପିତ କରେ ସେଥିରେ ଫୁଟି ଉଠେ ଅସମ୍ଭବ ଏକ ବିଶୁଦ୍ଧ କଳାତ୍ମକ ଭାବଉତ୍ତରଣର ମହିମା । ଦୈହିକ ସୁଖକୁ ସେ ରୂପାନ୍ତରିତ କରିଦିଏ ଆଧ୍ୟାତ୍ମିକ ଆନନ୍ଦରେ । ଏପ୍ରକାର ଉପଲବ୍‌ଧି ଭିତରେ କଳାର ନିର୍ବିଶେଷ ଆନନ୍ଦ ଓ ତଦ୍‌ଜନିତ ଚିତ୍ତ ଦ୍ରୁତୀକରଣ ମଞ୍ଜୁଶ୍ରୀର ନୃତ୍ୟରେ ଯେମିତି ସ୍ୱାଭାବିକ ଓ ସହଜ ଏକ ଉତ୍ତରଣ, ତାହା ଅନ୍ୟ ପ୍ରତିଯୋଗୀଙ୍କ ପାଖରେ ନଥିଲା । କିନ୍ତୁ ନିର୍ବାଚିତ ଛନ୍ଦାର ମାଆ ଥିଲେ ସିନେମା ଜଗତର ଶିଳ୍ପୀ ଓ ଉଚ୍ଚପଦସ୍ଥ ବଙ୍ଗାଳୀ ଅଫିସରଙ୍କର ପ୍ରିୟ । ଉପନ୍ୟାସଟି ଅମଲାତାନ୍ତ୍ରିକ ସଂସ୍କୃତିର ନଗ୍ନ ଛବି ଆଙ୍କିଛି । ସେମାନେ ଯେଉଁ କ୍ଷମତାର ସ୍ୱର୍ଗରେ ରୁହନ୍ତି ସେଇଠି ରାଗ ନାହିଁ, ରୋଷ ନାହିଁ, ବେଗ ନାହିଁ, କହିବାକୁ ଗଲେ ନିଜତ୍ୱର ବଙ୍କାତେଢ଼ା ସ୍ୱଗୁଣ ନାହିଁ । ଅଛି କେବଳ ସ୍ୱାର୍ଥସାଧନର କୌଶଳ । ସେହି ଅନବଦ୍ୟ କୌଶଳହିଁ ନାମମାତ୍ର ସେବକକୁ ବାସ୍ତବ ପ୍ରଭୁତ୍ୱର ସୁଖ ଓ ସମ୍ମାନ ଆଣିଦିଏ । ଏହିପରି ଏକ ଲେଖକୀୟ ଉପଲବ୍‌ଧି ଭାରତୀୟ ପ୍ରଶାସନିକ କ୍ଷେତ୍ରର ଜ୍ୱଳନ୍ତ ଚିତ୍ର ଆଙ୍କି ଦେଇଛି । ଯେଉଁ ସ୍ୱର୍ଗସୁଖ ସହଜ ଲଭ୍ୟ ତାକୁ ହତାଦର କିଏ ଓ କାହିଁକି କରିବ ? ପ୍ରଶାସନର ଶିଡ଼ି ଫଳା ପରେ ଫଳା ମଣ୍ଡିତ ଶିଖର

ଆରୋହଣକୁ ଧରି ଯେତେ ଲମ୍ବିପାରେ ସ୍ୱର୍ଗସୁଖର ପରିମାଣ ସେତେ ବିସ୍ତୃତ ହେଉଥାଏ ଏବଂ ଏକ ପରିଚ୍ଛନ୍ନ ଲକ୍ଷ୍ୟ ସମ୍ଭବ ହେଉଥାଏ । ସେହି ସ୍ୱର୍ଗସୁଖର ବୈଶିଷ୍ଟ୍ୟଟିଏ ହେଉଛି 'ତୁମ କାମ ପାଇଁ ତୁମେ ଦାୟୀ ନୁହଁ, କାରଣ ତୁମ ଉପରକୁ ଉପରକୁ ଏତେ ଫଳାଧିକାରୀ ବସିଛନ୍ତି ଯେ ତୁମେ ନିର୍ବିଘ୍ନରେ ମୁଣ୍ଡ ଖସାଇ ଆଣିପାର, ତଦ୍ୱାରା କେହି ଉପରବାଲା ପଡ଼ିଯିବେ ନାହିଁ, କାରଣ ତାଙ୍କୁ ଉପରୁ କେହି ଜଣେ ଟାଣି ଧରିଛି ।

'ସ୍ୱର୍ଗସୀମା' - ସୁଖ ଭୋଗର ଅପରିମିତ ବିସ୍ତୃତ ବଳୟ । ଚରିତ୍ରମାନେ ରକ୍ତମାଂସଧାରୀ, ସେମାନଙ୍କର କାମନାବାସନା ଅଛି । ଅଛି ନାନା ଭାବନା, ମାନସିକ ବିଷାଦ ଓ ଦେହର ଲାଳସା । କିନ୍ତୁ ସେହେତୁ ସେମାନେ ଉତ୍ତେଜିତ ହୁଅନ୍ତି ନାହିଁ । କାରଣ ଉତ୍ତେଜନା ସିଦ୍ଧିବିନାଶକ । ଲେଖକ ବର୍ଣ୍ଣିଛନ୍ତି ଏବଂ ସୂଚାଇଛନ୍ତି ଯେ ଉପଭୋଗକୁ ସେମାନେ ବାସ୍ତବ ପ୍ରଭୁତ୍ୱ ବୋଲି ମନେ କରିଥାନ୍ତି । ଏ କ୍ଷେତ୍ରରେ ସ୍ୱର୍ଗ ହେଉଛି ସୀମା । ଦୀର୍ଘ ଚାକିରିର ଅଭିଜ୍ଞତାରୁ ସେ ଅନୁଭୂତି ସଞ୍ଚୟ କରିଛନ୍ତି ଓ ଅମଲାତନ୍ତ୍ରର ସ୍ୱରୂପ ଉଦ୍‌ଘାଟନ କରିଛନ୍ତି - କହୁଛନ୍ତି, କିନ୍ତୁ କେହି ଧରାଛୁଆଁ ଦେଲେ ନାହିଁ, ବିଭିନ୍ନ ଭାବରେ କହିଲେ - 'ଏକସ୍‌କିଉଜ୍ ମି, ଆଜି ଟିକିଏ ହେଲେ ଫୁରୁସ୍‌ତ ନାହିଁ କଥା ପଦେ ହେବା ଲାଗି ତମ ସାଙ୍ଗରେ (ପୃ ୧୨୮) । ''ଯେ ଆଣ ଆହୁରି ଯେତେ କାଗଜପତ୍ର ଆଣିଦେବ ପ୍ରାର୍ଥୀଙ୍କ ଯୋଗ୍ୟତା ବିଷୟରେ ସେତେ ଭଲ, ବୁଝିଲେ ? ଆସନ୍ତୁ ନେକ୍‌ସ୍‌ଟ୍ ଉଇକ୍ ।'' ଅନ୍ୟଜଣେ ମୂର୍ତ୍ତି ସାହେବ ଅଣ୍ଡର ସେକ୍ରେଟାରୀ, ସେ କଥା ତିଳେ ହେଲେ ଶୁଣିବା ପରି ମନେ ହୁଅନ୍ତି ନାହିଁ । ସିଗାରେଟ ପରେ ସିଗାରେଟ୍ ଫୁଙ୍କି ଚାଲିଥିଲେ, ଆଉ ଫୋନଟାକୁ ଅଧା ଉଠେଇ ରଖି ଦେଉଥିଲେ ବାରମ୍ବାର । ସେଉଠୁ ଭୁସ୍‌କିନି 'ଏକ୍‌ସ୍‌କିଉଜ ମି' କହି ଉଠି ପଳାଇଗଲେ କ'ଣ ଗୋଟାଏ ଜରୁରୀ କାମରେ'' (ପୃ ୧୨୯) । ମଞ୍ଜୁଶ୍ରୀର ପ୍ରାର୍ଥୀତ୍ୱ ବିଷୟରେ ବୁଝିବା ସମ୍ପର୍କରେ ତା'ର ଭାଇ ନୟନର ଏହି ଅନୁଭୂତି । ଗୋଟାଏ ଅଭିନୟର ବୃହତ୍ ମଞ୍ଚ ହେଉଛି ଆମର ତଥାକଥିତ କଲ୍ୟାଣର ପ୍ରାସାଦ ସଚିବାଳୟର । ସଂସ୍କୃତିର ପୃଷ୍ଠପୋଷକ ହେବା ରାଜଧର୍ମର କର୍ତ୍ତବ୍ୟ କିନ୍ତୁ ତା'ର ଅଭାବରେ ଜଣେ ଯୋଗ୍ୟ ପ୍ରାର୍ଥୀ ବଞ୍ଚିତ ହେଲା । ଏହା ଯେତେ ଅକ୍ଷମଣୀୟ ତା'ଠୁ ଘୋରତର ବୀଭତ୍ସତା ହେଉଛି ଅମଲାତାନ୍ତ୍ରିକ ଆଚରଣ । ସୁଖର ସମ୍ଭୋଗ ଖଟ ଉପରେ ସେମାନେ ଯେଉଁ ସ୍ୱପ୍ନ ଦେଖନ୍ତି ତାହା ଦେଶ ଓ ଜାତିର ହୃଦୟରେ ଶେଳବିଦ୍ଧ ତୁଲ୍ୟ କାର୍ଯ୍ୟ କରେ ।

•

୫. 'ବିଦେଶିନୀ' - କ୍ରମରେ ପଞ୍ଚମ ଉପନ୍ୟାସ । ଏହା ଭାରତୀୟ ନାରୀର ସଂସ୍କାର ମୁକ୍ତ ଉଦାର ବିଦ୍ରୋହିଣୀ ରୂପ; ମୁକ୍ତ ସମାଜର ଆଲୋକରେ ଉଜ୍ଜ୍ୱଳ ଛଳନାହୀନ ସନାତନୀ ରୂପ । 'ସାତୋଟି ରାତିର ସତୀ'ର ଅନୁପମାର ପରିବର୍ତ୍ତୀ ସଂସ୍କରଣ; ଆରୋହଣରେ ଉତ୍ତୀର୍ଣ୍ଣ ଏକ ଅବଦମିତ ବ୍ୟକ୍ତି ସତ୍ତା । ଆରମ୍ଭରୁ ଲେଖକ ସୂଚାଇଛନ୍ତି - ''ସାତୋଟି ଦିନର

ସତୀ'ର ଅନୁପମାର ସୁନୀ ଅପା (ଅର୍ଥାତ୍ 'ବିଦେଶିନୀ ନାୟିକା ସୁନୀତି - ଡଃ. ସୁନୀତି ସାହୁ) । କିନ୍ତୁ ଅନୁ ପରି ସେ ତା'ର ବିଦ୍ରୋହ ଭାବକୁ ମନ ଭିତରେ ରଖି ତାକୁ କେଉଁ ନୂଆ ରୂପ ଦେବାକୁ ଚେଷ୍ଟା କରି ନାହିଁ । ସେ ଖୋଲାଖୋଲି ବିଦ୍ରୋହ କରିଛି ଅନୁଭୂତ ଅନ୍ୟାୟ ବିରୋଧରେ, ତାହା ପରଂପରାର ବିରୋଧୀ ହେଉ ପଛେ ଏବଂ ସେଥିଯୋଗୁଁ ତାକୁ ନାନା ଦୁଃଖକଷ୍ଟ ଭୋଗିବାକୁ ପଡୁ ପଛେ । ହେଲେ ସେ ହାରି ଯାଇ ନାହିଁ ।'' ଲେଖକୀୟ ଏହି ଆଭାସ ଉପନ୍ୟାସରେ ପୂର୍ଣ୍ଣତଃ ପ୍ରତିଫଳିତ । ସୁନୀତି ବିଦ୍ରୋହିଣୀ, ବିଦ୍ରୋହ କରିବାର କାରଣ ମଧ ପର୍ଯ୍ୟାପ୍ତ । ଛାତ୍ରୀ ବୟସରୁ ସେ ସ୍କୁଲ, କଲେଜରେ ନେତୃତ୍ୱ ନେଇଛନ୍ତି, ସେହିପରି ମଧ ଶିକ୍ଷକ ଥିବାବେଳେ । ତାଙ୍କ ପରିବାର ଥିଲା ବ୍ୟବସାୟୀ ପରିବାର, ଏକ ରକ୍ଷଣଶୀଳ ପରିବାର । ସାଧାରଣତଃ ଗାଁ ଓଡ଼ିଶାରେ ଯାହା ଅନୁଭୂତ ହୁଏ, ଟିକେ ବୟସ ଉତୁରିଗଲେ, ମାଟ୍ରିକ୍ ପାଶ କରୁ କରୁ ବିବାହର ବ୍ୟବସ୍ଥା ହୁଏ । ସୁନୀତିଙ୍କର ପ୍ରତିବାଦ ଏହିପରି ଏକ ବ୍ୟବସ୍ଥା ବିରୁଦ୍ଧରେ ଆରମ୍ଭ ହୋଇଛି । ବାପା ବାଧ ହୋଇ କଲେଜ ପଢ଼ା ପାଇଁ ରାଜି ହୋଇଛନ୍ତି । ପାଠପଢ଼ା ପରେ ଚାକିରି, ଶିକ୍ଷକର ଜୀବନ । ସେଇଠି ମଧ ପ୍ରତିବାଦ ଆକଣ୍ଠ ହୋଇ ଉଠିଛି, ତଥାପି ମିଳିଛି କିଛି ସ୍ୱୀକୃତି । ମନେହୁଏ ଏହି ସ୍ୱୀକୃତି ବ୍ୟକ୍ତିତ୍ୱ ବିକାଶର ଭିତ୍ତିପ୍ରସ୍ତର । ତା'ପରେ ଆକସ୍ମିକ ଅନୁରାଗଜନିତ ସାମାନ୍ୟ ସଂପର୍କରୁ ଜଣେ ଓକିଲଙ୍କୁ ବିବାହ ପୁଣି ଉଚ୍ଚ ଜାତିରେ, ବ୍ରାହ୍ମଣ ପରିବାରରେ ।

ଅସବର୍ଣ୍ଣ ବିବାହ ଏକ ପ୍ରତିଲୋମ ବିବାହ, ସ୍ୱାଭାବିକ ଭାବେ ଚରିତ୍ରର ଚାରିତ୍ରିକ ଆଚରଣରେ ଆଣିଥାଏ ବ୍ୟତିକ୍ରମ । ଏହାର ପ୍ରଭାବ ଦ୍ୱିତୀୟ ପିଢ଼ି ଉପରେ ପଡ଼େ । ଅବଶ୍ୟ ଦମ୍ପତିଙ୍କ ମଧରେ ପ୍ରେମ ଶୃଙ୍ଖଳା ଉପରେ ଏହା ଅନେକ ପରିମାଣରେ ନିର୍ଭରଶୀଳ । ତେବେ କୁଳୀନ ବ୍ରାହ୍ମଣ ପରିବାରରେ ସୁନୀତି ସମ୍ମୁଖୀନ ହୁଅନ୍ତି ଶାଶୁଙ୍କର ରକ୍ଷଣଶୀଳତାର । ପରିବାରଟି ନାରୀ କର୍ତ୍ତୃତ୍ୱ ପ୍ରଧାନ; ଏଣୁ ଶାଶୁ ଶାସିତ । ସେହି ଶାସନର ଶୃଙ୍ଖଳା ଚାହେଁ ପ୍ରତିପକ୍ଷର ଆତ୍ମସମର୍ପଣ, ଯାହା ସୁନୀତିଙ୍କ ପକ୍ଷେ ଅସହନୀୟ । ମାତ୍ର ଅଳ୍ପ ଦିନର ଦାମ୍ପତ୍ୟ ଭିତରେ ସ୍ୱାମୀଙ୍କ ପରଲୋକ ଘଟେ । ରକ୍ଷଣଶୀଳ ହିନ୍ଦୁ ବ୍ରାହ୍ମଣ ପରିବାରରେ ଏ ପ୍ରକାର ଦୈବୀଦଣ୍ଡ ଭିନ୍ନ ପରିବେଶ ସୃଷ୍ଟି କରିବା ଅସ୍ୱାଭାବିକ ନୁହେଁ । ଚାକିରି ଓ ନବଜାତ ଶିଶୁପୁତ୍ରର ଯତ୍ନ ଏଇ ଦୁଇଟି ଭିତରେ ସୁନୀତିଙ୍କର କର୍ତ୍ତବ୍ୟ ପ୍ରାୟ ଥାଏ ସୀମିତ । ଏକ ପ୍ରତିବାଦୀ ଚରିତ୍ରର ଉଗ୍ରମୁଖ ସବୁବେଳେ ପରିସ୍ଥିତିକୁ ସମ୍ମୁଖୀନ ହେବାକୁ ଆଗ୍ରହୀ ହୁଏ, ନିଜ ପାଇଁ ଅନୁକୂଳ ପରିବେଶ ସୃଷ୍ଟି ସେମାନଙ୍କ ଦ୍ୱାରା କ୍ୱଚିତ ସମ୍ଭବ । ସ୍ୱାମୀଙ୍କ ମୃତ୍ୟୁର ତିନିବର୍ଷ ନ ପୁରୁଣୁ ସେ କଲେ ଦ୍ୱିତୀୟ ବିବାହ - ଜଣେ ଆମେରିକାବାସୀ ଭାରତୀୟଙ୍କ ସହ । ପୁଅକୁ ଛାଡ଼ି ଚାଲିଗଲେ ଆମେରିକା । ଏହାପରେ ଆରମ୍ଭ ହୁଏ ତାଙ୍କ ଜୀବନରେ ଘନଘନ ପରିବର୍ତ୍ତନ । ପରିବର୍ତ୍ତନର ଅନୁକୂଳ ସ୍ରୋତରେ ତାଙ୍କର ବ୍ୟକ୍ତିତ୍ୱର ଗଠନ ହୁଏ - ତୃତୀୟ ବିବାହ କରନ୍ତି, ତାହା ପୁଣି

ହୁଏ କ୍ଷଣସ୍ଥାୟୀ । ଗବେଷଣା କାମରେ ଓଡ଼ିଶା ଆସିବା ପରେ ପୁଣି ଘଟେ ଆଉ ଏକ ପରିବର୍ତ୍ତନ । ସେ ପରିଚିତ ହୁଅନ୍ତି ବିଦେଶିନୀ ରୂପେ । ଅବଶ୍ୟ ଏହା ତାଙ୍କର ମନର ଆତ୍ମକୃତ ପରିଚୟ । ସେ ଭାବନ୍ତି ନିଜକୁ ବିଦେଶିନୀ ବୋଲି । ସ୍ୱଦେଶ ଛାଡ଼ିବାର ତେର ବର୍ଷ ପରେ ସେ ଫେରି ଆସନ୍ତି କାର୍ଯ୍ୟ ଉପଲକ୍ଷରେ । ସାକ୍ଷାତ ଘଟେ ଶିକ୍ଷା ସଚିବ ରଙ୍ଗନାଥ ମହାପାତ୍ର ଓ କଲେଜ ସମୟର ବନ୍ଧୁ ସମାଜ ସେବିକା ମାୟା ସହ । ସ୍ୱଦେଶରେ ଅମଲାତାନ୍ତ୍ରିକ କ୍ରୁରତା, ପ୍ରଶାସନିକ ଦୂରାଚାର, ସମାଜର ନିମ୍ନବର୍ଗର ଦୁଃଖ ଦାରିଦ୍ର୍ୟ କ୍ରମଶ ତାଙ୍କୁ କିଛି ସମୟ ପାଇଁ ବ୍ୟସ୍ତ ବିଚଳିତ କରେ । ସଚିବ ରଙ୍ଗନାଥଙ୍କ ସହ ଘନିଷ୍ଠତା ବଢ଼େ । ଏହି ବେଳକୁ ଛାଡ଼ିଥିବା ପ୍ରଥମ ବିବାହର ସ୍ମାରକୀ ପୁଅ ସହ ହୁଏ ସାକ୍ଷାତ । ମାତୃ ଲକ୍ଷଣରେ ସେ ଜଣେ ବଢ଼ନ୍ତା କିଶୋର । ଜେଜିମା' ଠାରୁ ମା'ର ଆଚରଣ ବିଷୟ ଶୁଣିବା ପରେ ଓ ମା' ସହ ସାକ୍ଷାତ ପାଇଁ ପରିବାରର ନିଷେଧ ସତ୍ତ୍ୱେ ସେ ଆସିଛି । ବାତ୍ସଲ୍ୟ ଓ କୈଶୋରର ଅନନୁଭୂତ ମାତୃସ୍ନେହ ପରସ୍ପର ସନ୍ନିବଦ୍ଧ ହୋଇ ଉଠିଛି । ଉଭୟେ ଥିଲେ ଏ ପର୍ଯ୍ୟନ୍ତ ଅବଦମିତ, ଅପ୍ରମତ୍ତ ଓ ଅପ୍ରେକ୍ଷିତ । ପୁଅ ବାତ୍ସଲ୍ୟର ବାହୁଲ୍ୟ ଦେଖି ନଥିଲା । ତା'ର ପ୍ରଥମ ସ୍ପର୍ଶରେ ଆଦ୍ୟ ଆଷାଢ଼ର କଦମ୍ବ ପରି ସେ ପ୍ରସ୍ଫୁଟିତ ହୋଇଗଲା ଅକିଞ୍ଚନ ବୋଧରୁ ମୁକ୍ତି ଲକ୍ଷ୍ୟରେ । ତଥାଚ ଦାବି କଲା ''ମା, ତୁମେ ମତେ ଛାଡ଼ି ଆଉ ଯିବ ନାହିଁ ତ'' ? ବାତ୍ସଲ୍ୟ କ୍ୱଚିତ ସ୍ୱାଭାବିକତା ହରାଏ । ଏହାପରେ ସୁନୀତି ଘୋଷଣା କଲେ ସେ ବିଦେଶ ଫେରିଯାଉ ନାହାଁନ୍ତି । ଏଥିରେ ମଧ ଖୁସି ହେଲେ ବିପତ୍ନୀକ ରଙ୍ଗନାଥ । ସେ ଏଥି ପୂର୍ବେ ଚାକିରି ଛାଡ଼ି ମାୟା ଓ ସୁନୀତିଙ୍କ ପ୍ରକଳ୍ପିତ ସମାଜ ସେବା ସଂସ୍ଥାର ଥିଲେ ଅନ୍ୟତମ କର୍ଣ୍ଣଧାର । ମାଲକାନଗିରିର ବଣ୍ଡାଦି ଆଦିବାସୀଙ୍କର କଲ୍ୟାଣ ପାଇଁ ମାୟା କରୁଥିବା କାର୍ଯ୍ୟ ସହ ନୂଆ ବହୁମୁଖୀ ଯୋଜନାରେ ସୁନୀତିଙ୍କ ପୂର୍ଣ୍ଣ ସହଯୋଗ ମିଳିବ ବୋଲି ଭାବି ସେ ଉତ୍‌ଫୁଲ ହେଲେ । ରଙ୍ଗନାଥଙ୍କ ସହ ପରିଚୟର ମାତ୍ର ଦୁଇ ତିନି ମାସ ମଧରେ ଆମେରିକାର ସ୍ୱାଧୀନ ଜୀବନ ଓ ତା'ର ପ୍ରତିଶ୍ରୁତ ବିଭବ ତଥା ସମ୍ମାନ ଯାହା ଅଦ୍ୟାବଧି ସୁନୀତିଙ୍କ ଆଚରଣଙ୍କୁ ନିୟନ୍ତ୍ରିତ କରିଥିଲା ତାକୁ ତୁଟାଇ ଦେଇ ରଙ୍ଗନାଥଙ୍କ ପ୍ରସ୍ତାବକୁ ସେ ମାନିନେଲେ । ବାତ୍ସଲ୍ୟ ଖେଳର ଅଧିନାୟକ ସେଦିନ ଅସ୍ତାୟମାନ ସୂର୍ଯ୍ୟର ଶେଷ ରଶ୍ମିକୁ ଧିକ୍କାର କରି ଅପସୃୟ ଆଲୋକର ସନ୍ଧାନରେ ବାହାରି ଯାଇଥିଲା ।

'ବିଦେଶିନୀ' ଉପନ୍ୟାସର ନାମକରଣ ଏକ ଆବେଗପ୍ରମୋଦିତ ମନରୁ ସମ୍ଭୂତ ପରି ମନେ ହେବ । କାରଣ ସୁନୀତି କ'ଣ ପ୍ରକୃତରେ ସେୟା ? ଅବଶ୍ୟ ଲେଖକ ଚତୁରତା ସହ ନିଜର ବକ୍ତବ୍ୟ ସୂଚାଇଛନ୍ତି । ତାଙ୍କ ପରି ଜଣେ ଅଭିଜ୍ଞ ଲେଖକଙ୍କ ପକ୍ଷରେ ରସିକତା ପୂର୍ଣ୍ଣ ଚାତୁର୍ଯ୍ୟୋକ୍ତି ଶୋଭା ପାଏ । କହୁଛନ୍ତି - ''ବିଚାରୀ ସତରେ କେଉଁ ବିଦେଶିନୀ ନୁହେଁ ମ : ସେ ବି ଆମରି ଭିତରୁ ଜଣେ ।'' ପୃଷ୍ଠପ୍ରଚ୍ଛଦରେ ଉଲ୍ଲିଖିତ ଲେଖକୀୟ ଏଇ ମନ୍ତବ୍ୟର

ଭଙ୍ଗୀ ବେଶ୍ କଥାକୁହା ଛଳରେ ଆପଣାର ବୋଧ ତିଆରି କରେ । ତେବେ, ବିଦେଶିନୀ କାହିଁକି ? ଏ ପ୍ରଶ୍ନ ପାଠକକୁ ଅଧୀର କରିପାରେ ।

ସ୍ୱଦେଶକୁ ଫେରିବା ପରେ ଦୀର୍ଘ ତେର ବର୍ଷର ଅନୁପସ୍ଥିତିରୁ ସୁନୀତିଙ୍କର ଅନୁଭବ ହୋଇଛି ଯେ ସେ ବିଦେଶିନୀ । ଗୋଟିଏ ଧନବାଦୀ ସଭ୍ୟ ରାଷ୍ଟ୍ରର ସୌଜନ୍ୟ ଓ ସଂସ୍କୃତିର ଯେଉଁ ଆଲୋକ ସେ ପାଇଥିଲେ ସେଥିରୁ ଶିକ୍ଷା କରିଥିଲେ ଅମାପ ସ୍ୱାଧୀନତା, ଛଳନାହୀନ ଆତ୍ମପ୍ରସାର, ବ୍ୟକ୍ତି ସ୍ୱାଧୀନତା, ବୈଜ୍ଞାନିକ ସୂକ୍ଷ୍ମ ଦୃଷ୍ଟିଭଙ୍ଗୀ, କାର୍ଯ୍ୟ କରିବାର ଆନନ୍ଦ ଏବଂ ସର୍ବୋପରି ଶିକ୍ଷାର ସାମାଜିକ ଉପଯୋଗିତା । ଉଚ୍ଚ ଡିଗ୍ରୀ ସାଙ୍ଗକୁ ଗବେଷଣା କରିବା ପ୍ରଫେସର୍ ପଦବୀର ସ୍ୱଧର୍ମ । ଆମେରିକାର ଉଦାର ଆଲୋକିତ ବ୍ୟକ୍ତିତାନ୍ତ୍ରିକ ସଂସ୍କୃତି ତାଙ୍କୁ ଦେଇଥିଲା ସୁଯୋଗ - ଯେଉଁଥିରେ କି ଆତ୍ମପ୍ରସାର ଏକ ସହଜ କର୍ମ । ସ୍ୱଦେଶରେ ପ୍ରତ୍ୟେକ କ୍ଷେତ୍ରରେ ବାଧା, ଦାରିଦ୍ର୍ୟ, ଅଶିକ୍ଷା । ସ୍ୱେଚ୍ଛାଚାର, ଦୁର୍ନୀତି ଏବଂ ନିଶ୍ଚେଷ୍ଟତାର ବ୍ୟୂହ ଭିତରେ ଯେ କେହି ସ୍ୱାଧୀନଚେତା ଅଣନିଶ୍ୱାସୀ ହେବେହିଁ । ଏପରି ଏକ ଆହତ ମନନେଇ ପାଦ ବଢ଼ାଇବା ବେଳେ ନିଜକୁ ବେଖାପ ଲାଗିବା ସ୍ୱାଭାବିକ । କିନ୍ତୁ ଏଥିପାଇଁ କ'ଣ ଜଣେ ବିଦେଶିନୀ ହୋଇଯାଏ ? ଏହି ପ୍ରଶ୍ନ ଆକ୍ଷରିକ ଅର୍ଥରେ ନୁହେଁ ନିଶ୍ଚୟ । ଏହା ଏକ ଭାବାର୍ଥକ ବିଷୟ । ଶିକ୍ଷାଲୋକରେ ହୃଦୟର ଅନ୍ଧକାରକୁ ଯିଏ ଦୂରେଇ ଦେଇଛି, ସିଏ ସ୍ୱାତନ୍ତ୍ର୍ୟର ଅମୃତ ଫଳକୁ ସ୍ୱପ୍ନାଭିଳାଷୀର ଭାବ ବୋଲି ମନେକରେ । ଆତ୍ମବିଶ୍ୱାସ ବୋଲି ଗୋଟିଏ ଅଦୃଶ୍ୟ ଶକ୍ତି ଅଛି । ତା'ର ସନ୍ଧାନ ଯେ ପାଇଛି ସେ ସବୁବେଳେ ନିଜକୁ ପ୍ରତ୍ୟେକ ପ୍ରତିକୂଳ ପରିସ୍ଥିତିର ସାମନାରେ ଉଭା କରାଏ । ତା'ର ବିଦ୍ରୋହ ବ୍ୟକ୍ତିକୁ ନେଇ ନୁହେଁ, ଏକ ଭାବକୁ ନେଇ । ସୁନୀତି ସେଇ ଦୃଢ଼ତା ନେଇ ବିଦ୍ରୋହ କରିଛି । ଅଫଳପ୍ରେପ୍ସୂ ଭାରତୀୟତାର ବିରୋଧରେ । ନିଜ ମନକୁ ମନ ସେ କହିଛି 'ସେଠିକି ଗଲାପରେ ମୁଁ ଆଉ ଯାହା ସବୁ କଲି, ମାନେ ଛାଡ଼ପତ୍ର, ପୁନର୍ବିବାହ ଏବଂ ପୁନଃ ଛାଡ଼ପତ୍ର ଯେଉଁଥିରେ ସଫଳତା ବିଫଳତାର ପ୍ରଶ୍ନ ଉଠୁ ନାହିଁ' ପ୍ରମାଣିତ ହେଉଛି ଯେ ସେ କେବଳ ବିଦ୍ରୋହିଣୀ ନୁହେଁ, ସେ ଯଥାର୍ଥରେ ବିଦେଶିନୀ (ପୃ ୩୧) । ଦେଶ ଓ ବିଦେଶ ଏକ ଭାବ ଓ ଆଚରଣକୁ ନେଇ ଗଢ଼ି ଉଠେ କି ? ପ୍ରସଙ୍ଗ କ୍ରମେ ସ୍ମରଣ କରୁଛି କଲ୍‌ହଣଙ୍କୁ । କବି କହୁଛନ୍ତି -

''ସ୍ୱଦେଶୋଽୟଂ ବିଦେଶୋଽୟମିତି ବୁଦ୍ଧେଃ ପ୍ରବର୍ତକଃ ।
ଅନ୍ୟୟବ୍ୟତିରେକାଭ୍ୟାଂ ସ୍ଥିତ୍ୟଭ୍ୟାସଃ ଶରୀରଣାମ ।।''(ରାଜତରଙ୍ଗିଣୀ)

କୌଣସିଠାରେ ରହିବାର ଅଭ୍ୟାସରୁ ଅନ୍ୟ ଓ ବ୍ୟତିରେକରେ ସ୍ୱଦେଶ ଓ ବିଦେଶ ଭେଦ ବା ବୁଦ୍ଧି ପ୍ରାଣୀମାନଙ୍କ ମନରେ ଆସିଥାଏ । କବି କ'ଣ ଠିକ୍ କହି ନାହାଁନ୍ତି ? ବିବେକାନନ୍ଦ କହିଥିଲେ ପରଦେଶରେ ନିଜକୁ କିପରି ବଂଚାଇବାକୁ ହେବ ସେ ଶିକ୍ଷା ଜାଣି ନଥିବା ବ୍ୟକ୍ତି ଭ୍ରାନ୍ତ ଧାରଣାର ବଶବର୍ତୀ ହୋଇ ଅଦ୍‌ଭୂତ ବ୍ୟବହାର କରେ । ଡଃ. ସୁନୀତି ସାହୁ କେତେ

ବର୍ଷ ବିଦେଶରେ ରହିଲେ ବୋଲି କ'ଣ ସେ ବିଦେଶିନୀ ? ସେ ଦେଶର ଫଳ ଖାଇ ସେ କ'ଣ ସ୍ୱଦେଶର ବିରୋଧାଚରଣ.କଲେ ? ଏପରି ଆଶଙ୍କା ଉପୁଜିବା ଅମୂଳକ ହେବ ନାହିଁ । ମାତ୍ର ଟିକେ ଭିତରକୁ ଗଲେ ଅନୁମାନ ଭ୍ରାନ୍ତ ପରି ଜଣା ହେବ ।

ତାଙ୍କୁ କେହି କହିଛି କି ''ତୁମେ ବିଦେଶିନୀ ?'' ନୁହେଁ । ଏହା ତାଙ୍କ ମନର ଏକ ବିକାର । ବିକାରର କାରଣ କ'ଣ ? ଚରିତ୍ରର ମନୋଗତ ଦ୍ୱନ୍ଦ୍ୱର ରୂପାୟଣ ବେଳେ ଶ୍ରୀଯୁକ୍ତ ଦାସ ବାରମ୍ବାର ଇଂଗିତ ଦ୍ୱାରା ଉତ୍ସୁକେଇବା ପରି ତା'ର ମନକୁ ଚହଲାଇଛନ୍ତି । ଚରିତ୍ରର ଏକ ସ୍ୱଦେଶୀ ସଂସ୍କାର ରହିଛି । ଯଦିଓ ତାହା ସ୍ଥଳ ବିଶେଷରେ କୁସଂସ୍କାର ପୀଡ଼ିତ । କିନ୍ତୁ ତାକୁ ଧରି ସଚରାଚର ହିନ୍ଦୁ ପ୍ରାଣୀମାନେ ଜୀବନ ନିର୍ବାହ କରୁଛନ୍ତି ବୋଲି ଯେ ସୁନୀତି ସେଥିରେ ବାନ୍ଧି ହୋଇ ଯିବେ, ତାହା ଠିକ୍ ନୁହେଁ । ପକ୍ଷାନ୍ତରରେ କାହିଁକି ବାନ୍ଧି ହେବେ ? କୌଣସି ହେତୁବାଦୀ ମନ ଜଡ଼ତାକୁ ପ୍ରଶ୍ରୟ ଦିଏ ନାହିଁ । ପ୍ରଶ୍ରୟର ଅର୍ଥ ଗତିଶୀଳତାକୁ ରୋକିବା, ମୃତ୍ୟୁର ଶିଥିଳତାରେ ଝାସ ଦେବା । ଯାହା ସୁନୀତି ଲକ୍ଷ୍ୟ କରିଛନ୍ତି ନିଜ ମାନସିକତାର ପ୍ରଗତିକୁ ନେଇ । ସ୍ୱାଧୀନତା ଓ ସ୍ୱାତନ୍ତ୍ର୍ୟର ବିଚାରରେ ବ୍ୟକ୍ତିର ସ୍ଥିତି ଦୁର୍ବିସହ ହେଲେ ପ୍ରତିବାଦର ନିଆଁ ଉଠେ । ପ୍ରତିବାଦ ପରଂପରା ନାମକ ରୂଢ଼ତା ଓ ଜଡ଼ତାର ବିରୋଧରେ । ଛାତ୍ର ବୟସରେ ଯାହା ସୁନୀତି ଲକ୍ଷ୍ୟ କଲେ ପରିବାର ବା ଶିକ୍ଷା କ୍ଷେତ୍ରରେ । ତାକୁ ଟଳାଇ ଦେବାର ଯତ୍‌ସାମାନ୍ୟ ଶକ୍ତି ଲୋଡ଼ା, ତାହା ସେ ଘଟାଇଥିଲେ । କିନ୍ତୁ ବିବାହ ପରେ ଦାମ୍ପତ୍ୟରୁ  କ'ଣ ପାଇଲେ ? ଯାହା ନ ପାଇଲେ, ତାହାର ସନ୍ଧାନ କରିବା ହେଉଛି ତାଙ୍କର ଅଭିଳାଷ, ସେଇ ଅଭିଳାଷର ଅନ୍ୱେଷଣ କରି ସେ ପହଞ୍ଚିଲେ ଆମେରିକାରେ । ସେଇଠି ପାଇଲେ କି ? ନୁହେଁ । ଅତୃପ୍ତ ମନ କିଛିଦିନ ପାଇଁ ହୁଏତ ଗବେଷଣାଦିରେ ନିମଗ୍ନ ରହିଲା । ପତି ପରେ ପତି ବଦଳିଲେ, ପତିତ୍ୱ ମିଳିଲା ନାହିଁ । ଦାମ୍ପତ୍ୟରେ ପତ୍ନୀତ୍ୱର ସାର୍ଥକତା ପତିତ୍ୱ ଭିତରେ ଖୋଜିବାକୁ ହୁଏ । ପତିତ୍ୱର ସଂଜ୍ଞା ଦେଶ ବିଦେଶରେ ବଦଳି ଯାଏ ନାହିଁ । ଯେଉଁମାନେ ସୁନୀତିଙ୍କ ଜୀବନରେ ପତି ହୋଇ ଆସିଛନ୍ତି ପ୍ରଥମେ ସେମାନେ ଦେଇଛନ୍ତି ସ୍ୱାଧୀନତା । ସ୍ୱାଧୀନତା ଜଣେ ବିଦ୍ରୋହିଣୀ ପାଇଁ ସୀମିତ କାଳଯାଏ ଅର୍ଥପୂର୍ଣ୍ଣ । ସେ କାଳର ଅବଶେଷ ହେଲେ ନାରୀ କାହାକୁ ଆଶ୍ରୟ କରି ବଂଚିବ ? ମନେହୁଏ ନାରୀ ଯେତେ ପ୍ରଗତିଶୀଳ, ବିଦ୍ରୋହୀ, ଶିକ୍ଷିତ ହେଲେ ମଧ୍ୟ ସ୍ଥାନ କାଳ ଊର୍ଦ୍ଧ୍ୱରେ ଗୋଟିଏ ବିଷୟକୁ ଆଶ୍ରା କରିଥାଏ । ତାହା ହେଉଛି 'ଭଲ ପାଇବା ।' ଭଲ ପାଇବା କାହାକୁ କୁହାଯାଏ ତା'ର ବ୍ୟାଖ୍ୟା ଅନାବଶ୍ୟକ, କିନ୍ତୁ ରସିକତା କରି ଠାଏ କହିଛନ୍ତି ଶ୍ରୀଯୁକ୍ତ ଦାସ - ''ଯଦିବା କେବେ ହାରିଗଲା ପରି ଲାଗେ ତୁମ ସୁନୀକୁ, ତାହେଲେ ଏଇ ଚଉଡ଼ା ଛାତିଟା ଅଛି କେଉଁଥି ପାଇଁ ? ନଇଁ ଆସିଥିବା ମୁହଁଟିକୁ ଚାହିଁ ତାଙ୍କର ମନେ ହେଲା ଯେ ଏଇଆକୁ ଭଲ ପାଇବା କୁହନ୍ତି'' (ପୃ ୨୫୮) ।

ଭଲ ପାଇବା ଏକ ପାରସ୍ପରିକ ଗୁଣ; ଆଦାନ ଓ ପ୍ରଦାନ ଧର୍ମୀ । ନାରୀ ତାହା ପ୍ରଦାନ କରି ପ୍ରମୋଦା, ରମଣ ଦେଇ ସେ ରମଣୀ ହୋଇପାରେ, କିନ୍ତୁ ସାର୍ଥକ ହୁଏ କି

ଏଥିରେ ତା'ର ଜୀବନ ? ଦାନର ପ୍ରତିଦାନ କ'ଣ ? ସେହି ପ୍ରତିଦାନର ପ୍ରତୀକ୍ଷାରେ ରହୁଥିବା ନାରୀ ହିଁ କେବଳ ପୁରୁଷାୟିତ ଭାବକୁ ବିରୋଧ କରିପାରେ ଓ ପୁରୁଷଠାରୁ ମାଗିପାରେ କେବଳ ସନ୍ତାନ ନୁହେଁ ଭଲ ପାଇବା ମଧ । ଏହି ଭଲପାଇବା କାମାତୁର ମନର ଚୁମ୍ବନ ଆଲିଙ୍ଗନ ନୁହେଁ, ଏଥିରୁ ବଳି ଆଉ କିଛି । ତିନି ତିନିଟା ସ୍ୱାମୀଙ୍କ ଭିତରେ 'ସୁଆଗ' ଖୋଜି ନ ପାଇ ସୁନୀତି ଚତୁର୍ଥ ସ୍ୱାମୀ ଭାବେ ରଙ୍ଗନାଥଙ୍କୁ ଗ୍ରହଣ କରିନେଇଛି । (ପ୍ରସଙ୍ଗତ ପାଠକମାନଙ୍କ କୌତୂହଳ ପାଇଁ ସୂଚନା ଯୋଗ୍ୟ ଯେ ସୁନୀତି ତା'ର ସାଥୀ ମାୟା ସହିତ ଗୋଟିଏ ଆଦିବାସୀ ଝିଅର ପାଠପଢ଼ିବା ସଂପର୍କରେ ଅଭିଯୋଗ ନେଇ ଯାଇଥିଲେ ଶିକ୍ଷା ସଚିବ ରଙ୍ଗନାଥଙ୍କ ପାଖକୁ । ୟୁନେସ୍କୋ ସହାୟତାରେ ମାଲକାନଗିରିରେ ଖୋଲିଥିବା 'ବାଣୀ ମନ୍ଦିର' ଶିକ୍ଷାନୁଷ୍ଠାନର ଅପକର୍ମ ବିରୁଦ୍ଧରେ ଥିଲା ଏଇ ଅଭିଯୋଗ । ପୂର୍ବରୁ ସୁନୀତି ଓ ରଙ୍ଗନାଥ ପରସ୍ପରର ନାମ ମାତ୍ର ଜାଣିଥିଲେ ଅନୁପମା ମାଧ୍ୟମରେ । 'ସାତୋଟି ଦିନର ସତୀ'ର ଅନୁପମା, ଯିଏକି ସୁନୀତିର ସ୍କୁଲ ବେଳର ସାଥୀ ଓ ଆମେରିକାରେ ସ୍ୱାମୀ ସହ ସଂପ୍ରତି ବାସ କରେ । ଅନୁପମା ଓ ରଙ୍ଗନାଥ ସଂପର୍କୀୟ ଭାଇଭଉଣୀ । ସୁନୀତି ସ୍ୱଦେଶକୁ ଆସୁଥିବାରୁ ଅନୁପମା ଅନୁରୋଧ କରିଥିଲେ ସୁନୀତିଙ୍କୁ ରଙ୍ଗନାଥଙ୍କୁ ଭେଟିବା ପାଇଁ, ମଧ ଲେଖିଥିଲେ ରଙ୍ଗନାଥଙ୍କୁ ସୁନୀତିଙ୍କ ବିଷୟରେ) । ସାମାନ୍ୟ ପରିଚୟରୁ କ୍ରମଶ ରଙ୍ଗନାଥ ଆକୃଷ୍ଟ ହୁଅନ୍ତି ସୁନୀତିଙ୍କ ବ୍ୟକ୍ତିତ୍ୱରେ, ସରକାରୀ କଳର ଅମଲାତାନ୍ତ୍ରିକ ବ୍ୟଭିଚାର ଅଧିକନ୍ତୁ 'ଅନାଗ୍ରହ କର୍ମପଦ୍ଧତି'କୁ ପସନ୍ଦ କରୁନଥିବା ରଙ୍ଗନାଥ ଚାକିରିରୁ ଇସ୍ତଫା ଦେଇ ସମାଜସେବା କାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି । ସୁଯୋଗ ନେଇ ସୁନୀତିଙ୍କୁ ନିଜର ସ୍ୱାମୀତ୍ୱ ଅର୍ପଣ କରିବସନ୍ତି ।

ସୁନୀତି, ଲେଖକ କହିଛନ୍ତି ଠାଏ, "କେଉଁ ଚିରାଚରିତ ଘରଣୀ କିମ୍ବା ଧର୍ମପତ୍ନୀର ମେଟିରିଆଲ ନୁହଁନ୍ତି । ଯେଉଁଥିପାଇଁ ବୋଧ ହୁଏ ତାଙ୍କ ଦାମ୍ପତ୍ୟ ଜୀବନ ଏତେ ଗଣ୍ଡଗୋଳିଆ ହୋଇଗଲା । ସେ କେବଳ ନାରୀ ନୁହଁନ୍ତି, ମଧ ଜଣେ ବ୍ୟକ୍ତି । ପରେ ମନେ ହେଲା ସେ କେବଳ ଜଣେ ବ୍ୟକ୍ତି ନୁହଁନ୍ତି, ସେ ମଧ ନାରୀ, କିନ୍ତୁ ଏକ ଭିନ୍ନ ନାରୀତ୍ୱର ପ୍ରତୀକ । ଯାହାକୁ ସହଜେ ଭଲ ପାଇ ହୁଏ ନାହିଁ, କିନ୍ତୁ ଥରେ ଭଲ ପାଇଲେ ନା ମୋର ଅନ୍ତରାତ୍ମା ଲୋଡୁଛି ସେହିଭଳି ଗୋଟାଏ ସଂପର୍କ, ଆଉ ତାକୁ ଖାଲି ମନ ଭିତରେ ରଖି ପୋଷି ହେବ ନାହିଁ । ଡରି ଯାଇ ଫେରି ଆସିଲା ପରି ମନେ ହେବ । କିନ୍ତୁ ସେଇତ ମୋ ଡର ଭୟ ଛଡ଼େଇ ନେଇଛନ୍ତି, ମୁଁ କ'ଣ କରିବି ?" (ପୃ ୨୫୫) । ରଙ୍ଗନାଥଙ୍କର ସୁନୀତିଙ୍କ ବିଷୟରେ ଏହି ଅନୁଭବ । ଲେଖକଙ୍କ ଭାବଟି ପ୍ରାଞ୍ଜଳ, ମଧ ଆବେଗପୂର୍ଣ୍ଣ ଏବଂ ଯୁକ୍ତିନିଷ୍ଠ ଯେ ସେ ଖାଲି ଘରଣୀ ରୂପେ ଯୌବନ ଓ କାମକୁ ନେଇ ଦାମ୍ପତ୍ୟ କରିବା ସପକ୍ଷରେ ନୁହଁନ୍ତି । ତାଙ୍କ ଭିତରେ ଲୁଚି ରହିଛି ଜଣେ ନାରୀର ସତ୍ତା ଯାହା ବ୍ୟକ୍ତିତ୍ୱର ସ୍ୱାତନ୍ତ୍ର୍ୟରେ ପୂର୍ଣ୍ଣନାରୀ ଓ ବ୍ୟକ୍ତି । ବ୍ୟକ୍ତି ଓ ନାରୀ ମଧ୍ୟରେ କେଉଁଟି ପ୍ରଥମ ଓ ପ୍ରଧାନ ? ଉଭୟେ ପୃଥକ ନୁହଁନ୍ତି, ସ୍ୱତନ୍ତ୍ର ମଧ

ନୁହଁନ୍ତି । ଏକତ୍ୱରେ ବଳୀୟାନ ଓ ବିକଶିତ ହୁଅନ୍ତି । ବାହୁଲ୍ୟ ଯେ ସେହି ପରିଚୟ ପାଇବା ପରେ ତାଙ୍କୁ ଭଲ ପାଇହୁଏ । ଦୂରରୁ ଡର ଲାଗିପାରେ । ପାଖେଇ ଆସିଲେ ମନରୁ ଭୟ ପଳାଇଯାଏ । ନାରୀ ପ୍ରକୃତିର ବିଧାନରୁ ନୁହେଁ ସମାଜ ବିଧାନରୁ ବହୁ ଭୋଗ୍ୟ ହୁଏ । ପ୍ରକୃତିରେ ଓ ସମାଜରେ ସ୍ତ୍ରୀ ଓ ପୁରୁଷ ଅନ୍ୟୋନ୍ୟାଶ୍ରୟୀ ହୁଅନ୍ତି । ଯଶପାଲ ବିଦ୍ୟା ପ୍ରସଙ୍ଗରେ ଦିନେ ଏହା ଶୁଣାଇଥିଲେ । ପୁରୁଷ ଆସିଛି ମରୁତୃଷା ନେଇ, ନାରୀ ଯୋଗାଇଛି ମଧୁ (ନଜରୁଲ), ତା'ର ମନ ସହସ୍ରବର୍ଷର ସାଧନାର ଧନ ପରି (ରବୀନ୍ଦ୍ର ନାଥ) । ସେ ହୀନ ଭୋଗ୍ୟବସ୍ତୁ ବିଶେଷ ନୁହେଁ । ରଙ୍ଗନାଥ ସେହି ନାରୀକୁ ଆବିଷ୍କାର କରିଛନ୍ତି ଏବଂ ବିଲ୍ୱମଙ୍ଗଳ ପରି ତା'ର ପ୍ରେମ ବାରିରେ ତୃଷା ମେଣ୍ଟାଇବା ପାଇଁ ଛାଡ଼ିଛନ୍ତି ଉଚ୍ଚ ପଦବୀର ଲୋଭ ।

ତୋମାର ପରଶେ ନାରୀ ପୃଥିବୀୟେ ପାଲେ ରୂପ
ପାଲେ ସୁଧା ରସର ପରଶ,
ଜୀବନ କୁସୁମ କେରି ଗୁଂଜରିଲେ କବିକୁଳେ
ବିକଶିଲ କାବ୍ୟର ସୁରସ । (ଅସମୀୟା କବିତା, ନଳିନୀବାଳା ଦେବୀ)

ଯା'ର ସ୍ପର୍ଶରେ ରୂପମୟୀ ହୁଏ ପୃଥିବୀ, ସୁଧା ରସରେ ମୁଗ୍ଧ ହୁଏ, ଜୀବନ କୁସୁମକୁ ପରିବେଷ୍ଟିତ କରି କବିମାନେ ବିଶ୍ୱକୁ କଳଧ୍ୱନିମୟ କରନ୍ତି, ସେଥିରୁ ବିକଶିତ ହୁଏ କାବ୍ୟର ସୁରସ । ଏହା କଳ୍ପନା ବା ଭାବାବେଗ ନୁହେଁ, ଜୀବନ ସତ୍ୟର ବିଷୟ ।

କ'ଣ କୁହନ୍ତି ଆମର ପ୍ରିୟ ସ୍ରଷ୍ଟା ? ରଙ୍ଗନାଥ ଡର ଛାଡ଼ିଲେ । କ'ଣ କରିବେ ସେ ଏଥର ? 'ମାନକାମାଶ୍ଚ ଯୋଷିତଃ' । ଅଶ୍ୱଘୋଷ ଘୋଷଣା କରିଥିଲେ ନାରୀ ସମ୍ମାନ ଚାହେଁ । କିପରି ଏ ସମ୍ମାନ ? ଚତୁର ଉପନ୍ୟାସିକ ଲେଖୁଛନ୍ତି - "ଗୋଟାଏ ଟୋକାଳିଆ ପ୍ରଣୟଯାଚନା, ତହୁଁ ବିବାହ ପ୍ରସ୍ତାବ । ସୁନୀତିଙ୍କ ପ୍ରତି ଯଥେଷ୍ଟ ଶ୍ରଦ୍ଧା ଅଛି ତାଙ୍କର, ଯାହା ଉତ୍ତରୋତ୍ତର ବଢ଼ି ଚାଲିଥିଲା, ପହିଲି ସାକ୍ଷାତ ଦିନଠୁ । ତା' ବୋଲି କ'ଣ ସେହି ଶ୍ରଦ୍ଧାକୁ ଅନ୍ୟ ଭାବରେ ସମ୍ପାଦି ରଖି ହୋଇ ନଥାନ୍ତା ତାଙ୍କ ମନ ଭିତରେ ? ଚାହୁଁ ଚାହୁଁ କେଉଁ ଅସ୍ତଗାମୀ ସୂର୍ଯ୍ୟ ତୁମ ମନଟାକୁ ଏମିତି ଚହଲେଇ ଦେଲା, ପ୍ରଭୂତ ଶ୍ରଦ୍ଧା ମିଶିଗଲା ଉଦ୍‌ଗତ କରୁଣା ସାଙ୍ଗରେ, ନା କ'ଣ ହେଲା ଯେ ତୁମେ ତୁମ ଭବିଷ୍ୟତ ଜୀବନଟାକୁ ସଅଁପିଦେଲ ତାଙ୍କ ହାତରେ ?" (ପୃ.୨୫୪) । ନାରୀତ୍ୱକୁ, ସର୍ବୋପରି ତା'ର ଅନ୍ତର୍ନିହିତ କରୁଣାକୁ ବୁଝିବା ପରେ ତା ଭିତରକୁ ଲମ୍ଫ ନ ଦେଇ ଅନ୍ୟ ଗତି ଥାଏକି ? ତାହାହିଁ ପୌରୁଷ । ନାରୀର ବ୍ୟକ୍ତିତ୍ୱର ଆଲୋକରେ ଉତ୍ତର କାଳର ଜୀବନ-ସୂର୍ଯ୍ୟକୁ ଦୀପ୍ତ କରେ ସେ ପୌରୁଷ । ବ୍ୟଞ୍ଜନାତ୍ମକ ଭାବେ ଲେଖକ ବର୍ଣ୍ଣିଛନ୍ତି, ସୂର୍ଯ୍ୟ ଅସ୍ତଗାମୀ ପ୍ରାୟ, ରଙ୍ଗନାଥଙ୍କ ଜୀବନ ପ୍ରେମର ସୂର୍ଯ୍ୟ (ସେ ଥିଲେ ପତ୍ନୀହରା) ଅସ୍ତ ହୋଇ ନାହିଁକି ? ସେଇ ସମୟରେ ସେ ଟୋକାଳିଆ ପ୍ରଣୟ ଯାଚନା କରିଛନ୍ତି । ଜୀବନ ତ ପ୍ରେମ, ପ୍ରେମରେ କିନ୍ତୁ ଜୀବନ କ୍ୱଚିତ୍ ମିଳେ - ଯାହା ଯଥାର୍ଥରେ ଉପର୍ଯ୍ୟୁକ୍ତ କବିତାଂଶରେ କାବ୍ୟର ସୁରସ ପରି ପୃଥିବୀ ସମାଙ୍ଗନକୁ ଧ୍ୱନିତ କରେ ।

ନାରୀ - ଏ ଶବ୍ଦରେ ରହିଛି ଉଭୟ ସ୍ୱର୍ଗ ଓ ନରକ । ସେ ଭୋଗ୍ୟ ପଣ୍ୟ ନୁହେଁ । ପ୍ରେମର ଅମିୟ ସୁଧା ମନ୍ଥନ କରିଲେ ସେଥିରୁ ସ୍ଫୁରିତ ହେବ ସ୍ୱର୍ଗ, ଅନ୍ୟଥା ନରକର କଳାଛାଇ ଆଚ୍ଛାଦିତ କରିବ ଜୀବନ । ସୁନୀତି ଚାହିଁଛନ୍ତି କେବେ ସ୍ୱର୍ଗର ସଂଦେଶ, ଅଛି ତାଙ୍କ ଭିତରେ ଗଭୀର ଆତ୍ମବିଶ୍ୱାସ । ସ୍ୱାତନ୍ତ୍ର୍ୟ ଏହି ଯେ ଏକାଧିକ ସ୍ୱାମୀ ଭୋଗ କରି ମଧ ସେ ବିଦେଶିନୀ ପରି ହିନ୍ଦୁ ସଂସାରମୁକ୍ତ ନୁହଁନ୍ତି । ତାଙ୍କ ଭିତରେ ରହିଛି ଅମାପ ଶ୍ରଦ୍ଧା, ବାତ୍ସଲ୍ୟ, ସଖ୍ୟତା ଯୁଗପତ୍ । "who is it can read a woman" ସେକ୍ସପିଅରଙ୍କ ବାଣୀ ଭୁଲ ହୋଇଛି ଯେ ନାରୀ ରହସ୍ୟମୟୀ, ଅବଳା, ନରକର ଦ୍ୱାର । ମଧ୍ୟଯୁଗୀୟ ମାନବିକତାର ଯୁଗ ଅପସରି ଯାଇଛି । ବଦଳୁଥିବା ପୃଥିବୀରେ ସଂଘର୍ଷ ଆଜି ବ୍ୟକ୍ତି ଚେତନାକୁ ଯେପରି ଅସ୍ତ ଓ ବିବ୍ରତ କରେ ସେଥିରୁ ତା'ର ଅବଚେତନ ସ୍ତର ଆଉ ଲୁଲ୍କାୟିତ ହୋଇ ରହିନାହିଁ । ଅପରିଚିତ ହୋଇ ରହିନାହିଁ ପୁରୁଷ ବିଦିତ ବିଶ୍ୱ ନାରୀ ପାଇଁ । ସେ ମଧ ବିଶ୍ୱର କୌଣସି ଏକ ବିନ୍ଦୁରେ ସୁଦୃଢ଼ କରିପାରେ ନିଜକୁ, ବିନା କାହାର ସହାୟତାରେ । ମାତ୍ର ତାହା କ'ଣ କାମ୍ୟ ? କ'ଣ ଜୀବନ ବା ସୁଶୋଭନ ? ପାଶ୍ଚାତ୍ୟ ବ୍ୟକ୍ତିତନ୍ତ୍ର ବ୍ୟକ୍ତି ଭିତରେ ସ୍ୱାଭିମାନ ଆଣି ପାରିଥାଏ, ସ୍ୱାତନ୍ତ୍ର୍ୟକୁ ଭୂଷଣ କରି ବ୍ୟକ୍ତି ନିଜର ସାମର୍ଥ୍ୟର ବିଜୟ ଧ୍ୱଜା ଉଡ଼ାଇ ପାରିଥାଏ - ସୁନୀତି ଯାହା କରିଥିଲେ, ଅଖଣ୍ଡ ତୃପ୍ତିର ଧନ ତାଙ୍କୁ ମିଳିଥିଲା, ସ୍ୱଦେଶକୁ ଆସି ପୁଣି ଫେରି ପାରିଲେ ନାହିଁ କାହିଁକି ? କେଉଁ ବିଦେଶ ତାଙ୍କୁ ହେଲା କାଳ ? ବାଲ୍ୟକାଳରୁ ଛାଡ଼ି ଯାଇଥିବା ପୁଅ ସୁମୁ ? ନା ରଙ୍ଗନାଥଙ୍କ ଭଲ ପାଇବା ? ଉଭୟ। କହୁଛନ୍ତି ଶ୍ରୀ ଦାସ - ''ତୁ ବି ଗୋଟିଏ ଭାରତୀୟ ନାରୀ । ନିଜକୁ ଯେତେ ସ୍ୱାଧୀନ ବୋଲେଇଲେ ବି ତୋର ବି ଲୋଡ଼ା ଏଇଭଳି ଗୋଟିଏ ଆଶ୍ରୟ'' (ପୃ. ୨୫୮) । ଅଛି ଦୃଢ଼ତା ଯେ ''କେହି ହେଲେ ମତେ ଦୂରେଇ ଦେବେ ନାହିଁ କୋଉ ଯବନଟାଏ ବୋଲି । ପୁଅ ବି ଫେରି ଆସିବ । ବୁଝିବ ଯେ ତା ବୋଉ ଏତେ ଖରାପ ନୁହେଁ'' । (ପୃ. ୨୫୮) । ସ୍ୱାତନ୍ତ୍ର୍ୟ ସହଜାତ କିନ୍ତୁ ତା ପାଇଁ ଅନୁରୂପ ସାଧନା ଆବଶ୍ୟକ । ଲୋଡ଼ା ତା ସାଙ୍ଗକୁ ଆତ୍ମ ବିଶ୍ୱାସ । ତାହାହିଁ ବ୍ୟକ୍ତିତ୍ୱର ବିକାଶ ଓ ପ୍ରସାରଣର ମାପକାଠି ।

'ବିଦେଶିନୀ' ନାରୀ ମନସ୍ତତ୍ତ୍ୱ ଆଧାରିତ ମନସ୍ତାତ୍ତ୍ୱିକ ଉପନ୍ୟାସ । ଏହାର ଶୈଳୀ ସ୍ୱଗତଭାଷ ମୂଳକ (Internal monologue) । ଉପନ୍ୟାସରେ ଏ ଶୈଳୀର ଗୁରୁତ୍ୱ ହେଉଛି ମନ ଭିତରର ଅନୁଭୂତ ଅଭିଜ୍ଞତାକୁ ପ୍ରକାଶ କରିବାରେ । ଅବଶ୍ୟ ବହୁ ଜଟିଳ କର୍ମ । ଉଇଲିୟମ ଜେମ୍‌ସ ଏହାର ଉପମାତ୍ୱ ଖୋଜିଥିଲେ 'ଚେତନା ପ୍ରବାହ' ଶବ୍ଦ ଭିତରେ । 'ଚେତନା ପ୍ରବାହ' ଗ୍ରହଣ କରି ସେ ''ଭାବର ଛନ୍ଦାୟିତ ଗତି'' ଓ 'ଭାବର ସମନ୍ୱିତ ଗତି' (Chain of thought and Train of thought) କୁ ବାଦ ଦେଇଥିଲେ । କାରଣ ସେ ଭାବିଥିଲେ ଯେ ଏ ଦୁଇଟିର ଲକ୍ଷଣ ହେଉଛି ଭାବକୁ ଯୋଡ଼ିଦେବା । 'ଜଳ ସ୍ରୋତ' (a

river or stream)ର ଉପମା ଦେବାର ଉଦ୍ଦେଶ୍ୟ ହେଉଛି ଭାବର ନିରବଚ୍ଛିନ୍ନ ଗତିର ସ୍ୱରୂପ ପ୍ରକାଶ କରିବା । ତେବେ ଭାବର ଏ ପ୍ରକାର ଗତି ଚେତନା ଜଗତର ବା ଜୀବନର ବିଷୟାନ୍ତରର ସୂଚନା ଦିଏ । ମନୋଜଗତଟି ସିନେମା ପରି; ଚଳମାନ ଚିତ୍ରରାଜିରେ ସମୃଦ୍ଧ । ତାହା ଭିତରର ଦୃଶ୍ୟ । Edouard Dujardian ଏହି ଭିତର ମନର କଥା କୁହା ରୀତିର କେତୋଟି ଲକ୍ଷଣ ଦେଇଥିଲେ ବୋଧହୁଏ ପ୍ରଥମେ; ଯେଉଁଥିରେ କହିଥିଲେ-ଚରିତ୍ର ମନକୁ ମନ କହୁଥାଏ, ଅବଶ୍ୟ କାହାକୁ ଶୁଣାଇକରି ନୁହେଁ, ତା'ର ବ୍ୟକ୍ତିଗତ ଛପିଲା କଥା ସେ ଉଚ୍ଚାରଣ କରୁଥାଏ । ଲେଖକ ତା'ର ଚିନ୍ତାରେ ହସ୍ତକ୍ଷେପ କରନ୍ତି ନାହିଁ, କିଛି ମନ୍ତବ୍ୟ ମଧ ଶୁଣାନ୍ତି ନାହିଁ । ଯେକୌଣସି ଏକାନ୍ତ ଅନ୍ତରାଳାପ ପରି ଏହାର ଶ୍ରୋତା ନଥାନ୍ତି, ଅଶବ୍ଦର ଶବ୍ଦ ପରି ତାହା ଅନ୍ତର ଭିତରେ ଧ୍ୱନିତ ହେଉଥାଏ କେବଳ । ପାରମ୍ପରିକ ସ୍ୱଗତ ସଂଳାପ ଠାରୁ ଏହା ଭିନ୍ନ ଏହି କେଇଟି କ୍ଷେତ୍ରରେ । ଏହାର ବିଷୟ ହେଉଛି ଅତି ଅନ୍ତରଂଗ ଭାବଟି ମନରେ ଯେମିତି ସ୍ୱାଭାବିକ ଭାବେ ଗଜୁରି ଉଠୁଥାଏ ଓ ମନକୁ ଆଚ୍ଛନ୍ନ ରଖୁଥାଏ ଠିକ୍ ସେହିପରି ପ୍ରକାଶ ପାଏ । ତା'ର ପ୍ରକାଶ ପ୍ରତ୍ୟକ୍ଷ ଭାଷାରେ ଘଟେ । ଶବ୍ଦ ବା ବାକ୍ୟ ବିନ୍ୟାସରେ ଚାତୁର୍ଯ୍ୟ ନଥାଏ, ସଂକ୍ଷିପ୍ତତା ତା'ର ଏକ ଲକ୍ଷଣ । ଆଜିର କବିତାରେ ଭାବର ଅତ୍ୟାବଶ୍ୟକ ପରିପ୍ରକାଶ ପରି ଅନ୍ତରାଳାପ ନିଭୃତ ନିଆଁଟିକୁ ଚିହ୍ନେଇ ଦିଏ । ବସ୍ତୁତ ନିଭୃତ ମନର ଅକୁହା ଅଶୁଣା କଥା ହେଉଛି ଚେତନା ପ୍ରବାହ ଧାରାର ରୂପ । ତାହା ଅବଚେତନ ମନ ସହିତ ଘନିଷ୍ଠ ଭାବେ ସଂପୃକ୍ତ । ଯୁକ୍ତି ଉଠିଛି, ଅବଚେତନର କଥାକୁ ପ୍ରକାଶ କରିବାରେ ଏପରି ଏକ ଅବଚେତନ ଶୈଳୀ ଦ୍ୱାରା ସମ୍ଭବ ନୁହେଁ । ଏଣୁ ଦରକାର ପ୍ରତୀକ, ଯାହା ଚେତନମନର ଅଭିବ୍ୟକ୍ତିରୁ ସୃଷ୍ଟି ହୁଏ । ଏହି ପରିପ୍ରେକ୍ଷୀରେ ଚେତନ ମନର ଅଭିବ୍ୟକ୍ତିରୁ ସୃଷ୍ଟ ପ୍ରତୀକଟି କ'ଣ ? କିଶୋରୀବାବୁଙ୍କ ବର୍ଣ୍ଣନା ଶୈଳୀରେ ସେପରି ଶବ୍ଦ ପ୍ରତୀକର ବ୍ୟବହାର ନାହିଁ । ଅଛି ବିଷୟ ପ୍ରତୀକ । ଉପନ୍ୟାସରେ ମୁଖ୍ୟତ ଏଇ ବିଷୟ ପ୍ରତୀକ ବିଦେଶିନୀ ଭାବକୁ ଧରି ଗଢ଼ି ଉଠିଛି । ସୁନୀତି ଓ ରଙ୍ଗନାଥ ଉଭୟଙ୍କ ଭାବନା ସ୍ରୋତରେ ଯଥାକ୍ରମେ ସ୍ୱାମୀତ୍ୱର ଓ ପତ୍ନୀତ୍ୱର ଅନୁସନ୍ଧାନରେ ତାହା ବିକାଶ ଲାଭ କରିଛି । ଅନ୍ୟ ସମସ୍ତ ଚରିତ୍ର (ଗୌଣ କୁହାଯାଇପାରେ) ସଂପର୍କରେ ଲେଖକ ପ୍ରତ୍ୟକ୍ଷ ବର୍ଣ୍ଣନା କରିଛନ୍ତି ଅର୍ଥାତ୍ ସେ କହିଛନ୍ତି । କିନ୍ତୁ ଦୁଇମୁଖ୍ୟ ଚରିତ୍ର ସେମାନଙ୍କ ଭାବ ଭାବନାର ଅବଳୀଳା ଗତିରେ ନିଜର ଅର୍ନ୍ତମର୍ମ ପ୍ରକାଶ କରିଛନ୍ତି । ଶୈଳୀ ଦୃଷ୍ଟିରୁ କିଶୋରୀବାବୁଙ୍କ ଏହି ରୀତିଟି ତାଙ୍କର ମୌଳିକ, ଗଳ୍ପ ଓ ଉପନ୍ୟାସ ଉଭୟତ୍ର ପରିଦୃଷ୍ଟ ହୁଏ । ଏ ରୀତିଟି ଅନନ୍ୟ ଏକ ରୀତି, ଯାହା କ୍ୱଚିତ ସ୍ରଷ୍ଟା ଅବଧାରଣ କରନ୍ତି । ମନସ୍ତତ୍ତ୍ୱର ବିଷୟ ବ୍ୟତିରେକ ଏ ରୀତିର ବ୍ୟବହାର ସୁଲଭ ନୁହେଁ । ସୁନୀତି ନିଜର ପରାଭବକୁ ସ୍ୱୀକାର କରି ନ ଥିବା ହେତୁ ମନୋଜଗତଟି ପ୍ରଶ୍ନାତୁର, ନାନା ଦ୍ୱନ୍ଦ୍ୱରେ ବିଦୀର୍ଣ୍ଣ । ବସ୍ତୁତ, ଉପନ୍ୟାସଟି ପଢ଼ିଗଲେ ଏକ ଗୋପନ କାରୁଣ୍ୟ ବୋଧ

ଅନୁଭୂତ ହେବା ଅସ୍ୱାଭାବିକ ହେବ ନାହିଁ । ପାଠକକୁ ଏହାର ପରିଚୟ ଦେବା ଲକ୍ଷ୍ୟରେ ଲେଖକ ସାମୟିକ ବ୍ୟାଖ୍ୟା କରି କିଛି କହିଛନ୍ତି ଏ ବିଷୟରେ । ଏହା କ'ଣ ତାଙ୍କର ସଜ୍ଞାନ କୌଶଳ ? ଅପର ପକ୍ଷରେ ରଙ୍ଗନାଥ ନିଜର ବିଫଳତାକୁ ଗ୍ରହଣ କରି ନେଇଛନ୍ତି ଓ ତା'ର କାରଣ ମଧ ବାଢ଼ିଛନ୍ତି । ତାଙ୍କ ମନରେ ବସା ବାନ୍ଧି ରହିଛି କେଉଁ ଏକ ଦରିଦ୍ର ପଲ୍ଲୀର ବୁଢ଼ା ଯିଏ ବାଟ ଚାହିଁ ବସିଛି ତାଙ୍କୁ ଅର୍ଥାତ୍ ସରକାରୀ କଳ ଦଉଡ଼ିଯିବ ତା'ର ଦୁଃଖ ମୋଚନ ପାଇଁ । କିନ୍ତୁ ସମ୍ଭବ ହୋଇନାହିଁ । ରୁଗ୍ଣ ଅମଲାତନ୍ତ୍ର ନିଜର ଶୁଦ୍ଧାଚାର ରକ୍ଷା କରିପାରି ନାହିଁ । ଏଥିପାଇଁ ନିଜକୁ ଦାୟୀ କରି ରଙ୍ଗନାଥ ଇସ୍ତଫା ଦେଇଛନ୍ତି ଓ ପ୍ରତ୍ୟକ୍ଷ ଜନସେବାକୁ ଓହ୍ଲାଇ ଆସିଛନ୍ତି । ସୁନୀତିଙ୍କ ସହାୟତା ହୋଇଛି ତାଙ୍କର କାମ୍ୟ । ଏଇ ପ୍ରସଙ୍ଗରେ ବର୍ଣ୍ଣନାର ରୀତି ଏକାନ୍ତ ଆପଣାର ହେବା ସ୍ୱାଭାବିକ । ଲେଖକ ତାହାହିଁ କରିଛନ୍ତି ।

ରଙ୍ଗନାଥ କ'ଣ କାମନା କରନ୍ତି ? ସୁନୀତିଙ୍କୁ ? ନା ଅମଲାତନ୍ତ୍ରରେ ନିଜର ଅପାରଗତାରୁ ମୁକ୍ତି ନା ତଦ୍‌ଜନିତ ଅପରାଧର ପ୍ରାୟଶ୍ଚିତ ? ପ୍ରଶ୍ନଟିକୁ ପାଠକଙ୍କ ଉପରେ ଲେଖକ ଛାଡ଼ି ଦେଇଥିବା ପରି ମନେହୁଏ । ସେମାନେ ସ୍ଥିର କରନ୍ତୁ । ଏପରି ଅବବୋଧ ମନକୁ ଆସେ । ତେବେ କ'ଣ ଉପନ୍ୟାସର ପ୍ରାୟ ଏକ ତୃତୀୟାଂଶରେ ବର୍ଣ୍ଣିତ ଅମଲାତାନ୍ତ୍ରିକ ଦୂରାଚାର ବା ନିଷ୍ଫଳ କାର୍ଯ୍ୟକ୍ରମର ବର୍ଣ୍ଣନା ଉଦ୍ଦେଶ୍ୟହୀନ ? ଉଦ୍ଦେଶ୍ୟ ସହିତ ଏହାର ସଂପର୍କ କ୍ଷୀଣ । କେବଳ ପ୍ରାସଙ୍ଗିକ ଭାବେ ରଙ୍ଗନାଥ ଚରିତ୍ରର ବିଶେଷତା ପ୍ରଦର୍ଶନ । ସେହି ପ୍ରଦର୍ଶନର ପ୍ରକରଣରେ ଅନ୍ୟାୟର ବିରୋଧାଚରଣ । ଏଥିପାଇଁ ଆବଶ୍ୟକ ଶକ୍ତିର ଉତ୍ସ ସ୍ୱରୂପ ସେ ଦେଖିଛନ୍ତି ସୁନୀତିଙ୍କୁ ।

ବସ୍ତୁତ, 'ବିଦେଶିନୀ' ଉପନ୍ୟାସ ଓଡ଼ିଆ ଉପନ୍ୟାସ ଜଗତରେ ଏକ ନୂତନ ପଦକ୍ଷେପ - ଅମଲାତନ୍ତ୍ର ନିଜର ସ୍ୱେଚ୍ଛାଚାରରୁ ମୁକ୍ତି ପାଇବାକୁ ହେଲେ ବିଦ୍ୟା ଓ ବିଦ୍ୱାନ ଜଗତରୁ ଶକ୍ତି ସଂଚୟ କରୁ । ନାରୀ ବା ପୁରୁଷ ଯେ ହେଉ ହଜି ଯାଇଥିବା ଆତ୍ମବିଶ୍ୱାସକୁ ପୁନରୁଦ୍ଧାର କରିବା ହେଉଛି ସତେ ଯେପରି ଆଜିର ନିର୍ଦ୍ଦିଷ୍ଟ ଆବଶ୍ୟକତା । ପରିସ୍ଥିତି ଯେତେ ଭୟଙ୍କର ହେଉ ପଛେ, ହାରି ନଯାଇ, ବ୍ୟକ୍ତିତ୍ୱକୁ ରୁଗ୍ଣ ମାନସିକତାରୁ ମୁକ୍ତ କରିବାକୁ ଶିକ୍ଷା କରିପାରିଲେ ସେଥିରେ ମଙ୍ଗଳ ଅଛି ।

**'ତୁମ ଆମ ଶତାବ୍ଦୀ'**- ବିଗତ ଶତାବ୍ଦୀର ଏକ ଦର୍ପଣ । ଇତିହାସର ସୁନାନିଭ ଉପଳ ଖଣ୍ଡରୁ ଆହୃତ ଅନେକ ଘଟଣା ଓ ବିଷୟଚକ୍ରର ଏକ ମନୋଜ୍ଞ ଆଲେଗୋରିକାଲ ସଙ୍କେତକୁ ଧରି ସମୃଦ୍ଧ । ବିଂଶ ଶତାବ୍ଦୀ ଥିଲା ଯୁଗପତ୍ ସ୍ପର୍ଶାତୁର ଓ ଉତ୍ତେଜନାପ୍ରବଣ । ସେ ସମୟର ଘଟଣାବଳୀ ଇତିହାସରେ ଛାଡ଼ିଯାଇଛି ଏକାଧାରରେ ପରିତାପକର ଓ ଆନନ୍ଦକର ସ୍ମୃତି । ଭାରତୀୟ ଜନଜୀବନରେ ଥିଲା ଆଶାର ସଙ୍କେତ ସମୁଦ୍ର ପରି ଉଚ୍ଛ୍ୱାସମୟ । କିନ୍ତୁ ସେ ଆଶାର ପ୍ରଦୀପ ପୂର୍ଣ୍ଣ ଶିଖା ପ୍ରକଟ କରିବା ପୂର୍ବରୁ ନିରାଶା ଧୂମାଳ ଭରି ଦେଲା ତ୍ରାସ

ଓ ଭୀତି । ପ୍ରଥମାର୍ଦ୍ଧର ସଞ୍ଚରିତ ଆବେଗ ଦ୍ୱିତୀୟାର୍ଦ୍ଧରେ ମୃତ କଳ୍ପ ପରି ସ୍ଥାଣୁ ହୋଇ ରହିଗଲା । ସ୍ୱପ୍ନ ଓ ସ୍ୱପ୍ନ ଭଙ୍ଗ, ପ୍ରାପ୍ତି ଓ ଅପ୍ରାପ୍ତି ଭିତରେ ଅପସୃତ ସମୟ ଜାତି ଓ ଦେଶ ବୋଲି ସାମାନ୍ୟତମ ଉତ୍ସାହ କି କମ୍ପନ ଆଣିପାରିଲା ନାହିଁ । 'ଅନେକ ଦାରୁଣ ଚିତାନଳ' ମଧ୍ୟ ଜଳି ଉଠିଲା ପ୍ରଥମାର୍ଦ୍ଧର 'ପ୍ରତିଶ୍ରୁତିକୁ ଉପହାସ କଲା ପରି' । ଏହା ଗୋଟାଏ ବେଦନାଦାୟକ ଅନୁଭୂତି; ଯେଉଁମାନେ ଏ ସମୟରେ ପୂର୍ଣ୍ଣ ଜୀବନ ଭୋଗିଛନ୍ତି ସେଇମାନଙ୍କ ପାଇଁ । କେହି କେହି ମଧ୍ୟ 'ଇଏ ନୁହେଁ ଇଏ ନୁହେଁ, ଏଇଥିରେ ସବୁକିଛି ପୋଡ଼ି ପାଉଁଶ ହୋଇଯାଇ ନାହିଁ ବୋଲି ଚିତ୍କାର କରି ଉଠିଥିଲେ ।' ବସ୍ତୁତ କାଳଟି ଥିଲା ବିରୋଧାଭାସର । ଯଦିଓ ମହାତ୍ମାଙ୍କ ସଂଗ୍ରାମ ବିଶ୍ୱ ପାଇଁ ବିସ୍ମୟକର ଥିଲା ତାହା ଅଚିରେ କଦର୍ଥକ ରୂପେ ବ୍ୟବହୃତ ହେଲା । ଶନି ମଙ୍ଗଳ ତୁଲ୍ୟ ଭାରତୀୟ ନେତୃବୃନ୍ଦ ଓ ରାଜନୀତି କଲ୍ୟାଣର ମୂଳୋତ୍ପାଟନ କରି ଅପସଂସ୍କୃତିର ବୀଜ ବୁଣିଦେଲେ । ସ୍ୱପ୍ନଭଙ୍ଗର କଳାକଳା ଛାଇ ତା'ର କାୟାବିସ୍ତାର କରି ଚାଲିଲା । ଜଡ଼ତା ହେଲା ଜାତୀୟତାର ନାମାନ୍ତର, ଯେମିତିକି ଦେଶପ୍ରୀତିର ଅର୍ଥ ହେଲା କ୍ଷମତା ଓ ଦୁର୍ନୀତି, ଶାସନ କହିଲେ ଗାଦିନାସୀନ ହେବା । ଦୀର୍ଘ ୩୦ ବର୍ଷର ଅହିଂସା ଆନ୍ଦୋଳନରୁ ମିଳିଥିବା ଶିକ୍ଷା ହିଂସାର ହୋମାନଳରେ ତା'ର ପରୀକ୍ଷା ଦେଲା । ଏହି କାଳର କତିପୟ ତ୍ୟାଗ କେତେକଙ୍କୁ ଭୋଗ ମଣ୍ଡପର ମହନ୍ତ ହେବାକୁ ସୁଯୋଗ ଦେଲା । ଜନତା ଠାରୁ ଦୂରେଇ ଗଲା ଶାସନ । କାଗଜର କଲ୍ୟାଣ କୋଣାର୍କ ଗଢ଼ା ହେଲା ଶାସନ କେନ୍ଦ୍ରର ଇମାରତ ଭିତରେ । ସ୍ୱଳ୍ପସଂଖ୍ୟକ ହିତାଧିକାରୀଙ୍କୁ ମନେଇ ଗଣତନ୍ତ୍ର ରେଳ ସିଟି ବଜାଇ ଭାରତ ପରିକ୍ରମା କଲା । ଧ୍ୱନିପ୍ରଧାନ ବିକାଶ, ପ୍ରତିଶ୍ରୁତିପ୍ରଧାନ ଯୋଜନା ଭିତରେ ପ୍ରଣୟନ ହେଲା ରାଷ୍ଟ୍ରୀୟ ଅଭିଳାଷ । ସତ ଓ ମିଛ ଗୋଟିଏ ବିନ୍ଦୁରେ ବିଦ୍ୟମାନ ରହିଲେ, ସ୍ଥାଣୁତା ଓ ପ୍ରଗତିକୁ କୋଳରେ ଧରି । ହିଂସା ଓ କଲ୍ୟାଣ ହେଲେ କୋଳାକୋଳି । ବଡ଼ ବିଚିତ୍ର ଭାବ ଭିତରେ ଜାତୀୟ ଜୀବନର ସଞ୍ଚାର ଘଟିଲା । ଯାହା ଘଟୁଛି ସେଥିପ୍ରତି ସମର୍ଥନ ନଥିବା ସତ୍ତ୍ୱେ ତା'ର ଭୟାବହତାର ପ୍ରତିପକ୍ଷ ଗଢ଼ିଉଠିଲେ ସଂଗ୍ରାମ । ଏହି ହେତୁ ଭାରତୀୟ ଅନ୍ତର୍ଚେତନାଟିର ସୁସ୍ଥ ପରିଚୟ ମିଳିବା ସମ୍ଭବପର ବୋଲି ମନେ ହେଲା ନାହିଁ । ହୃଦୟରେ ଅଜ୍ଞାତ ଏକ ଅନୁଭବ । ତାକୁ ଚିହ୍ନି ମଧ୍ୟ ଚିହ୍ନି ହୁଏ ନାହିଁ; ତାହା ଅଶ୍ରୁ ଭରି ଦିଏ ଆଖିରେ କିନ୍ତୁ ଆଖି ଭିଜେ ନାହିଁ । ଏପରି ଏକ ସ୍ଥିତିକୁ କିଏ କିପରି ବୁଝାଇ ପାରିବ ? ତା'ର ଅନବଦ୍ୟ ଇଙ୍ଗିତ କେଉଁ ଭାଷାରେ ପ୍ରକାଶ ପାଇପାରେ ? ଯଥାର୍ଥରେ ତାହା ଅବାଙ୍ମାନସ ଗୋଚର ? ସ୍ୱାଧୀନତା ସଂଗ୍ରାମ କାଳରେ ଭାରତଛାଡ଼ ଆନ୍ଦୋଳନରେ ଗାନ୍ଧିଭକ୍ତ ସ୍କୁଲ ଶିକ୍ଷକ ଜଗନ୍ନାଥ ସହିଦ ହେବାର ବହୁ ପୂର୍ବରୁ ଆଙ୍କିଥିଲେ ଚିତ୍ରଟିଏ ସେହିପରି ଏକ ଅନୁଭବକୁ ଆଧାର କରି । ତା'ର ନାମ ରଖିଥିଲେ 'ଦୁଃଖ' ।

**ସମୟ ନାହିଁ**

ଉପନ୍ୟାସର ପ୍ରଥମ ଭାଗ ମାତ୍ର ଛ'ଟି ପୃଷ୍ଠାକୁ ଧରି 'ଦୁଖ' ନାମିତ । ଶେଷର ୨୧ ପୃଷ୍ଠା 'ସୁଖ' ନାମେ ଚିହ୍ନିତ । ମଝି ଅଂଶ ଅର୍ଥାତ୍ ୨୫୫ ପୃଷ୍ଠାର ଦୀର୍ଘ ଉପସ୍ଥାପନ ହେଉଛି 'ଇତିହାସ' । ଏପରି ତିନି ଅବସ୍ଥାର ଚିତ୍ର 'ତୁମ ଆମ ଶତାବ୍ଦୀ' । ତିନୋଟି ପୀଢ଼ିର ଚରିତ୍ରମାନଙ୍କ ଉପରେ ଶତାବ୍ଦୀର ସର୍ବଶ୍ରେଷ୍ଠ ଓ ଶେଷ ବିସ୍ମୟ ମହାତ୍ମା ଗାନ୍ଧି ଯେପରି ପ୍ରଭାବ ପକାଇଛନ୍ତି, ତା'ର ଏକ ଆଲେଖ୍ୟ ବହନ କରିଛି ଆରମ୍ଭରେ, 'ଦୁଃଖ'ର ଆବିଷ୍କାର ଘଟିଛି । ଦୁଖ ଅର୍ଥାତ୍ ଦୁଖ ନାମିତ ଛବିଟିଏ । ପ୍ରାୟ ଦୀର୍ଘ ୫୦।୬୦ ବର୍ଷ ପରେ ତାହା ପୁନରାବିଷ୍କୃତ ହୁଏ ଯେତେବେଳେ ତିରୁ ଓ ପୁନମ ଦମ୍ପତି ଦିଲ୍ଲୀରୁ ଆସିଛନ୍ତି ପୈତୃକ ବାସଗୃହ ଓଡ଼ିଶାକୁ ଆମେରିକା ଯିବା ପୂର୍ବରୁ । ତିରୁ ତୃତୀୟ ପିଢ଼ିର ଆଧୁନିକ ଉଚ୍ଚାଭିଳାଷୀ ଯୁବକ । ସେ ତା'ର ଜେଜେଙ୍କୁ ଦେଖିନାହିଁ । ବାପାଙ୍କ ଠାରୁ ଶୁଣିଛି ଯାହା । ସେ ଆଙ୍କିଥିଲେ ଚିତ୍ରଟିଏ ଯାହାର ନାମ ସେ ରଖିଥିଲେ 'ଦୁଖ' । ନବବଧୂ ପୁନମକୁ ଖୁବ ଆକୃଷ୍ଟ କରିଛି ପରିତ୍ୟକ୍ତ ଘରର ବହୁ ଅଲୋଡ଼ା ବସ୍ତୁ ମଧ୍ୟରୁ ଏହି ଚିତ୍ରଟି । ତାକୁ ସେ ନେଇଯିବ ସାଙ୍ଗରେ ଆମେରିକା ।

ଜେଜେ ଜଗନ୍ନାଥ ଉଚ୍ଚ ଶିକ୍ଷା ସତ୍ତ୍ୱେ ଗାଁ ଛାଡ଼ି ନ ଥିଲେ । ଗାନ୍ଧିଙ୍କ ଆଦର୍ଶ ଅନୁପ୍ରାଣିତ ହୋଇ ବହୁ ଗାନ୍ଧି ଦର୍ଶନ ପଢ଼ିଥିଲେ । ନିର୍ଭୀକତା ଓ ସ୍ୱଷ୍ଟତା ଥିଲା ତାଙ୍କ ବ୍ୟକ୍ତିତ୍ୱର ଅମ୍ଳାନ ଅଦମନୀୟ ବିଶେଷତ୍ୱ । ଆଙ୍କିଥିଲେ ଚିତ୍ର ଯାହା କଲିକତି ବଡ଼ ଶିଳ୍ପୀଙ୍କ ଦ୍ୱାରା ଉଚ୍ଚ ପ୍ରଶଂସା ପାଇଥିଲା । କି ଛବିଟିକି ଏମିତି ? ଜଗୁ ମାଷ୍ଟ୍ରେ ଚପଳତା ବଶତ ପତ୍ନୀ ପଦ୍ମା ଓ ପୁଅ ରାମୁର ଛବି ମଧ ଆଙ୍କନ୍ତି, ମାତ୍ର ତାହା କାହାରି ଚେହେରା ସହ ମିଶେ ନାହିଁ । ସେଉଠୁ ସେ ଚିରାହୁଏ । ଏଇପରି ଆଙ୍କିବା ଓ ଛିଣ୍ଡେଇବା ଭିତରେ ଦିନେ ଗୋଟାଏ ବୁଢ଼ାର ଛବି ଆଙ୍କି ହୋଇଗଲା । ସେ କାହା ଭଳିଆ ଦିଶୁ ନଥିଲା । ହେଲେ ତା ଆଡ଼କୁ ଅନେଇ ରହିବାକୁ ଇଚ୍ଛା ହେଉଥିଲା । ସତେକି ତା'ର ସେଇ ଗହୀର ତୀବ୍ର ଚାହାଣିର ଅବହେଳା କରି ହେବ ନାହିଁ । ସେଇଠୁ ତାଙ୍କର ସତ ବଳିଲା ନାହିଁ ତାକୁ ଛିଣ୍ଡେଇ ଦେବା ଲାଗି । ଛବି ଦେଖି ପତ୍ନୀ ମୁଗ୍ଧ ହେଲେ, ଏଡ଼େ ସୁନ୍ଦର ଭାବେ ସେ ମଣିଷର ଛବି ଆଙ୍କି ପାରୁଛନ୍ତି ! ହେଲେ ସେଇଟି କାହାର ଛବି ? କହିଲେ ଜଗୁମାଷ୍ଟ୍ରେ, ''କାହାରି ନୁହେଁ, ତେବେ ଧରିନିଅ ମୋର । ମୋର ଆଖି କାନ ଓଠ ଯା ସାଙ୍ଗରେ ମିଶୁ ନାହିଁ ଅବଶ୍ୟ, କିନ୍ତୁ ଯା ମନର ଭାବ, ଇଏ ଯାହା କହିବାକୁ ଚାହୁଁଛି .... ଧରିନିଅ ମୁଁ ଯେତେବେଳେ ବୁଢ଼ା ହୋଇଯାଇଥିବି, ଇଏ ସେଇ ବୁଢ଼ା ପୁରୁଷର ଛବି । ଆଉ ଭାବିନିଅ ଯେ ସେ ଯାହା କହିବାକୁ ଚାହୁଁଛି ତା ମୋ ମନର ଭାବ ସାଙ୍ଗରେ ମିଶିଯାଇପାରେ ସେତେବେଳେ'' (ପୃ ୨୬) । ହେଲା, ଛବିଟି କୋଉ ଏକ ବୁଢ଼ାର, ତା'ର ନାମ ତ ଦରକାର । ପତ୍ନୀଙ୍କ ଏପରି ଜିଜ୍ଞାସାରେ ଆକସ୍ମିକ ଭାବେ ଜଗୁମାଷ୍ଟ୍ରେ କହିପକାଇଲେ 'ଦୁଖ' । କିନ୍ତୁ ଦୁଖ କାହିଁକି ? ଉତ୍ତର ଦେଲେ ଜଗନ୍ନାଥ - ''ମୁଁ ବି ଜାଣେ ନାହିଁ ସେ କୋଉଥିପାଇଁ ଦୁଖ କରୁଛି । ଖାଲି ଏତିକି ବୁଝିଛି ଯେ ଇଏ ଏମିତି ସେମିତି ଦୁଖ ନୁହେଁ, ଟାଣୁଆ ଦୁଖ, ଯାର ଗୋଟାଏ ବିଶେଷ ମର୍ଯ୍ୟାଦା ଅଛି'' (ପୃ ୨୬) ।

ଜଗନ୍ନାଥ ସହିଦ ହେବା ବେଳକୁ ପୁଅ ରାମୁ ଦଶବାର ବର୍ଷର । ଜଗନ୍ନାଥଙ୍କ ଭାଇ କେଉଁଠି ଜଣେ ପଦସ୍ଥ ଅଫିସର ଓ ପରେ ପରେ ଜିଲ୍ଲାପାଳ । ଶ୍ୱଶୁର ଘର ସ୍ୱଚ୍ଛଳ । ସବୁ ସତ୍ତ୍ୱେ ବିଧବା ପଦ୍ମା ସ୍ୱାମୀ ଆଦର୍ଶ ଅନୁପ୍ରାଣିତ ହୋଇ ସ୍ୱାବଲମ୍ୱୀ ଭାବେ ପୁଅକୁ ପଢ଼ାଇ ବଡ଼ କରିଲେ । ମେଧା ଓ ଉଦ୍ୟମ ବଳରେ ଉଚ୍ଚ ପଦର କର୍ମଚାରୀ ହେବାର ସମ୍ଭାବନା ଥିଲେ ହେଁ ପୁଅ ରାମୁ ସାମାନ୍ୟ ଚେଷ୍ଟାରେ ଅଡ଼ିଟ୍ ବିଭାଗରେ ଚାକିରି ପାଏ । ବିଭା ହୁଏ ଜଗନ୍ନାଥଙ୍କ ଛାତ୍ର ତଥା ଲୋକସଭା ସଦସ୍ୟ ବୃନ୍ଦାବନର ଏକମାତ୍ର ସନ୍ତାନ ରାଣୀଙ୍କୁ । ସେଇ ସୂତ୍ରରେ ଦିଲ୍ଲୀରେ ଚାକିରି କାଳରେ ବହୁ ସରକାରୀ ଅପବ୍ୟୟକୁ ଉଦ୍‌ଘାଟନ କରିବାର ସୁଯୋଗ ମିଳେ ରାମୁକୁ । ସରକାରୀ କଳ ନିଜର ତ୍ରୁଟି ଲୁଚାଇବାକୁ ଯାଇ ବୃନ୍ଦାବନର ସାହାଯ୍ୟ ଲୋଡ଼ି ବସେ । ମାତ୍ର ଅନ୍ୟାୟ କାମ କରିବାକୁ ପ୍ରସ୍ତୁତ ନଥିବାରୁ ରାମୁଠାରୁ ଅଡ଼ିଟ୍ କାମ ଅନ୍ୟତ୍ର ସ୍ଥାନାନ୍ତର କରିଦିଆଯାଏ ଏବଂ ସମୟାନ୍ତରରେ ଦିଲ୍ଲୀରୁ କଲିକତାକୁ ହୁଏ ରାମୁର ବଦଳି । ଏହି ବେଳକୁ ତା'ର 'ତିରୁ' ନାମକ ପୁଅର ଜନ୍ମ ଓ ମା ପଦ୍ମାଙ୍କର ମୃତ୍ୟୁ ହୋଇସାରିଥାଏ । ତିରୁ ଉଚ୍ଚଶିକ୍ଷିତ, ଉଚ୍ଚାଭିଳାଷୀ । ପୁନମକୁ ବିବାହ ପରେ ସେମାନେ ଆମେରିକାରେ ଉଚ୍ଚତର ପାଠ ଓ ଚାକିରି ପାଇ ଉଦ୍ୟମ କରନ୍ତି । ସେଇ ଯେ ବିଦେଶ ଯାତ୍ରା ପୂର୍ବରୁ ବାପା ରାମୁର ପରାମର୍ଶରେ ଦମ୍ପତି ଜନ୍ମସ୍ଥାନକୁ ଆସି ଭେଟିଛନ୍ତି ଛବିର ବୁଢ଼ାକୁ ।

ଛବିର ପଛରେ ଗୋଟିଏ ପିଢ଼ି ସେ ହେଉଛନ୍ତି ମାଷ୍ଟ୍ରେ ଜଗନ୍ନାଥ । ଆଗରେ ଦୁଇଟି ପିଢ଼ି, ରାମନାଥ ଓ ତିରୁପତି । ପ୍ରଥମ ପିଢ଼ିର ଜୀବନରେ ଛବିର ସାକ୍ଷାତ ଘଟିଛି । ଅନୁଭୂତ ସତ୍ୟ ସେଥିରେ ବିରାଜମାନ । ପ୍ରତ୍ୟକ୍ଷ-ଦର୍ଶନ ଓ ସ୍ୱଦେହରେ ତାର ଭୋଗ ସାର୍ଥକ ନିଦର୍ଶନ ଜଗନ୍ନାଥଙ୍କ ସହିଦ ହେବାରେ । ଅର୍ଥାତ୍ ଛବିର ଭାବ ଜୀବଦଶାରେ ଭୋଗ ହୋଇଯାଇଛି । କିନ୍ତୁ ଅବସ୍ଥାନ୍ତରରେ ଆସିଥିବା ଦୁଇପିଢ଼ି ଛବିର ଭାବକୁ ଭୋଗି ନାହାଁନ୍ତି । ତାଙ୍କର ଜୀବ ଦଶାରେ ସେ ଅନୁଭବ ଆସିନାହିଁ । ଯଦିଓ ରାମନାଥ ପିତାଙ୍କ ଶହୀଦ୍ ହେବା ବେଳକୁ ତଥାପି କୈଶୋର ଅତିକ୍ରମ କରିନାହିଁ, ଏବଂ ସ୍ୱାଧୀନତା ପ୍ରାପ୍ତି ସହିତ କୈଶୋରର ସ୍ମୃତି ବିଜଡ଼ିତ ଏକ ଆବେଗ ଅନୁଭବ କରିଛି । ସେ ଆବେଗର ବନ୍ଧନ ସୂତ୍ରଟି ପିତାଙ୍କ ଶହୀଦତ୍ୱ ସହିତ ଅଧିକ ଘନିଷ୍ଠ । ସ୍ୱାଧୀନତାର ପ୍ରଥମ ସ୍ୱାଦ ପାଇବା ବେଳକୁ ଜୀବନରେ ରହିଥିବା ଅଭାବବୋଧ ଅଧିକ ହେବା ସ୍ୱାଭାବିକ କାରଣ ବାପା ଜଗନ୍ନାଥ ଥିଲେ ଘଟଣାଦି ସର୍ବ ତୃପ୍ତିକର ହୋଇଥାନ୍ତା । ମାତ୍ର ତାହା ସମ୍ଭବ ନୁହେଁ । ସ୍ୱାଧୀନତା ପାଇଁ ସାଧନାର ଅନୁପସ୍ଥିତିରେ ତା'ର ମୂଲ୍ୟବୋଧ ଯାହା କିଛି ପୈତୃକ ବା ପୂର୍ବାଜିତ ସଂସ୍କାର ଉପରେ ନିର୍ଭର କରେ । ସ୍ୱାଧୀନତାକୁ କେନ୍ଦ୍ରକରି ବାପାଙ୍କର ମୃତ୍ୟୁର ଦୁଖ ତା'ର ଅଙ୍ଗେ ନିଭା କଥା । ସେହି ସୂତ୍ରରେ ସ୍ୱାଧୀନତା ଓ ସ୍ୱାଧୀନତା ପରବର୍ତ୍ତୀ ଘଟଣାବଳୀ ରାମନାଥର ଚିନ୍ତାକୁ ଆଚ୍ଛନ୍ନ କରିବା ସ୍ୱାଭାବିକ । ସେହିପରି ତୃତୀୟ ପିଢ଼ିର ବ୍ୟକ୍ତି ତିରୁପତି ସ୍ୱାଧୀନତାର ବହୁ ବର୍ଷପରେ

ଜନ୍ମ । ଇତିହାସଟି ସେବେଳକୁ ଯଥେଷ୍ଟ ବୟସ୍କ, ପ୍ରୌଢ଼ତାର ସନ୍ନିକଟ । କେବଳ ଏକ ଶକ୍ତିଶାଳୀ କିମ୍ବଦନ୍ତୀ ସ୍ମୃତିର ବାହକ ରୂପେ ତା ଆଗରେ ଉଭା । ଏହି କାରଣରୁ ରାମନାଥ ଓ ତିରୁପତିଙ୍କର ଯଥାକ୍ରମେ ଚେତନ ମନ ଓ ଅଚେତନ ମନ ଉପରେ ଛବିର ପ୍ରଭାବ ପଡ଼ିଥିଲା । ବିଂଶ ଶତାବ୍ଦୀର ଶେଷକୁ ରାମନାଥ ବୃଦ୍ଧ । ଚେତନ ମନର ପ୍ରଭାବବଶତ ସ୍ୱାଧୀନତାର ପରବର୍ତ୍ତୀ କାଳର ଘଟଣାବଳୀ ତାଙ୍କୁ ଅଧିକ ସ୍ପର୍ଶକାତର କରେ । ଗାନ୍ଧୀଙ୍କ ମୃତ୍ୟୁ ଖବର, ଜବାହାରଙ୍କ ଶାସନ ଓ ଭାରତୀୟ ସମାଜର ନିର୍ମାଣ ତଥା ଆର୍ଥନୈତିକ ବିକାଶର ମୂଳଦୁଆ ରୂପେ ମିଶ୍ର ଅର୍ଥନୀତି ଗ୍ରହଣ, ଶାସ୍ତ୍ରୀଙ୍କ ଆବିର୍ଭାବ ଓ ଅସ୍ୱାଭାବିକ ମୃତ୍ୟୁ, ଇନ୍ଦିରାଙ୍କ ରାଜନୈତିକ ହଟଚମଟ ଓ ଜରୁରୀ ପରିସ୍ଥିତି ଜାରି, ଜନତା ଦଳର ଆବିର୍ଭାବ ଓ ଦଳୀୟ ବିଶୃଙ୍ଖଳା ଏବଂ ପୁନର୍ବାର ଇନ୍ଦିରାଙ୍କ ଶାସନଭାର, ସ୍ୱର୍ଣ୍ଣ ମନ୍ଦିର ଘଟଣା ଓ ଶ୍ରୀମତୀ ଗାନ୍ଧୀଙ୍କର ମୃତ୍ୟୁ, ରାଜୀବଙ୍କ ନେତୃତ୍ୱ ଏବଂ ପରେ ରାଜନୈତିକ ଅସ୍ଥିରତାଦି ବହୁ ଘଟଣାକ୍ରମ ରାମନାଥଙ୍କ ଅଙ୍ଗନିଭା କଥା । କିନ୍ତୁ ବିଂଶ ଶତାବ୍ଦୀର ଏଇ କାଳକୁ ଆଦ୍ୟ ଯୌବନରେ ପଦାର୍ପଣ କରିଥିବା ତିରୁପତିର ଅଚେତନ ମନରେ ରହିଛି ଘଟଣାକ୍ରମ ଓ ତା'ର ପରିଣତି ସମୂହ । ତାହା ଅନେକଟା ଅନୁଭୂତ ନୁହେଁ, ଶ୍ରୁତ; ସଂସ୍କାର ଫଳରେ ସେଥିପ୍ରତି ରହିଛି କିଛିଟା ସମ୍ବେଦନା ଓ କାରୁଣ୍ୟ କୋମଳ ସ୍ୱାଦ ।

ଛବିର ଭବିଷ୍ୟତ କ'ଣ ହେଲା ? ତିରୁ ଦମ୍ପତି ସାନ ଫ୍ରାନସିସ୍କୋରେ ପହଞ୍ଚିଛନ୍ତି । ଉଦ୍ଦେଶ୍ୟ ତିରୁ ଆଉରି ପଢ଼ିବ, ମ୍ୟାନେଜମେଣ୍ଟରେ ଉଚ୍ଚଶିକ୍ଷା । ପୁନମ ଚାକିରି କରି ତାକୁ ସାହାଯ୍ୟ କରିବ । ବିଭବଶାଳୀ ଅଜା ବୃନ୍ଦାବନ ଯେକି ବାରମ୍ବାର କେନ୍ଦ୍ରମନ୍ତ୍ରୀ ହୋଇ ଇନ୍ଦିରାଙ୍କ ପ୍ରିୟପାତ୍ର ଥିଲେ, ତାଙ୍କ କୃପା ଲାଭକୁ ସେମାନେ ଗ୍ରହଣ କରିନାହାନ୍ତି । ସ୍ୱାଭିମାନ ଗୋଟାଏ ବଡ଼ପଣ, ସ୍ୱାଧୀନତାର ବଡ଼ ବାହାଦୁର ମନ୍ତ୍ର । ସେକାଳର ସେମାନେ ସ୍ୱାଧୀନତା ପାଇଁ ପିପାସାକୁ ଅନୁଭବ କରି ନ ଥିଲେ ସତ, କିନ୍ତୁ ତା'ର ମୂଲ୍ୟ ବୁଝନ୍ତି । ଜୀବନର ସ୍ୱାତନ୍ତ୍ର୍ୟକୁ ଅନୁପମ କଳା ବୋଲି ବୁଝନ୍ତି । ସେହି ସୂତ୍ରରେ ସ୍ୱାବଲମ୍ବୀ ହେବେ । ପରମୁଖାପେକ୍ଷିତା ଏକ ଦୂଷଣ, ତାହା ବ୍ୟକ୍ତିତ୍ୱର ବିନାଶ କରେ । ଏହି ଅଙ୍ଗୀକାର ସେମାନଙ୍କୁ କରିଛି ଉଦ୍ୟମୀ, ମନରେ ଆଣିଛି ଦୃଢ଼ତା, ଭାଙ୍ଗି ପଡ଼ିବାର ନମନୀୟତା ମନରେ ଆସୁନାହିଁ । ହତୋତ୍ସାହ ନାହିଁ, ଅଛି ଆତ୍ମବିଶ୍ୱାସ, ଲଢ଼ିବାର ନିଷ୍ଠା । ସବୁପରେ ପ୍ରଚଣ୍ଡ ସ୍ୱପ୍ନ ଅନୁରୂପେ ସାଧନା କରିବାକୁ ଅବଦମିତ ଆଗ୍ରହ । ମନୋବଳ ମାତ୍ରପର ଜିନିଷ ବୋଲି ହୃଦ୍‌ବୋଧ ହୋଇଛି । ତେଣୁ କାହାରି ଅନୁଗ୍ରହ ସେମାନେ ଇଚ୍ଛନ୍ତି ନାହିଁ । ଅନୁଗ୍ରହ ହେଉପଛେ ଆତ୍ମୀୟଙ୍କର; ତାହା ଦିନିକିଆ ଭିକ, ଜୀବନକୁ ସାମୟିକ ସୁଖ ସନ୍ତୋଷରେ ଉତ୍‌ଫୁଲ୍ଲ କରିପାରେ କିନ୍ତୁ ତାହା ଭରିଦିଏ ଗ୍ଲାନି । ଗ୍ଲାନି ମାନସିକ ବିକାରର ଜନନୀ । ଥରେ ତା'ର ଫାଶରେ ପଡ଼ିଲେ ତା'ଠୁ ମୁକ୍ତି ଅସମ୍ଭବ । ବ୍ୟକ୍ତିତ୍ୱର ସେ ବିରାଦର ଶତ୍ରୁ; ତାକୁ ଛାଡ଼ିବାକୁ ହେବ । ସାମନାରେ ବିଶ୍ୱବ୍ୟାପୀ

ପ୍ଳାବିତ ରହିଛି ଅମୃତର ଭଣ୍ଡାର । ଦେଶ ଓ ସଂସ୍କୃତିର ବନ୍ଧନ ଡେଇଁଲେ ତାହା ସୁଲଭ ହେବ । ଦେଶାନ୍ତରରେ ସୁଯୋଗ ଅପ୍ରମିତ । ଯୋଗ୍ୟ ପାଇଁ ତାହା ଆପଣାକୁ ଅଜାଡ଼ି ଦେବାକୁ ଉତ୍ସୁକ । ବିଂଶ ଶତାବ୍ଦୀ ଅନ୍ତତ ଏହି ଭରସାଟିଏ ଦେଇଛି ତା'ର ସମସ୍ତ ବୀଭତ୍ସ ଓ କୁରୂପ ପରିଣତି ସତ୍ତ୍ୱେ । ଇତିହାସର ଏପରି ସମ୍ବେଦିତ ଆତ୍ମାକୁ ବୁଝିଥିବା ବ୍ୟକ୍ତି ହତାଶ ନିରାଶ ହେବ କାହିଁକି ? ଅନ୍ୟକଥାରେ ଏକବିଂଶ ଶତାବ୍ଦୀ ଆଣିଛି ପ୍ରଯୁକ୍ତି ବିଦ୍ୟାର ବିପୁଳ ବିଭବ ଭିତରେ ସଂଗ୍ରାମର ଆହ୍ୱାନ, ଅନ୍ୱେଷଣର ପ୍ରବୃତ୍ତି, ଗଭୀରତର ଜିଜ୍ଞାସା, ଏକ ପାରିବାରିକ ନୈକଟ ଭାବ । ଯୋଗ୍ୟ ପାଇଁ ସୁଯୋଗ ଅଭାବ ନୁହେଁ । ବୌଦ୍ଧିକତାର ମଞ୍ଚ ସବୁଠି ପ୍ରସ୍ତୁତ । ତୁମେ ଯଦି ଯୋଗ୍ୟ ତେବେ ମଞ୍ଚକୁ ଉଠିପାର । କହିବା ବାହୁଲ୍ୟ ହେବ ନାହିଁ ଯେ ତିରୁ ଓ ପୁନମ୍ ଏକବିଂଶ ଶତାବ୍ଦୀର ଦୁଇଟି ଯୋଗ୍ୟ ଫୁଲ । ସେମାନେ ସାନ ଫ୍ରାନସିସ୍କୋରେ ପହଞ୍ଚିଛନ୍ତି । ସାଥିରେ ଅଛି ସେଇ ଛବିଟି ଯେମିତିକି ସେଇଟି ଏକମାତ୍ର ସମ୍ପତ୍ତି । ଏହାହିଁ ସତ୍ୟ । ପୁନମର କେହି ଜଣେ ଦୂର ଚିହ୍ନା ଅଙ୍କଲ୍ ମଦନ ଭାଇ ସେଠାର ପାସିଫିକ୍ ତାଜ୍ ମୋଟେଲର ମାଲିକ । ହୋଟେଲରେ ତାଙ୍କ ସହ ସାକ୍ଷାତ ହୁଏ ପୁନମ୍‌ର । ସେଇଠି ସେ ଦେଖନ୍ତି ଛବିଟିକୁ ଏବଂ ବହୁ ପୂର୍ବରୁ ସେ ସେପରି ଏକ ଛବି ଦେଖିଥିବାର ସ୍ମୃତି ବିଷୟ ପ୍ରକାଶ କରନ୍ତି । ସେତେବେଳେ ତାଙ୍କୁ ସତର ଅଠର ବର୍ଷ, କଲିକତାର ହିନ୍ଦୁ କଲେଜରେ ପଢୁଥିବା କାଳରେ । ସେହି ସମୟରେ ସେ ପ୍ରେମ ଆବଦ୍ଧ ଥାନ୍ତି ସହପାଠୀ ଲାବନି ସହ । ଲାବନି ଥରେ ଡାକି ନେଇଥିଲା ପ୍ରେମିକ ମଦନ ଭାଇଙ୍କୁ ତା'ର କାକା ପ୍ରସିଦ୍ଧ ଶିଳ୍ପୀ ଅମର ମିତ୍ରଙ୍କ ଘରକୁ । ସେମାନେ ପହଞ୍ଚିବା ବେଳକୁ ଶିଳ୍ପୀ ଆତ୍ମମଗ୍ନ ଗୋଟିଏ ଛବିକୁ ଦେଖିବାରେ । ସେ କହୁଥିଲେ ଛବିଟି ତିଆରି କରିଛି ଓଡ଼ିଶାର କେହି ଜଣେ ଅଙ୍କ ମାଷ୍ଟ୍ର ଜଗନ୍ନାଥ ସାମନ୍ତ । ଛବିଟି ପ୍ରତି ମଦନ ଭାଇଙ୍କର ଆଗ୍ରହ ଅପେକ୍ଷା ଅଧିକ ଆକୃଷ୍ଟ ଥିଲେ ଲାବନି । ମାତ୍ର ଦୁଃଖରେ ଶିଳ୍ପୀ କହିଥିଲେ ଯେ ଛବିଟି ଫେରିଯିବ ତାର କର୍ତ୍ତା ଜଗନ୍ନାଥଙ୍କ ପାଖକୁ । ବର୍ତ୍ତମାନ ସେଇ ସ୍ମୃତିଟି ପୁଣି ଉଭା ହେଲା । ବିଶେଷକରି ସେଦିନର ପ୍ରେମିକା ଏବଂ ଏବର ପତ୍ନୀ ବୃଦ୍ଧା ପ୍ରାୟ ଲାବନିର ଆଗ୍ରହକୁ କେନ୍ଦ୍ରକରି । ପୁନମ୍ ବୁଝାଇ ଦେଲା ଯେ ସେଇ ଏକା ଛବି । ଦୁଇଟି ନୁହେଁ । ପୁନମ୍‌ର କଥାରେ ମଦନ ଭାଇଙ୍କର ବହୁ ପୁରୁଣା ଅବଦମିତ ଇଚ୍ଛା ପୁଣି ଜାଗିଉଠିଲା । ସେଇ କ୍ରମରେ ଜାଗିଉଠିଲା ଆଉ ଏକ ମୃତ ଇଚ୍ଛା । ଯେ ସେ ଗୋଟିଏ କାରଣରୁ ଭାରତରେ ଥିବା ପତ୍ନୀ ପାଖକୁ ଫେରିଯାଇ ପାରୁନଥିଲେ । ହୋଟେଲ ତାଜ୍ ପାଇଁ ଜଣେ ମ୍ୟାନେଜର ଦରକାର, ଯାହାର ଭରସାରେ ତାକୁ ଛାଡ଼ି ଦେଇ ସେ ଭାରତକୁ ଫେରି ଯାଇପାରିବେ । ତାଙ୍କ ସାନ ପୁଅ ସେହି ଦାୟିତ୍ୱ ନେଇଥିଲା, କିନ୍ତୁ ତା'ର ଭିନ୍ନ ଲକ୍ଷ୍ୟ ଥିଲା । ବର୍ତ୍ତମାନ ପୁନମକୁ ଦେଖି ସେ ଅଭାବ ପୂରଣର ସୂତ୍ରଟି ପାଇଗଲେ । ପୁନମକୁ ମିଳିଲା ମ୍ୟାନେଜର ପଦବୀ । ପ୍ରତିଦାନ ସ୍ୱରୂପ ତିରୁର ବିନା ପରାମର୍ଶରେ ପୁନମ ଅଙ୍କଲଙ୍କ ହାତରେ ଟେକି ଦେଲା ଛବିଟିକୁ ।

କିନ୍ତୁ ଏ ଘଟଣାରେ ତିରୁର ମନରେ ଟିକେ ଆସିଲା ଅନ୍ୟଭାବ । ହେଲେ ସେମାନେ ଏକ ହୃଦୟ, ଏକ ମନ । ବିଷାଦ ଶୀଘ୍ର ଦୂରେଇ ଗଲା । ଭାବିଲା ତଦବଧି ଛାଇପରି ଲାଗିରହିଥିବା ଦୁଖ ଅପସରିଗଲା, ଏଥର ଆସିଲା ସୁଖ । ସୁଖ ହିଁ ତ ମଣିଷର ସର୍ବଶେଷ ଲକ୍ଷ୍ୟ ।

ତେବେ ଏ କି ସୁଖ ? ବାପ ଅଜାର ପ୍ରିୟ ଛବି ପରହାତରେ ଟେକି ଦେଇ କି ପୁରୁଷପଣ ସେମାନେ ଦେଖାଇଲେ ? ପରମ୍ପରାବାଦୀମାନେ ନାକ ଟେକିବେ, କହିବେ ଆଜିକାଲିର ପିଲା, ସେମାନେ ବୁଝନ୍ତି ନାହିଁ ପୂର୍ବସୂରୀଙ୍କ ପ୍ରତିଷ୍ଠାର ଅର୍ଥ । ସ୍ମୃତିର ଯେଉଁ ସଙ୍କେତ ଛବି ଭିତରେ ଲୁଚି ରହିଥିଲା, ଗୋଟାଏ କଥାରେ ଅତୀତକୁ ବର୍ତ୍ତମାନ ସହିତ ଯୋଡୁଥିଲା, ଜଗନ୍ନାଥଙ୍କୁ ନ ଦେଖି ମଧ ତିରୁ ତାଙ୍କୁ ଚିହ୍ନୁଥିଲା ଛବିଟିରୁ ତାକୁ ସେ ପରହାତରେ ଟେକି ଦେଲା ? ହୁଏତ ତିରୁ ପାରିନଥାନ୍ତା । ପାରିଲା ପୁନମ, ତା'ର ସ୍ତ୍ରୀ । ପୁନମ୍ ପାଇଁ ଜଗନ୍ନାଥ ମୃତ, ରାମନାଥ କେହି ନୁହଁନ୍ତି । ଜେଜେଶ୍ୱଶୁର, ଶ୍ୱଶୁର ସେମାନେ ଗୋଟାଏ ସମ୍ପର୍କ । ତିରୁହିଁ ତା'ର ସବୁ । ତେଣୁ ପତିଦେବତାଙ୍କ ଭବିଷ୍ୟତ ଗଢ଼ିବାକୁ ଚାହିଁଲା ଛବିର ବିନିମୟରେ । ପୁନମ୍‌ର ମନୋଜଗତଟି କ'ଣ ଏଇ ବୋଧରେ ବିହିତ ? ଅସମ୍ଭବ ନୁହେଁ; ତା ପାଇଁ ଛବିଟା ଛବି । ଇତର ଯେକୌଣସି ଛବିପରି । ଏ ଯୁକ୍ତି ପାଠକ ମନରେ ଆସିପାରେ । ବୋଧହୁଏ କିଶୋରୀବାବୁ ସେ ଚିନ୍ତା କରିନାହାଁନ୍ତି । କରିଥିଲେ ଘଟଣାଟି ଭିନ୍ନ ପ୍ରକାର ହୋଇଥାନ୍ତା । ସ୍ରଷ୍ଟାର ମନ ଭିନ୍ନତ୍ର ବିଳାସ କରୁଛି । ସେଇ ଯୋଉଦିନ ଗାଁର ଘରେ ଛବିଟି ଆବିଷ୍କାର କରାଗଲା ସେଇ ବେଳର କଥା । ତିରୁ ଛବିକୁ ଦେଖୁଥିଲା ମୁଗ୍ଧ ହୋଇ ଏକ ପ୍ରଲମ୍ବିତ ବିଭୋର ଏକାଗ୍ର ଭାବରେ । ତା'ର କାରଣ ଥିଲା ସ୍ମୃତିଟିଏ, ଯାହା ତା' ମନରେ ଲାଖି ଯାଇଥିଲା । ଉପଳ ଆଡ଼େଇଲେ ଶୁକ୍ତି ମିଳେ ସିନା ମୋତି ମିଳେ କି ଶୁକ୍ତିର ରହସ୍ୟ ନ ଭେଦିବା ଯାଏ ? ଏଥିପାଇଁ ଦରକାର ଧ୍ୟାନ, ଅନ୍ୱେଷଣ । ଥିଲା ସେଇ ଭାବରେ ଅଚଞ୍ଚଳ ଓ ଅନ୍ୱେଷିତ ତା'ର ଦୁଇ ଆଖି । ପୂର୍ବସୂରୀଙ୍କ ଆଦର୍ଶ ବା ସଂସାରରେ ଦ୍ରବିତ ଗୋଟାଏ ନୂଆ ସରଳ ହୃଦୟର ସମର୍ପଣ; ଅତୀତ ସହିତ ଘନିଷ୍ଠ ହେବାର ସାନ୍ଦ୍ର ମିଳନ । ପୁନମକୁ ତିରୁର ସେ ଭାବବିହ୍ୱଳ ଅବସ୍ଥା ଭଲ ଲାଗୁଥିଲା । ସେଇ ମୁହୂର୍ତ୍ତରେ ପୁନମର ସ୍ୱଭାବ ବିଷୟରେ କିଶୋରୀ ବାବୁ ମନ୍ତବ୍ୟଟିଏ ଦେଇଛନ୍ତି । ତିରୁକୁ ପୁନମ କହୁଛି, ''ମଣିଷର ଯେ କୌଣସି ଅବିଗୁଣ, ତାକୁ ବିକୃତି କୁହ ବା ବିଚ୍ୟୁତି, ସହଜେ ମୋ ଆଖିରେ ପଡ଼େ ଏବଂ ଗହୀରକୁ ନ ଯିବାଯାଏ ମୋ ମନରେ ଶାନ୍ତି ଆସେ ନାହିଁ । ମୋର ଏଇ ବଦଭ୍ୟାସ କ'ଣ ଜଣାନାହିଁ ତୁମକୁ'' ? ତାହେଲେ ତିରୁର ବିହ୍ୱଳତା କ'ଣ ଏକ ଅବିଗୁଣ ? ସେ ଅବିଗୁଣକୁ ପସନ୍ଦ କରୁ ନଥିଲା ପୁନମ ? ଅଚ୍ଛେ ବହୁତ ଏହା ସତ୍ୟ, ଛବିଟା ତା ଭାଷାରେ ଇଣ୍ଟେରେଷ୍ଟିଙ୍ଗ, ''ତା'ର ଭାଉ ଅଛି, ଦୁର୍ଦ୍ଦାନ୍ତ ଭାଉ । ଜାଣେନା କେଉଥିପାଇଁ, ହେଲେ ମୋର ଇଚ୍ଛା ହେଲା ତାକୁ

ଆମ ସାଙ୍ଗରେ ନେଇ ଯିବା ପାଇଁ'' (ପୃ ୫) । ଇଙ୍ଗିତ ବେଶ୍ ଅର୍ଥ ପ୍ରସାର କରେ । ସ୍ୱାଭାବିକ ଯେ ଛବିର ଇତିହାସ ପୁନମ ପାଇଁ ଗୋଟାଏ ସମ୍ବାଦ ମାତ୍ର । ସେଥିର ସମ୍ପର୍କ ଜନିତ ନିବିଡ଼ତା ଆସିବ ନାହିଁ। ସ୍ମୃତିଦାୟକ ଅନୁଭବ ସହିତ ତା'ର ଅନୁଭବକୁ ତୁଳନା କରାଯାଇପାରେ ନାହିଁ । ତେଣୁ ଏକ ବ୍ୟାବସାୟିକ ଦୃଷ୍ଟି ଜନ୍ମ ନେଲା - ଦୁର୍ଦ୍ଦାନ୍ତ ଭାଉ । ସତରେ ତାହା ହିଁ ପ୍ରମାଣିତ ହେଲା । ସେ ପାଇଲା 'ପାସିଫିକ୍ ତାଜ୍'ର ମ୍ୟାନେଜର ଚାକିରି । ପ୍ରଶ୍ନ ହେବ, ଛବିର ଅଭାବରେ ଚାକିରି ମିଳିଥାନ୍ତା କି ? ସମ୍ଭବତ ଏପରି ପ୍ରଶ୍ନ ଅବାନ୍ତର, କାରଣ ମଦନ ଭାଇ ଛବିର କଳା ପାଇଁ ଛବିକୁ ପସନ୍ଦ କରିଥିଲେ, ଅଧିକନ୍ତୁ ଛବି ଆଧାରିତ ସ୍ମୃତିଟି ସହିତ ଜଡ଼ିତ ଥିଲା ନିଜ ପତ୍ନୀର ସାଧ । ପୁଣି ଛବିକୁ ତାରିଫ କରିଥିଲେ ପ୍ରସିଦ୍ଧ ଆର୍ଟିଷ୍ଟ ଅମର ମିତ୍ର । ସେତେବେଳେ ସେ ପ୍ରେମିକାର ସୁପ୍ତ ବାସନାକୁ ଚରିତାର୍ଥ କରିବାର ସୁଯୋଗ ପାଇନଥିଲେ । ଏବେ ପୁନମ୍ ପାଖରେ ଛବିଟି ଥିବାରୁ ସେ ବାସନା ଜାଗି ଉଠିଲା । ବାସନାର ଜଗତରେ ସୁଯୋଗ କେତେ ଅବା ମିଳେ, ପୁଣି ଏକ ମହାର୍ଘ ବାସନା ପାଇଁ ? ପୁନମ୍ ଭିତରେ ସେ ଖୋଜୁଥିବା ସମର୍ଥ ମଣିଷର ପରିଚୟ ପାଇବା ପରେ ତାକୁ ସମର୍ପି ଦେଲେ ମ୍ୟାନେଜର ଦାୟିତ୍ୱ । କେବଳ ଛବି ତାଙ୍କର ସିଦ୍ଧାନ୍ତକୁ ଶକ୍ତିଶାଳୀ କଲା ସିନା, ଛବି ନ ଥିଲେ ଚାକିରି ମିଳିନଥାନ୍ତା ସେପରି ଅର୍ଥ ଆସୁନାହିଁ । ପୁନମ୍ ଓ ତିରୁ ପରେ ଯାହା କଥାବାର୍ତ୍ତା ହେଲେ ସେଥିରୁ ଏଇ ଅର୍ଥ ବୁଝାପଡ଼େ । ଯେ ପୁନମ୍ ଛବିଟି ଦେଖାଇ ମଦନଭାଇଙ୍କ ଭିତରେ ସେପରି ଏକ ଚିନ୍ତାକୁ ଦୃଢ଼ କରିଛି । ଆତ୍ମନିର୍ଭରଶୀଳ ହେବା ପାଇଁ ଉଦ୍ୟମର ଦୁଃଖ ଯିଏ ଦୂର କରେ ତା ପ୍ରତି କୃତଜ୍ଞତା ପ୍ରକାଶ କ'ଣ ଠିକ୍ ନୁହେଁ ? ଅବଶ୍ୟ ମଦନଭାଇ ପଟେଲ ପୁନମକୁ ମ୍ୟାନେଜର ଚାକିରିର ସୂଚନା ପୂର୍ବରୁ ଦେଇ ନଥିଲେ । ମ୍ୟାନେଜର ଥିବା ତାଙ୍କ ସାନ ପୁଅର ଅନିଚ୍ଛା କଥା ପୁନମ ହୁଏତ ଜାଣିଥିଲା ଏବଂ ତା'ର ଅବଚେତନ ମନରେ ସେ ହୁଏତ ଭାବିଥିବ ''ଅଙ୍କଲ୍ ଦିଅନ୍ତେ ନାହିଁ ମତେ ସେ ଚାକିରିଟା ?'' ତାଙ୍କ ଠାରୁ ଛବିର ପ୍ରସଙ୍ଗ ଓ ଲାବନିର ସାଧ କଥା ଶୁଣୁ ଶୁଣୁ ସେ ଛବିଟି ବଢ଼ାଇ ଦେବାକୁ ପ୍ରସ୍ତୁତ ମଧ ଥିଲା । କିନ୍ତୁ ମଦନଭାଇ ତତ୍କ୍ଷଣାତ ସେ ସୁଯୋଗ ଦେଲେ ନାହିଁ । ପରଦିନ ସକାଳେ ସେ ପୁନମ ସହିତ ଜରୁରୀ କଥା ହେବା ପାଇଁ ସମୟ ଧାର୍ଯ୍ୟ କରି ଚାଲିଗଲେ । ସେଇ ଯେ ଜରୁରୀ କଥା ହେବାକୁ ଯାଇଥିବା ବେଳେ ପୁନମ୍ ଛବିଟି ତାଙ୍କ ହାତକୁ ବଢ଼ାଇ ଦେଲା । ତାପରେ ଶୁଣିଲା ଅଙ୍କଲ୍‌ଙ୍କର ସିଦ୍ଧାନ୍ତ । କୃତଜ୍ଞତାବୋଧଟି ଆସୁଛି ପରେ, ପାଠକର ସରଳ ମନରେ । ତେବେ ପୁନମ୍ ବୁଝେ ଗୋଟିଏ କଥା । ଯେ ଛବିଟି ଭାରି ଭଲ ଲାଗିଛି ଅଙ୍କଲଙ୍କୁ ଓ ଆଣ୍ଟିଙ୍କର ଅଛି ସେ ପ୍ରତି ବହୁଦିନର ସାଧ । ଏହା ଜାଣିବା ପରେ ସେ କେମିତି ଅବା ହୃଦୟରେ ତାଲା ପକାଇ ଦେଇଥାନ୍ତା ଛବିଟି ବଢ଼ାଇ ନଦେଇ ? ସେ ଜାଣେ ଏ ସ୍ତରରେ ମନକୁ ଛୋଟିଆ କଲେ ନିନ୍ଦିତ ହେବ । ତାତ୍ପର୍ଯ୍ୟ ଯେ କିଶୋରୀ ବାବୁ ତାଙ୍କ ଚରିତ୍ରକୁ ସେପରି କରିବାକୁ

ଆଦୌ ଚାହିଁନାହାନ୍ତି । ବଡ଼ପଣ ନେଇ ସେମାନେ ଜୀବନ ବଞ୍ଚନ୍ତୁ । ଅମାପ ଉଦାରତା ସେମାନଙ୍କ ହୃଦୟ ବେଦୀରେ ବିରାଜମାନ କରୁ, ସଂକୀର୍ଣ୍ଣତା, ପୁଣି ନ ଦେବାର ଛୋଟ ମିଜାଜରୁ ସେମାନେ ନିବୃତ୍ତ ହୁଅନ୍ତୁ । କଳା ପକ୍ଷରେ ଏଇ ଭାବଟି ମହନୀୟ । ସ୍ୱୟଂ ଛବି ଓ ତା'ର ସ୍ରଷ୍ଟା ତ ଥିଲେ ଆହୁରି କେତେ ନା କେତେ ମହତ ।

କିନ୍ତୁ ତିରୁ ? ପ୍ରଥମେ ଆସିଛି ତା ମନରେ ବିଷାଦ । ଯେ ଛବି ସହ ତାକୁ ଛାଡ଼ିଗଲେ ତା'ର ଆତ୍ମୀୟମାନେ, ଜେଜେ-ଅଜା-ବାପା-ମା ସମସ୍ତେ । ଛବିଟା ଗୋଟାଏ ସୂତ୍ର, ପୂର୍ବ ଓ ପରର ବର୍ତ୍ତମାନ ସହିତ । ସେ କିପରି ସ୍ମୃତିକୁ ବିଶାରି ପାରନ୍ତା ? ଏଣୁ ବିଷାଦ ପ୍ରତିକ୍ରିୟା ସ୍ୱାଭାବିକ । ଚତୁର ଅଟନ୍ତି ଉପନ୍ୟାସ ସ୍ରଷ୍ଟା । ମନସ୍ତାତ୍ତ୍ୱିକ କୌଶଳଟିକୁ ବୁଝିବାରେ ସେ ଧୂରନ୍ଧର । ତେଣୁ ତିରୁର ଅନ୍ତର୍ମନର ଆଘାତ ସେ ନ ବୁଝନ୍ତେ କେମିତି ? ସେଇଠୁ ସେ କହୁଛନ୍ତି ତିରୁ ମୁହଁରେ ତା'ର ଅନୁଭବରେ, ''ମୁଁ କ'ଣ ଜାଣେ ନାହିଁ ତମେ ସବୁ କେତେ ତ୍ୟାଗ କରିଛ ମୋ ପାଇଁ ? ଆଉ ସେଇ ମୂଳଧନକୁ ନେଇ ମୋର ଏଇ ସଫଳତା ଆଜି ? ମୁଁ କେବେ ହେଲେ ଛାଡ଼ିବି ନାହିଁ ତୁମକୁ, କି ତମେମାନେ ମତେ ଛାଡ଼ିପାରିବ ନାହିଁ । ଜାଣିଛ ଅଜା, ମୁଁ ଏଥର ଯେତେବେଳେ ଯିବି ନା ସେଠିକି, ମୁଁ ତୁମକୁ ଟଙ୍କା ମାଗିବି ଆଇସକ୍ରିମ ଖାଇବା ପାଇଁ, ଆଗେ ଯେମିତି କରୁଥିଲି ସ୍କୁଲରେ ପଢ଼ିବା ବେଳେ । ଆଉ ବାପା ତୁମ ସାଙ୍ଗରେ ଲଗାଇବି, ପୁଣି ଗାଁ ଆଉ କଟକ ଯିବା ପାଇଁ । ତୁମେ ଆହୁରି କେତେ ଦୁଃଖ ସୁଖ ହେବ ତୁମ ପୁଅ ସାଙ୍ଗରେ । କେତେ ଟିକିନିଖି ମଜା କଥା ଶୁଣେଇବ ତମ ପିଲାଦିନ ଓ ଟୋକାବେଳ ବିଷୟରେ ଏବଂ ମୋ ଗେହ୍ଲା ବୋଉ, ମୁଁ ଏଥର ତୋ କୋଳରେ ଦିବ୍ୟ ଶୋଇ ପଡ଼ିବି, ଆଖିବୁଜି ଶୋଇ ରହିବି'' (ପୃ ୨୮୦) । ଏହି ଅନ୍ତର୍ବିଳାପ କ'ଣ ଆବେଗ ନା ପିଲାଳିଆମି ? ନୁହେଁ; ଏହା ସ୍ୱଭାବତ ଏକ ପ୍ରତିକ୍ରିୟା, ସମ୍ପର୍କର ସଙ୍କେତର ଅବିଦ୍ୟମାନତାରେ । ସେଇତ ଇତିହାସ, ଯିଏ ଉତ୍ସ ହୋଇ ଝରଣାକୁ ବୁହାଏ ଧୀର ମୃଦୁ ଗତିରେ । ବଢ଼ାଏ ଅନାଗତର କୋଳରେ ପ୍ରଚଣ୍ଡ ହେବାର ସାମର୍ଥ୍ୟ ଭରିଦେଇ । ତିରୁ ଆଧୁନିକ, ପୁଣି ବୈଷୟିକ ବିଦ୍ୟା ନିପୁଣ, ହେଲେ ଅର୍ଥ ପିପାସୁ ନୁହେଁ, ଇତିହାସର କୋଳକୁ ସେ ଅସ୍ୱୀକାର କରିବ କିପରି ?

ତେବେ ଦାମ୍ପତ୍ୟରେ କ'ଣ ଦ୍ୱନ୍ଦ୍ୱ ହେବ ? ନା, ସେ ମଧ୍ୟ ଭଲ ପାଏ ପତ୍ନୀ ପୁନମ୍‌କୁ । ହୁଏତ ପୁନମ୍ ସ୍ୱାମୀର ଭବିଷ୍ୟତ ଚିନ୍ତାରେ ଭୁଲଟାଏ କରିଦେଇଥିବ । ଆପଣାର ବଡ଼ପଣ ତଥା ଆଧୁନିକ ନବଦମ୍ପତିଙ୍କ ବଡ଼ପଣ ଯୁଗପତ୍ ପ୍ରକାଶ କରିବା ପାଇଁ । ସେଥିରେ ତା'ର ଦୋଷ କାହିଁ ? ଦୀର୍ଘ ନୀରବତା ପରେ ଶଙ୍କାକୁଳ ସେଇ ନଇଁ ଆସିଥିବା ସନ୍ଧ୍ୟାର ଅନ୍ଧକାର ଭିତରେ ପୁନମ୍ ଆଲୁଅ ଜଳାଇ ଦେଖିଲା ତିରୁର ଭାରି ମୁହଁ, ଆଉ କହିଲା ''ଉଠ, କିଛି ଭାବିବା ଦରକାର ନାହିଁ । ମୋଟ ଉପରେ କଥାଟା ହେଉଛି - ଦୁଃଖ ଯାଇଛି ।

ଖତମ୍ । ତେଣୁ ଆମର ଏଇକ୍ଷଣି କ'ଣ କରିବା ଉଚିତ'' ? ଉତ୍ତର ଦେଲା ତିରୁ, 'ସୁଖ' (ପୃ ୨୮୧) । ବ୍ୟାସ କହିଲେ ଦୁଃଖ ଭୁଲିବାର ଭଲ ଔଷଧ ତା'ର ଚିନ୍ତା ଛାଡ଼ିଦିଅ କାରଣ ଚିନ୍ତା କରିଲେ ସେ ବାରମ୍ବାର ବଡ଼ ହୋଇ ଆଗରେ ଠିଆ ହେବ (ମହାଭାରତ ଶାନ୍ତିପର୍ବ ୨୦୫।୨) ।

ଛବି ବିନିମୟରେ ସୁଖ ? ଏପରି ଧାରଣା ହୁଏ । କିନ୍ତୁ ଦମ୍ପତିଙ୍କ ଗଭୀର ମନର ବିଚାର କଲେ ମନେହେବ ଏ ଧାରଣା ଭ୍ରମାତ୍ମକ । ଛବି ସେମାନେ (ଅୟସ ପାଇଁ) ବିକ୍ରି କରିନାହାଁନ୍ତି । ଏକ୍ ବ୍ୟାକୁଳ ମନ ବିଶେଷକରି ଜଣେ ନାରୀର ବାସନା ପୂରଣ ପାଇଁ ସେଇଟି ଉପହାର ଦିଆଯାଇଛି । ହେଉପଛେ ଉପହାରଟି ଏକ କୃତଜ୍ଞତାର ନିଦର୍ଶନ । ସୁଖ ଆସିଛି ବୋଲି ଯାହା ପୁନମ ଅନୁଭବ କଲା ତାହା ଛବିର ବସ୍ତୁ ମୂଲ୍ୟ ସହିତ ଆଦୌ ସଂପୃକ୍ତ ନୁହେଁ, ସଂପୃକ୍ତ ତା'ର ଭାବ ବା ଚେତନାଟି ସହିତ । ଦୀର୍ଘ ଦୁଇ ପୁରୁଷ ଭିତରେ ଯେଉଁ ଭାବର ପ୍ରବାହ ଘଟିଛି, ତା'ର ବର୍ତ୍ତମାନର ଅସ୍ତିତ୍ୱ ହେଉଛି ସ୍ୱୟଂ ତିରୁ ବା ପୁନମ୍ । ଇତିହାସ ଓ ସଂସ୍କୃତି ଭିତରେ ଓତଃପ୍ରୋତ ଓ ନିରବଚ୍ଛିନ୍ନ ପରିପୂରକତାକୁ ଲକ୍ଷ୍ୟ କଲେ ଛବି ଭିତରୁ ଆସେ ଗୋଟାଏ ଆହ୍ୱାନ- 'ହେ ଅମୃତର ପୁତ୍ର, ତୁମ ପାଇଁ ଆମେ ବିଷ ପାନ କରିଛୁ, ତୁମେ ଅମୃତ ପିଅ' । ଏହା କ'ଣ ସେମାନେ ବୁଝି ନାହାନ୍ତି ? ତିରୁ ତ ଅନ୍ତର ଭିତରେ ସ୍ୱୀକାର କରିଛି 'ମୁଁ କ'ଣ ଜାଣେ ନାହିଁ ତୁମେମାନେ କେତେ ତ୍ୟାଗ କରିଛ' । ଅଧିକ କ'ଣ ସମ୍ଭବ ଏହା ବ୍ୟତୀତ ? ଯିଏ ତ୍ୟାଗ କରିଗଲେ ତାଙ୍କ ମୁହଁରେ 'ସୁଖ'ର ହସ ଫୁଟାଇବା କ'ଣ ଦମ୍ପତିଙ୍କ କାର୍ଯ୍ୟ ନୁହେଁ ? ପ୍ରସଂଗତଃ ପାଠକମାନଙ୍କ କୌତୂହଳ ସମ୍ବନ୍ଧରେ ସୂଚନା ଦେବା ଆବଶ୍ୟକ ପଡ଼ିପାରେ । ଛବିର ଦୁଃଖ କ'ଣ ? ବାସ୍ତବତଃ ଛବିଟି କାହାର ? ଯେଉଁ ଛବିକୁ ଜଗୁମାଷ୍ଟ୍ରେ ଚିହ୍ନାଇଥିଲେ ପତ୍ନୀ ପଦ୍ମାକୁ ''ଧରାଯାଉ ମୋର ବୋଲି'' ଓ ସେ ବୁଢ଼ା ହେଲେ ଯେମିତି ଦେଖା ହେବେ ତା'ର ଏକ ଝଲକ ଛବିଟିରେ ଉତ୍ତରଳ ହୋଇ ଉଠିଛି ବୋଲି । ଛବିଟି ଜଣେ ବୁଢ଼ାର । ମହାତ୍ମାଙ୍କ ବ୍ୟତୀତ ଏତେବଡ଼ ପ୍ରତୀକ ହେବା ଆଉ କାହାର ପ୍ରାପ୍ୟ ? କେଉଁ ଦୁଃଖରେ ଜଗୁମାଷ୍ଟ୍ରେ ଛବିର ନାମ ଏପରି ରଖିଲେ ? ବ୍ୟାସଦେବ ଦୁଃଖର ଦୁଇଟି କାରଣ ବତାଇଛନ୍ତି । ଚିତ୍ତର ଭ୍ରାନ୍ତି ଓ ଅନିଷ୍ଟ ପ୍ରାପ୍ତି -

ମାନସାନାଂ ପୁନର୍ଯୋନିର୍ଦୁଃଖାନାଂ ଚିତ୍ତବିଭ୍ରମଃ ।
ଅନିଷ୍ଟୋପନିପାତୋ ବା ତୃତୀୟଂ ନୋପପଦ୍ୟତେ ।। ଶାନ୍ତିପର୍ବ ୨୮।୧୨ ।।

ଚିତ୍ତର ଭ୍ରମ ଓ ଅନିଷ୍ଟପ୍ରାପ୍ତି ବଶତ ମଣିଷ ବାରବାର ମାନସିକ ଦୁଃଖ ପାଏ । ତୃତୀୟ କାରଣ ଆଉ କିଛି ନାହିଁ ।

ହର୍ଷ ମଧ ଠାଏ ଅଭିଳଷିତ ବସ୍ତୁର ପ୍ରାପ୍ତି ନହେଲେ ଦୁଃଖ ହୁଏ ବୋଲି ଶୁଣାଇଛନ୍ତି । ଏପରି ଲକ୍ଷଣ ଗାନ୍ଧିଙ୍କ ଚରିତ୍ରରେ ନଥିଲା । ଏହାର ବିଚାର ବେଳେ କଥାଟିଏ ଉଠୁଛି । ଦୁଃଖ ବୋଲି ଯାହା ନାମ ଦିଆଗଲା ସେ ଦୁଃଖଟି କାହାର ? ଛବିର, ଅର୍ଥାତ୍ ଚିତ୍ରିତ ବୁଢ଼ାର ?

ବୋଧହୁଏ ନୁହେଁ । ଦୁଃଖ ଶବ୍ଦକୁ ସ୍ରଷ୍ଟା କିଶୋରୀ ଚରଣ ପ୍ରତୀକ ରୂପେ ନେଇଛନ୍ତି । ଏହା ଆଲେଗୋରି ତୁଲ୍ୟ ଉତ୍ତେଜନା ଓ ଶିହରଣ ଆଣେ । ପ୍ରତୀକ ରୂପେ ଶବ୍ଦର ଅର୍ଥ ଅଭିବ୍ୟକ୍ତିର ସୀମା ଅପରିମିତ । ଗୋଟିଏ ନିର୍ଦ୍ଦିଷ୍ଟ କୌଣସି ବିନ୍ଦୁ ବା ଅର୍ଥରେ ପ୍ରତୀକର ଅର୍ଥକୁ ସୀମିତ କରି ହୁଏନାହିଁ । ଏଣୁ ଦୁଃଖ, ଛବିର ମଣିଷର ନୁହେଁ, ତାର ସ୍ରଷ୍ଟାର ଏକ ମନୋଗତ ବ୍ୟାପାର ଓ ଦୁଃଖ ସଂଘଟିତ ହେଉଛି ତା'ର ଚେତନାରେ । କହିଲେ ଚେଟିଉଇଣ୍ଡ୍ Symbols are concerned with what is of greatest importance to man, his own life and his own mind, the central focal point of that life. They depict the pattern of the psyche, the sequence of the cycle of life and the interaction between the two. As well as playing his own unique part in order of things, the individual shares in a communal fate, the communal destiny of man. Individual destiny and human destiny, are interwoven, inseparable (Dictionary of symbols page XI). ମଣିଷର ସାମାଜିକ ମନ ଜୀବନ ଚକ୍ରର ଘଟଣାବଳୀରୁ ଯେଉଁ ତଥ୍ୟ ବା ଅନୁଭୂତି ଆହରଣ କରେ ସେଇଥିରୁ ତା'ର ମନୋଜଗତଟି ଭିନ୍ନ ଭିନ୍ନ ରୂପ ନେଉଥାଏ । ସମଷ୍ଟିର ଭାଗ୍ୟଚକ୍ର ସହ ବ୍ୟକ୍ତିର ଭାଗ୍ୟଚକ୍ର ଏହି ହେତୁ ଛନ୍ଦାଛନ୍ଦି ଓ ଅଭିନ୍ନ ହୋଇଯାଏ । ସେହି ସମ୍ପର୍କରୁ ବ୍ୟକ୍ତିର ମନଭୂମିରେ ପ୍ରତିଫଳିତ ନାନା ଛବି ଭିତରେ ତା'ର ନିଜ ଜୀବନର ମର୍ମଟି ଲୁଚି ରହେ । ଏଣୁ ପ୍ରତୀକ ଆଉ କାହାର ମର୍ମ ସମ୍ପଦ ନ ହୋଇ ବ୍ୟକ୍ତି ଚେତନାର ଅଂଶ ବିଶେଷ ହୋଇଯାଏ । ଏହି ଅର୍ଥରେ ଦୁଃଖ ହେଉଛି ଛବି ଆଙ୍କିଥିବା ଜଗୁ ସାମନ୍ତଙ୍କର, ଛବିର ବୁଢ଼ାର ନୁହେଁ । ଅପର ପକ୍ଷରେ ଦୁଃଖ ଭାରି ଏକ ବ୍ୟକ୍ତିଗତ ବ୍ୟାପାର, ତାହାର ହୁଏତ କାରଣ ଥାଇପାରେ ମାତ୍ର ତା'ର ସତ୍ତା ଆବିଷ୍କାର ଅନ୍ୟ ଦ୍ୱାରା କ୍ୱଚିତ ସମ୍ଭବ । କେବଳ ବ୍ୟକ୍ତିର ବିଷୟ ବା ଘଟଣା ସମ୍ପୃକ୍ତି ଭିତରୁ ତାହା ଅନୁସନ୍ଧାନ କରାଯାଇପାରେ ।

ସ୍ୱୟଂ ଶିଳ୍ପୀ ମଧ୍ୟ ବୁଝିପାରି ନଥିଲେ 'ଦୁଃଖ' କାହିଁକି ? କେବଳ ଜିଜ୍ଞାସୁ ପତ୍ନୀର ଉତ୍ସାହକୁ ଦେଖି କହିଥିଲେ ମୋ ବୁଢ଼ାର ଦୁଃଖ ଯେତେବେଳେ, ତାକୁ ମର୍ଯ୍ୟାଦା ଦେବା ଛଡ଼ା ଅନ୍ୟଗତି ଅଛି ମୋର (ପୃ ୨୭) ? ସେଇଠୁ ଦୁଃଖର କାରଣ ସେମାନେ ଖୋଜିବା ଅପେକ୍ଷା ଛବିର ମାହାତ୍ମ୍ୟକୁ ଏକାଠି ଆବିଷ୍କାର ଓ ଉପଭୋଗ କରିଥିଲେ । କିଶୋରୀବାବୁ ଇଙ୍ଗିତ ଦିଅନ୍ତି ତାଙ୍କ ଚରିତ୍ରର ମନର ଗନ୍ତାଘର ଖୋଲିଲା ବେଳେ । ସେହିପରି ଏକ ଇଙ୍ଗିତ ଉପନ୍ୟାସର ଶେଷ ପୃଷ୍ଠାରେ ମିଳିପାରେ । ସେଇ ଯେ ତିରୁ ଦମ୍ପତିଙ୍କ ଭିତରେ ସ୍ଥିର ହେଲା 'ଏଣିକି ସୁଖ' ଏବଂ ସେ କଥାରେ ତିରୁ ପତ୍ନୀକୃତ ଦୁଷ୍ଟାମିକୁ ଭୁଲିଯାଇ ହସି ଦେଲା ତାହା ନୁହେଁ । ତା'ର ସ୍ମିତ ମଧୁର ହସର ରହସ୍ୟ ମଧ୍ୟ ପୁନମ ଭେଦି ପାରିନଥିଲା । ଲୁଚି ଥିଲା ଗୋଟିଏ ଗୋପନୀୟ କଥା - ଯେ ତିରୁ ଭିତରେ ଆତ୍ମଗୋପନ କରିଛି ତା'ର ଜେଜେଙ୍କର ଖିଆଲ । ସେ ବି

ଜେଜେଙ୍କ ପରି ଲୁଚି ଲୁଚି ଛବି ଆଙ୍କେ । ଏଣୁ ବୁଢ଼ାଟାର ଛବି ଆଙ୍କିଦେବା ତା ପକ୍ଷରେ ଅସମ୍ଭବ ନୁହେଁ । ସେ ସ୍ଥିର କଲା ଆଙ୍କିବ, ଠିକ୍ ସେହିପରି ନ ହେଲେ ବି ତା'ର ଭାବଭାବନାକୁ ନେଇ । ହରାଇ ଥିବା ଜିନିଷକୁ ସେ ଫେରିପାଇବ । ବସ୍ତୁତଃ ଉପନ୍ୟାସର ଶେଷ ବର୍ଣ୍ଣନାଂଶ ସୁଖ ନାମରେ ଯାହା ନାମିତ ତାହା ପୁନମ୍ର ଚାକିରି ପାଇବା ଜନିତ ଆନନ୍ଦ ଉପଭୋଗ ନୁହେଁ, ତା' ସହିତ ତିରୁର ସୁଖ ସମ୍ପର୍କ ଲେଶ ସମ୍ପୃକ୍ତ । ସୁଖ ହେଉଛି ହରେଇ ଥିବା ବସ୍ତୁକୁ ପୁଣି ଫେରିପାଇବାର । ଛବିରେ କଥିତ ଦୁଃଖ ନୁହେଁ ମୁହଁର ମଳିନତା ବା ବିଷନ୍ନାଭ ମୁଖମଣ୍ଡଳ । ଏପରି ଏକ ଛବି ଯିଏ ଦୁଃଖ ଭୁଲାଇ ଦିଏ, କହେ 'ତୁ ପାରିବୁ' । ଏଇ ଆତ୍ମବିଶ୍ୱାସ, ଭରସାପଣ ଛବିକୁ ଦେଖିଲେ ମନରେ ଆସିଯାଏ ଆପେ । ତେଣୁ ଦୁଃଖ ଅପେକ୍ଷା ଦୁଃଖ ପାଶୋରା ହିଁ ଅଧିକ ଭାବଯୋଗ୍ୟ । ଛବି କହୁଛି ତୁମର ଦୁଃଖ ମତେ ଦେଇ ଦିଅ, ନିଜର ଦୁଃଖ ଭୁଲିଯାଅ (ମୁଁ ଅଛି ନୀଳକଣ୍ଠ, ତୁମର ଦୁଃଖ ବିଷକୁ ପାନ କରିବି । ରଖିଯିବି ତୁମ ପାଇଁ ଅମୃତ) । ଏହାହିଁ କ'ଣ ତାଙ୍କ ଜୀବଦଶାରେ ପ୍ରମାଣିତ ହୋଇନାହିଁ ? ତାଙ୍କ ସହିଦତ୍ୱବରଣରେ ।

'ତୁମ ଆମ ଶତାବ୍ଦୀ' ଇତିହାସର ଏକ ଆଲେଖ୍ୟ, ତଥା ଏହା ଭବିଷ୍ୟତ ପାଇଁ ଏକ ଅନୁସନ୍ଧାନର ବାର୍ତ୍ତା ଉପସ୍ଥାପନ କରେ । ସ୍ରଷ୍ଟା କାଳକୁ ଭାଙ୍ଗେ, ଭାଙ୍ଗେ ତା'ର କ୍ରୂରପଣକୁ । ଆଉ ତା'ର ଊର୍ଦ୍ଧ୍ୱକୁ ଉଠାଇ ନେବାକୁ ଚାହେଁ ଚରିତ୍ରକୁ । ଯେଉଁଠି ଚରିତ୍ର ସସୀମତାର କ୍ଷୁଦ୍ରପଣ ଭୁଲି ନିଖିଳ ବିଶ୍ୱପ୍ରାଣକୁ ଉଦାର ମହାନତାର ସ୍ପର୍ଶଟିଏ ଦେଇ ମୁଗ୍ଧ କରିବାକୁ ତତ୍ପର ହୋଇ ଉଠେ । ସେ ଯେଉଁ ବାର୍ତ୍ତା ପ୍ରକଟ କରେ ସେଥିରେ ମଙ୍ଗଳଧ୍ୱନି ହୁଏ ନିନାଦିତ । ଏଇ ମଙ୍ଗଳ ଦାନ ସ୍ରଷ୍ଟାର ପାରିବାପଣ । ତେବେ କିଶୋରୀ ଚରଣ ପାରିଛନ୍ତି କି ? ନ ପାରିଛନ୍ତି କହି ହେବ ନାହିଁ । ଗୋଟିଏ ଶତାବ୍ଦୀର ଇତିହାସକୁ ସାହିତ୍ୟ ଭିତରେ ବୁଜୁଳିଟିଏ କରିଦେବାକୁ ସେ ଚାହିଁଛନ୍ତି । ବିଗତ ଶତକର ଦାରୁଣ ଦୁଃଖଦ ଚିତାନଳ ଯାହା ତତ୍କାଳର ପ୍ରତିଶ୍ରୁତିକୁ ଉପହାସ କରିଥିଲା, ତାର ପୁରୋଭାଗରେ ଆସିଲେଣି ନୂଆ ଯୁବକ ଯୁବତୀ । ଯେଉଁମାନେ ପୃଷ୍ଠଭୂମିର ପୋଡ଼ାମାଟିର ଦୃଶ୍ୟ ଦେଖି ନାହାନ୍ତି, ଚିତାନଳର ବିଷାଦ ଭୋଗି ନାହାନ୍ତି । ସେମାନେ ଇତିହାସ ପଢ଼ିଲେ ତଥ୍ୟ ପାଇବେ, ପାଇବେ ନାହିଁ ଦଗ୍ଧହୃଦୟ ବା ଘଟଣା ପ୍ରସୂତ ଜୀବନର ପ୍ରତିକ୍ରିୟା । ସମୟର ପ୍ରଭାବଜନିତ ସୁଖଦୁଃଖର ଅନୁଭୂତି, ଯାହା କେବଳ ସାହିତ୍ୟ ଦେଇପାରେ । ଜଣେ ସ୍ରଷ୍ଟା ଭାବେ ଉତ୍ତରପୁରୁଷ ପ୍ରତି ଥିବା ତାଙ୍କର ଦାୟିତ୍ୱ ସେ ପାଳିଛନ୍ତି । ଏମିତି ସେ କୁହନ୍ତି, "ଯାହା ହେଉ ଏକ ନୂଆ ଶତାବ୍ଦୀ ଉଇଁ ଆସିଲାଣି ମୋର ନାତିନାତୁଣୀଙ୍କ ପାଇଁ । ସେଇଠୁ ମୁଁ ଭାବିଲି ଯେ ଯେହେତୁ ମୁଁ ତଥାପି ବଞ୍ଚି ରହିଛି ଏବଂ କଲମ ଧରିଛି, ମୋର ଗୋଟାଏ ଦାୟିତ୍ୱ ଅଛି ତୁମର ଆମର ଶତାବ୍ଦୀକୁ ନେଇ କିଛି କହିବା ପାଇଁ । କଅଣ ସରିଗଲା, ପରିପକ୍ୱ ହେଲା ଅବା ଜନ୍ମ ହେଲା କେଉଁ ଏକ ନୂଆ ରଙ୍ଗ ରୂପର ଝଲକ

ଦେଖାଇ, ସେଇସବୁ ପ୍ରଶ୍ନର ଯତ୍‌ସାମାନ୍ୟ ସୂଚନା ଦେଇ ଏବଂ ସେଥିରେ ଥିବା ନାନା ଭଲମନ୍ଦ ନୀତି-ଅନୀତି-ଅଣନୀତି ଓ ସୁଖଦୁଃଖର କନ୍ଦଳକୁ ଭୁଲି ନଯାଇ (ନିଜ କଥା)'' ।

କାଳକୁ ଚିହ୍ନେଇବା ବେଳେ ଜଣେ ଲେଖକ ଅପସୃତ ଘଟ୍‌ଣାବଳୀର ଉଲ୍ଲେଖ କରିଗଲେ ତାହା ଇତିହାସ ହେବ ସିନା ସାହିତ୍ୟ ନୁହେଁ । ଏହି ଦୃଷ୍ଟିରୁ ଶତାବ୍ଦୀଟି ଯେପରି ଅନୁଭୂତ ସତ୍ୟ ପ୍ରକାଶ କରିଛି ତାକୁ ସେପରି ସେ ଟେକି ଦେଇଛନ୍ତି ପାଠକ ପାଖରେ । 'କେତେକ ଐତିହାସିକ ଅଧିନାୟକମାନଙ୍କ ଛଡ଼ା' ଅନ୍ୟ ସମସ୍ତ ଚରିତ୍ର ତାଙ୍କର ନିଜସ୍ୱ । ସେହି ସମ୍ପୂର୍ଣ୍ଣ କାଳ୍ପନିକ ଚରିତ୍ରମାନେହିଁ ଇତିହାସର ପ୍ରତିଧ୍ୱନି ଓ ସେମାନଙ୍କ ଚେତନା ଭିତରେ ଇତିହାସକୁ ବୁଝିବାକୁ ହେବ । ଗୋଟିଏ ଇଙ୍ଗିତ ମିଳେ ଏ ବିଷୟରେ । ରାମନାଥ ଦିଲ୍ଲୀରେ ଚାକିରି ନେଇ ବ୍ୟସ୍ତ । ଗାଁରେ ପତ୍ନୀ ରାଣୀ (ମନ୍ତ୍ରୀ ବୃନ୍ଦାବନଙ୍କ ଝିଅ) ଜନ୍ମ ଦେଉଛନ୍ତି ପୁଅ ଟିଲୁକୁ । ଖବରଟା ପହଞ୍ଚିଲା ବାପ ପାଖରେ । ରାମନାଥ ସାବାସ୍ ଦେଉଛନ୍ତି ଇନ୍ଦିରା ଗାନ୍ଧୀଙ୍କୁ । ବିସ୍ମୟଟି ଘଟିଗଲା ତାଙ୍କ ଚେତନାରେ । ଦିନଟି ଥିଲା ୧୮ ମେ, ୧୯୮୪, ଭାରତର ଆଟମବମ ପରୀକ୍ଷାର ଦିନ । ସ୍ମରଣୀୟ । ଏ ଦିନରେ ଜନ୍ମିତ ପୁଅ ହେବ ଭବିଷ୍ୟତର ପୁଅ । ଏକ ଜ୍ୟୋତିର୍ମୟ ପୁଅ । ସେ ବିସ୍ଫୋରଣ ଧରି ଆସିଛି । ଆଗାମୀ ଶତକରେ ସେ ସବୁ ଓଲଟେଇ ଦେବ । ନାଶ ଯିବ କଳିଯୁଗ, ଆସିବ ସତ୍ୟଯୁଗ । ଏତେ ଦିନକେ ସାର୍ଥକ ହେବ ଆମ 'ସତ୍ୟମେବ ଜୟତେ'ର ମଟୋ'' (ପୃ ୧୪୩) ।

ଉତ୍ତରପୁରୁଷ ଉପରେ ଏଇ ଯେଉଁ ଭରସା ରଖିଦେଲେ ଲେଖକ ତାହା ଇଙ୍ଗିତକୁ ସାର୍ଥକ କରେ ।

**ଶେଷଅଙ୍କ : ପ୍ରଥମ ଦୃଶ୍ୟ** - ଏଇ ଗତ ଫେବୃୟାରୀରେ ବିଦ୍ୟାପୁରୀ ପ୍ରକାଶ କରିଛନ୍ତି ସପ୍ତମ ତଥା ଅବଧି ଅନ୍ତିମ କୃତି 'ଶେଷଅଙ୍କ : ପ୍ରଥମ ଦୃଶ୍ୟ (୨୦୦୩) । ପ୍ରକାଶନ ପୂର୍ବରୁ ସ୍ରଷ୍ଟା ଏ ଲେଖକକୁ ପାଣ୍ଡୁଲିପି ପଢ଼ିବାର ସୁଯୋଗ ଦେଇଥିଲେ । ତେବେ ବିଦ୍ୟାପୁରୀ ଖୁବ୍ ଶୀଘ୍ର ପ୍ରକାଶ କରି ବାଧିତ କରିଛନ୍ତି, ଏହି କାରଣରୁ ଯେ କିଶୋରୀ ବାବୁଙ୍କ ସବୁ କୃତିକୁ ନେଇ ପୂର୍ଣ୍ଣାଙ୍ଗ ଆଲୋଚନାର ବାଟ ପ୍ରଶସ୍ତ କରିଦେଇଛନ୍ତି ନଚେତ୍ ଅପ୍ରକାଶିତ ପାଣ୍ଡୁଲିପି ଆଧାରରେ ଆଲୋଚନା କରାଯାଇପାରନ୍ତା ନାହିଁ ।

ଉପନ୍ୟାସଟି ମାତ୍ର ୧୦୪ ପୃଷ୍ଠା, ସବୁ କୃତି ଭିତରେ ସାନ । ସାନତ୍ୱ ଏହାର ମର୍ଯ୍ୟାଦା ବୃଦ୍ଧି କରିଛି, ସ୍ୱଚ୍ଛଳ ଓ ସାବଲୀଳ ଭାବ ବିକ୍ଷେପର ମାର୍ଗଦର୍ଶକ ହୋଇଛି । ହେଲେ କ୍ଷୁଦ୍ରଗଳ୍ପର ସୂକ୍ଷ୍ମାଂଶ ଭିତରେ ବିନ୍ଦୁକୁ ଆବୋରି ସିନ୍ଧୁର ଆବର୍ତ୍ତନରୁ ମୁକ୍ତ ହୋଇ ପାରିନାହିଁ । ଘଟଣା ଘଟୁଛି ବାର୍ଦ୍ଧକ୍ୟରେ ଉପନୀତ ଜଣେ ବୃଦ୍ଧ କବି ଜଗତକୃଷ୍ଣ ତାଙ୍କର ସହୃଦୟ ପାଠିକା ମଞ୍ଜୁ ମହାପାତ୍ରଙ୍କର ହାତକୁ ଆଉଁଶି ଦେବାରେ । ସେମାନେ ବସିଥିଲେ ''ପ୍ରଦୋଷ ବିଳାସ''ର ଏକ ଖୋଲା କୋଠରିରେ, ସକାଳ ବେଳାରେ; ଯେତେବେଳେ ଦୃଶ୍ୟଟି ସେଇବାଟ ଦେଇ

ଯାଉଥିବା ଅନ୍ୟ କେତେଜଣ "ପ୍ରଦୋଷ ବିଳାସ" ବାସିନ୍ଦାଙ୍କ ଆଖିରେ ପଡ଼ିଲା । ଅଭାବିତ ଏଇ ଦୃଶ୍ୟଟି । ସେଇଟି ଲୋଭନୀୟ ଦୃଶ୍ୟ ବା ଅପଦୃଶ୍ୟ ତାହା ଏକ ଭିନ୍ନ ବିଚାର; କିନ୍ତୁ ଘଟଣାଟି ଚର୍ଚ୍ଚିତ ହେଲା ଗଜେନ୍ଦ୍ର ଦାସଙ୍କ ଦ୍ୱାରା । ଯେଉଁମାନେ ଦେଖିଲେ ସେମାନଙ୍କ ମଧ୍ୟରେ ଥିଲେ ଅନ୍ୟତମ ବିଳାସବାସୀ ଡକ୍ଟର ସେନ୍ ଓ ବଳରାମ । ଏଇମାନେହିଁ ଉପନ୍ୟାସର ଚରିତ୍ର ଓ ମଞ୍ଜୁ ମହାପାତ୍ର ବ୍ୟତୀତ ସମସ୍ତେ ପ୍ରଦୋଷ ବିଳାସର ଅନ୍ତେବାସୀ ସଭ୍ୟ ।

ପ୍ରଦୋଷ ବିଳାସ ଗୋଟିଏ ବାର୍ଦ୍ଧକ୍ୟ ନିବାସ । ଆଧୁନିକ ସମାଜରେ ଏପରି ବାସସ୍ଥାନ ପରିବାରଛଡ଼ାମାନଙ୍କୁ ଯୋଗାଇଛି ନିଭୃତ ଅବସ୍ଥାନର ଯନ୍ତ୍ରଣାହୀନ ଆବେଗ ଓ ଏକକ ଅନୁଭୂତିମୂଳକ ସମ୍ଭୋଗ । ତେବେ ଉପନ୍ୟାସ ଏହି ଦୃଷ୍ଟିରୁ ଏକ ନୂତନ ଓ ଅବଧି ଏକମାତ୍ର କୃତି । ବାର୍ଦ୍ଧକ୍ୟଜନିତ ନିଃସଙ୍ଗତା ଓ ପରିବାର ନିର୍ଭର ଅପ୍ରିୟତାରୁ ତ୍ରାହି ଖୋଜି ଯେଉଁମାନେ ଜରାନିବାସ ଖୋଜନ୍ତି, ସେଇମାନଙ୍କ କାହାଣୀ । ଏହି ଜରାନିବାସରେ ଆଶ୍ରୟ ନେଇଛନ୍ତି ଉଚ୍ଚ ପ୍ରଶାସନିକ କ୍ଷେତ୍ରରୁ ଅବସର ନେଇଥିବା ଜଣେ ଦକ୍ଷ ବିଦ୍ୱାନ ଅମଲା ଡଃ. ସେନ୍, ଜଣେ ଗାନ୍ଧିବାଦୀ ଅଧ୍ୟାପକ ବଳରାମ ନାୟକ, ଜଣେ ଶିକ୍ଷିତ କଣ୍ଟ୍ରାକ୍ଟର ଗଜେନ୍ଦ୍ର ଦାସ ପ୍ରଭୃତି । ସେମାନେ ଯେଉଁ ପରିସ୍ଥିତିରେ ନିଜ ନିଜ ପରିବାର ଠାରୁ ବିଛିନ୍ନ ହୋଇ ପଡ଼ିଛନ୍ତି ତାହା ସେମାନଙ୍କ ଜୀବନର ବ୍ୟକ୍ତିଗତ କାହାଣୀ ଭାବେ ଉପନ୍ୟାସରେ ପ୍ରସଙ୍ଗ କ୍ରମେ ସେମାନଙ୍କ ସ୍ୱଗତୋକ୍ତି ମାଧ୍ୟମରେ ବର୍ଣ୍ଣନା କରାଯାଇଛି । ଏମାନଙ୍କ ମଧ୍ୟରେ ଥିଲେ ଭିନ୍ନ ଡଃ. ସେନ୍ । ଦିବ୍ୟ ଚେହେରା ସାଙ୍ଗକୁ ଆଇଏଏସ୍ ପାଇ ସେ ଅଫିସର ଥିଲେ, ତା ସାଙ୍ଗକୁ ଥିଲା ବିଦ୍ୟା, ଗବେଷଣା ପ୍ରତି ଆଗ୍ରହ ଏବଂ ସବୁଠୁ ବଡ଼ କଥା, ସେ ଥିଲେ ଅବିବାହିତ । ତା'ର କାରଣ ତାଙ୍କ ଚରିତ୍ରରେ ଥିଲା ନିଷ୍ଠା, ସମୟାନୁବର୍ତ୍ତିତା, ସଚୋଟ ପଣିଆଦି କେତେକ ବ୍ୟତିକ୍ରମ ଗୁଣ । ସେଇ ଅହଂକାରବଶତଃ ସେ ଭାବିଥିଲେ ବିବାହ ହେଲେ ତାଙ୍କ ନିଜତ୍ୱ ଉପରେ ଅନ୍ୟର ସବାର ସହିବାକୁ ହେବ । 'ପତ୍ନୀଟିଏ ନିଜତ୍ୱର ହାନିକାରକ' । ଏଣୁ ଅବିବାହିତ ରହିବାକୁ ଗୌରବ ମନେ କରିଥିଲେ । ମାତ୍ର କୁମାରତ୍ୱ କେତେ ଦିନ ? ଥରୁଟିଏ ମାତ୍ର ସେ ଯୌନାଗ୍ରହର ଶିକାର ହୋଇଗଲେ ବହୁ ବିଭବବିଳାସିନୀ ଜନୈକ ଇଞ୍ଜିନିୟର ପତ୍ନୀ ନନ୍ଦିତା ଚୌଧୁରୀ ସାଙ୍ଗରେ । ମାତ୍ର ଗୋଟାଏ ମୁହୂର୍ତ୍ତର ସେକ୍ସ ବାଘର ମସୃଣ ମୁଲାୟମ ଦେହ ଉପରେ ସବାର ହେଉ ହେଉ ସେ ନୀତି ବ୍ରହ୍ମାର ବିବେକ ବାଣରେ ଜର୍ଜରିତ ହୋଇ ଅର୍ଦ୍ଧଭୁକ୍ତ ରହିଗଲେ । ଏଇ ଘଟଣାରେ ବିବେକର ଦଂଶନରେ ଅତିଷ୍ଠ ହୋଇ ସେ ରାଜଧାନୀରୁ ବଦଳି ହୋଇ ଗଲେ ଅନ୍ୟ ଆଡ଼େ ଏବଂ ବିଧିତ ବୟସ ପୂର୍ବରୁ ସ୍ୱେଚ୍ଛାକୃତ ଅବସର ନେଇ ଅବସ୍ଥାନ କଲେ ପ୍ରଦୋଷ ବିଳାସରେ । ବଳରାମ ନାୟକ ଦୁଇ ଝିଅଙ୍କୁ ବିବାହ ଦେବାପରେ ପତ୍ନୀହରା ହୋଇଥିଲେ । ଝିଅଜ୍ୱାଇଁଙ୍କ ଉପରେ ବୋଝ ହେବାକୁ ପସନ୍ଦ ନକରି ଆଶ୍ରୟ ନେଲେ ଜରା ନିବାସର । କବି ଜଗତକୃଷ୍ଣ, ପତ୍ନୀ ସରମାକୁ ଦାମ୍ପତ୍ୟ କଳହର କ୍ରୋଧବଶତ କବିତା ଖାତାରେ

ଥରେ ପାହାର ଦେଇଥିଲେ । ସେ ନେଇ ସେ ବାରମ୍ବାର କ୍ଷମା ମାଗିଥିଲେ ଓ ସରମାଙ୍କ ମାଡ଼ ବିଧୂତ ହାତଟିକୁ ଆଉଁଶି ଦେବାକୁ ବହୁ ଚେଷ୍ଟା କରିଥିଲେ, ମାତ୍ର ତାହା ସଫଳ ହୋଇପାରିଲା ନାହିଁ, ସରମାଁ ଚାଲିଗଲେ । ସଂସାରରୁ କବି ପଳାଇ ଆସି ପ୍ରଦୋଷ ବିଳାସର ନିର୍ଜନ ମୁହୂର୍ତ୍ତକୁ ସରମାଙ୍କ ସ୍ମୃତି ଓ ନିଜର ଅପକର୍ମର ଅନୁତାପ ଜାଳରେ ଜାଗରୁକ କରୁଥିଲେ । ଏପରି ଏକ ଭାବାନ୍ତର ମୁହୂର୍ତ୍ତରେ ଦିନେ ଆସି ପହଞ୍ଚିଗଲେ ତାଙ୍କ କବିତାର ସହୃଦୟା ମଞ୍ଜୁ ମହାପାତ୍ର ଓ ବସି ପଡ଼ିଲେ କବିଙ୍କ ପାଖରେ । କବି ଭାବନାନ୍ତରରେ ପାଇଗଲେ ସରମାର ସ୍ମୃତିବୋଳା ସୁଶ୍ରୀ ହାତ ଓ ତାକୁ ଆଉଁଶି ଦେବାରେ ଲାଗିଲେ । ଏହି ଦୃଶ୍ୟଟି ପଡ଼ିଲା ଡଃ. ସେନ, ବଳରାମ ଓ ଗଜେନ୍ଦ୍ରଙ୍କ ଆଖିରେ ।

ତେବେ ଏ କିବା କଥା ? ତାକୁ ନେଇ ଗଜେନ୍ଦ୍ର ସମସ୍ତଙ୍କୁ ଶୁଣାଇଲେ ଡେଙ୍ଗୁରା ପଟିଲା ପରି ଓ ସେଦିନ ଘରକୁ ଫେରିଯାଇ ନିଜର ପୌରୁଷ ତଦବଧି ଉଜ୍ଜୀବିତ ରହିଥିବାର ପ୍ରମାଣ ଦେଇଦେଲେ ସ୍ତ୍ରୀଙ୍କୁ ।

ଡଃ. ସେନ୍ ସେକ୍ସ ପ୍ରବୃତ୍ତିକୁ ସମାହିତ କରିଛନ୍ତି ଅଧ୍ୟୟନ ଓ ଗବେଷଣା ଭିତରେ, ବଳରାମ ଗାନ୍ଧି ଆଦର୍ଶର ସଂଯମ ଭିତରେ । ବଳରାମଙ୍କର ଅପୂରଣୀୟ କେତୋଟି ସ୍ମୃତି ତାଙ୍କୁ ବେଳେବେଳେ ମଧୁର ଆବେଶ ଭିତରେ ଉନ୍ମାଦିତ କରି ରଖେ । ସେ ଭଲ ପାଉଥିଲେ ସୁରେଖାକୁ, ଯିଏ ବିଦ୍ରୋହିଣୀ ସାଜି ବିପ୍ଳବର ପତାକାବର୍ତ୍ତୀ ହୋଇଗଲା । କିନ୍ତୁ ଅନ୍ୟତ୍ର ବିବାହ କରି ବଳରାମ ପୂର୍ଣ୍ଣ ଦାମ୍ପତ୍ୟ ଭୋଗ କଲେ । ଅବଶିଷ୍ଟ ଜଣକ ଗଜେନ୍ଦ୍ର-ତାଙ୍କର ଦାମ୍ପତ୍ୟ ସଯୋଗ ଅକ୍ଷୁଣ୍ଣ ରହିଛି, ସେ ଚାହିଁଲେ ବାଘର ମସୃଣ ଛାଲ ଉପରେ ହାତ ବୁଲାଇବାର ଅସୁବିଧା ନାହିଁ ।

କିନ୍ତୁ ଗଜେନ୍ଦ୍ର କ'ଣ କଲେ ? ପରିଣତ ବୟସରେ କଥାଟାକୁ ରସିକ ଜନୋଚିତ ଆହ୍ଲାଦ ଚିତ୍ତରେ ନ ନେଲେ କାହିଁକି ? କାହିଁକି ବାରମ୍ବାର ଧିକାର କଲେ ମଞ୍ଜୁ ମହାପାତ୍ରର ସ୍ୱର୍ଗତ ଅପୁତ୍ରକ ସ୍ୱାମୀ ପରମାନନ୍ଦ ମହାପାତ୍ରଙ୍କୁ ? ଏଇଥିପାଇଁ ଯେ ସେ ସନ୍ତାନଟିଏ ଛାଡ଼ିଗଲା ନାହିଁ ବିଧବାର କୋଳରେ, ଆଉ ବିଧବା ପରପୁରୁଷର ଉଷ୍ମ ଆଉଁଶାରେ ଉଲ୍ଲସିତ ହେଉଛି । ସ୍ୱାମୀ ସ୍ୱର୍ଗରେ ଏ ଘଟଣା ଦେଖି ଅଶାନ୍ତି ଭୋଗୁଥିବ, ଧିକାର କରୁଥିବ ନିଜକୁ । କଥାଟିର ମୂଳରେ ରହିଛି ଗଜେନ୍ଦ୍ରଙ୍କ ମନରେ ଇର୍ଷା ଦୁଇଟି କାରଣରୁ । ଗଜେନ୍ଦ୍ରଙ୍କ ବାପା ଧନୁ ଦାସ ଥିଲେ ପରମାନନ୍ଦଙ୍କର ଜଜ୍ ସାହେବ ବାପାଙ୍କ ମାଳୀ । ଉଭୟେ ଜାତିରେ କରଣ ହେଲେହେଁ ଧନୁ ଦାସ ଟିକେ ନିମ୍ନ । ଗଜେନ୍ଦ୍ର ଓ ପରମାନନ୍ଦ ଉଭୟ ଥିଲେ ବାଲ୍ୟସାଥୀ । ମାଳୀର ପୁଅ ଓ ଜଜ୍ ସାହେବଙ୍କ ପୁଅ ଏକ ହେବେ କିପରି ? ଗଜେନ୍ଦ୍ର ଇଞ୍ଜିନିୟରିଂ ପାଠ ପଢ଼ିଲେ । ପାଠ ପରେ ହେଲେ କଣ୍ଟ୍ରାକ୍ଟର । ପରମାନନ୍ଦ ବିଦେଶରୁ ଶିକ୍ଷା ପାଇ ଗଢ଼ିଲେ ଗୋଟିଏ ବଡ଼ କମ୍ପାନୀ । ନାନା ନିର୍ମାଣମୂଳକ କାର୍ଯ୍ୟରେ ସରକାରୀ ଟେଣ୍ଡର ଧରିବା କ୍ଷେତ୍ରରେ ସେ ଇଞ୍ଜିନିୟର

କଣ୍ଟ୍ରାକ୍ଟର ଗଜେନ୍ଦ୍ରଙ୍କୁ ପରାସ୍ତ କରୁଥିଲେ । ଦ୍ୱିତୀୟତଃ, ମଞ୍ଜୁ ମହାପାତ୍ରଙ୍କ ସହ ପ୍ରଥମ ବିବାହ ପ୍ରସ୍ତାବ ପଡ଼ିଥିଲା ଗଜେନ୍ଦ୍ରଙ୍କ ସହିତ, ମାତ୍ର ଜାତି ବିଚାରରେ ନ୍ୟୂନ ବୋଲି ଜଣା ପଡ଼ିବା ପରେ ପ୍ରସ୍ତାବଟି ମୁହାଁଇଗଲା ପରମାନନ୍ଦଙ୍କ ଆଡ଼କୁ । ଏଣୁ ବ୍ୟବସାୟ ଓ ବିବାହ - ଅର୍ଥ ଓ ଯୌନତା-ଏଇ ଦୁଇ କ୍ଷେତ୍ରରେ ପରମାନନ୍ଦ ଥିଲେ ବିଜୟୀ, ଗଜେନ୍ଦ୍ର ବିଜିତ । ତାଙ୍କ ମନରେ ଇର୍ଷା ଜନିତ କ୍ରୋଧ ପରମାନନ୍ଦଙ୍କ ଅକାଳ ମୃତ୍ୟୁ ସତ୍ତ୍ୱେ ଶୀତଳ ହୋଇନଥିଲା । ସେ ତା'ର ସୁଯୋଗ ନେଲେ ଓ ପରୋକ୍ଷରେ ପ୍ରମାଣ କରିବାକୁ ମନ ବଳାଇଲେ ଯେ ମଞ୍ଜୁ ମହାପାତ୍ର ବହୁ ବିଭବର ମାଲିକାଣୀ ହେବା ସତ୍ତ୍ୱେ ନୈତିକତାର ଲଙ୍ଘନ କରିଛନ୍ତି, ଅନ୍ତତଃ ସ୍ୱର୍ଗଗାମୀ ସ୍ୱାମୀ ପାଖରେ ଦ୍ରୋହାଚରଣ କରିଛନ୍ତି ।

ଏଇ 'ହାତ ଆଉଁଶା'କୁ ଧରି ଶ୍ରୀଯୁକ୍ତ ଦାସ ପ୍ରଶ୍ନ ଉଠାଇଛନ୍ତି । ତାହା ମୂଳତଃ ଚାରିତ୍ରିକ ଅପବାଦ ନା ଅପଦୃଶ୍ୟ ? ଏହା ପ୍ରେମ ନା ଦୁର୍ନୀତି ? କହୁଛନ୍ତି, ''ପାପୁଲିରୁ କହୁଣି ଯାଏଁ ଏବଂ ସେଥିରେ ମଗ୍ନ ହେଲାପରି ଦିଶୁଛନ୍ତି । ଆଉ ମଞ୍ଜୁଙ୍କ ମୁହଁରେ ଯେଉଁଭଳି ଆନନ୍ଦ ଫୁଟି ଉଠୁଛି ତାକୁ ଉଜ୍ଜ୍ୱଳନ ଛଡ଼ା ଆଉ କିଛି କୁହାଯାଇ ନପାରେ । ହେଲେ ବିପତ୍ନୀକ ଜଗତକୃଷ୍ଣଙ୍କର ଏଇ ପ୍ରକ୍ରିୟାଟି କ'ଣ ବୋଲି ବୁଝି ହେଉ ନାହିଁ । ମନେହୁଏ ସେ ମଞ୍ଜୁଙ୍କୁ ପ୍ରେମ କରୁଛନ୍ତି, ଦେଶକାଳ ପାତ୍ରକୁ ପରୁଆ ନ କରି । ସ୍ତ୍ରୀ ଲୋକ ଜଣକ ପ୍ରଦୋଷ ବିଳାସର ଅନ୍ତେବାସୀ ନୁହଁନ୍ତି । ତା ହେଲେ ସେ କିଏ ? ଏବଂ ପ୍ରକୃତରେ କଥାଟା କ'ଣ ? ସମୟ, ମଧ୍ୟାହ୍ନ ।'' ଏବଂ ଏହା ସହିତ ସେ ଆଶା କରୁଛନ୍ତି କଥାଟା ଅନ୍ତତଃ ବୌଦ୍ଧିକ ସ୍ତରରେ ବିବେଚିତ ହେଉ ।

ପୂର୍ବାଭାସ ସମେତ ଉପନ୍ୟାସର ଆଙ୍ଗିକ ପାଞ୍ଚୋଟି ପର୍ଯ୍ୟାୟରେ ନାଟକ ସୁଲଭ ଅଙ୍କ ବା କାହାଣୀ ମଞ୍ଚରେ ବିଭକ୍ତ । ନାମକରଣକୁ ସାର୍ଥକ କରିବା ଉଦ୍ଦେଶ୍ୟରେ ପ୍ରଥମ ଦର୍ଶକ, ଦ୍ୱିତୀୟ ଦର୍ଶକ, ତୃତୀୟ ଦର୍ଶକ କ୍ରମରେ ହାତ ଆଉଁଶା ଦୃଶ୍ୟ ଯାଏ ଚରିତ୍ରମାନଙ୍କୁ ପ୍ରସଙ୍ଗ ଭିତରକୁ ଲେଖକ ଆଣିଛନ୍ତି । 'ଦୃଶ୍ୟର ସତମିଛ ଓ ନାଟକର ନାଆଁ କ'ଣ' ନାମରେ ଶେଷ ଦୁଇଟି ପର୍ଯ୍ୟାୟ ଯୋଡ଼ି ଉପନ୍ୟାସ ଶେଷ କରିଛନ୍ତି । ବିଷୟଟିକୁ ଏପରି ନାଟକୀୟ ପାରାମିଟରରେ ବିନ୍ୟାସ କରିବା ଦ୍ୱାରା ଉପନ୍ୟାସ କାହାଣୀର ଏକକ ଘଟଣାଟି ବହୁ ଘଟଣାଶ୍ରିତ ନାଟକୀୟ କାହାଣୀର ସଂହତି ଲାଭ କରିଛି । ଏକ ସାଧାରଣ ସ୍ପର୍ଶକାତର ବା ଆବେଗାଶ୍ରିତ ଭାବ ବିନିମୟ ବୃତ୍ତାନ୍ତକୁ ଅଭାବିତ ବା ଅପଦୃଶ୍ୟ ମନେ କରି ଦର୍ଶକମାନେ ଯାହା ଦେଖିଲେ ତାହା ଯେକୌଣସି ବ୍ୟକ୍ତି ଜୀବନର ଅନ୍ତର୍ଗତ ରହସ୍ୟ । ଅନ୍ତତ ସହଜ ସୁଲଭ ଓ ସ୍ୱାଭାବିକ ଯୌନାଗ୍ରହର ସୂଚକ । ସେକ୍ସ ଅବାନ୍ତର ଏକ ଜିଜ୍ଞାସା ନୁହେଁ, ମାନସିକତାର ଅନ୍ୟାନ୍ତର ଏକ ଜାଗରଣ । ଏକଥା କିଶୋରୀବାବୁ କହିବାକୁ ଚାହିଁଛନ୍ତି ।

**ସମୟ ନାହିଁ**

(୩)

ଉପନ୍ୟାସଟିଏ ଲେଖାହେଲେ ଲେଖକଙ୍କ ଜୀବନକାଳର ଚିତ୍ରସବୁ ସେଥିରେ ଲିପିବଦ୍ଧ ହୋଇଯାଏ, କେତେକ ଜ୍ଞାତ ଓ କେତେକ ଅଜ୍ଞାତ ଭାବରେ । ଜ୍ଞାତ ଘଟଣାଗୁଡ଼ିକ ପ୍ରତି ଥାଏ ତାଙ୍କର ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ; କିନ୍ତୁ ଅଜ୍ଞାତ ବିଷୟଗୁଡ଼ିକ ତାଙ୍କ ଅଚେତନ ମନର ବାହକ ହୋଇଉଠେ । ସେଗୁଡ଼ିକ ଲେଖୁ ଲେଖୁ ଲେଖି ହୋଇଯାଏ । ଅନେକ ଲେଖକ ଏପରି ହେବାକୁ ଦିଅନ୍ତି ନାହିଁ, ସେମାନେ କଳାର ଆନୁପାତିକତାକୁ ବାସ୍ତବତାର ମାନଦଣ୍ଡରେ ମାପିଥାଆନ୍ତି । ତାଙ୍କର ବାସ୍ତବତାର ଭିତ୍ତିଭୂମି ବ୍ୟକ୍ତିର ଅନୁଭୂତିର ସରହଦ ଭିତରେ ବିଦ୍ୟମାନ ଥାଏ ଓ ତାକୁ ଆଶ୍ରା କରି କାହାଣୀର ଗତି ବା ଆବେଗ ବଢୁଥାଏ । ସେପରି କାହାଣୀରେ ଚରିତ୍ର ହିଁ ଗୁରୁତ୍ୱପୂର୍ଣ୍ଣ ଓ ତା'ର ଚିତ୍ରଣ ପ୍ରାଧାନ୍ୟ ଲାଭ କରେ । ଚରିତ୍ରର ବିକାଶ ଘଟାଇ ଲେଖକ ତାକୁ ତା'ର ନ୍ୟାଯ୍ୟ ଅଧିକାର ବା ସ୍ଥାନ ଦେଇଥାନ୍ତି (ଏପରି ଚରିତ୍ର ହୁଅନ୍ତି ରାଉଣ୍ଡ କ୍ୟାରେକ୍ଟର) । ପ୍ରସଂଗତଃ କହିବା ବାହୁଲ୍ୟ ହେବ ନାହିଁ ଯେ ଏହି ଚରିତ୍ରମାନେ ସେମାନଙ୍କର ସାମାଜିକ, ସାଂସ୍କୃତିକ ବା ପରିବେଶର ପରିମଣ୍ଡଳ ଭିତରେ ସ୍ୱଭାବତଃ ଭାବେ ସଂପୃକ୍ତ ହୋଇଉଠନ୍ତି । ସେମାନଙ୍କର ଭୂମିକା, ଆଚରଣ ବା ଦୈନନ୍ଦିନ ଜୀବନଯାତ୍ରା ସେହି ପରିମଣ୍ଡଳସ୍ଥ ବ୍ୟକ୍ତିମାନଙ୍କ ସହିତ ସମ୍ବନ୍ଧିତ (ଅନେକଟା ସୀମିତ କୁହାଯାଇପାରେ) । ଏ କ୍ଷେତ୍ରରେ ଅବଧାରଣୀୟ ରୀତିଟି ହେଉଛି ଯେ ଲେଖକ ବିଷୟ ବା ଘଟଣା ବର୍ଣ୍ଣନାର ଅଗ୍ରଗତି ବେଳେ ଚରିତ୍ରର ଭାବନା, ଆବେଗ ବା ଆଚରଣକୁ ସୂକ୍ଷ୍ମ ଅନୁଧ୍ୟାନ କରି ବସନ୍ତି ଓ ଏପରି ପରିବେଶ ତିଆରି କରନ୍ତି କାହାଣୀ ଭିତରେ ଯେ ଚରିତ୍ରଟି ସେପରି କିଛି ଭାବିବାକୁ ବା ଆଚରଣ କରିବାକୁ ବାଧ ହେବ (They establish convincing motivation for the thoughts, emotions and actions of the characters as well as for the turns and twists of the plot- Ross Murfin - 'The Bedford Glossary of critical and Literary Terms) । ଏଣୁ ଚରିତ୍ରର ଦୈନନ୍ଦିନ ଜଗତର ଦୃଶ୍ୟର ପ୍ରତିଫଳନ ପାଠକ ଦେଖିବାକୁ ପାଏ । ତା'ର କଳ୍ପନା ସେହି ଜଗତର ସମ୍ଭାବିତ ବୈଶିଷ୍ଟ୍ୟ ସହିତ ତୁଲ୍ୟ ହୋଇ ଉଠେ ଓ ସେ ଉପଭୋଗ କରେ । ଏହି ପରିପ୍ରେକ୍ଷୀରେ ଆମର ଉପନ୍ୟାସମାନ ସମସାମୟିକ ସମୟ ଓ ସମାଜର ବାସ୍ତବ ଚିତ୍ର ପ୍ରଦାନ କରନ୍ତି । ସେହି ଚିତ୍ରରାଜି ମାଧ୍ୟମରେ ଲେଖକମାନେ ସେମାନଙ୍କ ପରିକଳ୍ପିତ ଜୀବନବୋଧର ସନ୍ଦେଶ ଉପସ୍ଥାପନ କରନ୍ତି । ତାହାକୁ ଅବଲୋକନ କରିଲେ ଆମ ଆଗରେ ଦୁଇଟି ପୃଥିବୀର ପରିଚୟ ହୁଏତ ମିଳିପାରେ । ପ୍ରଥମତଃ ଅଳ୍ପ କେତୋଟି ଉପନ୍ୟାସକୁ ବାଦ ଦେଲେ ବିଂଶ ଶତକର ଅଶୀ ଦଶକ ଅବଧି ଓଡ଼ିଆ ଉପନ୍ୟାସ ଥିଲା ପ୍ରାୟତଃ ସମାଜଲୀନ - ଯେଉଁଠି ଘଟଣାମାନ ବ୍ୟକ୍ତିର ଜୀବନରେ ଘଟୁଥିଲେ ମଧ୍ୟ ସାମାଜିକ ଧାରଣାର ବିମ୍ବଟିଏ ଉପୁନ୍ନ ହେଉଥିଲା ।

ଦ୍ୱିତୀୟତଃ, ଆତ୍ମଲୀନ ପୃଥିବୀର ଘଟଣା - ମନେହୁଏ ବ୍ୟକ୍ତି ସମାଜଚ୍ୟୁତ ହେବା ପରେ ତା'ର ଚିନ୍ତା ଓ ଆଚରଣ ତାକୁ ହିଁ କେନ୍ଦ୍ର କରି ଗଢ଼ି ଉଠିଲା । ଜୀବନର କିଛି ଦୁଃଖସୁଖ ପ୍ରେମହତାଶା ସଫଳତା ବା କିଛି ସଂଘର୍ଷ ଓ ସାମାଜିକ ଅଭିଳାଷଗୁଡ଼ିକର ବିଫଳତାରେ ଘୋର ମାନସିକ ପ୍ରତିକ୍ରିୟା ଅଶୀଦଶକ ପରବର୍ତ୍ତୀ ଉପନ୍ୟାସର କାହାଣୀ ଆୟୋଜନକୁ ପ୍ରଭାବିତ କରିଛି । ମୋର ମନେହୁଏ ଶ୍ରୀଯୁକ୍ତ କିଶୋରୀ ଚରଣ ଦାସ ଏହି ଦ୍ୱିତୀୟ ପର୍ଯ୍ୟାୟରେ ଆତ୍ମଲୀନ ଚରିତ୍ରମାନଙ୍କର କାହାଣୀ ପାଠକ ଆଗରେ ଉପସ୍ଥାପନ କରନ୍ତି । କିନ୍ତୁ ଅନ୍ୟତ୍ର ସୁଲଭ ଏପରି ଚିତ୍ର ଠାରୁ ଶ୍ରୀ ଦାସଙ୍କର ଭିନ୍ନତା ହେଉଛି - ବ୍ୟକ୍ତିର ବାହାରେ ସଜ୍ଜିତ ବିଶ୍ୱ ହେଉଛି ତା'ର ଚିନ୍ତନର କେନ୍ଦ୍ରବିନ୍ଦୁ । ସେହି ସଜ୍ଜିତ ସଂସାର କ୍ଷେତ୍ରକୁ ଲମ୍ଫ ଦେବା ସହଜ ନୁହେଁ (ସେପରି ଉଚିତ ବୋଲି ସେ ମନେ କରନ୍ତି ନାହିଁ), ତେଣୁ ତାକୁ ବୁଝିବାକୁ ଓ ତା'ର ମୋହ କି ମାୟାର ଗନ୍ତାଘରକୁ ଟିକେ ଉଣ୍ଡିବାକୁ ଉଦ୍ୟମ କରନ୍ତି । ବସ୍ତୁତଃ ବ୍ୟକ୍ତି ଓ ବିଶ୍ୱ ମଧ୍ୟରେ ଦ୍ୱନ୍ଦ୍ୱ ଆସେ ନାହିଁ, ସୃଷ୍ଟି ହୁଏ ଚେତନାର ସାମୟିକ ସଖ୍ୟତା ।

କିଶୋରୀବାବୁ ବାସ୍ତବବାଦୀ ଉପନ୍ୟାସକାର । ଚରିତ୍ରକୈନ୍ଦ୍ରିକ ବର୍ଣ୍ଣନାର ନିଖୁଣତା ବା ଯଥାଯଥତା ହେଉଛି ଏପରି ଜଣେ ସ୍ରଷ୍ଟାର ବୈଶିଷ୍ଟ୍ୟ । କେହି କେହି ମନେ କରନ୍ତି ଯେ ଏପରି ଶୈଳୀର କୃତିର ଚରିତ୍ରମାନେ ନିମ୍ନ ସାମାଜିକ ସ୍ତରର ବ୍ୟକ୍ତି ବିଶେଷ - ଯେଉଁମାନଙ୍କର ଆର୍ଥନୈତିକ ମାନଦଣ୍ଡ ଅସ୍ୱଚ୍ଛଳ ଅର୍ଥାତ୍ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ନାଗରିକ, ବାସ୍ତବବାଦୀ ଶୈଳୀର ଉପଯୁକ୍ତ ଚରିତ୍ର । କିନ୍ତୁ କିଶୋରୀବାବୁଙ୍କ କଥା ସାହିତ୍ୟର ଚରିତ୍ରମାନେ କେହି ଏହି ଶ୍ରେଣୀର ନୁହଁନ୍ତି । ସେମାନେ ପ୍ରାୟତଃ ମଧ୍ୟବିତ୍ତ ବା ଉଚ୍ଚ ମଧ୍ୟବିତ୍ତ ଗୋଷ୍ଠୀରେ ଗଣା । ଆର୍ଥନୀତିକ ଜୀବନ ଧାରାକୁ ମାନରୂପେ ବିଚାର କରିଲେ ସର୍ବତ୍ର ଉପର୍ଯ୍ୟୁକ୍ତ ସତ୍ୟ ବା ଲକ୍ଷଣ ପରିଦୃଷ୍ଟ ହେବା ସମ୍ଭବ ନୁହେଁ । ଅପରପକ୍ଷରେ ବାସ୍ତବବାଦୀ ପ୍ରାୟତ ବସ୍ତୁନିଷ୍ଠ, ସେ ବିଷୟନିଷ୍ଠ ନୁହଁନ୍ତି । ବ୍ୟକ୍ତିଗତ ଆବେଗ, ଧାରଣା ଏବଂ ଚରିତ୍ର ସମ୍ବନ୍ଧରେ କୌତୂହଳପୂର୍ଣ୍ଣ ଅନୁସନ୍ଧାନକୁ ପ୍ରତ୍ୟାଖ୍ୟାନ କରନ୍ତି । ଏହି ଦୃଷ୍ଟିରୁ ଲେଖକୀୟ ଦୃଷ୍ଟିଭଙ୍ଗୀକୁ ରୋମାଣ୍ଟିକ୍ କୁହାଯିବ ନାହିଁ, ଯଦିଓ ବିଷୟ, ପରିବେଶ, ଚରିତ୍ର ଆଦି ଭିତରେ ରୋମାନ୍ସର ବିଭବକୁ ସେ ଲକ୍ଷ୍ୟ କରନ୍ତି । କିନ୍ତୁ ବିଂଶ ଶତକର ଜଣେ ସ୍ରଷ୍ଟା ତାଙ୍କ ପୂର୍ବସୂରୀ ବାସ୍ତବବାଦୀଙ୍କ ଠାରୁ ପୃଥକ । ସେ ଅଧିକ ମନନଶୀଳ, ତେଣୁ ଦୃଷ୍ଟିଭଙ୍ଗୀ ତୀକ୍ଷ୍ଣ ଓ ବିଚାର କାର୍ଯ୍ୟକାରଣ ପ୍ରଭାବିତ, ସେ ଅଧିକ ପ୍ରୟୋଗବାଦୀ । ପ୍ରକୃତ ଓ ଅପ୍ରକୃତ ମଧ୍ୟରେ ତାରତମ୍ୟତା ଦର୍ଶନ କରି ଯାହା ଅଧିକତର ଗ୍ରହଣୀୟ ତାକୁ ହିଁ ବର୍ଣ୍ଣନା କରିଥାନ୍ତି । (ଏ କ୍ଷେତ୍ରରେ) ଫକିର ମୋହନ ଓ କିଶୋରୀ ଚରଣଙ୍କ ଭିତରେ ବ୍ୟବଧାନ ଏକଶହ ବର୍ଷ ହେଲାବେଳେ ବର୍ଣ୍ଣନାର ଭଙ୍ଗୀ ଓ ଦୃଷ୍ଟିଭଙ୍ଗୀ ପୃଥକ ହେବାକୁ ବାଧ୍ୟ । ସେ କାଳର ଘଟଣା ଚରିତ୍ରର ମନୋଜଗତକୁ କ୍ୱଚିତ ପ୍ରଭାବିତ କରୁଥିଲା । ଯାହା ଘଟୁଥିଲା ତାହା ମୁଖ୍ୟତ ବାହ୍ୟ ଦ୍ୱନ୍ଦ୍ୱ; ଚରିତ୍ରର ମନୋରାଜ୍ୟ

ବାହାରେ ପ୍ରତିକ୍ରିୟାର ଥିଲା ବିପୁଳ ଆୟୋଜନ । କିନ୍ତୁ ଏ ଯୁଗରେ ବାହ୍ୟ ଜଗତର ପ୍ରତିକ୍ରିୟାକୁ ଚରିତ୍ର ନିଜ ଅନ୍ତରଜଗତ ଭିତରକୁ ଟାଣି ଆଣେ ଓ ନିଜ ଭିତରେ ଏକ ଭାବରାଜ୍ୟ ତିଆରି କରେ । ତା'ର ଏ ଭାବରାଜ୍ୟଟି ସ୍ୱୟଂସଂପୂର୍ଣ୍ଣ ଭାବେ ନିଜର, ଆତ୍ମକୃତ ଏବଂ ଅନେକ ସମୟରେ ସମାଜନିରପେକ୍ଷ ଅର୍ଥାତ ତା'ର ବେଦନା ସହିତ ସାମାଜିକ ବେଦନାର ସହଯୋଗ ନଥାଏ । ଭାବନାଟି ନିଜର ହୋଇଥିବାରୁ ଘଟଣାସମ୍ପୃକ୍ତ ସୁଖଦୁଃଖ ଏକାନ୍ତ ଭାବେ ତା'ର ନିଜର । ବ୍ୟକ୍ତି ନିଜ ସ୍ତରରେ ତା'ର ମୁକାବିଲା କରେ, ସାମାଜିକ ହସ୍ତକ୍ଷେପ ଚାହେଁ ନାହିଁ । ଆଧୁନିକ ବ୍ୟକ୍ତିତାନ୍ତ୍ରିକତାର ପ୍ରଭାବ ଫଳରେ ଚରିତ୍ରର ମନୋରାଜ୍ୟ ଏପରି ହେବାକୁ ବାଧ୍ୟ କହିଲେ ଚଳେ । ଏଣୁ ଅନ୍ତର୍ଦ୍ୱନ୍ଦ୍ୱ ଅଧିକ । ତା'ର ମନର ଗଭୀର ରହସ୍ୟ ଭିତରକୁ ସ୍ରଷ୍ଟା ଭେଦ କରିବା ପ୍ରଥମ କର୍ତ୍ତବ୍ୟ ବୋଲି ମନେ ହୁଏ । ଏଣୁ ଏ କାଳର ଲେଖକ ପକ୍ଷରେ ବାସ୍ତବତା ବାହ୍ୟ ସାମାଜିକ ପରିବେଶରେ ନାହିଁ, ଅଛି ଚରିତ୍ରର ମନୋରାଜ୍ୟରେ । ତାକୁ ଉଦ୍‌ଘାଟନ କରିବା ପାଇଁ ଲେଖକ ମନସ୍ତାତ୍ତ୍ୱିକ କୌଶଳ ଗ୍ରହଣ କରନ୍ତି । ବାହ୍ୟ ଘଟଣାର ଅନୁଷଙ୍ଗ ବିନା ଅନ୍ତର୍ଘଟଣାର ପରିଚୟ ମିଳିବା ସମ୍ଭବ ନୁହେଁ ବୋଲି ସମାଜ କ୍ଷେତ୍ରରେ ପରିଦୃଶ୍ୟ ବିଭବର ଟିକ୍‌ନିଖ ବିବରଣୀ ଉପରେ ଗୁରୁତ୍ୱ ଦେବା ସହ ଚରିତ୍ରର ଚେତନାର କ୍ରିୟା ପ୍ରତିକ୍ରିୟା, ତା'ର ଭାବ, ବିଚାର ଓ ତ୍ରୁଟିବିଚ୍ୟୁତକୁ ଲକ୍ଷ୍ୟ କରନ୍ତି । ତା'ର ମନୋଜଗତର ଚିନ୍ତନ ପ୍ରକ୍ରିୟା ଭିତରେ ସଦା ଜାଗ୍ରତ ଓ ଅହର୍ନିଶ ଭାବାତୁର ଦୃଶ୍ୟକୁ ଉଦ୍‌ଘାଟନ କରିବା ଲେଖକଙ୍କର ଦାୟିତ୍ୱ ହୋଇଯାଏ । ଏପରି କୌଶଳକୁ ଚେତନା ପ୍ରବାହ ଶୈଳୀ ବହୁ ପରିମାଣରେ ପ୍ରଭାବିତ କରିଛି ଓ ଶୈଳୀଟିରେ ଚିନ୍ତାର ପୁଟୁଳି ଧୀରେ ଧୀରେ ଖୋଲି ଖୋଲି ଯାଉଥିବାର ଦେଖାଯିବ । ଅନ୍ତଃସଲୀଳ ଫଲ୍‌ଗୁ ପରି ମନର ଉପର ଆସ୍ତରଣ ତଳେ ଅବିରାମ ଗତିଶୀଳ ସଂଜ୍ଞାର ଅନୁଭବ (Sensory impression) କ୍ରମେ କ୍ରମେ ଫୁଟିଉଠେ । ବ୍ୟକ୍ତିସଂଜ୍ଞାର ସ୍ୱରୂପ ଅବିକଳ ଭାବେ ଯେପରି ତା'ର ଅବିକୃତ ରୂପ ପ୍ରଦାନ କରିବା ଲେଖକଙ୍କ ଧର୍ମ । ଏ ସ୍ଥଳରେ ତାଙ୍କର ବ୍ୟକ୍ତିଗତ ରୁଚି ବା ଆଦର୍ଶ ମୂଲ୍ୟହୀନ । ସେ ପାଠକର ରୁଚି ବା ପ୍ରତିକ୍ରିୟାକୁ ଅପେକ୍ଷା କରିପାରନ୍ତି ନାହିଁ । ଚରିତ୍ରଟିକୁ ଯେଉଁ ପରିବେଶରୁ ସେ ଆବିଷ୍କାର କରନ୍ତି ସେହି ପରିବେଶର ଉପାଦାନରେ ତାକୁ ସେ ଗଢ଼ନ୍ତି । ଚରିତ୍ରର ସାମାଜିକ ସ୍ଥିତି (ଅନ୍ୟ କଥାରେ ତା'ର ଶ୍ରେଣୀ / ବଂଶ, ପଦମର୍ଯ୍ୟାଦା) ଏ କ୍ଷେତ୍ରରେ ତାଙ୍କ ଚିତ୍ରଣର ସହାୟକ ହୁଏ । ଏହି ସ୍ଥିତିଟିକୁ ମାର୍କ୍‌ସ୍‌ବାଦୀମାନେ ଅର୍ଥନୈତିକ ଜୀବନର ମାନଦଣ୍ଡରେ ନିରୂପଣ କରିବା ବେଳେ ଅଣମାର୍କସୀୟ ଲେଖକ ଭିନ୍ନ ଭିନ୍ନ ମାର୍ଗ ଅନ୍ୱେଷଣ କରିଥାନ୍ତି । କିଶୋରୀ ଚରଣ ଉପନ୍ୟାସରେ ଚରିତ୍ରମାନଙ୍କୁ ସଂଗ୍ରହ କରିଥିବା ପରିବେଶ ବା ରାଜ୍ୟ ପାଠକଙ୍କୁ ଅଜ୍ଞାତ ନୁହେଁ । ଉଦାହରଣ ସ୍ୱରୂପ 'ସାତୋଟି ଦିନର ସତୀ'ରେ ନବବଧୂ ଅନୁପମା ପାଇଁ ବିବାହର ପର ମୁହୂର୍ତ୍ତରୁ ସାତଦିନ ପାଇଁ କାର୍ଯ୍ୟକ୍ରମ ପୂର୍ବ ନିର୍ଦ୍ଧାରିତ ଓ ତାହା ଅନ୍ୟ

ଦ୍ୱାରା ସ୍ଥିରୀକୃତ । ସେ କେବଳ ନାମକୁ ମାତ୍ର, ଅର୍ଥାତ୍ 'ହଁ' କହିବା ବ୍ୟତୀତ ଚାରା ନାହିଁ । ସେ ସାଥିତ୍ୱ ଦେବ, ସ୍ୱାମୀ ସହଗାମୀ ହେବ । ଏହି ସ୍ଥିତିରେ ତା'ର ଚିନ୍ତା, ମାନସିକ ଅବସ୍ଥାର ସ୍ୱାଭାବିକତା କିପରି ଅଙ୍କିତ ହେବ ? ଏହି ପ୍ରଶ୍ନର ଉତ୍ତର କ'ଣ ହୋଇପାରେ ? ବଧୂଟି ପ୍ରବେଶ କରୁଛି ସମ୍ପୂର୍ଣ୍ଣ ଏକ ଅଜ୍ଞାତ ଅପରିଚିତ ପରିବେଶରେ । ମନରେ ସ୍ୱପ୍ନ, ଆବେଗ, କୌତୂହଳ, ଅଧିକନ୍ତୁ ବିବାହ ପରର ରୋମାଞ୍ଚ, ମିଳନ ପାଇଁ ଆତୁରତା କେତେ ସୁଦୀର୍ଘ ପ୍ରତୀକ୍ଷାର ଅବଶେଷର ଅନ୍ତିମାର୍ଦ୍ଧ । ଏପରି ଅନେକ **ବିଷୟ** ସମ୍ବଲପୁରରୁ ଭୁବନେଶ୍ୱର ଆସୁଥିବା କାଳରେ ଗାଡ଼ିରେ ବସିଥିବା ବେଳେ ତା'ର ମନୋରାଜ୍ୟକୁ ଆନ୍ଦୋଳିତ କରୁଥିବ । ପାଖରେ ଗତକାଲିର ଅପରିଚିତ ବ୍ୟକ୍ତିଟି ଆଜି ତା'ର ପ୍ରାଣର ସାଥୀ । ସେ ତାକୁ ପୁଣି ନେଇଯିବ ଆମେରିକା, ଏକ ଭିନ୍ନ ଦେଶ ଭାଷା ସଂସ୍କୃତି ଭିତରେ ସେ ଆରମ୍ଭ କରିବ ତା'ର ନୂଆ ଜୀବନ । ଏହି ସମୟର ଚିନ୍ତାର ପୃଷ୍ଠପଟରେ ତା'ର ବାପା ମା ଆଦି ଦୀର୍ଘ ପଚିଶ ବର୍ଷର ପାରିବାରିକ ଜୀବନ, ତା'ର ଆଦର୍ଶ, ତା'ର ଅର୍ଥନୈତିକ ଓ ସାମାଜିକ ବ୍ୟବସ୍ଥା ଏସବୁ ମିଶାଇ ଅନୁପମାର ମାନସିକ ସ୍ଥିତି ଗଠିତ । ବସ୍ତୁତଃ ଲେଖକ ଜଣେ ନବବଧୂର କଥା ବର୍ଣ୍ଣନା କରିବା ବେଳେ ବ୍ୟକ୍ତିର ସ୍ଥିତି ବଳୟ ପ୍ରତି ଦୃକ୍‌ପାତ କରିବାକୁ ହୁଏ ଏବଂ ସେହି ସ୍ଥିତିର ପ୍ରଭାବ ମନୋଜଗତ ଉପରେ ଯେପରି ପ୍ରତିଫଳିତ ହୁଏ ଅର୍ଥାତ୍ ଯେପରି ହେବା କଥା (ପରିସ୍ଥିତି ଅନୁସାରେ ଯେପରି ସ୍ୱାଭାବିକ) ସେପରି କରାଯାଇଛି । ଆଗକୁ ସାତଦିନର ଚିନ୍ତା । ସେହିଁ କୁହନ୍ତି 'ସାତୋଟି ଦିନର ସତୀ', ନବ ପରିଣୀତାର ରାଜ୍ୟ, ଏ ରାଜ୍ୟ ତା'ର ଚିନ୍ତାରାଜ୍ୟର । ସେହିପରି 'ନେତା ଓ ନେତ୍ରମଣି'ର ମୋହନ ପ୍ରଧାନ ଓ ନୀତୁନ୍-ଜଣେ ନେତା ଅନ୍ୟ ଜଣେ ନେତାର ପ୍ରେରଣାର ଉତ୍ସ (ମୋହନ ସେପରି ପ୍ରକାଶ କରିଛି)- ସେମାନଙ୍କ ମନୋଜଗତରେ ଯାହା ଭାବନା ସୃଷ୍ଟି ହୋଇଛି ସେମାନେ ଥିବା ରାଜନୈତିକ ବ୍ୟବସ୍ଥା ଭିତରେ ତା'ର ଚିତ୍ର ଉପନ୍ୟାସର ବିଷୟବସ୍ତୁ ।

ତାତ୍ପର୍ଯ୍ୟ ଏହା ଯେ ବିଂଶ ଶତକର ଶେଷ ପାଦରେ କିଶୋରୀବାବୁ ଗଳ୍ପ ଜଗତରୁ ସାମୟିକ ମୁକ୍ତ ହୋଇ ଉପନ୍ୟାସରେ ପ୍ରବେଶ କରୁଛନ୍ତି । ସେ ଓଡ଼ିଆ ଉପନ୍ୟାସ ସାହିତ୍ୟର କେଉଁ ଅଭାବ ପୂରଣ କରୁଛନ୍ତି ? ଏହି ପ୍ରଶ୍ନର ଯଥାର୍ଥ ଉତ୍ତର ଉପରେ ତାଙ୍କର ଔପନ୍ୟାସିକ ବ୍ୟକ୍ତିତ୍ୱର ସାର୍ଥକତା ନିର୍ଭର କରେ ।

ଉପଯୁକ୍ତ ଅଂଶରେ ବାସ୍ତବବାଦୀ ଚିତ୍ରଣ କୌଶଳ ବିଷୟରେ ଆଲୋଚନା କରାଯାଇଛି । କିଶୋରୀବାବୁ କାହାଣୀ କୁହନ୍ତି ନାହିଁ । ସେ କୁହନ୍ତି ଚରିତ୍ରର ମନକୁ ଘେରି ରହିଥିବା ଘନ କୁହେଳି ଭେଦି କିପରି ଚରିତ୍ରକୁ ବୁଝିବାକୁ ହେବ, ସେହି ବିଷୟରେ । ପରବର୍ତ୍ତୀ ଅଂଶରେ ତାଙ୍କର ରଚନା ଶୈଳୀର ବିଶ୍ଳେଷଣ ଭିତରେ ପ୍ରସଙ୍ଗଟି ଅଧିକ ସ୍ପଷ୍ଟ ହୋଇଯିବ ବୋଲି ଆଶା କରେ ।

ସଭ୍ୟତାର ଗତି ଅନିଶ୍ଚିତତାରୁ ନିଶ୍ଚିତତା ଆଡ଼କୁ ହୋଇଥାଏ । କିନ୍ତୁ ଆଧୁନିକ ବିଜ୍ଞାନ ଓ କାରିଗରୀ କୌଶଳ, ଅଣୁ ପରମାଣୁ ଅସ୍ତ୍ରଶସ୍ତ୍ର ଆଧୁନିକ ଆର୍ଥନୀତିକ ଓ ରାଜନୈତିକ ପ୍ରତିଯୋଗିତା ମୂଳକ ବ୍ୟବସ୍ଥା, ଖୋଲା ବଜାର ନୀତି ଏବଂ ଆର୍ଥନୈତିକ ସାମ୍ରାଜ୍ୟବାଦ ଏପରି ଗ୍ରାସଶୀଳ ମନୋବୃତ୍ତିର ପରିଚାୟକ ହୋଇଛି ଯେ ଦେଶ, ଜାତି ସଂପ୍ରଦାୟ କ୍ରମେ କ୍ରମେ ବ୍ୟକ୍ତି ସ୍ତରକୁ ଖସି ଆସି ପୂର୍ଣ୍ଣତ ବ୍ୟକ୍ତିବାଦୀ ହୋଇଉଠିଛି । ଅର୍ଥାତ୍ ନାମକୁ ମାତ୍ର ଗଣତାନ୍ତ୍ରିକ ମୂଲ୍ୟବୋଧର ଦ୍ୱାହି ଦିଆଯାଉଛି କିନ୍ତୁ ବ୍ୟକ୍ତିର ଇଚ୍ଛା ହେଉଛି ଶେଷ କଥା । ରାଜନୀତି କ୍ଷେତ୍ରରେ ଆଉ ଦଳ ବା ସମୂହର ପ୍ରଭାବ ନାହିଁ । କ୍ଷମତା ଓ ଅର୍ଥ ଜୀବନର ସ୍ୱପ୍ନ ହୋଇ ପଡ଼ିବାରୁ ତା'ର ସୁଲଭତା ପାଇଁ ବ୍ୟକ୍ତି ସବୁ କିଛି ଭୁଲିଛି ଓ ଦଳର ସର୍ବେସର୍ବା ପ୍ରତି ଅଧିକ ଆନୁଗତ୍ୟ ପ୍ରକାଶ କରୁଛି । ରାଷ୍ଟ୍ରୀୟ ଓ ମାନବିକତା ମୂଲ୍ୟବୋଧ ହ୍ରାସ ଘଟି ଦଳୀୟ ବା ସାଂପ୍ରଦାୟିକ ନୀତି ଆଦର୍ଶ ବିଚାରର ମାନଦଣ୍ଡ ହୋଇଛି । ବିଶ୍ୱ ରାଜନୀତି, ଉଗ୍ର ଧର୍ମାଚାର, ପ୍ରତିଯୋଗିତାମୂଳକ ଅର୍ଥନୀତିର ପ୍ରସାର, ବଣିକ ସଂସ୍କୃତିର ବିକାଶ ଇତ୍ୟାଦି, ମଣିଷକୁ ଯେତିକି ସ୍ୱଚ୍ଛଳ କରିଛି, ସମୟ ଓ ସ୍ଥାନର ଦୂରତା ଲୋପ ପାଇଥିବାରୁ ମଣିଷ ସର୍ବଗ ହୋଇଛି । ସେ ଯଥାର୍ଥରେ ବିଜୟୀ । କିନ୍ତୁ ବ୍ୟକ୍ତି ଭାବରେ ସେ ପରାଜୟୀ । ପରାଜୟ ମାନିଛି ତା ଦ୍ୱାରା ସୃଷ୍ଟି ହୋଇଥିବା ସଭ୍ୟତାର ଆଧାରଗୁଡ଼ିକ ପାଖରେ, ସର୍ବଗ୍ରାସୀ ଲାଳସା ପାଖରେ । ଏହି ଲାଳସାରୁ ଇନ୍ଦ୍ରିୟଗତ ଭୋଗ ବାସନାର ଜନ୍ମ ଏବଂ ପରିଶେଷରେ ବିକୃତ ମଣିଷର ଆବିର୍ଭାବ ଘଟୁଛି । ବିକୃତିକୁ ଲୁଚାଇବା ପାଇଁ ଛଳନା, ପ୍ରତାରଣା, ଶଠତାଦିକୁ ବରଣ କରୁଛି । ଯାହା ଏକଦା ମୂଲ୍ୟବୋଧ ପାଖରେ ଥିଲା ନିନ୍ଦନୀୟ ତାହା ଏବେ ବନ୍ଦନୀୟ ମନେ ହେଉଛି । ଏପରି ଏକ ଜଟିଳ ଓ ଦୁର୍ବୋଧ ପରିସ୍ଥିତିର ବ୍ୟୂହ ଭିତରେ ମଣିଷର ସଂସାର ରଞ୍ଜନାକୁ ସିଧାସଳଖ ଭାବେ ବର୍ଣ୍ଣନା କରିଲେ ଲକ୍ଷ୍ୟ ସିଦ୍ଧି ହେବା ସମ୍ଭବ ନୁହେଁ । ଏଣୁ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଅବଧାରଣୀୟ । କିଶୋରୀବାବୁ ସାତଟି ଉପନ୍ୟାସରେ ସାତଟି ନୂତନ ଦିଗନ୍ତ ଉନ୍ମୋଚନ କରିଛନ୍ତି । ଏସବୁ ଦିଗନ୍ତ ସାଂପ୍ରତିକ ବ୍ୟକ୍ତି, ସାମାଜିକ ବା ରାଷ୍ଟ୍ରୀୟ ଜୀବନର ଗୋଟିଏ ଗୋଟିଏ ନିଦର୍ଶନ । 'ସକଳ ସନ୍ତାନ' ସାହିତ୍ୟ ପୁରସ୍କାର କ୍ଷେତ୍ରରେ ତ୍ରୁଟିବିଚ୍ୟୁତି ଲେଖକର ଉଚ୍ଚାଶା ଓ ତାହାକୁ ଫଳବତୀ କରିବା ପାଇଁ ପ୍ରଯତ୍ନର ବିଭୀଷିକାକୁ; 'ସ୍ୱର୍ଗସୀମା'ରେ ସଂସ୍କୃତିର ପ୍ରତିନିଧିତ୍ୱ ପ୍ରତି ବିଦ୍ରୂପାତ୍ମକ ସ୍ୱରର ପରିଚୟ ମିଳେ । 'ବିଦେଶିନୀ' ଏକାଧାରରେ ନାରୀର ସ୍ୱାତନ୍ତ୍ର୍ୟ ଓ ମୁକ୍ତ ସମାଜରେ ନାରୀର ସ୍ଥାନ ସମ୍ପର୍କରେ ଚିତ୍ର ବର୍ଣ୍ଣିତ । ଯିଏ ଦିନେ ଆମ ଅଗଣାର ଚଳଚଞ୍ଚଳ ଲଳନା-କଣ୍ଢେଇଟିଏ ଥିଲା ସିଏ ତା'ର ସ୍ୱାଧୀନ ଭାବେ ବଞ୍ଚିବାର ଅଧିକାର ସାବ୍ୟସ୍ତ କରି ଯଦି ଆମର ରକ୍ଷଣଶୀଳ ରୁଚିର ବିପରୀତ କିଛି ଆଚରଣ କରେ ତେବେ ସିଏ ବିଦେଶିନୀ ହେବ କି ? ଦେଶ ବିଦେଶର ଭାବ ମୂଳରେ ଅଛି କେଉଁ ଶାଶ୍ୱତ ଲକ୍ଷଣ ବା ଆଚରଣ ଯାହା ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନ ବା ଜଳବାୟୁରେ ସୁଲଭ ଓ ସୁନ୍ଦର ହୁଏ ? ଦେଶ ଓ ଜାତିଭିତ୍ତିରେ ମଣିଷର ଆଚରଣ ନିରୂପିତ ହୁଏ ସତ କିନ୍ତୁ ସେଥିରେ

ଆଜିର ବିବିଶ୍ୱନୀ ବିଶ୍ୱର ପରିଚୟ କାହିଁ ବା କାହିଁ ସ୍ଥାନ ଓ ସଂସ୍କୃତି ଉର୍ଦ୍ଧ୍ୱରେ ମଣିଷର ଅବସ୍ଥିତି ? ସୁନୀତିର ଅନ୍ତର୍ଦହନ କେଉଁଥିପାଇଁ ? ନାରୀ ବୋଲି ସେ କ'ଣ ଗୃହପୋଷ୍ୟା ? କାହାର ଅଙ୍କମଣ୍ଡନରେ ତା ସାର୍ଥକତା ? ପୁରୁଷର ସ୍ୱାତନ୍ତ୍ର୍ୟକୁ ନେଇ ଅହଂକାରପ୍ରଧାନ ସମାଜ ନାରୀକୁ ଯେଉଁ ଦୃଷ୍ଟିରେ ଆଜିଯାଏ ଦେଖି ଆସିଛି ତାକୁ ଅସ୍ୱୀକାର କରି ସୁନୀତି ନିଜର ସ୍ୱାଧୀନତା ଘୋଷଣା କରିଛି । ସେହି ସ୍ୱାଧୀନତା ଯଦି କାହାର ରୁଚି, ଆଦର୍ଶ ଓ ସଂସ୍କୃତିକୁ ଅତିକ୍ରମ କରେ ତେବେ ତା'ର ଦୋଷ କେଉଁଠି ? ମଣିଷକୁ ନିଜର ରୁଗ୍ଣତା ପରିହାର କରିବାକୁ ହେବ । ସଂକୀର୍ଣ୍ଣ ଓ ରକ୍ଷଣଶୀଳ ଚେତନାରୁ ମୁକ୍ତ ହେବାକୁ ହେବ । ନାରୀତ୍ୱକୁ ସମ୍ମାନ ଦେବାକୁ ହେବ, ଏପରି ପ୍ରତିବେଦନ 'ବିଦେଶିନୀ' ଉପନ୍ୟାସ ଉପସ୍ଥାପନ କରେ ।

ପ୍ରସଙ୍ଗତଃ ସ୍ମରଣୀୟ ଯେ ସୃଜନଶୀଳ ସ୍ରଷ୍ଟା ନିଜର ପରିଚିତ ବା ଜ୍ଞାତ ଜଗତର ବାହାରେ ଅଜ୍ଞାତପୂର୍ବ ଭାବସମୂହକୁ କଳ୍ପନା ନେତ୍ରରେ ଦେଖିବା ସର୍ବତ୍ର ସୁଲଭ ନୁହେଁ । ମୌଳିକ ଆଖ୍ୟାନ କିମ୍ବା ଘଟଣା ସୃଷ୍ଟିର ସାମର୍ଥ୍ୟ ମଧ ସମ୍ଭବ ନୁହେଁ । କିନ୍ତୁ ଯେଉଁ ସ୍ରଷ୍ଟା ଏଥିରେ ସମର୍ଥ ହୁଅନ୍ତି ତାଙ୍କୁ କ'ଣ ପ୍ରତିଭାବାନ କହିବା ନାହିଁ ? ଏ ପରିପ୍ରେକ୍ଷୀରେ ପ୍ରଶ୍ନ ଉଠେ ଶ୍ରୀ ଦାସ ଏପରି କେଉଁ ଅଜ୍ଞାତ ରାଜ୍ୟର ରହସ୍ୟ ଉନ୍ମୋଚନ କରିଛନ୍ତି ? ଉତ୍ତର ସ୍ୱରୂପ ତାଙ୍କ କୃତିଗୁଡ଼ିକରେ ମଣିଷର ମନକୁ ଯଦି ଆମେ ଇଙ୍ଗିତ କରିବା ତେବେ ତା'ର ଲୁକ୍କାୟିତ ବାସନାର ଉଦ୍‌ଘାଟନ କରାଯାଇଥିବାର ଦେଖିବା । ପ୍ରାୟ ପ୍ରତ୍ୟେକ ଉପନ୍ୟାସର ଆଖ୍ୟାନ ଭାଗ ଆମ ପରିଚିତ ଜଗତର ସ୍ଥୂଳ ରୂପ । ଚରିତ୍ରମାନେ ସେମାନଙ୍କର ସଂକୀର୍ଣ୍ଣ ଭାବଭୂମିର ସ୍ୱାର୍ଥ, ଦୁର୍ବଳତା, କାମବାସନା ନେଇ ସୀମିତ । ଜୀବନର ଔଜ୍ଜ୍ୱଲ୍ୟ ପ୍ରତି ଉଦାସୀନ । ସେମାନଙ୍କର ସ୍ୱପ୍ନ ନାହିଁ, ଗୌରବାନୁଭୂତି ନାହିଁ । ଅନୁପମା ଚରିତ୍ର ମଧରେ ଆମୂଳାନ୍ତ ଆସିଛି ପ୍ରତିକ୍ରିୟା । ଏହା ସମୁଚିତ । ଅନେକ ଘଟଣା ତା'ର ରୁଚିପ୍ରଦ ହୋଇନାହିଁ, ତେଣୁ ନିଜର ସୀମିତ ସ୍ତରରେ ଅର୍ଥାତ୍ ମନେମନେ ପ୍ରତିବାଦ ସେ କରିଛି । ନିଉର୍କରେ ପହଞ୍ଚିବା ପରେ ସେ ଏକାକୀ ସହର ବୁଲିଛି; କିନ୍ତୁ ଏକ ଉଦାର ମୁକ୍ତ ପରିବେଶ ଭିତରୁ ତା'ର କି ଶିକ୍ଷା ମିଳିଛି ? ପୂର୍ବୋକ୍ତ ଅନୁଭୂତିରେ କୌଣସି ପରିବର୍ତ୍ତନର ଇଙ୍ଗିତ ନାହିଁ । ଏହାକୁ କ'ଣ ଆମେ ବ୍ୟକ୍ତିସ୍ୱାତନ୍ତ୍ର୍ୟ ବା ବ୍ୟକ୍ତିର ସ୍ୱାଧୀନ ଇଚ୍ଛାମୂଳକ ଆଚରଣ କହି ନୀରବ ରହି ପାରିବା ? ସ୍ୱାମୀ ବିଶନକୁ ଉଚିତ ଶିକ୍ଷା ଦେବାକୁ ଦୀର୍ଘ ସାତଦିନ ପରେ ସେ ସମର୍ଥ ହୋଇଛି, 'ତୁମେ ଆଉ ଗାନ୍ଧିଙ୍କ ନାମ ଧରିବ ନାହିଁ !' ଏକ ଚମତ୍କାର କଥା । ଗାନ୍ଧିଙ୍କୁ ପ୍ରତି ମୁହୂର୍ତ୍ତରେ ହତ୍ୟା କରୁଥିବା ବ୍ୟକ୍ତି କି ନୈତିକତାରେ ତାଙ୍କର ଜୟଗାନ କରିବ ? ଅମୃତ ଭାଣ୍ଡରେ ବିଷ ପକାଇବା ତୁଲ୍ୟ । ଭଲ କଥା, ବିଶନ ସ୍ୱୀକାର କରିଲା 'ଅନୁ', ୟୁ ଆର ଗ୍ରେଟ'- ଏଥିରେ କି ବୈଚିତ୍ର୍ୟ ଅଛି ? ତେବେ ଲେଖକ ଛିଗୁଲାଉଛନ୍ତି ଆଲୋ ସେଇ ଘଇତା ତ କଲୁ -- । ଏହା ଅନୁର ଅନ୍ତର୍ମନର ଉକ୍ତି । ସ୍ୱାଭାବିକ । ସାତଦିନର ପ୍ରତୀକ୍ଷା ପରେ ନବ ଦମ୍ପତିଙ୍କ ମିଳନ ହେଲା ।

ଦାମ୍ପତ୍ୟ ଜୀବନର ଏଇ ସ୍ୱାଭାବିକ ଘଟଣା ଅର୍ଥାତ୍ ପ୍ରତୀକ୍ଷିତ ଯୌନ ବୁଭୁକ୍ଷାର ସନ୍ତୋଷ ବିଧାନରେ ଉପନ୍ୟାସ ଶେଷ ହେଲା । ଅନୁ ଚରିତ୍ରର ଔଜ୍ଜ୍ୱଲ୍ୟ କ୍ଷୁଦ୍ର ଗଳ୍ପର ଏକ ବିନ୍ଦୁର ପରିସମାପ୍ତିରେ ହଜିଗଲା ।

'ନେତା ଓ ନେତ୍ରମଣି'ରେ ରାଜନୈତିକ କୁତ୍ସିତ ଦ୍ୱନ୍ଦ୍ୱ ଭିତରେ ଅଗ୍ରଗାମୀ ଚେତନାର ସମ୍ଭାବନା ଲୁପ୍ତ ହୋଇଯିବାର ମନେହୁଏ । ବିରାଜ ମହାନ୍ତି ପଳାୟନ ପନ୍ଥୀ, ତାଙ୍କ ଚରିତ୍ରର ମହାନୁଭବତାର ବିସ୍ତାର ବା ପ୍ରତିଷ୍ଠା ନାହିଁ, ମୋହନ ପ୍ରଧାନକୁ ଯେଉଁ ବିଭୂତିରେ ଗଢ଼ିବାକୁ ଚାହିଁଥିଲେ ତାହା କ୍ଷୁଣ୍ଣ ହୋଇଗଲା, ପ୍ରତିଭା ସତ୍ତ୍ୱେ ସେ ସାଂପ୍ରତିକ ଟାଉଟରି କନ୍ଦଳର ଉର୍ଦ୍ଧ୍ୱକୁ ଉଠିଲା ନାହିଁ । ହିମାନୀ ପରି ତରୁଣୀର ରୂପ କଟାକ୍ଷର ବଶବର୍ତ୍ତୀ ହୋଇ ଶ୍ୱଶୁର ବିରାଜ ମହାନ୍ତିଙ୍କ ବିରୋଧରେ ଗଲା । ରାଜନୀତି, ଆମେ ଜାଣୁ ଏକ କ୍ରୂର ନୀତି । ଏପରି ଏକ ବିଶୃଙ୍ଖଳିତ ବ୍ୟବସ୍ଥା ଭିତରେ ଚିରୋଜ୍ଜ୍ୱଳ ବ୍ୟକ୍ତିତ୍ୱର ସନ୍ଧାନ ବିରଳ । ଏହା ତ ଆମର ସାଂପ୍ରତିକତା । ସାହିତ୍ୟ କ'ଣ ଏହାର ସଙ୍କୁଚିତ ବଳୟ ବାହାରେ ଆମର କାମ୍ୟ ଜୀବନର ସଙ୍କେତ ଦେଇପାରିବ ନାହିଁ ? ସେ ବ୍ୟବସ୍ଥାଟି ଜୀର୍ଣ୍ଣ, ନିଷ୍ଠୁର ଭାବେ ଅଶ୍ଳୀଳ; ତେବେ କି ବର୍ଜ୍ୟ ? ଯେତେ ଇଚ୍ଛିଲେ ବି ସେଥିରୁ ମୁକ୍ତି ଅଚିରେ ନୁହେଁ, କିନ୍ତୁ ମୁକ୍ତିର ପ୍ରତ୍ୟାଶା କାହିଁକି ବ୍ୟାହତ ହେବ ? ଷଡ଼ଯନ୍ତ୍ର ଯଜ୍ଞରେ ମୋହନ ପ୍ରଧାନ ଶେଷ ଆହୁତି ଦେଇ ବିରାଜଙ୍କ ମୃତ୍ୟୁର କାରଣ ହେଲା, ତାପରେ ? ପତ୍ନୀ ନେତ୍ରମଣି (ନେତାଙ୍କର ମଣି) ଓ ପୁଅର ହସକୌତୁକ ଭିତରେ ମଜିଗଲା । ହେଉ । ଇଙ୍ଗିତ ହେଉଛି କ୍ଷମତା ପାଇଁ ଯେତେ ସବୁ ଚକ୍ରାନ୍ତ ସବୁ ସେଇ ଟିକେ ସୁଖ ପାଇଁ । ଏପରି ସୁଖର ବିଷୟ ଦେଖିବାକୁ ମିଳିବ 'ସକଳ ସନ୍ତାନ'ରେ, ଶୈଳ ପୁରସ୍କାର ପାଇବା ପରେ ତାର ଝିଅ ବାପା ବୋଉଙ୍କ ପାଇଁ ଯୋଡ଼ି ବିଛଣା ପକାଇ ଦେବା ଭିତରେ । ଏହାକୁ ଉପନ୍ୟାସର ତ୍ରୁଟି ବୋଲି କହିବା ଠିକ୍ ନୁହେଁ, କିନ୍ତୁ ଅନେକତ୍ର ଘଟଣାର ପରିସମାପ୍ତି ଯୌନ ବାସନାରେ ଘଟୁଥିବାରୁ ମନେହୁଏ କିଶୋରୀବାବୁ ତାକୁ ଛାଡ଼ି ମାନବୀୟ ସମ୍ପର୍କର ଚିତ୍ର କଳ୍ପନା କରିପାରନ୍ତି ନାହିଁ । ଏହି ଉପନ୍ୟାସଟି ଆମ ସମୟର ଲେଖକମାନଙ୍କର କୁକର୍ମର ଇଙ୍ଗିତ ଦିଏ, ତା' ସହିତ ମଧ୍ୟ ଇର୍ଷାର ପରିପ୍ରକାଶ କରେ । ପୁରସ୍କାର ଦୌଡ଼ରେ କେହି ଜଣେ ହାରିଲେ ବିଜେତାକୁ ନିନ୍ଦା କରେ, କେହି ଭିତରେ ପୁରସ୍କାର ପ୍ରାର୍ଥୀକୁ ସବୁମନ୍ତେ ସାହାଯ୍ୟ ସମର୍ଥନ କରି ପ୍ରକାଶ୍ୟରେ ପୁରସ୍କାର ପଶ୍ଚାତରେ ଥିବା କୌଶଳକୁ ଉଖାରି ଦୋଷ ଦର୍ଶନ କରେ । ମନେହୁଏ ଏହିପରି ଏକ ଉପଲବ୍ଧ ଚିତ୍ର କିଶୋରୀବାବୁଙ୍କୁ ଉପନ୍ୟାସ ରଚନାରେ ପ୍ରଚୋଦିତ କରିଛି ।

'ତୁମ ଆମ ଶତାବ୍ଦୀ', ବଡ଼ ରୁକ୍ଷ ନାମକରଣଟି । ଗଦ୍ୟର ନିରସ ସ୍ପର୍ଶ । ମନେ ହେଉଥିଲା ଉପରର କଠିନତା ତଳେ ଥିବ ପଦ୍ୟର ମଧୁସ୍ପର୍ଶ । ସେ ସମ୍ଭାବନା ମଧ୍ୟ ଥିଲା - ଦୁଃଖ ଓ ସୁଖ ନାମକ ଦୁଇ ପାର୍ଶ୍ୱ ଅଧ୍ୟାୟ ଭିତରେ, ଯେଉଁଥିରେ ଛବିର ଆରମ୍ଭ ଓ ଶେଷ

କଥା କୁହାଯାଇଛି । ଅବଶିଷ୍ଟ ମଝି ଅଂଶ ଦୀର୍ଘ ବିବରଣୀମୂଳକ ଉପାଖ୍ୟାନ-ଯାର ନାମ ରଖାଯାଇଛି 'ଇତିହାସ', ସେହି ଅଂଶଟି ଉପନ୍ୟାସର ସମୃଦ୍ଧିକୁ ବ୍ୟାହତ କରି ଦେଲା ପରି ମନେହୁଏ । ଏହି ଅଂଶରେ ଜଗନ୍ନାଥ ଶହୀଦ ହେବା ପର୍ଯ୍ୟନ୍ତ ଉତ୍କଣ୍ଠା ବଳବତ୍ତର ରହେ ମନେ ହୁଏ ଜୀବନ ପାଇଁ ଅଛି ସ୍ୱପ୍ନଟିଏ । ମାତ୍ର ଜଗନ୍ନାଥଙ୍କ ପୁଅ ରାମନାଥ ବଡ଼ ହୋଇ ପାଠ ପଢ଼ି ଚାକିରି କରିବା, ତିରୁ ଜନ୍ମ ହେବା ଆଦି ଘଟଣାର ସମାନ୍ତରାଳ ଭାବେ ଭାରତର ଇତିହାସର ସୂଚନା, ଉପନ୍ୟାସର ସୃଜନଲୀଳାର ବାଧକ ହୁଏ । ରାମନାଥର ମନୋଭୂମି ରାଜନୀତିର ଅପକର୍ଷ ଚିତ୍ର ଦ୍ୱାରା ଊଣାଧିକେ ପ୍ରଭାବିତ । ଜଣେ ଗାନ୍ଧିଭକ୍ତ ସହିଦ ପିତାର ପୁତ୍ର ରୂପେ ତାର ଜୀବନର ସ୍ୱପ୍ନକୁ ଔପନ୍ୟାସିକ ଅଡ଼ିଟର ଚାକିରିର ଅଙ୍କକଷା ଭିତରେ ସୀମିତ ରଖିଛନ୍ତି । ସେ ଦିଲ୍ଲୀରୁ କଲିକତା ଆସି ପୁରୁଣା ଟ୍ରେନିଂ ବାନ୍ଧବୀ ଅବିବାହିତ ବିଜୁ ମୁଖାର୍ଜୀ ସହ ଅଧିକ ଘନିଷ୍ଠ ହୋଇଗଲା । ଏଥିରୁ ଯାହା ହୁଏ ପୁରୁଷ ଓ ନାରୀ ଭିତରେ, ତାହାହିଁ ଘଟିଗଲା । କହୁଛନ୍ତି ଲେଖକ, ''ସତେକି ଏଭଳି ତୃପ୍ତି କେବେହେଲେ ଆସି ନଥିଲା ତାଙ୍କ ଜୀବନରେ, ଯାହା କେବଳ ଦେହର ନୁହେଁ, ସମ୍ପୂର୍ଣ୍ଣ ମନର ଏବଂ ହୁଏତ ଆତ୍ମାର'' (ପୃ ୧୮୯) । ଶରୀରର କ୍ଷୁଧା - ଜଣେ ସଂସାରୀ ମଣିଷ ପକ୍ଷରେ ଅସ୍ୱାଭାବିକ ନୁହେଁ, ମାତ୍ର ତାହା ଆତ୍ମାର ତୃପ୍ତି କରିପାରେ ? ପରକୀୟା ପ୍ରେମରେ ତୃପ୍ତି ଅଧିକ ବୋଲି ଶାସ୍ତ୍ର କୁହେ, ତାହା ବୈଷ୍ଣବ ଦର୍ଶନ ବା ମନସ୍ତତ୍ୱବିଦମାନଙ୍କର ସିଦ୍ଧାନ୍ତ ହେଉ ନା କାହିଁକି ରାମନାଥ ଚରିତ୍ରର ଲୀଳା ଏତିକିରେ ସାଙ୍ଗ ହୋଇଗଲା । 'ଇତିହାସ' ଅଧ୍ୟାୟଟି ଜୀବନର କି ଗଭୀର ରହସ୍ୟ ଉଦ୍‌ଘାଟନ କରେ ? ତତ୍‌କାଳୀନ ଇତିହାସର କ୍ରୂରତା ଜୀବନ ବୋଧର ପରିପନ୍ଥୀ ହୋଇଛି କି ? ନା ଯାହା ଘଟିଯାଇଛି ତା'ର ଏକ ନମୁନା ଲେଖକ ଦେବାକୁ ଚାହିଁଛନ୍ତି ? ଉପନ୍ୟାସକୁ ଆଧ୍ୟାତ୍ମିକ ବୃତ୍ତିର (Philosophical Occuption) ଉନ୍ମୀଳକ ବୋଲି ଯଦି ଗ୍ରହଣ କରାଯାଏ, ତାହା ଆମର ଏଇ ରୁଗ୍‌ଣ ଅସ୍ୱାସ୍ଥ୍ୟକର ପରିବେଶରୁ ଉର୍ଦ୍ଧ୍ୱକୁ ନେଇଯିବାର ପ୍ରତିଶ୍ରୁତି ଦେଇଛି କି ? ଜଗନ୍ନାଥ ମାଷ୍ଟ୍ରଙ୍କ ଭିତରେ ଥିବା ତ୍ୟାଗର ମହିମା ରାମନାଥ ଭିତରେ କିଛି ପ୍ରତିଜ୍ଞା ଆଣୁ ନାହିଁ, କେବଳ ନିରସ ଓ ଅର୍ଥହୀନ ଆବେଗରେ ଯାହା ତାର ବୌଦ୍ଧିକତାକୁ ଦୁର୍ବଳ କରିଦେଇଛି । ତିରୁ ଭିତରେ ସେ ହୁଏତ ଏକ ବିଂଶ ଶତାବ୍ଦୀର ସ୍ୱପ୍ନ ଓ ତତ୍‌ସମ୍ଭୂତ ମନୋବଳ, ପ୍ରତିଜ୍ଞା, ଆତ୍ମନିର୍ଭରଶୀଳତା ପରି ଯୁବଜନସୁଲଭ ଉନ୍ମାଦନା ଭରି ଦେଇଛନ୍ତି । କିନ୍ତୁ ଭବିଷ୍ୟତ କେଉଁ ପ୍ରତିଶ୍ରୁତିର ଦିଗନ୍ତ ଉନ୍ମୋଚନ କରେ ? ଭାରତୀୟ ଯୁବକର ପ୍ରତିନିଧି ହେବାର ଯୋଗ୍ୟତା ତିରୁପତି ଭିତରେ ମିଳେ ନାହିଁ । ସର୍ବୋପରି ବିଗତ ଶତାବ୍ଦୀ ଯଦି ହୁଏ ସ୍ୱପ୍ନଭଙ୍ଗୁର ଏବଂ ଛଳନା ପ୍ରବଞ୍ଚନା ଭିତରେ ତା'ର ଔଜ୍ୱଲ୍ୟ ମଳିନ ପଡ଼ିଥାଏ ବୋଲି ଯୁକ୍ତି କରାଯାଏ ତେବେ ଲେଖକ ପାଠକକୁ ସେଥିରୁ କେଉଁ ସ୍ୱଚ୍ଛଳ ଓ ଆଲୋକିତ ଜଗତକୁ ନେଇ ଯିବାର ପଥ ଉନ୍ମୁକ୍ତ କରନ୍ତି ?

**ସମୟ ନାହିଁ**

କିଶୋରୀବାବୁଙ୍କ ପୁରୁଷ ଚରିତ୍ରମାନେ ସ୍ଥାଣୁ, ମଳିନ ପରି ମନେ ହୁଅନ୍ତି, ତାଙ୍କର ନାରୀ ଚରିତ୍ର ପୁରୁଷଙ୍କ ଅପେକ୍ଷା ଅଧିକ ଜୀବନ୍ତ, ସେମାନେ ପ୍ରତିବାଦୀ, ପ୍ରତିସ୍ପର୍ଦ୍ଧୀ । ଅନୁପମା, ସୁନୀତି ଏବଂ କିଛି ପରିମାଣରେ ପୁନମ୍ ଭିତରେ ପାଠକ ଏହା ଲକ୍ଷ୍ୟ କରିପାରନ୍ତି । ଏପରିକି 'ତୁମ ଆମ ଶତାବ୍ଦୀର' ବିଜୁ ମୁଖାର୍ଜୀ ପ୍ରସଙ୍ଗକ୍ରମେ ଗୌଣ ଓ ଅନାବଶ୍ୟକ ଚରିତ୍ର ପରି ମନେ ହେଉଥିଲେ ମଧ୍ୟ ତା'ର ଅଛି ମୌଳିକତା, ନିଜସ୍ୱ ଆଲୋକ । ସେ ସାଂପ୍ରତିକ ବାତାବରଣକୁ ବ୍ୟଙ୍ଗ ବିଦ୍ରୂପ କରେ । ମାତ୍ର ରାମନାଥ ପ୍ରତିଭା ସମ୍ପନ୍ନ ସତ୍ତ୍ୱେ ସୁଅର ଅନୁକୂଳ ଗତିରେ ଭାସମାନ ଏକ ଜଡ଼ ପିଣ୍ଡ । ତା'ର ଭାବାନ୍ତର ଅଛି ମାତ୍ର ତାହା କ୍ଷଣସ୍ଥାୟୀ, ପରବର୍ତ୍ତୀ ମୁହୂର୍ତ୍ତ ହୋଇପଡ଼ିଛି ଗତିହୀନ । ମାନସିକ ଦ୍ୱନ୍ଦ୍ୱ ଅଛି, ସନ୍ତାପ ଅଛି ମାତ୍ର ସଂଘର୍ଷରେ ବିଶ୍ୱାସ ଥିଲାପରି ମନେହୁଏ ନାହିଁ । ଅର୍ଥାତ୍ ତାଙ୍କ ପାଇଁ ଜୀବନ ଏକ ସ୍ୱଚ୍ଛନ୍ଦ ବିଳାସର ଭୂମିମାତ୍ର । ଅବଶ୍ୟ ରାମନାଥ ଚାକିରି ଛାଡ଼ି ଘରଦ୍ୱାର ଛାଡ଼ି ରହିଛି କେଉଁ 'ଆନନ୍ଦ ଆଶ୍ରମ'ରେ । ତାର ଲକ୍ଷ୍ୟ ସେ ସେବା କରିବ, ସେଥିରେ ରହିବ ନାହିଁ ଜାତିଧର୍ମବର୍ଣ୍ଣର ବିଦ୍ୱେଷ । ଏହାକୁ ତ୍ୟାଗ କହିବା କି ? ନା ତୁଚ୍ଛ ଭାବାବେଗ ? ମହାତ୍ମାଙ୍କ ଆଦର୍ଶ ତାଙ୍କ ଭିତରେ କ୍ଷୀଣ ଦୀପ ଶିଖା ପରି ଜଳୁଥିଲା, ତାରି ଉଷ୍ମତାବଶତଃ ଏପରି ଭାବାକୂଳତା । ତାହା ଅନ୍ୟକୁ ଅନୁପ୍ରାଣିତ କରିପାରେ ନାହିଁ । ଠିକ୍ ଆଜିର ଗାନ୍ଧିବାଦୀମାନଙ୍କ ପରି ତାହା ଏକ ବାହ୍ୟ ଆବରଣ, ଏକ ବିଜ୍ଞାପନ ମାତ୍ର । 'ବିଦେଶିନୀ'ର ରଙ୍ଗନାଥ ଆଇଏଏସ୍ ଅଫିସର, ବ୍ୟବସ୍ଥାର ତ୍ରୁଟି ଦର୍ଶାଇ ଚାକିରି ଛାଡ଼ି ଚାଲି ଆସିଲେ ଗୋଟାଏ ଆଳରେ ଯେ ସମାଜ ସଂଗଠନ କରିବେ । ଏହା ତାଙ୍କର ଅନ୍ତରର ଉଦ୍ଦେଶ୍ୟ ନା ସୁନୀତିଙ୍କ ସମର୍ପଣତୁଲ୍ୟ ସାନିଧ୍ୟ ଲାଭ ? ପ୍ରଶାସକର ବ୍ୟକ୍ତିତ୍ୱ କାମାଚାର ପାଖରେ କେତେ ମଳିନ ! ବାମା ତାଙ୍କ ପାଇଁ ଏକ ଆକର୍ଷଣ; ପରିଣତ ବୟସରେ ଏ ଦୁର୍ବଳତା ତାଙ୍କୁ ବ୍ୟବସ୍ଥାର ଘୃଣ୍ୟ ଆଚରଣରୁ ସିନା ମୁକ୍ତି ଦେଲା; କିନ୍ତୁ ସେ କ'ଣ ଆଉ ଏକ ବରଣୀୟ ଚିନ୍ତାଦର୍ଶରେ ନିଜକୁ ଉତ୍ସର୍ଗ କରିପାରିଲେ ?

(୪)

ଓଡ଼ିଆ ଉପନ୍ୟାସର ଜନ୍ମର ଠିକ୍ ଶହେ ବର୍ଷର ପୂର୍ତ୍ତି ଅବକାଶରେ କିଶୋରୀ ଚରଣ ଦାସଙ୍କ ଆବିର୍ଭାବ । ଏହି ଶହେ ବର୍ଷ ଭିତରେ ଓଡ଼ିଆ ଉପନ୍ୟାସର ବିକାଶ ଚୂଡ଼ାସ୍ପର୍ଶୀ ନହେଲେ ହେଁ ଉତୁଙ୍ଗ ହୋଇଛି । ବିଂଶ ଶତକର ନାନା ପରୀକ୍ଷାର ଅନ୍ତବର୍ତ୍ତୀ ହୋଇ ବିଶ୍ୱକୁ ଗବାକ୍ଷ ଖୋଲିଛି ଓ ଓଡ଼ିଶା ମାଟିର ମହୋଜ୍ଜ୍ୱଳ ବିଭା ପ୍ରତିଷ୍ଠାରେ ସମର୍ଥ ହୋଇଛି । ଏହି କାଳରେ ଫକିର ମୋହନଙ୍କର ଉତ୍ତର ସାଧକ ରୂପେ କାହ୍ନୁଚରଣ, ଗୋପୀନାଥ, ସୁରେନ୍ଦ୍ର, ଶାନ୍ତନୁ ପ୍ରମୁଖ ସ୍ରଷ୍ଟାମାନେ ଓଡ଼ିଆ ଉପନ୍ୟାସକୁ ଯୁଗପତ୍ ଲୋକପ୍ରିୟ ଓ କଳାତ୍ମକ କରିଛନ୍ତି । ସ୍ୱର୍ଗତ ଗୋପୀନାଥଙ୍କ କାଳୋତୀର୍ଣ୍ଣ ପ୍ରଗଳ୍‌ଭ ସୃଷ୍ଟି ସମସ୍ତଙ୍କୁ ଅତିକ୍ରମ କରି ହୋଇଛି ବୌଦ୍ଧିକ, ସୁଖପାଠ୍ୟ ଓ ପରୀକ୍ଷା ଉତ୍ତୀର୍ଣ୍ଣ । ତାହା ଆଧୁନିକ ଚେତନାର ପ୍ରଶସ୍ତ ବାହାକ ହେବା ସହ

କଳାର ଯାଦୁକରୀ ସ୍ପର୍ଶ ମଣ୍ଡଣିରେ ଜନଜୀବନ ଓ ବ୍ୟକ୍ତିଜୀବନର ଗୋଟିଏ ଗୋଟିଏ ଐଶ୍ୱର୍ଯ୍ୟକୁ ମହିମାମନ୍ତ କରିଛି । ଏ କାଳରେ ଉପନ୍ୟାସ ଏକ ଗଣତାନ୍ତ୍ରିକ କଳାରୂପେ ବିବେଚିତ ହେବା ପରିପ୍ରେକ୍ଷୀରେ ଗୋପୀନାଥଙ୍କ ଲେଖନୀରେ ବାସ୍ତବତା ଗଣାଭିମୁଖୀ ଜୀବନସ୍ରୋତର ସଙ୍କେତ ରୂପାୟିତ କରିଛି, ଯାଇ ଛବି 'ମାଟି ମଟାଳ'ରେ ହୋଇଛି ଉଚାଟିତ । ଅଳ୍ପ କେତୋଟି କୃତି ମଧ୍ୟରେ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥ ଉପନ୍ୟାସକୁ ଦେଇଛନ୍ତି ଏକ ଭିନ୍ନରୂପ-ତାହା ଦର୍ଶନ କୈନ୍ଦ୍ରିକ ଓ ଯନ୍ତ୍ରଣାବିଧୂର ଜୀବନରେ ଅନୁଭୂତ ସତ୍ୟ ଆଶ୍ରିତ ଉପଲବ୍‌ଧି । ଶାନ୍ତନୁ କୁମାରଙ୍କ କୃତିରେ ରହିଛି ରହସ୍ୟ ଓ ମେଟାଫିଜିକାଲ ଅନୁଭବରୁ ସମ୍ଭୂତ ଜିଜ୍ଞାସାର ଅନୁସନ୍ଧାନ - ତାହା ମୂଳତଃ ସଂଘର୍ଷଶୀଳ ମନର ଆତ୍ମପ୍ରକାଶ କରିବାରେ ମୁଖର । ତେବେ ବିଗତ ଏକ ଶହ ବର୍ଷର ଉପନ୍ୟାସରେ ପ୍ରତିନିଧି ସ୍ଥାନୀୟ କୃତି ଗୁଣାତ୍ମକ ଭାବେ ସୀମିତ ସଂଖ୍ୟକ । ଅର୍ଥାତ୍ ଯେତେ ପରିମାଣରେ ଉପନ୍ୟାସ ଲେଖାଯାଇଛି ତା'ର ଶତକଡ଼ା ପ୍ରାୟ ପାଞ୍ଚ ଦଶଭାଗ କୃତି କାଳୋତୀର୍ଣ୍ଣ ହେଉଛନ୍ତି । କାଳୋତୀର୍ଣ୍ଣତାର ମାପକାଠି ଓଡ଼ିଶାରେ ଖର୍ବକାୟ ଓ ରୁଗ୍‌ଣତାରେ ଅରୁନ୍ତୁଦ । ଉଦାହରଣ ସ୍ୱରୂପ, ମାଟିର ମଣିଷ ସର୍ବାଧିକ ଲୋକପ୍ରିୟ ଓ ଦୀର୍ଘ ୭୦ ବର୍ଷରୁ ଉର୍ଦ୍ଧ୍ୱକାଳ ଧରି ପଠିତ ପାଠିତ ହୋଇଆସୁଛି । କିନ୍ତୁ ଉପନ୍ୟାସର କଳାତ୍ମକ ବିଭବ ଓ ଗାଠନିକ ପ୍ରଲକ୍ଷଣ ଦୃଷ୍ଟିରୁ ତାହା ବିଫଳ । ସେହିପରି ମାଟି ମଟାଳ, ମହାକାବ୍ୟିକ ଉତ୍କର୍ଷ, ମନୋଜ୍ଞ ପରିକଳ୍ପନା ଓ ବର୍ଣ୍ଣନାରେ ଅସମ୍ଭବ ସୂକ୍ଷ୍ମତା ଏବଂ ଗୋଷ୍ଠୀଭୂତ ଜବୀନ ସନ୍ଧାନରେ ବ୍ୟକ୍ତିର ଉତ୍ସର୍ଗୀକୃତ ସାଧନା ଓଡ଼ିଶା ମାଟିକୁ ଅନ୍ୟଏକ କୋଣାର୍କର ଉତ୍ତୁଙ୍ଗ ଶିଳ୍ପ ସୌକର୍ଯ୍ୟ ଅର୍ପଣ କରିଥିଲେ ସୁଦ୍ଧା ଅଳ୍ପ ପଠିତ ଓ ବିବେଚିତ ହୋଇ ରହିଛି । ଅବଶ୍ୟ କଳାର ଗୌରବ ଏପରି ଭାଗ୍ୟ ଲଭିବାକୁ ହୋଇଥାଏ । ଗୋପୀନାଥଙ୍କ ଉପନ୍ୟାସ ଜୀବନ ଶିଳ୍ପର ଏକ ପ୍ରତିଲିପି । ସେଥିରେ କଳାର କୌତୂହଳ, ଜିଜ୍ଞାସା ଓ ଅନୁସନ୍ଧାନ ଯେଉଁ ମାର୍ଗରେ ଗତି କରି ମଣିଷକୁ ଆବିଷ୍କାର କରିଛି ତାହା କେଉଁ ଦର୍ଶନ, ଇତିହାସ ବା ଅର୍ଥନୀତିର ଛାଞ୍ଚରେ ଉତ୍ତୀର୍ଣ୍ଣ ନୁହେଁ । ତାହା ନିଛକ ମଣିଷର ଆତ୍ମକାହାଣୀ । ଏକକ ଭାବେ ନିଜସ୍ୱ ରୀତିରେ ଗଢା ସ୍ୱପ୍ନ ଓ ଅଭିଳାଷର, ଚିନ୍ତା ଓ ଆଚରଣର; ଅନ୍ତରାନୁଭୂତିର ପ୍ରେରଣାରେ ଉଜ୍ଜ୍ୱଳ । ଶୁକ୍ରୁଜାନି ପରଜା ଓ ଘିନୁଆ ପରି ସାହୁକାରକୁ ହାଣି ଦେବା ବିଚିତ୍ର ନୁହେଁ, କିମ୍ବା ଥାନାରେ ବିନା ଦ୍ୱିଧାରେ ଦୋଷ ସ୍ୱୀକାର କରିବା ଅସ୍ୱାଭାବିକ ନୁହେଁ । ବଳୀଦତ୍ତ ନିଜର ଖର୍ବତାକୁ ଅନ୍ତରରେ ଅନୁଭବକରି ଯେଉଁ ହୀନ ମନ୍ୟତାର ଶିକାର ହୋଇଛି ତାହାକୁ ସେ କିପରି ଅତିକ୍ରମ କରିପାରନ୍ତା ? ଶିଳ୍ପାୟନ ସହ ବ୍ୟକ୍ତିତ୍ୱର ଗରିମା ଜଡ଼ିତ ହୋଇଯିବା ପରେ ଯେକୌଣସି ଦେଶ ବା କାଳରେ ବ୍ୟକ୍ତିଟିର ସ୍ୱପ୍ନ ଉପର ଶିଢ଼ିକୁ ସ୍ୱତଃ ଆକର୍ଷିତ ହେବହିଁ । ସେ ସ୍ଥଳରେ ସାମାଜିକତାର ସଂଜ୍ଞା ଏକ ଭିନ୍ନ ରୂପ ନେବାକୁ ବାଧ୍ୟ । ସେଇ ଝାଙ୍କରେ ସରୋଜିନୀର ରଣଜିତବାବୁଙ୍କ ଗାଡ଼ିରେ ବସି ବୁଲି ଯିବାକୁ ସେ ଦାନ୍ତ ନିକିଟି କାହିଁକି ହଜମ

କରିବ ନାହିଁ ? 'ପତି ପରମ ଗୁରୁ ଜିକି ଜିକି ବୁରୁଜୁ' ବୋଲି ବିଶ୍ୱାସ କରି ଗାଁରୁ ସଦ୍ୟ ଆସିଥିବା ସରୋଜିନୀ ପୁରୁଣା ଚିନ୍ତାରେ ବିଳାସକୁ ହାତଛଡ଼ା କରିବାରେ କି ଯୁକ୍ତି ଅଛି ? ପରିବେଶର ପରିବର୍ତ୍ତନରେ ଆଭିମୁଖ୍ୟର ପରିବର୍ତ୍ତନ ଓ ତଦନୁରୂପେ ଜୀବନ-ବଞ୍ଚିବାର କୌଶଳର ନୂତନ ମାର୍ଗ ଖୋଲିଯିବାହିଁ ସତ୍ୟ । ମାଛିଗୋଡରେ ଗୁଡ ଲାଗିଲେ ଛାଡ଼ିବା ଲୋକ ନୁହେଁ, ଯେଉଁ ଯଖତୁଲ୍ୟ ହରିସାହୁ ସେ ପୁଣି ରବିର କାର୍ଯ୍ୟକ୍ରମରେ ତା'ର ସ୍ୱପାର୍ଜିତ ଭୂମିକୁ ଗୋଷ୍ଠୀଯଜ୍ଞରେ ଆହୁତି ଦେଇ ପାରେ, ଏହା କିମାଶ୍ଚର୍ଯ୍ୟମ ! ଏସବୁ ଉଲ୍ଲେଖର କାରଣ ହେଉଛି ପରିବର୍ତ୍ତନର ସୂତ୍ରପାତ ଭିତରେ ଅଗ୍ରଗାମୀ ଜୀବନ ଚିତ୍ରର ଉପଲବ୍ଧିରେ କଳାକୁ ଏକ ମାଧ୍ୟମ ରୂପେ ଉପସ୍ଥାପନ କରିବା ।

କିଶୋରୀ ଚରଣଙ୍କ ଆବିର୍ଭାବ କାଳକୁ ଦୁଇଟି ଲକ୍ଷଣ ସ୍ପଷ୍ଟହୋଇ ଉଠିଛି । ଏକଶହ ବର୍ଷ ପ୍ରାୟ ପୂର୍ତ୍ତିର ଅବସରରେ କ୍ଷୁଦ୍ରଗଳ୍ପରୁ ଉପନ୍ୟାସ ଜଗତକୁ ତାଙ୍କର ପ୍ରବେଶ ଏବଂ ଆସୁଥିବା ଏକବିଂଶ ଶତାବ୍ଦୀକୁ ଯିବାର ପ୍ରାକ୍ ପ୍ରସ୍ତୁତି କାଳର ମାନସିକତା । ଛୋଟ ପରଦାରୁ ବଡ଼ ପରଦାକୁ ଯିବା ପରି ଗଳ୍ପ ଜଗତର ବିପୁଳ ଅଭିଜ୍ଞତା ତାଙ୍କର ପୁଞ୍ଜି । ଦ୍ରୁତ ପରିବର୍ତ୍ତନଶୀଳ ବିଶ୍ୱର ନବ ନବ ଅନୁଭୂତି ତାଙ୍କର ସ୍ୱପ୍ନ ଓ ପରିକଳ୍ପନାର ଭିତ୍ତିଭୂମି । ପ୍ରଥମଟିରୁ ସେ ଆହରଣ କରିଛନ୍ତି ମନର ବିଚିତ୍ର ଅରଣ୍ୟକୁ ଘାଣ୍ଟିବାର କୌଶଳ, ତାହା ପୁଣି ସାତତାଳ ପଙ୍କ ଭିତରର ଶାମୁକା ଭିତରେ ବୁଢୀ ଅସୁରୁଣୀର ଆତ୍ମା-ଜୀବନ ସୌଧର ଦୁର୍ବଳତାଟି ସେଇଠି । ସେଇ ଟିକକ ଖୋଜିବା ପାଇଁ ବର୍ଣ୍ଣନାର କେତେ ଆଡ଼ମ୍ବର ଓ ଛଟକ, ଗୋଟିଏ ମୁହୂର୍ତ୍ତର ବାସନାକୈନ୍ଦ୍ରିକ ଜୁକୁଜୁକିଆ ଇପ୍‌ସାଟିଏ । କ୍ଷୁଦ୍ର ଗଳ୍ପର ଆଡମ୍ବର ବର୍ଣ୍ଣନା ଅତି ସାଧାରଣ ବିଷୟଟିକୁ ଚମକପ୍ରଦ କରିପାରେ, ଏହି କୌଶଳ ତାଙ୍କ ସାଥିରେ ଅଛି । ଅଛି ପୁଣି ଅପସୃୟମାନ ଶତାବ୍ଦୀର ଅନୁଭୂତିର କକ୍ଷ । ନିଜ ଜୀବନକାଳ ଭିତରେ ସ୍ରଷ୍ଟା ଯେଉଁ ଜୀବନ ବଞ୍ଚନ୍ତି ତା'ରି ଭିତରୁ ସେ ଆହରଣ କରିଆଣନ୍ତି ତାଙ୍କର ଭାବକୁସୁମ । କିନ୍ତୁ କିପରି ସେ ପ୍ରକାଶ କରନ୍ତି ? ଉପନ୍ୟାସ ଶିଳ୍ପ ଯୁଗପଦ୍ ଏକ ବକ୍ତବ୍ୟତତ୍ତ୍ୱ ଓ ପ୍ରକାଶତତ୍ତ୍ୱ । କଳାର ଏହି ପ୍ରକାଶତତ୍ତ୍ୱଟି ଯୁଗକୁ ଯୁଗ ନାନାମତେ ରୂପ ଲାବଣ୍ୟରେ ବିଚିତ୍ର ହୋଇ ଆସିଛି । ଏହି ପରିପ୍ରେକ୍ଷୀରେ କିଶୋରୀଚରଣଙ୍କ ଉପନ୍ୟାସ ରଚନାର ବକ୍ତବ୍ୟତତ୍ତ୍ୱ ଓ ପ୍ରକାଶତତ୍ତ୍ୱର ନିବିଡ ସମ୍ବନ୍ଧ ବା ପରିପୂରକତାର ବିଚାର ଆବଶ୍ୟକ ହେଉଛି ।

କିଶୋରୀ ଚରଣଙ୍କ ବକ୍ତବ୍ୟ ସର୍ବତ୍ର ପରୋକ୍ଷ । ଗୋଟିଏ ଦୃଷ୍ଟିରୁ ତାଙ୍କର କହିବାର ଅର୍ଥାତ୍ ବିଶେଷ କିଛି ଚିନ୍ତନୀୟ ବ୍ୟାପାରର ଆଗ୍ରହ ନାହିଁ । ମାତ୍ର ଉତ୍ସୁକତା ରହିଛି ଚରିତ୍ରର ମନୋରାଜ୍ୟର ସଂଘର୍ଷାକୁଳ ଚିତ୍ତବିକ୍ଷୋଭ ପ୍ରତି ।ଏହାକୁ ଆମେ ସ୍ୱାଗତ କରିବା । ଏଇଥି ପାଇଁ ଯେ, ଲେଖକ କିଛି କହିବାର ଆକାଂକ୍ଷାରୁ ନିଛକ ଦାର୍ଶନିକତାର ପ୍ରବଣତାକୁ ଢଳି ପଡ଼ିବାର ସମ୍ଭାବନା ଥାଏ । ଜୀବନକୁ ଆରମ୍ଭରୁ ଦାର୍ଶନିକତାର ଦୃଷ୍ଟିରେ ଦେଖିଲେ ସେ

ଦର୍ଶନର ମାୟାରେ ପଡ଼ିଯିବେ, ସ୍ୱଭାବସୁନ୍ଦର ବଞ୍ଚିବାର ରସାଳ କ୍ଷେତ୍ରଟି ତାଙ୍କ ଦୃଷ୍ଟିରୁ ଅପସରି ଯିବ । ସେଥିପାଇଁ ଅନେକ ସୁଲେଖକଙ୍କ ପରି କିଶୋରୀବାବୁ ତାଙ୍କର ଗଳ୍ପ ରୀତି ପରି ଉପନ୍ୟାସର ରୀତିଟିକୁ ସାଉଁଳିଛନ୍ତି । ଚରିତ୍ର ତା'ର ନିଜ ପରିବେଶରେ ଯେମିତି, ଯେଉଁ ବ୍ୟକ୍ତିତ୍ୱର ଧ୍ୱଜାରେ ପ୍ରକଟିତ ହେବା କଥା ବା ହୋଇଥାଏ ତାହା ସେ କଳ୍ପନା କରନ୍ତି ମାତ୍ର । ଲେଖକ ଭାବରେ ଜଣେ ପର୍ଯ୍ୟବେକ୍ଷକ ର ଦୂରଦର୍ଶିତା ଏବଂ ମନର ଅଭ୍ୟନ୍ତରକୁ ପଶି ଅନାତ୍ମମୟ ବିଭବ ମଧ୍ୟରୁ ଆତ୍ମମୟ ଐଶ୍ୱର୍ଯ୍ୟକୁ ଆଲୋକିତ କରିବା ତାଙ୍କର କର୍ତ୍ତବ୍ୟ । ପ୍ରତ୍ୟେକ ଚରିତ୍ରର ଅଛି ଗୋଟିଏ ଗୋଟିଏ ଅନାତ୍ମମୟ ପରିବେଶ, ସେଇଟି ତାକୁ କେନ୍ଦ୍ରକରି ବୃତ୍ତାକାରରେ ବିଦ୍ୟମାନ । ନିତ୍ୟ ଘଟଣା ପ୍ରବାହ ଭିତରେ ସେଇ ପରିବେଶଟି ସ୍ୱୟଂ କ୍ରିୟାଶୀଳ । ତାହାକୁ ଚରିତ୍ର ନିରପେକ୍ଷ ବା ସାପେକ୍ଷ ବୋଲି କହିହେବ ନାହିଁ । ଯେଉଁ ମୁହୂର୍ତ୍ତରେ ଚରିତ୍ର ସେହି ପରିବେଶ ସହ ନିଜର ସମ୍ପର୍କ ଯୋଡେ ସେହି କ୍ଷଣଠାରୁ ତାହା ଆତ୍ମମୟ ଅର୍ଥାତ୍ ଚରିତ୍ରର ଆଲୋକରେ ଦୀପ୍ତ ହୋଇଉଠେ ଓ ଚରିତ୍ର ସାପେକ୍ଷତାରେ ତା'ର ମୂଲ୍ୟାଙ୍କନ ଦରକାର ପଡେ । ଆଜିର କଥାକାରଙ୍କ ପାଇଁ ଫକୀରମୋହନୀୟ ଜଗତ ସୁଲଭ ବା ଆକର୍ଷଣୀୟ ନୁହେଁ । ସେଭଳି ନୀତି ଆବଦ୍ଧ ଜୀବନର ସରସତା ଆଉ ଉଦ୍ଦାମ ସଂଗୀତ ଶୁଣାଇ ପୁଣ୍ୟମୟ କରିବାରେ ସମ୍ଭାବନା ମଧ୍ୟ ନାହିଁ । ଆତ୍ମଲୀନତାର ପରିଭାଷା ବଦଳିଛି, ଆତ୍ମମୟ ହେବାର ସୁଯୋଗ ସଙ୍କୁଚିତ ହୋଇଛି । ଏବେ ବ୍ୟକ୍ତିବାଦର ବିଶାଳ ଆଡମ୍ବର । ବ୍ୟକ୍ତି-ସ୍ୱାତନ୍ତ୍ର୍ୟର ଏକ ପକ୍ଷରେ ବ୍ୟକ୍ତି ଗୋଷ୍ଠୀମୁକ୍ତ, ସେ ଏକକ, ହୁଏତ ଅନନ୍ୟ ବି ହୋଇପାରେ । ଅପର ପକ୍ଷରେ ସେ ନିଜକୁ ଗୋଷ୍ଠୀ ଆଶ୍ରିତ କରିଥାଏ, ତା'ର ଥାଏ ପରିବାରଟିଏ ସମାଜ ନାମକ ମୂଳ କ୍ଷେତ୍ରଟିଏ, ତା'ର କର୍ମସ୍ଥଳୀଟିଏ । ଏ ସବୁରୁ ସେ ବିଚ୍ଛିନ୍ନ ରହେ କିପରି ? ଅବଶ୍ୟ ଶାରୀରିକ ସତ୍ତାଟି ସାମାଜିକ ବଂଧନ ଦ୍ୱାରା ପ୍ରେରିତ, କିନ୍ତୁ ମାନସିକ ସ୍ତରରେ ସେ ଠିକ୍ ଓଲଟା । ଅର୍ଥାତ ଅବଚେତନ ସ୍ତରଟି ପରିବାର ଓ ସମାଜ ନାମକ ଅନୁଷ୍ଠାନର ଔଜ୍ଜ୍ୱଲ୍ୟରେ ଉଜ୍ଜ୍ୱଳ ହୋଇଥାଏ ଅଥଚ ଅହଂପୁରୁଷ ଅବଚେତନ ମନର ଅଭିଳାଷକୁ ଅସ୍ୱୀକାର କରି ନ ଜର ସ୍ୱତନ୍ତ୍ର ସତ୍ତା ସଜିଲ କରିବସେ । ଅହଂ ପୁରୁଷଟି ଭାରି ଜିଦିଆ, ଅଡ଼ିବାଜି ଧୁରନ୍ଧର । ସେ ଅନେକ ସମୟରେ ଖାତିର କରେ ନାହିଁ ଅବଚେତନ ମନରେ ଥିବା ଅନେକ ସାମୂହିକତାକୁ, ଅବଚେତନ ରାଜ୍ୟର ମୂଳ ପ୍ରେରଣା ବା ସନ୍ଦର୍ଭକୁ । ଖାନଦାନ ବା ମାପଚୁପ ଜୀବନର ଅହଂ ନିଜକୁ ଗୋଷ୍ଠୀଠାରୁ ପୃଥକ କରାଇ ଦିଏ । ବ୍ୟକ୍ତିଟି ନିଜ ଗୋଷ୍ଠୀରୁ ଦୂରେଇ ଯାଏ ବିଭିନ୍ନ ବ୍ୟକ୍ତିଗତ ଦାୟ ବା କର୍ମଭାରକୁ ଆଳକରି । ମଣିଷ ଜୀବନର ଯୁଥ ପ୍ରବୃତ୍ତି (herd instinct) ଅନେକତ୍ର ଖୁବ୍ ଯୁଗପଦ୍ ଆଦିମ ଏବଂ ସାମୂହିକ । ବିଶେଷକରି ଗଣସହଯୋଗ ବା ସମାବେଶ ପରି କାର୍ଯ୍ୟାବଳୀରେ ଏ ଲକ୍ଷଣଟି ବେଶ୍ ଲକ୍ଷଣୀୟ । ମାତ୍ର ସଭ୍ୟ ଜୀବନ ମାପଚୁପର ଅଠାକାଠି ଛୁଆଁ ବିଚାର ଅନୁଶ୍ରିତ ହୋଇଥିବାରୁ ଆଦିମ ପ୍ରବୃତ୍ତିର ତାଡ଼ନାକୁ

ବ୍ୟକ୍ତି ଏଡାଇଯିବା ସହଜ ହୁଏ ଓ ଅହଂର ଜାଲରେ ସେ ଛନ୍ଦି ହୋଇପଡ଼େ । ମାତ୍ର ଏ ଦୁଇଟିର ଅହରହ ସଂଘର୍ଷ ଭିତରେ ମନୋଜଗତର ବିକାରଗୁଡ଼ିକ ପରସ୍ପର ଅସଂପୃକ୍ତ ହୋଇଥିବା ହେତୁ ଯୁଥ ପ୍ରବୃତ୍ତିର ତାଡ଼ନା ଅସ୍ୱୀକୃତ ହୋଇଥାଏ । କିନ୍ତୁ ଅବଚେତନ ସ୍ତରରେ ତାହା ବଳଶାଳୀ ହେଉଥାଏ ଏବଂ ଦିନେ ସ୍ୱେଚ୍ଛାଚାର, ସର୍ବଦମନ ଏକଛତ୍ରାଧିପତ୍ୟର ରୂପ ନେଇ ଆତ୍ମପ୍ରକାଶ କରେ । ଏହି ଅବସ୍ଥାରେ ମନର ପ୍ରତ୍ୟେକ ଚରମ ବିକାର (extreme complexes) ନିଜେ ନିଜକୁ ସ୍ୱପକ୍ଷ ସମର୍ଥନରେ ବାହାରି ପଡ଼ନ୍ତି । ମନ ପେଣ୍ଡୁଲମ ପରି ସେଇ ବିକାରମାନଙ୍କର ସନ୍ଧିଭିତରେ ଦୋଳାୟମାନ ହେଉଥାଏ । ବ୍ୟକ୍ତିର ଦ୍ୱନ୍ଦ୍ୱାକୁଳେ ଚିତ୍ତର ଏପରି ଅବସ୍ଥା ଅବଶ୍ୟ ତା'ର ସମୟର ସମାଜର ରୀତି ଅନୁସାରେ ନିର୍ଦ୍ଧାରିତ ହୁଏ । ଚେତନ ଅବସ୍ଥା ଯେଉଁଠି ରୁଗ୍ଣ, ସେଇଠି ବ୍ୟକ୍ତିର ମାନସିକ ସୁସ୍ଥତା ପରିପ୍ରେକ୍ଷୀରେ ଦ୍ୱନ୍ଦ୍ୱକୁ ଏଡାଇ ଯିବାହିଁ ଭଲ ବୋଲି ମନସ୍ତତ୍ତ୍ୱବିଦ ମନେ କରନ୍ତି ଏବଂ କୁହନ୍ତି ଯେ ବ୍ୟକ୍ତି ଏ ଅବସ୍ଥାରେ ସାମାଜିକ ଗୋଷ୍ଠୀଠାରୁ ବିଚ୍ଛିନ୍ନ ହୋଇ ବ୍ୟକ୍ତିଗତ ମୂଲ୍ୟବୋଧର ଆଶ୍ରୟ ନେବା ଉଚିତ୍ ।

ତେବେ ଏ ବିଷୟରେ ଅବତାରଣାର ଉଦ୍ଦେଶ୍ୟ ସ୍ପଷ୍ଟ । କିଶୋରୀ ବାବୁଙ୍କ ଉପନ୍ୟାସ ଜଗତର ଚରିତ୍ରମାନେ ଏହି ବ୍ୟକ୍ତିଗତ ବିଚିତ୍ର ଅହଂଗ୍ରସ୍ତ ମଣିଷ । ଅଧିକାଂଶ ଚରିତ୍ର ସାମୂହିକ ଜୀବନବ୍ରତର ପ୍ରତିନିଧିତ୍ୱ କରନ୍ତି ନାହିଁ । ସେମାନଙ୍କୁ ଆମେ ଆଧୁନିକ ଜୀବନବୋଧର ବ୍ୟକ୍ତି-ନାୟକ କହିଲେ ଭୁଲ ହେବ ନାହିଁ । 'ସାତୋଟି ଦିନର ସତୀ'ର ଅନୁପମା- କି ଦୁଃଖ ଥିଲା ତା'ର, ବାହାବେଦୀରୁ ଶାଶୂଘର ଓ ସେଇଠୁ ସ୍ୱାମୀ ସହ ଆମେରିକା ଯାତ୍ରା-ଏଇ ସାତଦିନ ଧରି କି ଯନ୍ତ୍ରଣା ନ ଭୋଗିଲା ! ପାଠକେ ପ୍ରଶ୍ନ କରିଲେ ବୁଝିବେ -ତା'ର ଏ ଯନ୍ତ୍ରଣା ମୂଳରେ କିଏ ଅଛି ? ସ୍ୱାମୀ ନା ନିଜେ ? ଘଟଣାଟା ଘଟିଲା ଯେ ଶାଶୂ ଘରେ ପାଦ ଦେବା ରାତିଟା ପାହୁ ନ ପାହୁ ତା'ର ମନ ବିଷାଦ ବିଭୀଷିକାଗ୍ରସ୍ତ ହୋଇଗଲା । କୋଉ ଦୃଶ୍ୟଟି ତା'ର ଉଚ୍ଚ ଶିକ୍ଷିତ ହୃଦ ବୃତ୍ତିକୁ ଆଚ୍ଛନ୍ନ କରି ଦେଲା ? ବାହାରକୁ ଅନେଇ ଦିଅନ୍ତେ ସେ ଦେଖିଲା, ଧବଳି । ତା'ର ବିଶ୍ୱାସ ବାହାରେ ଘଟିଥିଲା ଓ ଅଜାଣତରେ ଘଟିଥିଲା । ସ୍ୱାମୀ ଉଚ୍ଚ ଶିକ୍ଷିତ ପୁଣି ଆମେରିକା ପରି ଏକ ସଭ୍ୟ ଧନୀ ରାଷ୍ଟ୍ରରେ ଉଚ୍ଚ ଦରମାରେ ଚାକିରି କରି କିପରି ହୀନ କର୍ମଟିଏ କରି ବସିଲେ ? ସ୍କୁଲ ମାଷ୍ଟ୍ରର ଶ୍ୱଶୁର ଠାରୁ ଯୌତୁକ ସୂତ୍ରରେ ଆଣିଲେ ଧବଳିଟିଏ - ମଟର କାର୍ ? ଏଇତ ତା'ର ନୂଆ ଜୀବନ ରାସ୍ତାରେ ଦୁର୍ଘଟଣାର ସଙ୍କେତ ଏବଂ ଏଇଠୁ ଆରମ୍ଭ ହେଲା ନିଜର ପ୍ରତିବାଦ - ସୁପ୍ତ ନାରୀର ଅହଂଗ୍ରସ୍ତ ମନର ଏକାକୀ କପୋତ ଗୁମ୍ ଗୁମ୍ ବିଳାପ କରିବାର ସାତଦିନର ସମଭିବ୍ୟାହାର । ବାପା ଦେଲେ ଯୌତୁକ, ବୋଉ ନିରବରେ ମାନିନେଲା -ଆଉ କେଇଟା ପିଲାଙ୍କ ଭବିଷ୍ୟତକୁ ପଛକୁ ପକେଇ ଗୋଟାଏ ପରିବାର ଗୋଟାଏ ଝିଅକୁ ଉଠାଇବାକୁ ଯାଇ ହେଲା ଋଣଗ୍ରସ୍ତ । ବଡ଼ ସରଳ ଓ ଗଭୀର ଆତ୍ମବୋଧ ତଥା ସ୍ୱାତନ୍ତ୍ର୍ୟର ନିଦର୍ଶନଟିଏ ପାଇଗଲେ କିଶୋରୀଚରଣ । ଏପରି ଘଟଣା ସମସାମୟିକ ସମାଜ-ଜୀବନର କନ୍ୟାଦାୟ ପିତାର ଘଟଣାବଳୀ ମଧ୍ୟରୁ

ଗୋଟିଏ ମାତ୍ର । ଶିକ୍ଷାପ୍ରାପ୍ତ ଝିଅଟିଏ । ଏପରିସ୍ଥିତିରେ ଯେଉଁ ପ୍ରତିକ୍ରିୟା ପ୍ରକାଶ କରିବା ଉଚିତ ବୋଲି  ଜନେ ଆଶା କରନ୍ତି କିଶୋରୀବାବୁ ତା'ର ସୂତ୍ର ପାଇଗଲେ କି ? ଅବଶ୍ୟ ଶେଷ ପର୍ଯ୍ୟନ୍ତ ଅନୁପମାକୁ ସେ ତା'ର ଅହଂ-ଧାବିତ ବ୍ୟକ୍ତିଗତ ମୂଲ୍ୟବୋଧର ସତୀଟିଏ କରି ରଖିଲେ - ମାତ୍ର ସାତଟି ରାତି ପାଇଁ, ତାପରେ ତାଙ୍କର ରସିକ-ସ୍ରଷ୍ଟା ପୁରୁଷ ନବ ଦାମ୍ପତ୍ୟରେ ବାଧା ଦେବାକୁ ଇଚ୍ଛା କରି ନାହିଁ, ସେପରି ବୋଧହୁଏ ସୁନ୍ଦର ହୋଇନଥାନ୍ତା, ସ୍ୱାଭାବିକତା ବି ହରାଇ ବସିଥାଆନ୍ତା । ନାରୀ ସ୍ୱାତନ୍ତ୍ର୍ୟବୋଧ ନାମରେ ହନିମୁନ୍‌କୁ ଟାଳି ଦେବା କ'ଣ ରସିକତା ହୋଇଥାଆନ୍ତା ? ନିୟୁର୍କ ସହରରେ ସମ୍ବଲପୁରର କେଉଁ ଅଜ୍ଞାତ ଗାଁର ଅନୁପମାକୁ ସେ ଏକାକୀ ବୁଲାଇ ଆଣିବା ପରେ ଯଥେଷ୍ଟ ପ୍ରମାଣ ରଖିଦେଲେ ବିଶନ ବାବୁଙ୍କ ପାଇଁ ଯେ ଅନୁପମା ଅବଳା ନାରୀଟିଏ ମାତ୍ର ନୁହେଁ । ସୁରା ଗ୍ଲାସ୍ ଧରି ଚିଅରସ୍ ଉନ୍ମୁଖ ନୀତିଭ୍ରଷ୍ଟ ସ୍ୱାର୍ଥୀମାନେ 'ମହାତ୍ମା ଗାନ୍ଧିଙ୍କ ଜୟ' କରିବା କେତେ ଗର୍ହିତ ଜାତୀୟ ଅପରାଧ ହେଇପାରେ ତାହା ଦେଖାଇ ପାରୁଥିବା ଗାଁଉଲି ଝିଅ ଅନୁପମା ଅବଳା ନୁହେଁ । ତା' ଭିତରେ କେତେ ଶକ୍ତିଶାଳୀ ରୂପେ ବିରାଜିତ ଐତିହ୍ୟର ଦ୍ରୁମ - 'ତୁ, ପାରିବୁ ମା', ନିର୍ବାଣ ମୁଖୀ ଦୀପ ତୁଲ୍ୟ ଜେଜେ ଶ୍ୱଶୁରଙ୍କ ବିଶ୍ୱାସ । ସେ କ'ଣ ପାରିବ ? ରାଣୀ ଗୁମ୍ଫାଂର ହାତୀମାନେ ଗାଧୋଉ ଥିବାର ଓ ହରିଣମାନେ ଉଡୁଥିବାର ଚିତ୍ରଣ ଦାୟିକାରେ ଗୋଟେ ଝିଅ କେତେ ବାଟ ଦୌଡ଼ି ପାରେ ? ସେ ଯାଏଁ, ଯେଉଁ ଦିନ ବିଶନବାବୁ ସ୍ୱୀକାର କଲେ ,ଅନୁ, ୟୁ ଆର ଗ୍ରେଟ୍ ? ଜିକି ଜିକି ତାରା ନୁହେଁ, ଗୋଟାଏ ମଉନମୁହାଁ ଜହ୍ନ ଦରକାର ବୋଲି କଳ୍ପନାର ଆକାଶ ରଚିଥିବା ଅନୁର ବଡ଼ପଣ ସ୍ୱାମୀର ଏପରି ସ୍ୱୀକୃତିରେ କ'ଣ ସାର୍ଥକ ହୋଇଗଲା ? ଅବଶ୍ୟ କିଶୋରୀବାବୁ ରସିକତା ଜାଣନ୍ତି । ନିୟୁର୍କର ଯେଉଁ ଗଭୀର ନିଶାର୍ଦ୍ଧ ମୁହୂର୍ତ୍ତରେ ନିଃସର୍ତ୍ତ ଦେହ ଦାନରେ ସାତଦିନର ବ୍ରତ ଉଦ୍‌ଯାପନ କଲା ଅନୁପମା, ଠିକ୍ ସେଇ ମୁହୂର୍ତ୍ତରେ ଭୁବନେଶ୍ୱରରେ ଜେଜେଶ୍ୱଶୁରଙ୍କ ଜୀବନ ଦୀପ ନିଭିଗଲା, ଗୋଟାଏ ପାରିବାପଣିଆର ଶିଖାକୁ ଜଳାଇବାକୁ ଦେଇ ।

କ'ଣ ପାରିଲା ଅନୁପମା ? ଏ ପ୍ରଶ୍ନର ଯଥାର୍ଥ ଉତ୍ତର କିଶୋରୀଚରଣଙ୍କୁ ଉପନ୍ୟାସରେ ସ୍ୱତନ୍ତ୍ର ଆସନର ଅଧିକାରୀ କରିବ ବୋଲି ମନେ କରିବା ଅଯଥାର୍ଥ ହେବ ନାହିଁ ।

ଶେଷକୁ ଅନୁପମା ସହ ବିଶନଙ୍କର ମିଳନ ହେଲା । ଜଣେ ଅପଭ୍ରଷ୍ଟ ବ୍ୟକ୍ତି ନିଜ ସ୍ୱାର୍ଥ ପାଇଁ ବିଦେଶୀ କମ୍ପାନୀର ଖୋଇ ପାଖରେ ଦେଶକୁ ନୁଆଇଁ ଦେଲା-ଏହା ବାହାଦୁରୀ ନୁହେଁ । କରିତ୍‌କର୍ମା ପଲିଟିକାଲ୍ ଏଜେଣ୍ଟ ଗୋବିନ୍ଦଜୀ ନିଜ ବନ୍ଧୁ ଅନୁପମାର ବାପର ଖାତିରରେ ବିଶନର କାମ କରାଇ ଦେଲେ - ନ ହେଲେ ସେଇ ଯେ ଶେଷ ମୁହୂର୍ତ୍ତରେ ଉଡ଼ାଜାହାଜ ଟିକେଟ୍ ବାତିଲ କରିବାକୁ ପଡ଼ିଥାଆନ୍ତା ବିଶନକୁ ଓ ଫରେନ୍ ଚାକିରିଆ ସ୍ୱାମୀ ପାଇବାର ଗୌରବରୁ ବଞ୍ଚିତ ହୋଇଥାଆନ୍ତା ଅନୁପମା । ମନ ଭିତରେ ସତୀର ଆଣ୍ଟା କେତେଦିନ

ଦୃଢ ରହିଥାଆନ୍ତା ଯଦି ଫେରି ଆସିଥାଆନ୍ତା ଭୁବନେଶ୍ୱରକୁ ନିୟୁର୍କ ଯିବା ପରିବର୍ତ୍ତେ ? ବରଂ ସମ୍ପୂର୍ଣ୍ଣ ଅଜଣା ଅଚିହ୍ନା ମଧ୍ୟସ୍ଥି ଗୋବିନ୍ଦଜୀଙ୍କ ଆଗରେ ଝଲିଲା ଚେହେରା ଟିକେ ଦେଖେଇ ଦେଲେ କ୍ଷତି କ'ଣ ? ଅବଶ୍ୟ ବାପାଙ୍କ ବନ୍ଧୁଙ୍କ ଠାରୁ ବାତ୍ସଲ୍ୟ ଝରିବ । ସେ ବାତ୍ସଲ୍ୟ ହେବ ନିୟୁର୍କ ମାଟିରେ ଅପେକ୍ଷାରତ ଶୃଙ୍ଗାରର ଜନନୀ । ସେଇ ଶୃଙ୍ଗାର ହେବ ପୁଣି ବିଶନର ଇଚ୍ଛାରେ ନୁହେଁ, ଅନୁପମାର ବ୍ରତ ଉଝେଇବାରେ, ଯେତେବେଳେ ସେ ବିଶନକୁ ନ କହି ମଧ କହିପାରିବ ଯେ ମୋ ବାପା ମୋତେ କେବଳ ଦେଇନାହିଁ ବା ମୋ ସାଙ୍ଗରେ ଧବଳୀ ୱାନ ଥାଉଜେଣ୍ଡ , ତା ସହିତ ଦେଇଛନ୍ତି ତୁମର ଏଇ ଫରେନ୍ ଚାକିରିଟା ବି । ତମେ ପୁରୁଷଗୁଡା ଧିକ୍, ମହାତ୍ମାପରି ଲୋକଟାକୁ ମଦ ଗିଲାସ ଭିତରେ ବୁଡ଼େଇ ମାରି ପାର ଯାହା, କିନ୍ତୁ ବଡେଇର ମୂଲ୍ୟ ତୁମେ ବୁଝ ନାହିଁ, ଯେମିତି ବାପା କି ରଙ୍ଗୁଭାଇ କିଛି ନ ବୁଝି ଫରେନ୍ ଜୋଇଁ ନହସରେ ମୋତେ ଟେକିଦେଲେ ତୁମ ହାତରେ । ମୁଁ ସେମିତି ଟୋକି ନୁହେଁ ଯେ ତୁମ ଛାତିରେ ଢଳି ପଡ଼ିବି କେଉଁ ରୋମାଣ୍ଟିକ୍ ଗଦ୍ ଗଦ୍ ପଣରେ । ମୋ ମନର ରାଣୀ ଗୁମ୍ଫାରେ ମୁଁ ମତ୍ତ ହାତୀକୁ ଗାଧୋଇ ଦେଇପାରେ, ହରିଣକୁ ଉଡ଼ାଇ ପାରେ, ସେ ସବୁ ମୋର ବ୍ୟକ୍ତିଗତ ବ୍ୟାପାର ଆଉ ସେଥିପାଇଁ ଥିଲେ ଜେଜେ ପ୍ରେରଣା ଦେବାକୁ, 'ମା ତୁ ପାରିବୁ ।' ନାରୀ ସ୍ୱାତନ୍ତ୍ର୍ୟ ଓ ବ୍ୟକ୍ତି ଗୌରବବୋଧ ମୂଳରେ ଅନୁପମାର ଆଚରଣ ଯେ ଆମ ସାହିତ୍ୟରେ ନୂଆ ଭାବ ବହନ କରି ପ୍ରତିଷ୍ଠା ପାଇଁ ଆଶାୟୀ, ଏଇ କଥାହିଁ ମୁଖ୍ୟ ।

ଅନୁରୂପ ବ୍ୟକ୍ତିବାଦୀ ଆଭିମୁଖ୍ୟର ଚିତ୍ର 'ନେତା ଓ ନେତ୍ରମଣି'ରେ । ଆଧୁନିକତାର ଏଇ ଶଙ୍କୁ ଉପରେ ଅଧିକ ଆସ୍ଥାଶୀଳ ଗଣତାନ୍ତ୍ରିକ ଭେକ ପିନ୍ଧା ଆମ ରାଜନୈତିକ ବ୍ୟବସ୍ଥାରେ ଦୁଃଖୀ ପ୍ରତି ସମବେଦନା ରଖୁଥିବା ବିରାଜ ମହାନ୍ତି, କାନ୍ଦୁରାଟିଏ ରୂପେ ତିରସ୍କୃତ ହେବା ବିଚିତ୍ର ନୁହେଁ । ଜଣେ ରାଜନୀତିଜ୍ଞ ରୂପେ ଆଦର୍ଶ ଓ କଲ୍ୟାଣମୁଖୀ କାର୍ଯ୍ୟକ୍ରମ ଉପରେ ଗୁରୁତ୍ୱଦେଇ ସେ ନିଜର ପାର୍ଟିକୁ ଜୟଯୁକ୍ତ କରାଇଥିଲେ । ତାଙ୍କ ବ୍ୟକ୍ତିତ୍ୱକୁ ଉତ୍ତରଣର ଶିଡ଼ି ରୂପେ ଗ୍ରହଣକରି ପାର୍ଟି ତାଙ୍କୁ ମୁଖ୍ୟମନ୍ତ୍ରିତ୍ୱ ଦେଇଥିଲା । କିନ୍ତୁ ଶେଷକୁ ସେ ତାଙ୍କ କ୍ୱାଇଁ ମୋହନ ପ୍ରଧାନଙ୍କ ଦ୍ୱାରା ହେଲେ ବିଡମ୍ବିତ । ଆଦର୍ଶବାଦୀର ଶେଷ ପରିଣତି ଅନେକାଂଶରେ କରୁଣ ହୁଏ ବୋଲି ଯଦି କୁହାଯାଏ, ବିରାଜ ମହାନ୍ତିଙ୍କ ନିସ୍ୱାର୍ଥ ରାଜନୀତି ଓ ଜନସେବା ବିରୋଧୀଦଳର ଚରମ କୂଟନୀତି ଭିତ୍ତିକ ଚକ୍ରାନ୍ତର ଶିକାର ହୋଇଯିବା ଫଳରେ ସେ ମାନସିକ ଭାରସାମ୍ୟ ହରାଇ ବସିଲେ ଓ ପରୋକ୍ଷରେ ଆତ୍ମହତ୍ୟା କଲେ । ତାଙ୍କର ଏପରି ଆତ୍ମହନନ ପଛରେ ବିରୋଧୀଦଳର ଷଡ଼ଯନ୍ତ୍ରର ଅନ୍ୟତମ ଅଂଶ ହେଉଛନ୍ତି ମୋହନ । ମୋହନଙ୍କର ଭବିଷ୍ୟତ ଉଜ୍ଜ୍ୱଳ ହୋଇ ଆସୁଥିଲା ବେଳେ ବିରୋଧୀ ଦଳ ତାଙ୍କୁ ହିଁ ପରମ କଣ୍ଟା ମନେ କରି ହିମାନୀକୁ ଏକ ଶେଳ ରୂପେ ବ୍ୟବହାର କଲା । ହିମାନୀର ତାରୁଣ୍ୟ ଓ କୂଟ ବୁଦ୍ଧି ମୋହନଙ୍କୁ ବଶ ନ କଲା ନୁହେଁ, ମୋହନ ନିଜକୁ ବିଚକ୍ଷଣ ମନେ କରୁଥିବା ସତ୍ତ୍ୱେ ତା'ର କୂଟ ପ୍ରେମର ଶିକାର ହୋଇଗଲେ । ମନେ ହୁଏ, କିଶୋରୀବାବୁ ତାଙ୍କର ଏହି ରାଜନୈତିକ

ଉପନ୍ୟାସରେ ଦ୍ୱନ୍ଦ୍ୱଟିକୁ ଏଇଠି ଶୀର୍ଷ ବିନ୍ଦୁରେ ଉପନୀତ କରାଇଛନ୍ତି । ଅଦ୍ୟାବଧି ମୋହନର ଜୀବନରେ ଆସିଥିବା ନାରୀମାନେ ଛାତ୍ରୀ ବା ପତ୍ନୀ ରୂପେ ଗଣା ହେଉଥିଲେ । ଭାରତୀର ଜ୍ଞାନ ସ୍ପୃହା ଓ ବୁଦ୍ଧିମତ୍ତା ତାଙ୍କୁ ନିସ୍ତେଜ କରିଛି, ଯଦିଓ ଭାରତୀର ଦୁର୍ବଳତାର ପରିଚୟ ସେ ପାଇଛନ୍ତି, କିନ୍ତୁ ତା'ର ଶିକାର ହୋଇନାହାଁନ୍ତି । କିନ୍ତୁ ହିମାନୀ ହିମ ପରି ତାଙ୍କର ଉଷ୍ଣ ବ୍ୟକ୍ତିତ୍ୱକୁ ହେମାଳ କରିଦେଲା । ହିମାନୀର ହେମସ୍ପର୍ଶ ପାଇଁ ସେ ଆତୁର ହୋଇଗଲେ । ପରୋକ୍ଷରେ ହେଲେ ବିରୋଧୀ ଦଳର ଚକ୍ରାନ୍ତର ଶିକାର । ବିରାଜଙ୍କର ପାଳିତ କନ୍ୟା ନୀତୁକୁ ପତ୍ନୀ ରୂପେ ପାଇ ସେ ପ୍ରକୃତରେ ସୁଖୀ ଥିଲେ ବୋଲି କହିବା ସମୀଚୀନ ହେଉ ନାହିଁ, କାରଣ ନୀତୁକୁ ବିବାହ କରିବା ଥିଲା ଭବିଷ୍ୟତ ରାଜନୀତିକ ଜୀବନର ଏକ ସେତୁ । ସେ ସେତୁ ପ୍ରାଣର ବନ୍ଧନ ହେବା ଅପେକ୍ଷା ଏକ ସାମାଜିକତାର ଚିହ୍ନ ବୋଲି ମନେହୁଏ । ଭାରତୀର‚ ଅନାକର୍ଷଣୀୟ ରୂପ ହେତୁ ଅବଦମିତ ଥିବା କାମ କ୍ଷୁଧା ବର୍ତ୍ତମାନ ହିମାନୀର ହୀରାତନୁ ଦ୍ୱାରା ଶୀତଳ ହେବାର ସୁଯୋଗ ପାଇଲା ।

'ନେତା ଓ ନେତ୍ରମଣି'ର ପରିକଳ୍ପନା ସାଂପ୍ରତିକ ରାଜନୀତିକୁ ନେଇ । ରାଜନୀତିରେ ଘଟୁଥିବା ଦ୍ୱନ୍ଦ୍ୱ ହେଉଛି ଏହାର ଆଧାର । ତେବେ କ୍ଷମତାକନ୍ଦଳ ରାଜନୀତିର ମୁଖ୍ୟାଂଶ ! ବ୍ୟବସ୍ଥାଟି ଅସ୍ୱଚ୍ଛ ଓ ଅନାଚାର ହେଲେ କ୍ଷମତାପାଗଳଙ୍କ ପାଇଁ ସୁଖକର ହୁଏ । 'ଆତ୍ମନା ସଂଗୃହୀତେନ ଶତ୍ରୁଣା ଶତ୍ରୁମୁଦ୍ଧରେତ' ନିଜ ବଶରେ ଥିବା ଶତ୍ରୁ ଦ୍ୱାରା ଶତ୍ରୁର ବିମର୍ଦ୍ଦନ, ଏହାହିଁ ରାଜନୀତିର ଆଚରଣ । ବ୍ୟକ୍ତି ମହତ୍ତ୍ୱାକାଂକ୍ଷୀ ହେଲେହେଁ ବି ସେ ଦଳର ଅଧୀନ ଓ ଦଳ ଧନଦାତାଙ୍କ ଦୟା ନିର୍ଭର । ସ୍ୱର୍ଗତ ରାଜଗୋପାଳଚାରୀଙ୍କ ଏ ଉକ୍ତି ଏଠାରେ ଅସମର୍ଥିତ ହେଉନାହିଁ । ବିରାଜ ମହାନ୍ତିଙ୍କର ସାମାନ୍ୟ ଦୁର୍ବଳତାର ସୁଯୋଗ ନେଇ ତାଙ୍କର ବନ୍ଧୁ ସମେତ ବିରୋଧୀ ଦଳ ଏକଜୁଟ ହେବା ବିଚିତ୍ର ନୁହେଁ । କ୍ୱାଇଁ ମୋହନ ପକ୍ଷରେ ଭବିଷ୍ୟତ ଯେମିତିକି ହିମାନୀର ପ୍ଲାନ୍ ସହ ଜଡ଼ିତ । ତେଣୁ ଗରଳ ଜାଣି ମଧ୍ୟ ସେ ହିମାନୀର ସର୍ତ୍ତ ମାନିନେବା ସ୍ୱାଭାବିକ । ପ୍ରକୃତରେ ସେ ହିମାନୀକୁ ଭଲ ପାନ୍ତି କି ? ଏ ପ୍ରଶ୍ନ ଏଠାରେ ଅବାନ୍ତର । ଆମକୁ ଡ୍ରାଇଡେନ କହିବେ "Politicians neither love nor hate" ଯଦି କେବେ ଦେହର ଦେହଳୀରେ ମିଶିଯିବାର ସୁଯୋଗ ମିଳୁଛି ତେବେ କ୍ଷତି କ'ଣ ? କିଶୋରୀବାବୁ ମୋହନ ଚରିତ୍ର ମଧ୍ୟରେ ରାଜନୀତିର ଏଇ ଚରିତ୍ର ପ୍ରତି ଦୃଷ୍ଟି ଦେଇଛନ୍ତି ଏବଂ ଡ୍ରାଇଡେନଙ୍କ କଥାଟିକୁ ଦୋହରାଇଛନ୍ତି ।

ଉପନ୍ୟାସର ଜନ୍ମ ଦର୍ଶନରୁ ନୁହେଁ, ହାସ୍ୟରୁ; ହାସ୍ୟ ପ୍ରତି ଅନୁରାଗ ଓ ମନନରୁ । ଏହି ମନନପ୍ରାଣତାରୁ ଗୋଟିଏ ଆବିଷ୍କାରର ଉନ୍ମାଦନା ଛୁଟେ । ସେ ଆବିଷ୍କାର ହେଉଛି ମଣିଷର ଅନ୍ତର୍ଜଗତର ସୁପ୍ତ ଇଚ୍ଛା । ସେ ଇଚ୍ଛା ବ୍ୟକ୍ତିର ଅବଚେତନ ସ୍ତରର ବହୁ ରୂପ ସହିତ ଥିବା ମେଳ ଅମେଳକୁ ପ୍ରକଟ କରେ । ଉପନ୍ୟାସକାର ତାଙ୍କ ଗଳ୍ପବିଧାନ ସୂତ୍ରରେ ମଣିଷର ଆଚରଣଗୁଡ଼ିକୁ ତାତ୍ତ୍ୱିକ ରୂପ ଦାନ କରନ୍ତି ବୋଲି କୁହାଯାଉଛି - (Culture and mo-

dernity. p. 10) । ଜଣେ ସାଧାରଣ ବ୍ୟକ୍ତି ପାଖରେ ଦୃଶ୍ୟମାନ ହେଉନଥିବା କୌଣସି ଘଟଣା ଆଉ ଜଣକ ଦ୍ୱାରା ଦୃଶ୍ୟ ହୋଇପାରେ । ଏହି ପ୍ରଶ୍ନକୁ ନେଇ ଉପନ୍ୟାସ ଲେଖକଙ୍କର ପ୍ରତ୍ୟୁତ୍ତର ହେଉଛି ଯେ ଏହା ଭାବିବା ହାସ୍ୟକର ଯେ ଜଣେ ମଣିଷ ଅନ୍ୟଜଣକ ଠାରୁ ଅଧିକ ଭାବେ ଘଟଣା ସଚେତନ ବା କୌଣସି ତାତ୍ତ୍ୱିକତା ଆନନ୍ଦର ମାଧ୍ୟମ ହୋଇପାରେ । ସେହିପରି କୌଣସି ସତ୍ୟର ଅବତାରଣାରେ ରହିଛି ଆନନ୍ଦ ଓ କାରୁଣ୍ୟ, ଏପରି ଧାରଣା ହାସ୍ୟଯୁକ୍ତ । ପୁଣି ହସର କଥା ଯେ ଆମେ ସାଧାରଣ ଲୋକ ଦେଖିବାକୁ ନିଜକୁ ଅକ୍ଷମ କରିଦେଉ, ଦୁଃଖର ବଢତି ଓ ସୁଖର କମତି -ଏସବୁ ସାମାନ୍ୟ ବିଷୟ, ଏପରି ଭାବ ଆମର ମନକୁ ଆସେ । ତେବେ ଉପନ୍ୟାସକାରଙ୍କ ପାଇଁ ଦୃଶ୍ୟମାନ ବାସ୍ତବତାର ବିକଳ୍ପ ରୂପ ହେଉଛି ଦୃଷ୍ଟିଭଙ୍ଗୀର ବିବିଧତାର ରୂପାୟନ, ଗୋଟିଏ ଦୃଶ୍ୟର ବା ଘଟଣାର ବହ୍ୱୀକରଣ, ବହୁଭାବରେ ବା ରୂପରେ ଗୋଟିଏ କଥାକୁ ଦେଖିବା । ଏହି ପରିପ୍ରେକ୍ଷୀରେ କୁନ୍ଦେରାଙ୍କୁ ସ୍ମରଣ କରାଯାଉ- ସେ କହୁଛନ୍ତି ଯେ ମଣିଷ ବ୍ୟକ୍ତିଟିଏରେ ପରିଣତ ହୋଇଛି ବୋଲି ଯାହା ଯୁକ୍ତି ଉଠେ, ତାହା ଯଥାଯଥ ଭାବେ ସତ୍ୟର ଆଧାର ହରାଇ ବସିଛି । ଉପନ୍ୟାସ ହେଉଛି ବ୍ୟକ୍ତିମାନଙ୍କର କଳ୍ପିତ ନନ୍ଦନ । ଏହି ପରିସୀମା ଭିତରର ସତ୍ୟକୁ କାହାର ପ୍ରବେଶାଧିକାର ଅଛି କି ? କିନ୍ତୁ ସେଇ ପରିସୀମାସ୍ଥ ପ୍ରତ୍ୟେକ ଚରିତ୍ରକୁ ବୁଝିବାର ଅଧିକାର ସମସ୍ତଙ୍କର ରହିଛି - (The Novel is the imaginary paradise of individuals. It is the territory where no one possesses the truth, neither Anna nor Karenina, but where everyone has the right to be understood, both Anna and Karenina (Kundera, The Art of the Novel. P.159) । ଉପନ୍ୟାସକୁ ଗଣତାନ୍ତ୍ରିକ ୟୁଟୋପିଆ ବା ସ୍ୱପ୍ନରାଷ୍ଟ୍ର କହିବା ବେଳେ କୁନ୍ଦେରା ମନେ କରନ୍ତି ଯେ ଏକ କଳ୍ପିତ ଭବିଷ୍ୟତ ସମାଜରେ କେହି ସତ୍ୟ ବା ଘଟଣାବଳୀର ଲକ୍ଷଣକୁ ନିଜ ସପକ୍ଷରେ ଥିବା ମନେ କରନ୍ତି ନାହିଁ । ଏହିପରି ସମାଜରେ କେହି ସୁଦ୍ଧା ଭାବିବେ ନାହିଁ ଯେ ଆନନ୍ଦ ଓ କାରୁଣ୍ୟର ଊର୍ଦ୍ଧ୍ୱରେ ପ୍ରକୃତ ବାସ୍ତବିକତା ଅଛି ବୋଲି କିମ୍ବା ଆନନ୍ଦର ସନ୍ଧାନରେ ଆମର କିଛି କର୍ତ୍ତବ୍ୟ ଅଛି ବୋଲି । ଏପରି ସମାଜରେ ବାସ୍ତବତା ବା ସତ୍ୟାନୁସନ୍ଧାନ ଠାରୁ ସହନଶୀଳତା ଓ କୌତୂହଳକୁ ଅଧିକ ବୌଦ୍ଧିକ ଉତ୍କର୍ଷ ବୋଲି ମନେ କରାଯାଏ । ବସ୍ତୁତଃ, ଏହି ପରିପ୍ରେକ୍ଷୀରେ କିଶୋରୀବାବୁଙ୍କ ଉପନ୍ୟାସ ଆମକୁ କେତେକ କଥା ସ୍ମରଣ କରାଇଦିଏ ।

'ସକଳ ସନ୍ତାନ'ରେ ଲେଖକମାନଙ୍କ ସଂସାରର ଚିତ୍ର ଦେବା ବେଳେ 'ତୋହରି ସନ୍ତାନ ଆମେ ଅଟୁ ସରବେ' ପରି ବହୁ ପ୍ରଚଳିତ ଉକ୍ତିଟିକୁ ସେ ବ୍ୟଙ୍ଗ କରିବାକୁ ଭୁଲି ନାହାଁନ୍ତି । ଯଶସ୍ୱୀ ହେବାର ପ୍ରଚଣ୍ଡ ଲାଳସା ବ୍ୟକ୍ତିକୁ ଅନ୍ୟପ୍ରତି ବିଦ୍ୱେଷୀ କରିଦିଏ, ଇର୍ଷାମୟ ହୋଇଯାଏ ତା'ର ଅନ୍ତଃପ୍ରବୃତ୍ତି । ସାରସ୍ୱତ ଜ୍ୱଳନ ସେତେବେଳେ ସୃଷ୍ଟିମୁଖୀ ହୁଏ ନାହିଁ,

ତାହା ଦାହିକା ଶକ୍ତିରେ ପରିଣତ ହୁଏ । ଈର୍ଷା ଦ୍ୱେଷରେ ସେ ଜଳେ, ଅନ୍ୟକୁ ମଧ୍ୟ ଜଳିବାକୁ ସୁଯୋଗ ତିଆରି କରେ । ସାରସ୍ୱତ ସଂସାରରେ ଯେଉଁମାନେ ହାତୀର କଳସ ଲାଭ କରିଛନ୍ତି ତା ପଛରେ କି ସତ୍ୟ ନିହିତ ଅଛି ? ସାହିତ୍ୟ ପ୍ରତି ସର୍ତ୍ତହୀନ ପ୍ରୀତି ନା ବ୍ୟକ୍ତିର ରୂପ ଯୌବନ, ଆଧିପତ୍ୟ, କ୍ଷମତା, ପ୍ରତିପତ୍ତି ପ୍ରତି ଏକ ମୋହନଶୀଳ ସମର୍ଥନ ? ବ୍ୟକ୍ତି ସଦାଚାର ଊର୍ଦ୍ଧ୍ୱକୁ ଉଠି ଯଶସ୍ୱୀ ହେବାର ସ୍ୱପ୍ନ ଦେଖିପାରେ କିନ୍ତୁ ବ୍ୟବସ୍ଥାଟିର କର୍ତ୍ତବ୍ୟ କ'ଣ ? କବି ଶୈଳଜା ପଣ୍ଡା ଯେ  କୁଳଭୂଷଣ ଓ ରୋମୀ ସେନଙ୍କ ଅକୁଣ୍ଠିତ ସାହାଯ୍ୟ ପାଇଲେ, ସେଥିରେ କେଉଁ ସାହିତ୍ୟିକ ଉତ୍କର୍ଷର ମାନରକ୍ଷା ଘଟିଲା ? ସର୍ବଶ୍ରେଷ୍ଠ ପୁରସ୍କାର 'ବାଣୀ ସନ୍ତାନ' ଲାଭ ପଛରେ ବ୍ୟକ୍ତିର ସାଧନାକୁ ନିରଙ୍କୁଶ ଏକ ପ୍ରତିଭାର ସ୍ୱୀକୃତି ବୋଲି କହିବା ସମୀଚୀନ ହେବ ନାହିଁ । ସେହିପରି 'ସ୍ୱର୍ଗସୀମା'ରେ ସରକାରୀ ସେବକମାନଙ୍କର ନୂତନ ଏକ ପରିଚୟ ସେ ଆଙ୍କିଛନ୍ତି । ସେହି ପରିଚୟଟି ହେଉଛି ସେମାନଙ୍କୁ ଜଣା ଏକ ଅପୂର୍ବ କୌଶଳ । ରାଗରୋଷ ବେଗଆବେଗ ବା ନିଜର ମୌଳିକ ବିଚାର ଶକ୍ତି ହରାଇ ବସିଥିବା ସେବକକୁଳ କେଉଁ ଅଭିଳାଷରେ ଜଣେ ଜଣେ ବ୍ୟକ୍ତି ପ୍ରତି ଆଉଜି ପଡ଼ନ୍ତି ? ପ୍ରଭୁତ୍ୱ ନାମକ ଅଳଙ୍କାରଟି ଦେହକୁ କେବଳ ସୁନ୍ଦର ନୁହେଁ, ତାହା ମନକୁ ବି ସଜାଏ ଓ ସେଥିରେ ଥାଏ ଆତ୍ମସୁଖ ଓ ସମ୍ମାନ । ତେବେ ପ୍ରଭୁତ୍ୱର କଳେବର କୌଶଳଜନିତ ଏକ ବ୍ୟାପାର । ସାଧାରଣରେ ଯାହା ନାଲିଫିତା ନାମରେ ନାମିତ, ଦୀର୍ଘସୂତ୍ରିତା ବା ବାରମ୍ବାର ଅନୁଦ୍ଧାନମୂଳକ ପ୍ରଶ୍ନ ଉତ୍ତରୀ ପ୍ରକ୍ରିୟାର ବିଷୟ । ତାହା ପ୍ରତିଭାକୁ ଦିବାଲୋକରେ ହତ୍ୟା କରେ । ସଂସ୍କୃତି, ମୂଲ୍ୟବୋଧ, କଳା, ଶିଳ୍ପର ସୂକ୍ଷ୍ମତା ଓ ତା'ର ଜୀବନବୋଧକୁ ଚିହ୍ନିବା ପରି ବୌଦ୍ଧିକତାର ଅଭାବ ନଥିଲେ ମଧ୍ୟ ସେଥିପ୍ରତି ଉଦାସୀନତା ହେଉଛି ପ୍ରଭୁତ୍ୱର ଗୋଟାଏ ଲକ୍ଷଣ । ପ୍ରଭୁପଣ ଛଳନା ଧୁରୀଣ, ମୁଖ-କୃପା ପ୍ରବଣ । ଏହି ଶ୍ରେଣୀଟି ଆଧୁନିକ ସଭ୍ୟତାରେ ବୋଧହୁଏ ସବୁଠାରୁ ଅଧିକ ମୂଢ଼ । କୁନ୍ଦେରାଙ୍କ ମତରେ 'ଫ୍ଲୁବର୍ଟ' ମୂଢ଼ତା ବିଷୟରେ ଯାହା କହିଛନ୍ତି, ତାହା ହେଉଛି ଏକ ବୈଜ୍ଞାନିକ ବିଶ୍ଳେଷଣ ଏବଂ ଗୋଟିଏ ଶତାବ୍ଦୀର ସୁନ୍ଦର ଆବିଷ୍କାର । ମୂଢ଼ତା ପୂର୍ବରୁ ଥିଲା, କିନ୍ତୁ ତା'ର ଅର୍ଥ ଥିଲା ଜ୍ଞାନର ଅଭାବ, ଯାହାକି ଶିକ୍ଷା ଫଳରେ ସଂଶୋଧିତ ହୋଇପାରେ । ମାତ୍ର ଫ୍ଲୁବର୍ଟ କହିଲେ ଯେ ଏହା ବିଜ୍ଞାନ, କାରିଗରୀ କୌଶଳ, ଆଧୁନିକତା  ଓ ପ୍ରଗତିର ବାଟ ଫିଟାଏ ନାହିଁ ବରଂ ପ୍ରଗତି ସହିତ ସାଥିଟିଏ ହୋଇ ନିଜେ ବିକଶିତ ହୁଏ (Culture & Modernity) । ମନେହୁଏ କୁନ୍ଦେରା ଏହା କହିବାକୁ ଚାହାଁନ୍ତି ଯେ ମୂଢ଼ତା ବିହୀନ ଏକ ସମୟ ବା ଯୁଗର ଅସ୍ତିତ୍ୱ କଳ୍ପନା କରିବା ପ୍ରବୁଦ୍ଧ (Enlightenment) ଚେତନା ପକ୍ଷରେ ଭ୍ରମାତ୍ମକ । ମୂଢ଼ତାର ବିବିଧତା ଓ ବୈଚିତ୍ର୍ୟ ଅଛି, ତେବେ ପ୍ରତ୍ୟେକ ଯୁଗରେ ଅଛି କିଛି ଗୌରବାବହ ଘଟଣା ଏବଂ ମଧ୍ୟ ମୂଢ଼ତା । ଉପନ୍ୟାସକାର ଏ ଦୁଇଟିର ସଦ୍ୟତମ ଦୃଶ୍ୟ ବିଷୟରେ ସଚେତନ ହେବା ଭଲ (Ibid)  । Richard Rorty ଏ ପ୍ରସଙ୍ଗରେ କହୁଛନ୍ତି But it is a job which can only be undertaken with a whole heart

by someone who is untrolubled by dreams of an ahistorical framework within which human history is enacted, a universal human nature by reference to which history can be explained or a far off divine effect toward which history moves. କିଶୋରୀ ଚରଣ ଏହିପରି ଏକ ଇତିହାସର ଫ୍ରେମ୍ ଭିତରେ ନିଜକୁ ବାନ୍ଧି ରଖି ଦେଇଛନ୍ତି । ଇତିହାସ ଯେଉଁ ଅନାଗତ ଦିବ୍ୟତାର ମୋହ ଆଡ଼କୁ ଅଗ୍ରସର ହେଉଛି ମଣିଷର ପ୍ରବୃତ୍ତି ସେଥିରେ ପ୍ରତିଫଳନଜନିତ କି ଆଶା ସଞ୍ଚାର କରେ ? ଅବଶ୍ୟ ଲେଖକ ସମୟର ପ୍ରବୃତ୍ତିକୁ ଦୃଶ୍ୟମାନ କରାଇବେ । କେହି କହିବେ ସେ ଭବିଷ୍ୟତବିଦ୍ ନୁହଁନ୍ତି ବା ନୁହଁନ୍ତି ସନ୍ଥ ଯେ କି ବାଟ ଦେଖାଇବେ । ମୂଢ଼ମାନଙ୍କର ବିଚିତ୍ର ସଂସାରରେ ସାଧାରଣ କବି ଶୈଳଜା ପଣ୍ଡା 'ବାଣୀସନ୍ତାନ' ପୁରସ୍କାର ପାଇବା ବେଳେ ପ୍ରତିଭାସମ୍ପନ୍ନ ଓଡ଼ିଶୀ ନୃତ୍ୟଶିଳ୍ପୀ ମଞ୍ଜୁଶ୍ରୀ ଆନ୍ତର୍ଜାତୀୟ ନୃତ୍ୟ ଉତ୍ସବ ପାଇଁ ମନୋନୀତ ହୋଇପାରେ ନାହିଁ । ଅଥଚ ଜଣେ ସାଧାରଣ ନୃତ୍ୟଶିଳ୍ପୀ ବଙ୍ଗାଳୀ ଯୁବତୀ ଛନ୍ଦା ମନୋନୀତ ହୁଏ । ମୂଢ଼ ଅମଲାତନ୍ତ୍ରର ମୂଢ଼ତା 'ସ୍ୱର୍ଗସୀମା' ସ୍ପର୍ଶ କରିପାରେ, ଏଥିରେ ବିଚିତ୍ରତା କେଉଁଠି ? ଅମଲା ଶାହୀ ରାଜନୀତି ହାତୀକୁ ମୂଷା ଓ ମୂଷାକୁ ହାତୀରେ ପରିଣତ କରିବାରେ ଯେଉଁ ଓସ୍ତାଦି କୌଶଳ ଶିକ୍ଷା କରିଛି ସେଥିରେ ପ୍ରତିଭାର ବିଜୟକୁ ସ୍ୱାଗତ କରିବା ଏକ ଅସମ୍ଭବ ପଦକ୍ଷେପ ବୋଲି କୁହାଯିବ ।

କିଶୋରୀବାବୁ ଓଡ଼ିଆ ଉପନ୍ୟାସରେ ଆଧୁନିକ ବ୍ୟକ୍ତିବାଦୀ ଚିନ୍ତାକୁଶଳତାର ଜଣେ ଦକ୍ଷ ଶିଳ୍ପୀ । ତାଙ୍କର ଚରିତ୍ରମାନେ ଉଚ୍ଚବିତ୍ତ ଓ ମଧବିତ୍ତ ସମ୍ପନ୍ନ ହେଲେ ହେଁ ପ୍ରଥମଟିର ବର୍ଣ୍ଣନାରେ ସେ ଉତ୍କର୍ଷ ପ୍ରକଟନ କରନ୍ତି ଅଧିକତର । ସାଂପ୍ରତିକ ସମାଜ ବ୍ୟକ୍ତିମୂଳ ସଭ୍ୟତା, ବ୍ୟକ୍ତିଆଧାରିତ ଆମର ସମସ୍ତ ବିଚାର । ଏଥିରୁ ଭବିଷ୍ୟତ ପାଇଁ କୌଣସି ସାହାରା ରଖିବା ସମ୍ଭବ ନୁହେଁ, ଏହି ସତ୍ୟଟି ପ୍ରତିପନ୍ନ ହୁଏ । ବ୍ୟକ୍ତିମୁଖିନତା ଯେଉଁଠି ଚରମ ଓ ପରମ ଅବଲମ୍ବନ ହୁଏ, ସେଇଠି ଭବିଷ୍ୟତ ହୁଏ ଏକ ଗତାୟୁ ମୂଲ୍ୟବୋଧ, ଏକ ନିରର୍ଥକ ଆଶ୍ରୟ । ଏ ସ୍ଥଳରେ ବ୍ୟକ୍ତିର ସଂପୃକ୍ତି ତେବେ କାହା ସହିତ ? କାହାକୁ ଆଶ୍ରା କରି ଭବିଷ୍ୟତ ଗଢ଼ି ଉଠିବ ? ଭଗବାନ ? ଦେଶ ? ନା ବ୍ୟକ୍ତି ? ଉତ୍ତରଟି ହେଉଛି ବ୍ୟଙ୍ଗାତ୍ମକ, ଉପହାସକର । ଲେଖକ କିଶୋରୀଚରଣ କିମ୍ବା କେହି ବ୍ୟକ୍ତି ବିଶେଷ ଏହାର ଉତ୍ତର ଦେଇପାରିବେ ବୋଲି ଆଶା କରିବା ସମୀଚୀନ ହେଉନାହିଁ, କାରଣ ଏଠାରେ ସାଧାରଣ ବା ସାର୍ବଜନୀନ ବୋଲି ଯେଉଁ ପ୍ରାଚୀନ ପ୍ରତ୍ୟୟଟି କାର୍ଯ୍ୟରତ ଥିଲା ତାହା ଏବେ ଉପଦ୍ରୁତ ଏକ ମୂଲ୍ୟବୋଧ । ତେବେ କିଶୋରୀ ଚରଣ କୁହନ୍ତି କ'ଣ ? ସେ କୁହନ୍ତି, ଏହି ବ୍ୟକ୍ତିଚରିତ୍ରମାନେ ନିଜକୃତ ଖୋସାଟିରେ ଆବଦ୍ଧ, ସେମାନେ ନିଜ ନିଜର ବିଶ୍ୱ ତିଆରିରେ ପ୍ରବୃତ୍ତ, ସେମାନେ ଯେଉଁ ଜୀବନ ବଞ୍ଚନ୍ତି, ତା'ର ମୂଳ ପ୍ରେରଣାର ସୂତ୍ର ନିହିତ ଅଛି ସେମାନଙ୍କ ଯୌନପଣରେ । ସେହି ପ୍ରବୃତ୍ତିଟିର ଉଦ୍‌ଭାସନ ଘଟିଛି ସେମାନଙ୍କ ବ୍ୟକ୍ତିତ୍ୱର ଭିନ୍ନ ଭିନ୍ନ ବିଭାରେ । ଯୌନ ପ୍ରବୃତ୍ତିଟି

ମୌଳିକ ଓ ବାଧ୍ୟ ଆକାଂକ୍ଷା ହେବା ପରିପ୍ରେକ୍ଷୀରେ ଜୀବନର ଅନେକ ଗୁଣର ନିୟନ୍ତ୍ରଣକାରୀ ଶକ୍ତି ହୋଇପାରେ ଏବଂ ତା'ର ରୂପାନ୍ତରଣ ପ୍ରକ୍ରିୟା ଦ୍ୱାରା ଜୀବନର ବହୁତଳ ପରିବର୍ତ୍ତନ ଘଟିପାରେ । ବିଦେଶିନୀର ସୁନୀତି ପକ୍ଷରେ ଏ ସତ୍ୟର ଝଲକ ଦେଖାଯାଏ ନାହିଁ କି ? ଅବଶ୍ୟ ସୁନୀତିର ଯେଉଁ ପାଶ୍ଚାତ୍ୟ ସଂସ୍କୃତିର ସଂସର୍ଗ ଘଟିଛି ସେଥିରେ ଆତ୍ମପରିଚୟ ସମ୍ପର୍କିତ ଦ୍ୱନ୍ଦ୍ୱ କିଛି କମ୍ ନୁହେଁ । ଆଧୁନିକତାର ଏଇ ନୂତନ ଦ୍ୱନ୍ଦ୍ୱଟି ସୁନୀତି କ୍ଷେତ୍ରରେ ଆନ୍ତର୍ଜାତିକ ସଂସ୍କୃତିର କେନ୍ଦ୍ରବିନ୍ଦୁରେ ତାକୁ ଅବସ୍ଥାପିତ କରିଛି ଓ ତା'ର ମନରେ ଏକ ସ୍ୱାଭାବିକ ଚାରିତ୍ରିକ ବୈଶିଷ୍ଟ୍ୟ ପ୍ରତିପାଦନ କରିଛି । ବାହୁଲ୍ୟ ହେବ ନାହିଁ, ଏ ପ୍ରସଙ୍ଗଟିରୁ ମନ୍ତବ୍ୟର ରେଖାଙ୍କନ ପାଇଁ ଯେ ଏପରି ସାଂସ୍କୃତିକ ପରିଚୟର ଅବଗାହୀ ବ୍ୟକ୍ତିମାନେ ପ୍ରଗତିର ସହାୟକ । ନାରୀ ତା'ର ବ୍ୟକ୍ତିକ ସ୍ୱାଧୀନତା ଓ ଗୌରବବୋଧର ସୁରକ୍ଷା କରିବ, ଆବଶ୍ୟକ ହେଲେ ସେ ଏକାଧିକ ପତି ବରଣ କରିବ, ପତ୍ନୀତ୍ୱର ସ୍ୱୀକାର ମିଳିବାଯାଏ । ତାହାକୁ ବିଶୁଦ୍ଧ କାମତାଡ଼ିତ ଭାବପ୍ରବଣତା କହି ଯୌନଇଚ୍ଛାକୁ ମୌଳିକ ପ୍ରବୃତ୍ତି ବା ଜୀବନ ଶୃଙ୍ଖଳାର ସୂତ୍ରରେ ବାନ୍ଧି ହେବା ଏକଦିଗଦର୍ଶୀ ହେବ । ଶ୍ରୀଯୁକ୍ତ ଦାସଙ୍କ ବର୍ଣ୍ଣନା କୌଶଳରୁ ଏଇ ଭ୍ରମ ସୃଷ୍ଟି ହେବା ବିଚିତ୍ର ନୁହେଁ । 'ତୁମ ଆମ ଶତାବ୍ଦୀ'ର ରାମନାଥ ଓ ତା'ର ଟ୍ରେନିଂ ସାଥୀ ବଙ୍ଗାଳୀ ଭଦ୍ରମହିଳା ବିଜୁ ଯାହା ପ୍ରଦର୍ଶନ କଲେ ପରସ୍ପରର ସାମୟିକ ଉତ୍ତେଜନାରେ ତାହା ଅସ୍ୱାଭାବିକ ନୁହେଁ, ତାହା ମାନବିକ ଦୁର୍ବଳତାର ଏକ ସଙ୍କେତ । ଏଥିରେ ମୂଲ୍ୟବୋଧର ଅପମୃତ୍ୟୁ ଟାଣିବାର ଅର୍ଥ ମଣିଷକୁ ସ୍ୱର୍ଗ ରାଜ୍ୟର ସନ୍ତାଟିଏ ବୋଲି ମନେ କରିବା ହେବ । ସୌଭାଗ୍ୟବଶତ କିଶୋରୀବାବୁ ସେ ଦ୍ୱନ୍ଦ୍ୱଠାରୁ ବହୁ ଦୂରରେ ।

ସାହିତ୍ୟ ବଦଳିବ । ବଦଳିବା ହିଁ ପ୍ରଗତି ଓ ତାହା ଅତୀତରୁ ସ୍ୱତନ୍ତ୍ର । ସେପରି ସ୍ୱାତନ୍ତ୍ର୍ୟ ସହିତ ପାଠକୀୟ ଚରିତ୍ରର ଓ ବିଚାରବୋଧର ସମାନ୍ତରାଳ ଗତି ବ୍ୟତୀତ ବଦଳିବାର ସ୍ୱାଦ ଲଭ୍ୟ ହେବ ନାହିଁ । କଳାର ପରିବର୍ତ୍ତନ ପରିବର୍ତ୍ତନଶୀଳ ଜୀବନବୋଧ ତୁଲ୍ୟତାରେ ଗତିଶୀଳ ହେବା ଆବଶ୍ୟକ । ସୁଧୁ ଆଙ୍ଗିକରେ ଏହାର ପ୍ରତିଫଳନ ହେବ କଳାର ହଟକାରିତା । ସାମଗ୍ରିକ ରୂପାନ୍ତର ବ୍ୟତୀତ କଳାର ପରିବର୍ତ୍ତନଶୀଳତା ସମ୍ଭବ ନୁହେଁ । ଏ ପରିପ୍ରେକ୍ଷୀରେ କଳା ବା ସାହିତ୍ୟର ଲକ୍ଷ୍ୟ ହେବ 'ଫଳପ୍ରସୂ ଉପଲବ୍ଧି' । ସ୍ରଷ୍ଟାର ଗଭୀର ପ୍ରତ୍ୟକ୍ଷଭୂତ ଧାରଣା ବିନା ଏ ପରିବର୍ତ୍ତନର ଶୁଭାଭିଯାନ ଅସମ୍ଭବ । ଓଡ଼ିଆ ଉପନ୍ୟାସ ଜଗତରେ ଶ୍ରୀଯୁକ୍ତ ଦାସ ଏହି ଦୃଷ୍ଟିରୁ ଏକକ, ବ୍ୟକ୍ତି ତା'ର ନିଜସ୍ୱ କାମନାବାସନାର ପ୍ରଭୁ, ସେଥିରେ କେହି କୌଣସି ଆଳରେ ଅଙ୍କୁଶ ପ୍ରୟୋଗ କରିବା ଏକ ଗର୍ହିତ କାର୍ଯ୍ୟ । ବ୍ୟକ୍ତିପ୍ରଧାନ ସଂସ୍କୃତିର ପ୍ରସାର ମୂଳରେ ବ୍ୟକ୍ତିଜୀବନର ଦୃଶ୍ୟଟିକୁ ଅବାନ୍ତର ମୂଲ୍ୟବୋଧ କହି ଏଡ଼େଇ ଦେଇ ହେବ ନାହିଁ । କିଶୋରୀବାବୁ ତାଙ୍କର ଆପୂର୍ବପଶ୍ଚିମ ଅଭିଜ୍ଞତାରୁ ଏହା କହିବାକୁ ଉଦ୍ୟମ କରନ୍ତି ବୋଲି ମନେହୁଏ ।



# କବି କିଶୋରୀ ଚରଣ

*ଡକ୍ଟର ପ୍ରସନ୍ନ କୁମାର ମିଶ୍ର*

କଥାକାର କିଶୋରୀ ଚରଣ କବିତା ଲେଖିବା ଆଦୌ ଆଶ୍ଚର୍ଯ୍ୟଜନକ ସମ୍ବାଦ ନୁହେଁ । ପୂର୍ବରୁ ଅନେକ କଥାଶିଳ୍ପୀ କବିତାର ଅର୍ଘ୍ୟ ଅର୍ପଣ କରି ସାହିତ୍ୟିକ ଜୀବନର ଶୁଭାରମ୍ଭ କରିଥିବା ଦୃଷ୍ଟାନ୍ତ ରହିଛି ।

କିଶୋରୀ ଚରଣ ଜଣେ ବରିଷ୍ଠ ଓ ସମ୍ମାନିତ କଥାଶିଳ୍ପୀ । କିନ୍ତୁ ସେ ସ୍ୱୀକାର କରିଛନ୍ତି - ''କବିତାରେ ହିଁ ମୋର ପ୍ରଥମ ସାହିତ୍ୟ ସର୍ଜନା, ନିଜକୁ ବାଢ଼ିବାର ପ୍ରୟାସ ।'' ସମ୍ଭବତଃ 'ନିଜକୁ ବାଢ଼ିବା'ର ଏଇ ମାଧମଟି ତାଙ୍କୁ ସନ୍ତୁଷ୍ଟ କରିପାରିଲା ନାହିଁ, ଅଥବା 'ନିଜକୁ ବାଢ଼ିବା' ଟାକୁ ସେ ସାହିତ୍ୟ କ୍ଷେତ୍ରରେ ଗୌଣ ମନେ କଲେ !

ମୋର ଯାହା ମନେ ହୁଏ କଥାସାହିତ୍ୟ ଏମିତି ଏକ କ୍ଷେତ୍ର ଯହିଁରେ ସ୍ରଷ୍ଟା ନିଜକୁ ବ୍ୟତୀତ କରି ଜଗତର ହସଖୁସି, ବ୍ୟଥାବେଦନା ପ୍ରକାଶ କରି ସନ୍ତୋଷ ପାଇପାରିବ । କାରଣ 'କଥା'ର ବିସ୍ତାରିତ କାନ୍‌ଭାସ୍‌ରେ ଲେଖକର ଆତ୍ମକଥା ବା ଦୁଃଖ ବା ବିଷାଦର ଝଲକ ରହିବା ଆଦୌ ଜରୁରୀ ନୁହେଁ । ସଂପୂର୍ଣ୍ଣ ଅନ୍ତରାଳରେ ରହି କାୟାମାନଙ୍କୁ ଛାୟା କଣ୍ଢେଇ ପରି ନଚେଇ ମାୟା ସୃଷ୍ଟି କରିପାରିବାର ସୁଯୋଗ 'କଥା'ରେ ନିଶ୍ଚୟ ଅଛି । କିନ୍ତୁ ସୃଷ୍ଟିର ବିଷୟବସ୍ତୁ ଯେତେ ନୈର୍ବ୍ୟକ୍ତିକ ଦିଶିଲେ ମଧ କବି ଆପଣାକୁ ସଂପୂର୍ଣ୍ଣ ଭାବେ 'ବ୍ୟତୀତ' ରଖିବା ସମ୍ଭବ ନୁହେଁ, ବୋଧେ ସେଇ କାରଣରୁ କିଶୋରୀ ଚରଣ କଥାକୁ ଆପଣେଇ ନେଇଛନ୍ତି ।

କିନ୍ତୁ କବିତାରୁ କିଶୋରୀ ଚରଣ ସଂପୂର୍ଣ୍ଣ ସନ୍ନ୍ୟାସ ନେଇ ନାହାନ୍ତି । ବୃତ୍ତିର ଚାପରେ ପ୍ରବାସୀ ପାଲଟିଥିବା ବ୍ୟକ୍ତି ଯେପରି ଛୁଟି ମିଳିଲେ ଦିନେ କି ଓଉଟେ ପାଇଁ ହେଲେ ବି ନିଜର ଜନ୍ମ ମାଟିକୁ ଫେରିଆସେ ଓ ଉଲ୍ଲସିତ ହୁଏ, କିଶୋରୀ ଚରଣ ସେଇପରି ନିଜ ପାଇଁ ନିଃଶ୍ୱାସଟିଏ ନେବାକୁ ତାଙ୍କର କବିସତ୍ତା ନିକଟକୁ ଫେରିଯାଆନ୍ତି । ଫଳରେ କବିସତ୍ତା ସହିତ ତାଙ୍କର ଆତ୍ମୀୟତା ବଜାୟ ରହିଛି । ପ୍ରସ୍ତୁତ କବିତା ସଂକଳନଟିରେ ମେ' ୧୯୬୮ରେ ଲିଖିତ କବିତା ଅଛି, ତା ସହିତ ଗୁନ୍ଥା ହୋଇଛି ୧୯୯୪ରେ ଲିଖିତ କବିତା, ଯାହା ପ୍ରମାଣ କରୁଛି ତାଙ୍କର କବିତା ସହିତ ଦୀର୍ଘକାଳର ଅତୁଟ ସଂପର୍କ ।

'ସଂଜବତୀ ଓ ଅନ୍ୟାନ୍ୟ କବିତା'ରେ ସଂକଳିତ କବିତାଗୁଡ଼ିକ ପଢ଼ିବା ଅବସରରେ କବି କିଶୋରୀଚରଣଙ୍କୁ ଠାବ କରିବା ମୋ ପକ୍ଷରେ ବାସ୍ତବିକ ଗୋଟିଏ ମହତ୍ତ୍ୱପୂର୍ଣ୍ଣ ଅନୁସନ୍ଧାନ । ଆତ୍ମକେନ୍ଦ୍ରୀ, ସୁବିଧାବାଦୀ ନବ୍ୟ ମଧ୍ୟବିତ୍ତଙ୍କ ଜଟିଳ ଜୀବନକଥା ଏକାନ୍ତ ନୈର୍ବ୍ୟକ୍ତିକ ଢ଼ଙ୍ଗରେ ଲେଖି ଆସୁଥିବା ଗାଳ୍ପିକ କିଶୋରୀ ଚରଣଙ୍କଠାରୁ କବିଟି ସତରେ କେତେ ପୃଥକ୍, ତା ଜାଣିପାରିଲି । ମନରେ ପ୍ରଶ୍ନ ଉଠିଲା, ବିବେଚନା ଜାଗିଲା । ଭାବିଲି :

- ବ୍ୟକ୍ତି ଭିତରର କୋମଳତର ସତ୍ତାଟି ବୋଧହୁଏ କବି ।
- ସ୍ପର୍ଶକାତର ସତ୍ତାଟି ବୋଧହୁଏ କବି ।
- ଜାତି-ଧର୍ମ-ବର୍ଣ୍ଣ ଭେଦ ମାନୁନଥିବା ସତ୍ତାଟି ବୋଧହୁଏ କବି ।
- ସେଇ ସତ୍ତାଟି ବୋଧହୁଏ କବି ଯିଏ ମାନବିକତାର ନିଜେ ଏକ ନିଦର୍ଶନ ।
- ସନ୍ନ୍ୟାସୀ ପରି ଦିଶେ, କିନ୍ତୁ ଯେଉଁ ସତ୍ତାଟି ସନ୍ନ୍ୟାସୀ ନୁହଁ ସେଇ ନିଶ୍ଚୟ କବି ।
- ସଂସାରୀ ପରି ଲାଗେ କିନ୍ତୁ ଯେଉଁ ସତ୍ତାଟି ଆଦୌ ସଂସାରୀ ନୁହଁ ସେଇ ବୋଧହୁଏ କବି ।
- ଆଚରଣରେ ଅସାମାଜିକ ଲାଗେ, ଅଥଚ ସମାଜର କୁଶଳ କାମନାରେ ଯେଉଁ ସତ୍ତାଟି ଆପଣାର ସୁଖସ୍ୱାଚ୍ଛନ୍ଦ୍ୟ ମୂର୍ଚ୍ଛି ନିରତ ଛଟପଟ ହେଉଥାଏ ସେଇ ବୋଧେ କବି ।

ବାସ୍ତବିକ କିଶୋରୀ ଚରଣଙ୍କ କବିସତ୍ତାଟି କେଢ଼େ ନମନୀୟ, ନିରପରାଧ ଓ ସାମାଜିକ ଅଙ୍ଗୀକାର ଯୋଗୁଁ ବେଦନାମୟ ତା' ମୁଁ ଆବିଷ୍କାର କରିବାକୁ ସମର୍ଥ ହୋଇପାରିଛି ବୋଲି ମୋର ଧାରଣା ।

ଅବଶ୍ୟ କବିତା କ୍ଷେତ୍ରରେ କିଶୋରୀ ଚରଣ ଜଣେ ସଚେତନ ଶିଳ୍ପୀ ସଦୃଶ କଥାବାର୍ତ୍ତା କରିନାହାନ୍ତି । କିନ୍ତୁ ବେଳେବେଳେ ଲାଗେ ସତେଯେମିତି କବି କିଶୋରୀ ଚରଣ କାବ୍ୟ କର୍ମର ପ୍ରଚଳିତ ବ୍ୟାକରଣ ଉଲ୍ଲଙ୍ଘନ କରିବାକୁ ପ୍ରୟାସୀ । ସଂକଳନର 'ପାଚିରି ଉପରେ ବସି' କବିତାଟିକୁ ଦେଖନ୍ତୁ । ଆତ୍ମପକ୍ଷକୁ ଉପହାସ କରିବା ଛଳରେ ସେ କିପରି ଆଧୁନିକ ସୁବିଧାବାଦୀ ଭାରତୀୟ ନାଗରିକଙ୍କୁ ପରିହାସ କରିଛନ୍ତି । ସ୍ୱଦେଶର ସାମାଜିକ ରାଜନୈତିକ ଘଟଣା ପ୍ରତି ବୁଦ୍ଧିବାଦୀ ନାଗରିକଙ୍କ ଉଦାସୀନତା ଆମ ପାଇଁ ଏକ ନବ୍ୟ ନୈରାଶ୍ୟ ସୃଷ୍ଟି କରିଛି ଏଥିରେ ସନ୍ଦେହ ନାହିଁ । 'ପାଚେରି ଉପରେ ବସି ଚଣା ଚୋବାଇବା' ଏବଂ ନିରାପଦ ଦୂରତ୍ୱରେ ବସି ଛେନାରୁ ବା 'ବାଦାମରୁ ଚୋପା ଛଡ଼ାଇବା' ଆମ ଶିକ୍ଷିତ ନାଗରିକଙ୍କ ଚରିତ୍ର ହୋଇଥିବାରୁ 'ନୈରାଶ୍ୟ' ବହୁଗୁଣିତ ହୋଇଛି ଆମ ସମୟରେ । 'ଆତ୍ମୋନ୍ନତି' ସାଧନ କେବେ ଏକ ସୁସ୍ଥ ସାମାଜିକ ଦର୍ଶନ ହୋଇନପାରେ । କବି ଶିକ୍ଷିତ ନାଗରିକଙ୍କ ଜୀବନ ଦର୍ଶନକୁ ଆକ୍ଷେପ କରି ଲେଖିଛନ୍ତି, ଯଥା -

''ସମୟ ଗାଲିଚା ହେବ, ଚତୁଷ୍କୋଣ କୋଠା ଏବଂ ଟଙ୍କାର ଗଣିତ

ମୋଟା ହେବ ପେଟା ହେବ ... ।''

ଏଥିରେ ଯେଉଁ ନୈରାଶ୍ୟ ପ୍ରଚ୍ଛନ୍ନ ଅଛି, ତା' ଜଣେ ହେତୁବାଦୀ କବିର ସାମାଜିକ କୁଶଳ କାମନାରୁ ପ୍ରଜାତ । ଦିହରେ ଧୂଳିମଳି ଲାଗୁ ନ ଥିବା ସ୍ୱକାଳର ବୁଦ୍ଧିଜୀବୀଙ୍କୁ ସେ ପରାମର୍ଶ ଦେଇଛନ୍ତି, ଯଥା :-

''ତଥାପି ମୋ ବଂଧୁଗଣ ଆସ ଥରେ ଅମାନିଆ ହେବା''

''ପାଚିରି ଉପରେ ବସି ମର୍କଟ ସାଜିବା ।''

ଏଭଳି ଉକ୍ତି ମଧ୍ୟରେ ତାଙ୍କର ଅବଶୋଷ ଓ ବିଦ୍ରୋହ ରୂପାୟିତ ହୋଇଛି ।

୧୯୬୮ରେ ଲିଖିତ କବିତା 'ନେତାଙ୍କ ପ୍ରତି' କବିତାରେ କାବ୍ୟ ନାୟକ ଗୋପାଳ ମାହାନ୍ତି ସୁବିଧାବାଦୀ ଶିକ୍ଷିତ ସଂପ୍ରଦାୟର ଏକ ପ୍ରତୀକ ଚରିତ୍ର । ସେ କାଦୁଅରେ ପଶିବାକୁ ଚାହେଁ ନି କି ଗୋଡ଼ ଧୋଇବାକୁ ଚାହେଁ ନି ।

''ନିଅ ମୋର କ୍ରୋଧ ଓ କାନ୍ଦଣା, ନିୟମିତ ଭେଟି ଏବଂ ଭୋଟ୍

ନିଅ ସାର୍ ନିଅ ଆଜ୍ଞା'' - ରେ ତା'ର ଉଦାସୀନତା ସ୍ପଷ୍ଟ ।

ପ୍ରତିକ୍ରିୟା ପ୍ରକାଶ ନ କରିବା ତାର ଅଭ୍ୟାସରେ ପରିଣତ ହୋଇଯାଇଛି । କିଶୋରୀ ଚରଣ ଆତ୍ମପକ୍ଷର ଅନୁଶୀଳନ କରି କହିଛନ୍ତି, ଯଥା :-

''କିନ୍ତୁ ଆମେ ଭଲପାଉ ତନ୍ଦ୍ରା ଓ ତନିମା

ମଧ୍ୟମ ଗତିର ସୁଖଶାନ୍ତି ଶ୍ୟାମଳିମା'' ।

ନେତୃବର୍ଗ ତଥା ଆଧୁନିକ ସମ୍ଭ୍ରାନ୍ତମାନଙ୍କୁ ସନ୍ତୁଷ୍ଟ କରିବାକୁ ଯାଇ ବୁଦ୍ଧିଜୀବୀଙ୍କୁ 'ଛିନ୍ନମସ୍ତା' ହେବାକୁ ପଡୁଛି । ଭାରତବର୍ଷର ଦେବୀ ପରମ୍ପରାରେ ସେଇ ହିଁ 'ଛିନ୍ନମସ୍ତା' ଯିଏ ନିଜର ମୁଣ୍ଡକାଟି ନିଜର ରୁଧୀର ନିଜେ ପାନ କରିଥାଏ । ଏଇପରି ଏକ ଦୟନୀୟ ଅବସ୍ଥା ଉପୁଜିଛି ବୁଦ୍ଧିଜୀବୀଙ୍କ କ୍ଷେତ୍ରରେ । କବି କ୍ଷୋଭର ସହିତ କହିଛନ୍ତି, ଯଥା :-

''ମୁଣ୍ଡ ଗଲେ ଯାଉ ।

ତଥାପି ଘୋଷଣା କରେ ଅବିନାଶୀ ଅବଶିଷ୍ଟ ଖଣ୍ଡ'' ।

'ଆତ୍ମାକୁ ଅବିନାଶୀ' ଘୋଷଣା କରି ଭାରତୀୟ ପ୍ରାଚୀନ ଶାସ୍ତ୍ର (ଯେପରି 'ଗୀତା'ରେ ଶ୍ରୀକୃଷ୍ଣ) ମାରହାଣ୍ ସପକ୍ଷରେ ପ୍ରବର୍ତ୍ତାଇଛି । ଆଧୁନିକ ରାଜନୈତିକ ଯୁଦ୍ଧରେ ଭୋଟର୍‌ମାନେ ନିଜ ମୁଣ୍ଡିଟିମାନ ହିଁ ଦାନ କରି ଆସିଛନ୍ତି । ତାଙ୍କର ଭୋଟ୍‌ଗୁଡ଼ିକ କିଭଳି ଅକାମୀ ହୋଇଯାଉଛି ଏବଂ ତାଙ୍କରି ସ୍ୱାର୍ଥର ବିରୋଧରେ ଯାଉଛି ତାର ସଙ୍କେତ ଦେଇଛନ୍ତି କବି ।

ଅଧିକାଂଶ କବିତାର ଭାଷାରେ ବିଦ୍ରୂପ ପ୍ରଚ୍ଛନ୍ନ ରହିଛି । 'ଅଣ୍ଡାଘର', 'ଗୁଳଗୁଳି', 'ଦଶଭୁଜା' ଇତ୍ୟାଦିରେ ଏହି ବିଦ୍ରୂପ ଅଧିକ ସ୍ପଷ୍ଟ । 'ଫାଙ୍କା ବାଉଁଶରୁ ଶୁଭେ ବଂଶୀସ୍ୱନ'

(ଥଣ୍ଡାଘର) ବା 'ଦଶମୁଣ୍ଡ ଯନ୍ତ୍ରଣାକୁ ଜାବୁଡ଼ି ଧରିବି' (ଦଶଭୁଜା) ବା 'ଲୁହାଛଡ଼ ମୋର ଖଡ଼ା ହୋଇଥିବ, ବୋଲାଇବ ମୁହିଁ ରଜା' (ଅସ୍ଥି) ପ୍ରଭୃତି ଧାଡ଼ିଗୁଡ଼ିକ ମନେରଖିଲା ଭଳି ନୁହେଁ କି ?

ତେବେ ୧୯୭୯ରେ ନୂଆଦିଲ୍ଲୀରେ ଲିଖିତ 'ଖରାପଡ଼ିଆ'ର ଗଢ଼ଣ ଓ ବକ୍ତବ୍ୟ ମୋତେ ଅଭିଭୂତ କରିଛି । ''ତୁଚ୍ଛା ଖରାପଡ଼ିଆରେ'' କବିଙ୍କ ଦୃଷ୍ଟି ପଡ଼ିଛି ''ତିନିଟା ହାଫ୍‌ପ୍ୟାଣ୍ଟ ପିନ୍ଧାବାଳକ / ଏବଂ କେତେଗୁଡ଼ିଏ ଚଢ଼େଇ''ଙ୍କ ଉପରେ ଏବଂ କିଶୋରୀ ଚରଣଙ୍କ ମନରେ ଭାବାନ୍ତର ସୃଷ୍ଟି ହୋଇଛି । 'ଛାଟଖିଆ ଅନ୍ଧ ବୋକାଛୁଆ' ବାଳକମାନଙ୍କ ଭିତରେ କାବ୍ୟନାୟକ ଆପଣା ବାଲ୍ୟକାଳର ବେପରୁଓ୍ୱା ସମୟଟାକୁ ଆଉଥରେ ଖୋଜି ପାଇଲା ଭଳି ଲାଗୁଛି । ଯେଉଁ କାରଣରୁ କାବ୍ୟଟି 'ଗାଳି' ନ ହୋଇ ସଂସ୍ମରଣ ହୋଇଯାଇଛି ।

ଭାରତର ନବ୍ୟ ଅର୍ଥନୀତି ଗଣମଙ୍ଗଳର ଡେଙ୍ଗୁରା ପିଟୁଥିଲେ ହେଁ କାର୍ଯ୍ୟତଃ ଗଣବିରୋଧୀ ହୋଇଛି । ଦରନଙ୍ଗଳା 'ଭବିଷ୍ୟହୀନ' ବାଳକଙ୍କ କଥା ବିଚାରୁଛି କିଏ ? ତେବେ କାବ୍ୟନାୟକ ସମ୍ବେଦନାରେ ଛଳ ଛଳ, ''ଥରେ ହେଲେ କୋଳରେ ଶୁଆଇ ଆଉଁଶି ଦିଅନ୍ତା ।''

ଆପଣାର ସ୍ଥିତି ପ୍ରତି ସଚେତନ କାବ୍ୟନାୟକ କିନ୍ତୁ କିଛି କରିପାରେ ନାହିଁ । ସତେ ଅବା ସେ ଏକ ବନ୍ଧାଜୀବନର ଦୌରାତ୍ମ୍ୟ ଭୋଗୁଛି, ଯେଉଁଠି ''ଆପଣା'' ଛଡ଼ା ''ପର''ର ସ୍ଥାନ ହିଁ ନାହିଁ । କବିଙ୍କର ଅନୁଭବ, ଯଥା :-

''ଅଭିଜାତ ଦରୁଓ୍ୱାନ୍ ଖରା ଘେରିଥାଏ ମୋତେ
ଅଫିସରେ କାମ କଲା ବେଳେ ''

କାବ୍ୟ ନାୟକ ନିମନ୍ତେ ସହାନୁଭୂତି ପ୍ରକାଶର ସୁଯୋଗ ହିଁ ନାହିଁ । ଛାତିର କୋଟର ମଧ୍ୟରେ ସେ ତାର ହୃଦୟକୁ ସମ୍ଭାଳି ରଖିଛି ମାତ୍ର । ସେ ଅବସାଦଗ୍ରସ୍ତ, ମାତ୍ର ଔଦାସୀନ୍ୟ ତାର ଚରିତ୍ର ହୋଇଯାଇଛି । କବିଙ୍କ ଉକ୍ତି - ଯଥା :-

''ଚିହ୍ନିବାକୁ ହେବ ନାହିଁ
ତାଙ୍କରି ଭିତରୁ ମୋର କେହି ଗୋଟେ ପୁଅ ଥିଲା ପରା'' ।

କିଶୋରୀ ଚରଣଙ୍କ ଅନ୍ୟ ଏକ ସଫଳ ସୃଷ୍ଟି 'ଗଳିବୁଢ଼ା' ପାଠକଙ୍କ ଦୃଷ୍ଟି ଆକର୍ଷଣ କରିଥାଏ । ସହରର ସାଇବସ୍ତିର ଗଳିରେ ''ଯେଉଁଠି କୁଢ଼କୁଢ଼ ନର୍ଦ୍ଦମାର ସ୍ତୂପ ଠିଆ ହୁଏ ରାସ୍ତା ମଝିଟାରେ / ନାହିଁ ଖୋଲା ମୁହାଁ ପାଇପର ଗଜ ଗଜ ପାଣି / ପ୍ରକ୍ଷାଳନ କରୁଥାଏ / ନାନିବିଧ ପ୍ରାଣୀଙ୍କର ମୁତ ''ସେଇଠି ବୁଢ଼ାର ସନ୍ଧାନ ପାଇଛନ୍ତି କବି ''ଯିଏ ଗୋଟେ ବାପା ପରି, ରଜା ପରି'' ଲାଗନ୍ତି । କବି ସାଇମୁରବି ଭିତରେ ମହାନତା ଲକ୍ଷ୍ୟ କରିଛନ୍ତି, ଯଥା :-

''ବୁଦ୍ଧଙ୍କର ବୃଦ୍ଧ ଏବଂ ବୃଦ୍ଧଙ୍କର ବୁଦ୍ଧ / ଏଇ ମୋର ଧୂସର ଗଳିରେ ।'' ତାଙ୍କର ଉପଯୁକ୍ତ ପରାମର୍ଶ ଦ୍ୱାରା ଜୀବନ ପଥରେ ଗତି କରିବା ତରୁଣତରୁଣୀଙ୍କ ପକ୍ଷରେ ଏକ ଶୁଭାଶିଷ ସଦୃଶ -

''ଏଇ ତ ରହିଛି ମୋର ମୃତ୍ୟୁହୀନ ମୃତ୍ୟୁ
ଚେତନାର ବର୍ଷୀୟାନ୍ ବଳୀୟାନ୍ ଛାଇ ।''

କବିଙ୍କର ସମ୍ମାନବୋଧ ଅନୁରଣିତ ହୋଇଛି, ଯେତେବେଳେ ସେ କହୁଛନ୍ତି -

''ଭଗବାନ୍ ବାପା ଓ ସଂତାନ
ବଂଚିବାର ଧନମାନେ ମଧ୍ଯ
ଛାଡ଼ି ଦେଇ ମତେ ଏଠି ଚାଲିଗଲା ପରେ
ଆଉ କିଏ ଥିଲା ମୋର
ଏହି ଏକ ମୃତ୍ୟୁଂଜୟୀ ଜଗୁଆଳି ଛଡ଼ା ?''

ଆମ ସମାଜର ଏକ ପ୍ରତୀକ ଚରିତ୍ର ଭାବେ 'ଗଳି ବୁଢ଼ା' ଆମ ପାରମ୍ପରିକ ସମାଜର ଅଭିଭାବକପଣିଆର ମହାନତା କଥା ବ୍ୟକ୍ତ କରେ । ସମସ୍ତ ଆବର୍ଜନା ସତ୍ତ୍ୱେ ଆମ ପାରମ୍ପରିକ ସାଇ ସମାଜରେ ନିହିତ ଆତ୍ମୀୟତା ଆମକୁ ଅଜାଣତରେ ରକ୍ଷା କରିଥାଏ ।

ସଂକଳନରେ କେତେଗୁଡ଼ିଏ ଭିନ୍ନ ସ୍ୱାଦର କବିତା ଅଛି ଯେଉଁଗୁଡ଼ିକର ଆବେଦନ ରୋମାଣ୍ଟିକ୍ । ସେସବୁ ପାଠକ ପ୍ରାଣର କୋମଳତନ୍ତ୍ରୀରେ ଝଂକାର ସୃଷ୍ଟି କରନ୍ତି । କବିଙ୍କ ସ୍ୱୀକାରୋକ୍ତି - ''ପରିଣୀତାର ଜହ୍ନ ଦିନ କୁମାର ପୂର୍ଣ୍ଣିମାରେ କବିତାର ଭେଟି'' ଏକ କୋମଳ ଭାବନାର ସଂଚାର କରିଥାଏ । ମନେ ହୁଏ ଅନେକଙ୍କ ପରି କବି କିଶୋରୀ ଚରଣଙ୍କର ଜହ୍ନ ସହିତ ଏକ ଆବେଗଗତ ସଂପର୍କ ଅଛି ଏବଂ ତାର ଯଥାର୍ଥତା 'କୁମାର ପୂର୍ଣ୍ଣିମା'ରେ କବିତା ଭେଟିରୁ ପ୍ରତିପାଦିତ ହୁଏ । ୧୯୬୮ରେ କଲିକତାରେ ପ୍ରବାସ ଜୀବନଯାପନ କରୁଥିଲା ବେଳେ ସେ ଲେଖିଥିଲେ, ଯଥା :-

''ଜାଣିଛି କେବଳ ସେହି ଗୋଟିଏ ଜହ୍ନକୁ
ଯାହାର ଦେହରେ ଅଛି କ୍ଷତଟିଏ ।'' (ଠେକୁଆ ଚିହ୍ନିତ)

ଯାହା ତାଙ୍କ ଚେତନାକୁ କଲ୍ଲୋଳିତ କରିଛି । କବିତାଟିର ଶେଷରେ କବି ଜୀବନର ରୋମାଣ୍ଟିକ୍ ଆବେଶକୁ ସ୍ୱୀକାରି ନେଇ କହିଛନ୍ତି - ''ତାହା ବିନୁ ରାତି ନାହିଁ ।''

'ମିନିକାମନା' (୧୯୭୯)ରେ କବି ଦ୍ୱାଦଶୀ ଜହ୍ନକୁ ''ନିରକ୍ତିଆ ଗୋରା ଦେହ'' ସହିତ ତୁଳନା କରିଛନ୍ତି ସିନା କିନ୍ତୁ ଭାବଟି ସୌନ୍ଦର୍ଯ୍ୟ ଚେତନାକୁ ଆଘାତ କରେ ନାହିଁ । ଅନ୍ୟତ୍ର ସେ କହିଛନ୍ତି -

''ନାଆଁ ତା'ର ଜହ୍ନ ।
ଜୋଛନା ତା'ର ଥାଉ ବା ନ ଥାଉ ।
ପୂର୍ଣ୍ଣିମାର, ଶରତର ଜହ୍ନ
ପ୍ରଥମର ପ୍ରତିଶ୍ରୁତି, ତଥା ପୂର୍ଣ୍ଣତାର ।'' (କୋଳାହଳ ପରେ)

ଜହ୍ନ ଯେ କବିଙ୍କ ଅନୁରାଗୀ ପ୍ରଣୟ ପ୍ରତିମାର ପ୍ରତୀକ ହୋଇଯାଇଛି ଏପରି ଉକ୍ତିରୁ ତାହା ସ୍ପଷ୍ଟ ବୁଝାପଡ଼େ । ଅନ୍ୟତ୍ର ସେ କହିଛନ୍ତି, ଯଥା :-

''ଯେତେବେଳେ ଲେଖୁଛି ଏ ପୂର୍ଣ୍ଣିମାର ଗୀତ
''ଯେଉଁଥିରେ ଅଛ ତୁମେ, କାବ୍ୟ ରୂପୀ ପ୍ରଥମା ପୂର୍ଣ୍ଣିମା ।''

ଏଥିରୁ କବିଙ୍କର ଜହ୍ନ ପ୍ରତି ଆସକ୍ତି ଜଣାପଡ଼େ ।

କବିଙ୍କ ଅନ୍ତର୍ନିହିତ 'କାରୁଣ୍ୟ' ଆଉ କେତେକ କବିତାରେ ଫୁଟି ଉଠିଛି । ବ୍ୟକ୍ତିକ କି ନୈର୍ବ୍ୟକ୍ତିକ ଯାହାହେଉ ପାଠକ 'ଦୁଃଖ'ର ମୁହାମୁହିଁ ହୋଇଯାଏ । କବିଙ୍କ ଉକ୍ତି, ଯଥା :-

''କାହିଁକି ମୋ ଝିଅ ଚାଲିଗଲା ଅଧା ବୟସରେ
ମଧୁରିଆ ଗପ ଲେଖୁ ଲେଖୁ ?'' (ଥକାମନ)

ଏକ ପ୍ରଶ୍ନ ନୁହଁ କି ଅଭିଯୋଗ ନୁହେଁ । ତା' ଆତ୍ମାର ବିଳାପ ଯାହା ପାଠକକୁ ମଧ ଅଶ୍ରୁସିକ୍ତ କରେ ।

''କଦାପି ସେ ଓହ୍ଲେଇବ ନାହିଁ,
ଓହ୍ଲେଇବ ନାହିଁ ଏଇ ମୁମୂର୍ଷୁ ମର୍ତ୍ତ୍ୟକୁ'' (ବିହଂଗମ)ରେ ସେଇ ଭାବ ପ୍ରକଟିତ ହୋଇଛି । ବ୍ୟଥିତ ଆତ୍ମାର ରାଗିଣୀ ଭଳି । 'ମୃତ୍ୟୁ' ସଂବନ୍ଧୀୟ ଦାର୍ଶନିକତା ବଡ଼ କଥା ନୁହେଁ ଭାରତବର୍ଷରେ, ବଡ଼କଥା ହେଉଛି ଅବଶିଷ୍ଟ ଜୀବନ ପାଇଁ ଏକ ସାନ୍ତ୍ୱନା ପ୍ରସ୍ତୁତ କରିବା । କବିଙ୍କ ଉକ୍ତି - ''କହିବ କି ରଖ ତୁମ ମିଛ ଅମୃତକୁ / ମୁଇଁ ମଧ ପ୍ରାଣୀଟିଏ ଭୁକ୍ତ ଓ ଭୋକିଲା'' ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ।

ଏଇ ପ୍ରସଙ୍ଗରେ ''ସେଇ ସମୁଦ୍ର'' କବିତାଟି ଦୃଷ୍ଟି ଆକର୍ଷଣ କରେ । ପୃଥିବୀ ପରି ପ୍ରାଚୀନ ସମୁଦ୍ରର 'ଶବ୍ଦମୟ ଘୋଷା' କବିଙ୍କୁ ନାନା ଭାବେ ବିହ୍ୱଳ କରିଛି । ସମୁଦ୍ର ସମୟ ପ୍ରତି ଜୀବନ ପ୍ରତି ଅନାସକ୍ତ । ସମୁଦ୍ର କାବ୍ୟନାୟକକୁ ନିଜର ମା କଥା ମନେ ପକେଇ ଦେଇଛି, ଯଥା :-

''ଆସୁଛୁ ତୁ ପିଲାଦିନୁ, ମାଆ ଯେତେବେଳେ
ଚୁପ୍ କରିଦିଏ ମୋତେ ବିକଟାଳ ଶବ୍ଦ ତୋର ଶୁଣିବାକୁ କହି
ଏବଂ ନିଜେ ଶୋଇପଡ଼େ ।''
''ଆହା, ମାଆ ମରିଗଲା ।
ମାଆ ମରିଗଲା କାହିଁ ଅସୁରୁଣୀ ଗର୍ଜିଲା ନାହିଁ ତ ?''

ଚିରନ୍ତନ ପ୍ରକୃତିର ପ୍ରତୀକ ହୋଇଯାଇଛି ସମୁଦ୍ର, ଯାହାର ଶବ୍ଦର ଶେଷ ନାହିଁ । ''କଳାପିଠି ସମୁଦ୍ରର କ'ଣ / ଆଉ କିଛି ଚିନ୍ତା ନାହିଁ ମୋରି ଜୀବନ ଛଡ଼ା ?'' ଭଳି ଉକ୍ତି ଭିତରେ ଚିରନ୍ତନ ଜୀବନ ପ୍ରବାହ ସହିତ 'ଶବ୍ଦମୟତା''ର ଅଭିନ୍ନତା ପ୍ରତିପାଦନ କରିଛନ୍ତି କବି ।

କିଶୋରୀ ଚରଣ ପରୀକ୍ଷାମୂଳକ ଭାବେ କେତେଗୋଟି କ୍ଷୁଦ୍ର ଏକପଦୀ ବା ହାଇକୁ ରଚନା କରିଛନ୍ତି, ସେସବୁ ସଂକଳିତ ହୋଇଛି ଏଇ ସଂଜବତୀରେ । କାନାଡ଼ାରେ ଅବସ୍ଥାନ କରୁଥିବା ବେଳେ ୧୯୯୧ ମସିହାର ଶୀତଋତୁରେ ହାଇକୁଗୁଡ଼ିକ ବିରଚିତ, ୩୦ ସେପ୍ଟେମ୍ବରରୁ ୨୭ ନଭେମ୍ବର ମଧ୍ୟରେ ।

କବିତାଗୁଡ଼ିକ ଭିତରେ ଏକ ବିହ୍ୱଳଭାବ ରହିଛି । ସେଇ ବିଭୋରପଣିଆରେ ଅଛି ଏକ ବନ୍ଧନମୁକ୍ତିର ସ୍ୱାଦ । କବିଙ୍କ ଭାଷାରେ -

''ଅମାନିଆ ଆନନ୍ଦରେ କୁରୁକୁରୁ ହୋଇ<br>
ଧ୍ୱନି ଅବା ବୋଲ ମୋର ମାନିବ କାହିଁକି<br>
ଥରେ ଯଦି ମୁକୁଳି ଆସିଛି<br>
ପରାସ୍ତ ମୋ ଦେହ ମନ କୋରଡ଼ ଭିତରୁ ?'' (ବର୍ଷାର ଅନେକ ସେତୁ)

ଜାଗାଏ ସେ ଲେଖିଛନ୍ତି - ''ଗଦ୍ୟ ମୋର କେହି ନୁହେଁ'' । ତେବେ, ଏଇ ଆଲୋଚ୍ୟ କବିତାରେ·ସେ 'କବିପଣ' କଥା ହିଁ ବିଶେଷ ଭାବେ ଉଲ୍ଲେଖ କରିଛନ୍ତି -

''କାଂଦୁଛି ମୁଁ ଏଇକ୍ଷଣି<br>
ବର୍ଷା ଅନ୍ତେ ଚତୁଷ୍କୋଣ ଟେବୁଲ ମୁଠେଇ<br>
ଧନ ମୋର ଏକା ମୋର କବିତ୍ୱ କୁ ଝୁରି''

ବର୍ଷା ଏଠି ତାତ୍ପର୍ଯ୍ୟପୂର୍ଣ୍ଣ, ପ୍ରେରଣା ଓ ଜୀବନର ମନ୍ତ୍ରଦାତା ରୂପେ କବିଙ୍କୁ ବିହ୍ୱଳ କରିଛି ।

କିଶୋରୀ ଚରଣଙ୍କ ଭିତରେ କବିତ୍ୱ ପରିପୂର୍ଣ୍ଣ ହୋଇ ରହିଛି ଏବଂ 'ସଂଜବତୀ'ରେ ଗ୍ରଥିତ କବିତାଗୁଡ଼ିକରେ ତା'ର ସ୍ୱାକ୍ଷର ସୁସ୍ପଷ୍ଟ ।



# କିଶୋରୀ ଚରଣ ପ୍ରବଂଧ କଳା : ଏକ ଦୃଷ୍ଟିପାତ

*ଡକ୍ଟର ବିଜୟ କୁମାର ଶତପଥୀ*

ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କଥା ସାହିତ୍ୟକୁ ବକ୍ତବ୍ୟ ଓ ଆଙ୍ଗିକ ଦୃଷ୍ଟିରୁ ସମୃଦ୍ଧ କରିଥିବା ପ୍ରଥିତଯଶା ଗାଳ୍ପିକ କିଶୋରୀ ଚରଣ ଦାସଙ୍କ ପ୍ରବଂଧକଳାକୁ ବିଶ୍ଳେଷଣ କରିବା ହେଉଛି ଏହି ପ୍ରବଂଧର ଉଦ୍ଦେଶ୍ୟ । ସାଂପ୍ରତିକ କାଳରେ ଯେତେବେଳେ ସାହିତ୍ୟର ବିଭିନ୍ନ ବିଭାଗ ଯଥା ପ୍ରବଂଧ, ଗଳ୍ପ, ଉପନ୍ୟାସ, କବିତା, ନାଟକ ଓ ଆତ୍ମକାହାଣୀ ମଧ୍ୟରେ ଥିବା ବାଧା ବଂଧନମାନ ଅପସରି ଯାଉଛି ଓ ବକ୍ତବ୍ୟ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଫ୍ରେମ୍ ବା ପରିଧି ମଧ୍ୟରେ ବାନ୍ଧି ହେବାକୁ ଚାହୁଁ ନାହିଁ ସେତେବେଳେ କଥା ସାହିତ୍ୟରେ କିଶୋରୀ ଚରଣଙ୍କ ପରି ଅନ୍ତରୀଣ ବାସ୍ତବତାର ଚିତ୍ର ଆଙ୍କୁଥିବା ଓ କାବ୍ୟିକ ସୌନ୍ଦର୍ଯ୍ୟ ଉକୁଟାଉଥିବା ପୁଣି ଜୀବନ ଓ ଜଗତ ସଂପର୍କରେ ଭାବମଗ୍ନ ଦାର୍ଶନିକ ପରି ସ୍ୱର ଉଚ୍ଚାରଣ କରୁଥିବା ଜଣେ ଶିଳ୍ପୀଙ୍କର ପ୍ରବଂଧ କଳା ଆଲୋଚନା କରିବାର ଯେ ଯଥେଷ୍ଟ ପ୍ରାସଂଗିକତା ରହିଛି ଏଥିରେ ସନ୍ଦେହ ନାହିଁ ।

E.V. Lucasଙ୍କ ମନ୍ତବ୍ୟ ଏଠାରେ ଉଦ୍ଧାର କରାଯାଇପାରେ । ସେ କହନ୍ତି - "A good essay more than a novel, a poem, a play or treatise is personality translated into print between the lines must gleam attractive features or remain cold". ବିଶ୍ୱସାହିତ୍ୟରେ ବ୍ୟକ୍ତିନିଷ୍ଠ ପ୍ରବଂଧର ବିଶିଷ୍ଟ କାରିଗର ମଣ୍ଟେନ୍ କହିଛନ୍ତି - I am myself the subject of my book" । ପ୍ରାବଂଧିକ ଯେତେବେଳେ ନିଜେ ପ୍ରବଂଧ ବର୍ଣ୍ଣିତ ଘଟଣାର ନାୟକ ହୁଏ, ମରମୀ ଦ୍ରଷ୍ଟା ସାଜେ, ସେତେବେଳେ ତାର ପ୍ରବଂଧଗୁଡ଼ିକ ଆତ୍ମ କଥନିକା ହୋଇଉଠେ । ଏହି ଆତ୍ମ କଥନିକା ମଧ୍ୟ ଦେଇ ଉଦ୍‌ଭାସିତ ହେଉଥାଏ ସ୍ରଷ୍ଟାର ଦେଖିବା, ପରଖିବାପଣ । ଏହିସବୁ informal essays ବା ବ୍ୟକ୍ତିନିଷ୍ଠ ପ୍ରବଂଧଗୁଡ଼ିକରେ ସ୍ରଷ୍ଟାମାନସର ନିବିଡ଼ ଅନ୍ତରଂଗ ସ୍ପର୍ଶ ବାରି ହୋଇପଡ଼େ । ଏଠାରେ ବିଷୟ ବସ୍ତୁର ସୀମା ଚୌହଦି ଏସବୁ ବଡ଼ ହୋଇ ଠିଆ ହୁଏନାହିଁ । ପ୍ରାବଂଧିକ ଏଠାରେ ବିଷୟ ବିନ୍ୟାସ ପାଇଁ ନିର୍ଦ୍ଦିଷ୍ଟ କୃତ୍ରିମ ପ୍ରାଚୀରକୁ ଲଂଘିଯାଇ ସ୍ୱଚ୍ଛନ୍ଦ ଭାବରେ ବିଚରଣ କରିଥାଏ । ଫଳରେ ତା'ର ସୃଷ୍ଟି ସମ୍ଭାର ଏକରକମର ଅନ୍ତରଂଗ ଆଳାପରେ ପର୍ଯ୍ୟବସିତ ହୁଏ । ବ୍ୟକ୍ତିତ୍ୱର ଏହି ଅନ୍ତରଂଗ ସ୍ପର୍ଶ (Intimate touch of personality) ସଂପର୍କରେ Sir Thomas

Browne ଯଥାର୍ଥରେ କହନ୍ତି - "The world that I regard is myself. It is the microcosm of my own frame that I cast mine eyes on".

କଥା ସାହିତ୍ୟରେ ଅନ୍ତରୀଣ ବାସ୍ତବତାର ରୂପକାର କିଶୋରୀ ଚରଣଙ୍କ ପ୍ରବଂଧଗୁଡ଼ିକୁ ପାଠକ ସହ ଅନ୍ତରଂଗ ଆଳାପ ବୋଲି ଅଭିହିତ କରିବା ଯଥାର୍ଥ ହେବ । ଏଗୁଡ଼ିକରେ ସ୍ରଷ୍ଟା ନିଜର ବିଚାର, ବିବେଚନାକୁ ଲଦି ଦେବାଲାଗି ପ୍ରୟାସ ଜାରି ରଖିନାହାନ୍ତି ଆଦୌ । ସେ ତାଙ୍କର ଅନୁଭବଗୁଡ଼ିକୁ ବଖାଣିଛନ୍ତି ଯେଉଁ ଅନୁଭବଗୁଡ଼ିକ ତାଙ୍କୁ ବାରମ୍ବାର ଆନ୍ଦୋଳିତ ଓ ମଥିତ କରିଛି । ଯାହାକୁ ସେ ପ୍ରକାଶ ନକଲେ ରହିପାରନ୍ତେ ନାହିଁ ଆଦୌ । ଦେଖାଚାହାଁର ଦୁନିଆଁ ବା ଆମର ଚତୁଃପାର୍ଶ୍ୱର ଜୀବନ ଓ ଜଗତ ସାଧାରଣ ଦୃଷ୍ଟିରେ ଯେଉଁ ବାସ୍ତବତାର ଧାରଣା ଆଣିଦିଏ, ଅନ୍ତରୀଣ ବାସ୍ତବତାର ରୂପକାର ସେଥିରେ ଆସ୍ଥା ସ୍ଥାପନ କରିପାରନ୍ତି ନାହିଁ । ସେଗୁଡ଼ିକ ତାଙ୍କ ପାଇଁ ମାୟାର ପ୍ରଲେପ, ଛଳନା ବା ଯାହାକୁ କହିହେବ ମନ ଭୁଲାଣିଆ କଥା । ତାଠାରୁ ଉର୍ଦ୍ଧ୍ୱକୁ ଗଲେ ସ୍ରଷ୍ଟାର ତୃତୀୟ ନୟନ ଅନ୍ତରୀଣ ବାସ୍ତବତାର ଇଲାକାକୁ ଆବିଷ୍କାର କରେ । ଫଳରେ ଆଖିଦେଖା ବାସ୍ତବତାର ମାୟା, ଛନ୍ଦକପଟ, ଅହଂକାର ଓ ନାନାଦି ଭାବ ଭଂଗୀ ତଥା ଚାତୁର୍ଯ୍ୟମାନଙ୍କୁ ଠଉରାଇ ହୁଏ । ଉଲ୍ଲେଖଯୋଗ୍ୟ କିଶୋରୀ ଚରଣ ଦାସ ଏହି କଳା କୌଶଳଟିକୁ ସଫଳତାର ସହ ଆୟତ୍ତ କରିଛନ୍ତି ଯେପରି ତାଙ୍କ ପ୍ରବଂଧରେ ସେହିପରି ତାଙ୍କର କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ ଗୁଡ଼ିକରେ । 'କଥା ସାହିତ୍ୟର କଳା ଓ କାରିଗରୀ' (୧୯୯୦), 'ଚେନାଏ ପୃଥିବୀ ଚିରୁଡ଼ାଏ ଘର' (୧୯୯୫), 'ଲେଖକର ଦୁଃଖ' (୧୯୯୫), 'ମୋର ତୁମେ' (୧୯୯୭) 'ମୋ ସମୟ ମୋ ସାହିତ୍ୟ' (୨୦୦୦) ପ୍ରଭୃତି ପ୍ରବଂଧ ଗ୍ରନ୍ଥଗୁଡ଼ିକ ବ୍ୟତୀତ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଥିବା ତାଙ୍କର ପ୍ରବଂଧାବଳୀ ଅନୁଧ୍ୟାନ କଲେ ମନେ ହେବ ଯେ କଥା ସାହିତ୍ୟ ପରି ଏଗୁଡ଼ିକରେ ମଧ୍ୟ ରହିଛି କିଶୋରୀ ଚରଣଙ୍କ ନିଜସ୍ୱ ଶୈଳୀର ମୁଦ୍ରାଙ୍କ । ନିବିଡ଼ ଅନୁଭବ ପରିଚାଳିତ ଜୀବନର ସୂକ୍ଷ୍ମାତିସୂକ୍ଷ୍ମ ଦିଗଗୁଡ଼ିକୁ ଖୋଜି ବାହାର କରିବାର ପ୍ରବଣତା ଓ ମାନସିକତା ମଧ୍ୟରୁ ଏହା ସୃଷ୍ଟ । ତାଙ୍କର ଉପରୋକ୍ତ ପ୍ରବଂଧ ପୁସ୍ତକ ଗୁଡ଼ିକରେ ସେ ଆମ ସାହିତ୍ୟ ବିଷୟରେ ଅତ୍ୟନ୍ତ ସମ୍ବେଦନଶୀଳ ଭାବରେ ଅନେକ ଗୁରୁତ୍ୱପୂର୍ଣ୍ଣ କଥାମାନଙ୍କର ଅବତାରଣା କରିଛନ୍ତି, ମନ୍ତବ୍ୟ ଦେଇଛନ୍ତି । ମୋଟ ଉପରେ ତାଙ୍କପରି ଜଣେ ସ୍ପର୍ଶକାତର ଗାଳ୍ପିକର ଉଚ୍ଚାରଣ ବିଷୟବସ୍ତୁର ଉପସ୍ଥାପନ ରୀତିକୁ ସରସ ଓ ପ୍ରାଣବନ୍ତ କରିବା ସଂଗେ ସଂଗେ ପାଠକ ଚିତ୍ତରେ ସୁଦୂର ପ୍ରସାରୀ ପ୍ରଭାବ ପକାଇବା ଦିଗରେ ସମର୍ଥ ହୋଇପାରିଛି ।

**ନିବିଡ଼ ଅନୁଭବର ମାର୍ମିକ ଚିତ୍ର 'କଥା ସାହିତ୍ୟର କଳା ଓ କାରିଗରୀ' -**

ଆମ୍ଭେମାନେ ଜାଣୁ ଯେ ନିଜର ଗଳ୍ପଗୁଡ଼ିକୁ ନେଇ କିଶୋରୀ ଚରଣ କିପରି ଅନ୍ତରଂଗ ଆଳାପ କରିଛନ୍ତି ଓ ପାଠକମାନଙ୍କୁ ଶୁଣାଇଛନ୍ତି । କିଶୋରୀଚରଣ ଗଳ୍ପ-ଆଳାପ ହେଉଛି

ଏକାଧାରରେ କିଶୋରୀ ଚରଣଙ୍କ ଗଳ୍ପ ରଚନାର ପୃଷ୍ଠଭୂମି, ଗଳ୍ପ ମନ୍ଦିରର ତୋରଣ ଓ ଗଳ୍ପଗୁଡ଼ିକର ମର୍ମ ଉପଲବ୍ଧି ନିମିତ୍ତ ଏକାନ୍ତ ସହାୟକ । 'କଥା ସାହିତ୍ୟର କଳା ଓ କାରିଗରୀ' ପୁସ୍ତକରେ ଜଣେ ବିଶିଷ୍ଟ କଥାକାରଙ୍କର ସ୍ରଷ୍ଟାମାନସ ଯେଉଁସବୁ ଅନୁଭୂତି ଆହରଣ କରିଛି ଦୀର୍ଘତାର ସାଧନା ପଥରେ, ସେ ସଂପର୍କୀୟ ଚଟୁଳ ଅଭିବ୍ୟକ୍ତି ଆମେ ସେଠି ଦେଖୁ । ଗ୍ରନ୍ଥଟିର ସବୁଠୁ ଯେଉଁ ମହତ୍ତ୍ୱପୂର୍ଣ୍ଣ ଦିଗଟି ପାଠକ ଆଖିରେ ଦିଶିଯାଏ ତା'ହେଲା ଯେ ଏଥିରେ ତତ୍ତ୍ୱର ବିଶ୍ଳେଷଣ, ତର୍ଜମା, ପାଣ୍ଡିତ୍ୟ ପ୍ରଦର୍ଶନ ନିମିତ୍ତ ବକ୍ଵାଜି ଓ ଉଦ୍ଧୃତି କଣ୍ଟକିତ ଅନୁଚ୍ଛେଦ ଗୁଡ଼ିକର ସମାବେଶ ଏସବୁର ଗଳଦଘର୍ମ ପ୍ରଚେଷ୍ଟା ନାହିଁ ।

ବେଶ୍ ସ୍ୱାଭାବିକ ଓ ସାବଲୀଳ ଭାବରେ କଥାକାର ଏଠାରେ ତାଙ୍କ ବକ୍ତବ୍ୟକୁ ଉପସ୍ଥାପନ କରୁଛନ୍ତି । ଏହାକୁ ଗଳ୍ପ ସଂପର୍କୀୟ ଏକ ଉଚ୍ଚମାନର ସହାୟକ ଗ୍ରନ୍ଥ ବା ରେଫରେନ୍ସ ବୋଲି କୁହାଯାଇ ପାରିବ ଯଦିଓ ପ୍ରାବଂଧିକ ଏଠାରେ କାହାଣୀ ଶୁଣାଇଲା ପରି ତାଙ୍କ କଥା ପାଠକମାନଙ୍କୁ କହୁଛନ୍ତି ଓ ଏଥିରେ ଚଉଦଗୋଟି ସ୍ତବକରେ ସନ୍ନିତ ହୋଇଥିବା ପ୍ରବଂଧ ଗୁଡ଼ିକର ଫର୍ମ୍ ବା ଗଢ଼ଣ ପାଠକମାନଙ୍କୁ ଯୁକ୍ତିନିଷ୍ଠ ବା ତତ୍ତ୍ୱନିଷ୍ଠ ବୋଲି ଆଦୌ ମନେ ନହୋଇ ଅନ୍ତରଂଗ ଉଚ୍ଚାରଣ ବୋଲି ପ୍ରତୀୟମାନ ହେଉଛି । ଲେଖକ 'କଥା ସାହିତ୍ୟର କଳା ଓ କାରିଗରୀ' ଗ୍ରନ୍ଥରେ କହିଛନ୍ତି - ''ମୋ ଲେଖାରେ ନିର୍ଦ୍ଦେଶ ଉପଦେଶ ଆଦିର ଭାରିପଣ ନାହିଁ । କୋଉ ପାଣ୍ଡିତ୍ୟ ଅଛି ଯେ ଭାରିପଣ ଆସିବ ବୋଲି ଥଟ୍ଟା କରନ୍ତୁ ନାହିଁ । ଭାରିପଣ ନ ଥିଲେ ମଧ ଗାମ୍ଭୀର୍ଯ୍ୟ ନାହିଁ ନା କଅଣ ? କେବଳ ଶୁକ୍ଳକେଶର ଗାମ୍ଭୀର୍ଯ୍ୟ ନୁହେଁ । ଆମ କଥାସାହିତ୍ୟ ଅଧିକରୁ ଅଧିକ ସମୃଦ୍ଧ ହୋଇଉଠୁ, ମୁଁ ଓ ମୋ ବେଳର ଲେଖକମାନେ ଯେଉଁ ବାସ୍ତବ ଅବା ସତର ଅନୁଭୂତିକୁ ଚିହ୍ନେଇ ପାରିଲୁ ନାହିଁ (ଅକ୍ଷମତା, ଭୀରୁତା ଅବା ଯେକୌଣସି କାରଣରୁ) ଆମର ଦାୟାଦମାନେ ତାକୁ ଟିପିଯାଇ କେଉଁ ଏକ ଅଭିନବ ଅପରୂପ ଦିଗନ୍ତର ଛବି ଆଂକିବେ କି ଭବିଷ୍ୟତ ପାଇଁ, ଏହି କାମନାର ଆନ୍ତରିକତା ଏବଂ ବ୍ୟାକୁଳତା ହିଁ ମୋ ରଚନାର ମୁଖ୍ୟ ସ୍ୱର । ତେଣୁ ତା'କୁ ନ ଶୁଣିଲେ କିମ୍ବା ତା ପ୍ରତି ଗୁରୁତ୍ୱ ନଦେଲେ ମୋତେ ବାଧିବ, ଏଥିରେ ସନ୍ଦେହ ନାହିଁ ।'' (ନିଜକଥା - କଥା ସାହିତ୍ୟର କଳା ଓ କାରିଗରୀ) କଥା ସାହିତ୍ୟ ସଂପର୍କରେ ସାହିତ୍ୟ ସମାଲୋଚକର ଦୃଷ୍ଟିକୋଣ, ମତ ଓ ମନ୍ତବ୍ୟ ଠାରୁ ଜଣେ କଥାକାରର ଦୃଷ୍ଟିଭଙ୍ଗୀ ଓ ବକ୍ତବ୍ୟ ନିଆରା ହେବାକୁ ବାଧ, ଠିକ୍ ଯେମିତି କବିତା ସଂପର୍କରେ କୌଣସି ସମାଲୋଚକଠାରୁ ନିଜେ କବି କବିତାର ସମାଲୋଚନାରେ ହାତ ଦେଲାବେଳେ କାବ୍ୟ ଭାବନା, କବିପଣ, କବି ଦୃଷ୍ଟି ପୁଣି କବିତାର ଗଢ଼ଣ ସଂପର୍କରେ ଭିନ୍ନ ମୌଳିକ ଦୃଷ୍ଟିକୋଣ ପ୍ରକଟ କରିଥାଏ । ଆମ ସାହିତ୍ୟରେ କଥାକାର ଗଣ ନିଜର ସୃଷ୍ଟିଶୀଳତା ଓ ତାଙ୍କର ସମକାଳୀନ କଥା ସାହିତ୍ୟର ପାଠକମାନଙ୍କ ସଂପର୍କରେ କେଉଁଠି କେମିତି କାଁ ଭାଁ ମନ୍ତବ୍ୟମାନ ଦେଇଛନ୍ତି । ତେବେ ଭଗବତୀ ଚରଣ ପାଣିଗ୍ରାହୀ

୧୯୩୪ ମସିହା ପରବର୍ତ୍ତୀ କାଳରେ 'କଥା ସାହିତ୍ୟର କଳା ବୈଚିତ୍ର୍ୟ' ନାମକ ଏକ ପ୍ରବଂଧ ରଚନା କରିଥିଲେ । ସେଥିରେ ମୋଟାମୋଟି ଭାବରେ ସେ କ୍ଷୁଦ୍ରଗଳ୍ପର ଗଢ଼ଣ ତଥା ତା'ର ଆବେଦନକୁ ନେଇ ଚର୍ଚ୍ଚା କରିଥିଲେ । କିନ୍ତୁ ଓଡ଼ିଆ ସାହିତ୍ୟରେ ଜଣେ ବିଶିଷ୍ଟ କଥାକାରଙ୍କ ଦୃଷ୍ଟିରେ କଥା ସାହିତ୍ୟର ବିଭାବ ଓ ବିଭବ କ'ଣ ହୋଇପାରେ ? କଥା ସର୍ଜନାର ପଟ୍ଟଭୂମି ଓ କଥା ସଂଘଟନର ବିବିଧ ପର୍ଯ୍ୟାୟ ସବୁ କ'ଣ ? ଏସବୁକୁ ନେଇ ବ୍ୟାପକ ଅନୁଶୀଳନ କରି ମୌଳିକ କୃତିଟିଏ ପ୍ରକାଶ କରିବାର ଅଭାବ ରହିଥିଲା । କଥାକାର କିଶୋରୀ ଚରଣ ସେହି ଅଭାବଟିକୁ ପୂରଣ କରିଛନ୍ତି ବୋଲି ମନେ ହୁଏ ।

'କଥା ସାହିତ୍ୟର କଳା ଓ କାରିଗରୀ' ଗ୍ରନ୍ଥର ପ୍ରଥମ ସ୍ତବକରେ କିଶୋରୀ ଚରଣ ସୂଚନା ଦେଇଛନ୍ତି ଯେ କଥା ସାହିତ୍ୟ ସଂପର୍କରେ ଜଣେ ପ୍ରବୀଣ ଲେଖକ ଭାବରେ ସେ ତାଙ୍କର ଅନୁଭୂତିମାନ ହିଁ କହୁଛନ୍ତି । କିନ୍ତୁ ତାହା ଯେ କଥା ସାହିତ୍ୟ ସଂପର୍କରେ ଶେଷକଥା ବା ମାତବର କଥା ତାକୁ ସବୁ କଥାକାରମାନେ ମାନି ଚଳନ୍ତୁ - ଏହା ସେ ଜୋର ଦେଇ କେଉଁଠି କହିନାହାନ୍ତି । ନିଜର ମତକୁ କାହା ଉପରେ ଚାପିଦେବା ବା ଅଧିକାର ଜାହିର କରିବାର ପ୍ରବଣତା ଠାରୁ ସେ ଦୂରେଇ ରହିବେ ବୋଲି ତାଙ୍କ ସୂଚନାରୁ ଜଣାପଡୁଛି । ଏହାଫଳରେ କଥା ସାହିତ୍ୟର ପ୍ରଥାବଦ୍ଧ ବିଚାର, ଆଲୋଚନା ଓ ଥିଓରୀଠାରୁ ଯଥାସମ୍ଭବ ଦୂରତା ରକ୍ଷାକରି ମୁକ୍ତ ମନର ବିଚାରକୁ ସେ ପାଠକମାନଙ୍କ ସମକ୍ଷରେ ଆଣି ଥୋଇଛନ୍ତି । ସେ କହିଛନ୍ତି - ''ମୁଁ କେବଳ ଏହି ସୀମିତ ଉଦ୍ଦେଶ୍ୟ ନେଇ ଧାରାବାହିକ ପ୍ରବଂଧଟିଏ ଲେଖିବାକୁ ସାହସ କରୁଛି ଯେ ବୋଧହୁଏ ସାହିତ୍ୟ ପାଠରେ ପାଠୁଆ ନହେଲେ ମଧ୍ୟ ମୁଁ ପୁରୁଣା (ଅତଃ ପ୍ରବୀଣ) ଲେଖକ ହିସାବରେ ଦି'ପଦ କହିପାରିବି, ଯଦ୍ଦ୍ୱାରା ଉଦ୍ୟତ ଓ ଆଗ୍ରହୀ ନୂଆ କଥାକାରମାନେ ତାଙ୍କ ମୂଳଧନ ଖଟେଇବାର କେତୋଟି ବାଗ ପାଇଯିବେ, ଯେପରିକି ସେମାନେ ନିଜକୁ ଏବଂ ଅନ୍ୟମାନଙ୍କୁ ଅଧିକ ଆନନ୍ଦ ଦେଇପାରିବେ । ମୁଁ ଯେଉଁ ବାଗ ବତେଇବି ତାକୁ ନମାନିଲେ ମଧ୍ୟ କିମ୍ବା ନ ମାନିବା ହେତୁ ସେମାନେ ହୁଏତ ସୁଲେଖକ ହୋଇପାରିବେ, କିନ୍ତୁ ମୋର ଧାରଣା ଯେ ଯୁଆଡୁ ହେଲେ ମୋର ସାନକୁହା ତାଙ୍କର କିଛିଟା ଉପକାରରେ ଆସିବ'' । (କଥା ସାହିତ୍ୟର କଳା ଓ କାରିଗରୀ, ପୃ - ୧) ଗଳ୍ପ ଲେଖା ଆରମ୍ଭ କରିବା ପୂର୍ବରୁ ଯେଉଁ କେତେଗୋଟି ବିଚାର କଥାକାରର ମନରେ ଉଦୟ ହେଲେ ଭଲ ହେବ ତା'ର ଅବତାରଣା କରିଛନ୍ତି କିଶୋରୀ ଚରଣ । ପ୍ରଥମଟି ହେଲା - ଗଳ୍ପ ଲେଖିବା ପୂର୍ବରୁ ଯେଉଁ ଆବେଗଟି କଲବଲ କରୁଥାଏ ସ୍ରଷ୍ଟାକୁ । ସେହି ଆବେଗଟିର ବଳବହପ, ଶକ୍ତି ଜାଣିରଖିବା ଆବଶ୍ୟକ । ତାହା ଉପରଠାଉରିଆ ହେଲେ ଚଳିବ ନାହିଁ । ତେବେ ଆବେଗଟି ଅତ୍ୟଧିକ ପ୍ରତ୍ୟକ୍ଷ ଓ ବ୍ୟକ୍ତିଗତ ହେଲେ ମଧ୍ୟ ଅସୁବିଧା ଅଛି । ସଫଳ ସୃଷ୍ଟି ନିମିତ୍ତ ଯତ୍‌ସାମାନ୍ୟ ଦୂରତା ରକ୍ଷା କରିବାର ଆବଶ୍ୟକତା ଉପରେ ସେ ଗୁରୁତ୍ୱ ଆରୋପ କରିଛନ୍ତି । ପ୍ରକୃତରେ

କଥା ସାହିତ୍ୟ ସମେତ ସାହିତ୍ୟର ଅନ୍ୟାନ୍ୟ ବିଭାଗର ସୃଷ୍ଟିଶୀଳତା ପ୍ରସଂଗରେ ଏହି ମନ୍ତବ୍ୟର ଯଥାର୍ଥତା ରହିଛି । ନାଟ୍ୟକାର ବ୍ରେକ୍‌ଟ ଆଲନିସେନ୍ ଇଫେକ୍ଟ କଥା କହନ୍ତି । ଏହାର ଅର୍ଥ ହେଲା ମଂଚ ଓ ମଂଚସ୍ଥ ହୋଉଥିବା ନାଟକ ସହ ଦର୍ଶକ ଏକାତ୍ମ ହୋଇଯିବାଟା ଠିକ୍ ନୁହେଁ । ଏହାଫଳରେ ନାଟକର ବକ୍ତବ୍ୟ ଓ ବାର୍ତ୍ତାକୁ ଦର୍ଶକ ଗ୍ରହଣ କରିବା ଦିଗରେ ପ୍ରତିବଂଧକ ସୃଷ୍ଟି ହୋଇଥାଏ । ତେଣୁ ଅନୁଭବ ପ୍ରତ୍ୟକ୍ଷ ଓ ବ୍ୟକ୍ତିଗତ ହେଲେ ସ୍ରଷ୍ଟାର ଦୃଷ୍ଟିକୋଣ ଯେତେ objective ହେବାକଥା ସେତେ ହୋଇପାରେ ନାହିଁ ।

ଗ୍ରନ୍ଥର ଦ୍ୱିତୀୟ ସ୍ତବକଟି ଗଢ଼ି ଉଠିଛି ଅନୁଭୂତ ଆବେଗଟିକୁ ଗଳ୍ପ ପାଇଁ କିପରି ଗ୍ରହଣଯୋଗ୍ୟ କରିବାକୁ ହେବ । କିଶୋରୀ ଚରଣ ଏ ପ୍ରସଂଗରେ କେତେଗୋଟି ଗୁରୁତ୍ୱପୂର୍ଣ୍ଣ କଥାର ଅବତାରଣା କରିଛନ୍ତି । ତାହା ହେଲା ସ୍ରଷ୍ଟାକୁ ଦେଖିବାକୁ ହେବ ଯେ ସେଇ ଆବେଗଟି ସ୍ୱାଧୀନ ଓ ସ୍ୱତଃସ୍ଫୂର୍ତ୍ତ କି ନାହିଁ କିମ୍ବା ସ୍ରଷ୍ଟାର ଅନୁରାଗ ବିରାଗ ବା ତଥାକଥିତ ନୀତିବଦ୍ଧତାର ପିଠିରେ ସେ ସବାର ହୋଇ ଆପଣାକୁ ବଡ଼ ବୋଲାଉଛି କି ନାହିଁ । ଆବେଗ ମାଧ୍ୟମରେ ଗଳ୍ପର ମଂଜି ପୋତି ହୋଇଗଲା ପରେ ମନ ଭିତରେ ଦୃଶ୍ୟ ଅନୁଭୂତ କଳ୍ପିତ ଚରିତ୍ର, ଘଟଣା ବା ଉଭୟର ସମାବେଶ ଆରମ୍ଭ ହୋଇଯାଏ । ତେବେ ଏଥିପାଇଁ କ'ଣ ରଖିବାକୁ ହେବ ଓ କ'ଣ ପରିତ୍ୟାଗ କରିବାକୁ ପଡ଼ିବ ତା'ର ଚୟନ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ତେବେ ପ୍ରଥମେ ପରିବେଶ ଓ ପରିସ୍ଥିତିର ପ୍ରତ୍ୟେକ ଟିକିନିଖି କଥାଗୁଡ଼ାକୁ ଟିପି ରଖିବା ଭଲ । ଗାଳ୍ପିକର ନିବିଡ଼ ଅନ୍ତର୍ଦୃଷ୍ଟି, ଗଳ୍ପ ସମାଲୋଚନା ପ୍ରସଂଗରେ କିପରି ରୂପ ନେଇଛି, ଏଠାରେ ତାହା ଲକ୍ଷ୍ୟ କରାଯାଇପାରେ । କିଶୋରୀ ଚରଣ ପ୍ରକାଶ କରିଛନ୍ତି - "ମୋଟ ଉପରେ କଥା ହେଲା ଯେ ପାଠକମାନଙ୍କୁ ବାସ୍ତବତାର ସ୍ୱାଦୁ ଚଖେଇବାକୁ ହେଲେ ଅନିର୍ଦ୍ଦିଷ୍ଟରୁ ନିର୍ଦ୍ଦିଷ୍ଟକୁ ଓହ୍ଲେଇ ଆସିଲେ ଭଲ ଏବଂ ସେଥିପାଇଁ ତଥ୍ୟ ସଂଗ୍ରହ ଆବଶ୍ୟକ, ଯେପରିକି କଳ୍ପନାକୁ ଅତ୍ୟଧିକ ପରିଶ୍ରମ କରିବାକୁ ପଡ଼ିବ ନାହିଁ, ଯାହାକୁ ସେ ହୁଏତ ତୁଲେଇ ନପାରେ । ଅତଏବ କେଉଁ ରକ୍ତବୁହା ରାତିର ସକାଳକୁ ଦର୍ଶାଇବାକୁ ହେଲେ ଯାଅ କେଉଁ ନିର୍ଦ୍ଦିଷ୍ଟ ନଈ କୂଳକୁ, ଗଳି ମୁଣ୍ଡକୁ, ଅବା ଯେକୌଣସି ସମ୍ଭାବ୍ୟ ଘଟଣାସ୍ଥଳୀକୁ ଏବଂ ତାର ଟିକିନିଖି ଚତୁଃପାର୍ଶ୍ୱକୁ ଟିପିନିଅ । ଠିକଣା ବେଳେ କାହାକୁ ରଖିବ, କାହାକୁ ଛାଡ଼ିବ ସେକଥା ପରେ । ମନ୍ଦିର ଗାତ୍ରରେ ଖୋଳା ହୋଇଥିବା ମିଥୁନକୁ ହାଁ କରି ଅନେଇଛି ବିଦେଶୀ ଟୁରିଷ୍ଟ, ମୁଗ୍ଧ ହୋଇ ଅନେଇଛି ଦେଶୀ ପ୍ରଣୟୀ ଏବଂ ଦୁହିଁଙ୍କ ପଛରେ ଧପାଳିଛି ଭିଖାରୁଣୀଟିଏ, ଯାର କି ତା'ର ବିହ୍ୱଳ ତେଣୁ ଉଦାର ଏବଂ ଅନ୍ୟମନସ୍କ ମୁଦ୍ରାଟିଏ ପାଇବ ବୋଲି । ଏଇ ଅନୁରୂପ ଦୃଶ୍ୟର ଉପାଦାନ ନେଇ ଅବା ପର ପୃଷ୍ଠଭୂମିରେ ଗପଟିଏ ଲେଖିବାକୁ ଚାହଁ ? ଭଲ । କିନ୍ତୁ ସମ୍ୟକ୍ ସୁଫଳ ପାଇଁ କୋଣାର୍କ କି ଖଜୁରୋହକୁ ଯାଅ ଏବଂ ପରିପାର୍ଶ୍ୱର ପରିବେଶକୁ ଟିପିନିଅ । ସତେକି ତୁମକୁ ପ୍ରତ୍ୟକ୍ଷଦର୍ଶୀ ଭାବେ ପଠା ହୋଇଥିଲା ସେଠିକି ଏବଂ ତୁମେ କେଉଁ ପଥର ପ୍ରତିମାକୁ ଆଉଜି ଚା' ପିଉଥିଲ

ଏବଂ ଚୁପ୍‌ଚାପ୍ ଦେଖୁଥିଲ ବସି ଏଇ ବିଚିତ୍ର ଜଗତର ଯେତେକ ରଂଗ, ଯେତେକ ଢ଼ଂଗ । ସେହିପରି କେଉଁ ବଜାର ବିପଣୀ ଯଦି ତୁମ ଗପର ପୃଷ୍ଠଭୂମି ହୁଏ, ତାହେଲେ କୌଣସି ବଜାର ଦୃଶ୍ୟର ଏଣୁ ତେଣୁକୁ ସମ୍ମାନ ପୂର୍ବକ ଟିପିନିଅ । ଯଥା ହଟ୍ଟଗୋଳ ଭିତରେ ଶୋଇ ରହିଥିବା ଷଣ୍ଢଯାଏ ।'' (କଥା ସାହିତ୍ୟର କଳା ଓ କାରିଗରୀ ପୃ - ୭)

ଲେଖକ ଏଠାରେ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟର ଅବତାରଣା କରି ଥିମ୍ ଓ ପ୍ଲଟ୍ ଏକା କଥା ନୁହେଁ ବୋଲି କହିଛନ୍ତି । ଥିମକୁ ଆମେ ଓଡ଼ିଆରେ କଥାବସ୍ତୁ ବୋଲି କହିପାରିବା । ପ୍ଲଟ୍ କିନ୍ତୁ ଏହାଠାରୁ ସ୍ୱତଂତ୍ର ଯଦିଓ ଆମର ପାଠକ ଓ ଆଲୋଚକମାନେ ଏ ଦୁଇଟିକୁ ଏକାକଥା ବୋଲି ମନେ କରିଥାଆନ୍ତି । ପ୍ଲଟ୍ ହେଉଛି କଥାବସ୍ତୁକୁ ଧରି ରଖିଥିବା କ୍ଷେତ୍ର ବା ବାନ୍ଧି ରଖିଥିବା ସୂତ୍ର । ପୁଣି କଥାବସ୍ତୁ କଳ୍ପନା କି ବାସ୍ତବତାକୁ ଅନୁସରଣ କରିବ ସେ ସଂପର୍କରେ ଗୁରୁତ୍ୱପୂର୍ଣ୍ଣ କଥା କେତେଗୋଟିର ଅବତାରଣା କରିଛନ୍ତି କିଶୋରୀ ଚରଣ ଗ୍ରନ୍ଥର ତୃତୀୟ ସ୍ତବକରେ । ତାଙ୍କ ମତରେ ଆଜିର ଗଳ୍ପରେ ଘଟଣା ଚରିତ୍ରର ଛନ୍ଦଣିମନ୍ଦଣି ଦରକାର ପଡୁନାହିଁ, କିମ୍ବା ଶେଷଯାଏଁ ପାଠକକୁ ଭୁଆଁ ବୁଲେଇବାର କୃତ୍ରିମ କାରସାଦି ଅଥବା ଷଡ଼ଯନ୍ତ୍ର ଆବଶ୍ୟକ ପଡୁନାହିଁ । ଆଜିର ଗଳ୍ପରେ ଆଖିଦୃଶିଆ ଘଟଣା ଓ ସମାଧାନ ଉଦ୍ଦେଶ୍ୟରେ କିଛି ଗଣ୍ଡଗୋଳ ବା ହେଟଚମକର ଚିତ୍ର ନଥାଉ ପଛକେ ସେଥିରେ କିନ୍ତୁ ରହିବା ପ୍ରୟୋଜନ ଗୋଟିଏ ଆରମ୍ଭ, ଆରମ୍ଭରୁ ଗଢ଼ି ଉଠୁଥିବା ପ୍ରତିଶ୍ରୁତି ଏବଂ ତାର ପରିପୂରଣ । ପରିପୂରଣର ଅର୍ଥ ହେଲା ଆପାତଃ ଦୃଷ୍ଟିରେ ଗୋଟାଏ ଶେଷକଥା । ତାହା ଘଟଣା ନେଇ ହୋଇପାରେ କିମ୍ବା ହୋଇପାରେ ଚରିତ୍ରକୁ ନେଇ ବା ସାମୂହିକ ପରିବେଶକୁ ନେଇ । ଗଳ୍ପର ଗଢ଼ଣରେ ବର୍ତ୍ତୁଳତା ରହିବା ଅନିବାର୍ଯ୍ୟ ବୋଲି ସ୍ୱୀକାର କରନ୍ତି କିଶୋରୀ ଚରଣ । ଆପଣାର ଅନୁଭବ ମଧ୍ୟରୁ କ୍ଷୁଦ୍ର ଗଳ୍ପର କଳା କୌଶଳ ସଂପର୍କରେ ଧାରଣା ଦେବାକୁ ଯାଇ ଔପନ୍ୟାସିକ ଓ ଗାଳ୍ପିକ ମଧ୍ୟରେ ଥିବା କଳା କର୍ମଜନିତ ପାର୍ଥକ୍ୟକୁ ସେ ସ୍ପଷ୍ଟ କରି ଦେଇଛନ୍ତି । ତାଙ୍କ ଦୃଷ୍ଟିରେ ଗାଳ୍ପିକ ଗଳ୍ପର କ୍ଷୁଦ୍ର ପରିସର ମଧ୍ୟରେ ଔପନ୍ୟାସିକ ପରି ଲମ୍ବା ପଣତ ବିଛେଇ ପାରିବ ନାହିଁ ଯାହା ସବୁଆଡ଼କୁ ପାଉଛି ବୋଲି ଏକ ଧାରଣା ସୃଷ୍ଟି ହେବ । ଗାଳ୍ପିକକୁ କିନ୍ତୁ ବଡ଼ ତରବରରେ ତା'ର କାନିଖଣ୍ଡିକ ଗୁଡ଼େଇ ଆଣିବାକୁ ପଡ଼ିବ ନଚେତ ତାହା ଲୋଚାକୋଚା ହୋଇଯିବାର ସମ୍ଭାବନା ରହିଛି ।

'କଥା ସାହିତ୍ୟର କଳା ଓ କାରିଗରୀ' ଗ୍ରନ୍ଥର ଚତୁର୍ଥ ପଞ୍ଚମ ଷଷ୍ଠ ଓ ସପ୍ତମ ସ୍ତବକ ଗଢ଼ି ଉଠିଛି ଘଟଣା ଚରିତ୍ର ପରିବେଶର ନକ୍ସା ବା ଗଳ୍ପର ଗଢ଼ଣ ଗଳ୍ପର ଆବେଦନ, ଚରିତ୍ର ସର୍ଜନାର କୌଶଳ ତଥା ଚରିତ୍ରନିର୍ମାଣ । ଗଳ୍ପର ସଂଘଟନରେ କାହାଣୀର ଦିଗ ବିଚାର, ରସ ବିଚାର ଓ ଶେଷକଥାର ସ୍ପଷ୍ଟତା ଏକାନ୍ତ ପ୍ରୟୋଜନ । ଏହା ଗଳ୍ପର ଆବେଦନ କ୍ଷମତା ବୃଦ୍ଧିରେ ସହାୟକ ହୁଅନ୍ତି । ଗଳ୍ପଟିକୁ ଆବେଦନ ଧର୍ମୀ କରିବାକୁ ଯାଇ ଗାଳ୍ପିକ ତା'ର ଭାଷାରେ

ପଦ୍ୟମୟତା ସୃଷ୍ଟି କରିପାରେ ବା ଶବ୍ଦ ସଂଯୋଜନାରେ ବୈଚିତ୍ର୍ୟ ଆଣିପାରେ । ସେହିପରି ଗଳ୍ପରେ ଚରିତ୍ର ନିର୍ମାଣ ପ୍ରକ୍ରିୟାଟି ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଏଥିପାଇଁ ରହିଛି ତିନିଗୋଟି ପର୍ଯ୍ୟାୟ । ସେଗୁଡ଼ିକ ହେଲା ନିରୂପଣ, ନିର୍ମାଣ ଓ ଉଦ୍‌ଯାପନ ।

ଗାଳ୍ପିକ ଗଳ୍ପ ରଚନାକାଳରେ ଗଳ୍ପ ନକ୍ସାର ଗଢ଼ଣ ମଧ୍ୟରୁ ଖସିଗଲେ ପ୍ରମାଦ ଆସି ପହଂଚେ । ତେଣୁ ଗଳ୍ପର ନକ୍ସା, ପ୍ଲଟ୍ ବା design ପୁଣି ସେହି ନକ୍ସାକୁ ପରିପୁଷ୍ଟ କରୁଥିବା ଉପାଦାନଗୁଡ଼ିକ ସଂପର୍କରେ ଗାଳ୍ପିକ ସଚେତନ ହେବା ଆବଶ୍ୟକ । ଗଳ୍ପ-ଅନୁରୂପ ଗଢ଼ଣ କେବଳ ନୁହେଁ ପରିମାଣ, ଏ ବିଷୟରେ ଗାଳ୍ପିକର ପୁରୋଦୃଷ୍ଟି ମଧ୍ୟ ରହିବା ଦରକାର । ଏ ସଂପର୍କରେ କିଶୋରୀ ଚରଣ କହନ୍ତି - ''ଯାହାକୁ ଯେମିତି ଓ ଯାହାକୁ ଯେତିକି'' । ଗ୍ରନ୍ଥର ନବମ ଓ ଦଶମ ସ୍ତବକରେ ଏ ସଂପର୍କରେ ଆଲୋଚନା ରହିଲାବେଳେ ପରବର୍ତ୍ତୀ ସ୍ତବକ ଗୁଡ଼ିକରେ ଶ୍ରୀଦାସ ଗଳ୍ପ ଦ୍ୱନ୍ଦ୍ୱ, କ୍ଲାଇମାକ୍ସ, ପ୍ରଫେସୀ ତଥା ଗଳ୍ପର ମେସେଜ୍ ଗୁଡ଼ିକ ସଂପର୍କରେ ଆଲୋକପାତ କରିଛନ୍ତି । ଗ୍ରନ୍ଥଟିର ଉପସଂହାର ଏଇଥିପାଇଁ ତାତ୍ପର୍ଯ୍ୟପୂର୍ଣ୍ଣ ଯେ କିଶୋରୀ ଚରଣ ଏଥିରେ ଏକ ପଜିଟିଭ୍ ଦୃଷ୍ଟିକୋଣରୁ ଜୀବନ ଓ ଜଗତକୁ ଅବଲୋକନ କରିବା ପାଇଁ ଆହ୍ୱାନ ଦେଇଛନ୍ତି । ଲେଖକଙ୍କର ଚତୁଃପାର୍ଶ୍ୱରେ ଯାବତୀୟ ଅସାହିତ୍ୟିକ ଉପାଦାନ, ଜୀବନର ଅସୁନ୍ଦର କୁତ୍ସିତ ଉପାଦାନ ସମୂହ ହାଉଯାଉ ହେଉଛନ୍ତି । ଲେଖାଲେଖି ମଧ୍ୟ ଦେଇ ଲେଖକ ପାଉଥିବା ରମ୍ୟ ଆନନ୍ଦର ପ୍ରତିପକ୍ଷ ଶକ୍ତି ଅନେକ । କିନ୍ତୁ ଏସବୁକୁ ଅତିକ୍ରମ କରିବା ପାଇଁ ପରାମର୍ଶ ଦେଇଛନ୍ତି କିଶୋରୀ ଚରଣ । ଅଣସାହିତ୍ୟିକ ପାଣିପାଗକୁ ବେଖାତିର କରି ନିଷ୍ଠା ଓ ଆନ୍ତରିକତାର ସହ ଲେଖିଯିବା ପାଇଁ ସେ ସ୍ରଷ୍ଟାମାନଙ୍କୁ ଆହ୍ୱାନ ଦେଇଛନ୍ତି । କ୍ଷୁଦ୍ରଗଳ୍ପ ସ୍ରଷ୍ଟାର objectivityକୁ ନେଇ ଯେଉଁ ଚମତ୍କାର କଥାଟି ସେ କହିଛନ୍ତି ତା ଉଦ୍ଧୃତି ଏଠାରେ ଦେବା ଆବଶ୍ୟକ ମନେ କରୁଛି ।

''କିଓ ଆମୋଦ କ'ଣ କମ୍ ଉପାଦେୟ ବସ୍ତୁଟିଏ ? ମୁଁ ଯାଙ୍କ ଭିତରେ ଥାଇ ମଧ୍ୟ ନାହିଁ, ତାଙ୍କର ସବୁ ମିଛସତ, ମାଡ଼ଗୋଳ, ହନ୍ତସନ୍ତକୁ ଅନୁଭବ କରୁଛି କିନ୍ତୁ ପରୋକ୍ଷରେ ଏବଂ ଉର୍ଦ୍ଧ୍ୱରେ ଥାଇ, ତେଣୁ ମୃଦୁ ମୃଦୁ ହସିପାରୁଛି ..... ଲେଖକ ହୋଇନଥିଲେ ମୋର ଅବସ୍ଥା କ'ଣ ହୋଇଥାଆନ୍ତା ଭାବିଲ ଦେଖି ? ଏଇ ଆତ୍ମଗାରିମାର ମର୍ଯ୍ୟାଦାକୁ ଊଣା କରିବାର ନୁହେଁ । କହିବାକୁ ଗଲେ ସଭ୍ୟତାର ସୌଖୀନ ଶାନ୍ତି ମଧ୍ୟ ଏଇଥିରୁ ମିଳିବ । ବୁଦ୍ଧିମତ୍ତା ଓ ସହିଷ୍ଣୁତା ଏବଂ ଉଦ୍‌ଭବ ରସବୋଧ (intelligence and tolerence : good humour) ସଭ୍ୟତାର ସର୍ବଶ୍ରେଷ୍ଠ ଉପାଦାନ ବୋଲି କୁହାଯାଏପରା ? ସୁନ୍ଦର ହେଉ କି ଅସୁନ୍ଦର, ବିଚିତ୍ର ସଂସାରକୁ ନକଲ କରି ମୁରୁକିହସା ଦେଇ ଯେଉଁ ସାହିତ୍ୟ ଲେଖାଯାଏ ତା'ଠାରୁ ବଳଶାଳୀ ମାଧ୍ୟମ ଆଉ କ'ଣ ଅଛି ? ଯଦ୍ୱାରା ସଭ୍ୟତାର ଉପରୋକ୍ତ ନିୟାମକ ଗୁଣଗୁଡ଼ିକ ହାସଲ କରିହେବ'' । (କଥା ସାହିତ୍ୟର କଳା ଓ କାରିଗରୀ -ପୃ- ୭୯)

ମୋଟ ଉପରେ କଥାକାର କିଶୋରୀ ଚରଣ ଦାସଙ୍କ ଆଲୋଚ୍ୟ ଗ୍ରନ୍ଥଟି କଥାସାହିତ୍ୟ ସଂପର୍କରେ ତାଙ୍କର ମୌଳିକ ଦୃଷ୍ଟିକୋଣକୁ ପ୍ରକାଶ କରିବା ଦିଗରେ ସହାୟକ ହୋଇପାରିଛି । ଏହା ଟୀକା, ଟିପ୍ପଣୀ ମଣ୍ଡିତ ଓ ଉଦ୍ଧୃତି କଣ୍ଟକିତ ପୁଣି କୌଣସି ବାଦ ବା ଇଜିମ୍ ଦ୍ୱାରା ଆକ୍ରାନ୍ତ, ବୁଦ୍ଧିବାଦ ପୀଡ଼ିତ ସମାଲୋଚନା ଗ୍ରନ୍ଥବିଶେଷ ନୁହେଁ । ଏହା ଯଥାର୍ଥତଃ ଜଣେ ଶିଳ୍ପୀର ମାର୍ମିକ ଅନୁଭବ ଓ ମୌଳିକ ଅଭିବ୍ୟକ୍ତି । ସେଥିପାଇଁ ଉକ୍ତ ସମୀକ୍ଷାଗ୍ରନ୍ଥଟି ଓଡ଼ିଆ ସାହିତ୍ୟର ଇତିହାସରେ ଯେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିବ ଏଥିରେ ସନ୍ଦେହ ନାହିଁ ।

**ସଂସାର, ଦୁଃଖ ଓ ସମୟର ପରିଧିରେ ଲେଖକ** - ନିବିଡ଼ ଲେଖକୀୟ ଅନୁଭବ ଉପରେ ଆଧାରିତ କିଶୋରୀ ଚରଣଙ୍କ ଅନ୍ୟ ତିନିଗୋଟି ଗ୍ରନ୍ଥ ହେଉଛି 'ଲେଖକର ସଂସାର', 'ଲେଖକର ଦୁଃଖ' ଓ 'ମୁଁ ଓ ମୋ ସମୟ' । ଲେଖକର ପର୍ସୋନା, କାଳ ସଚେତନତା ପୁଣି ଲେଖକର ପରିପାର୍ଶ୍ୱ ସଂପର୍କରେ କଥାକାର କିଶୋରୀ ଚରଣଙ୍କ ବକ୍ତବ୍ୟ ଏହି ତିନିଗୋଟି ଯାକ ଗ୍ରନ୍ଥରେ ସ୍ଥାନ ପାଇଛି । ପ୍ରକୃତରେ ଲେଖକର ସମକାଳ ଓ ତା'ର ପରିପାର୍ଶ୍ୱ ତା'ର ପର୍ସୋନାକୁ ପ୍ରଭାବିତ କରେ । କଥା ସାହିତ୍ୟର କଳା ଓ କାରିଗରୀ ପରି ଏଠାରେ ସ୍ରଷ୍ଟ First person narration ଭାବରେ ତାଙ୍କର ଅନୁଭବ ସମୂହକୁ କହି ଚାଲିଛନ୍ତି । ତେବେ ଏଥିରେ ରୂପାୟିତ ପ୍ରଥମ ପୁରୁଷର ବାକ୍‌ବିଳାସ ଓ ବୈଦଗ୍ଧ ଠାରୁ ଲେଖକୀୟ ନଟସତ୍ତା କେଉଁଠାରେ କମ୍ ବା କେଉଁଠାରେ ଖୁବ୍ ବେଶି ଦୂରତା ରଖି ଚଳନ୍ତି । ଔପନ୍ୟାସିକ Fieldingଙ୍କର Tom Jones ଉପନ୍ୟାସ ଏବଂ Swiftଙ୍କର 'A modest proposal' ମଧ୍ୟରେ ଥିବା ପାର୍ଥକ୍ୟକୁ ଏଠାରେ ସୂଚିତ କରି ଦୁଇଟି ମଧ୍ୟରେ ବର୍ଣ୍ଣନାକାରୀ ଓ ନଟସତ୍ତା ମଧ୍ୟରେ ଥିବା ସଂପର୍କକୁ ଦେଖାଇ ଦିଆଯାଇ ପାରିବ ।

"This persona or 'second self' of the author has to be distinguished from the narrator even in the first person narration. The degree of correspondence between narration and persona may vary greatly. In Fieldings Tom Jones (1749) for instance the narration shares many qualities ith the persona-tolerance, humour, wide understanding of human behaviour and humanistic learning. But in the case of Swifts 'A model proposal' (1729) to assume continuity between narration and persona would be disastrous. The narration deliberately heighters and distorts the view Swift seeks to expose. The persona clearly recommends the very opposite view, the amelioration of conditions and the implementation of social remedies not the breeding of children for food etc".

ଏଠାରେ ଉଲ୍ଲେଖଯୋଗ୍ୟ ଯେ narrator ଓ persona ମଧ୍ୟରେ ଦୂରତା କିଶୋରୀ ଚରଣଙ୍କ ଉପରୋକ୍ତ ତିନିଗୋଟି ଗ୍ରନ୍ଥରେ ଲକ୍ଷ୍ୟ କରିହେଉ ନାହିଁ । ଏ ଦୁଇଟିର କ୍ରିୟାଶୀଳତା

ମଧ୍ୟରେ ରହୁଛି ଧାରାବାହିକତା । ଉକ୍ତ ତିନିଗୋଟିଯାକ ଗ୍ରନ୍ଥରେ ଲେଖକୀୟ ସତ୍ତା ଆପଣାର ଦୁର୍ବଳତା ସଂପର୍କରେ ମଧ୍ୟ ସଚେତନ । ପରମେଶ୍ୱରଙ୍କ ସଂପର୍କରେ କବି ଅଭିମନ୍ୟୁ ବିଦଗ୍ଧ ଚିନ୍ତାମଣିରେ 'ଉର୍ଣ୍ଣନାଭବତ ଖେଳୁ ଇଚ୍ଛାଶକ୍ତି ବଳେ' ଓ କବି ଜଗନ୍ନାଥ ଦାସ ଭାଗବତରେ 'ଯେସନେ କୀଟ ଉର୍ଣ୍ଣନାଭି ନିଜ ବଦନୁ ସୂତ୍ର ଭାବି' ଆଦି କଥାମାନ କହିଛନ୍ତି । ଲେଖକ ଯେ ଦ୍ୱିତୀୟ ଈଶ୍ୱର ଏହି ଅହମିକା କେଉଁଠି ହେଲେ କିଶୋରୀ ଚରଣ ପ୍ରକାଶ କରିନାହାନ୍ତି । ଏହା ସତ, କିନ୍ତୁ ଆଖି ଦେଖା ସଂସାର ଠାରୁ ଲେଖକର ଯେ ଆଉ ଗୋଟେ ସଂସାର ଅଛି, ସେଠି ତା'ର ହାତଗଢ଼ା ମଣିଷମାନେ ଆତଯାତ ହୁଅନ୍ତି, ନାନାଦି ଭାବଭଂଗୀ କରନ୍ତି । ହଠକାରିତା ଦେଖାନ୍ତି, ଘଡ଼ିକି ଘଡ଼ି ମୁଖାମାନ ବଦଳାଉଥାନ୍ତି, ବିଜେତାର ଗର୍ବରେ ଫୁଲି ପଡ଼ିଲେ ବି ପରାଜିତ ହେଉଥାନ୍ତି ବାରମ୍ବାର ଓ ହସରେ କଥାରେ କିମିଆଁ ଥିଲେ ବି ସେମାନଙ୍କ ଛାତିରେ ଦୁଃଖର ଲହଡ଼ି ବରାବର ମଥା ପିଟୁଥାଏ, ଏହା ସେ ବେଶ୍ କୌଶଳର ସହିତ ଦେଖାଇ ଦେବା ପାଇଁ ପ୍ରଚେଷ୍ଟା କରିଛନ୍ତି । ବର୍ଣ୍ଣନାକାରୀ ଲେଖକ (ପ୍ରଥମ ପୁରୁଷରେ) ଓ ଲେଖକୀୟ ସତ୍ତା ମଧ୍ୟରେ କିପରି ଦୂରତ୍ୱ ଅପସରି ଯାଉଛି ତାହା 'ଲେଖକର ସଂସାର' ଗ୍ରନ୍ଥର ନିଜ କଥା ପର୍ଯ୍ୟାୟରୁ ଜଣାପଡ଼େ । ''ଲେଖକର ଛପିଛପି ଦୂରରୁ ଦେଖିବା କଥା ଯେ ମୋ ପିଲାକୁ 'ସେମାନେ' ଆଦରିଲେ କି ନାହିଁ, ତା'ର ଭାଷା ବୁଝିଲେ କି ନାହିଁ, ସେଇଠୁଁ ତାଂକୁ ଘରକୁ ନେଲେ ନା ବଜାର ହାଟରେ ଛାଡ଼ିଦେଇ ଗଲେ । ଏଣେ ପାଠକର ବାହାଦୁରୀ ହେଉଛି ନିଜକୁ ସାବାସ ଦେବା ଯେ ମୁଁ ପିଲାଟିର (କିମ୍ବା ପିଲାଟାର) ଭାଷା ବୁଝୁଛି, ସେ କେମିତିକା ବାପର ପୁଅ ଜଣାପଡ଼ିଯାଉଛି ଏବଂ ତାକୁ ନେଇ କ'ଣ କରିବାକୁ ହେବ, ସେ ବିଷୟରେ ମୋତେ ପାଠ ପଢ଼ାଇବା ଦରକାର ନାହିଁ । ଏଇ ହେଉଛି ଲେଖକ ପାଠକ ଲୁଚକାଳି ଖେଳର ମଜା, ଅଭିମାନ ଅହମିକାର ଛକାପଞ୍ଝା । ଯାକୁ ଛାଡ଼ିଦେଇ କ'ଣ ମଂଚ ଉପରକୁ ଆସିଁ ଭାଷଣ ଦେବା ଉଚିତ ଯେ ଶୁଣିବା ହେଉ ଏଇ ହେଉଛି ମୋ ପିଲାର କୁଳଶୀଳ, ସଂପୂର୍ଣ୍ଣ ପରିଚୟ, ଏଇପରି କାନ୍ଦଣାର ସ୍ୱର, ତା' ଖନିକଥାର ଅର୍ଥ, ତା'ର ଅକୁହା ଅଂଧାର ଗୁଡୁଗୁଡ଼ିର ଚେହେରା ଇତ୍ୟାଦି, ଇତ୍ୟାଦି ? ଅନୁଚିତ । ତଥାପି ମୁଁ ସଂଜ ନ ହେଉଣୁ ମୁହଁ ଦେଖାଇ ଏଣୁତେଣୁ ଗୁଡ଼ିଏ କହିବା ପାଇଁ ମନ ବଳାଇଲି କାହିଁକି ?

ସେହିପରି ଲେଖକର ସଂସାର ପରି ଲେଖକର ଦୁଃଖ ମଧ୍ୟ ନିଆରା । 'ଲେଖକର ଦୁଃଖ' ଗ୍ରନ୍ଥର 'ନିଜକଥା' ଅଧ୍ୟାୟରେ ସ୍ରଷ୍ଟାଙ୍କର ସ୍ୱୀକାରୋକ୍ତି ହେଲା ''ଲେଖକର ସଂସାର ପରେ ଲେଖକର ଦୁଃଖକୁ ଏକ ସ୍ୱାଭାବିକ ସ୍ୱତଃସ୍ଫୁର୍ତ୍ତ କ୍ରମ ବୋଲି ନ ଭାବି ବରିଷ୍ଠ ଲେଖକର କାର୍ଯ୍ୟକ ବଢ଼େଇ ଅଥବା ଚାତୁରୀ ବୋଲି ମନେ କଲେ ମୋତେ ଆହୁରି ଦୁଃଖ ଲାଗିବ । ତେବେ ମୁଁ ମୋର ପାଠକ ପାଠିକାମାନଙ୍କୁ ବିନୟପୂର୍ବକ ସାବଧାନ କରିଦେବାକୁ ଚାହେଁ ଯେ ଏଇ ଲେଖାଗୁଡ଼ିକ ଭଳି ଭଳି ସାଜ ପିନ୍ଧି ପ୍ରାଙ୍ଗଣକୁ ଆସିଥିଲେ ମଧ୍ୟ ପ୍ରତ୍ୟେକ ମୋର

ନିଜ କଥା କହିଲେ ଚଳେ, ଅର୍ଥାତ୍ ନୁଖୁରା ଅଭିମତରୁ ବଳି ମୋର ଆପଣା ଅନୁଭବରେ ରଂଜିତ (ହୁଏତ ଦୂଷିତ) ଚିନ୍ତାବିଶେଷ । 'ମୋ ସମୟ ମୋ ସାହିତ୍ୟ' ଗ୍ରନ୍ଥର ଆମୁଖ (ମୁଁ ଓ କିଶୋରୀ ଚରଣ ନାମରେ ନାମିତ) ବେଶ ଭାବ ଉଦ୍ରେକକାରୀ । ସେଠାରେ Narrator ଓ Persona ମଧ୍ୟରେ ପ୍ରାୟତଃ ପାର୍ଥକ୍ୟର ସୀମା ରେଖା ଅସ୍ପଷ୍ଟ । "ଆଉ ଜଣକ କିଶୋରୀ ଚରଣ, ତାକୁଇ ନେଇ ଘଟେ ଯାହାକିଛି । ନା, ତା ପ୍ରତି ମୋର ହିଂସା ହେଉଛି ବୋଲି କହିଲେ ଭୁଲ ହେବ । ଅପରନ୍ତୁ ମୁଁ ବଂଚିଛି, ମୁଁ ନିଜକୁ ବଂଚେଇ ରଖିଛି, ଯେମିତିକି କିଶୋରୀ ଚରଣ ଲେଖି ଚାଲିଥିବ ତା'ର ସାହିତ୍ୟ । ସେହି ସାହିତ୍ୟ ହିଁ ମୋ ଜୀବନର ସାର୍ଥକତା । ମୁଁ ସ୍ୱୀକାର କରୁଛି ଯେ ସେ ପୃଷ୍ଠା ପୃଷ୍ଠା ବ୍ୟାପୀ ଅନେକ ସୁନ୍ଦର ଏବଂ ଠିକଣା କଥା କହିଛି । କିନ୍ତୁ ତା ବୋଲି ମୁଁ ଯେ ରକ୍ଷା ପାଇଯିବି, ତା ନୁହେଁ । କାରଣ ଯାହା ଅଛି ସେଥିରେ ତା'ଉପରେ ଅଧିକାର କେଉଁ ବ୍ୟକ୍ତିର ନୁହେଁ, ତା' ନିଜର ବି ନୁହେଁ, କେବଳ ଆମ ଭାଷା ସାହିତ୍ୟ ଅଥବା ଐତିହ୍ୟର । ଏଣେ ମୁଁ ନିଶ୍ଚିହ୍ନ ହୋଇଯିବି । ଆଉ ଲୋକଟା ପାଖରେ ରହିଯିବ ଖାଲି, ମୋର ବିକ୍ଷିପ୍ତ ଅନୁଭୂତିର ପଟିଆରା । ସେସବୁକୁ ମୁଁ ଧୀରେ ଧୀରେ ଦେଇ ସାରିଲିଣି ତାକୁ, ଯଦିଓ ମୁଁ ଜାଣେ ତା'ର ମନ୍ଦଗୁଣ । ଜାଣେ ସେ ତାକୁ ବଢ଼େଇବ, ଫୁଲେଇବ ସେଥିରେ କେତେ ରଂଗ ବୋଳିବ ଅବା ତାକୁ ବିକୃତ କରିବ । କିନ୍ତୁ ମୁଁ ନିରୂପାୟ । ମୋ ଜୀବନଟା ହେଲା ଏଇଆ, ଗୋଟାଏ ଦିଆନିଆ ଓଗାଳ ଉତାରର ଭେଳିକି, ଯେଉଁଥିରେ ମୋର ସବୁକିଛି କ୍ଷୟ ହୁଏ, ନଷ୍ଟ ହୋଇଯାଏ ଅବା ଚାଲିଯାଏ ତା ହାତକୁ । ହେଲେ ମୁଁ ସ୍ଥିର କରିପାରୁ ନାହିଁ, ଏଇ କେଇପଦ କଥା କିଏ ଲେଖିଲା ସେ ନା ମୁଁ ।"

ଆଲୋଚ୍ୟ ତିନିଗୋଟିଯାକ ଗ୍ରନ୍ଥରୁ ଲେଖକଙ୍କ ନିଜକଥା ପର୍ଯ୍ୟାୟ ଗୁଡ଼ିକରୁ ଉଦ୍ଧୃତି ଦେବାର ପ୍ରୟୋଜନ ଏହି ଯେ ଏଥିରେ କଥାକାର କିଶୋରୀ ଚରଣ ତାଙ୍କ personaର କଥାକାରିତାକୁ କହିଛନ୍ତି ଅହଂକାରଶୂନ୍ୟ ଭାବରେ ଓ ଯାହା ବିକଶିତ ହୋଇଛି ନାନାଦି ପର୍ଯ୍ୟାୟ ଦେଇ । ଏଥିରୁ ମନେ ହେଉଛି ତେଲଲୁଣର ବାସ୍ତବତା ସହିତ ଜଡ଼ିତ ହୋଇ ପୁଣି ନ ହୋଇ, ପଦ୍ମ ପତ୍ରରେ ଜଳପରି ସଂସାରକୁ ଆବୋରି ପୁଣି ଅସ୍ୱୀକାର କରି ଲେଖକ ଯେଉଁ ସଂସାର ରଚେ, ତାହା ଯେମିତି ବୈଚିତ୍ର୍ୟମଣ୍ଡିତ ସେମିତି ମଧ୍ୟ ସ୍ୱତନ୍ତ୍ର । ସେଥିପାଇଁ କିଶୋରୀ ଚରଣ କହନ୍ତି ଯେ ଲେଖକର ସଂସାର ଗୋଲ୍ । ହୁଏତ ଭୌଗଳିକ ପୃଥିବୀ ଗୋଲ ହୋଇପାରେ କିମ୍ବା ମଣିଷର ଜନ୍ମ-ମୃତ୍ୟୁ, ଉଦୟ-ଅସ୍ତ ବୀଜ ବଟର କ୍ରମ ଗୋଲ ହୋଇପାରେ କିନ୍ତୁ ନିତିଦିନିଆ ବାସ୍ତବ ସଂସାର ସେମିତି ନୁହେଁ । ଏହାକୁ ସେ ତାଙ୍କର ଦାର୍ଶନିକ ଉଚ୍ଚାରଣ ଓ ଯୁକ୍ତିନିଷ୍ଠତା ମଧ୍ୟ ଦେଇ ବୁଝାଇଛନ୍ତି । ତାଙ୍କ ମତରେ ବାସ୍ତବ ସଂସାର ଯଦି ଗୋଲ ହୋଇଥାଆନ୍ତା ତାହେଲେ ମାନବର ଜୀବନ ପରିଧି ସଂପୂର୍ଣ୍ଣ ନହେଉଣୁ ଅକାରଣଟାରେ କଟିଯାଉ ନ ଥାନ୍ତା । ମଣିଷ କେତେବେଳେ ସରଳ ସୁନ୍ଦର ପରି ମନେ

ହେଲେ ବି ପରେ ଦଗାବାଜ୍ ଓ ଜାଲିଆତ୍ ବୋଲି ମନେ ହେଉନଥାନ୍ତା । ପୁଣି ଭଲ ଲୋକ ଘାଣ୍ଟି ହେଉନଥାନ୍ତା ଆଉ ଦୁଷ୍ଟଲୋକ ଏଠି ବସି ମଉଜ ମଜ୍‌ଲିସ କରୁନଥାନ୍ତା । ତେଣୁ ବାସ୍ତବ ଅନୁଭୂତିରେ ବ୍ରହ୍ମାଣ୍ଡ ଗୋଲ ନ ହୋଇ ଆବୁଡ଼ାଖାବୁଡ଼ା, ଖଣ୍ଡିଆଖାବରା, ମୋଟାମୋଟି ଆମରି ଚେତନା, ଏହି ଭାବରେ ଆମକୁ ସଂସାର ସଂପର୍କରେ ପରିଚିତ କରାଏ ।

କବି ସଂସାରକୁ ଦେଉଳି ପରି ଗଢ଼େ । ଧ୍ୱନି ଓ ରୂପକ ମଧ୍ୟରେ ଚେତନାକୁ ବାନ୍ଧି ଦିଏ । ଚିତ୍ରକାର ପାରସ୍ପରିକତାର କଳାକୌଶଳ ସୃଷ୍ଟି କରେ । ଗାଳ୍ପିକ କିନ୍ତୁ ଅଖାଡୁଆ, ବେଢ଼ଙ୍ଗ, ଛଉଛଉକା ମଣିଷକୁ ଗୋଲ ଅର୍ଥାତ୍ ଚରିତ୍ର ବିଶେଷ ବା କ୍ୟାରେକ୍ଟର କରିଦିଏ । ତେବେ ସ୍ରଷ୍ଟା ନିଜ ଇଚ୍ଛାରେ ତିଆରି କରେ ତା'ର ସଂସାର । ତାହା ସୁନ୍ଦର, ସେଠାରେ ସେ କୁତ୍ସିତକୁ କୃଷ୍ଣ କରି ଦେଇପାରେ । ଭାଷା ଓ ଭାବର ଅପୂର୍ବ ସଂଯୋଜନାରେ ତିଆରି ହୁଏ ଏଇ ଜଗତ, ସୁନ୍ଦର ଜଗତ । ନିଜର କଥାଜଗତ ବିଷୟରେ କିଶୋରୀ ଚରଣଙ୍କ ବକ୍ତବ୍ୟ ହେଲା ଲେଖକ ମାଡ଼ିଯାଏ । କହେ, ଏଇ ଗୋଲେଇପଣରେ ଗୋଟିଏ ବିଶେଷ ଗୁଣ ଅଛି, ସୌନ୍ଦର୍ଯ୍ୟବୋଧ ଅଛି, ଯାହା ତୁମ ସଂସାରରେ ଅଛି କି ନାହିଁ ବୋଲି ତୁମର ଭ୍ରମ ହୁଏ । ଦେଖିବାକୁ ଗଲେ ମୋ ସଂସାର କେବଳ ସୁନ୍ଦର ନୁହେଁ । ସୁନ୍ଦର ଓ ସବୁଦିନର । ତାଛଡ଼ା କହିଲେ ଲାଗିବ ତୁମର ସୌନ୍ଦର୍ଯ୍ୟବୋଧ ବସ୍ତୁଟିକୁ ମୁଁ ଗଢ଼ିଛି । ଯେମିତିକି ବଣ୍ଡଷ୍ଟ୍ରିଟ୍ ଫିଫ୍‌ଥ ଆଭିନିଉର ଦରଜି ପ୍ରକୃତରେ ଫେସନ୍ ଅନୁଯାୟୀ ପୋଷାକ ତିଆରି କରେ ନାହିଁ, ଆପଣା ମତଲବ୍‌ରେ ପୋଷାକ ସୃଷ୍ଟି କରି ଫେସନ୍ ଚାଲୁ କରେ, ଏଇ ହେଉଛି ଆମ ସୁନ୍ଦର ସଂସାରର ଗୋପନ ଗାରିମା aesthetics । କଳା କେବଳ Order to form, ଗଣ୍ଡଗୋଳିଆ ସଂସାରର ସଂହତି ନୁହେଁ । କଳାକାର ସ୍ୱଇଚ୍ଛାରେ ଆପଣା ସଂସାରର ବିଶିଷ୍ଟ ସଂହତି ତିଆରି କରେ । ଭାଷା ଓ ଭାବର କାରସାଦିରେ ଏକ ବିଶିଷ୍ଟ ସୁନ୍ଦରତାର ଆନନ୍ଦ ଆଣି ଦେବାକୁ ଚେଷ୍ଟା କରେ, ଯଦ୍ୱାରା ପ୍ରତି ଲେଖକର ସଂସାର ଏକାଧାରରେ ଭିନ୍ନ ସ୍ୱାଧୀନ ଓ ସୁନ୍ଦର ହୋଇ ଶୋଭାପାଏ । (ଲେଖକର ସଂସାର ପୃ -୫)

ପ୍ରତିଟି ସୃଷ୍ଟି ମଧ୍ୟରେ ଲୁକ୍‌କାୟିତ 'ମୁଁ' ପଣିଆ ସଂପର୍କରେ ଚମତ୍କାର ବ୍ୟାଖ୍ୟା ରହିଛି ଲେଖକର ସଂସାର ପ୍ରବଂଧରେ । ଏହି ମୁଁ ପଣିଆ ହେଉଛି ପ୍ରକୃତରେ ଲେଖକର ଗୌରବ, ତା'ର ସ୍ୱାଧୀନତା ତଥା ତା'ର ନିଆରା ଢ଼ଂଗ । ଆପଣା ସୃଷ୍ଟିରେ ସେ ବିଭୋର । ସ୍ରଷ୍ଟା କିଶୋରୀ ଚରଣଙ୍କ ସ୍ୱୀକାରୋକ୍ତିକୁ ଲକ୍ଷ୍ୟ କରାଯାଉ ।

''ମୁଁ ଜଣେ ସାମାନ୍ୟ ଲେଖକ । ତେଣୁ ମୁଁ ତୃତୀୟ ବ୍ୟକ୍ତି ହୋଇ ପାରିବି ନାହିଁ । ସାହିତ୍ୟର ଭବିଷ୍ୟତ କଅଣ ହେବ ମୁଁ ଜାଣେ ନାହିଁ । କିନ୍ତୁ ମୋର ବିଶ୍ୱାସ ମୋ ପରି ଅନେକ ଲୋକ ଅଛନ୍ତି ଓ ଯୁଗେ ଯୁଗେ ରହିବେ, ଯେଉଁମାନେ ସଂସାରଗଢ଼ାର ମୋହ ଛାଡ଼ିପାରିବେ ନାହିଁ । କାରଣ ସେଇ ହେଉଛି ତାଙ୍କ ଅକ୍ଷମତାର ମାପ ଓ ପରିପୂରକ । ସେଇ

ହେଉଛି ତାଙ୍କ ଭଗବାନପଣିଆ, ନିଆଁ ଲିଭେଇ ନପାରିବା ପାପର ପ୍ରାୟଶ୍ଚିତ ।'' (ଲେଖକର ସଂସାର -ପୃ ୧୧) ।

'ଲେଖକର ସଂସାର' ଗ୍ରନ୍ଥରେ ଲେଖକର ସଂସାର ବ୍ୟତୀତ ଆଉ ଯେଉଁ ପ୍ରବଂଧ ଗୁଡ଼ିକ ରହିଛି ସେଗୁଡ଼ିକ ହେଲା 'ସମସାମୟିକ ଓଡ଼ିଆ ସାହିତ୍ୟ ଏକ ଦୃଷ୍ଟିକୋଣ', 'ଗଳ୍ପ ଓ ଗଣତନ୍ତ୍ର', 'ହିସାବନିକାଶ', 'ଭାବଭାବନା', 'ଛାଇ ଆଲୁଅ' ଓ 'ସାହିତ୍ୟ' ? ଭଲ ଭଲ ... । 'ସମସାମୟିକ ଓଡ଼ିଆ ସାହିତ୍ୟ : ଏକ ଦୃଷ୍ଟିକୋଣ' ପ୍ରବଂଧରେ ଲେଖକ ତାଙ୍କ ସମକାଳର ସାହିତ୍ୟିକ ଚିତ୍ରପଟ ସଂପର୍କରେ ନିଜର ପ୍ରତିକ୍ରିୟାକୁ ପ୍ରକାଶ କରିଛନ୍ତି । ତାଙ୍କ ମତରେ ଦୀର୍ଘଦିନ ଠାରୁ ବର୍ତ୍ତମାନ ଯାଏ ସାହିତ୍ୟର ଭାବ ରାଜ୍ୟରେ ଓ ଆଙ୍ଗିକ ସ୍ତରରେ ଯେଉଁ ପରିବର୍ତ୍ତନ ସଂଘଟିତ ହୋଇଛି ତା'ର ସୀମା ସରହଦ କଳନା କରିବା କଠିନ । କିନ୍ତୁ ଏଇ ପରିବର୍ତ୍ତନର ଧାରାଟି ହେଲା ବୃତ୍ତଗତି ଓ ଏହାର ତିନିଗୋଟି ବୈଶିଷ୍ଟ୍ୟ ରହିଛି । ତାହା ହେଲା (କ) ସରଳରୁ ଜଟିଳ (ଖ) ଦୁଃଖରୁ ଦୈନ୍ୟ (ଗ) ସତରୁ ବାସ୍ତବ । ଆଉ ଥରେ ସରଳକୁ ଫେରି ହେବ ନାହିଁ, ଟ୍ରାଜେଡ଼ିକୁ ମଧ୍ୟ ଓଲଟେଇ ଦେଇ ହେବ ନାହିଁ ବା ଇଉରେକାର ସାର୍ଥକତା ମିଳିବ ନାହିଁ । ଏ ଦୃଷ୍ଟିରୁ ସାଂପ୍ରତିକ କାଳର ଲେଖକଗଣ ପଶ୍ଚାଦ୍‌ଗାମୀ ହେବାର ଆବଶ୍ୟକତା ନାହିଁ । ତାହା ଅନ୍ୟର ଖୁସିରେ ହେଉ ବା ନିଜ ମର୍ଜିରେ ହେଉ । ତେଣୁ କିଶୋରୀ ଚରଣଙ୍କ ଆହ୍ୱାନ ହେଲା ଆଜିର ଲେଖକଗଣ ଆବେଗର ତାଡ଼ନାରେ, ଚିନ୍ତାର ମାଧ୍ୟମରେ, ଉପଲବ୍ଧିର ଲୋଭରେ ଲେଖିଯାଆନ୍ତୁ ତଥା ସୃଷ୍ଟି କର୍ମରେ ପ୍ରବୃତ୍ତ ହୁଅନ୍ତୁ । 'ଲେଖକର ସଂସାର' ସଂକଳନସ୍ଥ ଅନ୍ୟ ଏକ ମୌଳିକ ପ୍ରବଂଧ 'ଗଳ୍ପ ଓ ଗଣତନ୍ତ୍ର' । ଏହି ଲେଖକୀୟ ପ୍ରତିକ୍ରିୟାର ପୃଷ୍ଠଭୂମିରେ ରହିଛି ବିଶିଷ୍ଟ ସମାଲୋଚକ ଡଃ ନିତ୍ୟାନନ୍ଦ ଶତପଥୀଙ୍କ 'ପାଞ୍ଚଜନ୍ୟ' ପତ୍ରିକାରେ ପ୍ରକାଶ ପାଇଥିବା 'ଗମନ ଓ କିଶୋରୀ ଗଳ୍ପ ମାନସ' ଶୀର୍ଷକ ପ୍ରବଂଧ । ପ୍ରକାଶିତ ଉପରୋକ୍ତ ପ୍ରବଂଧରେ ଡଃ. ଶତପଥୀ କହିଥିଲେ ''ହୁଏତ ତାଙ୍କ ଚରିତ୍ର ପ୍ରଧାନ ଗଳ୍ପ ଗୁଡ଼ିକର ଅନ୍ତରାଳରେ ଏପରି ରହସ୍ୟ ରହିଛି ଯାହା ସଚେତନ ବୁଦ୍ଧିଜୀବୀ ପାଠକକୁ ଖୁବ୍ ଆଲୋଡ଼ିତ କରେ । କିନ୍ତୁ ଗଳ୍ପ କଳାର ବିଶେଷତ୍ୱ ରହିଛି ଏହାର ସଚରାଚର ଆବେଦନରେ । ଏଇଥିପାଇଁ ଗଳ୍ପକୁ ଯୁଗ ଯୁଗ ଧରି ଏକ ଗଣତାନ୍ତ୍ରିକ କଳା ଭାବେ ଦାବି କରାଯାଇଛି ।''

କିଶୋରୀ ଚରଣ ଏ ପ୍ରସଂଗରେ ନିଜର ଯେଉଁ ବକ୍ତବ୍ୟ ବାଢ଼ିଛନ୍ତି ସେଥିରେ ସେ ଗଳ୍ପ ସହ ଗଣତାନ୍ତ୍ରିକ ମୂଲ୍ୟବୋଧର ସଂପର୍କ, ସାହିତ୍ୟର ଗଦ୍ୟମୟତା ଓ ପଦ୍ୟମୟତା ଗଣତାନ୍ତ୍ରିକ ଓ ସାହିତ୍ୟିକ ଅନୁଶାସନ ପ୍ରଭୃତି ବିଷୟ ବସ୍ତୁକୁ ନେଇ ଗୁରୁତ୍ୱପୂର୍ଣ୍ଣ ଆଲୋଚନାମାନ କରିଛନ୍ତି । ଏହି ଆଲୋଚନାରୁ ପ୍ରତୀୟମାନ ହେଉଛି ଯେ ସେ ଗଳ୍ପ କିମ୍ବା ସାହିତ୍ୟକୁ କୌଣସି ଅନୁଶାସନର ପରିଧି ମଧ୍ୟରେ ବା ନୀତିନିୟମର ନିଗଡ଼ ବଂଧନ ମଧ୍ୟରେ ବାଂଧି ରଖିବାରେ ବିଶ୍ୱାସ ପୋଷଣ କରନ୍ତି ନାହିଁ । ବସ୍ତୁତଃ ଏହା ହେଉଛି ସାହିତ୍ୟର ଧର୍ମ । ପଦ୍ୟମୟ ଗଦ୍ୟ ଓ

ଗଦ୍ୟମୟ ପଦ୍ୟର ବିବରଣୀ ଏ ପ୍ରସଂଗରେ କିଶୋରୀ.ଚରଣ ଦେଇଛନ୍ତି । ତାଙ୍କ ଦୃଷ୍ଟିରେ ଗଦ୍ୟ, ପଦ୍ୟ ଉଭୟେ ସାହିତ୍ୟ । ''ତତ୍ତ୍ୱଭେଦରେ କେଉଁଠି ଭୋଳ ହୋଇଯିବାକୁ ମନହୁଏ, କେଉଁଠି ତେଜି ଉଠିବାକୁ ଇଛା ହୁଏ ଅବା କେଉଁଠି ଖୋଲା ଆଖିରେ ଚାହିଁ ଚେତିବାର ପ୍ରବଣତା ଆସେ । ଆକାର ପ୍ରକାର ଭେଦରେ ଭିନ୍ନ ଭିନ୍ନ ପୋଷାକ ପିନ୍ଧି ଆସନ୍ତି, ଗୋଟିକରେ ନାରୀଭାବ ଉତୁରି ଆସୁଛି ବୋଲି ମନେ ହୁଏ, ଅନ୍ୟଟିରେ ପୁରୁଷପଣ, ହେଲେ ଦୁହେଁ ସମ୍ମୋହକ । ଦୁହେଁଯାକ ତୁମ ଆମ ଚେତନାକୁ ଛୁଇଁ ଆଉଁଶି ଭିଡ଼ି ଆଣିବାକୁ ଚାହାନ୍ତି । ତେଣୁ କାହାକୁ ଗଣତାନ୍ତ୍ରିକ ବୋଲି କହିବ ?'' (ଗଳ୍ପ ଓ ଗଣତନ୍ତ୍ର - ଲେଖକର ସଂସାର ପୃ-୪୦)

'ହିସାବନିକାଶ' ପ୍ରବଂଧରେ ପ୍ରାବଂଧିକ ତାଙ୍କର ବୃତ୍ତିଗତ ଜୀବନ ଓ ପ୍ରବୃତ୍ତି ମଧ୍ୟରେ ସଂପର୍କର ସେତୁ ସ୍ଥାପନ କରିଛନ୍ତି । ବୃତ୍ତି ଓ ପ୍ରବୃତ୍ତି ମଧ୍ୟରେ ଦ୍ୱନ୍ଦ୍ୱ, ବିରୋଧ ଅପେକ୍ଷା ସେ ଦୁଇଟି ମଧ୍ୟରେ ଅନୁଷ୍ଠିତ ହୋଇଥିବା ଯେଉଁ ସଂପର୍କ, ସମନ୍ୱୟ ତଥା ଯୋଗାଯୋଗର କଥା କହିଛନ୍ତି ତାହା ତାଙ୍କର ବ୍ୟାପକ ଜୀବନ ଦୃଷ୍ଟିର ପରିଚୟ ଦେଇଥାଏ । 'ଭାବଭାବନା', 'ଛାଇଆଲୁଅ', ସାହିତ୍ୟ ? ଭଲ ଭଲ .... । ଏଇ ତିନିଗୋଟି ପ୍ରବଂଧରେ ସେହି ନିବିଡ଼ ଅନ୍ତରଂଗ ଅନୁଭବର କଥା ପ୍ରକାଶ ପାଇଛି । ପ୍ରାବଂଧିକ ସ୍ୱୀକାର କରିଛନ୍ତି ଯେ - ବାହାରର ଜୀବନ କେବଳ ଛାଇ ଆଲୁଅର ଖେଳ ନୁହେଁ, ମଣିଷର ଚେତନା ଜଗତରେ ମଧ୍ୟ ତା'ର ଲୁଚକାଳି ଖେଳ । ଏହି ପ୍ରସଂଗର ବର୍ଣ୍ଣନା କଲାବେଳେ ବେଶ୍ କବିତ୍ୱର ବର୍ଣ୍ଣନା ସୃଷ୍ଟି କରିଛନ୍ତି କିଶୋରୀ ଚରଣ ''ଛଳ ଛଳ ଚଳନ୍ତା ପାଣିରେ ଖରା ପଡ଼ିଛି । ଛାଇ ଆଲୁଅ ବାରି ହୋଇଯାଉଛି । କିନ୍ତୁ ଦୁହିଁଙ୍କୁ ଦୁହେଁ କୋଳାକୋଳି ହେଉଛନ୍ତି, ମାଡ଼ଗୋଳ ହେଉଛନ୍ତି । ସିରିସିରି ପବନରେ ଅସ୍ତବ୍ୟସ୍ତ ହେଉଥିବା ପତର ମାନଙ୍କର ଛାଇ । ଅଂଧାର ସଂଗରେ ଖେଳୁଥିବା କବି କାଳିଦାସଙ୍କ ଭାଷାରେ କଳା ମେଘକୁ କଂକଣ ପିନ୍ଧାଉଥିବା ବହ୍ନି ବିଜୁଳିର ଛଇ ଏବଂ ନାରୀ ପୁରୁଷର ରାଗଲୁହ ଦଂଶନ, ଚୁମ୍ବନ, ଏଇ କ'ଣ ଆମ ଚେତନାର ସତ୍ୟ ନୁହେଁ ? (ଛାଇ ଆଲୁଅ -ଲେଖକର ସଂସାର - ପୃ -୮୧)

ଆଜିର ବାସ୍ତବବାଦ ସର୍ବସ୍ୱ ଜୀବନଚର୍ଯ୍ୟାରେ ସାହିତ୍ୟିକ ଓ ସାହିତ୍ୟ ସଂପର୍କରେ ମିଳୁଥିବା ଉପର ଠାଉରିଆ ମତାମତ ଓ ସାହିତ୍ୟିକକୁ ସମାଜରେ ଯେଉଁ ଆସନ ଦିଆଯାଏ ସେ ନେଇ ନିଜସ୍ୱ ଦୃଷ୍ଟିଭଙ୍ଗୀ ପ୍ରକଟ କରିଛନ୍ତି ପ୍ରାବଂଧିକ 'ସାହିତ୍ୟ ? ଭଲ ଭଲ' ... ଶୀର୍ଷକ ପ୍ରବଂଧରେ ।

'ଲେଖକର ଦୁଃଖ' ପ୍ରବଂଧ ସଂକଳନରେ ସ୍ଥାନିତ ହୋଇଛି ଏଗାରଗୋଟି ପ୍ରବଂଧ । 'ପ୍ରଣମାମି', 'ସୁନ୍ଦର ଭଗବାନ', 'ଯେବେ ଜାଣିଲି ଯେ ମୁଁ ବନ୍ଦୀ', 'ଅକୁହା କାହାଣୀ', 'ଏକବିଂଶ ଶତାବ୍ଦୀର ଭୂତ', 'ଓଡ଼ିଆ କ୍ଷୁଦ୍ରଗଳ୍ପ ସୂଚନା ଓ ସମ୍ଭାବନା', 'ସାଂପ୍ରତିକ ଓଡ଼ିଆ

ଉପନ୍ୟାସର ସମସ୍ୟା', 'ମୋ ଦୃଷ୍ଟିରେ ନାରୀ', 'ପ୍ରେମପତ୍ର ବନାମ ପାପ', 'ମୋ ସମୟ ମୋ ସାହିତ୍ୟ' ଓ 'ଲେଖକର ଦୁଃଖ' । 'ଲେଖକର ଦୁଃଖ' ପୁଣି ଦଶଗୋଟି ପର୍ଯ୍ୟାୟରେ ବିଭକ୍ତ । ସେହି ପର୍ଯ୍ୟାୟ ଗୁଡ଼ିକ ହେଲା 'ଭୂମିକା', 'ଭୋକ', 'ଶବ୍ଦ', 'ରୋମାନ୍ସ', 'ବାସ୍ତବ', 'ସ୍ୱାକ୍ଷର', 'ଚରିତ୍ର', 'ସମାଜ', 'ସ୍ୱୀକୃତି' ଓ 'ସନ୍ନ୍ୟାସ' । ଶୀର୍ଷକ ପ୍ରବଂଧ 'ଲେଖକର ଦୁଃଖ' 'ଲେଖକର ସଂସାର' ପରବର୍ତ୍ତୀ କାଳର ରଚନା । ଏଥିରେ ପ୍ରତିପାଦିତ ହୋଇଛି ଯେ ଲେଖକ କପାଳରେ ସତେ ଯେମିତି ସଂସାରୀ ମଣିଷମାନଙ୍କ ପରି ସହଜ ସୁଲଭ ଆନନ୍ଦ ନାହିଁ । ଦୁଃଖର, ବିଷାଦର ପରିଧି ମଧରେ ସେ ବଂଚିବା ପାଇଁ ବାଧ । ଦୁଃଖଦତ୍ତ ଜ୍ଞାନ ଚକ୍ଷୁରେ ଜଗତକୁ ଅବଲୋକନ କରିବା ନିମିତ୍ତ ସତେ ଯେମିତି ଲେଖକର ଭାଗ୍ୟ ନିର୍ଦ୍ଦିଷ୍ଟ । କିଶୋରୀ ଚରଣଙ୍କ ଦୃଷ୍ଟିରେ ଏହି ଦୁଃଖ ହାଲୁକା ଦୁଃଖ, ଉଷୁମ ଦୁଃଖ, ଉଆଁସୀ ଦୁଃଖ ଓ ଗଭୀର ଦୁଃଖ ଆଦି ପର୍ଯ୍ୟାୟ ଗୁଡ଼ିକରେ ବିଭକ୍ତ । ପ୍ରାବଂଧିକଙ୍କର ଅନୁଭବ ହେଲା - ''କାହିଁକି କେଉଁ କୁକ୍ଷଣରେ କଲମ ଧରିଲି ଯେ ଏମାନଙ୍କ ସହଜ ସୁଲଭ ଆନନ୍ଦ ମୋ କପାଳରେ ନାହିଁ । 'ଏମାନେ' ହେଲେ ମୋର ଅଲେଖକ ଭାଇ ବଂଧୁ, ଆତ୍ମୀୟସ୍ୱଜନ, ତଥା ଗରାଖ ଓ ପାଠକ । ଯେଉଁମାନେ ମୋ ସଂସାରର ସହବାସୀ ଓ ପ୍ରତିବେଶୀ । କେତେଜଣ ଅନ୍ତରଂଗ ମଧ । ମାନୁଛି ଯେ ତାଙ୍କ ଭିତରୁ ଥୋକେ ମୋତେ ପ୍ରଶଂସା କରନ୍ତି, ମୋତେ ଉଚ୍ଚ ଆସନରେ ବସେଇବାର ପ୍ରଯତ୍ନ କରନ୍ତି । କିନ୍ତୁ ମୋତେ କ'ଣ ମିଳିବ ସେଥିରୁ, ଯଦି ପରେ ମୋତେ ମୋ ନିଜ ଉଦ୍ଦେଶ୍ୟରେ 'ହାୟ' ହାୟ !' କରିବାକୁ ପଡ଼େ । ମଧ ଥରେ ଅଧେ ଲୁହ ଗଡ଼େଇ ଅବା ଆଖି ମଳିମଳି କାନ୍ଦିବାକୁ ପଡ଼େ ।'' (ଲେଖକର ଦୁଃଖ ପୃ - ୧୧୫)

ଦୁଃଖ ସଂପର୍କୀୟ ଏହି ଅନୁଭବଗୁଡ଼ିକ ପରବର୍ତ୍ତୀ ପର୍ଯ୍ୟାୟରେ 'ଭୂମିକା', 'ଭୋକ', 'ଶବ୍ଦ' ଆଦି ବିବିଧ ପର୍ଯ୍ୟାୟରେ (ଦଶଗୋଟି ପର୍ଯ୍ୟାୟ) ବିଶ୍ଳେଷିତ ହୋଇଛି । ବିଶ୍ଳେଷଣ ଭିତରେ ଖୁବ୍ ଅନ୍ତରଂଗ ଭାବରେ ନିବିଡ଼, ଗହନ ଓ ଚିନ୍ତା ଉଦ୍ରେକକାରୀ ବକ୍ତବ୍ୟର ଉପସ୍ଥାପନ ପ୍ରବଂଧର ଗାରିମା ବୃଦ୍ଧି ଦିଗରେ ସହାୟକ ହୋଇଛି । ଏହି ଦୀର୍ଘ ପ୍ରବଂଧଟିରେ ଗୋଟିଏ ପ୍ରସଂଗ ମଧରୁ ଆହୁରି ନାନାଦି ପ୍ରସଂଗ ଓ ଘଟଣା ମାନଙ୍କର ଅବତାରଣା ଘଟୁଛି ଖିଅ ଲମ୍ବିଲା ପରି । John Freeman ପ୍ରାବଂଧିକ ମାନଙ୍କ ସଂପର୍କରେ ଏକ ଗୁରୁତ୍ୱପୂର୍ଣ୍ଣ କଥା କହିଥିଲେ । ତାହା ହେଲା - "The intellectual spendthrift is the true essayist, if only to have enough to spend". ବ୍ୟକ୍ତିନିଷ୍ଠ ପ୍ରବଂଧ ଗୁଡ଼ିକରେ ବୌଦ୍ଧିକ ବାକ୍‌ବିଳାସ ଓ ପ୍ରଗଳ୍‌ଭତା ରହିବା ସ୍ୱାଭାବିକ । ଏହାକୁ କଳାଶିଳ୍ପଗତ ପ୍ରମାଦ ବୋଲି କହିହେବ ନାହିଁ । ପ୍ରାବଂଧିକ କିଶୋରୀ ଚରଣ ଯେ ବୌଦ୍ଧିକ ବାକ୍‌ବାଜି କରୁଛନ୍ତି ତାଙ୍କ ପ୍ରବଂଧର ପରିସର ମଧରେ ସେ ବିଷୟରେ ସେ ବେଶ ସଚେତନ । 'ଲେଖକର ଦୁଃଖ' ଗ୍ରନ୍ଥର ପରିସମାପ୍ତିରେ ତାଙ୍କର ଉଚ୍ଚାରଣ ହେଲା ''ମୁକ୍ତିକାମୀ ବକର ବକର । ମୁମୁକ୍ଷୁତ୍ୱଂ, ଶଂକରଙ୍କ ସାଧନ

ଚତୁଷ୍ଟୟରେ ଥିବା ଚତୁର୍ଥ ସାଧନ । ମୁକ୍ତି ଲଭିବାର ପ୍ରବଳ ଇଚ୍ଛା । ହସିଲେ ହସନ୍ତୁ ପଛେ, ମୋର ଅମାନିଆଁ ଗୁଞ୍ଜନ, କ୍ରନ୍ଦନ, ଗର୍ଜନ, ତର୍ଜନ ଇତ୍ୟାଦିରେ କ'ଣ ନାହିଁ ସେହି ବ୍ୟାକୁଳତା ? ତେଣୁ ଦେଖାଯାଉଛି ମୁଁ ଏମିତି ବକର ବକର ହେଉଥିବି ପାଟି ପଡ଼ିବା ଯାଏଁ । ସନ୍ନ୍ୟାସୀର ସ୍ୱର୍ଗକୁ ନଗଲେ ନାହିଁ, ଛଦ୍ମବେଶୀ ମନେ ହେଉଥିବା ଧଳା କୁକୁରଟି ମୋ ସାଙ୍ଗରେ ଥିବ । ମୋ ଦୁଃଖର ସାଥୀ ଅଥବା ସଫେଇ ।'' (ଲେଖକର ଦୁଃଖ - ସନ୍ନ୍ୟାସ ପୃ-୧୫୫)

ସେହି entellectual spend thriftର ଦୃଷ୍ଟାନ୍ତ କିଶୋରୀ ଚରଣଙ୍କର 'ମୋ ସାହିତ୍ୟ ମୋ ସମୟ' ଗ୍ରନ୍ଥରେ ମଧ ମିଳିବ । ନିଜର ଆତ୍ମସଫେଇ ସଂପର୍କରେ ସେ ସଚେତନ । ସେ କହିଛନ୍ତି - ''ଆତ୍ମ ଜୀବନୀ ଲେଖିବାକୁ ମାଡ଼ିପଡୁଛି ସିନା, ବର୍ଷୀୟାନ୍ ବାପା ମଉସାଙ୍କୁ ଯେଉଁ ସ୍ୱାଧୀନତା ଦିଆଯାଏ ଆମ ସମାଜରେ, ତାଙ୍କ ନିଜ ବିଷୟରେ ଏଣୁ ତେଣୁ ଗପିବା ପାଇଁ ମୁଁ ସେଥିରୁ ବଂଚିତ ହେବି କାହିଁକି ? (ନିଜ ବିଷୟରେ - ମୋ ସମୟ ମୋ ସାହିତ୍ୟ) ।

'ଲେଖକର ଦୁଃଖ' ସଂକଳନରେ ସଂକଳିତ 'ମୋ ସମୟ ମୋ ସାହିତ୍ୟ' ପ୍ରବଂଧଟି ମଧ ଉକ୍ତ ସଂକଳନରେ ସ୍ଥାନ ପାଇଛି ଓ ଗ୍ରନ୍ଥର ଆଦ୍ୟରେ ସ୍ଥାନିତ ଏହି ପ୍ରବଂଧଟିର ନାମାନୁସାରେ ଗ୍ରନ୍ଥର ନାମ 'ମୋ ସମୟ ମୋ ସାହିତ୍ୟ' ହୋଇଛି । ସଂକଳନସ୍ଥ ଅନ୍ୟ ପ୍ରବଂଧ ଗୁଡ଼ିକ ଯଥା - 'ସମୟ ନାହିଁ', 'ସାଂପ୍ରତିକ ସାହିତ୍ୟ', 'ପ୍ରକାଶନ ଶିଳ୍ପ', 'ଏକ ପ୍ରାର୍ଥୀପତ୍ର', 'ଉତ୍କୃଷ୍ଟ ଗଳ୍ପର କ,ଖ,ଗ', 'ଆଧୁନିକ କ୍ଷୁଦ୍ର ଗଳ୍ପର ଆକାର ପ୍ରକାର ଏକ ଅନୁଧ୍ୟାନ, 'ଗାନ୍ଧିଜିଙ୍କ ଦୃଷ୍ଟିଭଙ୍ଗୀରେ ସମାଜ ପୁନର୍ଗଠନର ଅଭୀପ୍ସା', ଯନ୍ତ୍ରଣା ଏକ ଲେଖକୀୟ ଅନୁଭବ', 'ପହିଲି ପୁଲକ', 'ଅଦିନ ଝଡ଼', 'ଶତାବ୍ଦୀର ପ୍ରତିଶ୍ରୁତି' ପ୍ରଭୃତି ଏହି ପ୍ରକାରର ଆତ୍ମସଫେଇମୂଳକ ରଚନା ।

ଜଣେ ପରିଣତ ବୟସର ସ୍ରଷ୍ଟାଙ୍କ ଆତ୍ମିକ ଆବେଦନରେ ସମୃଦ୍ଧ ଏହି ପ୍ରବଂଧ ଗୁଡ଼ିକ । ୧୯୯୪ ମସିହାରେ କେରଳଠାରେ ଅନୁଷ୍ଠିତ ହେଉଥିବା ସର୍ବଭାରତୀୟ ସମ୍ମେଳନରେ ଯେ ଯେଉଁ ବକ୍ତବ୍ୟ ଉପସ୍ଥାପନ କରିଥିଲେ ତାର ଶୀର୍ଷକ ଥିଲା 'My writing, My times' । ସମୟର ବିବର୍ତ୍ତନ ସହ କିଶୋରୀ ଚରଣଙ୍କ ସ୍ରଷ୍ଟାମାନସର ଅଭିବ୍ୟକ୍ତି କିପରି ସଂପର୍କ ରକ୍ଷା କରିଛି ତା'ର ସୂଚନା ଦିଏ ଉକ୍ତ ପ୍ରବଂଧଟି । କିଶୋରୀ ଚରଣଙ୍କ କଥା ସମ୍ଭାରର ଗ୍ରନ୍ଥି ଉନ୍ମୋଚନ ପାଇଁ ଏହାର ଗୁରୁତ୍ୱ ରହିଛି । କିଶୋରୀ ଚରଣ ଯେଉଁ ସମୟରେ ଜନ୍ମ ଗ୍ରହଣ କରିଥିଲେ ସେତେବେଳେ ଭାରତ ବର୍ଷର ଚିନ୍ତା ଓ ଚେତନା କ୍ଷେତ୍ରରେ ଏକ ଅଭୁତପୂର୍ବ ଆଲୋଡ଼ନ ଆତ୍ମପ୍ରକାଶ କରିଥିଲା । ସେ ଲେଖାଲେଖି କଲାବେଳକୁ ଭାରତବର୍ଷର ମୁକ୍ତି ସଂଗ୍ରାମ ଏକ ନିର୍ଣ୍ଣାୟକ ସ୍ଥିତିରେ ପହଞ୍ଚି ସାରିଥିଲା । ଆମର ଭାଷା, ଆମର ସାହିତ୍ୟ, ଆମର ପ୍ରଶାସନ ଆଦିରେ ଆମ ଜାତିର ଆତ୍ମ ପରିଚିତ ପ୍ରତିଷ୍ଠିତ ହୋଇସାରିଥିଲା । ତେବେ ସେତେବେଳେ ସୂର୍ଯ୍ୟଙ୍କୁ ଦେଶର, ଜାତିର ସେଇ ପୁନର୍ଗଠନ କାଳରେ ପ୍ରାଚୀ ଗଗନରେ

ନବୋଦିତ ସୂର୍ଯ୍ୟଙ୍କୁ ଦେଖିବାର ଅବକାଶରେ ତାଙ୍କର ଅଧିକାର ଥିଲା ସ୍ୱପ୍ନ ଦେଖିବା ପାଇଁ । ସେହି ସ୍ୱପ୍ନକୁ ସେ କେତେଦୂର ରୂପାୟିତ କରିଛନ୍ତି ଓ ସାକାର କରିଛନ୍ତି ତାଙ୍କ ସାହିତ୍ୟରେ ତାହା ପ୍ରକାଶ ପାଇଛି 'ମୋ ସମୟ, ମୋ ସାହିତ୍ୟ' ଶୀର୍ଷକ ପ୍ରବଂଧରେ ।

ଆଗରୁ କୁହାଯାଇଛି ପ୍ରାବଂଧିକ କିଶୋରୀ ଚରଣ ନିଜର ବଡ଼ିମା, ବାହାଦୁରୀ ଆଦି ପ୍ରକାଶ କରିନାହାନ୍ତି ତାଙ୍କ ରଚନା ସମ୍ଭାରରେ । ନିଜର ଦୁର୍ବଳତା ସଂପର୍କରେ ସେ ସଚେତନ । ନିଜର ସାମର୍ଥ୍ୟର ବଡ଼େଇ କରି ଆତ୍ମମ୍ଭରିତା ପ୍ରକାଶର ପ୍ରଚେଷ୍ଟା ତାଙ୍କ ରଚନାରେ ନାହିଁ । ବରଂ ରହିଛି ଆତ୍ମଚେତନାର କଷଟି ପଥରରେ ନିଜର, ସମୟର ଓ ନିଜ ପରିବେଶର ଦୋଷ ଗୁଣ ପରଖିବାର ବିବେକପଣିଆ । ଆମର ଏ ଯୁକ୍ତିକୁ ବଳିଷ୍ଠ କରିବା ପାଇଁ କିଶୋରୀ ଚରଣଙ୍କ ପ୍ରବଂଧଗୁଡ଼ିକରେ ପ୍ରଚୁର ଉଦାହରଣ ରହିଛି । 'ମୋ ସମୟ ମୋ ସାହିତ୍ୟ' ପ୍ରବଂଧରୁ ଏଠାରେ ଉଦାହରଣଟିଏ ଦିଆଗଲା ।

''ବେଳେବେଳେ ନିଜକୁ କୁହେ ଯେ କଳାକାର ତା ସମୟର ସନ୍ତାନ ବୋଲି କହିବା ଗୋଟାଏ ଉପର ଠାଉରିଆ ତଥ୍ୟ । ଖୁବ୍ ବେଶି ହେଲେ ଗୋଟାଏ ଆଂଶିକ ସତ୍ୟ । କାରଣ ସଦାସର୍ବଦା ସେ ସମାଜର ସର୍ବସାଧାରଣ ମନୋବୃତ୍ତିକୁ ଉପେକ୍ଷା କରିଥାଏ । କିନ୍ତୁ ସମାଜ ତାକୁ ନମସ୍କାର କରି ତା ନିଜ ବାଟରେ ଯାଏ, ତା'ର ନାନା ଦରକାରୀ ଚାହିଦାକୁ ମେଣ୍ଟାଇବା ଲାଗି । ଅଥବା ସାର୍ତ୍ରେ କହିଲା ପରି, ଆମେ ହେଉଛୁ ଏଲିଟି (elite) ଶାସକ ଗୋଷ୍ଠୀର ମଲାଙ୍ଗ । କାରଣ ତାଙ୍କର ଶୁଭ ଦୃଷ୍ଟି ନ ପଡ଼ିଲେ ଆମେ ଉଧେଇ ପାରୁନାହିଁ, ଅଥଚ ତାଙ୍କ ବିରୁଦ୍ଧରେ ଯିବା ଆମର ସ୍ୱଧର୍ମ । ଏଇ ବିଭେଦକୁ ଘୁଞ୍ଚେଇ ହେବ କେମିତି ? ଏବଂ ନିଜକୁ ମଧ୍ୟ ସାନ୍ତ୍ୱନା ଦିଏ ଯେ ମୋଟ ଉପରେ ମୁଁ ସାହିତ୍ୟ ଲେଖୁଛି ଆପଣା ମୋକ୍ଷ ପାଇଁ । ତାହାହିଁ କ'ଣ ଯଥେଷ୍ଟ ନୁହେଁ ? 'ଆତ୍ମନଃ ମୋକ୍ଷାର୍ଥଂ' ସାଂଗକୁ 'ଜଗଦ୍ଧିତାୟଃଚ' ଶବ୍ଦ ଦିଟାକୁ କ'ଣ ନ ଯୋଡ଼ିଲେ ଚଳିବ ନାହିଁ ?

ପ୍ରାବଂଧିକଙ୍କ ମନ୍ମୟ ଦୃଷ୍ଟିରେ ଗଳ୍ପ କଥନ କଳା ଠାରୁ ଆରମ୍ଭ କରି ପ୍ରକାଶନ ଶିଳ୍ପ, ସମାଜ ଜୀବନ ଓ ସମୟର ବିବର୍ତ୍ତନ ଯେପରି ଧରାଦେଇଛି ତା'ର ରୂପାୟନ ଆମେ ଦେଖୁ 'ମୋ ସମୟ ମୋ ସାହିତ୍ୟ' ସଂକଳନରେ ସନ୍ନିବେଶିତ ପ୍ରବଂଧଗୁଡ଼ିକରେ । ଭାରତବର୍ଷର ଗୌରବମୟ ସାଂସ୍କୃତିକ ଚେତନା, ଭାରତୀୟ ସାହିତ୍ୟର ସୁଦୃଢ଼ ଓ ଉଜ୍ଜ୍ୱଳ ପରଂପରା ମଧ୍ୟରେ ଓଡ଼ିଆ ଜାତିର, ଓଡ଼ିଆ ଭାଷା ଓ ସାହିତ୍ୟର ପରାକାଷ୍ଠା ତଥା ଅସ୍ତିତ୍ୱକୁ ଖୋଜିବାର ପ୍ରୟାସ ଜାରି ରଖିବା ସହିତ କିଶୋରୀଚରଣ ବିଶ୍ୱସାହିତ୍ୟ ଓ ସଂସ୍କୃତିର ତୁଳନାତ୍ମକ ଆଲେଖ୍ୟ ପ୍ରଦାନ କରିଛନ୍ତି । ପୁଣି ଏସବୁ ତାଙ୍କର ଚିତ୍ତ ବୃତ୍ତିକୁ କେତେଦୂର ପ୍ରଭାବିତ କରିଛି ବା ଏସବୁକୁ ଗ୍ରହଣ କରିବାନେଇ ତାଙ୍କର ସାମର୍ଥ୍ୟକୁ ସେ ବେଶ୍ ବିସ୍ତାରିତ ଭାବରେ ତାଙ୍କ ପ୍ରବଂଧ ଗୁଡ଼ିକରେ ରୂପ ଦେଇଛନ୍ତି । ୧୯୮୦ ମସିହାରେ ମାର୍ଚ୍ଚ ମାସ ଏଗାର ତାରିଖରେ

ଅଷ୍ଟ୍ରେଲିଆରେ ଆୟୋଜିତ ସେମିନାରରେ Literature and Cultural Identity । ସଂପର୍କରେ ସେ ଯେଉଁ ଅଭିଭାଷଣ ଦେଇଥିଲେ ପାଠକମାନଙ୍କର ଅବଗତ ନିମନ୍ତେ ସେଥିରୁ କିୟଦଂଶ ଉଦ୍ଧାର କରୁଛୁ ।

To start with I am conscious of the fact that the country I live in is far too big in the dimensions both of time and space. I am heir to a continum of several thousand years of civilisations. I am one among six hundred thirty millions of people. The space I inhabit forms part of three million sqnare miles of land and water. This consciousness work us within me and not unoften I fell inhifited. I am not vain enough to imagine that I could even bring the entire works to bear upon my literature. Nevertheless there is a feeling of inadequency, the liliputION feeling of scratching th tiny bit of a surface, and of not being able to relate to the giant of my love and honour."

(The Literany eriterion - page - 25 Edited by C.D. Narasimhaiah)

ସାହିତ୍ୟିକ ଓ ସାଂସ୍କୃତିକ ପରିଚିତ ସଂପର୍କରେ ବକ୍ତବ୍ୟ ଉପସ୍ଥାପନ କଲାବେଳେ କିଶୋରୀ ଚରଣ ଯୁଗ ଯୁଗ ଧରି ପ୍ରବହମାନ ଭାରତୀୟ ସଂସ୍କୃତି ସଂପର୍କରେ ସୂଚନା ଦେବା ସଂଗେ ସଂଗେ ଭାରତୀୟ ସଂସ୍କୃତିର ବିବିଧତା ଓ ବୈଚିତ୍ର୍ୟ କିପରି ଭାରତୀୟ ସାହିତ୍ୟରେ ବ୍ୟାପକ ଜୀବନବୋଧ ଓ ଜୀବନ ଦୃଷ୍ଟିର ରୂପାୟନ ପାଇଁ ପ୍ରେରଣା ଯୋଗାଇଛି ଓ ସେହି ପ୍ରେରଣାର ଫଳଶ୍ରୁତି ହେଉଛି ତାଙ୍କର କଥା ସାହିତ୍ୟ, ତାହା ମଧ୍ୟ ସେ ଆଲୋଚନା କରିଛନ୍ତି । ସାଂସ୍କୃତିକ ବିଚାରଧାରାପୁଷ୍ଟ ତାଙ୍କର ଅନ୍ୟ ଏକ ପ୍ରବଂଧର ପ୍ରସଂଗ ଏଠାରେ ଉତ୍‌ଥାପନ କରାଯାଇପାରେ । ତାହା ହେଲା 'ପ୍ରତିବେଶୀ' ପତ୍ରିକାରେ (୧୯୯୬ ମସିହା ଜୁଲାଇ ସେପ୍ଟେମ୍ବର ସଂଖ୍ୟା) ପ୍ରକାଶ ପାଇଥିବା ତାଙ୍କର 'ଜାତୀୟତା ଓ ଜଗନ୍ନାଥ ସଂସ୍କୃତି' ଶୀର୍ଷକ ପ୍ରବଂଧ । ଉକ୍ତ ପ୍ରବଂଧରେ ପ୍ରାବଂଧିକ ଗତାନୁଗତିକ ଦୃଷ୍ଟିକୋଣରୁ ଜାତୀୟତା ବା ଜଗନ୍ନାଥ ସଂସ୍କୃତିର ବ୍ୟାଖ୍ୟା କରିନାହାନ୍ତି । ଏ ଦୃଷ୍ଟିରୁ ସେ ଗଭୀର ଅନ୍ତର୍ଦୃଷ୍ଟିର ପରିଚୟ ଦେଇଛନ୍ତି । ଐକ୍ୟର ଆଧିପତ୍ୟ ବୌଦ୍ଧିକ ସ୍ତରରେ ନ ହୋଇ ଏହା ହୃଦୟଗତ ଅନୁଭବରେ ପରିସ୍ଫୁଟ ହେବା ନିମିତ୍ତ ସେ ଆହ୍ୱାନ ଦେଇଛନ୍ତି । ଏହି ଐକ୍ୟ ବୋଧର ରୂପାୟନ ପାଇଁ ରହିଛି ଶକ୍ତ ମୂଳଦୁଆର ଆବଶ୍ୟକତା । ଏବଂ ଭାରତୀୟ ସାହିତ୍ୟଗୁଡ଼ିକରେ ଏ ନେଇ ଯେଉଁ ପ୍ରଚେଷ୍ଟା ରହିଛି ସେ ସଂପର୍କରେ ଆଲୋକପାତ କରାଯାଇଛି 'ଝଂକାର' ପତ୍ରିକାର ୧୯୯୩ ମସିହା 'ଏପ୍ରିଲ', 'ମେ', ଜୁନ, ଜୁଲାଇ ଆଦି ସଂଖ୍ୟାରେ କିଶୋରୀ ଚରଣଙ୍କର 'ଆମ କଥା ସାହିତ୍ୟ : ସଂଶୟ ଓ ସ୍ୱପ୍ନ 'ଓଡ଼ିଆ କଥା ସାହିତ୍ୟ ଗତକାଲିର କଥା', 'ଓଡ଼ିଆ କଥା

ସାହିତ୍ୟର କଳା ଓ କାରିଗରୀ : ଆଜିକାଲିର କଥା', 'ଭବିଷ୍ୟତର ସ୍ୱପ୍ନ' ଇତ୍ୟାଦି । କ୍ଷୁଦ୍ରଗଳ୍ପ ସଂପର୍କରେ ରଚିତ ଏହି ସ୍ତବକ ଗୁଡ଼ିକ ଯେ ମୌଳିକ ଦୃଷ୍ଟିଭଙ୍ଗୀ ମଣ୍ଡିତ ଏହା ବୋଲିବା ବାହୁଲ୍ୟମାତ୍ର । ଶେଷ ସ୍ତବକଟି ପରିଶିଷ୍ଟ : ନିଜକଥା ରୂପେ ପରିକଳ୍ପିତ । ଏହି ସବୁ ପ୍ରବଂଧଗୁଡ଼ିକୁ ପୂର୍ବରୁ ପ୍ରକାଶିତ 'କଥା ସାହିତ୍ୟର କଳା ଓ କାରିଗରୀ' ଗ୍ରନ୍ଥର ବକ୍ତବ୍ୟ ଓ ଦୃଷ୍ଟିକୋଣର ପରିପୂରକ ବୋଲି କୁହାଯାଇପାରିବ । କ୍ଷୁଦ୍ରଗଳ୍ପର କଳା ଶିଳ୍ପ ସଂପର୍କରେ ତାଙ୍କର ଅନ୍ୟ ଏକ ପ୍ରବଂଧ ହେଲା 'ଝଂକାର'ରେ ପ୍ରକାଶିତ 'ଶତାବ୍ଦୀର କଳାଦୃଷ୍ଟି : କ୍ଷୁଦ୍ରଗଳ୍ପ' (ଝଂକାର ୫୦ ବର୍ଷ ଶାରଦୀୟ ସଂଖ୍ୟା) । ଜଣେ ସମୟ ସଚେତନ ଓ ଗଭୀର ଅନ୍ତର୍ଦୃଷ୍ଟି ସଂପନ୍ନ ଗାଳ୍ପିକ ଭାବରେ କିଶୋରୀ ଚରଣ ତାଙ୍କର ସମକାଳର ଗଳ୍ପଚେତନା ଓ ଗଳ୍ପଦିଗନ୍ତ ଓ ସାହିତ୍ୟର ଏହି ବିଭାଗର କଳା ଶିଳ୍ପକୁ ନେଇ ଯେପରି ପାଣ୍ଡିତ୍ୟପୂର୍ଣ୍ଣ, ମୌଳିକ ଓ ବିସ୍ତୃତ ଆଲୋଚନା କରିଛନ୍ତି ତାହା କୌଣସି ଗାଳ୍ପିକ କରିନାହାନ୍ତି ବୋଲି ଆମର ମନେ ହୁଏ । ସାମଗ୍ରିକ ଭାବରେ କୁହାଯାଇ ପାରିବ ଯେ ତାଙ୍କର ପ୍ରତିଟି ଆଲୋଚନାରେ ରହିଛି ଦରଦୀ ପ୍ରାଣର ପରିପ୍ରକାଶ, ଯାହା ସଂପ୍ରସାରିତ ଦୃଷ୍ଟିଭଙ୍ଗୀ ନେଇ ଜଗତକୁ ଦେଖେ, ଆପଣାର କରେ ।

ପ୍ରଜାତନ୍ତ୍ର ପ୍ରଚାର ସମିତି ଆନୁକୂଲ୍ୟରେ ବିଷୁବ ମଣ୍ଡପରେ ଆୟୋଜିତ ୫୨ତମ ବିଷୁବ ମିଳନକୁ ଉଦ୍‌ଘାଟନ କରି ଯେଉଁ ଅଭିଭାଷଣ କିଶୋରୀ ଚରଣ ପ୍ରଦାନ କରିଥିଲେ ତାହା ପରେ 'ଝଂକାର' ପତ୍ରିକାରେ ପ୍ରକାଶ ପାଇଥିଲା 'ସାହିତ୍ୟର ଜୟଯାତ୍ରା' ଶିରୋନାମାରେ । ଏହି ଉଦ୍‌ଘାଟନୀ ଭାଷଣରେ କଥାକାର କିଶୋରୀ ଚରଣ କଳା ଓ ସାହିତ୍ୟକୁ ଜୀବନ ଠାରୁ ବିଛିନ୍ନ କରି ଦେଖିନାହାନ୍ତି, ଆଜିର ବସ୍ତୁବାଦୀ ସଂସାରରେ କେହି କେହି ହୁଏତ କଳା ଓ ସାହିତ୍ୟକୁ ଅଦରକାରୀ ବୋଲି କହିପାରନ୍ତି କିନ୍ତୁ ଆପଣାର ଅନୁଭୂତିସିଦ୍ଧ ବକ୍ତବ୍ୟ ମାଧମରେ ଏହାକୁ ସେ ଖଣ୍ଡନ କରିଛନ୍ତି । ସେ ମନ୍ତବ୍ୟ ଦେଇଛନ୍ତି ଯେ -

''ମୋ ସାରା ଜୀବନର ଅନୁଭୂତି, ଅଣୁବୀକ୍ଷଣ ନିରୀକ୍ଷଣ (ଆତ୍ମ ନିରୀକ୍ଷଣ ସମେତ) ଏବଂ ସର୍ବେକ୍ଷଣ ଠିକ୍ ଏଇ କଥା କହୁଛି । ଜୀବଜଗତର ଶ୍ରେଷ୍ଠ ପ୍ରାଣୀ ବୋଲାଉଥିବା ମଣିଷ ଅନ୍ୟତମ ପଙ୍କଜଟିଏ । ଯାହାର ସଂପର୍କ ରହିଛି ଉଭୟ ପଙ୍କ ଏବଂ ସୂର୍ଯ୍ୟଙ୍କ ସାଙ୍ଗରେ । ସାହିତ୍ୟପ୍ରେମ ସେଇ ବୈଚିତ୍ର୍ୟର ଲୀଳାଖେଳା, ପ୍ରଚେଷ୍ଟା ତଥା ଅପଚେଷ୍ଟା ଚିହ୍ନାଇ ଦିଏ ଏବଂ ସେଇଥିରେ ଖୁସିଟାଏ ହୁଏ ଏବଂ ପରୋକ୍ଷରେ କୁହେ ଯେ ଏହାର ଅପରପାଖ ହେଉଛି ଅସହିଷ୍ଣୁତା, ଯାହା ଏକାଧାରରେ ଆତ୍ମଘାତୀ ଓ ଆବସର୍ଡ଼ । ଏଇ ପ୍ରେମର ଠିକଣା ନାଁ ହେଉଛି ସଂପ୍ରୀତି । ଏବଂ ଏଇ ଆନନ୍ଦର ଉତ୍ସ ହେଉଛି ଏକ କରୁଣାୟିତ ରସବୋଧ, ସଂଧାନୀ ସମଦୁଃଖୀ ଭାଇ ଭଉଣୀଙ୍କୁ ନେଇ ।'' (ସାହିତ୍ୟର ଜୟଯାତ୍ରା - ଝଂକାର ୫୩ ବର୍ଷ ୩ୟ ସଂଖ୍ୟା)

ସେହିପରି ଶ୍ରୀଯୁକ୍ତ ଦାସ ତାଙ୍କର ଅନ୍ୟ ଏକ ପ୍ରବଂଧ 'ସାହିତ୍ୟ ଓ ସାମ୍ବାଦିକତା'ରେ ସାଂପ୍ରତିକ ସାମାଜିକ ଓ ସାଂସ୍କୃତିକ ସ୍ଥିତି ଅନୁଯାୟୀ ସାହିତ୍ୟ ଓ ସାମ୍ବାଦିକତାର ମୂଲ୍ୟକଳନା କରିଛନ୍ତି ଏବଂ ଦୁଇଟି ମଧ୍ୟରେ ଥିବା ସାମଞ୍ଜସ୍ୟ ଓ ପାର୍ଥକ୍ୟକୁ ସେ ସ୍ପଷ୍ଟ କରିଦେଇଛନ୍ତି । ସାହିତ୍ୟ ଓ ସାମ୍ବାଦିକତା ମଧ୍ୟରେ ଯେଉଁ ପାରସ୍ପରିକ ଦେଣନେଣ ରହିଛି ତା'ର ଚର୍ଚ୍ଚା କରିଛନ୍ତି ପ୍ରାବଂଧିକ ବେଶ୍ ସୂକ୍ଷ୍ମ ଦୃଷ୍ଟିକୋଣରୁ । ସେ କହିଛନ୍ତି - ''ମୋ ମତରେ ଉପସ୍ଥିତ ବର୍ତ୍ତମାନର ମିଡ଼ିଆ ଅନୁକୂଳ ପରିସ୍ଥିତି ଯୋଗୁଁ ହେଉ କିମ୍ବା ଅନ୍ୟ ଯେକୌଣସି କାରଣରୁ ଲେଖକର କିଛିଟା ସଂବାଦଧର୍ମୀ ହେଲେ କ୍ଷତି ନାହିଁ । ଯଦି ସେହି ସଂବାଦ ଏଭଳି ରହସ୍ୟମୟ ହୋଇଥାଏ ଯେ ତାହା ବ୍ୟକ୍ତି ଅଥବା ସମାଜର ଚରିତ୍ରରେ ଥିବା କେଉଁ ଏକ ବିସ୍ମୟକର ନୂତନଦିଗ ଆଲୋକିତ କରି ପାରିବାରେ ସହାୟକ ହେବ । ଯେହେତୁ ଇଏ ନୁଖୁରା ସତ କଥା ନୁହେଁ, ଲେଖକୀୟ ମିଛକଥା ଠାରୁ ଆହୁରି ଚମକପ୍ରଦ । ଯେଉଁପ୍ରକାର ଘଟଣାର ପରିପ୍ରେକ୍ଷୀରେ କୁହାଯାଏ ଯେ - "Truth is stranger than fiction" । ଔପନ୍ୟାସିକ Truman Capote "In Cold Blood" ନାମକ ଉପନ୍ୟାସ ଲେଖିଥିଲେ ଯାହା ଉପନ୍ୟାସ ଜଗତରେ ଏକ ଚହଳ ସୃଷ୍ଟି କରିଥିଲା ।''

ତା ୨୮।୩।୧୯୯୭ରେ ଓଡ଼ିଆ ଗବେଷଣା ପରିଷଦର ସପ୍ତଦଶ ବାର୍ଷିକ ଉତ୍ସବରେ ଶ୍ରୀଯୁକ୍ତ ଦାସ ଅତିଥି ଭାବରେ ଯୋଗ ଦେଇ ଯେଉଁ ଅଭିଭାଷଣ ପ୍ରଦାନ କରିଥିଲେ ତାହା ଓଡ଼ିଆ ଗବେଷଣା ପରିଷଦର ମୁଖପତ୍ର 'ଏଷଣା'ର ୪ଖଣ୍ଡ ଜୁନ୍ ୧୯୯୭ରେ ପ୍ରକାଶ ପାଇଥିଲା । ଆଜିର ବସ୍ତୁବାଦୀ, ଯୁକ୍ତିନିଷ୍ଠ ଓ ବୁଦ୍ଧିସର୍ବସ୍ୱ ଦୁନିଆରେ ସାହିତ୍ୟ, ନାଟକ ଓ ଲଳିତକଳା ପ୍ରଭୃତି ତିଷ୍ଠି ରହିବାର କାରଣ ଗୁଡ଼ିକ ସଂପର୍କରେ ଉକ୍ତ ପ୍ରବଂଧରେ ସେ ଆଲୋକପାତ କରିଛନ୍ତି । ଏହାର ତିନିଗୋଟି କାରଣ ରହିଛି ତାଙ୍କ ମତରେ । ପ୍ରଥମଟି ହେଲା ଆନନ୍ଦ ଓ ବିସ୍ମୟ, ଏହି ଯୁଗପତ୍ ଅନୁଭବର ପରିପ୍ରକାଶ ପାଇଁ ସ୍ରଷ୍ଟା ରଂଗ ଓ ତୁଳୀ ଧରିଥିବା ଯୋଗୁଁ । ଦ୍ୱିତୀୟଟି ହେଲା - କଳା ଓ ସାହିତ୍ୟରେ ଥିବା ହୃଦୟ ଆହ୍ଲାଦକାରୀ ତଥା ମନୋରଂଜନ ଧର୍ମୀ ଉପାଦାନ ଯୋଗୁଁ । ସର୍ବଶେଷ କଥାଟି ହେଉଛି କଳା ସମାଜରେ ତିଷ୍ଠି ରହିଛି ସମାଜରେ ତା ପ୍ରତି ଥିବା ଶ୍ରଦ୍ଧା ଓ ସମ୍ମାନ ଯୋଗୁଁ ।

କଳା ଓ ସାହିତ୍ୟର ହୃଦୟଗ୍ରାହୀ ଆବେଦନ ଓ ଦାର୍ଶନିକ ଦୃଷ୍ଟି ଅନୁପ୍ରେରିତ ବୌଦ୍ଧିକ ଚିନ୍ତନ ଏ ଦୁଇଟି ମଧ୍ୟରେ ସମନ୍ୱୟ ସାଧନ ଆବଶ୍ୟକ ବୋଲି ପ୍ରାବଂଧିକ ଗୁରୁତ୍ୱ ଦେଇଛନ୍ତି । ତାଙ୍କର ଦୃଷ୍ଟିକୋଣ ହେଲା ''ନାଇଁ ଆଜ୍ଞା, କଳାତ୍ମକତାକୁ ସୁହାଇଲା ପରି ବୌଦ୍ଧିକତା ଶୁଷ୍କ ପଣ୍ଡିତିଆମି ନୁହେଁ, କି ସ୍ୱାର୍ଥୀ ଚତୁରତା । ଏହା ଏକ ବ୍ୟାପକ ଏବଂ ଅନୁଭବୀ ଦୃଷ୍ଟିକୋଣ, ସାଧାରଣ ଜ୍ଞାନ ଏବଂ ଦାର୍ଶନିକ ଚିନ୍ତା ମଧ୍ୟରେ ରହିଥିବା ଯୋଗସୂତ୍ର ଯାହା ମଣିଷକୁ ଯଥାକ୍ରମେ ବୁଝେଇ ଦେଇ ପାରିବ ଯେ ଏଇ ଅଦରକାରୀ କଳା, ଆର୍ଟ୍ ନାମକ ଏଇ ନନ୍‌ସେନ୍‌ସ, ପ୍ରକୃତରେ ସକଳ ଦରକାରୀ କାମର ଶେଷକଥା'' ।

## ଅନ୍ତରଂଗ ଅନୁଭବର ଭିନ୍ନ ଦିଗନ୍ତ - ଚେନାଏ ଘର ଚିରୁଡ଼ାଏ ପୃଥିବୀ

ବିଭିନ୍ନ ସମୟରେ ବିଦେଶ ଭ୍ରମଣ କାଳରେ ଯେଉଁ ସୂକ୍ଷ୍ମ ଅନୁଭବଗୁଡ଼ିକ କିଶୋରୀ ଚରଣ ସାଉଁଟି ଆଣିଛନ୍ତି ତାହା ପ୍ରକାଶ ପାଇଛି ତାଙ୍କର ଭ୍ରମଣ କାହାଣୀ 'ଚେନାଏ ପୃଥିବୀ ଚିରୁଡ଼ାଏ ଘର'ରେ । ଏଥିରେ ତେରଗୋଟି ପ୍ରବଂଧ ରହିଛି । ଅନନ୍ୟ ଅନ୍ତରଂଗତାରେ ଉଜ୍ଜ୍ୱଳ ଏଡି ପ୍ରବଂଧଗୁଡ଼ିକ । ସେ ଯେଉଁ ଯେଉଁ ସ୍ଥାନଗୁଡ଼ିକୁ ଭ୍ରମଣ କରିବା ପାଇଁ ଯାଇଛନ୍ତି ସେଥିରେ ଜଣେ ଅପରିଚିତ ମଣିଷର ଦୃଷ୍ଟିକୋଣ ନାହିଁ ବରଂ ରହିଛି ଆତ୍ମୀୟତାର ସରାଗ, ସ୍ନେହ । ତେଣୁ ବିଦେଶର ମାଟିକୁ ସେ ଆପଣାର ମଣିଛନ୍ତି । ବଂଧନର ସୂତ୍ରଟିଏ ତାଙ୍କୁ ଯୋଡ଼ି ଦେଇଛି ବିଶ୍ୱର କେଉଁ ଚେନାଏ ଭଳି ପୃଥିବୀ ସଂଗରେ ଓ ସେହି ଚେନାଏ ପୃଥିବୀରେ ଥିବା ଚିରୁଡ଼ାଏ ଘର ସାଙ୍ଗରେ । ପ୍ରାବଂଧିକଙ୍କ ଅଭିବ୍ୟକ୍ତି ହେଲା - ''ବର୍ତ୍ତମାନ ମୁଁ ଯେଉଁ ବିଦେଶକୁ ଯାଉଛି ତାହା କେବଳ ଚେନାଏ ପୃଥିବୀ ନୁହେଁ, ଚିରୁଡ଼ାଏ ଘର ମଧ୍ୟ । ସେଠି ମୋର ଗୋଟିଏ ଝିଅ ଘର କରି ରହିଛି । ସେ ଜଣେ ବିଦେଶୀକୁ ବାହା ହୋଇଛି ସତ, କିନ୍ତୁ ତା କୋଳରେ ଯେଉଁ ଦେଢ଼ ବର୍ଷର ଶିଶୁଟିଏ ଅଛି ତା ନାଆଁ ଶାରଦ, ସେ ମୋର ଅନ୍ୟତମ ନାତି । ଯେଉଁ ପୁଅ ଝିଅ ବିବାହ କିମ୍ବା ବୃତ୍ତିର ବାଧବାଧକତା ହେତୁ ଓଡ଼ିଶାରୁ ଦୂରେଇ ଯାଇ ଆପାତତଃ ଦିଲ୍ଲୀରେ, କଲିକତାରେ କି ଆଉ କୋଉଠି ବସା ବାନ୍ଧିଛନ୍ତି, ତାଙ୍କ ସଂସାରର ପୃଥିବୀ ମୋର ଯେତିକି ନିଜର ବ୍ରିଟିଶ କଲମ୍ବିଆରେ ଥିବା ଭ୍ୟାଙ୍କୋଭର ପାଖାପାଖି ନିଉ ୱେଷ୍ଟମିନିଷ୍ଟର ସହର ମୋର ସେତିକି ନିଜର ନୁହେଁ କି ?'

ବିଭିନ୍ନ ସ୍ଥାନଗୁଡ଼ିକର ସାଂସ୍କୃତିକ ଚଳଣି, ଭୌଗଳିକ ଚିତ୍ରପଟ ପୁଣି ମୂଲ୍ୟବୋଧ 'ଚେନାଏ ପୃଥିବୀ ଚିରୁଡ଼ାଏ ଘର' ଭ୍ରମଣ କାହାଣୀରେ ରୂପ ପାଇଛି । ନାନା ସ୍ଥାନ ଓ ସ୍ମୃତି ଫରୁଆରେ ସାଇତା ଘଟଣାଗୁଡ଼ିକ ଲେଖକ ବର୍ଣ୍ଣନା କଲାବେଳେ ତାହା କେଉଁଠି ବୋର୍ ବା ଖାପଛଡ଼ା ମନେ ହେଉନାହିଁ । ଲେଖକଙ୍କ ଅନ୍ତରଂଗତାର ସ୍ପର୍ଶ ପାଇ ବର୍ଣ୍ଣନା ଏଠାରେ ଜୀବନ୍ତ । ଦୃଷ୍ଟିକୋଣ ଏଠାରେ ପରିବ୍ୟାପ୍ତ ପୁଣି ସ୍ନେହସିକ୍ତ । ତେଣୁ ଉପରୋକ୍ତ ଭ୍ରମଣ କାହାଣୀଟି ଏକ ସ୍ୱତନ୍ତ୍ର ଆସନ ଦାବି କରେ ଓଡ଼ିଆ ଭ୍ରମଣ ସାହିତ୍ୟର ଇତିହାସରେ ।

ପ୍ରବଂଧର ଉପସଂହାର ଟାଣିବା ପୂର୍ବରୁ କିଶୋରୀ ଚରଣ ଗଦ୍ୟ ଶୈଳୀର ପ୍ରମୁଖ ବୈଶିଷ୍ଟ୍ୟଗୁଡ଼ିକୁ ସଂକ୍ଷେପରେ ଉଲ୍ଲେଖ କରୁଛୁ ।

୧ - ତାଙ୍କର ଗଦ୍ୟ ବିଭବ ଅନ୍ତରଂଗ ଆଳାପ ଶ୍ରେଣୀର ।

୨ - ସେଗୁଡ଼ିକ ନିବିଡ଼ ଅନୁଭବରେ ସମୁଜ୍ଜ୍ୱଳ ।

୩ - କିଶୋରୀ ଚରଣଙ୍କ ଗଦ୍ୟର ଆବେଦନ ହୃଦୟଗ୍ରାହୀ ହେଲେ ମଧ୍ୟ ଏହାର ପରିସର ମଧ୍ୟରେ ପ୍ରାବଂଧିକ ନିଜର ଯୁକ୍ତିନିଷ୍ଠତା, ତତ୍ତ୍ୱନିଷ୍ଠ ଦୃଷ୍ଟିକୋଣ ଓ ଦାର୍ଶନିକତାର ପରିଚୟ ଦେଇଛନ୍ତି ।

୪ - କାବ୍ୟିକତା ଓ ଆବେଗ ପ୍ରବଣତା ତାଙ୍କ ପ୍ରବଂଧଗୁଡ଼ିକୁ ରସସିକ୍ତ କରିଛି ।

୫ - ପ୍ରବଂଧଗୁଡ଼ିକ ହୋଇପାରିଛି ଆତ୍ମକଥନମୂଳକ ।

୬ - ଏଗୁଡ଼ିକ ଗଳ୍ପଶୈଳୀର ପାଖାପାଖି ବୋଲି ମନେ ହେଉଛନ୍ତି ।

୭ - ପ୍ରାବଂଧିକ ପରିବ୍ୟାପ୍ତ ଦୃଷ୍ଟିକୋଣର ସଂଧାନ ଦେଇ ବିଭିନ୍ନ ଦେଶର ସାହିତ୍ୟ ସଂସ୍କୃତି ସଂପର୍କରେ ମୂଲ୍ୟବାନ ମନ୍ତବ୍ୟମାନ ଦେଇଛନ୍ତି । ଏହା ତାଙ୍କର ବହୁପାଠୀ ଦୃଷ୍ଟିକୋଣର ପରିଚୟ ଦିଏ ।

୮ - ପ୍ରବଂଧଗୁଡ଼ିକ ଭାଷା ପଣ୍ଡିତିଆ ନ ହୋଇ ଚିତ୍ତଆଲୋଡ଼ନକାରୀ ।

୯ - ସୂକ୍ଷ୍ମ ବିଶ୍ଳେଷଣ ଓ ଅନ୍ତର୍ନିହିତ ଭାବ ଗୁଡ଼ିକର ସଂପ୍ରସାରଣ ପ୍ରବଂଧ ଗୁଡ଼ିକରେ ପ୍ରାଧାନ୍ୟ ଲାଭ କରିଛି ।

୧୦ - ଚିରାଚରିତ ଗଦ୍ୟଶୈଳୀ ଠାରୁ କିଶୋରୀ ଚରଣଙ୍କ ଗଦ୍ୟଶୈଳୀ ଦୂରତ୍ୱ ରକ୍ଷା କରିପାରିଛି ।

ପରିଶେଷରେ କୁହାଯାଇ ପାରିବ ଯେ କିଶୋରୀ ଚରଣ ତାଙ୍କର କଥା ସାହିତ୍ୟରେ ଯେପରି ନୂତନ ସରଣୀର ସଂଧାନୀ ସେହିପରି ତାଙ୍କର ପ୍ରବଂଧଗୁଡ଼ିକ ମଧ୍ୟ ନୂତନତ୍ୱର ସଂଧାନ ଦେବା ପାଇଁ ସମର୍ଥ ।



# କିଶୋରୀ ଚରଣ ସାରସ୍ୱତ ସୃଷ୍ଟିର ଏକ ସ୍ୱଳ୍ପାଲୋଚିତ ବିଭାବ : ଇଂରେଜୀ ରଚନା

*ଡକ୍ଟର ସତ୍ୟାନନ୍ଦ ସ୍ୱାଇଁ*

ଶ୍ରୀଯୁକ୍ତ କିଶୋରୀ ଚରଣ ଦାସ ଓଡ଼ିଆ କଥା ସାହିତ୍ୟର ଏକ ପ୍ରତିଷ୍ଠିତ ଓ ବହୁପର୍ଯ୍ୟାଲୋଚିତ୍ ନାମ । ବ୍ୟାସକବି, କଥା ସମ୍ରାଟ ଫକିର ମୋହନ ସେନାପତିଙ୍କ ଦ୍ୱାରା ସୃଷ୍ଟ ପରଂପରାର ସେ ଜଣେ ସାର୍ଥକ ସାରସ୍ୱତ ପୁରୁଷ । ବିଶେଷ କରି ଓଡ଼ିଆ କ୍ଷୁଦ୍ରଗଳ୍ପ ପରଂପରାରେ ଫକିର ମୋହନଙ୍କ ପରେ କାଳିନ୍ଦୀ ଚରଣ, ଗୋପୀନାଥ ମହାନ୍ତି ଯେଉଁ ଉଚ୍ଚମାନ (high standard) ପ୍ରତିଷ୍ଠା କରିଛନ୍ତି କିଶୋରୀ ଚରଣ ସେହିମାନ (standard)କୁ ବଜାୟ ରଖିବା ସହ ଏହାର କଥାବସ୍ତୁର ପରିସୀମା ବ୍ୟାପ୍ତ କରିବାରେ ସଫଳ ହୋଇଛନ୍ତି । ଗଳ୍ପ ବ୍ୟତୀତ ଉପନ୍ୟାସ, କବିତା ଓ ସମାଲୋଚନାମୂଳକ ପ୍ରବନ୍ଧ ସୃଷ୍ଟିରେ ତାଙ୍କର ସାର୍ଥକତା ସ୍ୱୀକାର୍ଯ୍ୟ । କିନ୍ତୁ କିଶୋରୀ ଚରଣଙ୍କ ଏହି ଓଡ଼ିଆ ସୃଷ୍ଟି ସହ ସମାନ୍ତରାଳ ଗତିରେ ଇଂରେଜୀ ରଚନା ସୃଷ୍ଟି ହୋଇଛି ତାହା ଖୁବ୍ କମ୍ ପାଠକଙ୍କୁ ଗୋଚର । ତେଣୁ ଏହି ପ୍ରବଂଧରେ ଯଶସ୍ୱୀ ସ୍ରଷ୍ଟାଙ୍କ ସୃଷ୍ଟିର ଏହି ଅଳ୍ପାଲୋଚିତ ଦିଗ ଉପରେ ଆଲୋକପାତ କରିବାର ପ୍ରୟାସ କରାଯାଇଛି ।

କିଶୋରୀ ଚରଣ ଜଣେ କେନ୍ଦ୍ର ସରକାରୀ ପଦସ୍ଥ ପ୍ରଶାସକ ଭାବେ ଓଡ଼ିଶା ବାହାରେ ଓ କେତେ କାଳ ପାଇଁ ବିଦେଶରେ କାର୍ଯ୍ୟରତ ଥିଲେ । ତେଣୁ ତାଙ୍କର ଭାବ ବ୍ୟକ୍ତ କରିବା ପାଇଁ ଇଂରେଜୀ ଭାଷା ଉପରେ ନିର୍ଭର କରିବାକୁ ପଡ଼ିଥିଲା । ସ୍ୱାଭାବିକ ଭାବେ ସେ ସେହି ଭାଷାରେ ଦକ୍ଷତା ଅର୍ଜନ କରିପାରିଥିଲେ । ଯଦ୍ୟପି ସେ ବାରଂବାର କହନ୍ତି ଭାବ ବ୍ୟକ୍ତ କରିବା ପାଇଁ ମାତୃଭାଷା ସହଜ ସରଳ ମାଧ୍ୟମ ଓ ସେଇଥିପାଇଁ ସେ ଓଡ଼ିଆରେ ଅଧିକତର ସୃଜନଶୀଳ, ତଥାପି ତାଙ୍କର ଇଂରେଜୀ ସୃଷ୍ଟି କୌଣସି ଗୁଣରେ ନ୍ୟୁନ ନୁହେଁ । ଅବଶ୍ୟ ତାଙ୍କର ଇଂରେଜୀ ରଚନା, ପରିମାଣ ଦୃଷ୍ଟିରୁ ଓଡ଼ିଆ ରଚନାର ତୁଳନୀୟ ନୁହେଁ । କିନ୍ତୁ ସେହି ରଚନାର ଗୁଣାତ୍ମକ ବିଭବ ତାଙ୍କୁ ଏକ ଦ୍ୱିଭାଷୀ ଲେଖକ ଭାବେ ପ୍ରତିଷ୍ଠିତ କରିବା ପାଇଁ ଯଥେଷ୍ଟ ।

ସବୁ ସାର୍ଥକ ସାହିତ୍ୟିକ କବିତାରୁ ହିଁ ନିଜ ସୃଜନଶୀଳତାର ପ୍ରକାଶ କରିଥାଆନ୍ତି । ସେହି ନ୍ୟାୟରେ କିଶୋରୀ ଚରଣ ଜଣେ କବି ଭାବେ ଆତ୍ମ ପ୍ରକାଶ କରନ୍ତି ଓ ତାଙ୍କର କାବ୍ୟିକ ପ୍ରକାଶ ଓ ପ୍ରତିଷ୍ଠା ଇଂରେଜୀ ଭାଷାରେ ହିଁ ହୁଏ । ଜାତୀୟ ଓ ଆନ୍ତର୍ଜାତିକ ଇଂରେଜୀ

ପତ୍ରିକା ତଥା ଅଭିଜାତ ସଂକଳନମାନଙ୍କରେ ତାଙ୍କର କବିତାଗୁଡ଼ିକ ସ୍ଥାନ ପାଏ । ଏହି କବିତାମାନଙ୍କରେ ତାଙ୍କ ଜୀବନାଦର୍ଶ ସ୍ପଷ୍ଟତର ହୁଏ । ଉଭୟ ଓଡ଼ିଆ ଓ ଇଂରେଜୀ କବିତା ତାଙ୍କୁ ତାଙ୍କର ଗଦ୍ୟ ରଚନାର କ୍ଲାନ୍ତିରୁ ଅବସର ଦିଏ । କାବ୍ୟ ସାଧନା ପରେ ପୁଣି ସେ ଗଦ୍ୟ ସୃଷ୍ଟିରେ ସକ୍ରିୟ ହୋଇ ଉଠନ୍ତି । ଏ ସଂପର୍କରେ କିଶୋରୀ ଚରଣ କହନ୍ତି :

I write poems both in Oriya and English in intervals as a sort of lyric counterpart to analytical prose on human relations which leaves me exhausted at times.

କବିତା, କିଶୋରୀ ଚରଣ ସୃଷ୍ଟି ପ୍ରକ୍ରିୟାର ଏକ ମଧ୍ୟାନ୍ତର । ଏହି କାବ୍ୟ ସାଧନା ତାଙ୍କର କଥା ସାହିତ୍ୟକୁ କରେ କାବ୍ୟିକ ଓ ପ୍ରାଣବନ୍ତ । ସ୍ୱୀୟ ଚିନ୍ତା ଓ ସୃଷ୍ଟି ସଂପର୍କରେ ତାଙ୍କର Thoughts ଶୀର୍ଷକ କବିତାର ଏକ ପଦ୍‌କ୍ତି ପ୍ରଣିଧାନଯୋଗ୍ୟ :-

If thoughts could be gathered
In my folded palms,
I would throw them
Into the deep dark sea
and follow them never and never
through their destinies
their indecencies with odd animals
who have never seen the light of the day.

ତେଣୁ ମନୋବିଶ୍ଳେଷଣର ଅନ୍ଧାରିତ ଚିନ୍ତା ତାଙ୍କର କାବ୍ୟ ଦର୍ଶନ ହୋଇ ଏକ ପ୍ରଭାବମୟ ଅନୁଭୂତି ପ୍ରକାଶର ମାଧ୍ୟମ ହୋଇଛି । ତାଙ୍କର My Poems ଶୀର୍ଷକରେ ପ୍ରକାଶିତ କବିତାରେ କିଶୋରୀ ଚରଣ ସ୍ପଷ୍ଟ କରିଛନ୍ତି :

My poems visit me at odd hours
when I am rid of them,
calling from behind the bridal veil
snapping and tearing the veil apart.
on a sunny day in Janpath,
in rains over Chowringhee,
never in my dreams. (Face in the Dark)

ତେଣୁ କବିତା କିଶୋରୀ ଚରଣଙ୍କ ପାଇଁ ଏକ ସ୍ୱପ୍ନବିଳାସ ନୁହେଁ । ଏହା ଜୀବନର ବାସ୍ତବ ଚିତ୍ର । ତେଣୁ ସାଙ୍କେତିଭାବେ ସେ କବିତାର ଶେଷ ପଦ୍‌କ୍ତିରେ ଲେଖିଛନ୍ତି :

Privacies expressed like cut fruits
egos, ripped open laid by flies,
furies unlovely, bodies I never knew
I could not own them,
They are no Sakuntalas,
lovers bound in trust
but my daughters given away,
Shamed. (Faces in the Dark)

''ସ୍ୱଚ୍ଛତା'', ''ବାସ୍ତବବାଦୀତା'', ବ୍ୟତୀତ ଅନ୍ୟ ଯେଉଁ ବିଭାବଟି ତାଙ୍କର କବିତାକୁ ପ୍ରାଣବନ୍ତ କରେ, ତାହା ହେଲା 'ସାମଗ୍ରିକତା' । ଗୋଟିଏ ଅନୁଭୂତି ଯେତେବେଳେ କବିଙ୍କର ଆତ୍ମସ୍ଥ ହୁଏ ସେ ତାକୁ ସାମଗ୍ରିକ ଭାବେ ବ୍ୟକ୍ତ କରନ୍ତି କବିତାରେ । ଗଦ୍ୟର ବୃହତ୍ ଅବୟବରେ ଚିନ୍ତା ଓ୍ ଅନୁଭବ ବିଶ୍ଳେଷିତ ହେଲାବେଳେ କବିତାରେ ଅନୁଭବ ଅଭିବ୍ୟକ୍ତ ହୁଏ, ଓ ସଂପୂର୍ଣ୍ଣତା ଆଣି ଦିଏ । ନିମ୍ନ ପଦ୍‌କ୍ତିଟି କବିଙ୍କର କାବ୍ୟତତ୍ତ୍ୱ (poetic theory) ପ୍ରକାଶ କରେ :

I will breathe
and take you whole and wholesale
inside me,
in vacancies of peace.

ତେଣୁ ଏକ ପ୍ରଶାନ୍ତ ମାନସିକ ସ୍ଥିତି (Vacancies of peace) କବିକୁ ଦିଏ ଅନୁଭୂତିର ସାମଗ୍ରିକତା ସେ ସେହି ଅନୁଭୂତିରେ ରୋମାଞ୍ଚିତ ହୋଇ ପ୍ରଖ୍ୟାତ ଇଂରେଜୀ କବି ଜନ୍ କୀଟସ୍‌ଙ୍କ ପରି କହି ଉଠନ୍ତି, 'O, life for sensation rather than thought !' ଅନ୍ତରଙ୍ଗ ମୁହୂର୍ତ୍ତର ଅନୁଭୂତି ହିଁ ତାଙ୍କ କବିତାର ଉପଜୀବ୍ୟ । ବହୁ ଅଭିଜ୍ଞତା ଅର୍ଜନ କରି ବିଶ୍ୱମୁଖୀ କିଶୋରୀ ଚରଣ ସେହି ଅନୁଭୂତିରେ ନିଜ କଥାସାହିତ୍ୟକୁ ରୁଦ୍ଧିମନ୍ତ କଲାବେଳେ, କବିତାରେ ହୋଇଛନ୍ତି ଅନ୍ତର୍ମୁଖୀ । ଏହି ଅର୍ନ୍ତମୁଖୀ ଅନୁଶୀଳନ ବଳରେ ସେ ଯେଉଁ ବ୍ୟକ୍ତିଗତ ସତ୍ୟ ଉପଲବ୍‌ଧି କରିଛନ୍ତି ତାହା ହୋଇଛି ସାର୍ବଜନୀନ । Bones ଶୀର୍ଷକ କବିତାରେ କିଶୋରୀ ଚରଣଙ୍କ ଆତ୍ମ ପ୍ରକାଶ ଲକ୍ଷ୍ୟ କରିବା କଥା :-

I like the colour of bare bones
words which have lost their meaning
and rendered beautiful. (New voices)

ବାସ୍ତବତା, ଅନୁଭୂତ ବାସ୍ତବତା (Realised reality) କିଶୋରୀ ଚରଣଙ୍କ କାବ୍ୟ ଜିଜ୍ଞାସା । କେବଳ ବ୍ୟକ୍ତିଗତ ଅନୁଭବରେ ଯେତେବେଳେ ଜଣେ ନିଜ ପାଖରେ ନିରୋଳା ହୋଇଯାଏ ସତ୍ ହୋଇଯାଏ, ଗାନ୍ଧିଜୀଙ୍କ ଭାଷାରେ ସେ ସତ୍ୟର ସାମ୍‌ନା କରେ, ସତ୍ ହୁଏ । କେହି କହି

ଦେଇଛି କି ଲେଖିଦେଇଛି ବୋଲି ତାହା କବିଙ୍କ ପାଇଁ ବାସ୍ତବତା ନୁହେଁ । ବରଂ ଯେତେବେଳେ ଆତ୍ମାନୁଭୂତି ପାରଂପାରିକତା ଠାରୁ ଦୂରେଇ ନେଇ ଏକ ନୂତନତ୍ୱର ସଂଧାନ ଦିଏ ସେହି ଆବିଷ୍କାର ହିଁ ହୁଏ ସତ୍ୟ, ଶିବ, ସୁନ୍ଦରର ଆବିଷ୍କାର । ଯେଉଁ ଶବ୍ଦ ଆଭିଧାନିକ (lexical) ଅର୍ଥ ହରାଇ ନୂଆ କିଛି କହିଦିଏ ସେହି ହୁଏ ସୁନ୍ଦର । ଏମିତି ନୂତନ ଅନୁଭୂତିରେ ଋଦ୍ଧିମନ୍ତ କବି କିଶୋରୀ ଚରଣଙ୍କ କାବ୍ୟ ସୃଷ୍ଟି । ନିଜର ବକ୍ତବ୍ୟକୁ ପାଠକଙ୍କ ନିକଟରେ ସ୍ପଷ୍ଟତର କରିବା ପାଇଁ କବି ସେହି BONES କବିତାରେ ଲେଖିଛନ୍ତି :-

.... crave my words
to rattle the truths
and let me listen
till I can bear no more (New Voices)

ଶବ୍ଦମାନେ କଳରବ କରନ୍ତି । ସେମାନେ ସତ୍ୟ ସନ୍ଧାନ ପାଇଁ ତୀର୍ଥଯାତ୍ରୀ ବାଟରେ ଉଚ୍ଚାରଣ କରନ୍ତି ଭିନ୍ନ ଭିନ୍ନ ଧ୍ୱନି । ସେହି ଉଚ୍ଚାରିତ ଅର୍ଥ ସତ୍ୟର ପ୍ରକାଶ ଦିଗରେ ଗତି କରନ୍ତି । ସେମାନେ ଟୁଙ୍ଗ୍‌ଟାଙ୍ଗ୍, ରୁମ୍‌ଟୁମ୍ ଶବ୍ଦ ପରି ନାନାର୍ଥ ବ୍ୟଞ୍ଜକ । କବି କିଶୋରୀ ଚରଣ ସେଇଥିପାଇଁ କାମନା କରନ୍ତି ଶବ୍ଦମାନେ ସତ୍ୟ ପ୍ରକାଶ ପାଇଁ ଉଚ୍ଚାରିତ ହୁଅନ୍ତୁ rattle the truths, କିନ୍ତୁ ଅସ୍ପଷ୍ଟତା ଅସହ୍ୟ ହେଲେ ନିବୃତ୍ତ ହେବେ ନିଶ୍ଚୟ କାରଣ ଏହି ଶବ୍ଦ ସାମଗ୍ରିକ ସତ୍ୟପ୍ରକାଶ କରିପାରିବ ନାହିଁ । ଅନୁରୂପ ଅନୁଭବ ପରିବେଷିତ ହୁଏ ବିଖ୍ୟାତ ଇଂରେଜ କବି T.S. Eliotଙ୍କ କବିତାରେ :

Words, strain,
crack and sometimes break, under the burden
under the tension, slip slide perish
Decay with imprecision will not stay in plece,
will not stay still. (Four Quartets - 19)

ଶବ୍ଦମାନଙ୍କର ଆକୁଳ ଅସ୍ଥିରତା ସତ୍ୟାଶ୍ରୟୀ ହେବାପାଇଁ କବିଙ୍କୁ ଉନ୍ମାନ କରିଛି । ସେ ଶବ୍ଦମାନଙ୍କୁ ଧରି ଚାଲିଛନ୍ତି ସତ୍ୟାନୁସଂଧାନରେ, ଆତ୍ମ ସତ୍ତାର ଆବିଷ୍କାରରେ । ସବୁ ସ୍ୱପ୍ନ ମଉଳି ଯାଉଛନ୍ତି ଅନୁଭୂତିର ସ୍ୱପ୍ନଭଗ୍ନ ବେଳାରେ । My House କବିତାରେ ସେ ଲେଖିଛନ୍ତି :-

But the dream fades
ever as a neuter house
hides the sky
and mocks at me
while death emerges from the cracks, the hinges
crawling in timelessness (Indo Australian Flowers)

କେମିତି ଅସୀମ ଆକାଶକୁ ଆବୋରି ଯାଉଛି ଘରର ଛୋଟ ଚୌହଦି, ସବୁ ଅସୀମତା କେମିତି ସୀମିତ ହୋଇଯାଉଛି । ପୁଣି ଯେତେବେଳେ ଫଟା କାନ୍ଥ ଦେଇ ମୃତ୍ୟୁ ମାଡିଆସୁଛି, ସୀମା ପାଲଟୁଛି ଅସୀମ । ଅନନ୍ତର ଆଗମନରେ ମାନବୀୟ ସୁରକ୍ଷାର ପ୍ରଚେଷ୍ଟା କେତେ ହେୟ, କେତେ ହାସ୍ୟସ୍ପଦ । ଏହି ସ୍ୱପ୍ନଭଙ୍ଗର ଚିତ୍ରକଳ୍ପ ସତ୍ୟର ପ୍ରକାଶ କରୁନାହିଁ କି ? ତେଣୁ କବି ଘରର ସୀମିତ ଚୌହଦିରୁ ମୁକୁଳି ବିଶ୍ୱମୁଖୀ ହେବାକୁ ପ୍ରୟାସୀ । କିନ୍ତୁ ଏ ମୁକ୍ତି କ'ଣ ଏତେ ସହଜ, ଏତେ ସହଜସାଧ ? କେବଳ ନିଜର କର୍ମଭୂମି କଲିକତା ଛାଡ଼ି ଦିଲ୍ଲୀ ଯିବା ବେଳେ ତାଙ୍କୁ ଯେଉଁ ମାନସିକ ଦ୍ୱନ୍ଦ୍ୱର ଶିକାର ହେବାକୁ ହୋଇଛି, ତାହା ପାଲଟିଯାଇଛି ଅସ୍ତିତ୍ୱର ଅବିଚ୍ଛେଦ୍ୟ ଅଙ୍ଗ । ସେହି ସ୍ଥାନାନ୍ତରର ଚିତ୍ର ପ୍ରଦାନ କରି ସେ ଧାରାବାହିକ ୩ଟି କବିତା ରଚନା କରିଛନ୍ତି ଇଂରେଜୀରେ : ଏହି ରଚନାତ୍ରୟୀ (Trilogy)ର ଶୀର୍ଷକ On leaving Calcutta ଏହାର ପ୍ରଥମଟି ହେଲା You are the wrong woman ଗୋଟିଏ ମହାନଗରୀ ପାଲଟି ଯାଇଛି ପ୍ରଣୟ ଲିପ୍ସୁ ନାରୀର ପ୍ରତୀକ । ସେହି ନାରୀଟି କରିଛି ତାଙ୍କୁ ପୁଲକିତ ପୁଣି କରିଛି ବ୍ୟସ୍ତ, ବିବ୍ରତ । ସେ ପାଲଟିଛି ନିର୍ଯ୍ୟାସ୍ ପୁଣି ଆପାନ୍‌କ୍ଷେୟ (elixir amd dregs) ହତମ୍ଭବ କବି ଲକ୍ଷ୍ୟ କରୁଛନ୍ତି କେମିତି ଏହି ନାରୀ ଆବୋରି ବସୁଛି ତାଙ୍କର ଆତ୍ମସତ୍ତା :

Benumbed I watched you closing in with your limbs, living extensions, exclamations and passions .... and the demands and inquilabs of blighted youth and dreams asking for answers, instant angry orgasms.

ଏହି ନାରୀଟିକୁ କବି ଭଲ ପାଇ ପାରିଥାନ୍ତେ ଯଦି ସେ ମୁକୁଳି ଯାଇଥାଆନ୍ତା କ୍ଷୁଦ୍ରତାର ଗଣ୍ଡିରୁ । କିନ୍ତୁ ଏହା ହେବାର ନଥିଲା । କେବଳ ଦିନ କେଇଟାର ଏକ ହେବାର ଥିଲା । ଏହି ଏକ ହେବା ଘୃଣା ପ୍ରେମର ସଂପର୍କ ଥିଲା । ଅବଧି ସରି ଆସିଲା ପ୍ରବାସର । କବି ଆଧୁନିକ ଚିତ୍ରକଳ୍ପ ପ୍ରୟୋଗ କରି କହିଲେ : The visa expires

I look forward to red sand stone
and encrusted culture,
an end to this wreteched intimacy.

ସତରେ କ'ଣ ଏତେ ଦିନର ଏହି ସଂପର୍କ ଥିଲା ଗୋଟିଏ ଅସ୍ୱସ୍ତିକର ନିବିଡ଼ତା, Slimy togetherness, ଗୋଟିଏ ଅବସ୍ଥା ଯେଉଁଠୁ ବର୍ତ୍ତିବାର ଚେଷ୍ଟା କରି ମଧ କବି ମୁକୁଳି ପାରୁନାହାନ୍ତି ? ଅବଶ୍ୟ ଏଠି କବି ସଂପର୍କରେ ଆବିଷ୍କାର କରନ୍ତି ଏକ ଅସହ୍ୟ ଯନ୍ତ୍ରଣା, ଏଠି କେହି ତାଙ୍କୁ ଅନ୍ତରଙ୍ଗ ପ୍ରସଙ୍ଗ କରିନାହାନ୍ତି । ସମସ୍ତେ ଥଟ୍ଟା କରିଛନ୍ତି । ଏହି ଥଟ୍ଟା ତାମସା ଭିତରେ କ'ଣ ଏମିତି ଥିଲା ଯେ କବିଙ୍କୁ ସେ ଆକର୍ଷଣ କରିଥିଲା । କର୍ମଠ ପୁରୁଷ ବିଳମ୍ବ

କରୁଥିଲେ ସ୍ଥାନ ତ୍ୟାଗ କରିବା ପାଇଁ । ତା'ର ଅପାସୋରା ସ୍ମୃତିକୁ କବି ସାଇତି ରଖୁଛନ୍ତି କବିତାରେ । ସେ କହୁଛନ୍ତି :-

I have carried the legacy of a claim
in the secret folds of my poems
beyond the reach of national income
unto the day of reckoning and washes

ତା'ର କାରଣ ସ୍ୱରୂପ ସେ କହୁଛନ୍ତି -

The ashes and the roses
will be mine
for I have bled inside
and held my soul incarnadine
for the ecstasy. (into the day)

ସ୍ମୃତିସବୁ ସାଜିଛନ୍ତି ଆତ୍ମସତ୍ତା । ତେଣୁ ସେ ଅଜାଡି ଦେଇଛନ୍ତି ସେହି ଜୀବନ୍ତ ଅନ୍ତରଂଗ ସ୍ମୃତିକୁ କବିତାରେ ।

କବି ଘୁରି ବୁଲୁଛନ୍ତି କଟକରୁ କଲିକତା-କଲିକତାରୁ ଦିଲ୍ଲୀ - ଦିଲ୍ଲୀରୁ କାଲିଫର୍ଣ୍ଣିଆ । ବ୍ୟକ୍ତିସତ୍ତାକୁ ବିଶ୍ୱ ସତ୍ତାରେ ପରିଣତ କରିବା ପାଇଁ ସତେ ଯେପରି ସେ ବ୍ୟାକୁଳ । ସମୟ କ୍ରମେ ସେ ଆବିଷ୍କାର କରନ୍ତି ଗୋଟିଏ ନିଷ୍ଠୁର ବାସ୍ତବତା, କେମିତି ବର୍ତ୍ତମାନ ହିଁ ହୋଇଉଠୁଛି ଗୁରୁତ୍ୱପୂର୍ଣ୍ଣ । ଆମେରିକାରେ ଜଣେ ଭାରତୀୟର ମୃତ୍ୟୁକୁ ତା'ର ପରିବାର ବର୍ଗ ଯେପରି ଗ୍ରହଣ କରିଛନ୍ତି ଓ ବିଦେଶରେ ନିଜକୁ ଯେମିତି ଖାପଖୁଆଇ ନେଇଛନ୍ତି, ତାହା ତାଙ୍କୁ ଏକ ନୂତନ ସତ୍ୟର ସନ୍ଧାନ ଦେଇଛି । ସେହି ଚେତନାକୁ ସେ ରୂପ ଦେଇଛନ୍ତି ତାଙ୍କର ଏକ ସାର୍ଥକ ଗଳ୍ପ, Death of an Indian ରେ । ସେ ଜଣେ ଭାରତୀୟର ମୃତ୍ୟୁ କଥା କହିବା ସ୍ଥଳରେ ଭାରତୀୟତାର ମୃତ୍ୟୁ ଘଟିଲା ବୋଲି ପରୋକ୍ଷରେ କହି ବସୁଛନ୍ତି । ସେଇଥିପାଇଁ ସେ ହେଉଛନ୍ତି ଘରମୁହାଁ । ଘରପଛ ପଟେ ଭୂତ ଅଛି ବୋଲି କିଏ ତାଙ୍କୁ କହି ଦେଇଥିଲା ପିଲାବେଳେ । ସେଇଥିପାଇଁ ସେ ବୁଲୁଥିଲେ ବାହାରେ ବାହାରେ । କିନ୍ତୁ ଅନ୍ତରଂଗ ମୁହୂର୍ତ୍ତରେ ଅନ୍ଧାରରେ ସେହି ଭୂତ ହୋଇଯାଇଥିବା ନିଜ ଲୋକମାନେ କେମିତି ହୋଇ ଉଠିଲେ ସ୍ପଷ୍ଟ । ଆପଣାର ଏହି ମୁହୂର୍ତ୍ତଗୁଡ଼ିକୁ ସେ ସାଇତି ରଖିଛନ୍ତି ତାଙ୍କର ଏକ ମାତ୍ର ଇଂରାଜୀ କବିତା ସଂକଳନ (Faces in the Dark)ର କ୍ଷୁଦ୍ର ଅବୟବ କରେ । ଏଥିରେ ସ୍ଥାନିତ ଅଧିକାଂଶ କବିତା ବିଭିନ୍ନ ସଂକଳନରୁ ଗୃହୀତ ହୋଇଛି । ସେଥିମଧ୍ୟରୁ World Poetryରୁ ସଂଗୃହୀତ କବିତା, These Lights କ୍ଷୁଦ୍ରତମ ତଥା ବଳିଷ୍ଠତମ କବିତା କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଥିରେ କବି କିଶୋରୀ ଚରଣଙ୍କ ଜୀବନାଦର୍ଶ ପ୍ରକାଶିତ ହେଲା ପରି ଲାଗେ । ରାସ୍ତାକଡ଼ର ଲ୍ୟାମ୍ପ ପୋଷ୍ଟଗୁଡ଼ିକୁ ଲକ୍ଷ୍ୟ କରି କବି କହୁଛନ୍ତି :-

I will never smash these

for fear a baby will cry.

କିନ୍ତୁ ସେ ଆକାଶରେ ଦେବତ୍ୱର ଦ୍ୱାହି ଦେଇ ମିଞ୍ଜିମିଞ୍ଜି କରୁଥିବା ତାରାମାନଙ୍କୁ ପାରିଲେ ଚୁନା କରିଦେବେ । ମୌଳିକତା ପ୍ରତି ଆସକ୍ତି ଦୂରରେଇ ଦେବାକୁ, ନୂତନତ୍ୱ ପ୍ରତି ଅଗ୍ରସର ହେବାକୁ ଆହ୍ୱାନ ଦେଇ ସେ ଲେଖନ୍ତି :-

I will smash, if I can the originals,

the silent, smiling angels.

କାରଣ ତାରାଗୁଡ଼ିକ ପ୍ରେମମୟ ଶିଶୁ ନୁହନ୍ତି, ସେମାନେ ପ୍ରେମହୀନ ନୀରବ ଦର୍ଶକ ଅଟନ୍ତି ଆକାଶର, "unloving watchers of the sky" କିଶୋରୀ ଚରଣଙ୍କ କାବ୍ୟକୃତି ଅଳ୍ପ ଅଥଚ ଅର୍ଥପୂର୍ଣ୍ଣ । ତାଙ୍କର କଥା ସୃଷ୍ଟି ତୁଳନାରେ କବିତାମାନଙ୍କ ସଂଖ୍ୟା ଏତେ କମ୍ ଯେ ଏହା ସମାଲୋଚକମାନଙ୍କ ଦୃଷ୍ଟିକୁ ଆସିପାରି ନାହିଁ । ଏହି ସୃଷ୍ଟିର ଅଧ୍ୟୟନ ଓ ଆଲୋଚନା ହେଲେ କିଶୋରୀ ଚରଣଙ୍କ ସୃଜନୀ ପ୍ରତିଭାର ସାମଗ୍ରିକ ମୂଲ୍ୟାୟନ ହୋଇପାରିବ ।

ସ୍ୱୀୟ କାବ୍ୟ ଓ କଥା ସୃଷ୍ଟି ସଂପର୍କରେ କିଶୋରୀ ଚରଣଙ୍କ ବକ୍ତବ୍ୟ ପ୍ରଣିଧାନ୍ୟ ଯୋଗ୍ୟ :-

Possibly, I have increasingly found my fiction dealing as it does with the lines of "The other people", deficient in telling the story of my inconsistent yet fascinating reactions to the varied stimulie of daily living (Preface to Faces in the Dark)

ବୃହତ୍ତର ସଂସାରର ଚିତ୍ର ପ୍ରଦାନ କରି ଅନ୍ୟମାନଙ୍କର ବ୍ୟଥା ବେଦନା ପ୍ରକାଶ ପାଇଁ କିଶୋରୀ ଚରଣ ସୃଷ୍ଟି କରନ୍ତି କଥା ସାହିତ୍ୟ । ନିଜ କଥା, ନିଜ କଥା ପ୍ରକାଶ କରେ ତାଙ୍କର କବିତା । ପରିମାଣ ଦୃଷ୍ଟିରୁ ଲକ୍ଷ୍ୟ କଲେ ଆମେ ଅନୁଭବ କରୁ କିଶୋରୀ ଚରଣ ଚେତନା ଅଧିକତର ବ୍ୟଷ୍ଟିବାଦୀ ଓ ଅଳ୍ପ ବ୍ୟକ୍ତିସର୍ବସ୍ୱ । ତେଣୁ ତାଙ୍କ ବିପୁଳ କଥା ସାହିତ୍ୟ ବିଶ୍ୱମାନବର ବ୍ୟଥା ବେଦନା ଓ ବିଚାର ବୋଧରେ ଋଦ୍ଧିମନ୍ତ । ଇଂରେଜୀ ଭାଷାରେ ଅତ୍ୟଳ୍ପ କଥା ସାହିତ୍ୟ ରଚନା କରି ବ୍ୟଷ୍ଟି ଚେତନାକୁ ବିଶ୍ୱମୁଖୀ କରିବା ପାଇଁ ସେ ଚେଷ୍ଟିତ । ଏହି ଶ୍ରେଣୀୟ ରଚନା ବିବିଧ - (୧) ମୌଳିକ ଇଂରେଜୀ ଗଳ୍ପ (୨) କିଶୋରୀ ଚରଣଙ୍କ ଦ୍ୱାରା ନିଜର ଓ ଅନ୍ୟମାନଙ୍କ କଥା ସାହିତ୍ୟର ଅନୁବାଦ (୩) ଅନ୍ୟମାନଙ୍କ ଦ୍ୱାରା କିଶୋରୀ ଚରଣଙ୍କ ରଚନାର ଅନୁବାଦ ।

କିଶୋରୀ ଚରଣ ଇଂରେଜୀ ଭାଷାରେ ୪ଟି କ୍ଷୁଦ୍ରଗଳ୍ପ ରଚନା କରିଛନ୍ତି । ସେଗୁଡ଼ିକ ହେଲା :- (1) Fish Mayonnaise, (2) A Saucer of Milk, (3) The Meaning of Monsoon (4) The Meeting, ଏହି ଅଳ୍ପ ସଂଖ୍ୟକ ମୌଳିକ ରଚନା କିଶୋରୀ

ଚରଣଙ୍କ ଇଂରେଜୀ ଭାଷାରେ ବ୍ୟୁତ୍ପତ୍ତି ପ୍ରମାଣିତ କରେ । ତାଙ୍କର ବଳିଷ୍ଠ ଓଡ଼ିଆ ରଚନା ଶୈଳୀ ତୁଳନାରେ ଇଂରେଜୀ ରଚନା ଶୈଳୀ କୌଣସି ଗୁଣରେ ନ୍ୟୂନ ନୁହେଁ । ନିମ୍ନୋକ୍ତି ପଙ୍‌କ୍ତିରେ ଆମେ ଏହି ସତ୍ୟର ଉପଲବ୍‌ଧି କରିପାରିବା ।

Look, look, she suddenly said, pointing somewhere between land and the water, where you saw the inevitable boats, ramshacke huts, and quite a few of those big birds, circling around the water front. I obliged her, but found nothing of special interest. (Fish Mayonnaise)

ଇଂରେଜୀ ଭାଷାରେ ଗଳ୍ପ ରଚନା କରି ତାହାକୁ ସଂଭ୍ରାନ୍ତ ଭାରତୀୟ ଗଳ୍ପ ସଂକଳନ Shiv. K. Kumar ସଂପାଦିତ Contemporary Indian Short stories in Englishରେ ପ୍ରକାଶିତ କରିପାରିଛନ୍ତି ।

ମୌଳିକ ଗଳ୍ପ ରଚନା ଅପେକ୍ଷା ନିଜ ଗଳ୍ପଗୁଡ଼ିକୁ ଇଂରେଜୀରେ ଅନୁବାଦ କରିବା କ୍ଷେତ୍ରରେ କିଶୋରୀ ଚରଣ ଅଧିକ ସକ୍ରିୟ ଓ ସଫଳ । ଓଡ଼ିଶା ସାହିତ୍ୟ ଏକାଡ଼େମୀ ପ୍ରକାଶିତ "Quiet Flows the Mahanadi" ଇଂରେଜୀ ଗଳ୍ପ ସଂକଳନରେ କିଶୋରୀ ଚରଣଙ୍କ Love, Fear and Marigold Flowers ପ୍ରକାଶିତ । ଏହି ଗଳ୍ପଟିରେ ଇଂରେଜୀ ଭାଷା ପ୍ରୟୋଗ ଲକ୍ଷ୍ୟ କଲେ ଗଳ୍ପଟିର ମୌଳିକ ଆବେଦନ ଅନୁଭୂତ ହୋଇପାରିବ ।

We will smile and laugh together at the antics of the cow. And shall enjoy life together. There was a determined smile on the lips of Gagan Babu as he emerged from Satichaura. Determined, as it were, to empower another to join him in his bid to happiness. Another who really mattered. (36)

ନିଜର ଅନେକ ଗଳ୍ପ ବ୍ୟତୀତ କିଶୋରୀ ଚରଣ ଦୁଇଟି ଇଂରେଜୀ ଉପନ୍ୟାସ (1) Rich Like Us - Nayan Tara Sehgal and (2) The Last Labirynth - Arun Joshiକୁ ''ଆମରି ପରି ବଡ଼ ଲୋକ'' ଓ ''ଶେଷ ଗୋଲକ ଧନ୍ଦା'' ଶୀର୍ଷକରେ ଅନୁବାଦ କରିଛନ୍ତି ।

କିଶୋରୀ ଚରଣଙ୍କ ଗଳ୍ପଗୁଡ଼ିକ ମଧ୍ୟରୁ ଅନେକ ଇଂରେଜୀରେ ଅନୁଦିତ ଓ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ଅନୁଦିତ ଓ ସଂକଳିତ ଗଳ୍ପଗୁନିକ ହେଲା (1) The Wild Peacock and Other Stories (2) The Journey (3) The Prayer Room and Other Stories (4) The Midnightmoon and other stories (5) Death of an Indian । ଏହି ଇଂରେଜୀ ରଚନାରେ କିଶୋରୀ ଚରଣଙ୍କ ଗାଳ୍ପିକ ପ୍ରତିଭା ଓଡ଼ିଆ ଭାଷା ବନ୍ଧନୀ ପାର ହୋଇଯାଇଛି । ଏହି ଗ୍ରନ୍ଥଗୁଡ଼ିକର ଅନୁବାଦକମାନଙ୍କ ମଧ୍ୟରେ ଅଛନ୍ତି କେ.କେ. ଓ ଲୀଳବତୀ ମହାପାତ୍ର ଏବଂ Phyllis Granoff । ଗଳ୍ପଗୁଡ଼ିକ ଅନୁବାଦ କଲା

ସମୟରେ Granoff ଅନୁଭବ କରନ୍ତି ଯେ କିଶୋରୀ ଚରଣଙ୍କ ରଚନା ଜାତୀୟ ସୀମାରେଖା ପାର ହୋଇଯାଇଛି । ସେ ଅନୁଭବ କରିଛନ୍ତି କେବଳ ବିଭିନ୍ନ ଭାଷାରେ ସାହିତ୍ୟ ପାଠ କଲେ ଜଣେ ନିଜ ସାହିତ୍ୟକୁ ଋଦ୍ଧିମନ୍ତ କରିପାରିବ । ଅନୁବାଦକଙ୍କ ଭାଷାରେ :-

Das's literary world transcends national boundaries. Indeed, the rejected lover in "The Jasmine Bud and the Servant Girl" chides the daughter of his former mistress for her lack of literary sophistication; hasn't she, he asks, ever read the Bengali author Tarasankar Bandopadhyaya, the Oriya author Gopinath Mahanty, or Thomas Hardy ? The three make equal claim on the attention on this young Delhi college student (The Journey-18)

ପ୍ରକୃତରେ କିଶୋରୀଚରଣଙ୍କ ରଚନାବଳୀ ତାଙ୍କର ଏକ ଉଦାର ବିଶ୍ୱ ଆଭିମୁଖ୍ୟ (Genial world view)ର ପ୍ରମାଣ ଦେଇଥାଏ । ବିଶେଷ କରି କିଶୋରୀ ଚରଣଙ୍କ ସାହିତ୍ୟିକ ପ୍ରବଂଧ, ସୃଜନାତ୍ମକ ଅନୁଶୀଳନ ଓ ସମାଲୋଚନା ମୂଳକ ସାହିତ୍ୟିକ (ଗଳ୍ପ ବିଶେଷ କରି) ଇତିହାସ (Critical literary history) ଏହି ଉକ୍ତିର ବଳିଷ୍ଠ ପ୍ରମାଣ : Learn to write short story : The Art, Craft and Anxieties (2) My writing my Times (3) Heritage and cultural Identity : How I see myself in relation to the country I live in (4) Being an Indian writer ଓ ଆହୁରି ଅନେକ । ଏହି ରଚନାଗୁଡ଼ିକ ଓଡ଼ିଆ ସାହିତ୍ୟ ସମାଲୋଚନା ସାହିତ୍ୟ ପାଇଁ ବିପୁଳ ସଂଭାବନା ବହନ କରେ । ଜଣେ ଲେଖକ ତା'ର ସାମାଜିକ ସ୍ଥିତିପ୍ରତି କିପରି ପ୍ରତିକ୍ରିୟା ପ୍ରକାଶ କରେ, ତା'ର ଆଭିମୁଖ୍ୟ କ'ଣ ହେବା ଉଚିତ, ତା'ର ବକ୍ତବ୍ୟ କ'ଣ ? ଏହି ଗ୍ରନ୍ଥମାନଙ୍କରେ ଓ ପ୍ରବଂଧମାନଙ୍କରେ ଆଲୋଚିତ । ଗୋଟିଏ ବହୁ ସଂସ୍କୃତି ସଂପନ୍ନ ଦେଶରେ ଜଣେ ଲେଖକ 'ଅନ୍ୟ' ସଚେତନ ହେବାକୁ ବାଧ୍ୟ । Granoff ଲକ୍ଷ୍ୟ କରନ୍ତି : "From language to religion, to the smells of cooking, his closest neighbour remained frustratingly other to him" । ତେଣୁ ସେ ନିଜକୁ କ୍ଷୁଦ୍ରତାର ଗଣ୍ଡିଭିତରୁ ମୁକୁଳାର ଏକ ସାମଗ୍ରିକ ଚେତନାର ଚିତ୍ର ପ୍ରଦାନ କରିବା ପାଇଁ ଚେଷ୍ଟିତ ।

ନିଜକୁ ଜଣେ ଭାରତୀୟ ଲେଖକ ଭାବେ ଉପସ୍ଥାପିତ କରି ସେ ଲେଖିଛନ୍ତି : I would like to be considered, basically, as an Indian writer, nevermind if I write in Oriya or in English (Being an Indian writer) କିନ୍ତୁ ଜଣେ ଭାରତୀୟ ଲେଖକ ଭାବେ ସେ ଅନେକ ସାଂସ୍କୃତିକ ସମସ୍ୟାର ସମ୍ମୁଖୀନ ହୋଇଛନ୍ତି । କିନ୍ତୁ ଏହା ତାଙ୍କୁ ଏକ ଅର୍ନ୍ତଦୃଷ୍ଟି ସମ୍ପନ୍ନ ଲେଖକ ହେବାରେ ସାହାଯ୍ୟ କରିଛି । ସମାଲୋଚକଙ୍କ ଭାଷାରେ "If

cultural diversity makes him feel inadequate, it also impels him to pursue an indepth understanding of his subject.

କେବଳ କବିତାଟିଏ ବା ଗଳ୍ପଟିଏ ସୃଷ୍ଟି କରିଦେଇ କିଶୋରୀ ଚରଣ ସନ୍ତୁଷ୍ଟ ହୋଇଯାଇନାହାନ୍ତି । ସେ ଚେଷ୍ଟା କରିଛନ୍ତି ବୁଝିବାକୁ ସୃଷ୍ଟିଟିକୁ, ସୃଷ୍ଟି ସହିତ ସଷ୍ଟାର ସଂପର୍କକୁ, ସର୍ବୋପରି ପାଠକ ସମାଜରେ ଏହାର ପ୍ରଭାବ ଓ ପ୍ରତିଷ୍ଠାକୁ । ଏପରି ସ୍ୱସମାଲୋଚନା (Self-criticism) ଯାହାକୁ T.S. Eliot "literary by product" କହନ୍ତି, ଭାରତୀୟ ସାହିତ୍ୟରେ କମ୍ ଦେଖାଯାଏ, କିନ୍ତୁ E.M. Forsterଙ୍କ Aspects of the Novel ପରି ତାଙ୍କର ଆଲୋଚିତ ପ୍ରବନ୍ଧଗୁଡ଼ିକ ତାଙ୍କ ରଚନାର ଭଙ୍ଗୀ ଉପରେ ଏକ ସୁନ୍ଦର.ଆଲୋଚନା କରିବା ସହିତ ସମଧର୍ମ କଥାକାରମାନଙ୍କ ସୃଷ୍ଟି ତର୍ଜମା ମଧ କରିଥାଏ । ଏହିପରି ଅନୁଶୀଳନ ଓ ଇଂରେଜୀ ଭାଷାରେ ରଚିତ ସାହିତ୍ୟ କିଶୋରୀ ଚରଣଙ୍କୁ ଆଣିଦିଏ ସାହିତ୍ୟିକ ସାମଗ୍ରିକତା ।

## ସହାୟକ ଗ୍ରନ୍ଥ ସୂଚୀ


୧. କିଶୋରୀ ଚରଣ ଦାସ - Faces in the Dark ଇଉନାଇଟେଡ୍ ରାଇଟର୍ସ, କଲିକତା, ୧୯୯୭ ।

୨. Eliot, T.S. Four Quartets, Delhi OUP, 1962

୩. କିଶୋରୀ ଚରଣ ଦାସ - Being an Indian writer - Indian diterauter

୪. - Learn to write A short story - B.R. publishing corporation, New Delhi

୫. - My Writing and My Times - Aryaprakashana, Cuttack

୬. - ସଂଜବତୀ ଓ ଅନ୍ୟାନ୍ୟ କବିତା - ଲାର୍କବୁକ୍ସ, କଟକ

୭. - ଲେଖକର ଦୁଃଖ - ଫ୍ରେଣ୍ଡସ୍ ପବ୍ଲିସର୍ସ - କଟକ

୮. - Wild Peacock and other stories, Grassroots, Bhubaneswar

୯. - The Midnight Moon -B.R. Publishing House, New Delhi

୧୦. - The Prayer Room and Other stories - Sahitya Akademi - New Delhi

୧୧. - The Journey - Tr. Phythis Granoff - The University of Michigan, U.S.A.

୧୨. ପ୍ରଫୁଲ୍ଲ କୁମାର ମହାନ୍ତି , - Quiet Flows the Mahanadi - (ed) ଓଡ଼ିଶା ସାହିତ୍ୟ ଏକାଡେ଼ମୀ

୧୩. O.P. Bhatnagar New Dimensions in Indo-English Poetry - M. Vijaylaxmi - Mysore

୧୪. Sayed Ameeruddin New Voices - Sayeeda Publications - Madras

୧୫. V.S. Skanda Prasad - Indo-Australlian Flowers - Chetana Books - Mangalore

୧୬. Pranab Bandyopadhyaya - Indian Verses - Calcutta




## ସମୀକ୍ଷା

# କିଶୋରୀଚରଣଙ୍କ ସାହିତ୍ୟ ସମୀକ୍ଷା

ସଂଳାପ ପରେ ସମୀକ୍ଷା । ଲେଖକ ତାଙ୍କ ନିଜ ସାହିତ୍ୟ ବିଷୟରେ ଅନେକ କିଛି କହିଛନ୍ତି ନିଶ୍ଚୟ, ଯେଉଁଥିରୁ ବୁଝାପଡିବ ଯେ ସେ ଏହିପ୍ରକାର ଉଦ୍ଦେଶ୍ୟ, ଅଭିରୁଚି ଏବଂ ଆଭିମୁଖ୍ୟକୁ ନେଇ ତାଙ୍କ ଲେଖାଗୁଡ଼ିକ ଲେଖିଛନ୍ତି । ଭଲ କଥା । କିନ୍ତୁ ମନର ରଚିତ୍ ସରଂଜାମ ସତ୍ତ୍ୱେ ଲେଖକର ଲେଖା ଦୁର୍ବଳ ବୋଲି ମନେ ହୋଇପାରେ ଯଦି ସେ ତାକୁ ଯଥାବିଧି ପରିସ୍ଫୁଟ କରିବାରେ ବିଫଳ ହୋଇଥାଏ । ମଧ ସେ ଯାହା ଉଚିତ ବୋଲି ଭାବୁଛି ତାର ସାହିତ୍ୟମୁଖୀ ମାନସିକତା ବିଷୟରେ, ତାକୁ ସମକାଳୀନ ସମାଜ ଯଦି ସେହି ଭାବରେ ଗ୍ରହଣ ନ କରିପାରେ । ଏହେତୁ କିଶୋରୀଚରଙ୍କ ଲେଖା ଉପରେ ବିଭିନ୍ନ ସମୀକ୍ଷକ କ'ଣ କହି ଆସିଛନ୍ତି ବିଭିନ୍ନ ସମୟରେ, ତା'ର ଏକ ବିସ୍ତୃତ ସୂଚୀ ଆମେ ପ୍ରସ୍ତୁତ କରିବାକୁ ଚେଷ୍ଟା କରିଛୁ, ଏହି ସଂକଳନ ପାଇଁ । କେତେକକୁ ହୁଏତ ସାହିତ୍ୟ ସଂବାଦ ବୋଲି କୁହାଯିବ, ସମୀକ୍ଷା ନୁହେଁ । ତଥାପି ଆମେ ତାକୁ ଏଇ ସୂଚୀପତ୍ରରେ ରଖିଛୁ, ତତ୍‌କାଳୀନ ମିଡିଆର ପ୍ରତିକ୍ରିୟା ହିସାବରେ । ଆମର ଆଶା ଯେ ଏତଦ୍ୱାରା ଭବିଷ୍ୟତର ଗବେଷକ ପାଇଁ ଏକ ଉପଯୁକ୍ତ ପୃଷ୍ଠଭୂମି ମିଳିବ (ସଂଳାପ ଯୁକ୍ତ ସମୀକ୍ଷା) ଯେଉଁଥିରେ ସେ ତାଙ୍କ ସାହିତ୍ୟକୁ ଆଉଜେଇ ଦେଇ ପାରିବ, ସେଥିରେ ମୂଲ୍ୟାୟନ କରିବା ପୂର୍ବରୁ । ହେଉପଛେ ସେହି ମୂଲ୍ୟାୟନ ତା' ନିଜ ସାହିତ୍ୟକ ବାତାବରଣ ଏବଂ ମାନଦଣ୍ଡକୁ ନେଇ, ଏବଂ ଆପଣା ଦୃଷ୍ଟିକୋଣ ଅନୁଯାୟୀ ।

କିଶୋରୀଚରଣଙ୍କ ଇଂରାଜୀ ଲେଖା ଛଡ଼ା ତାଙ୍କର ଅନେକ ମୌଳିକ ଓଡ଼ିଶା ଲେଖା ଇଂରାଜୀରେ ଅନୁଦିତ ହୋଇ ଭାରତର ବିଭିନ୍ନ ପତ୍ରପତ୍ରିକା ଓ ସଂକଳନରେ ପ୍ରକାଶିତ ହୋଇଛି । ମଧ କେତୋଟି ଲେଖା ଭାରତ ବାହାରେ ପ୍ରକାଶିତ ହୋଇଛି । ସେହେତୁ କେତେ ଗୁଡ଼ିଏ ସମୀକ୍ଷା ଇଂରାଜୀରେ ପ୍ରକାଶ ପାଇଛି ଏବଂ ତାହା ମଧ ଏକ ସ୍ୱତନ୍ତ୍ର ଅନୁଭାଗରେ ସୂଚୀତ ହୋଇଛି ।

**(କ) ଓଡ଼ିଆ -**

(୧) "ଭଙ୍ଗା ଖେଳଣା" ପ୍ରକାଶିତ ହେବା ପରେ ପରେ (୧୯୬୧) ପ୍ରକାଶିତ ସେହି ଗଳ୍ପ ସଂକଳନ ଉପରେ କିଛି ମନ୍ତବ୍ୟ - " ଓଡ଼ିଆ ଗଳ୍ପ ସାହିତ୍ୟ - (ଏକ ବିହଂଗମ ଦୃଷ୍ଟି)" - ତାରିଣୀ ଚରଣ ଦାସ ।

(୨) "ଜୀବନ ରଂଗରେ'ପ୍ରକାଶିତ ' ମଣିହରା'ଗଳ୍ପସଂକଳନ (୧୯୭୦)ର ସମୀକ୍ଷା - ଜାନୁୟାରୀ ୧୯୭୧ ।

(୩) "କଥାକାର"(ରଥଯାତ୍ରା ୧୯୭୨)ରେ ପ୍ରକାଶିତ "ସପ୍ତମ ଦଶନ୍ଧିରେ ଓଡ଼ିଆ କ୍ଷୁଦ୍ରଗଳ୍ପ" - ସଦାଶିବ ଦାଶ ।

(୪) "କଥାକାର" (ପଞ୍ଚମ ସଂଖ୍ୟା ୧୯୭୩) ରେ ପ୍ରକାଶିତ "କିଶୋରୀଚରଣ ଗଳ୍ପମାନସ" - ବୈଷ୍ଣବ ଚରଣ ସାମଲ ।

(୫) "ଅଧୁନା"(ଅକ୍ଟୋବର ୧୯୭୩)ରେ ପ୍ରକାଶିତ "ଓଡ଼ିଆ କ୍ଷୁଦ୍ରଗଳ୍ପରେ ନାରୀ"- ବୈଷ୍ଣବଚରଣ ସାମଲ ।

(୬) "ଗଳ୍ପ"(ଜାନୁୟାରୀ-ମାର୍ଚ୍ଚ ୧୯୭୩)ରେ ପ୍ରକାଶିତ "ମୁକ୍ତ/ନୂତନ ଗଳ୍ପର ଇସ୍ତାହାର"- ହରପ୍ରସାଦ ଦାସ ।

(୭) "ସାହିତ୍ୟସଂଧାନ"(ନଭେମ୍ବର ୧୯୭୧)ରେ ପ୍ରକାଶିତ "ମଣିହରା" ଗଳ୍ପସଂକଳନର ସମୀକ୍ଷା - ଦାଶରଥି ଦାସ ।

(୮) "ସମାବେଶ" (ସେପ୍ଟେମ୍ବର ୧୯୭୬) ର "ନୂଆ ଲେଖା"ଶୀର୍ଷକ ସ୍ତମ୍ଭରେ ପ୍ରକାଶିତ 'ଠାକୁରଘର'ଗଳ୍ପସଂକଳନରେ ସମୀକ୍ଷା -ଦାଶରଥି ଦାସ ।

(୯) "ଦିଗନ୍ତ"(ଅକ୍ଟୋବର ୧୮୭୭)ରେ ପ୍ରକାଶିତ ''ପ୍ରଚଳିତ ସମୟରେ କ୍ଷୁଦ୍ରଗଳ୍ପ'' - ଗିରିବାଳା ମହାନ୍ତି ।

(୧୦) "ଗଳ୍ପଘର"(୩ୟ ବର୍ଷ ପଞ୍ଚମ ସଂଖ୍ୟା ୧୯୭୯) ରେ ପ୍ରକାଶିତ 'ନାଲିଗୁଲୁଗୁଲୁ ସାଧବବୋହୂ' ସଂକଳନର ସମୀକ୍ଷା ବ୍ରଜମୋହନ ମିଶ୍ର ।

(୧୧) "ଇସ୍ତାହାର"(ଜାନୁୟାରୀ-ମାର୍ଚ୍ଚ ୧୯୭୯)ରେ ପ୍ରକାଶିତ "ମଣିହରା ଓ ଠାକୁରଘର - ଗଳ୍ପ ମାନସର ଦୁଇଟି ପ୍ରତିନିଧି" - ନିରଂଜନ ବେହୁରିଆ ।

(୧୨) "ଇସ୍ତାହାର"(ଜୁଲାଇ-ସେପ୍ଟେମ୍ବର ୧୯୭୯)ରେ ପ୍ରକାଶିତ "ଗ୍ରନ୍ଥ ସମୀକ୍ଷା - ନାଲିଗୁଲୁଗୁଲୁ ସାଧବ ବୋହୂ" - ନିରଂଜନ ବେହୁରିଆ ।

(୧୩) "ଇସ୍ତାହାର"(ଅକ୍ଟୋବର-ଡିସେମ୍ବର ୧୯୮୧)ରେ ପ୍ରକାଶିତ "ଓଡ଼ିଆ ଗଳ୍ପ ସାହିତ୍ୟରେ ଆଧୁନିକତା ଓ ଗୋପୀନାଥ ମହାନ୍ତି" ।
ଯେଉଁଥିରେ (ପୃଷ୍ଠା ୨୩୧-୨୩୨)ରେ କିଶୋରୀଚରଣଙ୍କ ବିଷୟରେ ବିଶେଷ ଉଲ୍ଲେଖ ଅଛି - ମହାପାତ୍ର ନିଳମଣି ସାହୁ ।

(୧୪) "ଇସ୍ତାହାର"(ଜୁଲାଇ-ଅଗଷ୍ଟ-ସେପ୍ଟେମ୍ବର ୧୯୮୨)ରେ ପ୍ରକାଶିତ "ଚକ୍ରବ୍ୟୁହରୁ ମୁକ୍ତି - ମନସ୍ତତ୍ୱ ଓ ଓଡ଼ିଆ ଉପନ୍ୟାସ"ରେ କିଶୋରୀଚରଣଙ୍କ ବିଷୟରେ ବିଶେଷ ଉଲ୍ଲେଖ - ରବି ସ୍ୱାଇଁ ।

(୧୫) "ପାଂଚଜନ୍ୟ" (ଦଶହରା ବିଶେଷାଂକ ୧୯୮୨)ରେ ପ୍ରକାଶିଜ "କିଶୋରୀ ଗଳ୍ପମାନସ ଓ ଗମନ"-ନିତ୍ୟାନନ୍ଦ ଶତପଥୀ ।

(୧୬) " ଇସ୍ତାହାର" (ଅକ୍ଟୋବର - ଡିସେମ୍ବର ୧୯୮୪)ରେ ପ୍ରକାଶିତ "ପୁସ୍ତକ ସମୀକ୍ଷା - ଖେଳର ନାଆଁ "ରଂଗ"ଆଶୁତୋଷ ପରିଡ଼ା ।

(୧୭) "ପ୍ରଜାତନ୍ତ୍ର" ସାପ୍ତାହିକୀ (ଅକ୍ଟୋବୋର ୧୯୮୬)ରେ ପ୍ରକାଶିତ "ଶୀତ ଲହରୀ"ସଂକଳନର ସମୀକ୍ଷା ।

(୧୮) "ଗୋ ବର୍ଣ୍ଣିତା" (ଜାନୁୟାରୀ ୧୯୯୮୬)ରେ ପ୍ରକାଶିତ "ଖେଳର ନାଆଁ ରଂଗ : ମନସ୍ତାତ୍ତ୍ୱିକ ପ୍ରକ୍ରିୟାର ଏକ କଳାତ୍ମକ ରୂପାୟନ"- ପ୍ରବୋଧ କୁମାର ଦାସ ।

(୧୯) କିଶୋରୀଚରଣଙ୍କ ନିବଂଧ "ସାହିତ୍ୟ, ଭଲ ଭଲ "ଉପରେ ମନ୍ତବ୍ୟ - "ସଂବାଦ" (୭/୮/୮୬)ରେ ପ୍ରକାଶିତ "ସଂବାଦ ବିଶେଷାଂକ (୧) ଏକ ଦୃଷ୍ଟିପାତ, - ରବୀନ୍ଦ୍ର ପ୍ରସାଦ ପଣ୍ଡା ।

(୨୦) "ସାଂପ୍ରତିକ ଗ୍ରନ୍ଥ ସମୀକ୍ଷା (୨) "(ଅଗଷ୍ଟ ୮୯) ରେ ପ୍ରକାଶିତ "ଶୀତଲହରୀ" ଗଳ୍ପସଂକଳନର ସମୀକ୍ଷା - ଡଃ ସଂଘମିତ୍ରା ମିଶ୍ର ।

(୨୧) "ଝଙ୍କାର"(ଏପ୍ରିଲ୍ ୧୯୯୦)ରେ ପ୍ରକାଶିତ ନିଂବଧ "ଜୀବନ ଓ ଜଗତର ଅନ୍ତରଂଗ ଶିଳ୍ପୀ : କଥାକାର କିଶୋରୀଚରଣ" - ଡଃ ବାଉରୀବନ୍ଧୁ କର ।

(୨୨) "ନବଲିପି" (ଅକ୍ଟୋବର ୧୯୯୨) ରେ ପ୍ରକାଶିତ "ନବମ ଦଶଂଧିରେ ଓଡ଼ିଆ ଗଳ୍ପର ଆଧୁନିକତା" ନିବଂଧରେ କିଶୋରୀଚରଣଙ୍କ ବିଷୟରେ ଉଲ୍ଲେଖ - ଡଃ. ଇନ୍ଦୁ ମିଶ୍ର ।

(୨୩) "ନବଲିପି"(ଅଗଷ୍ଟ ୯୪)ରେ ପ୍ରକାଶିତ "ଏକ ବ୍ୟତିକ୍ରମ ପ୍ରତୀକ ଉପନ୍ୟାସ - ସାତୋଟି ଦିନର ସତୀ" - ସୁନୀଳ କୁମାର ପୃଷ୍ଟି ।

(୨୪) "କୋଣାର୍କ" (ଅକ୍ଟୋବର ୯୪)ରେ ପ୍ରକାଶିତ "କିଶୋରୀଚରଣଙ୍କ ଗଳ୍ପ ଜଗତ - ଏକ ଅନୁଧ୍ୟାନ"- ଡଃ ନରେନ୍ଦ୍ରନାଥ ମିଶ୍ର ।

(୨୫) "ଓଡ଼ିଆ ସାହିତ୍ୟ ସମାଲୋଚନାର ଇତିହାସ"(ଅଗଷ୍ଟ ୧୯୯୪) ପୁସ୍ତକରେ ପ୍ରକାଶିତ "ଗଳ୍ପଚିତ୍ତର ଲଳିତ ଅଭିବ୍ୟକ୍ତି" - କିଶୋରୀଚରଣଙ୍କ ପ୍ରବନ୍ଧ ପୁସ୍ତକ ''କଥା ସାହିତ୍ୟର କଳା ଓ କାରିଗରି''ର ସମୀକ୍ଷା - ଡଃ. ଅସିତ୍ କବି ।

(୨୬) "ଗୋକର୍ଣ୍ଣିକା"(ଅକ୍ଟୋବର-ନଭେମ୍ବର-ଡିସେମ୍ବର ୧୯୯୪)ରେ ପ୍ରକାଶିତ "ସାତୋଟି ଦିନର ସତୀ"ଉପନ୍ୟାସର ସମୀକ୍ଷା - ଡଃ. ବିଜୟ କୁମାର ଶତପଥୀ ।

(୨୭) "ଝଙ୍କାର"(ମେ ୧୯୯୫)ରେ ପ୍ରକାଶିତ ନିବଂଧ "ରାଜନୈତିକ ଗର୍ଭଗୃହରେ ସିଂହାସନ"ରେ କିଶୋରୀଚରଣଙ୍କ ଉପନ୍ୟାସ "ନେତା ଓ ନେତ୍ରମଣି"ଉପରେ ଆଲୋପାତ - ରମାକାନ୍ତ ରାଉତ ।

(୨୮) "ଅମୃତାୟନ"(ମାର୍ଚ୍ଚ ୧୯୯୫)ରେ ପ୍ରକାଶିତ ନିବଂଧ "ମାନବିକ ଆଶା ଓ ଆଶ୍ୱାସନାର ଅବଶେଷ"- "ଧବଳ ଆକାଶ" ଗଳ୍ପସଂକଳନର ସମୀକ୍ଷା - ଡଃ. ଇନ୍ଦୁ ମିଶ୍ର ।

(୨୯) "ଝଙ୍କାର"(ଜାନୁୟାରୀ ୧୯୯୫)ରେ ପ୍ରକାଶିତ "ପ୍ରବହମାନ ଜୀବନର ମାଧ୍ୟମ ପଛାରେ "ସାତୋଟି ଦିନର ସତୀ" - ଡଃ ଇନ୍ଦୁ ମିଶ୍ର ।

(୩୦) "ଉତ୍କଳ ପାଠକ ସଂସଦଙ୍କ ଦ୍ୱାରା ପ୍ରକାଶିତ "ସପ୍ତସିନ୍ଧୁ"ରେ ସ୍ଥାନିତ ନିବଂଧ (ମାର୍ଚ୍ଚ ୧୯୯୬) "ଓଡ଼ିଆ ସାହିତ୍ୟର ବିହଂଗ- କିଶୋରୀଚରଣ" - ଡଃ ବିଜୟାନନ୍ଦ ସିଂହ ।

(୩୧) "ସମାଜ"(୧୭/୫/୧୯୯୭) ର "ସାପ୍ତାହିକ ସାହିତ୍ୟ ଆଲେଚନା"ଶୀର୍ଷକରେ ପ୍ରକାଶିତ "କଳାକୋଇଲି ଓ କଥାକାର କିଶୋରୀଚରଣ" - ବିଜୟ କୁମାର ମହାରଣା ।

(୩୨) "ସଂକଳ୍ପ, (ଜାନୁୟାରୀ-ମାର୍ଚ୍ଚ ୧୯୯୬)ରେ ପ୍ରକାଶିତ "ଗାଳ୍ପିକ କିଶୋରୀଚରଣ ଓ କଳା କୋଇଲି" - ଡଃ ଜୟଶ୍ରୀ ନନ୍ଦ ।

(୩୩) "ସ୍ୱାଧିନତା ପରବର୍ତ୍ତୀ ଓଡ଼ିଆ ଉପନ୍ୟାସ"(୧୯୯୩)ରେ କିଶୋରୀଚରଣଙ୍କ ଉପନ୍ୟାସ"ସାତୋଟି ଦିନର ସତୀ, "ନେତା ଓ ନେତ୍ରମଣି'' ଓ "ସକଳ ସନ୍ତାନ"ର ସମୀକ୍ଷା - ଡଃ ବାଉରୀବନ୍ଧୁ କର ।

(୩୪) "ଝଙ୍କାର"(ଡିସେମ୍ବର ୧୯୯୮)ରେ ପ୍ରକାଶିତ " ସ୍ୱର୍ଗସୁଖ ଖୋଜୁଥିବା ମଣିଷ ମାନଙ୍କ ପାଇଁ ଏକ ଆଳାପ" - "ସ୍ୱର୍ଗସୀମା" ଉପନ୍ୟାସର ସମୀକ୍ଷା - ଡଃ ବୈଷ୍ଣବଚରଣ ସାମଲ ।

(୩୫) "ସଂବାଦ" ରବିବାର (ସେପ୍ଟେମ୍ବର ୨୭ - ଅକ୍ଟୋବର ୩ ୧୯୯୮)ରେ ପ୍ରକାଶିତ "ଆମ ପ୍ରଶାସନର ନଗ୍ନ ଛବି"- "ସ୍ୱର୍ଗସୀମା" ଉପନ୍ୟାସର ସମୀକ୍ଷା - ଡଃ ପ୍ରକାଶ କୁମାର ପରିଡ଼ା ।

(୩୬) "କିଶୋରୀଚରଣ କଥାକଳନା"- "ଝଙ୍କାର" ଏପ୍ରିଲ୍ ୧୯୯୩ - ଡଃ ନଟବର ଶତପଥୀ ।

(୩୭) "କିଶୋରୀଚରଣ କଥା କଳନା"- (୨) - ଝଙ୍କାର - ଏପ୍ରିଲ୍ ୧୯୯୩ - ଡଃ ନଟବର ଶତପଥୀ ।

(୩୮) "କିଶୋରୀଚରଣ କଥା କଳନା"- (୩) - ଝଙ୍କାର - ଅକ୍ଟୋବର ୧୯୯୭ - ଡଃ ନଟବର ଶତପଥୀ ।

(୩୯) "କିଶୋରୀଚରଣ କଥା କଳନା"- (୪) - ଝଙ୍କାର - ଏପ୍ରିଲ୍ ୧୯୯୯ - ଡଃ ନଟବର ଶତପଥୀ ।

(୪୦) ଡଃ କବିତା ବାରିକଙ୍କର ଗ୍ରନ୍ଥ "ଶହେବର୍ଷର ଆଧୁନିକ ଓଡ଼ିଆ ପ୍ରଗଳ୍ପ ଏକ ତାତ୍ତ୍ୱିକ ବିଶ୍ଳେଷଣ (୧୯୮୯-୧୯୯୮)ରେ କିଶୋରୀଚରଣଙ୍କ ସାହିତ୍ୟଗୁଡ଼ିକର ସମୀକ୍ଷା - ପୃଷ୍ଠା ୯୨-୯୮, ୨୫୫ ।

(୪୧) "ସହକାର"(ସ୍ୱନକ୍ଷତ୍ର ସଂଖ୍ୟା ୨୦୦୦)ରେ ପ୍ରକାଶିତ ନିବଂଧ "ଓଡ଼ିଆ ସାହିତ୍ୟର ବରେଣ୍ୟ କଥା-ଶିଳ୍ପୀ- କିଶୋରୀଚରଣ ଦାସ"- ଡଃ ଖଗେନ୍ଦ୍ର ନାଥ ମଲ୍ଲିକ ।

(୪୨) "ଇସ୍ତାହାର" (ଶାରଦୀୟ ସଂଖ୍ୟା, ୧୯୯୯) ରେ ପ୍ରକାଶିତ ନିବଂଧ "ଗାଳ୍ପିକ କିଶୋରୀଚରଣଙ୍କ କିଶୋର ଗଳ୍ପ ମାନସ"- ଡଃ କୈଳାଶ ଚନ୍ଦ୍ର ଦାସ ।

(୪୩) ନଅଟି ଅନୁଦିତ ଇଂରାଜୀ ଗଳ୍ପର ସମାହାର ଏବଂ "Michigan State University Press" ଦ୍ୱାରା ପ୍ରକାଶିତ "The Journey"ର ରିଭିଉ - ଅଶ୍ୱିନୀ କୁମାର ମିଶ୍ର । ଓଡ଼ିଶା ସାହିତ୍ୟ ଏକାଡେମୀର ମୁଖପତ୍ର "କୋଣାର୍କ"ର ଜୁଲାଇ ୨୦୦୦ ସଂଖ୍ୟାରେ ପ୍ରକାଶିତ ।

(୪୪) ଔପନ୍ୟାସିକ କିଶୋରୀଚରଣ : ପ୍ରସଙ୍ଗ "ବିଦେଶିନୀ" - ଡକ୍ଟର ନଟବର ଶତପଥୀ । "ଗୋକର୍ଣ୍ଣିକା" ପୂଜା ସଂଖ୍ୟା ୨୦୦୦ରେ ପ୍ରକାଶିତ ।

(୪୫) "The Journey" ଉପରେ ଆଲୋକପାତ - "ଝଙ୍କାର"ସଂପାଦକୀୟ ମାର୍ଚ୍ଚ ୨୦୦୧ ।

(୪୬) ଗଳ୍ପସଂକଳନ "ଶେଷ ଗଳ୍ପ" ର ରିଭିଉ - ଦେବବ୍ରତ ମଦନ ରାୟ "ନବଲିପି" ପୂଜା ସଂଖ୍ୟା ୨୦୦୦ ।

(୪୭) "ସକଳ ସନ୍ତାନ" ରେ କ୍ଲୀବତ୍ୱର ଅର୍ଭ୍ୟୁଦୟ - ସମ୍ବଲପୁର ବିଶ୍ୱବିଦ୍ୟାଳୟର ସାହିତ୍ୟ ପତ୍ରିକା "ସପ୍ତର୍ଷୀ"ରେ ପ୍ରକାଶିତ - ଜାନୁୟାରୀ ୨୦୦୧ - ଡଃ ସବିତା ତ୍ରିପାଠୀ ।

ଇଂରାଜୀ -

(1) A passage on Kishori Charan in the article " A Review of Current Indian writing - Oriya", by Bidhu Bhusan Das and Jatindra Mohan Mohanty - "Indian Literature" Oct. 1957.

(2) Review of "Thakuraghara" in the article on "Oriya Literature" by Dr Khagaswar Mohapatra - Book Review, Vol - ii No.1, Jan-Feb 1997.

(3) "A Study of Kishores Das's Short Stories" by Pratap Chandra Mohanty - "Indian Literatue" - Jan-Feb 1977-78.

(4) Article on "Oriya Literature - "The Modern Oriya Story" by Prof Prabhat Nalini Das - passage on Kishori Charan - "Indian Express" Nov-Dec 79.

(5) A passage on "Naba Gulu Gulu Sadhaba Bahu" in the article "The Oriya Literary scene" - by Jayant Kumar Biswal - "Indian literature" Nov-Dec 79.

(6) Review of the Collection of Poems "Faces in the Dark" -Rajasthan Journal of English Literature, November 10, Winter 1979.

(7) A passage on Kishori Charan in the article "Oriya Short Story : A brief study." - J. M. Mohanty in his book "There where the trees flower" - a collection of essays on modern oriya Literature, published by "Book Land", Bhubaneswar, 1980.

(8) Review of author's collection of stories "Nali Gulu Gulu Sadhaba Bahu" along with a retrospective review of his books.

(9) A write-up on "Kishori Charan Das" in the article "Lands cape to Inscape" by Pankaj Kumar Mandal in "Link" - Indian News Magazine (October 10, 1982).

(10) A passage on Kishori Charan Das in the article "Fifty years of Creativity" by Rajendra Kishore Pada - "Sunday" special issue article on "Orissa's Golden Year" (13-19 April 1986).

(11) Review of "Wild Peacock and other stories" In M/s. Raji Naramasimhan in the article "Assertion of the flow of life" - "Indian Literature" May-Jan 1986.

(12) Review of "Shita Lahari" in the article "Oriya 1984-85 - "Quantitative Lean Year" by Jatindra Mohan Mohanty - "Indian Literature" Nov-Dec 1986.

(13) Review of "Wild Peacock and other stories" in the article "Way of all Flesh", by Sudhansu Mohanty - Financial Express Feb1, 1987.

(14) Entry on "Kishori Charan Das" in Encyclopaedia of Indian Literature - Vol I 1987 - JKB.

(15) Review of "Trayovousho Mritya" in the article " A Fruitful year" by Jatindra Mohan Mohanty - "Indian Literature" Nov-Dec 1988.

(16) Review of "Tirish Barshara Galpa O Alap" by Jatindra Mohan Mohanty - "Indian Literature" Nov-Dec 1989.

(17) Article on 1976 Sahitya Akademi Award for "Thakura Ghara" by Jatindra Mohan Mohanty - "Sahitya Akademi Awards - Books and writers (1955-78) "1990 Sahitya Akademi.

(18) Review of "Prayer Room and other Stories" by Himansu, S. Mohapatra - "Sateertha Balletin Winter 1994.

(19) Review of "The Midnight Moon and other stories" by Roomy Naqvi - "Indian Literature" Nov-Dec 1995.

(20) A write-up on the anthology " Beyond the Roots", Edited and Complied by Kishori Charan Das for National Book Trust, India - NBT News Letter May 1998.

(21) A passage on Kishori Charan Das in "Biblio" (May-June 1999) in the Review on "Harper Collins Book of'short Stories" by Debdas Chhotray, "An unusual Fruit".

(22) Write-up on Kishori Charan Das in the Introduction to "The Journey  Stories by K.C. Das" by Dr Phylis Granoff, Published by the University of Michigan Press, Ann Arber, Michigan, U.S.A. - 2000 AD.

(23) Write-up on "The Journey : Stories by K.C. Das" by the University of Michigan Press in their bulletin "Asian Stories 2000".

(24) "Middle Roader's Journey" - Review of "The Journey : Stories by K.C. Das" by S. Mohapatra - "Indian Review of Books" No 30 (16 March 2001 - 15 April 2001).

(25) Review of "Inner Voices", India edition of "The Journey : stories by K.C. Das", published by Penguin Books India - "The Hindu" 4 Apirl 2004, by Suchita Behal.

ଉପରୋକ୍ତ ସୂଚୀରେ ଥିବା ଯେଉଁ କେତୋଟି ସମୀକ୍ଷାର ସଂପୂର୍ଣ୍ଣ ପ୍ରତିଲିପି ମଧ୍ୟ ଆମେ ନିମ୍ନରେ ଲିପିବଦ୍ଧ କରିଛୁ, ସେଥିର ଅପେକ୍ଷାକୃତ ଅଧିକ ଗୁରୁତ୍ୱ ଏବଂ ଉପଯୋଗିତା ଦୃଷ୍ଟିରୁ, ତାହା ଏହିପ୍ରକାର :

## ଓଡ଼ିଆ

**ଗଳ୍ପ ସଂକଳନ :**

(୧) ନାଲି ଗୁଲୁଗୁଲୁ ସାଧବ ବୋହୂ – ନିରଂଜନ ବେହୁରିଆ
(୨) ଶୀତ ଲହରୀ – ଡକ୍ଟର ସଂଘମିତ୍ରା ମିଶ୍ର
(୩) ଧବଳ ଆକାଶ – ଡକ୍ଟର ଇନ୍ଦୁ ମିଶ୍ର
(୪) ଶେଷଗଳ୍ପ – ଦେବବ୍ରତ ମଦନରାୟ
(୫) ଠାକୁର ଘର – ଡକ୍ଟର ଦାଶରଥି ଦାସ

**ଉପନ୍ୟାସ :**

(୧) ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଉପନ୍ୟାସରେ 'ସାତୋଟି ଦିନର ସତୀ', 'ନେତା ଓ ନେତ୍ରମଣି' ଓ 'ସକଳ ସନ୍ତାନ' – ଡକ୍ଟର ବାଉରୀବନ୍ଧୁ କର
(୨) ସ୍ୱର୍ଗସୁଖ ଖୋଜୁଥିବା ମଣିଷମାନଙ୍କ ପାଇଁ ଏକ ଆଳାପ – ଡକ୍ଟର ବୈଷ୍ଣବ ଚରଣ ସାମଲ

**ଇଂରାଜୀ :**

(1) A Study of Kishoree Das's Short Stories – Pratap Chandra Mohanty
(2) Thakura Ghara – Jatindra Mohan Mohanty
(3) The Midnight Moon and Other Stories – Roomy Naqvi
(4) Middle Roader's Journey from Muddle to Mystery - Review of "The Journey : Stories by K.C. Das", – Himansusekhar Mohapatra
(5) Wild Peacock and Other Stories– Raji Narasimhan
(6) Inner Voices – Suchitra Behal
(7) "Kishori Charan Das"– Encyclopaedia of Indian Literature, Vol.I, 1987



# ନାଲି ଗୁଲୁଗୁଲୁ ସାଧବ ବୋହୂ

*ନିରଂଜନ ବେହୁରିଆ*

''ନାଲି ଗୁଲୁ ଗୁଲୁ ସାଧବ ବୋହୂ''– ଗାଳ୍ପିକ କିଶୋରୀ ଚରଣ ଦାସଙ୍କର ଏଗାରଟି ଗଳ୍ପର ସଦ୍ୟତମ ସମାହାର (୬ଷ୍ଠ ସଂକଳନ) । ଏହାର ଶିଳ୍ପୀ ଅଭିଜାତ ମାନସ ଓ ଜୀବନର ସଫଳ ଚିତ୍ରକାର, ମୂଳରୁ ବାସ୍ତବବାଦୀ ଏବଂ ସଚେତନ ସ୍ରଷ୍ଟା । ଜୀବନନିଷ୍ଠ ଶିଳ୍ପୀ ଶ୍ରୀ ଦାସ ମଧ୍ୟବିତ୍ତ ଓ ଉଚ୍ଚ ମଧ୍ୟବିତ୍ତ ସମ୍ପ୍ରଦାୟର ସମାଜ ଓ ଜୀବନ ସଂପର୍କରେ ବେଶ୍ ସଚେତନ ଓ ଅଭିଜ୍ଞ । ସେଇ ସଶ୍ରଦ୍ଧ ଅନୁଭୂତି, ହେଉପଛେ ତାହା ଯେତେ ଅରମା ଓ ଅରଣା, ତାହା ଗଳ୍ପର କଳାସୃଷ୍ଟିରେ ଚୂଡ଼ାନ୍ତ ରୂପ ନେଇ ପ୍ରକଟିତ । ମୂଳରୁ ଚୂଳଯାଏ ସେଇ ମଣିଷମାନଙ୍କର କଥା, ସେମାନଙ୍କର ଶୂନ୍ୟତା ଓ ଅସହାୟତା, ଏକାକୀତ୍ୱବୋଧ ଓ ମାନସବୀକ୍ଷା । ଯେତେ କହିଲେ ମଧ୍ୟ ମନ ପୂରୁନି, ଲାଗୁଛି ଯେମିତି ଆଉ କିଛି, ଆହୁରି ଅନେକ କିଛି ବାକି ରହିଗଲା । ''ଛାଇ ବଢ଼ିଲାଣି, ଏମିତି ଲେଖୁ ଲେଖୁ ହୁଏତ ଲେଖା ସରିଯିବ, ମୋ କଥା ଅକୁହା ରହିଯିବ''–ଏଇ ସଚେତନ ଭୟ ମଧ୍ୟରେ ଶିଳ୍ପୀ ନିଜର ଅପୂର୍ଣ୍ଣ କଥାତକକୁ ସଂପୂର୍ଣ୍ଣ କରିବାପାଇଁ ଚେଷ୍ଟିତ । ବେଳ ସରି ଆସୁଛି ଅଥଚ ଥକି ଯିବାକୁ ପ୍ରସ୍ତୁତ ନୁହଁନ୍ତି କିମ୍ବା ଅପୂରଣକୁ ମାନି ନେବାକୁ ରାଜି ନୁହନ୍ତି । ସର୍ବଦା ଅତୃପ୍ତ ଏବଂ ନୂତନ ଅନୁଭୂତି ଓ ଅଭିଜ୍ଞତାପାଇଁ ବ୍ୟାକୁଳ । ତେଣୁ ସେଇ ଅନୁରାଗଯୁକ୍ତ ରଙ୍ଗର ସ୍ୱାଦ ଅନେକ ଅନ୍ତରଙ୍ଗ ପ୍ରୀତି ଓ ଭୀତିରେ ଶିଳ୍ପୀଙ୍କୁ ଦଗ୍ଧ କଲେ ବି ସୁନ୍ଦର ସୃଷ୍ଟିରୁ ଆକର୍ଷଣ କମିନାହିଁ । ସେଇଥିପାଇଁ, ସେଇ ମନ ନ ମାନୁଛି ବୋଲି ତ ପୁଣିଥରେ 'ନାଲି ଗୁଲୁ ଗୁଲୁ ସାଧବବୋହୂ'ଟିକୁ ପାଠକଙ୍କୁ ଭେଟି ଦିଅନ୍ତି । ପୁନଶ୍ଚ ସେଇ ମଧ୍ୟବିତ୍ତ ସମ୍ପ୍ରଦାୟର ଚିତ୍ର ନୂଆ ରୂପରେ ନୂଆ ରଙ୍ଗରେ ପାଠକ ସମ୍ମୁଖରେ ଫିଟି ଫିଟି ପଡ଼େ । ସେଇ ଅଦ୍‌ଭୁତ ବିଚିତ୍ର ମଣିଷଟି ବିଭିନ୍ନ ବେଶପୋଷାକରେ ଭଳିକି ଭଳି ଦିଶିଲେ ମଧ୍ୟ ଚିହ୍ନିବାରେ ବିଶେଷ କିଛି ଅସୁବିଧା ହୁଏନି । ବରଂ ଗଳ୍ପଗୁଡ଼ିକର ଶିଳ୍ପ-କଳା, ବୈଚିତ୍ର୍ୟ ଓ ବକ୍ତବ୍ୟର ଚମତ୍କାରିତା ପାଠକର ସପ୍ରଶଂସ ଦୃଷ୍ଟି ଆକର୍ଷଣ କରେ । କିଛି କ୍ଳାନ୍ତିକର ବୋଧ ହୁଏ ନାହିଁ, ଅବସାଦ ଆସେନାହିଁ । ସଂକଳନଟି ଅନୁଭୂତିର ନୂଆ ରୂପ ଓ ନୂଆ ଚିତ୍ର ତୋଳିଧରେ । ଏଠି ଗାଳ୍ପିକ 'କ'ଣ କହିଛନ୍ତି' ଯେତେ ଗୁରୁତ୍ୱପୂର୍ଣ୍ଣ ନୁହେଁ 'କେମିତି କହିଛନ୍ତି' ତା'ଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ବୋଲି ମନେହୁଏ । ଏଠି ଗଳ୍ପ ଚେତନାର କାନଭାସ୍ ବ୍ୟାପକ ଓ ଅନୁଭବ ସୂକ୍ଷ୍ମତର ।

'ନାଲି ଗୁଲୁ ଗୁଲୁ ସାଧବ ବୋହୂ'– ଏକ ଚମତ୍କାର ରୂପକାତ୍ମକ ନାମ । ଏହା ମନରେ ଏକ ସବୁଜ ଦ୍ୟୋତନାର ପ୍ରତ୍ୟୟ ସୃଷ୍ଟି କରୁଥିଲେ ହେଁ ସଂକଳନଟିରେ ବାସ୍ତବ ଜୀବନ ଚିତ୍ର ଓ ନିଭୃତ ସ୍ୱର ଅଧିକ ସ୍ପଷ୍ଟ । ଗାଳ୍ପିକ କିଶୋରୀ ଚରଣ ମାନବବାଦୀ ଜୀବନ ଶିଳ୍ପୀ । ତାଙ୍କର ସମଗ୍ର ଗଳ୍ପ ଜଗତ ମଧ୍ୟରେ କେଉଁଠି ସେ ଜୀବନଠାରୁ ଦୂରେଇ ଯାଇ ନାହାନ୍ତି ବରଂ ଜୀବନ ପ୍ରତି ଗଭୀର ଆସକ୍ତି ଓ ଶ୍ରଦ୍ଧା ତାଙ୍କୁ ଜୀବନ ସହିତ ଘନିଷ୍ଠ ଭାବେ ଯୋଡ଼ି ଦେଇଛି । ଶିଳ୍ପୀ ଏକ ମହତ୍ତର ପରିପୂର୍ଣ୍ଣ ଜୀବନର ସମ୍ଭାବନାରେ ପ୍ରତ୍ୟାଶା ରଖନ୍ତି ସତ କିନ୍ତୁ ଜୀବନର କୁତ୍ସିତତାକୁ ଅସ୍ୱୀକାର କରନ୍ତି ନାହିଁ । ସଂବେଦନଶୀଳ ହୃଦୟରେ ଦେଖନ୍ତି ସତ କିନ୍ତୁ ଘୃଣା କରନ୍ତି ନାହିଁ । ''ନାଲି ଗୁଲୁ ଗୁଲୁ ସାଧବ ବୋହୂ'ରେ ସେଇ ମଧ୍ୟବିତ୍ତ ମଣିଷ ମାନଙ୍କର ଜୀବନ ପ୍ରେମ, କାମନା ଓ ଯନ୍ତ୍ରଣାର ଆର୍ତ୍ତି ଭିତରେ କିପରି ଗତିଶୀଳ ଓ ଅସହାୟ ତା'ର ଆଲେଖ୍ୟ ଏଗାରଟି ଯାକ ଗଳ୍ପରେ ପ୍ରମୂର୍ତ୍ତ । 'ମୁକ୍ତକେଶୀ', 'ପାହାଡ଼', 'ମିଶ୍ରବାବୁ', 'ଅଳକାର ଫୁଲ' ଇତ୍ୟାଦି ଗଳ୍ପ ଗୁଡ଼ିକରେ ସେଇ ଯନ୍ତ୍ରଣାବିଜଡ଼ିତ ଅସହାୟ ନରନାରୀଙ୍କର ଚିତ୍ର ଓ ଚରିତ, ସଂଗ୍ରାମ ଓ ସ୍ୱପ୍ନର କାହାଣୀ ନିହିତ । ସ୍ୱାଦ ଏବଂ ଆବେଦନ ଦୃଷ୍ଟିରୁ ଗଳ୍ପଗୁଡ଼ିକ ଭିନ୍ନ ଭିନ୍ନ ଚେତନାକୁ ପ୍ରତିଫଳିତ କରୁଥିବାରୁ କେଉଁଟି ଶ୍ରେଷ୍ଠ ଗଳ୍ପ ବାଛି କହିବା ବଡ଼କଷ୍ଟ । ତେବେ 'ନାଲି ଗୁଲୁ ଗୁଲୁ ସାଧବବୋହୂ', 'ମୁକ୍ତକେଶୀ', 'ପାହାଡ଼' ଇତ୍ୟାଦି ଗଳ୍ପ ଆଧୁନିକ ଗଳ୍ପ ଜଗତରେ ଏକ ଏକ ଅନବଦ୍ୟ ଶିଳ୍ପ-ସୃଷ୍ଟିରେ ପରିଗଣିତ ହେବେ, ଏଭଳି ଆଶା କରିବା ଯଥାର୍ଥ ।

ସଂକଳନଟିର ଅଧିକାଂଶ ଗଳ୍ପର ମୁଖ୍ୟ ବିଷୟ ପ୍ରେମ, କିନ୍ତୁ ପ୍ରେମର ଏକ ଚିରନ୍ତନ ସାର୍ବଜନୀନ ରୂପ ଓ ଆବେଗପୂର୍ଣ୍ଣ ଚିତ୍ର ଗଳ୍ପଗୁଡ଼ିକରେ ଖୋଜି ପାଇବା ଏକ ବିଡ଼ମ୍ବନା ମାତ୍ର । ଏଠି ପ୍ରେମ ଦେହ ଭିତରେ ସୀମିତ, ଅସଫଳ ଓ ବିପର୍ଯ୍ୟସ୍ତ । ନା ଏଥିରେ ଅଛି ପୁଲକ, ନା ରୋମାଞ୍ଚ, ନା ଅଛି ପବିତ୍ରତା, ନା କିଛି ଶାଶ୍ୱତ ମୂଲ୍ୟବୋଧ । ଦେହ ହିଁ ଏକମାତ୍ର ସତ୍ୟ । ତେଣୁ ପ୍ରେମର ଏକ ସ୍ୱପ୍ନିଳ, ରୋମାଣ୍ଟିକ୍ ଅଥଚ ସମ୍ଭାବନା ପୂର୍ଣ୍ଣ ଚିତ୍ର ଖୋଜିଲେ ନିରାଶ ହେବାକୁ ହୁଏ । ପ୍ରସଙ୍ଗକ୍ରମେ 'ନାଲି ଗୁଲୁ ଗୁଲୁ ସାଧବବୋହୂ' (title story) କୁ ବିଚାରକୁ ନିଆଯାଇପାରେ । ଗୀତା ତରୁଣୀ, ଗୀତା ସୁନ୍ଦରୀ । ତା'ର ରୂପ ଓ ସୌନ୍ଦର୍ଯ୍ୟରେ ମୁଗ୍ଧହୋଇ ଅନେକ ଆଗେଇ ଆସିଛନ୍ତି ତାକୁ ବୋହୂ କରିନେବା ପାଇଁ । କିନ୍ତୁ ସେ ଯେ ଏଇ ଧୂଳି ମାଟିର ଜଣେ ମଣିଷ, ତା'ର ଯେ ଏକ ମନ ଅଛି ଏ କଥା ବୁଝିଛନ୍ତି କେତେଜଣ ? ସବୁ ପାଇବା ଭିତରେ, ସମସ୍ତଙ୍କର ସ୍ନେହ ଆଦର (ସତରେ କ'ଣ ସ୍ନେହ ଆଦର ନା ଆଉକିଛି ?) ଭିତରେ ଗୀତା ଅସହାୟ ହୋଇ ପଡ଼ିଛି । ଫଳରେ ସେ ନିଜେ ନିଜ ଭିତରେ ନିଜ ସ୍ୱପ୍ନରେ ହଜିବାକୁ ଚାହିଁଛି । ଆବିଷ୍କାର କରିବାକୁ ଚାହିଁଛି ନିଜର ନିଜତ୍ୱକୁ । ଅନ୍ୟମାନଙ୍କର ହୃଦୟହୀନତା ଓ ନିଷ୍ଠୁରତା ଭିତରେ କ୍ରମଶଃ ଅତିଷ୍ଠ ହୋଇଛି, ଉତ୍ପୀଡ଼ନରୁ ମୁକ୍ତିପାଇଁ ବ୍ୟାକୁଳ ହୋଇଛି । ଗୀତାକୁ କେନ୍ଦ୍ରକରି ବିଭିନ୍ନ ଚରିତ୍ରମାନଙ୍କର

ଭିନ୍ନ ଭିନ୍ନ ଚିନ୍ତା ଓ ଅନୁଭବ ଭିତରେ କଳ୍ପର ଏକକତ୍ୱ ନିହିତ । ଗଳ୍ପଟିର ପରିକଳ୍ପନା ବେଶ୍ ମନୋରମ ଓ ଉତ୍‌କଣ୍ଠା ଆବେଗ ସୁରକ୍ଷିତ । ବର୍ଣ୍ଣନା କୌଶଳ ଅପୂର୍ବ ଏବଂ ପଠନ ପାଇଁ ବେଶ୍ ସ୍ୱାଦ୍ୟ ।

ପ୍ରେମକୁ ଉପଜୀବ୍ୟ କରି ଅନ୍ୟ ଏକ ଗଳ୍ପ 'ପାହାଡ଼' ନିଶ୍ଚିତ ଭାବରେ ସଂକଳନଟିର ଅନ୍ୟତମ ଶ୍ରେଷ୍ଠ ଆକର୍ଷଣୀୟ ଗଳ୍ପ । ଗଳ୍ପଟି ମଣିଷ ମନରେ ଦୈହିକ କାମନାକୁ ପ୍ରତିଫଳିତ କରିଥିଲେ ହେଁ ପକ୍ଷାନ୍ତରେ ଏକ ସର୍ବକାଳୀନ ସତ୍ୟର ପରିଣତି ଦିଗରେ ଅଗ୍ରସର ହୋଇଛି । ପ୍ରେମ ଆଜି ଯୌନ କାମନା ମାତ୍ର, ଆଜିର ଆଧୁନିକ ମଣିଷ ଆଉ ପ୍ରେମକୁ ଏକ ସ୍ୱର୍ଗୀୟ ବସ୍ତୁ ଭାବରେ ଗ୍ରହଣ କରିପାରୁ ନାହିଁ । ପ୍ରେମ ଏଠି ତେଣୁ ଦେହକୁ ଅସ୍ୱୀକାର କରି ନୁହେଁ; ବରଂ ଦୈହିକ କାମନା ଓ ଅଶ୍ଳୀଳତାରେ ପୂର୍ଣ୍ଣ । ନାୟକ ନାୟିକା ତେଣୁ ପାହାଡ଼ର ପାଦଦେଶର ଏକ ନିଛାଟିଆ ଡାକବଙ୍ଗଳାକୁ ବାଛିନିଅନ୍ତି ନିଜର କାମନାକୁ ଚରିତାର୍ଥ କରିବାପାଇଁ । ନିର୍ଜନ ରାତି, ଅଜଣା ବଣ, ଅଚିହ୍ନା ପାହାଡ଼ ଏବଂ ନିଛାଟିଆ ଡାକବଙ୍ଗଳାରେ ତରୁଣ-ତରୁଣୀଦ୍ୱୟ ଦେହରେ ଦହନ ଓ କାମନାକୁ ସ୍ୱୀକାର କରିବା ଭିତରେ ଚରମ ସତ୍ୟର ଉପଲବ୍‌ଧି ହିଁ କରିଛି ଗଳ୍ପନାୟକ; ନିଛାଟିଆ ରାତି ସରିଆସେ, କାମନା ମରିଯାଏ । ପ୍ରେମ ଯେ ସତ୍ୟ ଓ ସୁନ୍ଦର ଜୀବନର ଏକ ପରିପୂର୍ଣ୍ଣ ମହତ୍ତର ଉପଲବ୍‌ଧି ଏକଥା ସ୍ୱୀକାର କରିନେବାକୁ ହୁଏ । ସେଠି ଆଉ ଏ ଶତାବ୍ଦୀର କଲିକତାର ନାରୀ ନନ୍ଦା ମଲ୍ଲୀକଙ୍କୁ ପାଇବା ସମ୍ଭବ ହୁଏନି । ଗଳ୍ପନାୟକ ଆବିଷ୍କାର କରେ ଚିରନ୍ତନ ମାତୃତ୍ୱର ଅଫୁରନ୍ତ ଉତ୍ସ । ବେଶ୍ ଶୁଭଙ୍କର ଓ ଶୁଭପ୍ରଦ । ଅସନା ସେକସ୍‌କୁ ଫିଙ୍ଗିଦେଇ ଜୀବନର ଚରମ ସତ୍ୟର ଆବିଷ୍କାର । ଏ ଗଳ୍ପଟି ସହ ରବି ପଟ୍ଟନାୟକଙ୍କ 'ପରକୀୟା' ଗଳ୍ପର ଅଦ୍‌ଭୁତ ସ୍ୱରସାମ୍ୟ ଲକ୍ଷ୍ୟ କରାଯାଏ ।

କିଶୋରୀ ଗଳ୍ପ-ମାନସର ଧର୍ମ ହେଉଛି ଗହନ ମନର କଥା ଓ ଜୀବନର ଅନ୍ତଃ ବାସ୍ତବତାକୁ ପ୍ରକାଶ କରିବା । ଏଇଥିପାଇଁ ଚରିତ୍ରର ମନ ଭିତରେ ଅନେକ କଥା ଖେଳିବୁଲେ, ଅନେକ କଥା ଅକୁହା ରହିଯାଏ, ଯେମିତି 'ମୁକ୍ତକେଶୀ' ଗଳ୍ପରେ ସରସୀ ମନର କଥା । ବୁଝି ମଧ୍ୟ ବୁଝାଇ ହୁଏନି । ଗଳ୍ପଟି ଏକ ତରୁଣୀ ବିଧବାର ଅନୁଭୂତି-ଦଗ୍‌ଧ ପ୍ରାଣର କରୁଣ ପରିଣତି । ନାୟିକା ସରସୀ, ଜୀବନରେ ଏକ ସଂଭାବନା ପୂର୍ଣ୍ଣ ଆଶା ନାହିଁ । କିମ୍ବା ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ପ୍ରତିଶ୍ରୁତି ନାହିଁ । ସବୁ ହଜି ଯାଇଛି, ଦେହରେ ଭରା ଯୌବନ, ମନ ଚାହୁଁଛି ପୁରୁଷର ନିବିଡ଼ ପରଶ, କିନ୍ତୁ ସାମାଜିକ ନୀତି ନିୟମର ପରମ୍ପରା ଓ ମୂଲ୍ୟବୋଧର ପ୍ରାଚୀରକୁ ସେ ଭାଙ୍ଗି ପାରିନି । ସେ ଜୀବନ ଚାହିଁଛି, ଚାହିଁଛି ସଂସାର, ସେ ଯେ ନାରୀ, ଏଇ ଅସହାୟ ଆର୍ତ୍ତିର କାରୁଣ୍ୟ ଭିତରେ ଏକ ଜୀବନଧର୍ମୀ ମାନବିକ ରୂପକୁ ପରିସ୍ଫୁଟ କରିଛନ୍ତି ଗଳ୍ପଟିରେ ଶ୍ରୀ ଦାସ ।

## ସମୟ ନାହିଁ

ସେମିତି ''ଶୃଙ୍ଗାର ରସ'' ଗଳ୍ପରେ କୌଣସି ନିର୍ଦ୍ଦିଷ୍ଟ କଥାବସ୍ତୁ ନ ଥାଇ ବିଭିନ୍ନ ଚରିତ୍ର ମାନଙ୍କର ମନର ଗୋପନ କଥା ଦିବାଲୋକ ପରି ସ୍ପଷ୍ଟ ହୋଇଉଠିଛି । ଶୃଙ୍ଗାର ରସକୁ କେନ୍ଦ୍ରକରି ସାହିତ୍ୟିକମାନେ (ଛୋଟରୁ ପଦ୍ମଭୂଷଣ ପର୍ଯ୍ୟନ୍ତ) ନିଜ ନିଜର ବକ୍ତବ୍ୟ ବାଢ଼ିବା ଭିତରେ ଗହନ ମନର ଅକୁହା କଥା ଉତୁରି ପଡ଼ିଛି । ବାରି ହୋଇ ପଡ଼ିଛି ସବୁ ଛଳନା ଓ ମୁଖା ପିନ୍ଧି ଅଭିନୟ କରିବା । ସହଜ ସ୍ୱାଭାବିକ ଭାବେ ସବୁ ଘଟଣା ଘଟି ଯାଇଛି । ପାଠକ ବିସ୍ମିତ ହୋଇଯାଏ କାହାଣୀ ଶୁଣି ନୁହେଁ, ଯେଉଁ ଘଟଣା ଘଟିଯାଏ, ଯେଉଁ ଅନୁଭୂତିର ଚିତ୍ରଟି ଜଳିଉଠେ ସମ୍ମୁଖରେ ତା'ରି ପାଇଁ, ସମସ୍ୟାର ସମାଧାନ କିଛି ହୁଏନି, ହୋଇପାରେ ନାହିଁ । ସମସ୍ୟା ସମସ୍ୟା ହୋଇ ହିଁ ରହିଥାଏ । କିନ୍ତୁ ସେଇଟା ସେତେ ଗୁରୁତ୍ୱପୂର୍ଣ୍ଣ ନୁହେଁ, ଆଖି ଦୂରୁଶିଆ ନୁହେଁ; ଘଟଣା ଘଟିବା ଅଧିକ ସତ୍ୟ ମନେହୁଏ, ଗୁରୁତ୍ୱପୂର୍ଣ୍ଣ କଥା ହୁଏ ଗଳ୍ପର ଅଙ୍ଗୀକାର ଓ ଅନୁଭବ, ଚରିତ୍ର ମାନଙ୍କର ଭିତିରି କଥା ଓ ଆତ୍ମିକ ଅସହାୟତା ।

କିଶୋରୀ ଚରଣଙ୍କ ଗଳ୍ପରେ ଚରିତ୍ର ମାନଙ୍କର ଏଇ ଅସହାୟତା ଓ ତନ୍ମଧ୍ୟରୁ ମୁକ୍ତିର ପ୍ରୟାସ ସର୍ବତ୍ର ସ୍ପଷ୍ଟ । ଏଇଥିରୁହିଁ ସାମାଜିକ ମୂଲ୍ୟବୋଧ ଓ ଅଙ୍ଗୀକାର । ଆଶାର ସଫଳତା ଓ ଜୀବନର ପୂର୍ଣ୍ଣତାକୁ ଚରିତ୍ରମାନେ ଭେଟନ୍ତି ନାହିଁ ସତ କିନ୍ତୁ ସେଇ ସନାତନ ମଣିଷ (ଚଣ୍ଡାଳ, ପାଗଳ, ମହାତ୍ମା, ନିଉରୋଟିକ୍ ଯାହା କୁହନ୍ତୁ) ଉପରେ ଗାଳ୍ପିକଙ୍କର ଆସ୍ଥା ଅତୁଟ ରହିଛି । ତେଣୁ ଶୂନ୍ୟତା, ନୈରାଶ୍ୟ, ଆତ୍ମାର କରୁଣ ସ୍ୱର ବଡ଼ ଭଦ୍ର ଓ ଆବେଗହୀନ ଭାବରେ ଅଥଚ ବିଚିତ୍ର ସ୍ୱାଦରେ ରୂପ ପାଇଛି । ଅନୁଭୂତିର ବିଭିନ୍ନତା ଓ ଚେତନାର ଗଭୀରତା ଦ୍ୱାରା ଗଳ୍ପକଳା ହୋଇଛି ସୌନ୍ଦର୍ଯ୍ୟବିମଣ୍ଡିତ । ଚରିତ୍ର ଗୁଡ଼ିକ ସାମାଜିକ ଚେତନା ଭିତରୁ ଉଦ୍‌ଭୂତ କିନ୍ତୁ ସାମାଜିକ ଅଙ୍ଗୀକାର ପ୍ରତି ଖୁବ୍ ବେଶି ସଚେତନ ମନେ ହୁଅନ୍ତି ନାହିଁ । ତେଣୁ ସେମାନଙ୍କ ନିକଟରେ ନୀତି ଆଦର୍ଶ ଓ ଦର୍ଶନ ସେତେ ବଡ଼ କରି ଦିଶେ ନାହିଁ; ବଡ଼ କରି ଦିଶେ ମାନସିକ ସଙ୍କଟ ଏବଂ ଆକୁଳ ଆତ୍ମାର ସ୍ୱର, ନୈତିକ ଅଧଃପତନ ଓ ମୂଲ୍ୟବୋଧର ବିପର୍ଯ୍ୟୟ (ପୁରସ୍କାର) । ଅନ୍ୟ ଏକ ଗଳ୍ପ 'କାଠଘୋଡ଼ା' ଶିଶୁ ମନସ୍ତତ୍ତ୍ୱ ଉପରେ ଆଧାରିତ ଖୁବ୍-ସରଳ ଅଥଚ ଶକ୍ତିଶାଳୀ ଗଳ୍ପଟିଏ; ପିତାମାତାଙ୍କର ଉଦାସୀନ ବ୍ୟବହାର ମଧ୍ୟରେ ଗୋଟିଏ ସରଳ ନିଷ୍କପଟ ଶିଶୁ 'କାଠଘୋଡ଼ା'ଟିକୁ ନିଜର ଖେଳସାଥୀ ରୂପେ ଗ୍ରହଣ କରି ତା'ର ଅସ୍ୱାଭାବିକ କାର୍ଯ୍ୟ କଳାପ ଦ୍ୱାରା ଶେଷରେ ପରିସ୍ଥିତିକୁ ଏପରି ଜଟିଳ କରିଦେଇଛି ଯେ ଗଳ୍ପଟି ଆମର ମାନସିକ ଚେତନାକୁ ବାରମ୍ବାର ଆନ୍ଦୋଳିତ କରେ । ଏଠି ଅନୁଭୂତିର ଗଭୀରତା ଓ ଗଭୀର ଅନ୍ତର୍ଦୃଷ୍ଟି ଅନୁଭବ ଏକାନ୍ତ ଗୁରୁତ୍ୱପୂର୍ଣ୍ଣ ବିଷୟ । ଶ୍ରୀ ଦାସଙ୍କ ଗଳ୍ପରେ ଭାବସତ୍ତା ମୁଖ୍ୟତଃ ଉଚ୍ଚମଧ୍ୟବିତ୍ତ ସଂପ୍ରଦାୟର ଜୀବନ, ଉଭୟ ପାପ-ପୁଣ୍ୟ ଓ ଅନ୍ଧାର ଆଲୁଅକୁ ଉପଜୀବ୍ୟ ରୂପେ ଗ୍ରହଣ କରିଥିଲେ ହେଁ ଶିଳ୍ପୀଙ୍କର ଗଭୀର

ଅନ୍ତର୍ଦୃଷ୍ଟି ଓ ତୀକ୍ଷଣ ଅନୁଭବ, ଘଟଣା ସଂଯୋଜନା ଓ ବିନ୍ୟାସ ଗଳ୍ପ ଗୁଡ଼ିକର ସାଫଲ୍ୟ ଓ ବୈଚିତ୍ର୍ୟ ପାଇଁ ଦାୟୀ ।

ବିଷୟବସ୍ତୁ ବା ଭାବମତ୍ତା ଦୃଷ୍ଟିରୁ ଏ ସଂକଳନଟି କିଛି ନୂତନ ପ୍ରତିଶ୍ରୁତି କିମ୍ୱା ନୂଆ ଦିଗର ସନ୍ଧାନ ନ ଦେଲେ ମଧ୍ୟ ଗଳ୍ପଚେତନାର ଗଭୀରତା ଓ ଶୈଳ୍ପିକ ଚମତ୍‌କାରିତାରେ କିଛିଟା ବୈଚିତ୍ର୍ୟ ଏବଂ ସ୍ୱାତନ୍ତ୍ର୍ୟ ପରିଦୃଷ୍ଟି ହୁଏ । ଏ ପ୍ରସଙ୍ଗରେ ଆମେ ଗାଳ୍ପିକଙ୍କର 'ନିଜକଥା'ଟିକୁ ବିଚାରକୁ ନେଇ ପାରିବା । ତାଙ୍କ ଭାଷାରେ– ''ଶୈଳୀରେ ସାମାନ୍ୟ ତାରତମ୍ୟ ଥାଇପାରେ, କିନ୍ତୁ ଚିନ୍ତା ଚେତନାରେ ଗଢ଼ାଣି ଉଠାଣି ଥିବନାହିଁ ବୋଲି ମୋର ଧାରଣା, ମୂଳରେ ଶେଷରେ ଏକମେବ ଜଣେ, ଏକୁଟିଆ ।'' (ନିଜକଥା- ନାଲି ଗୁଲୁ ଗୁଲୁ ସାଧବବୋହୂ) । ତେଣୁ କୁହାଯାଇ ପାରିବ ଗାଳ୍ପିକଙ୍କର ପ୍ରଥମ ଗଳ୍ପ ପୁସ୍ତକ 'ଭଙ୍ଗା ଖେଳନା' ପାଠକ ପ୍ରାଣରେ ଯେଉଁ ଉତ୍ତେଜନା ଓ ପ୍ରତ୍ୟୟ ସୃଷ୍ଟି କରିଥିଲା, 'ନାଲି ଗୁଲୁଗୁଲୁ ସାଧବ ବୋହୂ' ସେଇ ପରମ୍ପରାର ଏକ ନୂତନ ସଂଯୋଜନା ମାତ୍ର । ସେ ଦିନର ସେଇ ଅନୁଭୂତି ଏଠି ଆହୁରି ନିଜସ୍ୱ ଓ ସୁନ୍ଦର ରୂପରେ ପ୍ରକଟିତ ଏବଂ ସଂକଳନଟି ଏକ ପରିଣତ ମାନସର ସାଧନାର ପ୍ରତିନିଧି ।

କହିଛି ତ ଭାବବସ୍ତୁ ଦୃଷ୍ଟିରୁ ସଂକଳନଟି ସେମିତି କିଛି ବିଚିତ୍ରତା ନାହିଁ; କିନ୍ତୁ ଶୈଳୀ ଓ ସୁଷମା ଯେ ବୈଚିତ୍ର୍ୟ ପୂର୍ଣ୍ଣ ଏକଥା ଅନେକ ଗଳ୍ପରୁ ଅନାୟାସରେ ଲକ୍ଷ୍ୟ କରାଯାଇ ପାରିବ । ଗଳ୍ପର ସ୍ଥାପତ୍ୟ ଓ ଗଠନ ସୌନ୍ଦର୍ଯ୍ୟ ପୁଣି ଶ୍ରୀ ଦାସଙ୍କ ପରି ଜଣେ ସଚେତନ ଶିଳ୍ପୀ ମୂଳରୁ ସଜାଗ, ତାଙ୍କ ଗଳ୍ପରେ ଶୈଳ୍ପିକ ଚମତ୍‌କାରିତା ଓ ପରିବେଷଣର କୌଶଳ ବିଭିନ୍ନ ଚିନ୍ତାଧାରାର ଅସଂଲଗ୍ନତାକୁ ଏକତ୍ର କରିବାରେ ଏବଂ ନିର୍ଦ୍ଦିଷ୍ଟ ସଂଚାରୀ ଭାବ ସୃଷ୍ଟି କରିବାରେ ସକ୍ଷମ ହୋଇଥାଏ । ଶ୍ରୀ ଦାସଙ୍କ ଭାଷା ଇଙ୍ଗିତ ଧର୍ମୀ ଓ କାବ୍ୟିକ । ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କ ପରି ଓଜସ୍ୱିନୀ କିମ୍ୱା ଅଭିଜାତ ନୁହେଁ, ବରଂ ସହଜ ଓ ସର୍ବସାଧାରଣ, ଆବେଗମୟ ଓ ବସ୍ତୁଗତ । ଭାଷାରେ ସଜୀବତା ଓ କାବ୍ୟିକତା, ବୈଚିତ୍ର୍ୟ ଓ ନୂତନତ୍ୱ ସଂକଳନଟି ସାରା ବିଚ୍ଛୁରିତ । 'ଶୃଙ୍ଗାରରସ' ଗଳ୍ପଟି ଏ ଦୃଷ୍ଟିରୁ ଏକ ନୂତନ ପଦକ୍ଷେପ । ଏଠି ବାକ୍ୟ ଅନେକତ୍ର ସଂଳାପଧର୍ମୀ, କ୍ଷୁଦ୍ର ଓ ଗଭୀର ଅର୍ଥଦ୍ୟୋତକ । ଗଳ୍ପର ଗଠନ ପରିପାଟୀରେ କେତେକ ନୂତନତ୍ୱ ପରିଲକ୍ଷିତ ହୁଏ । ବାକ୍ୟଗଠନ, ପରିବେଶ ସୃଷ୍ଟି, ଶବ୍ଦ ସଂଯୋଜନା ଓ ଭାଷାବିନ୍ୟାସରେ ପରୀକ୍ଷା ନିରୀକ୍ଷାର ପ୍ରୟାସ ରହିଛି । କେଉଁଠି କେମିତି ପଂକ୍ତି ଗୁଡ଼ିକ ଲିରିକ୍ ଧର୍ମୀ । ଯଦିଓ ଏକାନ୍ତ ଭାବେ ଅନ୍ତର୍ମୁଖୀ ତଥାପି ଆବେଗ ଯୁକ୍ତ । ''ବେଳେ ବେଳେ ମନେହେଲା କବିତା ଯେତିକି ଆଗଉଛି ସେତିକି ପଛଉଛି । ଯେଉଁ ରୂପକର ଅଦେହୀ ପବନ କଅଁଳ ସବୁଜକୁ କେବଳ ଛୁଇଁ ଛୁଇଁ କଥା ନ କହି ଚାଲି ଯାଉଛି ସେଠି କାନ୍ଦଣାର କୋହ ଭରିବାକୁ ପଡ଼ିବ । ପବନକୁ କିମ୍ୱା ସବୁଜକୁ କଥା କୁହାଇ କନ୍ଦେଇବାକୁ ପଡ଼ିବ,

କିନ୍ତୁ ପାଟି ଫିଟିଲେ ସୁଁ ସୁଁ ଲାଳସିଙ୍ଘାଣି, ଚିତ୍କାର, ଅକବିତାର ଚେହେରା ଦିଶି ଯାଉଛି । ମନେ ହେଉଛି ଶୋକ ସୁନ୍ଦର ହେବାକୁ ଚାହେଁନାହିଁ । ସେଇ ପୁରୁଣା ସମସ୍ୟା x x x କାବ୍ୟଚେତନା ଉପରକୁ ନ ଯାଇ ତଳକୁ ଖସୁଛି, ଅଶବ୍ଦରୁ ଶବ୍ଦକୁ, ସ୍ଥୂଳକୁ । ଇତର ଅସୁନ୍ଦର ତଳକୁ ଖସୁଛି, ମିଶେଇବାକୁ ପଡ଼ିବ, ଭିନ୍ନ ଭିନ୍ନ ରୂପକ ଖଞ୍ଜି ଦେବାକୁ ପଡ଼ିବ, ଦର୍ଶେଇବାକୁ ପଡ଼ିବ ଯେ ହିଂସାରେ ମହକ ଅଛି, ମହକରେ ହିଂସା ନାହିଁ, ଗଭୀର ଅନୁଭୂତିରେ ବିକୃତି ନାହିଁ, ପ୍ରକୃତ କବିତାରେ ଜୀବନ ମିଶି ଯାଇଛି, ଜଳ ଜଳ ହୋଇ ଜୀଇଁନାହିଁ ।''

ଭାଷା ଦୃଷ୍ଟିରୁ ଶ୍ରୀ ଗୋପୀନାଥ ମହାନ୍ତି କିଶୋରୀବାବୁଙ୍କର ଅତି ପ୍ରିୟ । ଭାଷା ଓ ଶବ୍ଦ ଦୃଷ୍ଟିରୁ ତେଣୁ ଶ୍ରୀ ମହାନ୍ତିଙ୍କ ପ୍ରଭାବ ଶ୍ରୀ ଦାସଙ୍କ ଉପରେ ପଡ଼ିଥିବା ଲକ୍ଷ୍ୟ କରାଯାଏ । ଶ୍ରୀ ମହାନ୍ତିଙ୍କ ଭାଷା ଯେମିତି ବର୍ଣ୍ଣନାତ୍ମକ ଏବଂ ତାଙ୍କର ଅନାବଶ୍ୟକ ବିସ୍ତୃତିକରଣ ଯେମିତି ତାଙ୍କ ଗଳ୍ପ-ଉପନ୍ୟାସର ଏକ ତ୍ରୁଟିବୋଲି ପରିଗଣିତ, ସେମିତି ଶ୍ରୀ ଦାସଙ୍କ ଭାଷାରେ ବେଳେବେଳେ ବର୍ଣ୍ଣନା ଏବଂ ଆବେଗ ଅନେକତ୍ର ତାଙ୍କ ଗଳ୍ପର ଗତିକୁ ମନ୍ଥର ଓ ସମତାକୁ ବ୍ୟାହତ କଲାପରି ମନେହୁଏ । ତଥାପି ଏଇସବୁ ସାମାନ୍ୟ ତ୍ରୁଟି ସତ୍ତ୍ୱେ ସଂକଳନଟିର ଗଳ୍ପଗୁଡ଼ିକର ବଡ଼ ବୈଶିଷ୍ଟ୍ୟ ହେଉଛି ପରିବେଷଣର ଚମତ୍କାରିତା ଓ ଅଙ୍ଗ ସଜ୍ଜାରେ ନବୀନତା ।

ଶେଷରେ କହି ରଖେ କିଶୋରୀ ଗଳ୍ପର ବଡ଼ କଥା ହେଉଛି ସୂକ୍ଷ୍ମ ମାନସବୀକ୍ଷା, ଚରିତ୍ରର ଅନ୍ତର୍ବିପ୍ଳବ ଓ କାହାଣୀହୀନ କଥାବସ୍ତୁ । ଚରିତ୍ରର ଚେତନା ଭିତରେ ଅହରହ ଯେଉଁ ଚିନ୍ତା ଓ ଭାବର ଉଦ୍‌ବେଳନ ସମୁଦ୍ରର ଲହଡ଼ି ପରି ମାଡ଼ିଯାଏ ତା'ର ବିବର୍ତ୍ତିତ ରୂପକୁ ପ୍ରକଟ କରେ କିଶୋରୀ ଗଳ୍ପମାଳା । କଥାବସ୍ତୁ ଗୁରୁତ୍ୱ ସେତେ ବେଶି ଅନୁଭବ କରି ହୁଏନି ଯେମିତି ଅନୁଭବ କରିହୁଏ ଚରିତ୍ରମାନଙ୍କର ମାନସିକ ଚିତ୍ର (sketch) ଅନ୍ତର୍ବିପ୍ଳବ ଓ ଅସହାୟତାକୁ । ଏଇ ଦୃଷ୍ଟିରୁ 'ନାଲି ଗୁଲୁ ଗୁଲୁ ସାଧବ ବୋହୂ'ର ଉଜ୍ଜ୍ୱଳ ସ୍ୱାକ୍ଷରକୁ ଅସ୍ୱୀକାର କରାଯାଇ ନ ପାରେ । ଏହାହିଁ ଗଳ୍ପ ଓ ଗାଳ୍ପିକ ଉଭୟଙ୍କର ସଫଳତା । ମୋଟ ଉପରେ ସଂକଳନଟି ଶ୍ରୀ ଦାସଙ୍କର କ୍ରମବର୍ଦ୍ଧିଷ୍ଣୁ ଚେତନା ଓ ବ୍ୟାପକ ଦୃଷ୍ଟି ଭଙ୍ଗୀର ପ୍ରତିନିଧି ଏବଂ ଓଡ଼ିଆ ଗଳ୍ପ ଜଗତରେ ଅନ୍ୟତମ ସଫଳ ସୃଷ୍ଟି ।



# ଶୀତଲହରୀ

*ଡକ୍ଟର ସଂଘମିତ୍ରା ମିଶ୍ର*

ଗାଳ୍ପିକ କିଶୋରୀଚରଣ ଓଡ଼ିଆ ଗଳ୍ପସାହିତ୍ୟର ଅନ୍ୟତମ ପ୍ରଥିତଯଶା ଦିଗ୍‌ପାଳ । ଦୀର୍ଘ ତିରିଶ ବର୍ଷରୁ ଉର୍ଦ୍ଧ୍ୱକାଳ ନିରବଚ୍ଛିନ୍ନ ସାଧନା କରି ସେ ଓଡ଼ିଆ ଗଳ୍ପ ସାହିତ୍ୟକୁ ଅନ୍ତର୍ଜାତୀୟ ସ୍ତରର ମର୍ଯ୍ୟାଦା ଦେଇଛନ୍ତି । କ୍ଷୁଦ୍ର ଅଥଚ ସ୍ମରଣଯୋଗ୍ୟ ମୁହୂର୍ତ୍ତର ଭାବ ଓ ରୂପଛଟାକୁ ନେଇ ତାଙ୍କର ଗଳ୍ପଗୁଡ଼ିକ ରସୋତ୍ତୀର୍ଣ୍ଣ, 'ଭଙ୍ଗା ଖେଳନା' ଠାରୁ 'ଭିନ୍ନ ପାଉଁଶ୍' ପର୍ଯ୍ୟନ୍ତ ଗତି ତାଙ୍କର ଅପ୍ରତିହତ । ସିଦ୍ଧି ତାଙ୍କର ଅପରିସୀମ । ଜୀବନକୁ ଦାର୍ଶନିକ ଦୃଷ୍ଟିରେ ଦେଖୁଥିବା ଏହି ସ୍ରଷ୍ଟା 'ଶୀତଲହରୀ'ରେ ତରଙ୍ଗାୟିତ ମନୁଷ୍ୟମନର ବିଚିତ୍ର ବ୍ୟବଚ୍ଛେଦ କରିଛନ୍ତି । ଏଥିରେ ସନ୍ନିବେଶିତ ଦଶଟି ଗଳ୍ପ ମଧ୍ୟରେ ଏକ ଅଦୃଶ୍ୟ ଭାବସୂତ୍ର ପରିଲକ୍ଷିତ ହୁଏ, ଯାହାକି ଗାଳ୍ପିକଙ୍କ ବିଷୟରୁ ବିଷୟାନ୍ତରକୁ ଭାସି ଯାଉଥିବା ମନକୁ ପୁଣି ଥରେ ଏକତ୍ରିତ କରିଦିଏ । ଅନେକ ସମୟରେ କ୍ଲିଷ୍ଟ ବୋଧ ହେଉଥିବା ଗଳ୍ପଗୁଡ଼ିକ ମୁହୂର୍ତ୍ତକ ମଧ୍ୟରେ ରସସିକ୍ତ ହୋଇଯାଏ । ପାଠକ ହୃଦୟକୁ କେଉଁଠି କେମିତି ଛୁଇଁଦିଏ ଆମର ସମୃଦ୍ଧ ଅତୀତ । ଅତୁଳନୀୟ ମାନବୀୟ ଅଭିଜ୍ଞତା ପ୍ଲାବିତ କରିଦିଏ ପାଠକର ପୃଥିବୀ । ଅନାହତ ରାଗିଣୀଟିଏ ବାଜିଉଠେ ମନ୍ଦ୍ର ସ୍ୱରରେ । ପାଠକ ମୁଗ୍ଧ ହୁଏ । ଆଃ, ଠିକ୍ ଏମିତି ଗଳ୍ପଟିଏ ତାର ଲୋଡ଼ା ଥିଲା ପରା !

ପୁସ୍ତକର ଆଦ୍ୟଭାଗରେ ସଂଯୋଜିତ ନିଜ କଥାରେ ଲେଖକ ସ୍ପଷ୍ଟ ଭାବରେ କହିଛନ୍ତି ଯେ ତାଙ୍କର ଶେଷ କଥା କହିବାର ଦମ୍ଭ ଆସିନାହିଁ । ପାଠକ ମଧ୍ୟ ଏତେ ଶୀଘ୍ର କିଶୋରୀଚରଣଙ୍କଠାରୁ ଶେଷ କଥା ଶୁଣିବାକୁ ଇଚ୍ଛୁକ ନୁହନ୍ତି । କିନ୍ତୁ ବିଶିଷ୍ଟ ସ୍ରଷ୍ଟାଙ୍କ ବିଶେଷ କଥନ ଭିତରେ ସେମାନେ ଶୁଣି ପାରନ୍ତି କାର୍ତ୍ତିକ ବାବୁ ଓ ବୁଢ଼ା ନ ହୋଇ ବୁଢ଼ା ବୋଲାଉଥିବା ସଦାବିହାରୀ ବାବୁଙ୍କର ସ୍ୱର । ଲେସମା ଓ ଡରକୁଳୀ ଇନ୍ଦିରାର ସ୍ପର୍ଦ୍ଧିତ ଉକ୍ତି । କୁପ୍‌ପୁସ୍ୱାମୀ, ଜୟନ୍ତ ରଥ, ବାନାର୍ଜୀ ସାହେବ, ପୁରୁଷୋତ୍ତମ ପାଣି, ମୁକୁନ୍ଦ ମହାନ୍ତି, ଅନୁର ଜେଜେବାପା ଚନ୍ଦ୍ରଶେଖର ରାୟ ବନୁ ଆଉ ମହୀ ଭାଇନାଙ୍କ ସ୍ୱର । ଏମାନେ କେବଳ ନିଜ ନିଜ କଥା କୁହନ୍ତି ନାହିଁ । ଏମାନେ କହନ୍ତି ବଦଳି ଯାଉଥିବା ସମୟର କଥା, ମୂଲ୍ୟବୋଧର କଥା– ଏମାନଙ୍କ ସହିତ ଦାମୁ ଦରଜୀ ବି ଆସେ ତାର ଅଗାଧ ବିଶ୍ୱାସ ନେଇ । କି ଚମତ୍କାର ଚରିତ୍ର ସତରେ । ଭାଙ୍ଗି ପଡ଼େନି । ଅଶେଷ ଦୁଃଖ ଯାତନା ଭିତରେ ଅନାବିଳ ଥାଏ ତାର ମାନସିକତା । ପୁଣି

ଆସେ ଡାକ୍ତରବାବୁଙ୍କ ଝିଅାରୀ ନମିତା । ମମତାରେ ସ୍ନିଗ୍ଧ ସନ୍ତୁଳିତ ଭଉଣୀଟିଏ । ମୃତ୍ୟୁପରେ ମଧ୍ୟ ମୁରଲୀବାବୁଙ୍କ ମନରେ ସେ ଏକ ସତେଜ ବାସ୍ନାଭରା ସ୍ମୃତି । ଅଧିକାଂଶ ଗଳ୍ପ ମଧ୍ୟରେ ଭାବନାର ଭିନ୍ନ ଭିନ୍ନ ସ୍ତରର ଏକତ୍ର ସମାବେଶ ଦୃଷ୍ଟିଗୋଚର ହୁଏ । ପ୍ରଥମ ଗଳ୍ପ 'ଶୀତଳହରୀ'ର ନାମ ଅନୁସାରେ ସଂକଳନଟି ନାମିତ । ବୟସ୍କ ତଥା ଉଦାରଚେତା କାର୍ତ୍ତିକ ବାବୁଙ୍କର ଜୀବନ ସଂପର୍କୀୟ ଅଭିଜ୍ଞତା ଓ ଅନୁଭୂତିକୁ ନେଇ ଏହି ଗଳ୍ପ ରଚିତ । କାର୍ତ୍ତିକ ବାବୁଙ୍କର ପରିବାରରେ ଏକଦା ଗହଳ ଚହଳ ଲାଗି ରହିଥିଲା । ଆଜି ସବୁ ନୀରବ । କାରଣ ପୁଅ ଝିଅମାନେ ଦେଶ ବିଦେଶରେ ପ୍ରତିଷ୍ଠିତ ଓ ପତ୍ନୀ ସରିତା ପରଲୋକଗତା । ନିଃସଙ୍ଗ କାର୍ତ୍ତିକବାବୁ ବୟସର ଅପରାହ୍ଣରେ ମଧ୍ୟ ଚିନ୍ତା କରନ୍ତି ଯେ ସେ ସୁସ୍ଥ ଓ ପରମୁଖାପେକ୍ଷୀ ନୁହନ୍ତି । ପଡ଼ୋଶୀ ସଦାବିହାରୀ ବାବୁଙ୍କ ଘରକୁ ବୁଲି ଯାଇ ସେ ଜାଣିଛନ୍ତି ଯେ ତାଙ୍କର ପତ୍ନୀ ରୁଗ୍ଣା ଓ ଅନେକ ସନ୍ତାନର ଜନନୀ । ତାଙ୍କର ସ୍ୱାସ୍ଥ୍ୟ ନିମିତ୍ତ ସଦାବିହାରୀ ବାବୁ ପୁରୀ ଆସିଛନ୍ତି । ରିଟାୟାର୍ଡ଼ ଡି.ଏସ୍.ପି. ସଦାବିହାରୀ ବାବୁଙ୍କ ପିଲାମାନଙ୍କ ସହିତ ପରିଚୟ ସମୟରେ ସେ ମାଳିନୀ ନାମ୍ନୀ କିଶୋରୀର ଚଞ୍ଚଳତାରେ ଆକୃଷ୍ଟ ହୋଇଛନ୍ତି । ଛୁଟି କଟାଇବାକୁ ଆସିଥିବା ନିଜ ନାତି ରମୁର ଅନାସକ୍ତ ଜୀବନଧାରା ଉପରେ ମନ୍ତବ୍ୟ ଦେଇଛନ୍ତି । ମାଳିନୀକୁ ସେ ଉପହାର ଦେଇଛନ୍ତି ଏକ ପୁରାତନ ଷ୍ଟାମ୍ପ୍ ଆଲବମ୍ । କିନ୍ତୁ ପରଦିନ ସେ ରମୁ ସହିତ ମାଳିନୀକୁ ସମୁଦ୍ର କୂଳରେ ଆବିଷ୍କାର କରି ତଟସ୍ଥ ହୋଇଛନ୍ତି । ପୁଣି ଅଳ୍ପ ଦିନ ପରେ ସମୁଦ୍ର କୂଳରେ ଏକାକୀ ରମୁକୁ ଚିନ୍ତାଗ୍ରସ୍ତ ଦେଖି ସେ ବୁଝି ପାରିଛନ୍ତି ଯେ ମାଳିନୀ ପୁରୀ ଛାଡ଼ିସାରିଛି । କିନ୍ତୁ ଏଥିପାଇଁ ସେ ବିବ୍ରତ ନୁହନ୍ତି । କାରଣ ଏ ଧରଣର ପ୍ରେମର ଚିରସ୍ଥାୟିତ୍ୱ ଉପରେ ସେ ବିଶ୍ୱାସ କରନ୍ତି ନାହିଁ ।

'ଇନ୍ଦିରା' ଗଳ୍ପଟି ଇନ୍ଦିରା ଗାନ୍ଧୀଙ୍କ ସହିତ ନାମଗତ ସାମଞ୍ଜସ୍ୟ ଥିବା ଏକ ନାରୀଙ୍କର ଜୀବନଦୃଷ୍ଟିକୁ ନେଇ ରଚିତ । ବିବାହିତା ଅଥଚ ପିତ୍ରାଳୟରେ ଅବସ୍ଥାପିତା ଇନ୍ଦିରା ଅଫିସରଙ୍କ ପତ୍ନୀ, ସ୍ୱାମୀ ସୋହାଗିନୀ । ଇନ୍ଦିରାଗାନ୍ଧୀ ପ୍ରଧାନମନ୍ତ୍ରୀ ହେବା ପରେ ତାଙ୍କର ଭାଇ ଭଉଣୀମାନେ ତାଙ୍କୁ ଭୋଜି ମାଗିଥିଲେ । ସେହି ଦିନଠାରୁ ନିଜ ଭିତରେ ଇନ୍ଦିରା ମହାପାତ୍ର ଅନୁଭବ କରୁଥିଲେ ଏକ ଅପୂର୍ବ ତେଜସ୍ୱିତା । ଇନ୍ଦିରା ଗାନ୍ଧୀଙ୍କର ୧୯୬୬ରୁ ୭୦ ପର୍ଯ୍ୟନ୍ତ 'ଗରିବୀ ହଟାଓ'ଠାରୁ ଏମର୍ଜେନ୍ସୀର ରଣଚଣ୍ଡୀ ବେଶ ତାଙ୍କ ସ୍ୱଭାବକୁ ସଂକ୍ରମିତ ହୋଇଥିଲା । ନିଜ ସ୍ୱାମୀଙ୍କ ସହିତ ଏକ ତେଲଙ୍ଗାଣୀ ନର୍ସର ପ୍ରେମ ସମ୍ପର୍କ ଥିବାର ଜାଣି ସେ ନିଜର ଦାବି ହାସଲ ପାଇଁ ରଣଚଣ୍ଡୀ ସାଜିଥିଲେ ଓ ପ୍ରତିପକ୍ଷକୁ କ୍ଷମା ପ୍ରାର୍ଥନା ମଧ୍ୟ କରାଇଥିଲେ । ପରବର୍ତ୍ତୀ ଦୁଇବର୍ଷ ଇନ୍ଦିରାଗାନ୍ଧୀ ନିର୍ବାଚନରେ ହାରି ଯାଇଥିବାବେଳେ ଇନ୍ଦିରା ମହାପାତ୍ର ତାଙ୍କ ପାଇଁ ଭଗବାନଙ୍କୁ ପ୍ରାର୍ଥନା କରୁଥିଲେ । ଫଟୋସ୍ଥ ଇନ୍ଦିରାଜୀଙ୍କ ଛବି ଯେପରି ତାଙ୍କୁ ପରବର୍ତ୍ତୀ କାଳରେ କହିଥିଲା ''ଦେଇଛୁ, ନେଇଛୁ, ମୋରି କା, ମୋ'ରି ଛାୟା, ପୁତୁଳି, ପ୍ରତିଧ୍ୱନି । ତୁମେମାନେ ନଥିଲେ ମୁଁ କ'ଣ ଫେରି

ଆସି ପୁଣି ରାଣୀ ହୋଇ ପାରିଥାଆନ୍ତି–'' ଇନ୍ଦିରା ଗାନ୍ଧୀଙ୍କ ହତ୍ୟାରେ ବିଚଳିତ ହୋଇ ଇନ୍ଦିରାଦେବୀ ଭାଙ୍ଗିପଡ଼ିବାର ମନୋଜ୍ଞଚିତ୍ର ଏହି ଗଳ୍ପରେ ଉପସ୍ଥାପିତ ହୋଇଛି ।

'ନିଧନ' ଗଳ୍ପ ସାମ୍ବାଦିକ ରଜନୀ ସାମନ୍ତ ଓ ତାଙ୍କର ପତ୍ନୀ ପ୍ରତିଭା ସାମନ୍ତଙ୍କୁ ନେଇ ରଚିତ । ବୟସ୍କ ରଜନୀ ସାମନ୍ତଙ୍କର ସାମ୍ବାଦିକ ମହଲରେ ଯଥେଷ୍ଟ ସୁନାମ । 'ବୈତରଣୀ' ସାବୁନ୍‌ରେ ଗୋରୁଚର୍ବି ମିଶା ହୋଇଛି ବୋଲି 'ନିଧନ' ଖବରକାଗଜରେ ମତ ପ୍ରକାଶ ପାଇବାରୁ ଜନ୍ମେଜୟ ରାୟ ଓ ସରସୀ ରାୟ ଭୀଷଣ ବିବ୍ରତ । ସରସୀ ଦେବୀଙ୍କ ସାନିଧ୍ୟରେ ରଜନୀବାବୁ ମୁଗ୍ଧ । କିନ୍ତୁ ସେ ସତ୍ୟର ଅପଳାପ କରିନାହାନ୍ତି ଅଧିକନ୍ତୁ ସରସୀଙ୍କ ସହିତ ତାଙ୍କର ଘନିଷ୍ଠତା ସମ୍ପର୍କରେ ଖବରକାଗଜରେ ଲେଖିବାକୁ ଚାହିଁଛନ୍ତି । ଏହି ସମୟରେ ତାଙ୍କର ଶ୍ରୀମତୀ ସେଠାରେ ପହଞ୍ଚି ତାଙ୍କର ସମସ୍ତ କାଗଜପତ୍ର ଦେଖିଛନ୍ତି । ରଜନୀ ସାମନ୍ତଙ୍କର ଏକାନ୍ତ ଅନୁରାଗିଣୀ ଜଣେ ଭଦ୍ରମହିଳା ତାଙ୍କୁ ଚିଠି ଲେଖିଛନ୍ତି ଯେ ଜୀବନର ଶେଷ ପର୍ଯ୍ୟାୟରେ ସେ ତାଙ୍କୁ ଦେଖା କରିବାକୁ ଚାହାନ୍ତି । ଏକଦା ସେହି ଝିଅ ପ୍ରଭା ସହିତ ରଜନୀ ସାମନ୍ତଙ୍କର ଗୁପ୍ତ ସମ୍ପର୍କ ଥିଲା । ସେ ସମ୍ପର୍କ ତାଙ୍କର ପାରିବାରିକ ଜୀବନର ମର୍ଯ୍ୟାଦା କ୍ଷୁଣ୍ଣ କରିନାହିଁ । ରଜନୀ ସାମନ୍ତ ପରିଣତ ବୟସରେ ମଧ୍ୟ ବାସ୍ତବତାକୁ ସମ୍ମାନ ଦେଇଛନ୍ତି ।

'ସୁଡ଼ଙ୍ଗ' ଗଳ୍ପରେ ଓଡ଼ିଆ ଶ୍ରମିକର ଦୀନହୀନ ଜୀବନଯାତ୍ରାର ପ୍ରତିଛବି ପରିବେଷିତ ହୋଇଛି । ଚିଫ୍ ଅଫିସର ବାନାର୍ଜୀ, ଚେୟାରମ୍ୟାନ କୁପ୍‌ପୁସ୍ୱାମୀ ଇତ୍ୟାଦିଙ୍କର ସହିତ ଜୟନ୍ତ ରଥ ନାମ୍ବୁର ହାଇଡ୍ରୋଇଲେକ୍‌ଟ୍ରିକ ପ୍ରୋଜେକ୍ଟରେ କାମ କରେ । ଶ୍ରମିକ ଲୋଡ଼ା ହେବାରୁ ଜୟନ୍ତ ବାଧହୋଇ ଓଡ଼ିଆ ଶ୍ରମିକମାନଙ୍କୁ ଅନୁରୋଧ କରେ । ଓଡ଼ିଆ ଶ୍ରମିକମାନେ ସବୁଦିନେ ଅନ୍ୟମାନଙ୍କର ପସନ୍ଦ ନୁହନ୍ତି, କାରଣ ସେମାନେ ନିଜ ରାଜ୍ୟପ୍ରତି ଅନୁଗତ ଓ କଷ୍ଟସହିଷ୍ଣୁ ନୁହନ୍ତି । ଜୟନ୍ତର ଅନୁରୋଧ ରକ୍ଷା କରି ଓଡ଼ିଆ ଶ୍ରମିକମାନେ ପ୍ରୋଜେକ୍ଟରେ କାମ କରିବାକୁ ରାଜି ହୋଇଛନ୍ତି ସତ୍ୟ, କିନ୍ତୁ କଣ୍ଟ୍ରାକ୍ଟର ଅମର ସିଂହ ବିହାର ଶ୍ରମିକ ନେଇ ଆସିବାପରେ ଓଡ଼ିଆ ଶ୍ରମିକମାନଙ୍କର ଆବଶ୍ୟକତା ଶେଷ ହୋଇଯାଇଛି । ଜୟନ୍ତ ବୁଝିପାରିଛି ଯେ ଓଡ଼ିଆ ଜାତିର ସ୍ୱାଭିମାନ ପାଇଁ ଏ ସମସ୍ତ ଘଟଣା ଜାଣିବା ପୂର୍ବରୁ ଶ୍ରମିକ ନେତା ମଉସା ଅନ୍ୟ ସମସ୍ତଙ୍କୁ ନେଇ ସେଠାରୁ ଚାଲିଯିବା ଉଚିତ ।

'ରାଜବେଶ' ଗଳ୍ପର ବାରିଷ୍ଟର ପୁରୁଷୋତ୍ତମ ପାଣି ବୟସକୁ ଧରି ରଖିବାରେ ସଫଳ । ତାଙ୍କର ଈଶ୍ୱର ଭକ୍ତି ତାଙ୍କୁ ନିଜ ପତ୍ନୀଙ୍କର ବିରକ୍ତି ସହିବାକୁ ଧୈର୍ଯ୍ୟ ଦେଇଛି ବୋଲି ସେ ମନେ କରନ୍ତି । କିନ୍ତୁ ଦାମୁ ଦରଜୀର ଭକ୍ତି ! ସେ କହେ ଯେ ସେ ପାଣିବାବୁଙ୍କର ବାଲ୍ୟବନ୍ଧୁ । ପିଲାଦିନର ସ୍ମୃତି-ସଜଳ ମୁହୂର୍ତ୍ତକୁ ବାରମ୍ବାର ମନେ ପକାଇ ସେ ଅନ୍ତଲ ପେଟ ଥରାଇ ହସେ, ପାଣିବାବୁଙ୍କ ମତରେ ''ସେ ପୃଥିବୀଟିଏ, ଅଳସୁଆ, ବେପରୁଆ ଆଉ ଉଦାର ।'' ପାଣିବାବୁଙ୍କ ପୁଅ ମଳୟ

ଆଇ.ଏ.ଏସ. ଇଣ୍ଟରଭ୍ୟୁକୁ ଯିବା ପାଇଁ ସୁଟ୍ ଲୋଡ଼ା । ତେଣୁ ଦାମୁ ଦୋକାନରୁ କୋଟ ଆସିବା ଦରକାର । ଯଦି ନ କରିଥାଏ କନା ଫେରାଇ ଦେବା ଉଚିତ । ଦାମୁ ପାଣିବାବୁଙ୍କୁ ଦେଖି କହିଛି ଯେ ନିଶ୍ଚୟ ପୁଅ ଇଣ୍ଟରଭ୍ୟୁରେ ଜିତିବ । ଯେମିତି ରୋଗିଣା ସାତ ମାସିଆ ଜନ୍ମ ହୋଇଥିବା ସେହି ମଳୟକୁ ଦେଖି ସେ କହି ଦେଇଥିଲା ଯେ ସେ ଭବିଷ୍ୟତରେ ଗଡ଼ ଜିଣିବ । ଏହି ସମୟରେ ଘର ଭିତରୁ କାନ୍ଦଣା ଶୁଣି ପୁରୁଷୋତ୍ତମବାବୁ ଜାଣିଛନ୍ତି ଯେ ଦାମୁର ଝିଅ ମୁଦୁଲୀ ରୋଗଶଯ୍ୟାରେ । ଦାମୁ ତାକୁ ଆଶ୍ୱାସନା ଦେଇଥିଲା ଯେ ତାର କଷ୍ଟ ଆଉ ବେଶିଦିନ ନୁହେଁ । ପୁଅ ଆଇ.ଏ.ଏସ୍. ପାଇବା ପରେ ପାଣିବାବୁ ଦାମୁ ସହିତ ଦେଖା କରିବାକୁ ଯାଇ ଜାଣିବାକୁ ପାଇଛନ୍ତି ଯେ ଦାମୁ ଝିଅର ମୃତ୍ୟୁ ପରେ ପୁରୀ ଯାଇଛି । ଜଗନ୍ନାଥଙ୍କ ସୁନାବେଶ ଦେଖିସାରି ଫେରିବ । ସଦ୍ୟ ସନ୍ତାନ ଶୋକାବିଧୂର ପିତାର ମାନସିକତା ଓ ଜଗନ୍ନାଥଙ୍କ ନିକଟରେ ଆତ୍ମସମର୍ପଣ ଭାବ ଦାମୁ ଚରିତ୍ରକୁ ଉର୍ଜସ୍ୱଳ କରିଛି ।

୧୮ ନମ୍ବର ଶାନ୍ତନୁବାଗ୍‌ର ପିଲା ଖେଳକୁ ନେଇ 'ଖେଳ ସରିନାହିଁ' ଗଳ୍ପ ସୃଷ୍ଟି । ବୟସ୍କ ମଣିଷର ମନ ପିଲାଖେଳ ଭିତରେ ସୁଦୂର ଭବିଷ୍ୟତର ବିକଳାଙ୍ଗ ଛବି ଦେଖି ମ୍ରିୟମାଣ । ପିକ୍‌ନିକ୍ ଓ ତାଡ଼ି ମମ୍ମିଖେଳ ଛାଡ଼ି ପିଲାମାନେ ଯେଉଁଦିନ ପଞ୍ଜାବ ଖେଳ ଆରମ୍ଭ କଲେ, ସେଦିନ ଅନୁର ଜେଜେବାପା ପ୍ରମାଦ ଗଣିଥିଲେ । ଭିନ୍ନ ଭିନ୍ନ ପରିବାରରୁ ଭିନ୍ନ ଭିନ୍ନ ରାଜ୍ୟରୁ ଆସିଥିବା ପିଲାମାନେ କ୍ଷୁଦ୍ର ଭାରତବର୍ଷଟିଏ ସତେ ଯେପରି ଗଢ଼ିଥିଲେ, ଯାହା ସନ୍ତ୍ରାସବାଦୀର ଆତଙ୍କରେ ବିଧ୍ୱସ୍ତ ହୋଇଯିବ ଏଭଳି ଧାରଣାରେ ଅନୁର ଜେଜେ ବିବ୍ରତ । ନିଠୁର ହିଂସ୍ର ଚାହାଣି ଦେଖି ସେ କଳ୍ପିତ ବିପଦର ଆଶଙ୍କା କରନ୍ତି । ତାପରେ ଖେଳଘର ଭାଙ୍ଗିଯାଏ । ପୁଣି ଆରମ୍ଭ ହୁଏ ଭାରତ ପାକିସ୍ତାନ ଖେଳ । ତାଡ଼ିକୁ ଭାରତ ଓ ମମିକୁ ପାକିସ୍ତାନ ମନେ କରି ଦୁଇ ପକ୍ଷର ପିଲାମାନେ ଦୁଇ ଭାଗରେ ବିଭକ୍ତ ହୋଇ ଯାଆନ୍ତି ।

ମହୀ ଭାଇନା ପାଇଁ ସଦ୍‌ନାରୀ ଦୁଇ ପ୍ରକାର ''ବନ୍ୟା ଓ ଝରଣା'' । ବନ୍ୟା ବୁଡ଼ାଇ ଦିଏ, ଝରଣା ଶୀତଳେଇ ଦିଏ । ମାଷ୍ଟର ତଥା ମୃତଦାର ମହୀ ଭାଇନା ମତରେ ପଲିଟିକ୍‌ସ ରାଜନୀତି ନୁହେଁ— ଲୋକନୀତି । ଲେଖକ ଓରଫ ବନୁଙ୍କ ମତରେ କାମିନୀ କାଞ୍ଚନରେ ସତ୍ ଅସତ୍ କିଛି ନାହିଁ । ତେଣୁ ମହୀଭାଇନା ଦ୍ୱିତୀୟ ବିବାହ କରିବା ଉଚିତ । ସରକାରୀ କାର୍ଯ୍ୟରେ ଲକ୍ଷ୍ମୀପୁର ଯାଇ ଲେଖକ ଶୁଣିଛନ୍ତି ଯେ ଜଣେ ବିଧବା ନାରୀ ମହୀଭାଇନାଙ୍କ ରାଜନୈତିକ ଜୀବନର ସହକର୍ମିଣୀ । ବ୍ୟଙ୍ଗପ୍ରବଣା ରସିକା ସେହି ନନୀ ଦେଈ ସତରେ ଅସାଧାରଣ, ମହୀଭାଇନା ଜାତୀୟ ନିର୍ବାଚନରେ ଜିତି ପାର୍ଟିର ସଙ୍ଗଠନ କାର୍ଯ୍ୟରେ ବ୍ୟସ୍ତ ରହିବାବେଳେ ନନୀ ଦେଈ ପାର୍ଟିରୁ ତଡ଼ା ଖାଇଛନ୍ତି । କିନ୍ତୁ ଅସହାୟା ବାଳିକା ପେମିକୁ ନର୍କରେ ଛାଡ଼ିଦେଇ ନାହାନ୍ତି । ଭାଗ୍ୟ ମହାନ୍ତିଙ୍କ ଘରୁ ନେଇ ତାକୁ ବିବାହ ଦେଇଛନ୍ତି । ସେ ବିଧବା ହୋଇଯିବା ପରେ

ସାହସର ସହିତ ତାକୁ ପୁନର୍ବିବାହ ମଧ କରାଇଛନ୍ତି । ଏଥିପାଇଁ ସେ ତାର ବାପା ମାଙ୍କୁ ପ୍ରଚୁର ଅର୍ଥ ଦେଇ ସନ୍ତୁଷ୍ଟ କରିଛନ୍ତି ଓ ନିଜେ ଭୋଜି ମଧ ଦେଇଛନ୍ତି । ଏଥିପାଇଁ ପାର୍ଟିର ଟଙ୍କା ଖର୍ଚ୍ଚ କରି ସେ ଲଜ୍ଜିତା ନୁହନ୍ତି ବରଂ ଗର୍ବିତା—

'ଆପଣା ସୁନା' ଗଳ୍ପରେ ଗାଳ୍ପିକ ପ୍ରଥମ ପୁରୁଷରେ ନିଜର ଚତୁରୀ କନ୍ୟା ସମ୍ପର୍କରେ ଅନ୍ୟଜଣେ ଭଦ୍ରଲୋକଙ୍କ ସହିତ ଏଆର୍‌ପୋର୍ଟରେ ଗଳ୍ପ କରୁଛନ୍ତି । ଉଭୟ ଦିଲ୍ଲୀଯାତ୍ରୀ ମାତ୍ର ସମାଚ୍ଛନ୍ଦ ନୁହନ୍ତି । ସେ ଭଦ୍ରଲୋକଙ୍କର କନ୍ୟା ମଧ ବେଶ୍ ବୁଦ୍ଧିମତୀ । ତାର ମତାମତ ନ ନେଇ କୌଣସି କାର୍ଯ୍ୟ କଲେ ତହିଁରେ ଅବଶ୍ୟ ବିଘ୍ନ ହୋଇଥାଏ । ଆମେରିକା ଫେରନ୍ତା ବରପାତ୍ର ସହିତ ତାର ଦେଖା ସାକ୍ଷାତ କରିବା ପୂର୍ବରୁ ପ୍ଲେନ୍ ଦୁର୍ଘଟଣା ଏହି କଥାର ପରିଚାୟକ । ଭଦ୍ରଲୋକ ଲେଖକଙ୍କୁ ନିଜର ଜ୍ୟେଷ୍ଠଭ୍ରାତାତୁଲ୍ୟ ମନେ କରିଛନ୍ତି । ଲେଖକ ମଧ ତାଙ୍କର ପତ୍ନୀ ଓ କନ୍ୟା ସହିତ ଭଦ୍ରଲୋକଙ୍କ ପରିବାରର ଏକ ତୁଳନାତ୍ମକ ଚିନ୍ତା କରିପକାଇଛନ୍ତି । ଗଳ୍ପର ଅନ୍ତିମ ପର୍ଯ୍ୟାୟରେ ସିକିମ୍‌ର ଲ୍ୟାଣ୍ଡ୍- ସ୍ଲାଇଡ଼୍ କଥା ଆସିଛି । ଥରେ ଲ୍ୟାଣ୍ଡସ୍ଲାଇଡ଼୍ ସମୟରେ ଲେଖକ କାଞ୍ଚନଜଂଘାକୁ ନିକଟରୁ ଦେଖି ଅଜସ୍ର ଆତ୍ମପ୍ରତ୍ୟୟ ପାଇଥିଲେ । ସେ ସମ୍ପର୍କରେ ଲେଖକଙ୍କୁ ସୂଚନା ଦେଇ ସେ ତାଙ୍କର ଧନ୍ୟବାଦର ପାତ୍ର ହୋଇପାରିଛନ୍ତି ।

'ଧବଳ ଟଗର' ଗଳ୍ପର କାହାଣୀ ଭାଗ କଟକ ନଗର କୈନ୍ଦ୍ରିକ । ଜୀବନର ଅନ୍ୱେଷଣରେ କଟକର ନର୍ଦ୍ଦମାଗଳିକୁ ପାଶୋରିଥିବା ଭଦ୍ରଲୋକ ହେଲେ ମୁରଲୀବାବୁ । ଅନେକ ଦିନ ପରେ କଟକ ଫେରି ତାଙ୍କ ଚିନ୍ତା— ''ମୋ ସହର ମଡ଼ର୍ଣ୍ଣ ହେଉଛି, ବୃଦ୍ଧା ବେଶ୍ୟା ଆହୁରି ସ୍ନୋ ପାଉଡର ମାଖି ହେଉଛି—'' ବମ୍ବେର ଏକ ଅତର କମ୍ପାନୀର ଉଚ୍ଚପଦସ୍ଥ ଅଫିସର ମୁରଲୀବାବୁ ଅତୀତକୁ ସ୍ମରଣ କରିଛନ୍ତି । ଏକଦା କଟକର ବେଶ୍ୟାଗଳିକୁ ଯାଇ ସେ ଉପଦଂଶ ରୋଗର ଶିକାର ହୋଇଥିଲେ । ଡାକ୍ତରବାବୁଙ୍କ ଝିଆରୀ ସେଦିନ ମୁରଲୀ ବାବୁଙ୍କୁ ବୁଝାଇ କହିଥିଲେ ଯେ ଆତ୍ମା ସର୍ବଦା ପବିତ୍ର ଓ ଦେହ ଆତ୍ମାଠାରୁ ଭିନ୍ନ । ସେହି ଶୀତଳ ଚନ୍ଦନ ଭଳି ନାରୀଟିକୁ ଖୋଜିବା ଭିତରେ ସେ ଜାଣିଛନ୍ତି ଯେ ସେହି ନାରୀ ମୃତା । ସମଗ୍ର ଜୀବନର ଅଭିଜ୍ଞତା ନେଇ ସେ ବୁଝିଛନ୍ତି ଯେ ଜୀବନ ହିଁ ଏକ ବେଶ୍ୟା ଯାହାର ସଂସର୍ଗ ବିଭୀଷିକାମୟ ।

'ଧୋରେ ବାୟା ଧୋ' ସାମ୍ପ୍ରତିକ ରାଜନୀତିକୁ ଭିତ୍ତି କରି ରଚିତ । ବୟସ୍କ ଗଣେଶ୍ୱରବାବୁ ଅନେକ ଶିଶୁଙ୍କୁ ଧୋରେ ବାୟା କରୁ କରୁ ସେମାନେ ବଡ଼ ହୋଇଯାଇଛନ୍ତି । ନିଜ ପାଇଁ ବାଛି ନେଇଛନ୍ତି ସ୍ୱତନ୍ତ୍ର ସ୍ଥାନ । ପୁଅ ନରେଶ ଓ ବୋହୂ ନଳିନୀ ନିର୍ଦ୍ଦିଷ୍ଟ ମୂଲ୍ୟବୋଧ ନେଇ ବଞ୍ଚିବାର ପ୍ରୟାସୀ । ତେଣୁ କୌଣସି ରାଜନୀତିକ ଦଳ ତରଫରୁ ଟିକେଟ ନପାଇ ସେ ସ୍ୱାଧୀନ ଭାବରେ ନିର୍ବାଚନରେ ଅବତୀର୍ଣ୍ଣ ହୋଇଛନ୍ତି । କିନ୍ତୁ ବିପକ୍ଷ ଦଳ ନିର୍ବାଚନକୁ ସମୂଳେ ଭଣ୍ଡୁର କରିବାକୁ

ନରେଶ ବାବୁଙ୍କୁ ଛୁରି ଭୁଷି ଦେଇଛନ୍ତି । ରକ୍ତାକ୍ତ ଅଚେତନ ଗଣେଶ୍ୱରବାବୁ ବୟଃପ୍ରାପ୍ତ ପୁତ୍ରକୁ ଆଦର କରିବାକୁ ଚାହୁଁଛନ୍ତି 'ଧୋରେ ବାୟା ଧୋ' କହି ।

ଏ ସଂକଳନର ଦଶୋଟି ଗଳ୍ପରେ ଯାହା ମୁଖ୍ୟ ହୋଇ ଦେଖାଯାଏ, ତାହା ହେଉଛି ରାଜନୀତି ସଚେତନତା, ଜଟିଳ ଓ ସୂକ୍ଷ୍ମ ମନସ୍ତତ୍ତ୍ୱ, ସହରୀ ମଣିଷର ଜୀବନ ପ୍ରତି ଦୃଷ୍ଟିଭଂଗୀ, ଭାବନା ପ୍ରଧାନ୍ୟ 'ଇନ୍ଦିରା', 'ନିଧନ', 'ଖେଳ ସରିନାହିଁ', 'ବନ୍ୟା ଓ ଝରଣା' 'ଧୋରେ ବାୟା ଧୋ' ରାଜନୀତିକୁ କେନ୍ଦ୍ରକରି ଗଢ଼ିଉଠିଛି । ସାମ୍ପ୍ରତିକ ରାଜନୀତି ମାତ୍ର ଜୀବନକୁ କିଭଳି ଯନ୍ତ୍ରଣାସିକ୍ତ କରି ଦେଉଛି ଏହି ଗଳ୍ପଗୁଡ଼ିକ ତା'ର ପ୍ରକୃଷ୍ଟ ଉଦାହରଣ ।

ମନସ୍ତତ୍ତ୍ୱ ରୂପାୟନରେ ଗାଳ୍ପିକ କିଶୋରୀଚରଣ କୁଶଳୀ ଶିଳ୍ପୀ । 'ଭଙ୍ଗା ଖେଳନା'ର କିଶୋରୀ ଗୀତା ପାଠକ ସ୍ମୃତିରେ ଚିର ଜୀବନ୍ତ । ଏଠାରେ 'ଇନ୍ଦିରା' ଗଳ୍ପର ଇନ୍ଦିରା ଚରିତ୍ର ନିଜକୁ ଇନ୍ଦିରା ଗାନ୍ଧୀଙ୍କ ବ୍ୟକ୍ତିତ୍ୱ ସହିତ ଏକାତ୍ମ ମଣୁଥିବା ଚରିତ୍ରଟିଏ । 'ବନ୍ୟା ଓ ଝରଣା' ଗଳ୍ପର ସମାଜସେବିକା ନନୀ ଦେଈର ମଧ ଆଜିର ସ୍ୱାର୍ଥପର ଜନନେତାମାନଙ୍କ ବିରୁଦ୍ଧରେ ଏକ ନୀରବ ପ୍ରତିବାଦ । 'ଧବଳ ଟଗର'ର ମୃତା ନମିତା ସେହିପରି ମୁରଲୀ ବାବୁଙ୍କ ପାଇଁ ଅଜସ୍ର ଉତ୍ସାହର ଉତ୍ସ । 'ଧୋରେ ବାୟା ଧୋ'ର ନନ୍ଦିନୀ ଓ 'ଶୀତଳହରୀ'ର ମାଳିନୀ ରୂପ ଓ ଗୁଣରେ ଭିନ୍ନ । ନଳିନୀ ଜୀବନର ସମ୍ମୁଖୀନ ହେଉଥିବାବେଳେ ମାଳିନୀ ସମୁଦ୍ର ବେଳାରେ ରମୁଙ୍କୁ ଏକାକୀ ଛାଡ଼ି ଦେଇ ଫେରିଯାଏ ।

ଏ ସଂକଳନର ଅଧିକାଂଶ ମୁଖ୍ୟ ଚରିତ୍ର ଜଣେ ଜଣେ ପ୍ରୌଢ଼ । ପ୍ରତ୍ୟେକ ତୀକ୍ଷ୍ଣ ଧୀଶକ୍ତିସମ୍ପନ୍ନ । 'ଶୀତଳହରୀ'ର କାର୍ତ୍ତିକବାବୁ 'ନିଧନ'ର ସାମ୍ବାଦିକ ରଜନୀ ସାମନ୍ତ, 'ଖେଳ ସରିନାହିଁ' ଗଳ୍ପର ଅନୁର ଜେଜେବାପ, 'ବନ୍ୟା ଓ ଝରଣା' ଗଳ୍ପର ମହୀ ଭାଇନା ଏମାନେ ଗୋଟିଏ ବାଦ୍ୟଯନ୍ତ୍ରର ସ୍ୱରବୈଚିତ୍ରୀ ମାତ୍ର । ଏମାନେ ନିଜ ନିଜ ଦୃଷ୍ଟିରେ ଭିନ୍ନ ଭାବରେ ସଂସାରକୁ ଦେଖନ୍ତି ଓ ନିଜ ଚଷମାରେ ଅନ୍ୟମାନଙ୍କୁ ସେହି ଦୃଶ୍ୟ ଦେଖାଇବାକୁ ଚାହାନ୍ତି ।

ଗାଳ୍ପିକ କିଶୋରୀଚରଣଙ୍କୁ ସହରୀ ମଧ୍ୟବିତ୍ତ ଓ ଉଚ୍ଚବର୍ଗର କଥାକାର ବୋଲି କୁହାଯାଏ । କିନ୍ତୁ 'ଶୀତଳହରୀ' ସଂକଳନରେ ଗ୍ରାମପ୍ରତି ତାଙ୍କର ମମତ୍ୱବୋଧ ପ୍ରକଟିତ । 'ଇନ୍ଦିରା' ଗଳ୍ପର ଇନ୍ଦିରା ମହାପାତ୍ର ମଫସଲୀ ଓ ସାଧାରଣ ଝିଅ । 'ସୁଡ଼ଙ୍ଗ' ଗଳ୍ପରେ ଓଡ଼ିଆ ଶ୍ରମିକମାନଙ୍କର ଦୁର୍ଦ୍ଦଶା, 'ରାଜବେଶ' ଗଳ୍ପର ଅନନ୍ୟସାଧାରଣ ଦାମୁ ଦରଜୀ, 'ବନ୍ୟା ଓ ଝରଣା' ଗଳ୍ପରେ ମହୀଭାଇନାଙ୍କର ଚିନ୍ତାଧାରା ମଧ୍ୟରେ ଗ୍ରାମୀଣ ଜୀବନଯାତ୍ରାର ସ୍ୱଭାବସୁଲଭ ଚିତ୍ର ଦେଖାଯାଏ । କେବଳ ସେତିକି ନୁହେଁ, ଆଧୁନିକ କ୍ଷୁଦ୍ରଗଳ୍ପ ଭାବରେ 'ଶୀତଳହରୀ'ର ଗଳ୍ପଗୁଡ଼ିକ ବେଶ୍ ବଳିଷ୍ଠ । ବିଷୟରୁ ବାରମ୍ବାର ବିଷୟାନ୍ତରକୁ ଯାଉଥିବା ଗାଳ୍ପିକ ଗଳ୍ପ ମଧ୍ୟରେ କବିତ୍ୱ ମଧ୍ୟ ପ୍ରକାଶ କରିଛନ୍ତି ।

ଉପମା ଉପମେୟ ସଂଯୋଗରେ ଏଗୁଡ଼ିକ ସୁଖପାଠ୍ୟ ହୋଇଛି ଓ ଗଳ୍ପର ସାହିତ୍ୟିକ ମାନ ବୃଦ୍ଧିର ସହାୟକ । ଗୋଟିଏ ଦୁଇଟି ଉଦାହରଣ ଦେବା ଆବଶ୍ୟକ ମନେ କରୁଛି ।

'ଇନ୍ଦିରା' ଗଳ୍ପରେ ଇନ୍ଦିରା ନିଜର ସ୍ମୃତି ରୋମନ୍ଥନ କରିବା ସମୟରେ– ''ସେଇଲାଗି ବର୍ତ୍ତମାନ ବର୍ଷାଶେଷ ସକାଳରେ ଭିଜା ଗଙ୍ଗଶିଉଳି କେମିତି ଓହ୍ଲେଇ ଆସୁଛି ଓଦା ମାଟିର କୋଳକୁ– ମୋ ମରଣଟି କେଡ଼େ ମଧୁରିଆ ବୋଲି ଦେଖେଇ ହେଉଛି । ଏଣେ ବୁଢ଼ା କଦଳୀ ପତ୍ର କେମିତି ଟୋକା ସାଜୁଛି, ଶାଗୁଆ ଚିକଣିଆ ହୋଇ ବୁନ୍ଦାଏ ପାଣିକୁ ନେଇ ବିଳସୁଛି....''

ଏହା ବ୍ୟତୀତ ସେକ୍ସ ଓ ପ୍ରେମକୁ ସେ ସ୍ପଷ୍ଟ ଭାବରେ ବିଭାଜନ କରିଛନ୍ତି । ରଜନୀ ସାମନ୍ତଙ୍କ ସହିତ ପ୍ରଭାର ସମ୍ପର୍କ ବା ମୁରଲୀବାବୁଙ୍କ ସହିତ କଟକ ଗଳିର ବେଶ୍ୟାର ସମ୍ପର୍କ କେବଳ ସେକ୍ସକୈନ୍ଦ୍ରିକ । ଯଦିଚ ବନ୍ୟା ଓ ଝରଣା ଗଳ୍ପର ନନୀ ଦେଇ ଓ ବନୁ ଭାଇନାର ସମ୍ପର୍କ ଏହାଠାରୁ ଭିନ୍ନ । 'ଧବଳଟଗର' ଗଳ୍ପର ମୁରଲୀବାବୁ ଓ ଡାକ୍ତର ସେନାପତିଙ୍କ ଝିଆରୀର ସମ୍ପର୍କ ସମସ୍ତ କଳୁଷ କାଳିମାରୁ ଉର୍ଦ୍ଧ୍ୱରେ ଏକ ପବିତ୍ର ଭାଇଭଉଣୀର ସମ୍ପର୍କ । ସେକ୍ସ ସମ୍ପର୍କୀୟ ବର୍ଣ୍ଣନାରେ ମଧ କିଶୋରୀଚରଣ ବେଶ୍ ସ୍ୱାଭାବିକ । ଅନେକ ସମୟରେ ତଥାକଥିତ ଶାଳୀନତାର ସୀମା ଟପି ଯାଇଥିଲେ ମଧ ବୁଦ୍ଧିଦୀପ୍ତ ପାଠକ ପାଇଁ ଏହା ଅସ୍ୱସ୍ତିକର ନୁହେଁ ।

ଗାଳ୍ପିକଙ୍କର ବହୁପାଠିତାର ପଦାଙ୍କ ଗଳ୍ପ ସଂକଳନରେ ସ୍ପଷ୍ଟ । ଶଙ୍କରାଚାର୍ଯ୍ୟଙ୍କର 'ମୋହମୁଦ୍‌ଗର'ର ''କା ତେ କାନ୍ତା କସ୍ତେ ପୁତ୍ରଃ, ସଂସାରୋଽୟଂ ଅତୀବ ବିଚିତ୍ର''ଠାରୁ ଆରମ୍ଭ କରି ''ଶୃଙ୍ଗପରେ ଶୃଙ୍ଗ ଶୃଙ୍ଗ ତଦୁପରି'' ନାଗଭୂଷଣ ପଟ୍ଟନାୟକଙ୍କଠାରୁ ଅରୁଣ ସୌରୀ ତାଙ୍କ ସ୍ମୃତିରେ ଜୀବନ୍ତ । କାଶ୍ମୀର, ସିକିମ୍, ବମ୍ବେ, ଦିଲ୍ଲୀ ସହିତ ବିଭିନ୍ନ ବିଦେଶୀ ରାଜ୍ୟ ସହିତ ତାଙ୍କ ସମ୍ପର୍କ ଗଳ୍ପମାନଙ୍କ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦେଇଛି ।

ପରିଶେଷରେ ଏତିକି କୁହାଯିବା ଯଥେଷ୍ଟ ହେବ ଯେ ପାଠକ ଥରେ ପଢ଼ି 'ଶୀତଳହରୀ'ର ସାର ନିର୍ଯାସ ଗ୍ରହଣ କରିବା ଦୁରୂହ । ଏଥିପାଇଁ ତାର ଚରିତ୍ର ତଥା ପରିବେଶକୁ ସମ୍ପୂର୍ଣ୍ଣ ଆତ୍ମସ୍ଥ କରିବାକୁ ହୁଏ । ବାରମ୍ବାର ପଢ଼ି ତାର ଭାବବସ୍ତୁକୁ ଛାପି ନେବାକୁ ହୁଏ ଅନ୍ତର ଭିତରେ । ତା'ପରେ ନା' ଭୁଲିହୁଏ ଦାମୁ ଦରଜୀକୁ ନା ନନୀ ଦେଈଙ୍କୁ । 'ଇନ୍ଦିରା'ତ ପାଲଟିଯାଏ ସଂପୂର୍ଣ୍ଣ ଅନୁଭୂତିଟିଏ । ତେବେ 'ଶୀତଳହରୀ'ର ବହୁଳ ପ୍ରସାର ପାଇଁ କାମନା କରିବା ମୋ ପାଇଁ ସ୍ପର୍ଦ୍ଧା ହେଲେ ମଧ ସେହି କାମନା ସହିତ ଗାଳ୍ପିକଙ୍କର ଲେଖନୀର ଶ୍ରୀସମୃଦ୍ଧି କାମନା କରୁଛି ।



# ଧବଳ ଆକାଶ

ଡକ୍ଟର ଇନ୍ଦୁମିଶ୍ର

ଧବଳ ଆକାଶ (୧୯୯୪) କଥାକାର କିଶୋରୀ ଚରଣ ଦାସଙ୍କର ତ୍ରୟୋଦଶ ଗଳ୍ପ-ସଂକଳନ । ସଂଘର୍ଷପୀଡ଼ିତ ସାମ୍ପ୍ରତିକ ଜୀବନର ଦୁଃଖ, ଯନ୍ତ୍ରଣା ତଥା ଆନନ୍ଦ, ବେଦନାର ପୃଷ୍ଠପଟରେ ଏହି ଗ୍ରନ୍ଥରେ ସଂକଳିତ ହୋଇଛି ୧୧ଟି ଗଳ୍ପ । ପଲ୍ଲୀଠାରୁ ମହାନଗରୀର ବସ୍ତି ଅଞ୍ଚଳ ପର୍ଯ୍ୟନ୍ତ ସମ୍ପ୍ରସାରିତ ରହିଛି 'ଧବଳ ଆକାଶ'ର ଗଳ୍ପଗୁଚ୍ଛର ପୃଷ୍ଠ ପଟ । ଜୀବନର କ୍ଷୁଦ୍ରାଦପିକ୍ଷୁଦ୍ର, ସୂକ୍ଷ୍ମାତିସୂକ୍ଷ୍ମ ଘଟଣାବଳୀ ଓ ଅନୁଭୂତି ଠାରୁ ଆରମ୍ଭ କରି ରାଜନୀତିର ହଟଚମଟ ପୁଣି ସମ୍ପର୍କର ଜଟିଳତାଠାରୁ ବିଚିତ୍ର ହୋଇ ହୃଦୟର ଶୂନ୍ୟତାରେ ପର୍ଯ୍ୟବସିତ ହୋଇଛି ତାଙ୍କ ଗଳ୍ପର ବକ୍ତବ୍ୟ ।

ଆଲୋଚ୍ୟ ଗଳ୍ପଗୁଚ୍ଛରେ ଜୀବନର ଧୂସର-ମଧୁର ଅନୁଭୂତିକୁ ନେଇ ପ୍ରକଟିତ ହୋଇଛି କିଶୋରୀଚରଣଙ୍କ କଥା-ସୃଷ୍ଟି । 'ଘେର' ଗଳ୍ପରେ ଏକାକୀ, ଅସହାୟ ବ୍ୟାଧିଗ୍ରସ୍ତ ବୃଦ୍ଧଟିଏ ରଞ୍ଜୁବାବୁଙ୍କ ବାଲ୍ୟ-ସଙ୍ଗୀ । ବସ୍ତି ଅଞ୍ଚଳରେ ପୁଅ-ବୋହୂଙ୍କ ସଂସାର ଭିତରେ ଥାଇ ବି ସେ ନିର୍ବାସିତ । ଛିଣ୍ଡା, ମଇଳା ଅଖାର ଘେର ବା ପାର୍ଟିସନଟିଏ ଦେଇ ବୋହୂ ବିଚ୍ଛିନ୍ନ କରିଦେଇଛି ତାଙ୍କୁ ନିଜ ସଂସାରରୁ । ରଞ୍ଜୁ ବାବୁ ପ୍ରତିଥର ପ୍ରତିବାଦ କରିଛନ୍ତି ଘେରଟିକୁ ଉଠାଇ ଦେବାପାଇଁ । ଅନ୍ତତଃ ତାଙ୍କର ସୌଖୀନ-ଆତ୍ମା ଉଦ୍‌ବୁଦ୍ଧ କରିଛି ବସ୍ତିଅଞ୍ଚଳର ପତି-ପତ୍ନୀଙ୍କୁ ବୃଦ୍ଧଙ୍କୁ ପରିବାର ସହ ସ୍ୱାଭାବିକ ଭାବେ ସାମିଲ କରିନେବା ପାଇଁ । ପ୍ରତିଥର ବ୍ୟର୍ଥ ହୋଇଛି ତାଙ୍କର ଅନୁରୋଧ । ଶେଷରେ ବୃଦ୍ଧଙ୍କର ମୃତ୍ୟୁ ଉଠାଇ ଦେଇଚି ଘେରଟିକୁ । ବାର୍ଦ୍ଧକ୍ୟ ଓ ବ୍ୟାଧି କିପରି ଅସହାୟ କରିଦିଏ ମଣିଷକୁ 'ଘେର' ଗଳ୍ପ ତାହାର ଏକ ସର୍ବକାଳୀନ ଦୃଷ୍ଟାନ୍ତ ।

ଜୀବନ ବସ୍ତୁତଃ କେବଳ ମଧୁର ଅନୁଭୂତିର ଏକ ଫୁଲ ଶେଯ ନୁହେଁ । ତା' ଭିତରେ ଛପି ରହିଥିବା ବହୁ ଧୂସର ଭାବସତ୍ତା ଉଦ୍‌ଘାଟନ କରିଛନ୍ତି କଥାକାର । ଏଇ ଧୂସରତା ଭିତରେ ଅଛି ଡେମୋକ୍ରାସିର ପ୍ରତାରଣା ତଥା ରାଜନୀତିର ଶଠତା ଓ ପ୍ରବଞ୍ଚନା । ସୁଖର ସନ୍ଧାନରେ ଗତି କରୁଥିବା ମାନବ ସଭ୍ୟତାର ମରୀଚିକାକୁ ତୀବ୍ର ବ୍ୟଙ୍ଗ-ବିଦ୍ରୂପ କରିଛନ୍ତି ଗାଳ୍ପିକ । ଜୀବନ ତଥା ବିଶ୍ୱର ବ୍ୟାପକ ପୃଷ୍ଠପଟ ଠାରୁ ଆରମ୍ଭ କରି କ୍ଷୁଦ୍ରାଦପିକ୍ଷୁଦ୍ର ଅନୁଭୂତିର ସ୍ୱରକୁ ଚିତ୍ରିତ କରି ମାନବିକ ସତ୍ୟର ରୂଢ଼ ଓ ବାସ୍ତବଦିଗକୁ ସେ ପରିପୁଷ୍ଟ କରିଛନ୍ତି । ଇଂରାଜୀ ସଭ୍ୟତା ଓ ସଂସ୍କୃତି

ତଥା ଭାଷା ଓ ଆଦବକାଇଦା ପ୍ରତି ଆମର ସମ୍ମୋହନକୁ ଚାହିଁଛନ୍ତି ଶ୍ଳେଷାତ୍ମକ ଦୃଷ୍ଟିରେ ।

"ଆଖିର ଲୁହକୁ ରୋଧିବା ପାଇଁ ନୀନା ଗୋଟାଏ ତିକ୍ତ ଓ ଚପଳ ପ୍ରଶ୍ନ ପଚାରିଲା ଦି'ଜଣଙ୍କୁ । ଡାଲି, ମାମୀ ସିନା ପଞ୍ଜାବୀ ଝିଅ, ତମେ ତ ଦକ୍ଷିଣର ବ୍ରାହ୍ମଣ ଘର ପିଲା, ତମ ପାଟିରୁ ବି ଏଇ ଶବ୍ଦଟା ବାହାରିଲା ନାହିଁ ?" (ପ୍ରମିଜ୍ ଓ ପ୍ରତିଶ୍ରୁତି– ଧବଳ ଆକାଶ ପୃ:୩୩)

ପ୍ରତିଶ୍ରୁତି ଦେବା ବଦଳରେ ଆମେ ଇଂରାଜୀ କାଇଦାରେ ପ୍ରମିଜ କରୁ । ଇଂରାଜୀ କାଇଦା, ଠାଣି ମାଣିରେ ପ୍ରାଚୁର୍ଯ୍ୟ ଖୋଜୁ । କିନ୍ତୁ ଆମର ମୂଳଦୁଆ ପଡ଼ିଥାଏ ଭାରତୀୟ ସଂସ୍କୃତିରେ । ମୂଲ୍ୟବୋଧର ଅବକ୍ଷୟ ସହ ଆତ୍ମବିଶ୍ୱାସ ଆମର କମି କମି ଯାଏ । ବନ୍ଧୁବାନ୍ଧବ, ତଥାକଥିତ ସମାଜ ଆଉ ଲୋକେ କ'ଣ କହିବେ'ର କୋକୁଆ ଭୟ ଆମକୁ ଘାରିଯାଏ । ବାପ ମା, ବନ୍ଧୁ ପରିଜନ ପୁଣି ଜ୍ଞାତି କୁଟୁମ୍ବଙ୍କ ସହ ଥିବା ମାନବିକ ସମ୍ପର୍କ ଓ ତହିଁରୁ ଜାତ ଆନନ୍ଦ ଓ ବେଦନାର କାହାଣୀକୁ ଲିପିବଦ୍ଧ କରିଛନ୍ତି ଗାଳ୍ପିକ । ବହୁ ସମୟରେ ମଣିଷପଣିଆର ଧାସଟିଏ ଫୁଟି ଉଠିଛି ଅବକ୍ଷୟର ପାଉଶତଳୁ । 'ବାଉଲି ଅପାଙ୍କ ଭୂତ' ଗଳ୍ପରେ ସୀତାନାଥ ଓ ରଙ୍ଗନାଥଙ୍କର ବାଉଲି ଅପାଙ୍କ ଭାବପ୍ରବଣତା ଓ ଜିଦି ପ୍ରତି ଯେଉଁ ସମ୍ବେଦନା ପ୍ରକଟିତ ହୋଇଛି, ତାହା କେବଳ ଆର୍ଥିକ ନୁହେ, ତାହା ମଧ୍ୟ ମାନସିକ ଓ ମାନବିକ । ଏକଦା ଗ୍ରାମ୍ୟ-କିଶୋରୀ ବାଉଲି ଅପାଙ୍କ ପ୍ରତି ପଲ୍ଲୀ ଅଞ୍ଚଳର ନେତା ଯେଉଁ ଅବିଚାର କରିଥିଲେ ଓ ଚାରିତ୍ରିକ ସ୍ଖଳନର କାରଣ ହୋଇଥିଲେ, ଦରବୁଢ଼ା ଶଙ୍କରାକୁ ବାହାହେଇ ମଧ୍ୟ ସେ ଅପମାନର ଜ୍ୱାଳା ଭୁଲି ପାରି ନଥିଲେ ବାଉଲି ଅପା । ସୁନ୍ଦରୀ, ତନ୍ୱୀ ବଧୂଟିକୁ ନିପାରିଲା ସ୍ୱାମୀର ଅକ୍ଷମତା ଦାୟରେ ଦୟା କରିବାକୁ ଚାହିଁଥିଲେ ସୀତାନାଥ । ସମୟକ୍ରମେ ଜୈବିକ ବାସନାର ଜ୍ୱାଳା ପ୍ରଶମିତ ହୋଇଥିଲା । ନେତାଙ୍କ ପୁଅ ପାଇଁ ବିନା ଯୌତୁକରେ ଏକ ବିବାହ ପ୍ରସ୍ତାବ ଆସିଲା ବାଉଲି ଅପାଙ୍କ ଘରକୁ । ବିନା ଯୌତୁକରେ ହେଲେ ମଧ୍ୟ ଝିଅକୁ ଲମ୍ପଟ ଏମ.ଏଲ.ଏ.ଙ୍କ ପୁତ୍ର ସହ ବିବାହ ଦେବା ପାଇଁ ରାଜିହେଲେ ନାହିଁ ବାଉଲି ଅପା । ଅତୀତ ଭୂତ ହେଇ ଗୋଡ଼ାଇଥିଲା ବାଉଲୀ ଅପାଙ୍କୁ । ପରିଣତ ବୟସରେ ମଧ୍ୟ କ୍ଷମା କରିପାରି ନଥିଲେ ସେ ପୂର୍ବତନ ଗ୍ରାମ୍ୟ ରାଜନୀତିଜ୍ଞଙ୍କୁ । ସମ୍ପତ୍ତିର ଭାଗବଣ୍ଟୁଆରା ପାଇଁ ଅଣ୍ଟାଭିଡ଼ି ବାହାରିଥିବା ସୀତାନାଥ ମଧ୍ୟ ଏକଦା ବାଉଲୀ ଅପାଙ୍କ ଉଦ୍ଦେଶ୍ୟରେ ପୋଷଣ କରିଥିବା ଅସତ୍ ଚିନ୍ତାର ପ୍ରାୟଶ୍ଚିତ୍ତ ସ୍ୱରୂପ ତାଙ୍କ ଝିଅର ବାହାଘର ପାଇଁ ୧୫ ହଜାର ଟଙ୍କାର ଯୌତୁକ ସାହାଯ୍ୟ ଦେବା ସକାଶେ ପ୍ରସ୍ତୁତ ହୋଇଛନ୍ତି । କିଶୋରୀ ଚରଣଙ୍କ ଗଳ୍ପ ପରମ୍ପରାରେ ମାନବିକ, କ୍ରିୟାକଳାପ ଓ ଘଟଣାବଳୀ ବହୁ ସମୟରେ ଏକ ଆକସ୍ମିକତାର ସାକ୍ଷାତ କରାଏ । ବହୁ ସମୟରେ ଆପାତଃ ଘଟଣାବିହୀନ ପରିଣତିର ଅନ୍ତରାଳରେ ଛପି ରହିଥାଏ ଚରିତ୍ର ସମୂହର ସୂକ୍ଷ୍ମାତିସୂକ୍ଷ୍ମ ଅନୁଭୂତି । ସାଧାରଣ ପାଠକର ରସତୃଷ୍ଣା ଚରିତାର୍ଥ କରିବା କ୍ଷେତ୍ରରେ ଏହା ହୁଏତ ସଫଳ ହୋଇ ନ ପାରେ ମାତ୍ର ଜୀବନର ଅନ୍ତର୍ନିହିତ ବୌଦ୍ଧିକ ଭାବଜଗତର ଆଲୋଡ଼ନ କ୍ଷେତ୍ରରେ ଏ

ଗଳ୍ପ ପରମ୍ପରାର ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଛି । କଥାକାର ଜୀବନର ଅନ୍ତଃରୂପର ଚିତ୍ରଣ କରିବାକୁ ଯାଇ ମନ୍ତବ୍ୟ ଦିଅନ୍ତି–

ନାନା ଦ୍ୱନ୍ଦ, ନାନା କନ୍ଦଳ, ମିଛ-ସତ, ଭଲ-ମନ୍ଦର ଅନୁଭୂତିକୁ ନେଇ ଏ ଜୀବନ । ହେଲେ ସେଥିରେ ଘାଣ୍ଟି ହେବା ଭୁଲ । ଭୁଲ ମାନେ ଦୋଷ, ପାପ, ଯାହା କୁହ । ଖାଲି ତା'କୁ ଚିହ୍ନିବା କଥା । (ଆଶ୍ଚର୍ଯ୍ୟବତ୍-ପୃ: ୫୦ - ଧବଳ ଆକାଶ)

ଜୀବନକୁ ଚିହ୍ନିବାର ପ୍ରକ୍ରିୟା ଭିତରୁ କିଶୋରୀ ଚରଣଙ୍କ ଗଳ୍ପରେ ଏକ ଦାର୍ଶନିକତାର ପ୍ରଲେପ ଉକୁଟି ଉଠେ । ଚରିତ୍ରଗୁଡ଼ିକ ଖସିପଡ଼ନ୍ତି ନିଜ ନିଜ ଖୋଳପାରୁ । ବାପା ବୁଝିପାରନ୍ତି ଝିଅର ସଂସାରରେ ତାଙ୍କର ଭୂମିକା ନାସ୍ତି । (ଖରାପ ଲୋକ) । ସବୁ ବକ୍ତବ୍ୟ ଭାଷାରେ ପ୍ରକାଶ ନ ପାଇ ପ୍ରକଟିତ ହୁଏ ମୁଖ ମୁଦ୍ରାରେ । ଦୁଃଖ, ବିଷାଦ ବ୍ୟାପିଯାଏ କେବେ କେବେ ତ କେବେ ପୁଣି ନିମ୍ବଫଳର ପିତୁଳିଆ ସ୍ୱାଦ ଭିତରୁ ଉତୁରିଆସେ ଜୀବନର ମାଦକତା । ମଣିଷ ଜୀବନର ଦୁଃଖ ଓ ବିଷାଦ ଦିଶିଯାଏ ଆକାଶ ପରି ବିରାଟ । ଏଡ଼େ ବିଶାଳ ଆକାଶଟାଏ । କିନ୍ତୁ ନୀଳିମାର ସୁନ୍ଦରତା ଓ ଭାବମୟତା ଯେପରି ଅସ୍ତ ଯାଇଛି ଶାନ୍ତିଦେବୀ ଓ ସୀତାନାଥଙ୍କ ଜୀବନରୁ । ଯୌବନରେ ହରାଇ ବସିଛନ୍ତି ଶିଶୁପୁତ୍ର ପ୍ରଣବ ଓ ବାର୍ଦ୍ଧକ୍ୟରେ କନ୍ୟା ପ୍ରଣତିକୁ । ମୃତ୍ୟୁ ଆସିଛି ଅପତ୍ୟମାନଙ୍କ ପାଇଁ ଦୁର୍ଘଟଣା ଭଳି । ପ୍ରଣତିର ମୃତ୍ୟୁ ପରେ ନବ ନିର୍ମିତ ବାସଗୃହଟି ନାମହୀନ ହୋଇ ରହିଯାଇଛି । ସୀତାନାଥଙ୍କ ମୃତ୍ୟୁ ପରେ ଅବ୍ୟବହୃତ ଘରଟିକୁ ବିକ୍ରି କରିଦେଇଛି ତାଙ୍କ କନିଷ୍ଠ ପୁତ୍ର ପ୍ରସନ୍ନ– ବେକାରି ଦୂରବସ୍ଥାକୁ ଦୂର କରିବା ପାଇଁ । ଘରର ନୂଆ ମାଲିକ କିନ୍ତୁ ବରଦାସ୍ତ କରିପାରିଲେ ନାହିଁ ସାଦା କାନ୍ଥର ଧଳା ମାର୍ବଲ । ତା'ର ନାଆଁଟିଏ ସେ ଦେଲେ– 'ଅମୃତ' । ସୀତାନାଥ ଓ ଶାନ୍ତି ଦେବୀଙ୍କ ଜୀବନ- ଆକାଶରେ ହୁଏତ ଛାଇ ଯାଇଥିଲା ଶେଷହୀନ ନିର୍ଜନତା । ନଥିଲା ପ୍ରାଣସତ୍ତାର ସାମାନ୍ୟତମ ସ୍ଫୁରଣ । କିନ୍ତୁ 'ଅମୃତ' ନାମକରଣରେ ଯେ ଜୀବନର ଅବଶିଷ୍ଟାଂଶ ଅମୃତତ୍ୱ ଲାଭକଲା ତାହା ମଧ୍ୟ ଗ୍ରହଣ କରିବା ଦୁଷ୍କର । କାରଣ ଗଳ୍ପର ପରିଣତିରେ ସ୍ରଷ୍ଟାଙ୍କର ମନ୍ତବ୍ୟ ଏହିଭଳି ଏକ ଅବବୋଧ ସୃଷ୍ଟି କରେ–

''ସେଇଠୁଁ ଭଗବାନ ବୁହେ ହସିଲେ ଏବଂ କହିଲେ, ମୋ ଛାତିଫାଟି କିଛି ହୁଏ ନାହିଁ ସିନା, କିନ୍ତୁ ମୋତେ ଏମିତି ହସେଇ ପାରୁଛ ତ ମଝିରେ ମଝିରେ !'' (ଧବଳ ଆକାଶ– ପୃ: ୧୫୯)

ବେଦ ଓ ଉପନିଷଦରେ ମଣିଷକୁ 'ଅମୃତସ୍ୟ ପୁତ୍ରଃ' ରୂପେ ଅଭିହିତ କରାଯାଇଥିଲେ ମଧ୍ୟ ଆଜିର ଦ୍ୱନ୍ଦ୍ୱ, ସଂଘାତମୟ ଜୀବନରେ ନିତ୍ୟନିୟତ ମୃତ୍ୟୁକୁ ଉପଲବ୍ଧି କରୁଥିବା ମଣିଷ ପାଇଁ ଅମୃତତ୍ୱର ପ୍ରାପ୍ତି ଏକ ଅଲଭ୍ୟ ଲାଭର ଅଭିଳାଷ ମାତ୍ର । ପୂର୍ଣ୍ଣତାର ପ୍ରାପ୍ତି ପାଇଁ ସେଥିପାଇଁ

ବଳବତ୍ତର ରହିଥାଏ ତା'ର ଅଦମ୍ୟ ପିପାସା । ମରାଳୀର ସୁରଭି ଠାରୁ, 'ପ୍ରମିଜ୍ ଓ ପ୍ରତିଶ୍ରୁତି'ର ନୀନା, ରଜନୀ, କାଦମ୍ବିନୀଙ୍କ ବାଟ ଦେଇ 'ନିମ୍ବଫଳ'ର ମନୁବାବୁ, ସରିତା ଓ ଅରୁନ୍ଧତୀଙ୍କ ପର୍ଯ୍ୟନ୍ତ ସଭିଏଁ ଅପୂର୍ଣ୍ଣ ଜୀବନଧାରା ଭିତରେ ପୂର୍ଣ୍ଣତାର ପ୍ରାପ୍ତି ପାଇଁ ପ୍ରୟାସ କରିଛନ୍ତି । ପ୍ରତ୍ୟେକ ଜୀବନ ପ୍ରାୟ ଜାରି ରହିଛି ଏକ ଗୋଲକଧନ୍ଦା ଭିତରେ । ଖାଲି ତିକ୍ତତା ନୁହେଁ, ନେଗେଟିଭ୍ ତିକ୍ତତା ଭିତରେ କେବେ କେବେ ହୁଏତ ଫୁଟି ଉଠିଛି ଏକ ଆତ୍ମଘାତୀ ମନୋଭାବ । ସମ୍ପର୍କର ଜଟିଳତା ଓ ଜୀବନର ଯେତେସବୁ ଇତରତା ଭିତରେ କିଶୋରୀ ଚରଣଙ୍କ ଗଳ୍ପର ଚରିତ୍ର ତଥାପି ଅନୁଭବ କରିଛି – ''ଫଳମାତ୍ରେ ହିଁ ମିଠା । ଫୁଲ ମାତ୍ରେ ହିଁ ସୁନ୍ଦର । ଭଲା କୋଉ ବୁଦ୍ଧିରେ ମୁହଁଟାକୁ ପିତା କରି ଚାଲିଯିବ ସଂସାରରୁ ।'' (ନିମ୍ବଫଳ– ଧବଳ ଆକାଶ ପୃ: ୧୩୯) ଉଠିଛି ନିର୍ମଳତମ ଆଶା, ଭରସାର ଅବଶେଷ । ସ୍ୱାଧୀନତା ସାଙ୍ଗରେ ସାଲିସ୍ ନକରି ମଧ୍ୟ ସେଠାରେ ମଣିଷ ଆପଣାର ବୁଦ୍ଧି ଓ ଭାବନାରେ ସମ୍ପୂର୍ଣ୍ଣତାର ଅଧିକାରୀ ହୋଇପାରେ । ଦୁଃଖ ଓ ବିଷାଦ ଭାବନାରେ ଶ୍ଳେଷ ଓ ବକ୍ରୋକ୍ତି ଭିତରେ, ମୃତ୍ୟୁ ଓ ତଦ୍‌ଜନିତ ନିଃସଙ୍ଗତାର ବଳୟରେ ମଣିଷର ଜୀବନ- ଆକାଶରେ ସମ୍ଭାବନାର ମେଘମୟ ବେଳ ପାଇଁ ସ୍ରଷ୍ଟା ପ୍ରତୀକ୍ଷମାଣ ରହିଛନ୍ତି ।

''ଧବଳ ଆକାଶ''ର ଗଳ୍ପ-କଳା କିଶୋରୀ ଚରଣଙ୍କ କଥା-ଶିଳ୍ପୀର କାରିଗରୀ କୌଶଳ ବହନ କରିଛି । ତହିଁରେ ଅଛି ଚେତନା ପ୍ରବାହର ଆତ୍ମକଥନ, ଗଦ୍ୟ-ରୀତିର ଅକୃତ୍ରିମ ଅଭିବ୍ୟକ୍ତି ଓ ସାମଗ୍ରିକ ଗଠନରେ ସ୍ୱଭାବ ସୁଲଭ ଦାର୍ଶନିକତା ତଥା ବୌଦ୍ଧିକତା । ଚରିତ୍ରଟିଏ ଚିତ୍ରିତ ହେଲାବେଳେ ତାହା ପୂର୍ଣ୍ଣତଃ ବ୍ୟକ୍ତ ହୁଏ ନାହିଁ କିଶୋରୀ ଚରଣଙ୍କ ଗଳ୍ପ କଳାରେ । ଜୀବନଯାପନ ପ୍ରକ୍ରିୟାର ନାନା ଯୁଗ୍ମ ଉଦ୍ୟମ ଓ ଯୁଗ୍ମ ମମତ୍ୱ ଭିତରେ ତାଙ୍କ ଚରିତ୍ରଗୁଚ୍ଛ ପ୍ରାୟ ଏକ ଜଟିଳ ଭାବାବୃତ୍ତ ଓ ତହିଁରୁ ଜାତ ଗୋପନୀୟତା ଭିତରେ ଆଚ୍ଛନ୍ନ ହୋଇପଡ଼ିଥା'ନ୍ତି । ଜୀବନର ବ୍ୟାପକତା ପୂର୍ଣ୍ଣତଃ ଧରାପଡ଼େ ନାହିଁ ଗଳ୍ପର ଗାଲାକ୍ସିରେ । ମାତ୍ର ଅସମ୍ପୂର୍ଣ୍ଣ ଚରିତ୍ରମାନଙ୍କର ପୂର୍ଣ୍ଣତା ଦିଗକୁ ଯାତ୍ରା କରିବାର ପ୍ରୟାସ ଓ ତହିଁରୁ ଜାତ ବିବିଧ ଅନୁଭୂତି କିଶୋରୀ ଚରଣଙ୍କ ଗଳ୍ପ-କଳାକୁ ଯେଉଁ ଅନନ୍ୟ ବୈଶିଷ୍ଟ୍ୟ ପ୍ରଦାନ କରିଥାଏ ''ଧବଳ ଆକାଶ'' ତାହାର ଏକ ସାର୍ଥକ ଦୃଷ୍ଟାନ୍ତ ।



# ଶେଷ ଗଳ୍ପ

*ଦେବବ୍ରତ ମଦନରାୟ*

କଲମ ଚାଲୁଥିବା ଯାଏଁ ଗାଳ୍ପିକ କ'ଣ କେବେହେଲେ ତା' କଥା ମୁଣିକୁ ଝାଡ଼ିଝୁଡ଼ି ଦେଇ କହିପାରିବ ଯେ ବାସ୍, ଏଇଠି ମୋ କଥା ସଇଲା, ଆଉ ଫୁଲ ଗଛଟି ମଲା ? ହେଲେ ବରିଷ୍ଠ ଗାଳ୍ପିକ-ଚରିତ୍ର କୁହୁର ବେଳାଭୂମିରେ ବୁଲୁବୁଲୁ ସ୍ଥିର କରି ସାରିଲେଣି ଯେ ଯଥେଷ୍ଟ ହେଲାଣି । ଏଣିକି ଗୋଟିଏ ଶେଷଗଳ୍ପ ଲେଖିବା କଥା, ଯେଉଁଥିରେ ତାଙ୍କ ଅନୁଭୂତ ଜୀବନର ଶେଷ କଥାଟିକ ରହିବା ଉଚିତ । ସେହି ଚରିତ୍ର ଜଣଙ୍କ ଗଣେଶ ମହାନ୍ତି 'ଶେଷ ଗଳ୍ପ' ଶବ୍ଦର ରାଜ୍ୟ ପରିଚିତ ହୋଇଥିଲେ ମଧ୍ୟ ସେ କିଶୋରୀ ଚରଣ ଦାସ ବୋଲି ପ୍ରିୟ ପାଠକମାନଙ୍କ ସାମନାରେ ଆଦୌ ଅପରିଚିତ ନୁହନ୍ତି ।

ମଣିଷ ମନର ସାତତାଳ ପଙ୍କ ଭିତରୁ ରହସ୍ୟ ଉଦ୍‌ଘାଟନ କରିବାରେ ତାଙ୍କ ଶିଳ୍ପ ଚାତୁରୀ ବେଶ୍ ପାରଙ୍ଗମ । ତେଣୁ ତାଙ୍କ ଗଳ୍ପଗୁଡ଼ିକ ପ୍ରାୟ କାହାଣୀହୀନ, ବିବୃତିମୂଳକ, ଆମ୍ ସମୀକ୍ଷା ଧର୍ମୀ ଓ ଅନ୍ତର୍ମୁଖୀ ଚେତନାଦ୍ୱାରା ଉଦ୍‌ବୁଦ୍ଧ । ତେଣୁ 'ଶେଷଗଳ୍ପ'ରେ ସନ୍ନିହିତ ନଅଟିଯାକ ଗପରେ ମଣିଷର ଅବଚେତନମାନଙ୍କୁ ହିଁ ସେ ବିଶ୍ଳେଷଣ କରିଛନ୍ତି ଓ ଚରିତ୍ରମାନଙ୍କ ନିଟୋଳ ସରସ ଭାବମୂର୍ତ୍ତି ଅନ୍ତରାଳରେ ଜଟିଳ ଓ ଆଧୁନିକ ମଣିଷର ସ୍ୱାଭାବିକ ମାନସିକ ଦ୍ୱନ୍ଦ୍ୱକୁ ଦେଖାଇ ଦେଇଛନ୍ତି । ତେଣୁ 'ସମଦୁଃଖିନୀ' ଗଳ୍ପରେ ମୋହନବାବୁ ସ୍ୱୀକାର କରୁଛନ୍ତି– ''ମୁଁ କିଏ କହିବା ପାଇଁ ଯେ ସେ ଖରାପ ? ମୁଁ କ'ଣ ଉପଭୋଗ କରୁ ନଥିଲି ସେଇ ଭିନ୍ନ ସ୍ୱାଦୁ, ତା'କୁ ପ୍ରେମ କୁହ ବା ଆଉ ଯାହା ଏବଂ ତା'ଯେତେ ନିଷିଦ୍ଧ ହେଉ ପଛେ ? ଏବଂ ସେ ଯଦି ଏତେ ଅସୁନ୍ଦର ଦିଶୁ ନ ଥାଆନ୍ତେ ଏଇକ୍ଷଣି, ତା'ହେଲେ ମୁଁ ମୋ ବୁଢ଼ା ବୟସରେ ବି ତା'କୁ ଟିକିଏ ଉସ୍‌କାଇବାକୁ ଚାହୁଁ ନଥାଆନ୍ତି, କିଏ କହିବ ସେ କଥା ?''

ସେ କଥା କହୁଚି 'ବେଷ୍ଟ ଫ୍ରେଣ୍ଡ୍'ରେ ସୀମା । '... ଠିକ୍ ଅଛି ଲୋ ନୀନୁ ! ମୁଁ ତୋର ଇଚ୍ଛା ପୂରଣ କରିବି । କାହାରିକୁ ହେଲେ କହିବି ନାହିଁ, ଏପରିକି ମୋ ସ୍ୱାମୀଙ୍କୁ ଯେ ମୁଁ ଜଣେ ପୁରୁଷକୁ ଦେଖିଲି ତୋ'ଘରେ, ଗୋଟିଏ ନିରୋଳା ଅପରାହ୍ନରେ, ଯେ ତୋ ଶୋଇବାଘରୁ

ଉଠିଆସିଲା ପରି ଲାଗୁଥିଲା ।' ଉଚ୍ଚମଧ୍ୟବିତ୍ତ ଜୀବନ ବାହାରକୁ ସୁନ୍ଦର ଦିଶୁଥିଲେ ମଧ ତା' ଭିତରେ ଯେ କେତେ ବିକଳାଙ୍ଗ, ଅସହାୟ ଓ ନିଃସଙ୍ଗ- ତାହା ଗାଳ୍ପିକ ଦେଖାଇ ଦେବାକୁ ଚାହିଁଛନ୍ତି ।

ବ୍ୟକ୍ତିଗତ ଜୀବନର ପାପପୁଣ୍ୟ, ସଫଳତା ବିଫଳତା, ଛଳନା ପ୍ରତାରଣା ପ୍ରଭୃତି ପ୍ରତିଟି ଗଳ୍ପର ଉପାଦାନ । କେବଳ ଜୀବନର ରହସ୍ୟ ଉଦ୍‌ଘାଟନରେ ସତେ ଯେପରି ଧ୍ୟାନସ୍ଥ । ମଣିଷର ଚାରିତ୍ରିକ ଗୋପନ ପ୍ରତିଲିପିକୁ ଓ ନଗ୍ନ ଭାବନା ପଢ଼ିବା ପାଇଁ ସେ ସିଦ୍ଧହସ୍ତ । ତେଣୁ 'ସାନଟ୍ରେମ' ଗଳ୍ପରେ ବୀଣାପାଣି କହୁଛନ୍ତି ମନେମନେ 'ମୁଁ ଜାଣିଥିଲି ଏଇଆ ହେବ ! ଯୋଉ ଘରର ପିଲା ସେ ଟୋକୀ ଖଣ୍ଡକ, ତାକୁ ମୁହଁ ଦେବା ଉଚିତ ନ ଥିଲା ଆମର । ଜାଣିବାର ଥିଲା ଯେ ସାପ ତ ସାପ, କ୍ଷୁଦ୍ର ସର୍ପର ବିଷ ଉତ୍କଟତର ।'

'ବର୍ଷାଋତୁ' ଗଳ୍ପରେ ଅପଦାର୍ଥ ସ୍ୱାମୀ ବଚ୍ଚୁ, ପତିପ୍ରାଣ ମିନୁ, ପଳାୟନ ପନ୍ଥୀ ସ୍ୱାମୀଜୀ ଓରଫ୍ ଭୋଳାଭାଇଙ୍କର ମାନସିକ ଦ୍ୱନ୍ଦ୍ୱ ବିକୃତ ଯୌନ ଅଭିଳାଷ ପ୍ରଭୃତିଙ୍କ ଭଲ ପାଇବାରେ ହିଂସା ଓ ସ୍ୱାର୍ଥର ପ୍ରବେଶ ନାହିଁ, ବରଂ ଅଛି କେବଳ ଭଲ ପାଇବା, ନିରୁତା ଭଲ ପାଇବା । ସେଥିପାଇଁ ସ୍ୱାମୀଜୀ କହୁଛନ୍ତି– ''କିନ୍ତୁ ଭାବିଛ କ'ଣ ମୁଁ ଲୁଚିବି ମିନୁପାଖରୁ, ସତେକି ମୁଁ ହାରି ଯାଇଛି ? ଅସମ୍ଭବ । ମୁଁ ପୁଣି ଯିବି ତା' ପାଖକୁ ତା'କୁ ବୋଧ ଦେବାପାଇଁ, ତା' ମନରେ ସୁଖ ଆଣି ଦେବାପାଇଁ । ସଚ୍ଚା ସୁଖ । ସେ କହୁ ପଛେ ମନେ ମନେ, ଯେ ତା' ଭୋଳାଭାଇଟା ଯେତିକି ଅପଦାର୍ଥ ଥିଲା ତା'ପିଲାଦିନେ, ବିଚରା ସ୍ୱାମୀଜିଟିଏ ହୋଇ ମଧ କୋଉ କାମର ହେଲା ନାହିଁ ।

'ଶେଷ ଗଳ୍ପ' ହିଁ ଶେଷ ଗପ । ଏଥିରେ ଗାଳ୍ପିକ ପ୍ରାୟତଃ ନିଜ ଲେଖକ ଜୀବନର ଦୁଃଖ କଥା ହିଁ ବେଶୀ ଉଖାରିଦେଇ ଆମ ଆଗରେ କେଉଁ ମହନୀୟ ସ୍ତରକୁ ଉଠିଯାଇଛନ୍ତି ତାହା କାଳ ହିଁ ନିର୍ଣ୍ଣୟ କରିବ । ସେଥିପାଇଁ ଗଣେଶବାବୁ କହିଛନ୍ତି– 'ମୁଁ କିଛି ମିଛ କହିନାହିଁ । ଶେଷଗଳ୍ପ ନ ହେଲେ ନାହିଁ, ଇଏ ହେବ ମୋର ଏକ ବିଶେଷ ଗୁରୁତ୍ୱପୂର୍ଣ୍ଣ ଗପ । ହେବା ଉଚିତ !'

ଉପସଂହାରରେ ଏତିକି କୁହାଯାଇପାରେ କିଶୋରୀ ଚରଣଙ୍କ ଗଳ୍ପ ସଙ୍କଳନ 'ଶେଷଗଳ୍ପ' ମନ, ଧର୍ମ, ଯୌନ ଚେତନା, ପରମ୍ପରାକୁ ନେଇ ଆଧୁନିକ ସାମାଜିକ ବ୍ୟବସ୍ଥାରେ ସୃଜନଶୀଳ ରାସ୍ତାଟିଏ । ଯେଉଁ ରାସ୍ତାରେ ଚାଲିଲେ ମଣିଷଟି ନିଜକୁ ନିଜେ ଚିହ୍ନିପାରିବ, ଆତ୍ମ-ସମୀକ୍ଷା କରିପାରିବ । ଯା'ଫଳରେ ସବାଶେଷରେ ସେ ଦ୍ୱିଧା କରିବ ନାହିଁ, ଚିନ୍ତାଗ୍ରସ୍ତ ହେବ ନାହିଁ ଯେ ବଂଚିବାହିଁ ଭଲ ଜୀବନଟିଏ । ଏବଂ ନିଜେ ନିଜେ ଜୀବନର ଫର୍ଦ୍ଦରେ ଲେଖିପାରି ନାହିଁ ଏକ ବିଶେଷ ଗୁରୁତ୍ୱପୂର୍ଣ୍ଣ ଗପ, ଶେଷଗଳ୍ପ ।



# ଠାକୁରଘର

*ଡଃ. ଦାଶରଥି ଦାସ*

'ଠାକୁରଘର' କଥାଶିଳ୍ପୀ ଶ୍ରୀ କିଶୋରୀଚରଣ ଦାସଙ୍କର ପଞ୍ଚମ ଗଳ୍ପସଂକଳନ । ସେ ଦିନ 'ଭଙ୍ଗା ଖେଳନା'ର ପ୍ରକାଶନ ଓଡ଼ିଆ କ୍ଷୁଦ୍ରଗଳ୍ପର ଯେଉଁ ନବଦିଗନ୍ତ ଉନ୍ମୋଚନ କରିଥିଲା, କୋଡ଼ିଏଟି ଗଳ୍ପର ସଦ୍ୟ ପ୍ରକାଶିତ ଏହି ସଙ୍କଳନଟି ତାହାକୁ ସଂପ୍ରସାରିତ ଓ ସମୁଦ୍ଭାସିତ ରଖିଛି । ଓଡ଼ିଆ କ୍ଷୁଦ୍ରଗଳ୍ପରେ ପୁଣି ଥରେ ଏଥିରେ ଆପାତଭଦ୍ର ମଧ୍ୟବିତ୍ତ ଜୀବନର ଭିତିରି ମନ ଉପରି ଆଚରଣର ଲୁଚକାଳି ଖେଳ ଉଦ୍‌ଘାଟିତ ହୋଇପାରିଛି । 'ଗଧମାନେ କ'ଣ କରନ୍ତି ?' ଦୋଷୀ, ପତ୍ନୀଙ୍କ ପ୍ରେମ, ଠାକୁରଘର, ପ୍ରେମ ନାରାୟଣ, ଆନନ୍ଦର ପୁଅ, ଜରୁରୀ ଅବସ୍ଥା, ଝରକା, କଳା କୋଇଲି, ଗଂଧ ଓ ଜଣେ ମାଉସୀ ଥିଲେ ଆଦି ଗଳ୍ପ ମଧ୍ୟବିତ୍ତର ମାନସବିକ୍ଷା ବ୍ରତ ପାଳିଛନ୍ତି । ଗଳ୍ପଗୁଡ଼ିକରେ ଘଟନା ଗୌଣ, ସମାଜ ମଧ ଅପ୍ରଧାନ । କଥାଶିଳ୍ପୀ ଅବଲୀଳାକ୍ରମେ ବହିର୍ଜୀବନର ବିକ୍ଷୋଭ ଓ ସଂଘାତକୁ ଅତିକ୍ରମ କରି ଜୀବନର ଅନ୍ତଃବାସ୍ତବତା (inner reality) ଖୋଜିଛନ୍ତି । ରୋମାଣ୍ଟିକ୍ ଆବେଗକୁ ପ୍ରଶ୍ରୟ ଦେଇ ନାହାନ୍ତି କି ସେଣ୍ଟିମେଣ୍ଟାଲ ମୁହୂର୍ତ୍ତ ରଚନାରେ ଆଗ୍ରହ ପ୍ରକାଶ କରି ନାହାନ୍ତି । ସବୁଠି ପ୍ରାଧାନ୍ୟ ପାଇଛି ମନନ ଓ ସୁତୀକ୍ଷ୍ଣ ମାନସ ବିଶ୍ଳେଷଣ । ଶିକ୍ଷିତ ମଧ୍ୟବିତ୍ତର ଜୀବନ ଦୂରରୁ ଦିଶେ ବଡ଼ ସୁଂଦର ଓ ସୌଖିନ; ସେଠାରେ ଯେପରି ଜୀବନ ଯାପନର କ୍ଲେଶ ପର୍ଯ୍ୟନ୍ତ ନାହିଁ । ସବୁ ସୁସ୍ଥ ଓ ଅସାଧାରଣ । ଶିଳ୍ପୀ ଶ୍ରୀ ଦାସ ଉପରୋକ୍ତ ଗଳ୍ପଗୁଡ଼ିକରେ ଆମର ସେହି ଭ୍ରାନ୍ତିକୁ ନିରସ ନକରି ସେମାନଙ୍କ ଜୀବନ ଯାତ୍ରାର ସ୍ଥୂଳତା ଓ ଇତରତା ଫେଡ଼ି ଦେଖାଇଛନ୍ତି । ମଧ୍ୟବିତ୍ତର ମାତୃଭକ୍ତିଠାରୁ ଆଁରମ୍ଭ କରି ପତ୍ନୀପ୍ରେମ ପର୍ଯ୍ୟନ୍ତ, ପରିବାରଠାରୁ ଆରମ୍ଭ କରି ବୃତ୍ତି ବ୍ୟବସାୟ ପର୍ଯ୍ୟନ୍ତ ସବୁଠାରେ ପୂରି ରହିଛି ଆଦର୍ଶହୀନତା ଓ ଆତ୍ମପ୍ରତାରଣା । ଅନ୍ୟାୟ ଅନୀତି ସହିତ ସେମାନେ ଗୋପନରେ ମିଳାମିଶା କରନ୍ତି; ଚରିତ୍ରହୀନତା, ସ୍ୱାର୍ଥପରତା, ନୀଚତା ଓ ନିଷ୍ଠୁରତା ମଧ୍ୟରେ ବଂଚିବାର କଳାକୌଶଳ ଦେଖନ୍ତି । ଦେହସଙ୍ଗମ ଓ ପ୍ରେମକୁ ସେମାନେ ନିତ୍ୟକର୍ମର ନିରୁତ୍ତାପ ଉଦାସୀନ ଅଭ୍ୟାସ ରୂପେ ସ୍ୱୀକାର କରିଥାନ୍ତି । ମିଳନ ସର୍ବତ୍ର ମୋଟା ରବର ଖୋଳରେ ବଂଧା । ଖୋଳ ଛିଣ୍ଡିଲେ ମନସ୍ତାପର ସୀମା ରହେ ନାହିଁ (ମନୋହର କାହାଣୀ) । ଏଷ୍ଟିମେଟ୍ ଅନୁଯାୟୀ ପତ୍ନୀ ମଧ୍ୟ ତାଙ୍କୁ ଯଥାସମୟରେ କୁଣ୍ଢାଇ ଧରନ୍ତି (ପତ୍ନୀପ୍ରେମ); ସେଠି ବିବେକ ଦଂଶନ ନ ଥାଏ ବୋଲି ନୁହେଁ, ମାତ୍ର ତାର

କୌଣସି ସ୍ପଷ୍ଟ ନିର୍ଦ୍ଦେଶ ନ ଥାଏ । ଏପରି ଜୀନକୁ ଶିଳ୍ପୀ ଶ୍ରଦ୍ଧା କରି ପାରନ୍ତି ନାହିଁ । ସେ ଯେତେଦୂର ସମ୍ଭବ କଥାଶିଳ୍ପୀ ଚେକଭଙ୍କ ପରି ବିଶ୍ୱାସ କରନ୍ତି, "A conscious life without a definite philosophy is no life, rather a burden and a nightmare." ତେବେ ପରିତ୍ରାଣ କାହିଁ ? ମୁକ୍ତି କାହିଁ ? ଶିଳ୍ପୀ ମଧ୍ୟ ଜଣେ ଶିକ୍ଷିତ ମଧ୍ୟବିତ୍ତ ମଣିଷ । କି ଘେନି ସେ ସେମାନଙ୍କଠାରୁ ଉର୍ଦ୍ଧ୍ୱରେ ବିଳସିବେ ? ତେଣୁ ତାଙ୍କ ଗଳ୍ପର ଦୃଷ୍ଟିଭଙ୍ଗୀ ବ୍ୟଙ୍ଗାତ୍ମକ ହୋଇଥିଲେହେଁ ଆବେଶ ସମ୍ବେଦନଶୀଳ ଓ ବିଷାଦମୟ ରହିଛି । ଅନ୍ୟ ପକ୍ଷରେ ସେ ମଧ୍ୟବିତ୍ତ ମଣିଷ ମାତ୍ର ନୁହନ୍ତି, ସେ ମଧ୍ୟ ଜଣେ ଅଧ୍ୟାତ୍ମବିଶ୍ୱାସୀ ଶିଳ୍ପୀ । ତାଙ୍କ ପାଖରେ ମତବାଦଠାରୁ ଜୀବନ ବଡ଼, ଜୀବନଠାରୁ ବଡ଼ ମଣିଷପଣିଆ । ଶୁଭ ବୁଦ୍ଧିର ପ୍ରେରଣାରେ ସଂବେଦନଶୀଳ ହୃଦୟର ଔଦାର୍ଯ୍ୟ ଓ ବିଶାଳତା ଗୁଣରୁ ସେ ସମଗ୍ର ଜୀବନ ସତ୍ୟର ଦାୟଭାଗୀ ହୋଇଥିବାରୁ ଶୂନ୍ୟତାକୁ ଶ୍ରଦ୍ଧା କରି ପାରିବେ ନାହିଁ । ପରିପୂର୍ଣ୍ଣତାକୁ ଖୋଜନ୍ତି ବୋଲି ସେ ଏହି ଶୂନ୍ୟତାକୁ ଭେଟିଛନ୍ତି । ସର୍ବକାଳୀନ ନ୍ୟାୟ ନୀତି ପାଖରେ ଦାୟବଦ୍ଧ ହୋଇଥିବାରୁ ସେ ମଧ୍ୟବିତ୍ତର ଆଦର୍ଶ ବିରାଗ ପ୍ରତି ବିମୁଖ ହୋଇ ଉଠିଛନ୍ତି । ଶିଳ୍ପୀର କର୍ତ୍ତବ୍ୟ ସେ ପାଳିଛନ୍ତି । ଶିଳ୍ପୀ ଜାଣନ୍ତି ଯେ, ସେ ମଧ୍ୟବିତ୍ତମାନଙ୍କ ମଝିରେ ଠିଆ ହୋଇଛନ୍ତି, କାହାର ଉପରେ ନୁହନ୍ତି କି ତଳେ ନୁହନ୍ତି । ତାଙ୍କର କାମ ହେଲା ସେହି କ୍ଳାନ୍ତ ଆଦର୍ଶବିମୁଖମାନଙ୍କ ସମ୍ମୁଖୀନ ହେବା, ପାପ ଓ ପ୍ରବୃତ୍ତିର ବନ୍ଦୀଶାଳାର ଦ୍ୱାର ମୁକ୍ତ କରିବା, ସେମାନଙ୍କ ସୁଖ ଦୁଃଖକୁ ଭରସା ଦେବା । ଯାହାଙ୍କୁ ସେ ବ୍ୟଙ୍ଗ କରନ୍ତି, ସେହିମାନଙ୍କ ବିରୁଦ୍ଧରେ ସେ ନିଜର ସାର୍ଥକତା ପ୍ରମାଣ କରିପାରିଛନ୍ତି । ତେଣୁ ସେ କାହାର ଶତ୍ରୁ ନୁହନ୍ତି । ସେମାନେ ପାପକୁ ଚିହ୍ନନ୍ତୁ । ପାପକୁ ନ ଚିହ୍ନିଲେ ମୁକ୍ତି କାହିଁ ? ମଧ୍ୟବିତ୍ତ ଜୀବନର ଅନ୍ତରଙ୍ଗ ଭାଷ୍ୟକାର ରୂପେ ଶିଳ୍ପୀ ଏପରି ଏକ ବୈଶିଷ୍ଟ୍ୟ ଅର୍ଜିଛନ୍ତି ଯେ, ଯାହା ନିକଟରେ କେବେ ବିସ୍ମୃତ ହେଉନାହିଁ ।

ସଙ୍କଳନଟିରେ ଅନେକ ଭଲ ଗଳ୍ପ । କୌତୂହଳୋଦୀପ୍ତ ଘଟନା କି ନାଟକୀୟ କଥାବସ୍ତୁ ଉପରେ ଆଦୌ ନିର୍ଭର ନ କରି ସତୀଚରିତାମୃତ, ଦୋଷୀ, ରସଗୋଲ୍ଲା, ପତ୍ନୀଙ୍କପ୍ରେମ, ଠାକୁରଘର, ଆନନ୍ଦର ପୁଅ ଓ ଜରୁରୀ ଅବସ୍ଥାଦି ଗଳ୍ପ କେବଳ ଆଙ୍ଗିକ, ଭାଷା ଓ ବକ୍ତବ୍ୟ ଦୃଷ୍ଟିରୁ ବଡ଼ ସାର୍ଥକ ହୋଇ ଉଠିଛନ୍ତି । ଭାଷାରେ କବିତାର ଶ୍ରୀ ଓ ସଂଯମ ସମୁଭିନ୍ନ ରହିଛି । ଆଙ୍ଗିକ ସ୍ୱଚ୍ଛ ଓ ଏକାଗ୍ର । ବକ୍ତବ୍ୟ ସାମଗ୍ରିକ ଜୀବନ ସତ୍ୟ ପାଖରେ ଦାୟବଦ୍ଧ । ଆବେଦନ ତେଣୁ "deep and disturbing" ଆବେଦନର ଏକ ଏକ ସ୍ତରରେ ସେଗୁଡ଼ିକ ମଧ୍ୟ ରୂପକାତ୍ମକ (allegorical) ହୋଇ ଉଠନ୍ତି । ''ଠାକୁରଘର'' ଗଳ୍ପରେ ସୁନନ୍ଦା ଦେବୀଙ୍କର ଅବସ୍ଥା ସଙ୍କଟାପନ୍ନ ହୋଇନାହିଁ ଯେ ଚିରନ୍ତନ ମାନବିକ ମୂଲ୍ୟବୋଧ ଆଜି ଜୀବନ ମରଣର ଘାଟିରେ ଉପନୀତ ହୋଇଛି । ସେଠି ତେଣୁ ପୁଅଝିଅଙ୍କ ଆତ୍ମକୈନ୍ଦ୍ରିକ ଉଦାସୀନ ବ୍ୟବହାର ମଧରେ ଆଧୁନିକ ମଧ୍ୟବିତ୍ତ ମଣିଷର ଜୀବନଚର୍ଯ୍ୟାର ସଙ୍କଟ, କ୍ଳାନ୍ତି, ଅଶ୍ରଦ୍ଧା ଓ ଆଦର୍ଶ-ବିରାଗର ସ୍ପଷ୍ଟ ଛବି ଫୁଟି

ଉଠିଛି । ଠାକୁର କେବଳ ପୃଥିବୀକୁ ଏହି ଆତ୍ମହତ୍ୟା ହାତରୁ ରକ୍ଷା କରି ପାରନ୍ତି । ବିନିର ଈଶ୍ୱର ବିଶ୍ୱାସ ମଧ୍ୟରେ ଶିଳ୍ପୀ ଜୀବନର ମୁକ୍ତି ଖୋଜିଛନ୍ତି, ମାଆ ବଂଚିଛି । ଗଳ୍ପର କଳ୍ପନା ମନୋଜ୍ଞ, ଜୀବନାନୁଭୂତି ନିବିଡ଼ । ଅନେକତ୍ର କଥାଶିଳ୍ପୀ ଚରିତ୍ରର ଅନ୍ତର୍ଭାଷଣ ଶୈଳୀ ବ୍ୟବହାର କରିଛନ୍ତି । ଗଳ୍ପ ଗଦ୍ୟରୂପକୁ ଅତିକ୍ରମି ପ୍ରାଣପ୍ରକୃତିରେ କବିତା ହୋଇ ଉଠିଛି । ଟି. ଏସ୍. ଏଲିୟଟ ଆଧୁନିକ କବିତାରେ ବଂଧନୀ ମଧ୍ୟରେ ବ୍ୟଙ୍ଗାତ୍ମକ ମନ୍ତବ୍ୟ ପ୍ରୟୋଗ (mocking comments in parenthesis)ର ଯେଉଁ ଶୈଳୀ ପ୍ରବର୍ତ୍ତନ କରିଥିଲେ, ଶ୍ରୀ ଦାସ ତାହାକୁ ସୁନିପୁଣ ଭାବରେ କ୍ଷୁଦ୍ରଗଳ୍ପରେ ଅଙ୍ଗୀଭୂତ କରି ଦେଇଛନ୍ତି । ତାହା ବେଶ୍ ପ୍ରୀତିକର ହୋଇ ପାରିଛି । ତେଣୁ ସଙ୍କଳନଟିରୁ ଆଧୁନିକ ଓଡ଼ିଆ କ୍ଷୁଦ୍ରକଳ୍ପର ବୈଚିତ୍ର୍ୟ, ବିସ୍ମୟ ଓ ଆନନ୍ଦ ଯେ କେହି ଉପଲବ୍ଧି କରିପାରିବେ ।



# ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଉପନ୍ୟାସରେ 'ସାତୋଟି ଦିନର ସତୀ', 'ନେତା ଓ ନେତ୍ରମଣି' ଓ 'ସକଳ ସନ୍ତାନ'

*ଡଃ. ବାଉରୀବନ୍ଧୁ କର*

ଗାଳ୍ପିକ କିଶୋରୀଚରଣ ସଂପ୍ରତି ଉପନ୍ୟାସ ରଚନାରେ ମନୋନିବେଶ କରିବା ଓଡ଼ିଆ ଉପନ୍ୟାସ ସାହିତ୍ୟ ପାଇଁ ଏକ ଶୁଭ ସମ୍ବାଦ ନିଶ୍ଚୟ । ଜୀବନର ପରିଣତ ବୟସରେ ସେ ଖଣ୍ଡିଏ ପରେ ଖଣ୍ଡିଏ ଉପନ୍ୟାସ ଲେଖିଛନ୍ତି । 'ସାତୋଟି ଦିନର ସତୀ' (୧୯୯୩), 'ସକଳ ସନ୍ତାନ' (୧୯୯୫), 'ନେତା ଓ ନେତ୍ରମଣି' (୧୯୯୬)– ଏହି ତିନିଖଣ୍ଡ ଉପନ୍ୟାସରୁ ଜଣେ ସାର୍ଥକ ଉପନ୍ୟାସ ଲେଖକ ଭାବରେ ତାଙ୍କ ପ୍ରତିଭାର ପରିଚୟ ମିଳେ । ଯଦି ଉପନ୍ୟାସର ସଂଜ୍ଞା ହୁଏ, 'ଜୀବନକୁ ବହୁ ଭାବରେ ବିଶ୍ଳେଷଣ କରିବା'– ତେବେ ସେ ଦୃଷ୍ଟିରୁ କିଶୋରୀ ଚରଣଙ୍କ ଏହି ଉପନ୍ୟାସ ତିନୋଟିର ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି । ପୁଣି କେହି ଉପନ୍ୟାସକୁ ମଣିଷର ସାମାଜିକ, ମାନସିକ ଓ ଆବେଗଗତ ସମସ୍ୟାର ସୂଚୀପତ୍ର ରୂପେ ଗ୍ରହଣ କଲେ ସୁଦ୍ଧା ତାହାଙ୍କ ଉପନ୍ୟାସର ଗୁରୁତ୍ୱକୁ ସ୍ୱୀକାର କରିବାକୁ ହେବ । ଏ ସକାଶେ ସାଂପ୍ରତିକ ଓଡ଼ିଆ ଉପନ୍ୟାସ ସାହିତ୍ୟର ଆଲୋଚନା କଲାବେଳେ କିଶୋରୀଚରଣଙ୍କ ଉପନ୍ୟାସମାନଙ୍କର ଅନୁଶୀଳନ ଅପରିହାର୍ଯ୍ୟ ମନେ ହୁଏ ।

କିଶୋରୀଚରଣଙ୍କ ଉପନ୍ୟାସ ତିନୋଟି ଭାବବସ୍ତୁ ଦୃଷ୍ଟିରୁ ପରସ୍ପରଠାରୁ ପୃଥକ୍ । ତାଙ୍କର ପ୍ରଥମ ଉପନ୍ୟାସ 'ସାତୋଟି ଦିନର ସତୀ'କୁ ଏକ ମନସ୍ତାତ୍ତ୍ୱିକ ଉପନ୍ୟାସ କୁହାଯାଇପାରେ । ମଣିଷର ମନୋବିଶ୍ଳେଷଣପୂର୍ବକ ତାର କ୍ରିୟା-କଳାପ ବିଶ୍ଳେଷଣ ଏଥିରେ କରାଯାଇଛି । ଏହି ଉପନ୍ୟାସର ନାୟିକା ନବବଧୂ ଅନୁପମାର ମନୋବିଶ୍ଳେଷଣ ଏଥିରେ ବଡ଼କଥା । ବିଭିନ୍ନ ପରିବେଶରେ ଅନୁପମାର ମାନସିକ ଅବସ୍ଥାର ଚିତ୍ର ଏଥିରେ ବେଶ୍ ସୁଲଭ । ଅନୁପମାର ଦିଲ୍ଲୀ ଅବସ୍ଥାନକାଳୀନ ମାନସିକ ଅବସ୍ଥା ଶାଶୂଘରଠାରୁ ଭିନ୍ନ । ପୁନଶ୍ଚ ଆମେରିକାରେ ତାହା ଆହୁରି ଅଲଗା । ଗୋଟିଏ ବଣଜଙ୍ଗଲ ଘେରା ଗ୍ରାମୀଣ ପରିବେଶ ଭିତରେ ବଢ଼ିଥିବା ଅନୁପମା ପରି ଝିଅର ସହରୀ ସଭ୍ୟତା ଭିତରକୁ ପ୍ରବେଶ, କାର୍ ଚଢ଼ିବା, ପ୍ଲେନ୍‌ରେ ଯିବା ପ୍ରଭୃତି ତା'ର ମାନସିକ ସ୍ତରରେ ଯେଉଁ ପରିବର୍ତ୍ତନର ସୂତ୍ରପାତ କରିଛି, ତାର ମାର୍ମିକ ଅଭିବ୍ୟକ୍ତି ହେଉଛି ଏଇ ଉପନ୍ୟାସ । ସେ ଶାଶୁଘରେ ଅଳ୍ପ ସମୟ କାଳାତିପାତ କରିଛି । ମାତ୍ର ସାତଦିନ । ତାପରେ ସେ ସ୍ୱାମୀ ସହିତ

ଆମେରିକା ଚାଲିଯିବ । ଏଇ ସାତଦିନ ରହଣି କାଳରେ ସେ ତାର ମନୋଭାବନା ଜଣାଇବାକୁ ଆଦୌ ଚାହିଁ ନାହିଁ । ଔପନ୍ୟାସିକ ଅତି ସତର୍କତାର ସହିତ ଅନୁପମାର ମନୋଜଗତର ଭାବନାକୁ ଉପନ୍ୟାସରେ ପ୍ରତୀକାତ୍ମକ ଭାଷାରେ ପ୍ରକାଶ କରିଛନ୍ତି । ଉପନ୍ୟାସର ପ୍ରତ୍ୟେକ ଅଧ୍ୟାୟର ନାମକରଣ ପ୍ରତୀକାତ୍ମକ ମନେହୁଏ । ଏଥିରେ ସମୁଦାୟ ନଅଗୋଟି ଅଧ୍ୟାୟ ରହିଛି । ପ୍ରତି ଅଧ୍ୟାୟ ସହିତ ଅନ୍ୟ ଅଧ୍ୟାୟମାନଙ୍କର ଅଙ୍ଗାଙ୍ଗୀ ସମ୍ବନ୍ଧ ମଧ୍ୟ ରହିଛି । ଏହି ଅଧ୍ୟାୟମାନଙ୍କର ନାମ ହେଲା 'ଧବଳୀ', 'ସୁନାଲୁହ', 'ରାଣୀଗୁମ୍ଫା', 'ପରପୁଅ', 'ଶିବ ଶିବାନୀ', 'ଓସାର ଆକାଶ', 'ଦୁଃଖ ଥିଲେ ଥାଉ', 'ମହାତ୍ମାଗାନ୍ଧୀଜି ଜୟ', 'ଗପ ନୁହେଁ' । ପ୍ରଥମ ଅଧ୍ୟାୟଟି 'ଧବଳୀ' କହିଲେ ଏହା ଅନେକାଂଶରେ ଧଳା ମାରୁତି ଓ୍ୱାନ୍ ଥାଉଜେଣ୍ଡ୍ କାରକୁ ହିଁ ବୁଝାଏ । ଔପନ୍ୟାସିକ ଏହି ଧବଳୀ ସଂପର୍କରେ ସୂଚନା ଦେଇ ଲେଖିଛନ୍ତି, 'ମାରୁତିକୁ ଦେଖୁଛ ? ମାରୁତି ଓ୍ୱାନ୍ ଥାଉଜେଣ୍ଡ ? ତୋ ବାପା ଯେଉଁ ଧବଳୀଟିଏ ଦେଇଛନ୍ତି ଆମକୁ, ତାକୁଇ ଦେଖି ହଜି ଯାଉଛୁ ?' ଏଠାରେ ଧବଳ ସହିତ ମଧ୍ୟ 'ଜ୍ୟୋତି ମହଲ'ର ସଂପର୍କ ରହିଛି । ସେମିତି ଦ୍ୱିତୀୟ ଅଧ୍ୟାୟ 'ସୁନାଲୁହ' କହିଲେ ରଙ୍କୁ ଭାଇର ସୁନା ଭଉଣୀ ଅନୁର ସୁନା ଲୁହକୁ ସୂଚିତ କରେ । 'ରାଣୀଗୁମ୍ଫା' କହିଲେ ମଣିଷର ଅସରନ୍ତି କାମନାବାସନାକୁ ହିଁ ବୁଝାଏ । ଏହି ଅଧ୍ୟାୟରେ ବୃଦ୍ଧ ଜେଜେ ଶ୍ୱଶୁରଙ୍କର ଅନୁ ସହ କଥୋପକଥନର ଚିତ୍ର ରହିଛି । 'ପରପୁଅ' ଅଧ୍ୟାୟରେ ମଣିଷର ଇତର ଭାବନା ଓ ତା'ର କ୍ରିୟାକଳାପ ଭିତରେ ରହିଥିବା ଅସ୍ଥିରତାର ଚିତ୍ର ସୂଚିତ । ଅନ୍ୟାନ୍ୟ ଅଧ୍ୟାୟଗୁଡ଼ିକର ସେହିପରି ଭାବବସ୍ତୁ ସହିତ ଗଭୀର ତାତ୍ପର୍ଯ୍ୟ ରହିଛି । ଏହି ଉପନ୍ୟାସଟିରେ ଅନୁ, ରଙ୍କୁଭାଇ, ବିଷନ୍‌ବାବୁ, ନବବାବୁ ପ୍ରଭୃତିଙ୍କ ମନ ଗହନର କଥାକୁ ପ୍ରକାଶ କରାଯାଇଥିଲେ ସୁଦ୍ଧା ଏଥିରେ ପ୍ରଚଳିତ ମୂଲ୍ୟବୋଧକୁ ଅସ୍ୱୀକାର କରାଯାଇ ନାହିଁ । ବରଂ ତଥାକଥିତ ଆଧୁନିକତା ନାମରେ ଯାହା ସବୁ ଚାଲିଛି, ତାକୁ ଏଥିରେ ଢେର ବିଦ୍ରୂପ କରାଯାଇଛି । ଉପନ୍ୟାସଟିରେ ମନୋବିଶ୍ଳେଷଣ ମୁଖ୍ୟ ହେଲେ ବି କାହାଣୀର ପ୍ରବହମାନତା ଯେପରି ରହିବା କଥା ରହିଛି ।

କିଶୋରୀଚରଣଙ୍କ ଦ୍ୱିତୀୟ ଉପନ୍ୟାସ 'ସକଳ ସନ୍ତାନ' ଏକ ଭିନ୍ନ ସ୍ୱାଦର ଉପନ୍ୟାସ । ସାରସ୍ୱତ ସାଧକମାନଙ୍କ ବିଚିତ୍ର ସଂସାର ଓ ସାମାଜିକ ଜୀବନକୁ ନେଇ ଏହି ଉପନ୍ୟାସଟି ରଚିତ । ଏ ଉପନ୍ୟାସ ସଂପର୍କରେ ସୂଚନା ପୂର୍ବକ ଏଥିରେ କୁହାଯାଇଛି, ''ତୋହରି ସନ୍ତାନ ଆମେ ଅଟୁ ସରବେ ।'' ଆମେ ସଭିଏଁ ମାଆ ଜନ୍ମଭୂମିର ସନ୍ତାନ ହେଲେ ଆମରି ଭିତରୁ କେତେ ମଧ୍ୟ ମାଆ ସରସ୍ୱତୀଙ୍କର ସନ୍ତାନ ହେବାକୁ ମନ ବଳାନ୍ତି । କିଭଳି ତାଡ଼ନା ଥାଏ ତାହା ପଛରେ ? ଏବଂ କବି ବୋଲାଇଲା ପରେ କିଏ କ'ଣ ହରାଇ ବସେ ଓ କାହାକୁ କ'ଣ ମିଳି ନ ମିଳିଲା ପରି ଲାଗେ ଆମର ଏଇ ସଂପର୍କ-ସଂକୁଳ ସମାଜରେ ? ଏଣେ ମା ମୁରୁକି ମୁରୁକି ହସି କାହାକୁ କିଭଳି ପରୀକ୍ଷାରେ ପକାନ୍ତି, ଏବଂ କାହା ମୁଣ୍ଡରେ ସୁନା କଳଶ ଢାଳି ଦିଅନ୍ତି, ତାହା ମଧ୍ୟ ଭାବିବାର କଥା । ପ୍ରେମ, ଘୃଣା, ଈପ୍‌ସା, ଯଶୋଲିପ୍‌ସା, ସ୍ୱାର୍ଥତ୍ୟାଗ ଏବଂ କେଉଁ ଏକ ଦୁର୍ଦ୍ଦମନୀୟ ସାରସ୍ୱତ

ଜ୍ୱାଳାରେ ଦଗ୍ଧ ତଥା ଉଜ୍ଜ୍ୱଳ ଲେଖକ ଲେଖିକାଙ୍କର ବିଚିତ୍ର ସଂସାରକୁ ନେଇ ରଚିତ ଏହି ଉପନ୍ୟାସ– 'ସକଳ ସନ୍ତାନ' । ଏହି ଉପନ୍ୟାସରେ ଲେଖକ, ସାହିତ୍ୟ ଆଲୋଚକ, ସାଧାରଣ ପାଠକମାନଙ୍କର ସାହିତ୍ୟକୁ ନେଇ ଯେଉଁ ପ୍ରତିକ୍ରିୟା– ତାହା ଯଥାର୍ଥ ରୂପ ନେଇଛି । ବିଶେଷ କରି ରାମହରିବାବୁ, ଶୈଳଙ୍କ କବିତା, ଶଚୀ ସ୍ୱାଇଁଙ୍କ ଆଧୁନିକ କବିତା ବିଚାର ଏ ଉପନ୍ୟାସରେ ବେଶ୍ ଉପଭୋଗ୍ୟ । ପୁଣି ସ୍ତରେ ସ୍ତରେ ମଧ୍ୟ ଆଧୁନିକ କବିତାର ଅଭାବ ନାହିଁ । ଯେମିତି, ରାମହରି ବାବୁଙ୍କ ଛାତ୍ର ଜୀବନର ପ୍ରଥମ କବିତା,–

> ''ନାଲି ପାଖୁଡ଼ାର ହସ ଢାଳି ଦେଇ
> ଆସିଛ ଗୋ ସଖୀ,
> ଆମ ଏଇ ଅନିର୍ଦ୍ଦିଷ୍ଟ ଅସ୍ଥିର କୁଟୀରେ
> ସାଦା ସିଧା ଧଳା ଘରଟିରେ
> ଚମତ୍କାରୀ ରଙ୍ଗ ଟିକେ ମାଖିଦେବା ପାଇଁ....''

ରାମହରି– ଯାହାକୁ ଦିନେ ଜନ୍ମଦାତ୍ରୀ ମା' ତାର କହିଥିଲା, ''କୋଉଠି ଥିଲା ଏଇ ବୋକା ଛୁଆଟା, ମୋରି କପାଳକୁ''– ଏ ହେଉଛି ତା'ରି କବିତା । ଯେଉଁ କବିତାରୁ ତା'ର ଏକ ଉଚ୍ଚ ଭବିଷ୍ୟତର ଇଙ୍ଗିତ ମିଳିଛି । ଶଚୀ ସ୍ୱାଇଁର ଆଧୁନିକ କବିତାର ଯେଉଁ ଧରଣର ବ୍ୟାଖ୍ୟା– ତାହା ଯେତିକି ଭାବଗର୍ଭକ, ସେତିକି ବିଦ୍ରୂପାତ୍ମକ ମଧ୍ୟ । ଉପନ୍ୟାସଟିରେ ସାହିତ୍ୟ ସଭା, ସାହିତ୍ୟ ପ୍ରତି ନାରୀମାନଙ୍କର ଶ୍ରଦ୍ଧା, ସାଧାରଣ ମଣିଷର ମନୋଭାବକୁ ଔପନ୍ୟାସିକ ବେଶ୍ ସ୍ୱାଭାବିକ ଢଙ୍ଗରେ ପ୍ରକାଶ କରିଛନ୍ତି । ପୁଣି ଏଥିରେ 'ମତ୍ସ୍ୟରାଜ ପ୍ରତି', 'ଠେକୁଆ ପ୍ରତି' ପରି ଯେଉଁ କବିତାଗୁଡ଼ିକ ସଂଯୋଜିତ ହୋଇଛି, ତାହା ପାଠକ ପାଇଁ ଅତ୍ୟନ୍ତ ପ୍ରୀତିକର ମନେହୁଏ । ଉପନ୍ୟାସରେ ସନାତନ ବାବୁ, ଶଶଧର ବାବୁ, ସଂଜୀବ ପରିଡ଼ା ଇତ୍ୟାଦି ଚରିତ୍ରମାନଙ୍କର ଉପସ୍ଥାପନା ଉପନ୍ୟାସର ଭାବବସ୍ତୁକୁ ପ୍ରଭାବଶାଳୀ କରିବାରେ ସହାୟକ ହୋଇଛନ୍ତି । ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଲେଖକର ସାରସ୍ୱତ ଜୀବନର ଅଶ୍ରୁ-ପୁଲକକୁ ନେଇ ଏ ଧରଣର ଉପନ୍ୟାସ ଆଉ ନାହିଁ କହିଲେ ଚଳେ । ଏ ଦୃଷ୍ଟିରୁ 'ସକଳ ସନ୍ତାନ' ଓଡ଼ିଆ ଉପନ୍ୟାସ ସାହିତ୍ୟର ଇତିହାସରେ ଏକ ନୂତନ ସଂଯୋଗ କହିଲେ ଅଯଥାର୍ଥ ହେବ ନାହିଁ ।

କିଶୋରୀଚରଣଙ୍କ ତୃତୀୟ ଉପନ୍ୟାସ 'ନେତା ଓ ନେତ୍ରମଣି'କୁ ଏକ ଉଚ୍ଚକୋଟୀର ରାଜନୀତିକ ଉପନ୍ୟାସ କୁହାଯାଇପାରେ । ଏହି ଉପନ୍ୟାସରେ ରାଜନୀତିକ ନେତାମାନଙ୍କ କ୍ରିୟାକଳାପ ସଂପର୍କରେ ଅନେକ ଚମତ୍ପ୍ରଦ ତଥ୍ୟ ରହିଛି । ସେ ମଧ୍ୟ ଏଥିରେ ନେତାମାନଙ୍କର ସରକାରୀ କର୍ମଚାରୀଙ୍କ ଉପରେ ପ୍ରଭାବକୁ ଦେଖାଇବାକୁ ଭୁଲି ନାହାନ୍ତି । ଉପନ୍ୟାସଟିରେ ଛାତ୍ରନେତା, ଯୁବନେତା, ମନ୍ତ୍ରୀ ପ୍ରଭୃତି ବିଭିନ୍ନ ଧରଣର ନେତାଙ୍କୁ ପାଠକେ ଭେଟିବେ । ନେତାଙ୍କ ସଂପର୍କରେ ବିଭିନ୍ନ ଚରିତ୍ରମାନଙ୍କ ବକ୍ତବ୍ୟରୁ ଔପନ୍ୟାସିକଙ୍କର ଦୃଷ୍ଟିଭଙ୍ଗୀ ସ୍ପଷ୍ଟ ବୁଝି ହୁଏ ।

ବିଶେଷକରି ଏ ସମ୍ପର୍କରେ ମୋହନ ବାବୁଙ୍କ ବକ୍ତବ୍ୟରୁ ଔପନ୍ୟାସିକଙ୍କର ନେତାଙ୍କ ପ୍ରତି ରହିଥିବା ମନୋଭାବର ପରିଚୟ ମିଳେ । ତାହା ଏହିପରି, ''ନେତାପଣିଆ ଜିନିଷଟା ପ୍ରତି ତାଙ୍କର ଏତ ତାଚ୍ଛଲ୍ୟ ଭାବ ରହିଛି । ଛାତ୍ରନେତା, ଯୁବନେତା ତଥା ଦେଶର ସବୁ ଧରଣର ନେତାମାନଙ୍କୁ ସେ ଏକ ନିକୃଷ୍ଟ ଧରଣର ଜୀବ ବୋଲି ଭାବନ୍ତି । ଯେଉଁମାନଙ୍କର ଜନ୍ମଗତ ବୁଦ୍ଧି ଯାହା ଥାଉ ବା ନଥାଉ ଏବଂ ସେମାନେ ଯେତେ ପାଠ ପଢ଼ି ଥାଆନ୍ତୁ ପଛେ, ତାଙ୍କ ମଗଜ ବନ୍ଧା ପଡ଼ିଥାଏ ଇତର ସାଧାରଣ ଲୋକଙ୍କ ପାଖରେ । ତେଣୁ ସେମାନେ ସ୍ୱଭାବ-ନିର୍ବୋଧ ।'' ଏ ମନ୍ତବ୍ୟଟିରୁ ନେତାମାନଙ୍କ ସଂପର୍କରେ ଔପନ୍ୟାସିକଙ୍କ ଧାରଣା ବୁଝିହୁଏ । ଉପନ୍ୟାସଟି ପଢ଼ିଲେ ସାଂପ୍ରତିକ କାଳର ନେତାମାନଙ୍କର ସ୍ୱଭାବସିଦ୍ଧ ଆଚରଣ, ପ୍ରବଞ୍ଚନା, ସରକାରୀ ଶୃଙ୍ଖଳା ଭାଙ୍ଗି ସ୍ୱାର୍ଥହାସଲ ମନୋବୃତ୍ତି ଇତ୍ୟାଦିର ସୂଚନା ମିଳେ ।

କିଶୋରଚରଣଙ୍କ ଉପନ୍ୟାସର ବିଶେଷ ଆକର୍ଷଣ ହେଉଛି, ଏହାର ରଚନାଶୈଳୀ । ପ୍ରସିଦ୍ଧ ଔପନ୍ୟାସିକ ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସ ପରି କିଶୋରୀଚରଣଙ୍କ ଉପନ୍ୟାସକୁ ଗଦ୍ୟ ମହାକାବ୍ୟର ଗୌରବ ଦିଆଯାଇପାରେ । ସ୍ତରେ ସ୍ତରେ ଚିତ୍ରକଳ୍ପ, କବିତ୍ୱପୂର୍ଣ୍ଣ ବର୍ଣ୍ଣନା, ଶିଷ୍ଟ-ଅଶିଷ୍ଟ ଶବ୍ଦର ସାର୍ଥକ ପ୍ରୟୋଗ ଓ ପାତ୍ରମୁଖୀ ଭାଷା ତାହାଙ୍କ ଉପନ୍ୟାସର ସ୍ୱାତନ୍ତ୍ର୍ୟ ପ୍ରକଟ କରିଛି । ଏଠାରେ ଏକ ଦୃଷ୍ଟାନ୍ତ ଦେଖନ୍ତୁ; ''ନିଦ, ଆହୁରି ନିଦ, ଆହୁରି ଆହୁରି ନିଦ । ସେଇଠୁ ବିରାଜ ମହାନ୍ତି ଖଲାସ ସବୁଦିନ ପାଇଁ । ତାର ଗୁଣ ନାହିଁ କି ଦୋଷ ନାହିଁ, ଗନ୍ଧ ନାହିଁ, କିଛି ବୋଲି କିଛି ନାହିଁ... ବିରାଜ ବାବୁ ବିଦାୟ ମାଗି ନେଲେ ସଂସାର ଠାରୁ ।'' (ନେତା ଓ ନେତ୍ରମଣି) ଏଇ ଧରଣର ଶୈଳୀ ଅନେକାଂଶରେ ଗୋପୀନାଥ ମହାନ୍ତିଙ୍କ ଅନୁରୂପ । କିଶୋରୀଚରଣଙ୍କ ଉପନ୍ୟାସର ଭାଷାକୁ ଗୋପୀନାଥଙ୍କ ଭାଷାର ଆଧୁନିକ ସଂସ୍କରଣ କହିବା ଉଚିତ ହେବ । ତଫାତ୍ ଏତିକି ଗୋପୀବାବୁ କହି ଚାଲନ୍ତି, କେଉଁଠି ବନ୍ଦ ହେବ ଜାଣିପାରନ୍ତି ନାହିଁ । କିଶୋରୀ ବାବୁ ସେତକ ଜାଣନ୍ତି । କେଉଁଠୁ ଆରମ୍ଭ କରି କେଉଁଠି ସାରିବାକୁ ହେବ, ତାହା ଔପନ୍ୟାସିକ କିଶୋରୀଚରଣଙ୍କୁ ଭଲ ଭାବରେ ଜଣା ।

ବିଶିଷ୍ଟ ଗାଳ୍ପିକ କିଶୋରୀଚରଣ ସାଂପ୍ରତିକ କାଳରେ ଉପନ୍ୟାସ ରଚନା କରିବା ଆମ ସାହିତ୍ୟ ପାଇଁ ନୂତନ ଆଶା ସଞ୍ଚାର କରିଛି । ଯେଉଁ ସମୟରେ ଉପନ୍ୟାସ ରଚନାରେ ବିଶେଷ ଆଗ୍ରହ ଓଡ଼ିଆ ଲେଖକମାନଙ୍କର ପରିଲକ୍ଷିତ ହେଉ ନାହିଁ, ସେତିକିବେଳେ କିଶୋରୀଚରଣ ଅଳ୍ପ ସମୟ ଭିତରେ ତିନୋଟି ଉପନ୍ୟାସ ଲେଖି ଓଡ଼ିଆ ଉପନ୍ୟାସକୁ ନୂତନ ଦିଗ୍‌ଦର୍ଶନ ଦେଇଛନ୍ତି ।



# ସ୍ୱର୍ଗସୁଖ ଖୋଜୁଥିବା ମଣିଷମାନଙ୍କ ପାଇଁ ଏକ ଆଳାପ : ସ୍ୱର୍ଗସୀମା

*ଡକ୍ଟର ବୈଷ୍ଣବ ଚରଣ ସାମଲ*

ଓଡ଼ିଆ ସାହିତ୍ୟର ପ୍ରସିଦ୍ଧ ଗାଳ୍ପିକ କିଶୋରୀ ଚରଣ ଦାସ ଏବେ ଉପନ୍ୟାସ ରଚନାରେ ହାତ ଦେଇ କେବଳ ଯେ ଚାରିଖଣ୍ଡ ଉପନ୍ୟାସ ପ୍ରକାଶ କରିସାରିଲେଣି ତାହା ନୁହେଁ; ଗଳ୍ପପରି ଉପନ୍ୟାସ ରଚନାରେ ମଧ ଅପୂର୍ବ ସିଦ୍ଧିର ପରିଚୟ ଦେଇପାରିଛନ୍ତି । ତାଙ୍କର ଉପନ୍ୟାସଗୁଡ଼ିକ ଶୈଳୀଦୃଷ୍ଟିରୁ ସ୍ୱତନ୍ତ୍ର ବାରି ହୋଇପଡ଼ନ୍ତି ଓ ସାମ୍ପ୍ରତିକ କାଳର ସୁଖ ପଛରେ ଧାଉଁଥିବା ନରନାରୀଙ୍କ ଅବଚେତନର ରହସ୍ୟ ଉନ୍ମୋଚନ ଦିଗରେ ସେଗୁଡ଼ିକ ଯେ କେତେ ସାର୍ଥକ ତାହା ପାଠକଲା ମାତ୍ରେ ଜଣା ଯାଇଥାନ୍ତି । 'ସ୍ୱର୍ଗସୀମା' (୧୯୯୮) ତାଙ୍କ ସଦ୍ୟ ପ୍ରକାଶିତ ଉପନ୍ୟାସ ଓ ଫ୍ରେଣ୍ଡସ୍ ପବ୍ଲିଶର୍ସ ଏପରି ଏକ ଉପନ୍ୟାସ ପ୍ରକାଶ କରି ଉନ୍ନତ ରୁଚିର ମଧ ପରିଚୟ ଦେଇଅଛନ୍ତି ।

'ସ୍ୱର୍ଗସୀମା' ଗତାନୁଗତିକ ଉପନ୍ୟାସ ନୁହେଁ । ଏହା ଯେପରି ଉପନ୍ୟାସ ଭିତରେ ଉପନ୍ୟାସ (Novel within the novel) କୁ ନେଇ ଗତି କରିଛି ଓ ଏହା ମୁଖ୍ୟତଃ ଦେଖାଇ ଦେଇଛି ସାମ୍ପ୍ରତିକ କାଳର ସ୍ୱର୍ଗସୁଖ ଚାହୁଁଥିବା ବ୍ୟୁରୋକ୍ରାଟ ଏବଂ କ୍ଷମତାସୀନ ରାଜନୀତିକ ନେତାମାନଙ୍କର ହିପୋକ୍ରାସିକୁ ଓ ଭିତରର ଛନ୍ଦହୀନ ଓ ଏକାକୀ ହୋଇଯାଉଥିବା ବିକୃତ ବ୍ୟକ୍ତିସତ୍ତାକୁ । କ୍ଷମତା-ରାଜନୀତି ପାଖରେ ଏହି ବ୍ୟୁରୋକ୍ରାଟମାନେ ଆଜ୍ଞାଧୀନ ଭୃତ୍ୟ ଭାବରେ ଅଭିନୟ କରନ୍ତି । ପ୍ରକୃତରେ ସେହିମାନେ ହିଁ ପ୍ରଭୁ । ଗଣତନ୍ତ୍ରର ଏହି ଶ୍ଳେଷକୁ ଲେଖକ ରୂପାୟନ କରିଅଛନ୍ତି । ଆଇ.ଏ.ଏସ. ହୋଇଗଲା ପରେ ସେହି ବ୍ୟକ୍ତିମାନେ ଯେଉଁ ସ୍ତରରେ କାରବାର କରନ୍ତି ସେଠି ଆଉ ସଂକୀର୍ଣ୍ଣ ସାଂସ୍କୃତିକ ଭେଦାଭେଦ ରହେ ନାହିଁ । ସେଠି ଜାତି ଧର୍ମ ଭାଷା ସବୁ ଯେମିତି ଏକାକାର ହୋଇଯାଏ । ଡଃ.ଜି.କେ. ଆନନ୍ଦନ୍ ଓ ସୁଶୀଳାଙ୍କ ମଧରେ ବିବାହ ସେହି ସଂସ୍କୃତିକୁ ମନେ ପକାଇ ଦିଏ । ଡଃ ଆନନ୍ଦନ୍ ସ୍ୱାଧୀନତା ପରବର୍ତ୍ତୀ ବ୍ୟୁରୋକ୍ରାଟ ଶ୍ରେଣୀର ପ୍ରତିନିଧି । ଘରେ ସେ ଯେପରି ଗମ୍ଭୀର ଓ ନିର୍ଲିପ୍ତ । ଗୋଟିଏ ଭିନ୍ନ ବ୍ୟକ୍ତିତ୍ୱ ତାଙ୍କ ଭିତରେ ଫୁଟି ଉଠେ । ସ୍ତ୍ରୀ, ପୁତ୍ର, ବନ୍ଧୁ, ପଡ଼ୋଶୀ ସମସ୍ତଙ୍କ ସହିତ ମପାଚୁପା କଥା । ସ୍ତ୍ରୀ ସୁଶୀଳା ଆଧୁନିକ

ଅଭିଜାତ ଶ୍ରେଣୀର କନ୍ୟା । ହେଲେ ମଧ ତା'ଭିତରେ କିନ୍ତୁ ଗୋଟାଏ ସରଳ ଅମାୟିକ ବ୍ୟକ୍ତିତ୍ୱ ଦେଖାଦିଏ । ଏକମାତ୍ର ପୁତ୍ର ରାଜ୍ ପ୍ରତି ତାର ମମତା । ପଡ଼ୋଶୀ ମୀନାକ୍ଷୀ ଓ ତାର ସ୍ୱାମୀ ସୁରେଶ ପ୍ରତି ତା'ର ସ୍ନେହ । ଅଥଚ ଡଃ ଅନନ୍ଦନ୍ ଏସବୁ ପ୍ରତି ଅନାସକ୍ତ । ତାଙ୍କ ଆଇ.ଏ.ଏସ୍. ବ୍ୟକ୍ତିତ୍ୱ ତାଙ୍କୁ ସମ୍ପୂର୍ଣ୍ଣ ଅଲଗା କରି ରଖେ । ପତ୍ନୀ ସୁଶୀଳା ଯୋଗୁଁ ତାଙ୍କର ପରୋକ୍ଷରେ ଉପକାର ନହୁଏ, ନୁହେଁ । ତଥାପି ତାଙ୍କର ବିଶ୍ୱାସର ବୃତ୍ତରେ ସ୍ତ୍ରୀ ନାହିଁ, ପୁତ୍ର ନାହିଁ, ବନ୍ଧୁନାହିଁ । ସମସ୍ତଙ୍କଠାରୁ ସେ ଦୂରେଇ ରହି ଆପଣାର କଳ୍ପ ସ୍ୱର୍ଗ କାମନା କରନ୍ତି । ରାଗ ଓ ପ୍ରେମ ଇତ୍ୟାଦି ଭାବାବେଗ ସବୁ ତାଙ୍କର ଷ୍ଟିଲ୍ ଫ୍ରେମ୍‌ରେ ବନ୍ଧା ହୋଇ ରହିଥାଏ । ମିଷ୍ଟର ବିନୟ ଭୂଷଣ ଦେବଚୌଧୁରୀ ଓ ଆହୁରି କେତେଜଣ ଆଇ.ଏ.ଏସ୍.ଙ୍କ ଚରିତ୍ରକୁ ମଧ ଲେଖକ ପ୍ରସଙ୍ଗକ୍ରମେ ଆଣିଛନ୍ତି ।ଏହିମାନେ ମୂର୍ତ୍ତିମନ୍ତ କ୍ଲୀବତ୍ୱର ଏକ ମହାନ୍ ସତ୍ତା, ଯାହାର ଭାଷା ନାହିଁ, ଜାତି ନାହିଁ, ଭାବନା ବି ନାହିଁ, ରାଗ ଦ୍ୱେଷ ନାହିଁ । (ପୃ.୨୭) । ଡଃ ଆନନ୍ଦନ୍‌ଙ୍କୁ ବିନୟଭୂଷଣ ଗୁରୁ ମନେ କରନ୍ତି । ଅଥଚ ଉଭୟଙ୍କ ମଧରେ ଦୂରତା ଅନେକ । ବିନୟଭୂଷଣ ଖୁସ୍‌ବାସିଆ ଓ ଖିଆଲ ମିଂଜାସ୍‌ର ବ୍ୟକ୍ତି । ତାଙ୍କ ଚରିତ୍ର ମଧ ବ୍ୟଞ୍ଜିତ ହୋଇଛି ମନୀଷା ସହିତ ସାକ୍ଷାତବେଳେ ଓ ମନୀଷାର ମାଆ ଚାରୁବାଳାଙ୍କୁ ସାକ୍ଷାତ ଦେଲାବେଳେ । ସୁଶୀଳା, ମୀନାକ୍ଷୀ, ମଞ୍ଜୁଶ୍ରୀ, ମନିଷା, ଚାରୁବାଳା ପ୍ରତ୍ୟେକ ନାରୀ ଚରିତ୍ର ନିଜ ନିଜ ସ୍ତରରେ ଜୀବନ୍ତ ହୋଇଉଠିଛନ୍ତି । ପ୍ରତ୍ୟେକ ଚରିତ୍ର ସଂଯତ ଓ ଭିନ୍ନ ଭିନ୍ନ ନାରୀତ୍ୱର ଆବେଗରେ ମୂର୍ତ୍ତିମନ୍ତ ।

ଏସବୁ ସତ୍ତ୍ୱେ ଉକ୍ତ ଉପନ୍ୟାସର ମୁଖ୍ୟ ପ୍ରସଙ୍ଗ ହେଉଛି ସ୍ୱର୍ଗସୁଖକାମୀ ବ୍ୟୁରୋକ୍ରାଟ ଓ ଦେଶକୁ ଲୁଟ୍ କରୁଥିବା ରାଜନୀତିକ ନେତା । ଦେଶର ପ୍ରଧାନମନ୍ତ୍ରୀଙ୍କୁ ଦଳର ଅସନ୍ତୁଷ୍ଟ ମନ୍ତ୍ରୀ ବିରୋଧ କଲେ ସେ ଆଉ ମନ୍ତ୍ରୀମଣ୍ଡଳରେ ରହିପାରେ ନାହିଁ, ଦଳରୁ ବାହାରି ସେ ନୂଆଦଳ ଗଢ଼େ । ଭାରତୀୟତା ବୋଧକୁ ପ୍ରଚାର କରେ । ଏହିପରି ଜଣେ ରାଜନୀତିକ ନେତା ପଣ୍ଡିତ ବିଜୟଭାସ୍କର ମିଶ୍ର 'ମହାଭାରତୀୟ ପରିଷଦ' ଗଠନ କରି 'ଭାରତ ବଂଚାଅ' ଧ୍ୱନି ଦେଲେ । ପ୍ରଧାନମନ୍ତ୍ରୀ ପୁରୁଷୋତ୍ତମ ସୁବ୍‌ତାଙ୍କର, ବାଣିଜ୍ୟ ମନ୍ତ୍ରୀ କୃଷ୍ଣଲାଲ ଭାର୍ଗବ ଓ ତାଙ୍କର ଆଉ କେତେଜଣ ସହଯୋଗୀଙ୍କ ସହିତ ନିଜର ସିଂହାସନକୁ ମଜ୍‌ଭୁତ ରଖିବା ପାଇଁ ଉଦ୍ୟମ କଲେ । ଔପନ୍ୟାସିକ ଏହି ପ୍ରସଙ୍ଗରେ ସାମ୍ପ୍ରତିକ ରାଜନୀତି ଓ ବ୍ୟୁରୋକ୍ରାସିର ଛଦ୍ମରୂପକୁ ବେଶ୍ ଚମତ୍କାର ଭାବରେ ରୂପ ଦେଇଛନ୍ତି ଓ ଗୋଟାଏ ତିର୍ଯ୍ୟକ୍ ବ୍ୟଙ୍ଗ ମାଧମରେ ସେଇ ଛଦ୍ମତାର ଆବରଣକୁ ଖୋଲି ଦେବାକୁ ଚେଷ୍ଟା କରିଅଛନ୍ତି । ପ୍ରଧାନମନ୍ତ୍ରୀ କେନ୍ଦ୍ର ସରକାରଙ୍କ ସଚିବ, ଅତିରିକ୍ତ ସଚିବମାନଙ୍କୁ ଉଦ୍‌ବୋଧନ ଦେଲେ ତାଙ୍କ ଦଳର ନୀତି ଓ ଆଦର୍ଶ ବିଷୟରେ । ଭାରତୀୟତାର ମିଛ ମନ୍ତ୍ରକୁ ବାତିଲ କରି 'ଭାରତ ଧନୀ ହେଉ, ଭାରତ ଧନ୍ୟ ହେଉ' ଘୋଷଣା କଲେ । ପ୍ରବୀଣ, ଭୃତ୍ୟମାନେ ତାଙ୍କ କଥାକୁ ପିଇଗଲେ । ଚିରାଚରିତ ପ୍ରତିଶ୍ରୁତି 'ୟେସ୍ ସାର୍' ମାଧମରେ ସେମାନେ

କହିଲେ– ''ଆମେ ବୁଝିଲୁଣି ଏଥର । ଆମେ କରିଯିବୁ ଯାହା କରିବା କଥା ଏବଂ ଠିକଣା ଶବ୍ଦ ଦେଇ କଥାଟାକୁ ବୁଝେଇ ଦେବୁ ଆପଣଙ୍କ ଭୋଟଦାତାମାନଙ୍କୁ ।'' (ପୃ.୫୩) ଏଇମାନେ ଦେଶର ସର୍ବୋଚ୍ଚ ପଦବୀଧାରୀ । ସେମାନେ କ୍ଷମତାସୀନ ଦଳର ଅନୁଗତ ଭୃତ୍ୟ । ଯେତେବେଳେ ଯେଉଁ ଦଳ ଶାସନ ଗାଦିରେ ବସନ୍ତି, ସେତେବେଳେ ଏମାନେ ତାଙ୍କର ଗୋଟିପଣେ ହୋଇଯାଆନ୍ତି । ଏମାନେ ଜାଣନ୍ତି ଯେ ଇନ୍ଦ୍ର ପରେ ଇନ୍ଦ୍ର ଆସନ୍ତି । ଶଚୀ କିନ୍ତୁ ଅପରିବର୍ତ୍ତନୀୟା । ଯିଏ ଯେଉଁ ଚେହେରା ନେଇ ଆସିଥାଉ ନା କାହିଁକି ସମସ୍ତେ ଗୋଟିଏ ଛାଞ୍ଚରେ ପଡ଼ିଯାଆନ୍ତି । ଡଃ. ଆନନ୍ଦନ୍ ପ୍ରଧାନମନ୍ତ୍ରୀଙ୍କ ପ୍ରିୟପାତ୍ର ହୋଇ ତାଙ୍କର ହେଲେ ସ୍ୱତନ୍ତ୍ର ସଚିବ । ତାଙ୍କର କ୍ଷମତା ବଢ଼ିଗଲା । ସେ ସ୍ୱର୍ଗରେ ପହଞ୍ଚିଗଲେ । ମନ୍ତ୍ରୀମାନଙ୍କର ଯାବତୀୟ ଅପକର୍ମକୁ ସେ ଘଣ୍ଟ ଘୋଡ଼ାଇ ରଖିଲେ । ଗୋପନ ଫାଇଲ ସବୁ ଲୁଚାଇ ରଖାଗଲା ମନ୍ତ୍ରୀଙ୍କ ଘରେ । ପ୍ରଭୁ ଓ ଭୃତ୍ୟ ଏକ ହୋଇଗଲେ । ଏଥର ଦେଶର ହରିଲୁଟ ଆଉ ବା କେତେ ମାତ୍ର !

ଡଃ. ଆନନ୍ଦନ୍ ବ୍ୟୁରୋକ୍ରାଟ । ସେ ମନ୍ତ୍ରୀଙ୍କର ଏକାନ୍ତ ଅନୁଗତ । ନିଜର ପୁତ୍ର ଡ୍ରଗ୍‌ସ ଖାଇ ନଷ୍ଟ ହୋଇଯାଉଥିଲେ ମଧ୍ୟ ସେଥିପ୍ରତି ଭ୍ରୂକ୍ଷେପ ନାହିଁ । ସୁରେଶ ତାଙ୍କର ପୁତ୍ରକୁ ଉଦ୍ଧାର କରିଥିଲେ ମଧ୍ୟ ସୁରେଶ ପ୍ରତି କୃତଜ୍ଞତା ନାହିଁ । ନୟନ ମହାନ୍ତି ତାଙ୍କ ପୁତ୍ରକୁ ମିଉଜିକ୍ ଶିଖାଇ ତାର ମନକୁ ଭୁଲାଇ ରଖୁଥିଲେ ମଧ୍ୟ ନୟନ ପ୍ରତି ଶ୍ରଦ୍ଧା ନାହିଁ । ସେ ଅନ୍ୟ ବ୍ୟୁରୋକ୍ରାଟମାନଙ୍କଠାରୁ ନିଆରା । ପଦପଦବୀର ସୁଯୋଗ ନେଇ ଥାର୍ଡ଼କ୍ଲାସ୍ ଗପ କବିତାକୁ ତଥାକଥିତ ସାହିତ୍ୟିକଙ୍କ ଦ୍ୱାରା ପ୍ରଶଂସିତ କରାଇ ଯେଉଁ ପଦବୀଧାରୀମାନେ ପୁରସ୍କୃତ ହୁଅନ୍ତି ସେମାନଙ୍କୁ ସେ ପସନ୍ଦ କରନ୍ତି ନାହିଁ । ସେ ନିଜକୁ ସରକାରଙ୍କର କର୍ତ୍ତବ୍ୟନିଷ୍ଠ ଭୃତ୍ୟ ମନେ କରନ୍ତି । ଏହିପରି ବିଶ୍ୱସ୍ତ ଭୃତ୍ୟମାନଙ୍କ ସାହାଯ୍ୟରେ ଅସାଧୁ ରାଜନୀତିକ ନେତାମାନେ ମେଣ୍ଟବାନ୍ଧି ଦେଶକୁ ଲୁଣ୍ଠନ କରନ୍ତି । ଆଇନ୍ ସଂଶୋଧନ କରି ବା ନୂତନ ନୂତନ ଆଇନ୍ ପାଶ୍ କରାଇ ପ୍ରତିପକ୍ଷମାନଙ୍କୁ କାରାରୁଦ୍ଧ କରାନ୍ତି । କ୍ଷମତା ଓ ଉପଭୋଗ ନିଶାରେ ମସ୍‌ଗୁଲ ହୋଇଯାନ୍ତି । ଏହିମାନେ ସାଧାରଣ ମଣିଷଙ୍କ ସରଳ ବିଶ୍ୱାସୀ ମନ ଉପରେ ଅତ୍ୟାଚାର କରନ୍ତି, କେବଳ କ୍ଷମତା ପରେ କ୍ଷମତା ଉପଭୋଗ ପାଇଁ । ବ୍ୟୁରୋକ୍ରାଟମାନେ ନେତାମାନଙ୍କୁ ଭଲ ପରାମର୍ଶ ଦେଇପାରନ୍ତି ନାହିଁ । ବରଂ ସେମାନଙ୍କ ଅପକର୍ମର ସାଥୀ ହୋଇଯାଆନ୍ତି । ଡଃ. ଆନନ୍ଦନ୍ ଏହିପରି ଜଣେ ପଦସ୍ଥ ବ୍ୟୁରୋକ୍ରାଟ୍ । ଦୁର୍ନୀତିଗ୍ରସ୍ତ ସରକାରଙ୍କୁ ବଂଚାଇବା ପାଇଁ ସେ ଯାବତୀୟ ଉପାୟ ଅବଲମ୍ବନ କରିଛନ୍ତି ଓ ସରକାରଙ୍କର ପ୍ରିୟପାତ୍ର ହୋଇ ସ୍ୱର୍ଗରେ ପହଞ୍ଚି ଯାଇଛନ୍ତି । ତାଙ୍କର ସରକାରୀ ଜୀବନ ସହିତ ଘରୋଇ ବନ୍ଧୁତାର ସମ୍ପର୍କ ନାହିଁ । ତେଣୁ ସେ ଦେବ ଚୌଧୁରୀଙ୍କୁ ମଧ୍ୟ ଆଇନ୍‌ର ବନ୍ଧନ ଭିତରକୁ ନେଇଗଲେ । ପ୍ରଧାନମନ୍ତ୍ରୀଙ୍କ ସମେତ ଗୋଟିଏ ସ୍ୱଚ୍ଛ ସୀମିତ ଗୋଷ୍ଠୀର ନିର୍ଦ୍ଦେଶରେ ଡଃ ଆନନ୍ଦନ୍‌ଙ୍କ ପରି ପଦସ୍ଥ ହାକିମ ରାଜତ୍ୱ ଚଳାନ୍ତି । ଷ୍ଟିଲଫ୍ରେମ୍‌ରେ ସେ ବନ୍ଧା । ସେ ସ୍ୱର୍ଗର

ଅଧିକାରୀ । ଗୋଟାଏ ମିଛ ବିବେକ ନେଇ ଏମାନେ କାର୍ଯ୍ୟ କରନ୍ତି । ଏମାନେ ଯେ ଶିକ୍ଷିତ, ଜ୍ଞାନୀ ଓ ଦେଶର ନାଗରିକ ସେକଥା ମନେ ହୁଏ ନାହିଁ । ଯେଉଁମାନେ ଫାସିଷ୍ଟ ସେହିମାନେ ଫାସିଜିମ୍ ବିରୋଧରେ କହନ୍ତି, ଲୋକଙ୍କୁ ଭୁଲାନ୍ତି, ଭଲ ହେଉ ବା ମନ୍ଦ ହେଉ ଯେକୌଣସି ଉପାୟରେ ଧନୀ ହେବା କହନ୍ତି । ଦେବ ଚୌଧୁରୀ ପରି ଆଇ.ଏ.ଏସ. ରାଜନୀତିର ପଶା ପାଲିରେ ହାରିଯାଇ ମଧ ବିଜୟୀ ହୋଇଗଲେ । ସେ ସ୍ୱର୍ଗକୁ ଯିବାକୁ ଚାହିଁଲେ ନାହିଁ । ମର୍ତ୍ତ୍ୟରେ ରହି ସାନସାନ ହସକାନ୍ଦ ବାଦଛେଦ ପ୍ରେମପ୍ରୀତିକୁ ଉପଭୋଗ କରିବାକୁ ଶ୍ରେୟ ମନେ କଲେ । ସେ କ୍ଳୀବ ହୋଇପାରିଲେ ନାହିଁ । ମାତ୍ର ଡଃ ଆନନ୍ଦନ୍ ସ୍ୱର୍ଗସୁଖ ପାଇବାକୁ ବ୍ୟାକୁଳ ହେଲେ, ସ୍ୱର୍ଗକୁ ଗଲେ ମାତ୍ର କ୍ଳୀବ ହୋଇ ରହିଗଲେ ।

ବେଶ୍ ଚମତ୍କାର ଭାବରେ ଲେଖକ ଉକ୍ତ ଉପନ୍ୟାସରେ କ୍ଷମତା ଲିପ୍ସୁ ରାଜନୀତିକ ନେତା, ସ୍ୱର୍ଗସୁଖ ଆଶାୟୀ ପଦସ୍ଥ ଅଫିସର, ମନଲୋଭୀ ବ୍ୟବସାୟୀ ଓ ନେତା ମନ୍ତ୍ରୀ ପ୍ରମୁଖଙ୍କ ଚରିତ୍ରକୁ ଜୀବନ୍ତ କରିଦେବା ସଂଗେ ସଂଗେ ସୁରେଶ, ମୀନାକ୍ଷୀ ଓ ନୟନ ମହାନ୍ତି ପରି ସାଧାରଣ ଚରିତ୍ର ଭିତରେ ମାନବିକତାର ଦିବ୍ୟଭାବକୁ ଦେଖାଇ ଦେଇଛନ୍ତି ଓ ସୂଚାଇ ଦେଇଛନ୍ତି ଯେ କ୍ଷମତା ଓ ଅର୍ଥ ପାଇଁ ମୋହଗ୍ରସ୍ତ ହୋଇ ପଡୁଥିବା ଦେଶରୁ ତଥାପି ମାନବିକତା, ସ୍ନେହ ଓ ପ୍ରୀତି ଲୋପ ପାଇନାହିଁ । ଏହି ଉପନ୍ୟାସ ଭାରତ ବର୍ଷରେ ଜରୁରୀକାଳୀନ ପରିସ୍ଥିତିର ଘୋଷଣା ପ୍ରସଙ୍ଗକୁ ପରୋକ୍ଷରେ ସୂଚାଇ ଦେଇଥିଲା ପରି ମନେହୁଏ ।

ଉକ୍ତ ଉପନ୍ୟାସର ଶୈଳୀ ଗତାନୁଗତିକ ଶୈଳୀ ନୁହେଁ । ଚରିତ୍ରମାନଙ୍କର ଅନ୍ତରୀଣ ଶୈଳୀ ମାଧ୍ୟମରେ ଉପନ୍ୟାସର କଥାବସ୍ତୁ । କାହାଣୀକୁ ଆଶ୍ରୟ ନ କରି ବିଶେଷ ଭାବସତ୍ତାକୁ ନେଇ ହୋଇଛି ଗତିଶୀଳ । ପ୍ରତ୍ୟେକ ଚରିତ୍ର ଭିତରେ ଥିବା ବ୍ୟକ୍ତିସତ୍ତାର ସଂଳାପ ଏପରି ଭାବରେ ରୂପ ନେଇଛି, ଯାହା ଚରିତ୍ରମାନଙ୍କର ସ୍ୱରୂପକୁ କେବଳ ଦେଇଦିଏ ନାହିଁ– ଯେଉଁ ବିଶେଷ ଭାବସତ୍ତା, ରାଜନୀତି ଓ ବ୍ୟୁରୋକ୍ରାସିକୁ ନେଇ ପ୍ରକାଶ ପାଇଛି, ତାହାର ଅବିଚ୍ଛିନ୍ନ ପ୍ରବାହ ଓ ପରିଣତିକୁ ମଧ ଦର୍ଶାଇଦିଏ । ସ୍ୱର୍ଗସୁଖ ପାଇଁ ଯିଏ ସବୁକିଛିକୁ 'ଡୋଣ୍ଟ କେୟାର' କହି ଉଡ଼େଇ ଦେଇ ରାଜନୀତିକ ନେତାଙ୍କ ସକଳ ଅପକର୍ମର ସାଥୀ ହୋଇଥିଲେ, ସେହିପରି ପଦସ୍ଥ ବ୍ୟକ୍ତିର ଅନ୍ତର୍ନିହିତ ନୀରବ ଦୁଃଖ ଓ ଅସହାୟ ମଧ ବେଳେବେଳେ ଉଙ୍କିମାରି ଉପନ୍ୟାସକୁ ସ୍ନିଗ୍ଧ କରିଦେଇଛି । ଏହି କାରଣରୁ 'ସ୍ୱର୍ଗସୀମା' ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଏକ ସ୍ୱତନ୍ତ୍ର ମହିମାର ଅଧିକାରୀ ହୋଇଯାଇଛି ।



# A Study of Kishoree Das's Short Stories

***Pratap Chandra Mohanty***

Kishoree Babu's characters apart from a few exceptions are usually drawn from the middle class. They reveal not only the imaginative power of the author, but also the pitfalls, contradictions and aspirations of human nature which the comfortable bureaucrat, our author, probes with a restlessness bordering on ridiculousness and with a sensitivity to irony akin to masochistic delight but always with clairvoyance of terrifying comic intensity.

In most of his stories where man is seen writhing against the self-made determinants in the alternate rhythm of victory and fall, the distortions of his thoughts and the chaos of his desires are revealed in a satiric light. The conscious attempt to overcome the limitation of our day to day life and the final bondage a recurring theme of Kishoree Das also occurs in 'Morning Description'.

The narrator is a middle-aged well-to-do man who while taking his son to the park in order "to see the beautiful world" inspires the latter to write about the park. At first he is a little disappointed to find the factual details in the essay but gradually he perceives the keen observation of his son about human nature and says rather condescendingly-

"You dont's have poetic inspiration, but you can very well see and know human nature ... They will enrich your essay; literature will not be harmed."

This deceptive appreciation to hide inner discomfiture receives a shock when he reads in his son's essay about a poor lady. Soon, however he comes out of the initial hesitation and manages to continue the deception : "This is poverty... without it art never gains fulness." The final description is about the servants of rich people who take dogs for morning exercises. The servants sit on the small walls of the park and talk among themselves while the dogs wagging their tails cover a small area and sniff the earth. This description, he thinks is

vulgar, obscene and discordant. His fine taste is offended. He asked his son to cut off those lines. His son objected a little. "But I was not softened," he adds with mock gravity. "I asked him to obey my order." Deception is over; pettiness is triumphant. In his 'beautiful world' he would not permit this vulgarity. One perceives in the last lines quoted above the irony aimed at this vulgarity of which he is the poor victim.

The same little fight with ego is carried on in 'Husband, the Supreme Teacher'. "Satyanarayana babu is a good man. But since a few days he is trying to be a better man". He succeeds in being "a better man" as the narrator in 'Morning Description' has succeeded in enjoying his 'beautiful World'. His male pride, however, is wounded by his wife's devotion to one Mrs. Verma. One day after enjoying the marital bliss he finds his wife Sumi very happy. He thinks it is due to him, but soon she told him the real cause that Mrs. Verma is expected the next day, therefore, he should return from office a little earlier. He was hurt. Jealously and thwarted pride was audible. "Impossible," he say "I have so many work next evening.... Emergency conference." The fort of affected goodness is finally shattered, the cave man peeps forward. He has again descended into his petty self which torn with meanness and jealously strives to "be good" but can never become so.

The whole world yearns for freedom and yet each creature is in love with his chains. The people of Kishoree babu's world, it is true, do not strive for freedom. It would be too philosophical a term for them. But yearning they have and this is for the happiness of life. Sometimes it is confused with serving literature, sometimes with a conscious attempt to be good. Their yearning is not even real yearning. At its best it is a momentary desire - the expression of a mood rather than a systematic approach to life. This mood is the unhappy expression of an ambivalent approach to life. They desire for perfection, yet they are in love with the imperfection that makes them imperfect. It is not only the nectar but also the poison that attracts his attention. He takes morning walk, enjoys the flowers, listens to the harmony of nature, behaves genially, but in some unguarded moments the primeval man crawls forward, destroys the flowers of bliss and restores the little walls.

More than this primary paradox it is time which is still a greater for of man. Time is seen as a succession of particular moments which

does not resolve but merely suppress the little human dilemmas in its vast but steady and insistent movement. Man does not resent the imposition. There is on the other hand, an ignorant acceptance of the flux which man mistakes to be his fort.

In 'Wild Peacock' the lady doctor Mrs. Saroja one day recapitulates before her friend Mr. Rao the experiences of Ratnavali, one of her neighbour's wife while the latter was journeying to Bombay with her husband. The recapitulation provides her a temporary escape from her own self. What is more important is that during the process by identifying herself with Ratnavali Mrs. Saroja experienced the bliss of eternal feminity and simple pleasures of life which is denied to her. On that day violating the family planning instructions of Mrs. Saroja Ratnavali enjoyed conjugal felicity with her husband. Mrs. Saroja's response to the incident is a curious one. She realises the felicity of the situation and yet is angry because the instructions were violated. Mrs. Saroja would not allow emotion to overpower her. In fact at the end "blowing her famous loud laughter (she) got up from the chair and told Mr. Rao keeping her hand over his - 'Let's go to the next room'. The story ends- Mr. Rao consoled himself - 'Saroja is not a simpleton'. The moment of happiness is drowned. Saroja is not a simpleton. She does not believe in sentimentality. She prefers the security and pleasure of routine life.

The usual flow of time absorbs the desire of the tiny individuals. They may like a flying fish soar above the water for a moment or two but at last it is the water, the time that is and was from the beginning which will absorb them in its infinity. Such a point of view reaches its extreme in 'Million Birds'.

This story records the wandering imagination of a rich lady who is relaxing on her bed. Joke books, her servant, the painting on the wall, the future of her husband, her lady acquaintances - all appear, disappear, reappear in her imagination. Fatigued at last she switches on the radio and listens to Mozart "Mozart is her favourite. She feels as if she is roaming in fairy lands and fairies are tickling her. She again slept on the bed, became motionless and listened the music attentively." "Mozart was over," the story ends. "Mrs. Puree looked unmindfully to a distance, saw a lonely fly sitting on the refrigerator and slowly closed her eyes."

The farcicality of living which the author notes is not perceived by the characters. They cherish the security of their limited coloured

life, their heaven. 'Is it,' the writer asks in the above story 'the heaven of civilisation ? Might be ... because here is neither the burden of knowledge nor the immobility of ignorance.' In such a life where the characters are neither rapt to heaven nor walked on the burning cauldron of hell the feelings and desires have also lost their intensity. Our desires to see a beautiful world, to be good, to feel the happiness of a simple life is never deeply rooted in our feelings. "In my daily experience," Mr. Das tells in a local short story quarterly (Galpa) "there is no intense feeling (the real word is Jwala or experience of fire). Sometimes there is the suggestion and possibility of intense feeling." Only at nightfall in some unguarded moment ethereal rumours, the ideal virtues revive for a moment a broken man to achive integrity. Then everything is silent again. The ocean roars on. Time, the leveller, is also a deadener.

Life is strange and feeling persists beyond time. In 'Manihara' we see the emotional distancing of a woman who mourns her dead son, from all her relatives including her husband. Finally, however, the husband and the wife are reconciled. Everything seemed all right and you are almost led to believe that time is the greatest healer. But a question paradoxically comes to her mind. Did they burn my son or bury him ? There was a lozenge in the breast pocket of his little shirt, half sucked might have stuck at the corner of the pocket.' She turned to ask her husband and found him sleeping. Time has failed to heal the wound. Irony here focusses on the tragedy of the human feelings rather than the farcicality of it as it did in 'Morning Description'. An attempt to capture a moment of intense experience, of unique sorrow here replaces the earlier cynicism and satire of Kishoree Das.

The writer captures a moment of unique feeling in 'Sangeeta's Father. It is the story of a contractor, Nandu babu, who once finds that his daughter Sangeeta writes poetry. He is overwhelmed and thought to impart this news to the universe. It is an achievement which justifies his contractorship. But soon he is depressed : Tears ooz in his eyes. He knows no one will understand him. Sangeeta's poetry, others will think, is another business of Nandu babu, the contractor.

The longing of a grandfather towards his grandson, his overwhelming desire to possess grandson in 'Grandson and Man'; the intricate labyrinth of emotions leading finally to mutual hatred of the husband and wife in 'The Egg' though have the satirist speaking directly, here is a direct and sympathetic involvement of the writer in

the emotions of his characters. Between 'Morning Description' and 'Grandson and Man' humane approach has gained in breadth.

Mr. Das accepts people as they are, i.e., weak, mean and frail. "I have written about common creatures like me, who are tormented in the mess of God, religion, society, sex, age, death, etc, who, in order to love themselves, are taking the support of lies and ignorance and who want to live, in peace." Thus says the writer in the Introduction to 'Million Birds' - collection of stories. All the desire 'to live in peace' is thwarted because finally ego will prevail, time will triumph.

Added to the passion and profundity of his latter stories, the reader will find a superbly controlled irony, brilliant wit and sophisticated self-criticism which are the hallmarks of all great artists. It is not only clever writing but passionate writing at its best. He has seen what we all see but he has seen significance in the trite occurrences and transformed them into art.



# Thakura Ghara

***Jatindra Mohan Mohanty***

"Sri Kishori Charan Das, distinguished Oriya short story writer, poet and essayist, was born in 1924 at Cuttack. A student of History and Law with a brilliant academic career, he joined the Indian Audit and Accounts Service in 1950, and is at present an Expert assigned to the Government of Switzerland by the Commonwealth Fund for Technical Co-operation. Sri Kishori Charan Das has been writing for the last thirty years, his forte being the short story. Five collections of his stories have been published and one of them - 'Mani-Hara'- won the Orissa Sahitya Akademi award in 1976. Many of his stories have been translated into various Indian and foreign languages.

Thakura Ghara is considered an outstanding contribution to Oriya literature for its subtle interpretation of relationships, revealing analysis of human urges, flashes of irony and tenderness and sympathy."

Thakura Ghara (The Deity's Room) is Kishori Charan Das's fifth collection of stories. Thakura Ghara has twenty stories, and almost all the stories have one element in common, that is a strong sepse of detachment from the events narrated coupled with an equally strong ironical attitude towards life.

The title story, the longest one in the collection, is about a dying woman, the head of the house, who ultimately does not die. But the apprehension that she is about to die, because of with her sons, daughters, and daughter-in-law have all been brought together round her bed in a state of vigil for days and nights, he led to interesting mental revelations for each a psychological tension motivated by self-interest, pride and elation. Thus what deminates the situation is not an atmosphere of death or dying appresions, but a psychological complexity where desires quietly clash and clash only to promote an attitude of mockery and irony. The deity's Rooms has the power to restore a person from the deal of death, if prayers are offered properly which probably was case of the grand old woman. But what it is seemingly does, another level, is a throw-back to a death like existence

for the members of the house vis-ā-vis the old woman though apparently they are feelings of happiness and relaxation. Thus this is how the youngest daughter feels - "Oh Lord ! bow to thee thousand times. We have heard my prayers. You have let my mother live ..:... we fool I was. How could I think that she was going to leave she was only trying to frighten us. That's what she does alway. We couldn't have let her die. Who is there for us except he that else is there ? She has sucked us throrgh. She has trampled our hopes and desires, clipped all our wings, and in return has brought us happiness. She knows where our good lies, she known. She asked father to die early because he would not have been happy if he had lived long. None of us could escape from the shackles of her love. The elder brother tried. He restlessly jumped at the sky. But could he, could he succeed ?" Irony is pervasive in the structure of the story. It not only integrates the attitude with understanding but also defines the basic point of view, which relates to both the complexity and mystery of human personalities living in contact with each other.

Similarly in the first story "Rati Kukkura" (The Night Dog), the incessant barking of dogs at night, which irritates a young couple, is ultimately silenced as the dogs get killed along with human beings during a midnight encounter among rival political groups. But the dogs barked because they were on heat, a very natural thing political convictions' was both unnatural and self-destructive. Yet the young couple are happy that the dogs have been killed and they will no more irritate them at night. Similarly in the next story entitled "Chalanta Gadi" (Running Train) the account is from the point of view of a child, a passenger in the train, who wonders why adults are so concerned about death, which is in anyway an inevitable consequence of running time (symbolized by the running train), and not items of life which along can bring happiness, like and child meeting her pet cat at the end of the journey.

The stories of Thakura Ghara have individually self-contained structures and points of view. At the same time they can be seen together projecting one attitude and one point of view which, at one level, are related to family and society, but at another level, they go beyond that to provide an insight into human psyche and existence.



# The Midnight Moon and Other Stories

*Roomy Naqvi*

This book is a collection of sixteen short stories, some inspiring, some insight provoking and the rest, unputdownable, and they have been well chosen to give the reader a perspective on a variety of experiences. All the stories are set in a solid, social milieu which perhaps gives them a common human appeal. A story like "The Broken Taj" could be seen in all its colours only by an investigative eye, because not only is the "Taj broken, but so is Gita's world and also the language of the story. The "Taj in this particular story comes out as a potent, all-embracing symbol, whose significance dawns only after the third reading, and which perhaps stands for all our dreams and aspirations. Undoubtedly, one finds it, disapponting that such a powerful emotive symbol does not reappear in other stories. But in Kishori Charan Das, every story has its own symbols, characters, totems and faults. Similarly, stories like "A Saucer of Milk", "The Dispossessed" and "The Hundred Sons" are all exuberant pieces, illuminating our minds. The writer himself says that he twisted a real life experience into a story and was inspired by the idea of Gandhari spewing forth the hundred sons, implying that those students-cum-political workers like the Kauravas, were hopeless young men, lost to our society for ever. But by the end of the story, we notice a glimmer of hope. But a little more tautness and some more imagination - and the story could have become a real masterpiece. "The Prayer Room" (Oriya original "Thakura Ghara") is again a very appreciable story which could have been endowed with even more universal human appeal had the story been brought to a more definite ending. In the Introduction, Das says that his stories try "opening out to horizons that might be reached some day", and I find myself not agreeing with his argument because it gives him a justification for some indefinite endings. Moreover, in "How much Land does a Man Need ?" by Leo Tolstoy, the protagonist, even after understanding that his greed for land is futile, has to die because only such an ending could have made the story into a great and moving work of literature.

"The Meaning of Monsoon" is a short story in its true sense and it could have been more dramatic but the story seems to us, to be little more than the mere narration of an experience, real or imaginary. Stories of this type have been written earlier and only those with an element of wonder in them have survived. Das acknowledges that he finds himself torn apart between finding and not finding 'story value' in incidents like the assassination of a leader, or the blowing up of a railway track, and he has every right to search for stories in any given situation. But it is also beneficial to remember for the sake of art that any twist given to any situation may not succeed in creating a short story.

Das's idiosyncrasies would have been very likeable had they not been so overtly and grossly justified in the Introduction, which tends to give a strong anti-romantic flavour to his, otherwise slightly romantic, slightly realistic, savoury stories; and by unnecessarily justifying his idiosyncrasies Das has unfortunately, albeit unconsciously, created a facade of arguments and principles.



# Middle-Roaders' Journey from Muddle to Mystery

*Himansusekhar Mohapatra*

**(The Journey :** Stories by K.C. Das. Translated by Phyllis Granoff. The University of Michigan Centers for South and Southeast Asian Studies, 2000)

The Canadian Translator Phyllis Granoff deserves high praise for having rendered into English the stories of the celebrated Oriya author Kishori Charan Das and for having selected nine of them to be featured in the present collection. That she has, by so doing done a great service to modern Oriya literature goes without saying. Kishori Charan Das is clearly one of the living representatives of the modern tradition of Oriya short story. His significance is that he built on its social realistic and satirical foundations laid by the likes of Fakir Mohan Senapati, Kalindi Charan Panigrahi and Gopinath Mohanty and extended it considerably in a psychological direction, while never departing from the social realistic base. Granoff's act has another crucial implication. It embodies a genuine cross-cultural concern, which is often missing in the contemporary translation scene in Orissa, dominated as it is by 'exotropic' translation activity engaged in by the English educated Oriya intellectuals. Granoff does, in fact, follow in the footsteps of Westerners such as Oliver Stallybrass, John Boulton, Jo Westbrook and Paul St-Pierre who have translated from Oriya into English and whose translations have followed from their interactions with Oriya life and culture. Needless to say, this translational enterprise and it is difficult to define it satisfactorily as either 'exotropic' or 'endotropic', for it clearly falls into an intermediate space - is the key site for cross cultural exchanges and dialogues.

These stories depict, like countless other stories by Das, the shenanigans of the Oriya upper middle class. Das's rationale behind his choice of theme, subject matter and style, as beautifully paraphrased by Granoff in her cogent introduction, is this : "Faced with so many "Others", Das's choice has been to write about what he feels is least 'Other' in the perplexing multifariousness of India; he writes about his own class, but even there he says he is not free from the plague of otherness, for he also feels alienated from his own social

class, whose hypocrisies and foolishness he exposes in some of his stories". Das is, in fact, in illustrious company here, for this essentially has been the French novelist Louis Aragon's solution, which is to write about his own class, not as its mouthpiece, but as its critic. Accordingly, Das's stories explore the theme of the undeveloped heart of the middle class and all the consequences that follow from it, including, of course, the desire to transcend this class-bound vision, as in the title story at the end of the book.

The stories are best read in terms of a division into what I would call 'stories of darkness' and 'stories of light'. In the first group which consists of five stories' (Once there was an auntie', 'Jasmine Bud and the Servant Girl', 'Fly away, Little Birdie, 'Chakadi's Krishna, and 'Not Just Compassion) there is a retrospective and backward movement toward some mystery, some dark secret that is waiting to erupt into the open. These stories, therefore, allow full play to the theme of the discrepancy between appearance and reality, conveyed, as Granoff rightly points out, through complex shifts between direct dialogue, interior monologue and interior or imagined dialogue'. A handy example comes from the first story "Once there was an auntic" where the dignified Mrs. Reva Mohanty is haunted by a vision of her repressed past, represented by the visit of her erstwhile aunty Mandy's son. A crucial aspect of this story is the use of interior dialogue to bring out the murky depths that underlie the polite surface of human behaviour. Mrs. Reva Mohanty's fears are seen to be ill-founded when Babua gently reminds her that it is not money, but his mother's golden amulet, that has brought him to her.

Das uses interior monologue to the self-same effect in the other stories. Once again the second story 'Jasmine Bud and the Servant Girl' is a case in point. We have here the collapsing of another respectable fabric. The dignified Mrs. Mallika Samantasinghar is turned inside out for us by her former lover's recollection of that fateful day when she 'talked' to her husband on the phone and 'spoke' to her lover with her body. In 'Chakadi's Krishna'. Das allows for a complex alternation from one point of view to another in order to map out the tension-ridden relationship between a mother and daughter as it is played out over the possession of the idol of Lord Krishna. The mapping out of yet another battered psychic landscape, this time of a young girl who sees in the despised and persecuted canine world around her a mirror of human brutality, is the terrifying subject matter of 'Not Just Compassion.'

In the second group there is a prospective and forward movement toward light and air, consequent upon their varying degrees

of release from the claustrophobic middle class world. 'When God is king' is the classic tale of the humbling of the patriarchal 'eminently practical' high court lawyer, Mr. Pani before his powerless tailor Damu's uncomplaining acceptance of his young daughter's untimely death, not to mention his impoverished condition. Damu's calm philosophical detachment, born of his supreme faith in Lord Jagannath, contrasts tellingly with Mr. Pani's restlessness, born of his own overweening ambition and pride and his desire to impress and intimidate his fellow humans. 'The Alley way Cinema' is a dramatic story about the popular roots of human happiness. Sureshwar, the owner of the cinema, redeems his father, known for his sadistic feudal ways, by throwing open the gates of his house to the alley kids. In 'Mr. Absent Minded, His Wife and Company' an old couple rediscover their lost love for each other as they separetely explore the many incarnations of Lord Lingaraj in the city of temples. At the end of the story they are seen emerging from a temple, joined together and holding hands, while their vain neighbours make their 'usual uproar.' "The Journey' appropriately marks the journey's end, as Manavendra Mohanty, the cynic and the nonbeliever, makes his way to the temple at the town end through the usual distractions of crowds, shops and bazars. He takes the 'road less travelled', which he significantly terms a 'left turn.' He sheds his fear and greed, as he wakes up to his own need for transcendence. As Granoff rightly remarks in her introduction, with this search for transcendence, the appearance-reality dichotomy in human relationships in finally overcome.

The stories then move from a perception of division, discrepancy and disharmony that characterize middle class life to a perception of wholeness that comes from empathy and understanding. This implies a stylistic shift from an outward-bound irony and sarcasm to an inward-bound balance and poise. And this is very much in keeping with Das's own fictional credo : 'Merciless as I have been in exposing the inner man who is oblivious of or ignores the "divides" which would have troubled him if he were a sensitive person capable of some intellection, I have also tried my best to note his urges, often unclear and inarticulate, towards a higher life'. It is indeed a chastening experience for any reader to go through the stories in this collection, which are a record of the middle-roaders' journey from muddle to mystery. The contemporary Oriya short story can justly claim international status on their strength.



